Original Title : **JAJATI** by V. S. Khandekar
Oriya Translation : **JAJATI**
Translated by : Pandit Neelamani Mishra, Bhubaneswar.

Published by : **GRANTHA MANDIR**, Cuttack-2

Printed at : **Optima (Offset) Prints**, Sutahat, Cuttack-1

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍ଟିମା (ଅଫସେଟ୍) ପ୍ରିଣ୍ଟସ୍**, ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧୯୮୦
ପରିମାର୍ଜିତ ଓ ସଂଶୋଧିତ ନୂତନ ସଂସ୍କରଣ : ୧୯୯୭

ମୂଲ୍ୟ : ଟ. ୧୧୦/-

## ମୋ' କଲମରୁ ପଦେ

ସ୍ୱର୍ଗତ ବିଷ୍ଣୁ ସଖାରାମ ଖଣ୍ଡେକରଙ୍କ 'ଯଯାତି' ଉପନ୍ୟାସ ଭାରତର ସର୍ବଶ୍ରେଷ୍ଠ ସାହିତ୍ୟିକ ପୁରସ୍କାର 'ଜ୍ଞାନପୀଠ'ଦ୍ୱାରା ପୁରସ୍କୃତ । ଔପନ୍ୟାସିକ ଖଣ୍ଡେକର 'ଯଯାତି'ର କାହାଣୀଟିକୁ ପୌରାଣିକ ଆଖ୍ୟାୟିକାରୁ ସଂଗ୍ରହ କରିଛନ୍ତି । ଭାଗବତ, ମହାଭାରତ ଓ ହରିବଂଶରେ ଏହି କାହାଣୀଟି ମାତ୍ର ଅଳ୍ପ କେତୋଟି ପୃଷ୍ଠାରେ ସୀମିତ । ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ସହିତ ହସ୍ତିନାର ରାଜା ଯଯାତିଙ୍କ ବିବାହ ଏକ ରହସ୍ୟମୟ ପୃଷ୍ଠଭୂମିରେ ସମାହିତ ହୋଇଥିଲା । ରାକ୍ଷସରାଜ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ସହିତ ଦେବଯାନୀର ବିବାଦ ଆରମ୍ଭ ହୁଏ ରାଜଉଦ୍ୟାନର ପୋଖରୀ କୂଳରୁ । ଦେବଯାନୀର ମହାର୍ଘ ବସ୍ତ୍ର ଶର୍ମିଷ୍ଠା ପିନ୍ଧିଦିଅନ୍ତେ, ବାଳିକାସୁଲଭ କଳହ ଆରମ୍ଭ ହୁଏ ଦୁଇ ସଖୀଙ୍କ ମଧ୍ୟରେ; କିନ୍ତୁ ଘଡ଼ିକ ମଧ୍ୟରେ କ୍ଷଣକୋପନା ଦେବଯାନୀ କ୍ରୋଧରେ ଜଳି-ଉଠେ । ଶର୍ମିଷ୍ଠା ରାଜଜେମାଭାବରେ ଦେବଯାନୀର ଅହେତୁକ କ୍ରୋଧ ସହି-ପାରେନାହିଁ । ଅସୁରକୁଳର ସଂରକ୍ଷକଙ୍କ କନ୍ୟା ଭାବରେ ଦେବଯାନୀ ମଧ୍ୟ କମ୍ ଆସ୍ପର୍ଦ୍ଧା ପ୍ରଦର୍ଶନ କରେ ନାହିଁ । ଫଳରେ ବାଳିକାସୁଲଭ କଳହ ଭୟଙ୍କର ରୂପ ଧାରଣକରେ । କ୍ରୋଧବଶରୁ ଶର୍ମିଷ୍ଠା ଦେବଯାନୀକୁ ଠେଲିଦିଏ ଏବଂ ଦୁର୍ଯୋଗକୁ ଦେବଯାନୀ ଗୋଟିଏ ଅନ୍ଧକୂପରେ ପଡ଼ିଯାଏ ।

ଏତିକିବେଳେ ହସ୍ତିନାର ଯୁବକ ରାଜା ଯଯାତି ଆଖେଟକ ଉଦ୍ଦେଶ୍ୟରେ ଆସି, ପିପାସାରେ ଆକୁଳ ହୋଇ ଜଳ ଅନ୍ୱେଷଣରେ ଏଣେତେଣେ ବୁଲୁଥାଆନ୍ତି । ଦୈବଯୋଗକୁ ଦେବଯାନୀର ଆର୍ତ୍ତଚିତ୍କାର ଶୁଣିପାରି ସେ ସେହି ଜୀର୍ଣ୍ଣ କୂପ ନିକଟରେ ପହଞ୍ଚି ଋଷିକୁମାରୀର ଜୀବନ ରକ୍ଷା କରନ୍ତି । ଦେବଯାନୀ ରାଜା ଯଯାତିଙ୍କ ପରିଚୟ ତଥା ତାଙ୍କ ସୁଠାମ-ଶରୀର-ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ଜୀବନର ସାଥୀରୂପେ ବାଛିନିଏ; କିନ୍ତୁ ଶର୍ମିଷ୍ଠା ଉପରେ ପ୍ରତିଶୋଧ ନେବାର ଦୁର୍ବାର କାମନା ଦେବଯାନୀକୁ ଅନ୍ଧ କରିଦିଏ । ସେ ଗୁରୁକନ୍ୟାର ଆସ୍ପର୍ଦ୍ଧାରେ ଅଳିଅଳ ରାଜକୁମାରୀକୁ ନିଜର ପଦସେବିକା

ଦାସୀରୂପେ ନେବାଲାଗି ପିତାଙ୍କ ଆଗରେ ଜିଦ୍ ଧରି ବସେ । ତାର ଜିଦ୍ ପୂରଣ ହୁଏ । ଏହା ହିଁ ହେଉଛି ଯଯାତି ଉପାଖ୍ୟାନର ସାରବସ୍ତୁ ।

ଏହି ଛୋଟ ପୌରାଣିକ ଆଖ୍ୟାୟିକା ଉପରେ ଆରମ୍ଭ କରିଛନ୍ତି ଔପନ୍ୟାସିକ ଖାଣ୍ଡେକର ଏକ ବିରାଟ ସାଧନା । ସେ ତାଙ୍କର ଅସାଧାରଣ ପ୍ରତିଭା ବଳରେ ଏକ ମନୋଜ୍ଞ କାଳ୍ପନିକ ସୌଧ ଗଠନକରି ମରାଠୀ ପାଠକ ପାଠିକାଙ୍କ ଆଗରେ ପରିବେଷଣ କରିଛନ୍ତି । ଖାଣ୍ଡେକରଙ୍କ ପ୍ରତିଭାପ୍ରସୂତ ସାଧନା ସଫଳ ଭାବରେ ରୂପାୟିତ ହୋଇଛି 'ଯଯାତି' ପୁସ୍ତକରେ । ସେ ମୂଳକଥାବସ୍ତୁକୁ ପଲ୍ଲବିତ କରିବାକୁ ଯାଇ ପ୍ରତ୍ୟେକ ଘଟଣାର ଏକ ସମ୍ଭାବ୍ୟ କାରଣ-ଅନୁସନ୍ଧାନ କରିଛନ୍ତି ଏବଂ ପ୍ରତ୍ୟେକ କାରଣର ଯଥାର୍ଥତା ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ମୂଳକଥା-ପ୍ରବାହ ସହିତ କେତୋଟି କାଳ୍ପନିକ କଥାସୂତ୍ରକୁ ନିଖୁଣ ଭାବରେ ସମ୍ମିଶ୍ରଣ କରାଇଛନ୍ତି । କେବଳ ସେତିକିରେ ଔପନ୍ୟାସିକଙ୍କ ପ୍ରଚେଷ୍ଟା ପ୍ରଶମିତ ହୋଇନାହିଁ; ସେ ଘଟଣାପ୍ରବାହକୁ ଅଧିକ ସାଫଲ୍ୟମଣ୍ଡିତ କରାଇବାପାଇଁ ଷଡ୍‌ଦର୍ଶନ, ଉପନିଷଦ୍, ଗୀତା ତଥା ଅନ୍ୟାନ୍ୟ ବହୁ ମୂଲ୍ୟବାନ୍ ଗ୍ରନ୍ଥରୁ ତଥ୍ୟମାନ ସଂଗ୍ରହକରି ସେଥି ସହିତ ଏପରି ଭାବରେ ଯୋଡ଼ିଦେଇଛନ୍ତି ଯେ, ପାଠକ ମନରେ କଥାପ୍ରବାହର ବାସ୍ତବତାରେ ତିଳେହେଲେ ଆଞ୍ଚ ଆସେନାହିଁ । ତାହାହିଁ ହେଉଛି ତାଙ୍କ ସୃଷ୍ଟିର ଚରମ ପରିଣତି ତଥା ବିରାଟ ସାଫଲ୍ୟ ।

ସ୍ୱର୍ଗତ ଖାଣ୍ଡେକରଙ୍କ ଲେଖକ-ଜୀବନ ଆରମ୍ଭ ହୋଇଛି ୧୯୧୯ରୁ । ଦୀର୍ଘ ଛଅ-ସାତ ବର୍ଷର କଠୋର ସାଧନା ଫଳରେ ତାଙ୍କୁ ମରାଠୀ ସାହିତ୍ୟିକ-ଗୋଷ୍ଠୀରେ ଜଣେ କାହାଣୀ ଲେଖକରୂପେ ସ୍ୱୀକୃତି ମିଳିଥିଲା । ତା'ପରେ ପରେ ସେ ଉପନ୍ୟାସ ଲେଖିବାକୁ ମନ ବଳାଇଲେ ଏବଂ ୧୯୪୨ ମସିହା ପର୍ଯ୍ୟନ୍ତ ତାଙ୍କର ବାରଖଣ୍ଡି ସାମାଜିକ ଉପନ୍ୟାସ ପାଠକମାନଙ୍କର ହସ୍ତଗତହେଲା । ପ୍ରତ୍ୟେକ ଉପନ୍ୟାସରେ ସେ ସାମାଜିକ ଉତ୍‌ଥାନ ପତନ, ସମସାମୟିକ ରାଜନୀତି, ଗାନ୍ଧୀବାଦ ତଥା ସାମ୍ୟବାଦର ଝଲକ ନିଖୁଣ ଭାବରେ ଅଙ୍କନ କରିଛନ୍ତି । ତେଣୁ ତାଙ୍କ ଉପନ୍ୟାସଗୁଡ଼ିକ ମରାଠୀ ପାଠକ-ପାଠିକା ମହଲରେ ବେଶ୍ ଆଦୃତ ହୋଇପାରିଛି । ସେହି ଉପନ୍ୟାସଗୁଡ଼ିକ ମଧ୍ୟରେ 'ସାଗର ଦେଖୋ ଅଗସ୍ତି ଆୟା', 'କାଞ୍ଚନମୃଗ' ଓ 'କ୍ରୌଞ୍ଚବଧ' ପ୍ରଭୃତି ଅତ୍ୟନ୍ତ ଲୋକପ୍ରିୟ ଉପନ୍ୟାସ ।

୧୯୪୨ରୁ ୧୯୪୭ ତଥା ସ୍ୱାଧୀନୋତ୍ତର ଯୁଗରେ ସାମାଜିକ ବିପର୍ଯ୍ୟୟ ତଥା ଭୋଗବାଦର ଆଦର ଔପନ୍ୟାସିକ ଖଣ୍ଡେକରଙ୍କ ମନରେ ଏକ ତୁମୁଳ ସଂଘର୍ଷ ଆରମ୍ଭ କରିଥିଲା । ତଥାକଥିତ ପ୍ରଗତି ନାମରେ ଭ୍ରଷ୍ଟାଚାର, ଅନାଚାର, କଳାବଜାରୀ ତଥା ଅତିମାତ୍ରାରେ ଉତ୍କୋଚ ଗ୍ରହଣ ତାଙ୍କ ପ୍ରାଣରେ ଦାରୁଣ ଆଘାତ ଦେଇଥିଲା । ତାଙ୍କର ଦୃଢ଼ ଧାରଣା ହୋଇଥିଲା ଯେ, ନିତ୍ୟନୂତନ ଉପଭୋଗର ସାମଗ୍ରୀ ଏକତ୍ର କରିବାପାଇଁ ଭାରତୀୟ ମାନବ ସମାଜ ନବୋଦିତ ସଭ୍ୟତା ନାମରେ ଅଧୋଗତି ଆଡ଼କୁ ଦ୍ରୁତପଦକ୍ଷେପରେ ଅଗ୍ରସର ହେଉଛି । ଏହି 'ଭୋଗବାଦ'ର ଚରମ ପରିଣତି କେଉଁଠି, ତାହାରି ଅନୁସନ୍ଧାନ କରୁକରୁ ଖଣ୍ଡେକରଙ୍କ ଦୃଷ୍ଟି ଆକୃଷ୍ଟ ହୋଇଛି 'ଯଯାତି' କଥାବସ୍ତୁଆଡ଼କୁ । ଈର୍ଷା, ଦ୍ୱେଷ, ଅହଙ୍କାର ତଥା ଅତିମାତ୍ରାରେ ଉପଭୋଗର ପରିଣତିର ସାକାର ପ୍ରଦର୍ଶନ ଲାଗି ସେ 'ଯଯାତି' ଉପନ୍ୟାସ ରଚନା ଆରମ୍ଭ-କରି ପୂର୍ଣ୍ଣମାତ୍ରାରେ ସଫଳ ହୋଇଛନ୍ତି ।

ଏପରି ଖଣ୍ଡିଏ ସଫଳ ଉପନ୍ୟାସର ଅନୁବାଦ ୧୯୭୬ରେ ହିନ୍ଦୀରେ ପ୍ରକାଶ ପାଇଲା । ପୁସ୍ତକର ବିଷୟବସ୍ତୁ ତଥା ଅଙ୍ଗସଜ୍ଜାର ଅଭିନବ ପରିପାଟୀରେ ହିନ୍ଦୀଜଗତ୍ ଚମତ୍କୃତ ହୋଇଗଲା ।

ପ୍ରବୀଣ ତଥା ଅଭିଜ୍ଞ ପ୍ରକାଶକ ଶ୍ରୀ ଅଭିରାମବାବୁ ଖଣ୍ଡିଏ 'ଯଯାତି' ଉପନ୍ୟାସ ସଂଗ୍ରହ କରି, ଯଥାଶୀଘ୍ରସମ୍ଭବ ଅନୁବାଦ କରିଦେବାଲାଗି ମୋତେ ପରାମର୍ଶ ଦେଲେ । ତାଙ୍କରି ସୁପରାମର୍ଶ ଗ୍ରହଣକରି ମୁଁ ପୁସ୍ତକଟିକୁ ପ୍ରାୟ ଆମୂଳଚୂଳ ତିନିଥର ପାଠକରିଛି । ସୁନ୍ଦର ମୂର୍ତ୍ତିଟିଏ ଦେଖିଲେ କଳାକୁଶଳୀ ବିନ୍ଧାଣିର ଯେପରି ଆଖି ସେଇଠି ଲାଖିରହେ; ଠିକ୍ ସେହିପରି, ଖଣ୍ଡେକରଙ୍କ 'ଯଯାତି'ର ଅଙ୍ଗସଜ୍ଜାରେ ମୁଁ ପ୍ରଲୁବ୍ଧ ହୋଇଗଲି । ପ୍ରାୟ ଦୀର୍ଘ ଦଶମାସ ପରିଶ୍ରମ କରିବାପରେ ମୋ' ଅନୁବାଦ ଶେଷହେଲା । ଯେଉଁ ସାହିତ୍ୟରସିକ ତଥା ପ୍ରବୀଣ ପ୍ରକାଶକଙ୍କ ପ୍ରେରଣାରୁ ମୁଁ ଏହି ଅନୁବାଦ କାର୍ଯ୍ୟରେ ଆଗ୍ରହୀ, ଆଜି ଏହି ସୁଅବସରରେ ସେହି ଅଭିରାମବାବୁଙ୍କଠାରେ କୃତଜ୍ଞତା ଜଣାଉଛି । କାଗଜଦୁର୍ଭିକ୍ଷ ତଥା ଛାପାଖାନା ଶ୍ରମିକ ଅଶାନ୍ତି ଯୁଗରେ ସେ ଅତ୍ୟନ୍ତ ନିଷ୍ଠାର ସହ ଯଥାସମ୍ଭବ ଶୀଘ୍ର ମୁଦ୍ରଣ କରାଇପାରିଛନ୍ତି । ତାଙ୍କରି ନିଷ୍ଠା ଯୋଗୁଁ ଖଣ୍ଡିଏ ମୂଲ୍ୟବାନ୍ ମରାଠୀ ଉପନ୍ୟାସ ଓଡ଼ିଆ ସାହିତ୍ୟର ଗନ୍ତାଘରକୁ ଶ୍ରୀମଣ୍ଡିତ କରିଛି ।

ଚାରିଶତପୃଷ୍ଠାବିଶିଷ୍ଟ 'ଯଯାତି'ର ଅନୁବାଦ ସମୟରେ ମୋତେ ସାହାଯ୍ୟ କରିଛନ୍ତି ଏବଂ ଦୋଷ ତ୍ରୁଟି ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଛନ୍ତି ବନ୍ଧୁ ଶ୍ରୀ ଭଗବାନ ପଣ୍ଡା । କଥାବସ୍ତୁର ଗୂଢ଼ ମନସ୍ତାତ୍ତ୍ୱିକ ଜଟିଳତାର ସମାଧାନ କରିଛି ମୋର କନ୍ୟା ଆୟୁଷ୍ମତୀ ଅଧ୍ୟାପିକା ଜୟଶ୍ରୀ । ମନୋବିଜ୍ଞାନର ଜଣେ ଛାତ୍ରୀ ଭାବରେ ତା'ର ପରାମର୍ଶ କେତେକ ସ୍ଥଳରେ ମୋର ଅନୁବାଦକୁ ସୁଗମ କରାଇଛି । ତେଣୁ ଉଭୟଙ୍କୁ ଏହି ଅବସରରେ ମୁଁ ଧନ୍ୟବାଦ ଜଣାଉଛି ।

ଆଜିସୁଦ୍ଧା ମୋ ଦ୍ୱାରା ଅନୂଦିତ 'ମୋ ପତି ମୋ ଦେବତା', 'କାଶ୍ମୀର ଏକ ସ୍ୱପ୍ନିଳ ବାସ୍ତବ', 'ମୃଗନୟନୀ', 'ଦରବାର ରହସ୍ୟ' ଓ 'ବାମମାର୍ଗ' ପ୍ରତି ଓଡ଼ିଶାର ଅଗଣିତ ପାଠକ-ପାଠିକା ଯେପରି ଆଗ୍ରହ ପ୍ରକାଶ କରିଛନ୍ତି, 'ଯଯାତି' ପୁସ୍ତକଟି ସେମାନଙ୍କଦ୍ୱାରା ଅନୁରୂପ ସ୍ୱୀକୃତି ଲାଭକଲେ ମୋର ଶ୍ରମ ସାର୍ଥକ ହେବ ।

ଔପନ୍ୟାସିକ ଖଣ୍ଡେକର ଆର୍ଯ୍ୟ ମହର୍ଷିଙ୍କ ମୌଳିକ ଚିନ୍ତାଧାରାକୁ ପାଠକସମାଜ ଆଗରେ ପରିବେଷଣ କରି, ଆଧୁନିକ ଭାରତୀୟ ସମାଜକୁ 'ଭୋଗବାଦ'ର ମାୟାଜାଲରୁ ମୁକୁଳାଇବା ପାଇଁ ଯେଉଁ ଚେଷ୍ଟା କରିଥିଲେ, ତାହା କେତେଦୂର ସମାଜରେ ରୂପାୟିତ ହୋଇଛି, ତା'ର ବିଚାରକ ହେବେ ପାଠକସମାଜ । ତଥାପି ମୁଁ ତାଙ୍କରି ସ୍ୱରରେ ସ୍ୱର ମିଳାଇ କହୁଛି– 'କାମନାଲିପ୍‌ସୁ ବ୍ୟକ୍ତିର ମନରେ ସମୁଦିତ ସର୍ବଗ୍ରାସୀ ଦୁର୍ବାର ବାସନା କେବେହେଲେ ଉପଭୋଗରେ ପ୍ରଶମିତ ହୁଏନାହିଁ; ବରଂ ତାହା ଅଗ୍ନିକୁଣ୍ଡରେ ଘୃତଧାରା ପରି ଶତସହସ୍ର ଜିହ୍ୱା ବିସ୍ତାରକରି ଭୟଙ୍କର ରୂପ ଧାରଣ କରିଥାଏ ।'

ନୀଳମଣି ମିଶ୍ର

# ଯଯାତି

ମୁଁ ଠିକ୍ ଭାବରେ ଜାଣେନାହିଁ– କାହିଁକି ମୁଁ ମୋର ଅତୀତ କାହାଣୀ ଶୁଣାଇବାକୁ ଯାଉଛି? କେବଳ କ'ଣ ଜଣେ ରାଜା ଭାବରେ ମୁଁ ଏହା ଶୁଣାଉଛି? ମୁଁ କ'ଣ ବାସ୍ତବରେ ଜଣେ ରାଜା? ନା, ହୁଏତ ଦିନେ ମୁଁ ରାଜା ଥିଲି। ଲୋକେ ରାଜାରାଣୀଙ୍କ କାହାଣୀ ଆଗ୍ରହରେ ଶୁଣନ୍ତି। ସେମାନଙ୍କ ପ୍ରେମକାହାଣୀ ପଢ଼ି ସାଧାରଣ ଜନତା ରସାଣିତ ହୁଅନ୍ତି। ଜଣାଶୁଣା କବିକୋବିଦମାନେ ସେଇମାନଙ୍କ କାହାଣୀର ଅବଲମ୍ବନରେ କାବ୍ୟ-କବିତା ରଚ଼ନାକରନ୍ତି।

ଠିକ୍ ସେହିପରି ମୋ କାହାଣୀ ଗୋଟିଏ ପ୍ରଣୟ-ଆଖ୍ୟାୟିକା– ନା... ନା ତା' ବି ନୁହେଁ! ମୁଁ ମଧ୍ୟ ଜାଣିନି– ଏହା କେଉଁ ଧରଣର ଆଖ୍ୟାୟିକା। କବିର ହୃଦୟକୁ ଛୁଇଁଲାପରି ସେଥିରେ କିଛିହେଲେ ବିଷୟବସ୍ତୁ ନାହିଁ। ଏ କାହାଣୀ ମଧ୍ୟରେ ନାହିଁ ରାଜକୀୟ ଅଭିମାନ, ପ୍ରତାପଶାଳୀ ଶାସକର ଦମ୍ଭ କିମ୍ବା ଆତ୍ମବଡ଼ିମାର ଗୌରବ। ଏହା କେବଳ ରାଜକୀୟ ଆଡ଼ମ୍ବରର ଶୁଷ୍କ ପ୍ରହସନ ମାତ୍ର; ତେଣୁ କାହିଁକି ବା ଏହାକୁ କିଏ ଦୁନିଆ ଆଗରେ ପ୍ରଦର୍ଶନ କରିବ?

ରାଜବଂଶରେ ମୋର ଜନ୍ମ ହେତୁ ମୁଁ ରାଜା। ରାଜପୁତ୍ର ଭାବରେ ମୁଁ ଲାଳିତପାଳିତ; ଏଥିରେ ମୋର ଗୁଣ ବା ଦୋଷ କିଛି ହେଲେ ନାହିଁ। ହସ୍ତିନାର ମହାରାଜ ନହୁଷଙ୍କ ପୁତ୍ର ରୂପେ ପରମାତ୍ମା ମୋତେ ଜନ୍ମ ଦେଇଛନ୍ତି। ପିତାଙ୍କ ଅନ୍ତେ ମୁଁ ରାଜସିଂହାସନ ଲାଭକରିପାରିଛି; ଏଥିରେ ପୁଣି ଗୌରବ କେଉଁଠି? ରାଜପ୍ରାସାଦର ଶିଖର ଉପରେ ବସିଥିବା କୁଆଟି ଆଡ଼କୁ ମଧ୍ୟ ଲୋକେ ଆଗ୍ରହରେ ଚାହାନ୍ତି।

ମୁଁ ଯଦି ରାଜକୁମାର ନହୋଇ ଗୋଟିଏ ଋଷିପୁତ୍ର ରୂପେ ଜନ୍ମନେଇଥା'ନ୍ତି, ତା'ହେଲେ କିଭଳି ମୋ ଜୀବନ ବିତିଥା'ନ୍ତା? ଶରତ୍କାଳୀନ ନୃତ୍ୟରତ ଜ୍ୟୋସ୍ନାବିଧୌତ ରାତ୍ରି କିମ୍ବା ଶିଶିରର ତନ୍ଦ୍ରାବିଜଡ଼ିତ ରାତ୍ରିପରି କିଏ ଜାଣେ, କେଉଁ ଆଶ୍ରମରେ ମୋର ଜନ୍ମ ହୋଇଥା'ନ୍ତା? ତା'ହେଲେ କ'ଣ ମୁଁ ଅଧିକ ସୁଖୀ ହୋଇପାରିଥା'ନ୍ତି? ନାଁ...! ଏଇ ପ୍ରଶ୍ନର ସମାଧାନ ଲାଗି ମୁଁ ସାରା ଜୀବନ ବିତାଇଦେଲିଣି। ସେହି ଅନ୍ୱେଷଣ ମଧ୍ୟରେ କେବଳ ଗୋଟିଏ ଭାବନାର ଖିଅ ମୋ ମନଗହନରେ ଉଙ୍କିମାରିଛି; ବୋଧହୁଏ ତା' ହୋଇଥିଲେ ମୋ ଜୀବନ କାହାଣୀ ସେତେ ରୋଚ଼କ ହୁଅନ୍ତାନାହିଁ; ଠିକ୍ ତପସ୍ୱୀମାନଙ୍କ ବଲ୍‌କଳ ପରି ଅତ୍ୟନ୍ତ ସାଧାରଣ ଧରଣର ହୋଇଥାନ୍ତା। ନାନାବିଧ ମଣିମାଣିକ୍ୟରେ ଚିତ୍ରିତ ରାଜବସ୍ତ୍ର ପରି, ତାହା ସାଧାରଣ ଜନତାର କୌତୂହଳ ବଢ଼ାଇନଥାନ୍ତା। ସେ ଯା'ହେଉ, ଆଜି ମଧ୍ୟ ରାଜକୀୟ ପରିଧାନର ମହାର୍ଘ ଆଡ଼ମ୍ବର ମୋର ମାନସପଟଳକୁ ଭାରାକ୍ରାନ୍ତ କରୁନାହିଁ।

ତା'ହେଲେ... ମୁଁ କାହିଁକି ମୋ ଜୀବନକାହାଣୀ ଶୁଣାଇବାକୁ ଯାଉଛି ? କେଉଁ ଅଶରୀରୀ ଶକ୍ତି ମୋତେ ପ୍ରେରଣା ଦେଉଛି ? ଓଃ... ହଁ, ମନର ଗଭୀର କୋଣରେ ଲାଗିଥିବା ତୀବ୍ର ଆଘାତକୁ ଖୋଲି ପ୍ରକାଶ କରିଦେଲେ ମନ ଟିକିଏ ଆଶ୍ୱସ୍ତ ହୁଏ। ନିକଟରେ କେହି ଜଣେ ବସି ରୋଗର ବିବରଣୀ ପଚାରିବସିଲେ ରୋଗୀର କଷ୍ଟ ଟିକିଏ ଉପଶମ ହେଲାପରି ଜଣାଯାଏ। ସ୍ନେହବୋଳା ମମତାମୟୀ ଅଶ୍ରୁବିନ୍ଦୁରେ ଅଭାଗା ଜୀବନର ଦାବାନଳ ସହଜରେ ଲିଭିଯାଏ। ସେହି ମମତାମୟୀ ଆଶ୍ୱାସନା ବାଣୀ ଶୁଣିବାଲାଗି ମୋର ଦଗ୍ଧ-ହୃଦୟ ବ୍ୟାକୁଳ ନୁହେଁ ତ ?

ସେ ଯାହାହେଉନା କାହିଁକି, ପ୍ରକୃତ କଥା ହେଉଛି ଏ କାହାଣୀ ମୋ ହୃଦୟକୁ ଶ୍ରାବଣ ଓ ଭାଦ୍ରବ ମାସର ବଉଦଭରା ଆକାଶ ପରି ଭାରାକ୍ରାନ୍ତ କରିଛି। ଦିନନାହିଁ, ରାତିନାହିଁ, ସବୁବେଳେ ଏଇ ବିଷୟରେ ଭାବୁଛି– ଖୁବ୍ ସମ୍ଭବତଃ ମୋର କାହାଣୀ ଶୁଣି କେହି ହୁଏତ ଜୀବନର ଚଲାପଥରେ ଥିବା ଦୁର୍ଗମ କଙ୍କରିଳ ମାର୍ଗ ତଥା ଅନ୍ଧକାରପୂର୍ଣ୍ଣ ଗହ୍ୱର ସମ୍ପର୍କରେ ଧାରଣା କରି ଯଥାସମୟରେ ପ୍ରକୃତ ମାର୍ଗର ପଥିକ ହୋଇପାରିବ। ଅବଶ୍ୟ ଏପରି କଳ୍ପନା ଦଣ୍ଡେ ଘଡ଼ିଏ ଲାଗି ମୋର ଜ୍ୱଳନ୍ତ ହୃଦୟକୁ ଶାନ୍ତ କରିଥାଏ; କିନ୍ତୁ ପରମୁହୂର୍ତ୍ତରେ ବିବେକ କହିଉଠେ– ଏହା ଆତ୍ମପ୍ରବଞ୍ଚନା ମାତ୍ର। ଗୁରୁପତ୍ନୀଙ୍କ ପ୍ରତି କାମବିମୋହିତ ହୋଇ କଳଙ୍କିତ ଚନ୍ଦ୍ରମାର କାହାଣୀ କିଏ ବା ନଜାଣେ ? କିଏ ଅବା ଶୁଣିନି– ଅହଲ୍ୟାଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର କରି ସହସ୍ରଯୋନି ଇନ୍ଦ୍ରଙ୍କ ଦୁରବସ୍ଥା କଥା ? ସମସ୍ତେ ସବୁ ଜାଣନ୍ତି, ସବୁ ଆଖ୍ୟାୟିକା ଶୁଣିଛନ୍ତି। ଦୁନିଆ କେବେ କିଛି ଶିଖେନାହିଁ, କେବଳ ଭୁଲକରିଜାଣେ, କୁପଥର ପଥିକ ହୁଏ। ଅବଶ୍ୟ ପ୍ରତ୍ୟେକ ବ୍ୟକ୍ତି ଜୀବନର ଅନ୍ତିମ ଅବସ୍ଥାରେ ଟିକିଏ ସଜାଗ ହୋଇଯାଏ ସତ୍ୟ; କିନ୍ତୁ ସେ ଅନ୍ୟର ଦୃଷ୍ଟାନ୍ତରୁ କିଛିହେଲେ ଶିକ୍ଷା କରେନାହିଁ, ବରଂ ନିଜର ନିର୍ଯାତନାର ଅଭିଜ୍ଞତାରୁ ସେ ଆତ୍ମରକ୍ଷା ଲାଗି ସତର୍କ ହୋଇଯାଏ। ଏସବୁ କଥା ଚିନ୍ତାକଲାପରେ ପୁଣି ମନକୁ ଆସେ, କାହିଁକି ମୁଁ ମୋ ଜୀବନର ଅନୁଭୂତିମୟ ପେଟିକା ଖୋଲିଦେବି ? ହଁ... ଆଉ ଗୋଟିଏ କଥା; ସୁକୁମାର ଲତାରେ କେତେ ଫୁଲ ଫୁଟେ; ସେଥିମଧ୍ୟରୁ କେତୋଟି ଦେବଦେବୀଙ୍କ ମୂର୍ତ୍ତିର ଶୋଭା ବର୍ଦ୍ଧନ କରି ଭକ୍ତ ଜନତାର ପ୍ରଣାମ ଗ୍ରହଣ କରନ୍ତି, ଆଉ କେତୋଟି ପୁରଲଲନାଙ୍କ ଭୂଷଣରେ ସଜ୍ଜିତ ହୋଇ ସେମାନଙ୍କ ସୁକୋମଳ କେଶପାଶକୁ ଆକର୍ଷକ କରିଥାଆନ୍ତି; ଆଉ କେତୋଟି ସୁରମ୍ୟ ପ୍ରାସାଦର ବିଳାସକକ୍ଷରେ ରହି ରସର ଉନ୍ମାଦନା ପ୍ରତ୍ୟକ୍ଷ କରନ୍ତି। କିନ୍ତୁ... ଆଉ କେତୋଟି ହୁଏତ କେଉଁ ପାଗଳର ହସ୍ତଗତ ହୋଇଥାଏ। ଚାହୁଁ ଚାହୁଁ ସେହି ଉନ୍ମାଦଗ୍ରସ୍ତ ପ୍ରାଣୀ ସୁକୁମାର ପୁଷ୍ପଗୁଡ଼ିକୁ ଦଳିଚକଟି ନଷ୍ଟକରିଦିଏ। ଏହାହିଁ ହେଉଛି ଦୁନିଆ ! ଏ ଦୁନିଆରେ ଜନ୍ମଗ୍ରହଣ କଲେ ପ୍ରତ୍ୟେକ ବ୍ୟକ୍ତିର ଏପରି ଦଶା ହୋଇଥାଏ। କେହି ଦୀର୍ଘଦିନ ବଞ୍ଚିରହି ଦୁନିଆର ଅନେକ କିଛି ଅନୁଭବ କରେ; ଆଉ କେହି ଅସମୟରେ କାଳର କରାଳ ମୁଖରେ ପଡ଼ି ନିଜର ସତ୍ତା ହରାଇଥାଏ। କେହି ଦୁଷ୍ଟ, କେହି ଶିଷ୍ଟ, କେହି ସୁନ୍ଦର, କେହି ଅସୁନ୍ଦର; କିନ୍ତୁ ପରିଶେଷରେ ସଂସାରଉଦ୍ୟାନର ସେହି ପ୍ରତ୍ୟେକ ଫୁଲ ଧୂଳିରେ ଲୋଟି ତା'ରି

ସହିତ ନିଜକୁ ମିଶାଇଦିଏ। ଏଥିମଧ୍ୟରୁ କୌଣସି ଗୋଟିଏ ଫୁଲ କେବେହେଲେ ନିଜର କାହାଣୀ କହୁଥିବାର କେହି ଦେଖିଛି କି? ତଥାପି ପ୍ରତ୍ୟେକ ବ୍ୟକ୍ତି ନିଜର ଜୀବନକୁ ଏତେ ମହତ୍ତ୍ୱ କାହିଁକି ଦେଇଚାଲିଛି?

× × × ×

କେଡ଼େ ଦୁର୍ବିସହ ଏ ଜୀବନ! ପଛଆଡ଼େ ହିଂସ୍ରଜନ୍ତୁପୂର୍ଣ୍ଣ ଗହ୍ୱର, ସମ୍ମୁଖରେ ଘନ ଅନ୍ଧକାରପୂର୍ଣ୍ଣ ଘୋର ଜଙ୍ଗଲ। ଅଜ୍ଞାନତାର ଅନ୍ଧକାର ମଧ୍ୟରେ ପଡ଼ି ଜୀବନଯାତ୍ରା ଆହୁରି ଭୟଙ୍କର ହୋଇଉଠେ। କେବେକେବେ ପଥହରା ବାଟୋଇ ଆକାଶର ଝିଲ୍‌ମିଲ୍ ତାରା ଧୂମିଳ ଆଲୋକରେ ଅଣ୍ଡାଳି ସେହି ଅରଣ୍ୟାନୀର ସଂକୀର୍ଣ୍ଣ ମାର୍ଗ ପର୍ଯ୍ୟନ୍ତ ଆସିଥାଏ। ସେହି ସଂକୀର୍ଣ୍ଣ ମାର୍ଗଦେଇ ଆଗେଇ ଚାଲିବାକୁ ଆମେ ଜୀବନଯାତ୍ରା ବୋଲି କହିଥାଉଁ।

ମୋର ଏହି ଜୀବନଯାତ୍ରା ମଧ୍ୟରେ ଉଲ୍ଲେଖଯୋଗ୍ୟ କେତୋଟି ଘଟଣା ନିଶ୍ଚୟ ରହିଛି। ହଁ... ଅବଶ୍ୟ ଏହା ମୋ ମନର ଭ୍ରମ ହୋଇପାରେ; କିନ୍ତୁ ମୋତେ ସେଗୁଡ଼ିକ ଖୁବ୍ ଭଲଲାଗେ। ଶିଶୁ ଯଯାତି, କିଶୋର ଯଯାତି, ଯୁବକ ଯଯାତି ଏବଂ ପ୍ରୌଢ଼ ଯଯାତି ସମସ୍ତେ ଥିଲେ... ଏକ... ଅଭିନ୍ନ...; କିନ୍ତୁ ଆଜିର ଏ ଶୀର୍ଣ୍ଣ ଯଯାତି ସେମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ। ସେ ଆଜି ପ୍ରତ୍ୟେକ ଅବସ୍ଥା ମଧ୍ୟରେ ରହି ଆତ୍ମଚିନ୍ତନ କରୁଛି। ହୁଏତ ସେଦିନ ସେ ଯାହା ହୃଦୟଙ୍ଗମ କରିନଥିଲା, ଆଜି ଅନୁଭୂତିର ଶୀର୍ଷ ସୋପାନରେ ଆରୋହଣ କରିବା ଫଳରେ, ଅତୀତର ସେହି ଛିନ୍ନପୃଷ୍ଠାଗୁଡ଼ିକ ଆପେ ଆପେ ତା' ଆଗରେ ସ୍ପଷ୍ଟ ହୋଇଉଠୁଛି। ପ୍ରତ୍ୟେକ ବ୍ୟକ୍ତି କିଛି ନା କିଛି, ଅସ୍ପଷ୍ଟ ହେଲେ ମଧ୍ୟ, ଏଥିରୁ କିଛି ଶିକ୍ଷା କରିପାରିବେ। ତେଣୁ ମୁଁ ଆଜି ଅତୀତର ସେହି ଜୀବନବୃତ୍ତାନ୍ତ, ହଜିଯାଇଥିବା ଜୀବନ୍ତ ସ୍ମୃତିକୁ ସମସ୍ତଙ୍କ ଆଗରେ ପ୍ରକାଶକରିବାର ମୋହ ସମ୍ବରଣ କରିପାରୁନାହିଁ। ବାଲ୍ୟକାଳର ସେ ମଧୁର ସ୍ମୃତି– ମୟୂରଚନ୍ଦ୍ରିକା ପରି କେଡ଼େ ମନୋହର, ଲୋଭନୀୟ ତଥା ବହୁଚର୍ଚ୍ଚିତ ନଥିଲା! ମୋର ଆଜି ସ୍ପଷ୍ଟ ମନେପଡୁଛି– ଯାଆଁଳା ଭାଇଭଉଣୀ ପରି ଅଗ୍ନି ଓ କୁସୁମ ପରସ୍ପର ଆଲିଙ୍ଗନ-ପାଶରେ ଆବଦ୍ଧ ହୋଇ ବସିରହିଛନ୍ତି।

ପିଲାଦିନରୁ ମୁଁ ଫୁଲକୁ ଖୁବ୍ ଭଲପାଏ। ମୁଁ ଯେତେବେଳେ ନିତାନ୍ତ ଶିଶୁ ଥିଲି– ଏବେ ବି ସମସ୍ତେ କହନ୍ତି– ମୁଁ ରାଜଉଦ୍ୟାନର ବିକଶିତ ପୁଷ୍ପସମ୍ଭାର ଆଡ଼କୁ ଘଣ୍ଟା ଘଣ୍ଟା ଧରି ଚାହିଁବସୁଥିଲି। ରାତ୍ରିର ଅନ୍ଧକାର ମାଡ଼ିଆସିବା ମାତ୍ରେ, ମୁଁ କଇଁକଇଁ ହୋଇ କାନ୍ଦିଉଠୁଥିଲି। ନାନାବାୟା ଗୀତ ଗାଇ ଶୁଆଉଥିବା ଦାସୀକୁ ମୁଁ ଖୁବ୍ ବ୍ୟସ୍ତ କରିଦେଉଥିଲି। ରାମ୍ପୁଡ଼ି, ବିଦାରି, ଗୋଡ଼ହାତ ଛାଟି, ଜିଦ୍ ଧରି କହୁଥିଲି– ଯା, ବଗିଚାର ସବୁତକ ଫୁଲ ତୋଳିଆଣି ମୋ ବିଛଣାରେ ବିଛାଇଦେ, ତା'ହେଲେ ଯାଇ ମୁଁ ଶୋଇବି। ସେ ହସି ହସି ଏ କଥା ଆଉ ଜଣେ ଦାସୀକୁ କହିଲା। କାନକୁ କାନ ଏ କଥା ସମଗ୍ର ରାଜପ୍ରାସାଦରେ ରାଷ୍ଟ୍ରହୋଇଗଲା। କିଏ ବା ଆଶ୍ଚର୍ଯ୍ୟ ହୋଇ ଏ କଥା ଶୁଣିଲା; ଆଉ କେହି ଏ କଥା ଶୁଣିବାମାତ୍ରେ

ମୋର ପିଲାଳିଆ ଅଭିରୁଚିକୁ ପ୍ରଶଂସା କଲା। ପ୍ରତ୍ୟେକ ବ୍ୟକ୍ତି ଏ ବିଷୟରେ ଆଲୋଚନା କଲେ। ଖୁବ୍ ସମ୍ଭବତଃ ମୋର ସ୍ନେହମୟୀ ଜନନୀ ଏକଥା ଶୁଣି ମୋତେ ପ୍ରଶଂସା କରିଥିଲେ ଏବଂ ଦିନେ ମୋତେ ପିତାଙ୍କ ଆଗରେ ଛିଡ଼ାକରାଇ କହିଥିଲେ – "ଶୁଣିଲଣି... ଆମର ଏ ଅଲିଅଳ ପିଲାଟି ଦିନେ ନା ଦିନେ ଏକ ବଡ଼ କବି ହେବ!"

'ପିତା ମା'ଙ୍କ କଥାରେ ତାଚ୍ଛଲ୍ୟଭାବେ ହସି କହିଲେ – "କ'ଣ କହିଲ? କବି ହେବ! କବି ହେଲେ ମୋ ଯଯୁକୁ ମିଳିବ କ'ଣ? କବିର ଲେଖନୀ ବର୍ଣ୍ଣନା କରିଯାଏ ଦୁନିଆର କାଳ୍ପନିକ ସୌନ୍ଦର୍ଯ୍ୟ; କିନ୍ତୁ ଏହି ବୀରଭୋଗ୍ୟା ବସୁନ୍ଧରାରେ ଶୌର୍ଯ୍ୟଶାଳୀ ସମ୍ରାଟ୍ ନିଜର ବାହୁବଳରେ ସମସ୍ତ ପ୍ରକାର ବାସ୍ତବ ସୌନ୍ଦର୍ଯ୍ୟକୁ ଆୟତ୍ତ କରି ଉପଭୋଗ କରିବାର ସାମର୍ଥ୍ୟ ଲାଭକରେ। ମୁଁ ଚାହେଁ, ଆମର ଯଯୁ ସେହିପରି ଏକ ଶୌର୍ଯ୍ୟବୀର୍ଯ୍ୟଶାଳୀ ବୀର ହେଉ। ଗୋଟିଏ ଦୁଇଟି ନୁହେଁ, ଶତ ଶତ ଅଶ୍ୱମେଧଯଜ୍ଞର ଆୟୋଜନ ସେ କରୁ। ଆମର ପୂର୍ବପୁରୁଷ ମହାରାଜ ପୁରୁରବା ସ୍ୱର୍ଗସୁନ୍ଦରୀ ଉର୍ବଶୀଙ୍କୁ ନିଜର ପ୍ରେମିକା ରୂପେ ପାଇଥିଲେ; ମୁଁ ମଧ୍ୟ ନିଜେ ଦେବତାମାନଙ୍କୁ ଯୁଦ୍ଧରେ ପରାସ୍ତକରି ଇନ୍ଦ୍ରାସନର ସୁଖ ଉପଭୋଗ କରିଛି। ଆମ ଯଯୁ ସେହି ପରମ୍ପରାକୁ ଆଗେଇନେଉ, ଏହାହିଁ ମୋର ଏକାନ୍ତ ଅଭିଳାଷ।"

ପିତାଙ୍କର ଏହି ଓଜସ୍ୱିନୀ ବାଣୀ ମୁଁ ସେତେବେଳେ ଶୁଣିଥିଲି ସତ୍ୟ; କିନ୍ତୁ ଜାଣେନା କେତେଦୂର ମୁଁ ତାକୁ ହୃଦୟଙ୍ଗମ କରିଥିଲି! ଭବିଷ୍ୟତରେ ମୁଁ ଯେତେବେଳେ ପରାକ୍ରମଶାଳୀ ହୋଇଉଠିଲି, ମା' ମୋର ପ୍ରଶଂସା କରି ପିତାଙ୍କର ଏହି ବାଣୀ ବରାବର କହୁଥିଲେ। ଏଣୁ ସେହି ଅମର୍ଷୀବାଣୀ ଆଜିସୁଦ୍ଧା ମୋର କଣ୍ଠସ୍ଥ ହୋଇ ରହିଛି।

ଅଗ୍ନିଦେବଙ୍କ ପ୍ରତି ମୋର ଅନୁରୂପ ଶ୍ରଦ୍ଧା ଥିଲା। ମୋ ମା' ସେ କଥା ମଧ୍ୟ ମୋତେ ବାରମ୍ବାର ଶୁଣାଉଥିଲେ। ମୁଁ ଯଥାସମୟରେ ଧନୁର୍ବିଦ୍ୟା ଶିକ୍ଷା ଶେଷକଲି; ଠିକ୍ ସେତିକିବେଳେ ପିତୃଦେବ ମୋତେ ଗୋଟିଏ ବର୍ଷ ଲାଗି କୌଣସି ଏକ ଆଶ୍ରମରେ ରଖିବାକୁ ଚାହୁଁଥିଲେ। ଆଶ୍ରମରେ ରହିବାଲାଗି ବାହାରିଲାବେଳକୁ ମୁଁ ନିତାନ୍ତ ଦୁଗ୍ଧପୋଷ୍ୟ ଶିଶୁ ନଥିଲି; କିନ୍ତୁ ମା'ଙ୍କର ମମତା ଅତ୍ୟନ୍ତ ଉଦାର! ଷୋଡ଼ଶ ବର୍ଷର ରାଜକୁମାର ଯଯୁ ଗୋଟିଏ ବର୍ଷ ଲାଗି ତାଙ୍କୁ ଛାଡ଼ି ଅନ୍ୟତ୍ର ଯାଇ ରହିବ, ଏ ଚିନ୍ତା ତାଙ୍କୁ ବ୍ୟାକୁଳ କରିଦେଲା। ସେ ସେହି ଦୁଃଖଦ ବିୟୋଗ ଚିନ୍ତାକରି, ଗୋଟିଏ ଅବୋଧ ଶିଶୁପରି ଆଖିର ଲୁହଧାର ପୋଛିବାରେ ଲାଗିଲେ। ସେ ନିଜର କମ୍ପିତ ହସ୍ତ କେତେଥର ମୋର ସର୍ବାଙ୍ଗରେ ବୁଲାଇ ଆଣିଥିଲେ। ଅଶ୍ରୁଳନୟନରେ ବାରମ୍ବାର ମୋର ମସ୍ତକରେ ଚୁମା ଦେଇ ଗଦ୍‌ଗଦ କଣ୍ଠରେ କହିଥିଲେ – "ବାପା ଯଯୁ, ତୋ' ପାଇଁ ମୋ ମନରେ ଅସୁମାରି ଚିନ୍ତା ଘାରିଯାଉଛି। ତୁ ତ ଏକାବେଳକେ ପାଗଳ! ପିଲାଦିନେ ଅଗ୍ନିର ଲେଲିହାନ ଜ୍ୱାଳା ଦେଖିବାମାତ୍ରେ ତୁ ଆନନ୍ଦରେ ନାଚିଉଠୁଥିଲୁ। ଥରେ ସେହି ଅଗ୍ନିଶିଖା ମଧ୍ୟରେ ଅଗ୍ନିକଣିକା ଉଠିବାର ଦେଖି ତୁ ଆନନ୍ଦରେ ତାଳିମାରି ଚିତ୍କାର କରି କହିଥିଲୁ – 'ଫୁଲ... ଫୁଲ'। ସେତେବେଳେ ମୁଁ ତୋତେ ଅଟକାଇନଥିଲେ ତୁ ନିଶ୍ଚୟ ସେହି ଫୁଲଗୁଡ଼ିକ ତୋଳିବାଲାଗି

ଧାଇଁଯାଇଥାନ୍ତୁ।'' ସେ କୌଣସିମତେ ନିଜର ଆକୁଳତା ଚାପିଦେଇ କହିଥିଲେ– ''ବାପା, ପିଲା ଯେତେ ପାରିଲାର ହେଲେ ମଧ୍ୟ ମାଆ ଦୃଷ୍ଟିରେ ସେ ନିତାନ୍ତ ଅବୋଧ। ମୋ ଧନ ପରା, ଆଶ୍ରମରେ ତୁ ଅତି ସାବଧାନ ହୋଇ ଚଳିବୁ। ସେଠାକାର ନଦୀରେ ବିଶାଳକାୟ ମଗର ଓ କୁମ୍ଭୀର ତଥା ଜଙ୍ଗଲରେ ନିଶ୍ଚୟ ଭୟଙ୍କର ଜୀବଜନ୍ତୁ ଥିବେ! ଦେଖ ବାପା, ବୃଥାଟାରେ ତୋ ଜୀବନକୁ କେବେହେଲେ ବିପଦଗ୍ରସ୍ତ କରିବୁନାହିଁ।''

× × × ×

ଏ ସ୍ମୃତି ହେଉଛି ଅନେକ ଦିନ ତଳର, କିନ୍ତୁ ତା' ପୂର୍ବର କେତେକ ଶୁଣାଶୁଣି ଘଟଣା, କେତେକ ଅର୍ଦ୍ଧବିସ୍ମୃତ କାହାଣୀ, ଏବେ ମଧ୍ୟ ମୋର ଅନ୍ତରରେ ପ୍ରତିଧ୍ୱନିତ ହୋଇ ମାନସପଟଳରେ ସାକାର ହୋଇଉଠୁଛି; କିନ୍ତୁ ସେ ସବୁକୁ ମନେପକାଇ ସେଥିରୁ ମନକୁ ରସାଣିତ କରିବାର ଅଭିରୁଚି ଆଜି ମୋର ନାହିଁ। ସତେ ଯେମିତି, ସେହି ଅତୀତର ସ୍ମୃତିଗୁଡ଼ିକ ଘନଘୋର ଅନ୍ଧକାର ମଧ୍ୟରେ ଉଙ୍କିମାରୁଥିବା ଦାମିନୀ ସଦୃଶ! ତଥାପି ତୀବ୍ର ଆଘାତର ଚିହ୍ନପରି ତନ୍ମଧ୍ୟରୁ ଗୋଟିଏ ସ୍ମୃତି ଆଜି ସୁଦ୍ଧା ମୋ ମନକୁ ଆବୋରି ରହିଛି। ସେହି ସ୍ମୃତିଟିକକର ପ୍ରକୃତ ଅର୍ଥ ମୁଁ ପହଲିଦିନ ପର୍ଯ୍ୟନ୍ତ ଆଦୌ ଅନୁଭବ କରିନଥିଲି; କିନ୍ତୁ ବର୍ତ୍ତମାନ... ନା... ଜୀବନର ପ୍ରାରମ୍ଭର ଅର୍ଥହୀନ ସ୍ମୃତିଗୁଡ଼ିକ, ଜୀବନର ଅନ୍ତିମଚରଣରେ ବେଶ୍ ଗଭୀର ଅର୍ଥ ଥିଲାପରି ମନେହୁଏ।

ମୋ ମା'ଙ୍କର ଗୋଟିଏ ସ୍ନେହମୟୀ ଦାସୀ ଥିଲା– କଳିକା। ମୁଁ ମଧ୍ୟ ତାକୁ ଖୁବ୍ ଭଲପାଉଥିଲି। ସେ ବେଳେବେଳେ ମୋର ସ୍ୱପ୍ନରାଜ୍ୟରେ ବିଚରଣ କରୁଥିଲା କାହିଁକି? ଯେତେ ଚେଷ୍ଟା କଲେ ମଧ୍ୟ ମୁଁ ତା'ର ପ୍ରକୃତ କାରଣ ଜାଣିପାରିନଥିଲି। ସେତେବେଳେ ଖୁବ୍ ବେଶିହେଲେ ମୋତେ ଛଅବର୍ଷ ବୟସ ହୋଇଥିବ। ଦିନେ କଳିକା ଗେଲରେ ଗେଲରେ ମୋତେ ଖୁବ୍ ଜୋର୍‌ରେ ଭିଡ଼ିଧରି ନିଜ ବକ୍ଷରେ ଆଉଜେଇ ନେଇଥିଲା। ମୁଁ ତା'ର ବାହୁପାଶରୁ ମୁକ୍ତ ହେବାଲାଗି ଛଟପଟ ହେବାକୁ ଲାଗିଲି; କିନ୍ତୁ ସେ ପରମୁହୂର୍ତ୍ତରେ ତା'ର ବାହୁବନ୍ଧନ ଆହୁରି ଦୃଢ଼ କରିଦେଲା। ମନେ ମନେ ଭାବିଲି– ତାକୁ ଜୋର୍‌ରେ କାମୁଡ଼ିଦେଇ କହିବି– କେମିତି ମଜା! ଆଉ ତାଳିମାରି ତା'ଠାରୁ ଧାଇଁ ଦୂରକୁ ପଳାଇଯିବି! ସେତିକିବେଳେ ମୋର ଶିରକୁ ସେ ତା'ର ଛାତିଉପରେ ଚାପିଦେଇ କହିଲା– ''ଆଜିକାଲି ତୁମେ ଖୁବ୍ ଦୁଷ୍ଟ ହୋଇଯାଉଛ ଯୁବରାଜ! ପିଲାଦିନେ କ୍ଷୀରଖାଇବାଲାଗି କଳିକାକୁ ତ ଖୁବ୍ ଖୋଜୁଥିଲ, ସେତେବେଳେ କେଡ଼େ ସୁନାପିଲାଟି ପରି ମୋ କୋଳରେ ପଡ଼ିରୁହ; କିନ୍ତୁ ଏବେ...''

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି– ''କ'ଣ ହେଲା? ମୁଁ ତୁମ କ୍ଷୀର ଖାଉଥିଲି?''

ହସି ହସି କଳିକା ମୁଣ୍ଡହଲାଇ ନିଜର ସ୍ୱୀକୃତି ଜଣାଇଦେଲା। ପାଖରେ ମୋରି ବୟସର ତା' ଝିଅ ଅଳକା ଛିଡ଼ାହୋଇଥିଲା। ତା' ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା– ''ନିଜ ଗର୍ଭରୁ ଜାତ ଏଇ ଅଳକାକୁ ମୁଁ ବାହାରର କ୍ଷୀର ପିଆଇ, ତୁମକୁ... ସବୁ କିଛି ଭୁଲିଗଲ?''

ମୋ ମନର ଅସ୍ଥିରତା ଆହୁରି ବଢ଼ିଗଲା। ପଚାରିଲି– ...''ଛୋଟ ପିଲାମାନେ ମା'ର କ୍ଷୀର ଖାଆନ୍ତିନାହିଁ?''

''ହଁ...''

''ତା'ହେଲେ ତୁମେ କ'ଣ ମୋର ମାଆ...?''

ସେ ନିତାନ୍ତ ଡରିଗଲା। ଭୟଭୀତ ଦୃଷ୍ଟିରେ ଏଣେତେଣେ ଚାହିଁ ଭୟକମ୍ପିତ ସ୍ୱରରେ କହିଲା– ''ଏମିତି ବାଜେ କଥା କହନ୍ତିନାହିଁ ଯୁବରାଜ!''

ଯଜ୍ଞକୁଣ୍ଡର ଧୂମିଳ ଅଗ୍ନିଶିଖା ପରି ମୋ ଅନ୍ତରର ଆକୁଳତା ବୃଦ୍ଧିପାଇଲା। ମୁଁ ଭାବିଲି– ହସ୍ତିନାପୁରର ଯୁବରାଜ– ମୋତେ କାହିଁକି ଗୋଟେ ଛାର ଦାସୀର କ୍ଷୀର ଖାଇବାକୁ ଦିଆଗଲା? ମୁଁ କଳିକାଠାରୁ କ୍ଷୀର ଖାଇଛି, ତେବେ ତାକୁ କାହିଁକି ମା' ବୋଲି ନ ଡାକିବି? ମୋର ସୀମିତ ବିଚାରରେ ଏହି କଥା ଆସିବାମାତ୍ରେ ମୋ ମନର ପୁଞ୍ଜୀଭୂତ ବ୍ୟଥା କିଞ୍ଚିତ୍ ପରିମାଣରେ ପ୍ରଶମିତ ହୋଇଗଲା। ମୁଁ କଳିକାକୁ ଜାବୁଡ଼ି ଧରି କହିଲି– ''ଆଜିଠାରୁ ମୁଁ ତୁମକୁ ମାଆ ବୋଲି ଡାକିବି!''

ସେ ସଙ୍ଗେ ସଙ୍ଗେ ମୋ ମୁହଁରେ ହାତ ଦେଇ କହିଲା– ''ଯୁବରାଜ, ମହାରାଣୀ ହେଉଛନ୍ତି ତୁମର ମାଆ– କୁହ ଭଲା, ମୁଁ ତାଙ୍କର ସମକକ୍ଷ କିପରି ହେବି? ଯେତେହେଲେ ମୁଁ ତାଙ୍କ ଶ୍ରୀଚରଣର ଦାସୀଟାଏ ପରା!'' ମୁଁ ଟିକିଏ ଅପ୍ରତିଭ ହୋଇ ପଚାରିଲି– ''ତା'ହେଲେ ସେ ମୋତେ ତାଙ୍କ କ୍ଷୀର ଖୁଆଇଲେ ନାହିଁ କାହିଁକି?'' ବଣର କ୍ଷୁଦ୍ର ଜୀବ ଯେପରି ଖୁବ୍ ଡରିଯାଇ ଭୟଭୀତ ଚକ୍ଷୁରେ ଏଣେତେଣେ ଚାହିଁ ନିଜ ମାର୍ଗରେ ଚାଲିଯାଏ; ଠିକ୍ ସେହିପରି ହୋଇଯାଇ କହିଲା କଳିକା– ''କହନ୍ତି ପିଲାକୁ ନିଜ କ୍ଷୀର ଖୁଆଇଲେ ସ୍ତ୍ରୀର ସୌନ୍ଦର୍ଯ୍ୟ ନଷ୍ଟହୋଇଯାଏ!''

କଳିକାର କଥାଗୁଡ଼ାକ ସେତେବେଳେ ମୋର ପିଲା ବିଚାରରେ ଠିକ୍‌ଭାବରେ ହୃଦୟଙ୍ଗମ ହେଲାନାହିଁ; କିନ୍ତୁ ସେ କଥାଗୁଡ଼ାକ ମୋ ମନରେ ଗଭୀର ରେଖାପାତ କଲା। ମୁଁ ଭାବିଲି– ତା'ହେଲେ ଏଇଥିପାଇଁ ମୋତେ ମୋର ପ୍ରକୃତ ଅଧିକାରରୁ ବଞ୍ଚିତ କରାଗଲା! ମୋର ଜନ୍ମଦାତ୍ରୀ ମା' ନିଜେ ମୋତେ ଏଇ ସୁଖରୁ ବଞ୍ଚିତ କରିଛି! କାହିଁକି? କେବଳ ନିଜର ସୌନ୍ଦର୍ଯ୍ୟକୁ ଅକ୍ଷୁଣ୍ଣ ରଖିବାଲାଗି? ତା'ହେଲେ ମା' କ'ଣ ଏତେ ସ୍ୱାର୍ଥପର ହୋଇପାରେ? ନା... ନା, ମୋ ପ୍ରତି ମା'ର ମମତା ତିଳେହେଲେ ନାହିଁ! ସେ ନିଜର ସୌନ୍ଦର୍ଯ୍ୟ ପ୍ରତି ଅଧିକ ସଚେତନ।

ଜାଣିଶୁଣି ସେଦିନ ମୁଁ ମା'ଙ୍କ ଉପରେ ରାଗିଥିଲି। ସାରାଦିନ ମୁଁ ମା'ଙ୍କୁ ଆଦୌ କଥା କହିଲିନାହିଁ। ରାତିରେ ସେ ମୋ ଶେଯ ପାଖକୁ ଆସି ଅନେକ କାକୁତିମିନତି କଲେ– ''ମୋ ଧନଟି ପରା! ଯଯୁ...!'' ମୋ ମୁଣ୍ଡରେ ସେ କେତେଥର ସ୍ନେହରେ ହାତ ବୁଲାଇଲେ। ବାସ୍ତବିକ ସେ ସ୍ପର୍ଶ ମୋତେ ସୁକୋମଳ ଶିରୀଷ ପୁଷ୍ପର ସ୍ପର୍ଶପରି ବୋଧହେଲା। ମୁଁ ଅବଶ୍ୟ ମନେ ମନେ ତରଳିଗଲି; କିନ୍ତୁ ଆଖି ଖୋଲିଲିନାହିଁ କିମ୍ବା ମୁହଁ ଖୋଲି କିଛି କହିଲିନାହିଁ। ମୁଁ ଅଭିମାନରେ ଭାବିଲି– ମୁନିଋଷିଙ୍କପରି ମୋର ଯଦି ଶକ୍ତି ଥା'ନ୍ତା, ତା'ହେଲେ ଅଭିଶାପ ଦେଇ ମୁଁ ମା'ଙ୍କୁ ନିର୍ଜୀବ ପାଷାଣରେ ପରିଣତ କରିଦିଅନ୍ତି।

ବାସ୍ତବିକ ମୁହଁ ଖୋଲି କିଛି କହିବା ଅପେକ୍ଷା ସୁଖଦ ସ୍ପର୍ଶ ଅଧିକ ହୃଦୟଗ୍ରାହୀ ହୁଏ, କିନ୍ତୁ ଅଭିମାନୀର ମନକୁ ଛୁଇଁଲାପରି ସେଥିରେ ଶକ୍ତି ନଥାଏ। ସେଭଳି ଶକ୍ତି ଥାଏ କେବଳ ଆଖିର ଲୁହଧାରରେ। ମୋ ଗଣ୍ଡଦେଶରେ ମା'ଙ୍କର ତପ୍ତ ଲୁହଧାର ଝରିପଡ଼ିଲା। ସଙ୍ଗେ ସଙ୍ଗେ ମୁଁ ଆଖି ଖୋଲିଦେଲି। ମା'ଙ୍କ ଆଖିରେ ଲୁହଧାର ଦେଖିବା ତାହାହିଁ ଥିଲା ମୋ ଜୀବନର ପ୍ରଥମ ଅବସର। ମୋର ବାଳୁତ ମନର ଅଭିମାନ ତାଙ୍କର ଲୁହଧାରରେ ତରଳିଗଲା। ମୁଁ ତାଙ୍କ ବେକରେ ଝୁଲିପଡ଼ି ଗାଲକୁ ଗାଲ ଲଗାଇ ପଚାରିଲି– ''ମା' କାନ୍ଦୁଛ କାହିଁକି ? କ'ଣ ହେଲା ମାଆ . . . ?''

ତଥାପି ସେ କିଛି କହିଲେନାହିଁ; କେବଳ ମୋତେ ଦୃଢ଼ଭାବରେ କୋଳରେ ଭିଡ଼ିଧରି ମୋର ମୁଣ୍ଡ ଆଉଁସିବାକୁ ଲାଗିଲେ। ମୋର ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା। ମୁଁ ବ୍ୟାକୁଳ ହୋଇ କହିଲି– ''ମୋ ରାଣ, ମୋ ମୁଣ୍ଡ ଖାଇବ ମା' . . .।'' ସେ ନିଜର କମ୍ପିତ ହସ୍ତରେ ମୋ ମୁହଁ ଧୀରେ ଉପରକୁ ଉଠାଇ, ମୋତେ ଏକ ଲୟରେ ଚାହିଁ କାନ୍ଦ କାନ୍ଦ ସ୍ୱରରେ କହିଲେ– ''ମୋ ମନର ଦୁଃଖ ତୋତେ କିପରି ବୁଝାଇବି ବାପା !''

–''କ'ଣ ହେଲା ତୁମର ? ବାପା କ'ଣ ବିରକ୍ତ ହେଲେ ?''

–''ନା' ତ !''

–''ବାପାଙ୍କର ଦେହ ଖରାପ ଅଛି କି ?''

–''ନା . . . ନା . . . !''

–ତା'ହେଲେ କ'ଣ . . . ତୁମର ସେହି ପ୍ରିୟ ମୟୂରଟି ମହଲରୁ କୁଆଡ଼େ ଉଡ଼ିଗଲା ?''

–''ସେ ମୟୂରଲାଗି ମୋ ମନରେ ଏତେ ଚିନ୍ତାନାହିଁ !''

–''ତା' ହେଲେ . . . ?''

–''କିଏ ଜାଣେ, ମୋ ପ୍ରାଣର ମୟୂରଟି କେଉଁଦିନ କୁଆଡ଼େ ଉଡ଼ିଯିବ !''

–''ତୁମ ପ୍ରାଣର ମୟୂର . . . ? କାହିଁ ସେ କେଉଁଠି ?''

''ଏ . . . ଇ . . . ପରା . . . !'' –କହି ସେ ମୋତେ ଆହୁରି ନିବିଡ଼ଭାବରେ ବକ୍ଷଆଡ଼କୁ ଆଉଜାଇନେଲେ। ଫୁଲଗୁଡ଼ିକର ସୁଗନ୍ଧ ଆଘ୍ରାଣ କଲାବେଳେ ମୁଁ ଠିକ୍ ସେହିପରି ଆକୁଳତା ପ୍ରକାଶ କରୁଥିଲି, ଯେତେ ଶୁଙ୍ଘିଲେ ମଧ୍ୟ ମନ ବୁଝୁନାହିଁ। ମନେହୁଏ ଫୁଲଗୁଡ଼ିକୁ ଦଳି ମକଚି ତା'ର ସମସ୍ତ ସୁଗନ୍ଧ ପ୍ରାଣରେ ଭରିଦେବି। ଠିକ୍ ସେହିପରି ମା' ମୋତେ ଜାବୁଡ଼ିଧରି ଆହୁରି . . . ଆହୁରି ନିବିଡ଼ ବନ୍ଧନରେ ବକ୍ଷରେ ବାନ୍ଧିରଖିବାକୁ ଚେଷ୍ଟା କରିଥିଲେ, ମୁଁ ସେତେବେଳେ ଫୁଲପରି ତାଙ୍କ କୋଳରେ ପଡ଼ିଥାଏ।

ତାଙ୍କର ନିବିଡ଼ ବାହୁବନ୍ଧନରେ ମୋ ଶରୀରରେ ବ୍ୟଥା ଜାତହେଲା ସତ; କିନ୍ତୁ ମୋ ଶରୀରର ପ୍ରତିଟି ଲୋମକୂପରେ ତାଙ୍କର ମମତା ବ୍ୟାପିଗଲା, ମନ ଅପାର ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା। ମୁଁ ମୋର କୋମଳ ଆଙ୍ଗୁଳିରେ ତାଙ୍କ ଆଖିର ଲୁହଧାର ପୋଛିଦେଇ କହିଲି– ''ନା . . . ମା' . . . ମୁଁ ତୁମକୁ ଛାଡ଼ି ଯିବିନାହିଁ . . . କୁଆଡ଼େ ଯିବିନାହିଁ !''

କିନ୍ତୁ ମୁଁ ଆଦୌ ବୁଝିପାରିଲିନାହିଁ– ମା'ଙ୍କ ମନରେ ଏପରି ଶଙ୍କା କାହିଁକି ଜାତହେଉଥିଲା। ମୁଁ ବାରମ୍ବାର ତାଙ୍କୁ ଖୋଳିତାଡ଼ି ପଚାରିଲି, ପରିଶେଷରେ ସେ କହିଲେ– "ଆଜି ସାରାଦିନ ତୁ ମୋ ଉପରେ ରୁଷିଛୁ, ଥରେହେଲେ କଥା କହିନାହୁଁ। ସନ୍ଧ୍ୟାବେଳେ ମୁଁ ତୋ ହାତଧରି ବଗିଚାକୁ ନେବାଲାଗି କହିଲି; ତୁ ମୋ ହାତ ଛିଞ୍ଚାଡ଼ିଦେଇ ମୋ ଆଡ଼କୁ ରାଗିଲାପରି ଚାହିଁରହିଲୁ। ଏବେ ଏଠାରେ ମଧ୍ୟ... ମୁଁ ଜାଣେ ତୁ ଶୋଇନାହୁଁ, ତଥାପି ମୋର ସ୍ନେହବୋଳା କାକୁତି ଶୁଣି ପଦଟିଏ ହେଲେ ଉତ୍ତର ଦେଲୁନାହିଁ। ଏମିତି ଅଝଟିଆ ହୋଇ କାହିଁକି ରୁଷିଲୁ ଧନ? ଯଯୁ... ବାବା-ମା'ଙ୍କର ଦୁଃଖ ପିଲାଏ କେବେହେଲେ ବୁଝନ୍ତିନାହିଁ; କିନ୍ତୁ ବାପା ମୁଁ ତୋ' ପାଖରେ ଅଳି କରୁଛି ଧନ, ତୁ କେବେହେଲେ ତା'ପରି କରିବୁନାହିଁ!"

–"ତା'ପରି... ସେ କିଏସେ?"

ପିଲାଦିନେ ରାକ୍ଷସମାନଙ୍କ କାହାଣୀ ଶୁଣିଲାବେଳେ ଆଗ୍ରହର ସହିତ ପଚାରେ... 'ଆଉ କ'ଣ ହେଲା ତା'ପରେ...।' ଠିକ୍ ସେହିପରି ଉତ୍ସୁକତାର ସହିତ ପଚାରିଲି– "ସେ କିଏ... ମାଆ?"

କକ୍ଷ ମଧ୍ୟରେ ମାଆ ଓ ମୋ ବ୍ୟତୀତ ଆଉ କେହି ନଥିଲେ। ଦ୍ୱାରପାଖରେ ବୋଧହୁଏ ଗୋଟିଏ ଦାସୀ ଶୋଇଥିଲା। କକ୍ଷର ଗୋଟିଏ କୋଣରେ ସ୍ୱର୍ଣ୍ଣଦୀପରୁ ମନ୍ଦ ମନ୍ଦ ଆଲୋକରଶ୍ମି ଭାସିଆସୁଥିଲା। ତଥାପି ମାଆ କାହିଁକି କାତର ଦୃଷ୍ଟିରେ ଏଣେତେଣେ ଚାହୁଁଥିଲେ ମୁଁ ଆଦୌ ବୁଝିପାରିଲିନାହିଁ। ସେ ଧୀରେ ଶେଯଉପରୁ ଉଠିଯାଇ କବାଟ ବନ୍ଦକରି ଫେରିଆସିଲେ। ପୁଣି ମୋତେ କୋଳକୁ ଉଠାଇନେଇ ମୋର ସର୍ବାଙ୍ଗରେ ହାତ ବୁଲାଇଆଣି କମ୍ପିତ ସ୍ୱରରେ କହିଲେ– "ଯଯୁ, ଏ କଥା ମୁଁ ତୋତେ ବଡ଼ହେଲେ କହିବି ବୋଲି ଭାବିଥିଲି; କିନ୍ତୁ ଆଜି ତୁ ମୋ ଉପରେ ରାଗିଲୁ, କାଲି ଆହୁରି ବେଶୀ ରାଗିଯିବୁ, ଆଉ ପରଦିନ ଅଭିମାନରେ କିଛି ବିଚାର ନକରି ଘରୁ ଗୋଡ଼କାଢ଼ି ତା'ରି ପରି କୁଆଡ଼େ ଚାଲିଯିବୁ... ସେଇଥିଲାଗି...।"

–"ତା'ପରି କିଏ ସେ... ମାଆ?"

–"ତୋର ବଡ଼ଭାଇ..."

–"ମୋର ବଡ଼ଭାଇ ଅଛନ୍ତି?"

–"ହଁ ବାପା!"

–"ସେ କାହାନ୍ତି? କେଉଁଠି ଅଛନ୍ତି ମା'?"

"ଈଶ୍ୱର ଜାଣନ୍ତି. ବାପା! ସେ ଯେଉଁଠି ଥାଉ ସୁଖରେ ଥାଉ– ଏହାହିଁ ଈଶ୍ୱରଙ୍କଠାରେ ମୋର ନିତିଦିନ ପ୍ରାର୍ଥନା।"

ମୁଁ ଖୁବ୍ ଛୋଟପିଲା ଥିବାବେଳେ, ଅଳକାପରି ଟିକିପିଲାମାନଙ୍କ ସହିତ ରାଜପ୍ରାସାଦ ଭିତରେ ଖେଳୁଥିଲି। ଟିକିଏ ବଡ଼ ହେବା ପରେ ମନ୍ତ୍ରୀ, ସେନାପତି, ରାଜକବିଘରର ପିଲାମାନଙ୍କ ସହିତ ଖେଳିଲି; କିନ୍ତୁ ମୁଁ ବରାବର ମନଦୁଃଖରେ କାଳ ବିତାଉଥିଲି– କାରଣ ମୋ ସହିତ ସାହସର ସହିତ ଖେଳିବାଲାଗି କେହି ଜଣେହେଲେ ନଥିଲେ।

ଦାସଦାସୀଙ୍କ ପିଲାମାନେ ମୋ ଶେଯ ଓ ଆସନ ଉପରେ ବସିବାକୁ ସଙ୍କୋଚ୍ କରୁଥିଲେ; ଉଦ୍ୟାନ ବାଟିକାର ଧାଡ଼ି ଧାଡ଼ି ଫୁଲଗଛକୁ ଦଳିଚ଼କଟି ମୋ ସହିତ ତାଳଦେଇ ଧାଇଁବାକୁ କେହି ସାହସ କରୁନଥିଲେ। ଆହା ... ଗୋଟିଏ ବଡ଼ଭାଇ ମୋର ଥାଆନ୍ତା କି– ତା'ହେଲେ ଏ ଖେଳ କେଡ଼େ ମଜା ହୁଅନ୍ତା ! ଏଇ ବିଚ଼ାରରେ ମୁଁ ଅନ୍ୟମନସ୍କ ହୋଇଗଲି।

ବାସ୍ତବିକ, ବାଲ୍ୟକାଳ କେଡ଼େ ସରଳ, ନିର୍ମଳ, ନିରାଡ଼ମ୍ବର ତଥା ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗର ଅନୁଗାମୀ ! ବଡ଼ଭାଇଙ୍କର ବୟସ ଏବେ କେତେ ହେବ ବୋଲି ମା'ଙ୍କୁ ପଚ଼ାରିବାଲାଗି ଭୁଲିଗଲି। ସେ ଥିଲେ ହୁଏତ ପିତାଙ୍କ ପରେ ରାଜସିଂହାସନର ଅଧିକାରୀ ହେଇଥାଆନ୍ତେ ଏବଂ ମୁଁ ଜଣେ ସାମାନ୍ୟ କୁମାରପରି ସାରା ଜୀବନ ବିତାଇଥାଆନ୍ତି; ଏ ଧାରଣା ସେତେବେଳେ ମୋ ମନକୁ ଆଦୌ ସ୍ପର୍ଶ କଲାନାହିଁ। ମୁଁ କେବଳମାତ୍ର ଚାହୁଁଥିଲି– ମୋର ଗୋଟିଏ ଭାଇ ଥାଆନ୍ତା– ମୁଁ ତା' ସହିତ ଖେଳକୁଦ, କଳିତକରାଳ ଓ ମାଡ଼ପିଟରେ ମାତି ଆନନ୍ଦ କରୁଥାନ୍ତି ! ଆଃ ... ସେ କାହିଁ ? କେଉଁଠି ଅଛି ? ମା' ସହିତ ସାକ୍ଷାତ କରିବାକୁ ଆସୁନାହିଁ କାହିଁକି ? ମହୁଫେଣାରୁ ଉଡ଼ିଆସି ମହୁମାଛିଗୁଡ଼ିକ ଗୁଣୁଗୁଣୁ ଶବ୍ଦ କଲାପରି ମୋ ମନ ମଧ୍ୟରେ ଏହି ପ୍ରଶ୍ନ ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା। ମୁଁ ଟିକିଏ ଶଙ୍କିତ ମନରେ ମା'ଙ୍କୁ ପଚ଼ାରିଲି– ''ତାଙ୍କ ନାଁ କ'ଣ ମା' ?''

–''ଯତି ...''

–''ସେ କେତେଦିନ ହେବ ଗଲେଣି ?''

–''ତୋ ଜନ୍ମର ବର୍ଷେ ଦେଢ଼ବର୍ଷ ପୂର୍ବରୁ ଏକୁଟିଆ ସେ କୁଆଡ଼େ ଚାଲିଯାଇଛି ! ବିଲ୍‌କୁଲ୍ ଏକୁଟିଆ ...''

ମା'ଙ୍କର କଣ୍ଠସ୍ୱରରେ ଥିଲା ବ୍ୟଥାତୁରା ଜନନୀ-ହୃଦୟର ଆର୍ତ୍ତନାଦ। କିନ୍ତୁ ସେତେବେଳେ ମୁଁ ମା'ଙ୍କ ଆକୁଳତା ଆଦୌ ବୁଝିପାରିନଥିଲି। ମୁଁ ଭାବିଲି– 'ଏକୁଟିଆ କୁଆଡ଼େ ଚାଲିଗଲା ? ନିଶ୍ଚୟ ସେ ବଡ଼ ବାହାଦୁର ଓ ସାହସୀ ହୋଇଥିବ ! ତେଣୁ ତାଙ୍କ କଥାରେ ବିଶେଷ ଗୁରୁତ୍ୱ ନଦେଇ ପଚ଼ାରିଲି– ''ସେ କ'ଣ ତୁମକୁ କିଛି ନକହି ଚାଲିଗଲା ?'' ମା' କିଛି ଉତ୍ତର ଦେଲେନାହିଁ, କେବଳ ମୁଣ୍ଡ ହଲାଇ ହଁ-ମାରିଲେ ! ସେଦିନ ମା'ଙ୍କ ହୃଦୟତନ୍ତ୍ରୀର ବିକଳ ରାଗିଣୀ ଅନେକ ସମୟ ପର୍ଯ୍ୟନ୍ତ ଝଙ୍କୃତ ହୋଇଥିଲା; ସତେଯେପରି, ତାଙ୍କ ମର୍ମସ୍ଥଳର କ୍ଷତବିକ୍ଷତ ସ୍ଥାନରେ ପୁଣି ଥରେ କେହି ଆଘାତ ଦେଲା। କିନ୍ତୁ ମୁଁ ଯତିର ନିର୍ଭୀକତା ସମ୍ବନ୍ଧରେ ମନେମନେ ତାକୁ ପ୍ରଶଂସା କରୁଥିଲି। ବାଃ ... ସେ ମା'ଙ୍କୁ ନଜଣାଇ ରାଜପ୍ରାସାଦରୁ ଏକୁଟିଆ କୁଆଡ଼େ ଚାଲିଗଲା ! ମୁଁ ପୁଣି ପଚ଼ାରିଲି– ''କେତେବେଳେ ସେ ଚାଲିଗଲା ?''

''ରାତି ଅଧରେ ... ଘନ ଜଙ୍ଗଲ ଭିତରକୁ ... ! ଦୁଇପ୍ରହର ରାତି ପର୍ଯ୍ୟନ୍ତ ମୁଁ ଚାହିଁଥିଲି ଏବଂ ତାକୁ ବୁଝାଇଶୁଝାଇ କେତେକଥା କହୁଥିଲି; କିନ୍ତୁ କେତେବେଳେ କେଜାଣି ମୋ ଆଖି ମୁଦିହୋଇଗଲା। ବ୍ରାହ୍ମମୁହୂର୍ତ୍ତରେ ମୋ ନିଦ ଭାଙ୍ଗିବାବେଳକୁ ଯତି ଆଉ ତା'ର ଶେଯରେ ନଥିଲା। ସେବକମାନେ ଚାରିଆଡ଼େ ତାକୁ ଅନେକ

ଖୋଜାଖୋଜି କରି ନିରାଶରେ ଫେରିଆସିଲେ।''

ମୁଁ ମନେମନେ ଯତିର ବୀରତ୍ୱପୂର୍ଣ୍ଣ କାର୍ଯ୍ୟକୁ ପ୍ରଶଂସା କରି କହିଲି– 'ଏଇ ହେଉଛି ଯେ ଭାଇ!' ପରମୁହୂର୍ତ୍ତରେ ଭଜନ-ପୂଜନର ଚମତ୍କାରିତା ମୋ ମନରେ ଅନେକ ପ୍ରଶ୍ନ ଆଣିଦେଲା। ମୁଁ ପୁଣି ପଚାରିଲି– ''ତୁମେ ଯତିକୁ ନେଇ କୁଆଡ଼େ ଯାଉଥିଲ କି?''

–''ହଁ... ଜଣେ ମହାତ୍ମାଙ୍କ ଦର୍ଶନ ଉଦ୍ଦେଶ୍ୟରେ ବରାବର ଯାଉଥିଲି। ବିବାହର ଅନେକବର୍ଷ ପର୍ଯ୍ୟନ୍ତ ଆମର କୌଣସି ସନ୍ତାନ ନହେବାରୁ ଆମେ ଯାଇ ସେହି ମହାତ୍ମାଙ୍କ ଆଶ୍ରମରେ କିଛିକାଳ ବିତାଇଲୁ। ତାଙ୍କରି ଆଶୀର୍ବାଦରେ ଯତି ଜନ୍ମ ହୋଇଥିଲା। ତେଣୁ ପ୍ରତିବର୍ଷ ତାରି ଜନ୍ମଦିନରେ ଆମେ ସେ ମହାତ୍ମାଙ୍କ ଦର୍ଶନଲାଗି ଆଶ୍ରମକୁ ଯାଉଥିଲୁ। ସେ ଯେଉଁଦିନ ଘରୁ ଚାଲିଗଲା, ସେହିଦିନ ଆମେ ମହାତ୍ମାଙ୍କ ଆଶ୍ରମରୁ ଫେରିଥିଲୁ। ଯତି ସେହି ଆଶ୍ରମରେ ରହିବାଲାଗି ଖୁବ୍ ଜିଦ୍ ଧରିଥିଲା; କିନ୍ତୁ ତା' ଉପରେ ବିରକ୍ତହୋଇ, ତାକୁ ଗାଳିମନ୍ଦ କରି, ବାଛୁରୀ ବେକରେ ପଘା ଦେଇ ଶଗଡ଼ ପଛରେ ବାନ୍ଧି ଟାଣିଆଣିଲା ପରି, ମୁଁ ତାକୁ କୌଣସିମତେ ଟାଣିଓଟାରି ରାଜମହଲକୁ ଘେନିଆସିଲି। ସେତେବେଳେ ମୁଁ ତା'ର ମନୋଭାବ ପ୍ରତି ଆଦୌ ଦୃଷ୍ଟିଦେଇନଥିଲି; ସେ କ'ଣ ଚାହୁଁଥିଲା, ଜାଣିବାକୁ ଇଚ୍ଛାକରିନଥିଲି।''

–''କ'ଣ ସେ ଚାହୁଁଥିଲା?''

ଆଖିରୁ ଧାର ଧାର ଲୁହ ଗଡ଼ାଇ କହିଲେ ମାଆ– ''ଆଜି ସୁଦ୍ଧା ମୁଁ ସେ କଥା ଠିକ୍‌ଭାବରେ ଜାଣିପାରିନାହିଁ। ଧ୍ୟାନ-ପୂଜନ ଆଦିରେ ସେ ଖୁବ୍ ମନଲଗାଉଥିଲା। ପ୍ରତିଦିନ ସକାଳୁ ଦାସଦାସୀମାନେ ଡାଲାଏ ସଜ ସୁଗନ୍ଧିତ ଫୁଲ ଆଣି ଥୋଇଦେଉଥିଲେ; କିନ୍ତୁ ସେଥିରୁ ଗୋଟିଏହେଲେ ଫୁଲ ସେ ଉଠାଇନେଇ ଶୁଙ୍ଘିଥିବାର କେହି କେବେ ଦେଖିନାହିଁ। ଅକାଳେ-ସକାଳେ କେବେ କେମିତି ଗୋଟିଏଅଧେ ଫୁଲ ସେ ଉଠାଇନେଇ ଧୀରେ ଧୀରେ କୌଣସି ପଥର ଉପରେ ଥୋଇଦିଏ। ତା'ର ଖେଳ ମଧ୍ୟ ଅଦ୍ଭୁତ ଧରଣର... ଦୀର୍ଘ ସମୟ ପର୍ଯ୍ୟନ୍ତ ସମାଧିସ୍ଥ ହୋଇ ଧ୍ୟାନମୁଦ୍ରାରେ ବସିବା କିମ୍ୱା ଦାଢ଼ି ନିଶ ଲଗାଇ ଋଷିବେଶ ସାଜିବାରେ ତାକୁ ବେଶ୍ ଆନନ୍ଦ ମିଳେ। ଯଦିଓ ତା'ର ବାପ-ମା' ରାଜପରିବାରର, ସେ ରାଜଧର୍ମ ପ୍ରତି ଆଦୌ ଭ୍ରୂକ୍ଷେପ କରୁନଥିଲା– ସତେ ଯେପରି ରାଜରକ୍ତ ତା' ଧମନୀରେ ପ୍ରବାହିତ ହେଉନଥିଲା। କେବେ କେବେ ସେ ରାଜଦରବାରକୁ ଗଲେ ସେଠାରେ ଭୟଭୀତ ହେଲାପରି ଏଣେତେଣେ ଚାହିଁ ବସିରହୁଥିଲା; କିନ୍ତୁ ରାଜଭବନକୁ କୌଣସି ସାଧୁ-ସନ୍ନ୍ୟାସୀ ଆସିଲେ ତାଙ୍କ ସହିତ ଖୁବ୍ ଶୀଘ୍ର ତା'ର ବନ୍ଧୁତା ହୋଇଯାଉଥିଲା। ଆମେ ତାକୁ ଅନେକ ଖୋଜାଖୋଜି କଲୁ; କିନ୍ତୁ ହାୟ, ତଳକୁ ଖସିପଡ଼ିଥିବା ଆକାଶର ତାରା ଆଉ କ'ଣ ଆକାଶକୁ ଫେରିଯାଏ? ମୋ ଏକୋଇରବଳା ବିଶିକେଶନ ଯତି ଠିକ୍ ସେହିପରି...''

ମା' ଖୁବ୍ ଶାନ୍ତଭାବରେ ମୋ ଜନ୍ମପୂର୍ବର ଦୁଃଖପୂର୍ଣ୍ଣ କାହାଣୀ କହି ଲୁହ ଝରାଇଲେ। କିନ୍ତୁ ଶେଷ କଥା ପଦକ କହିବାପରେ ଆଉ ତାଙ୍କର ଧୈର୍ଯ୍ୟ ରହିଲାନାହିଁ। 'ମୋ ଯତି...' କହିବାମାତ୍ରେ ବୋଧହୁଏ ସେଦିନର ଘନତମିସ୍ରାପୂର୍ଣ୍ଣ କାଳରାତ୍ରି,

ନିବିଡ଼ ଅରଣ୍ୟାନୀର ଭୟଙ୍କରତା ତାଙ୍କ ହୃଦୟକୁ ଅଧିକାର କରିବସିଲା । ସେ କେତେ ସମୟ ପର୍ଯ୍ୟନ୍ତ ଧକେଇ ଧକେଇ କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲେ । ତାଙ୍କର ପ୍ରକମ୍ପିତ ଶରୀରରୁ ମନେହେଉଥିଲା– ସତେଯେପରି, ତାଙ୍କ ହୃଦୟଗଗନର ଉଜ୍ଜ୍ୱଳ ତାରା ସେଇ ମୁହୂର୍ତ୍ତରେ ଖସିପଡ଼ି କୁଆଡ଼େ ମିଳାଇଗଲା । କିଛି ସମୟ ପର୍ଯ୍ୟନ୍ତ ଅନ୍ୟମନସ୍କ ଭାବରେ ମୋତେ ସେ ଏକଲୟରେ ଚାହିଁରହିଲେ । ଏହା ଦେଖି ମୁଁ ଖୁବ୍ ଡରିଗଲି, କିନ୍ତୁ ପରମୁହୂର୍ତ୍ତରେ ମୋତେ ନିବିଡ଼ଭାବରେ ବକ୍ଷରେ ଲଗାଇ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲେ । ମୁଁ ସେତେବେଳେ ତାଙ୍କୁ କିପରି ସାନ୍ତ୍ୱନା ଦେବି ଭାବିପାରିଲିନାହିଁ ।

"ମା' ... ମାଆ ..." କହି ମୁଁ ଆହୁରି ଅଧିକ ନିବିଡ଼ଭାବରେ ତାଙ୍କୁ ଜାବୁଡ଼ିଧରି ମୋ ଭାବନାର ଆକୁଳତା ବ୍ୟକ୍ତକରିଥିଲି । ହୃଦୟର ଝଡ଼ କିଛି ପରିମାଣରେ ଶାନ୍ତ ହୋଇଯାନ୍ତେ, ସେ କହିଲେ, "ଯତି ତୋ'ରି ବୟସରେ ମୋ ଉପରେ ରାଗିଥିଲା– ପ୍ରଥମଥର ଲାଗି । ବାପା ଯଯୁ, ମୁଁ ତା'ର ରୁଷିବାର କୌଣସି କାରଣ ପ୍ରତି ସେତେବେଳେ ଆଦୌ ଦୃଷ୍ଟି ଦେଇନଥିଲି; କିନ୍ତୁ ଆଜି ତୋତେ ରୁଷିବାର ଦେଖି ମୋ ହୃଦୟର ସେହି ପୁରୁଣା କ୍ଷତ ପୁଣି ସତେଜ ହୋଇଉଠିଲା ଏବଂ ସେଦିନ ପରି ମୋ ଧମନୀରେ ପୁଣି ରକ୍ତ ପ୍ରବାହିତ ହେବାକୁ ଲାଗିଲା । ଆଜି ମୁଁ ହୃଦୟର ଆକୁଳତାରୁ ସେହି ପୁରୁଣା କଥା ଶୁଣାଇବସିଲି; କିନ୍ତୁ ସେହି କଥା ଚିରଦିନ ଲାଗି ମନଗହନରେ ଲୁଚାଇରଖିବାଲାଗି ଆମେ ଦୁହେଁ ନିଷ୍ପତ୍ତି କରିଥିଲୁ । ଅତି କମ୍‌ରେ ତୋ ଆଗରେ ପିଲାଦିନେ ସେ ଗୋପନ କଥା ନଖୋଲିବାକୁ ପ୍ରତିଜ୍ଞାବଦ୍ଧ ହୋଇଥିଲୁ । ବାପା, ପୁତ୍ର ହେଉଛି ମା'ର ନୟନର ତାରା । ତୁ ସେ କଥା ଶୁଣିବା ପରେ ହୁଏତ ଦିନେ ତା'ରି ପରି ଆମ ଛାତିରେ ଛୁରି ଚଳାଇଦେଇ କେଉଁଆଡ଼େ ଚାଲିଯାଇପାରୁ ।"

ମୁଁ ମଧ୍ୟ ମା'ଙ୍କ ପରି ଆଖିରୁ ଲୁହଧାର ଝରାଇ କହିଥିଲି– "ନା ... ମାଆ, ମୁଁ ଯତି ପରି ତୁମକୁ ଛାଡ଼ି କୁଆଡ଼େ ଚାଲିଯିବିନାହିଁ । ତମ ମନରେ ଦୁଃଖ ଜାତ ହେବାଭଳି କୌଣସି କାମ କରିବିନାହିଁ ।"

–"ମୋ ଆଗରେ ସତ୍ୟ କର ବାପା ... ।"

ମୁଁ ମୋ ହାତ ମା'ଙ୍କ ହାତ ଉପରେ ରଖି କହିଥିଲି– "ମୁଁ ସତ୍ୟ କରି କହୁଛି ମା' – କେବେହେଲେ ମୁଁ ସନ୍ନ୍ୟାସୀ ହୋଇ ଚାଲିଯିବିନାହିଁ ।"

× × × ×

ପାଷାଣରେ ନିର୍ମିତ କୌଣସି ଏକ ଶିଳ୍ପପ୍ରତିମା ପରି ସେଦିନର ସେହି ରାତ୍ରି ଆଜି ମଧ୍ୟ ମୋ ଆଗରେ ସ୍ପଷ୍ଟ ପ୍ରତୀତ ହେଉଛି । ଯା' ମଧ୍ୟରେ କେତେବର୍ଷ ବିତିଗଲାଣି; କିନ୍ତୁ ସେହି ଅଭୁଲା ସ୍ମୃତି ଆଜି ମୋ ଆଗରେ ସଜୀବ ହୋଇ ରହିଛି । ସେ ସ୍ମୃତି ତିଳେମାତ୍ର ଧୂମିଳ ହୋଇନାହିଁ; ବରଂ ଆହୁରି ଅଧିକ ସତେଜ ତଥା ଉଜ୍ଜ୍ୱଳ ହୋଇଉଠିଛି । ଅବଶ୍ୟ ମୁଁ କହିପାରିବିନାହିଁ– ସେ ରାତିରେ ମା' ଓ ମୋ ମଧ୍ୟରେ ହୋଇଥିବା ଆଲୋଚନା ମୋ ହୃଦୟରେ କେତେଦୂର ଗଭୀର

ରେଖାପାତ କରିଥିଲା; କିନ୍ତୁ ଏକଥା ସତ୍ୟ ଯେ, ମୁଁ ସେହି ରାତିକ ମଧ୍ୟରେ ଚାହୁଁ ଚାହୁଁ ବୟସରେ ଖୁବ୍ ବଢ଼ିଯାଇଥିଲି। ମୁଁ ସପନ-ରାଇଜରୁ ବାସ୍ତବ ଜଗତକୁ ଫେରିଆସିଲି। ସେହି ରାତିରେ ଜୀବନର ପ୍ରଥମଥର ଲାଗି ହୃଦୟରେ ମୁଁ ଦୁଃଖ ଅନୁଭବ କରିଥିଲି। ଯେଉଁ ମା'ଙ୍କର ସୁଖଦ ସ୍ପର୍ଶରେ ମୁଁ ସ୍ୱର୍ଗସୁଖ ଅନୁଭବ କରୁଥିଲି, ତାଙ୍କରି ଆଖିରେ ଅସହାୟତାର କରୁଣ କ୍ରନ୍ଦନ ଦେଖି ମୋ ମନରେ ଭାବାନ୍ତର ଜାତହୋଇଥିଲା। ଯେଉଁସବୁ କାର୍ଯ୍ୟରେ ମା'ଙ୍କ ମନରେ ଦୁଃଖ ହେବାର ସମ୍ଭାବନା ଥିଲା, ସେଥିପ୍ରତି ମୋ ମନରେ ତୀବ୍ର ଘୃଣା ଜାତ ହେବାକୁ ଲାଗିଲା।

ସେଦିନ ରାତିରେ ମୁଁ ଭଲଭାବରେ ଶୋଇପାରିନଥିଲି, ମଝିରେ ମଝିରେ ଚମକିପଡ଼ି ମୋ ନିଦ ଭାଙ୍ଗିଯାଉଥିଲା। ସେହି ରାତିରେ ମୁଁ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଥିଲି— ମୁଁ ହୋଇଯାଉଛି ସମଗ୍ର ଦୁନିଆର ରାଜା। ହାତରେ ଚାବୁକ୍ ଧରି ସହରରୁ ସହର ବୁଲୁଛି। ବାଟରେ ଯେତେ ସାଧୁ, ସନ୍ନ୍ୟାସୀ ଓ ବାବାଜୀଙ୍କୁ ଦେଖିଛି ନିର୍ବିଚାରରେ ସମସ୍ତଙ୍କ ପିଠିରେ ତୀବ୍ର ଚାବୁକମାଡ଼ ଦେଇଛି। ଚାବୁକର ପ୍ରଚଣ୍ଡ ଆଘାତରେ ସେମାନଙ୍କୁ ଛଟପଟ ହେଉଥିବାର ଦେଖି ମୁଁ ଆନନ୍ଦରେ ନାଚିଉଠିଛି; ସେମାନଙ୍କ ପିଠିରୁ ରକ୍ତର ଧାର ଛୁଟୁଥିବାର ଦେଖି ମୁଁ ତାଳି ମାରିମାରି ଆଗେଇଯାଇଛି।

ପ୍ରକୃତରେ ସେହି ରାତିକ ମଧ୍ୟରେ ମୁଁ ଖୁବ୍ ବଡ଼ ହୋଇଯାଇଥିଲି। ସେହି ରାତ୍ରିର ଅନ୍ଧକାରପଟଳ ମଧ୍ୟରେ ଜୀବନର ସତ୍ୟତା ମୁଁ ଅନୁଭବ କରିପାରିଲି। ମୋର ଗୋଟିଏ ବଡ଼ଭାଇ ଥିଲେ, ଆଉ ସେ ସନ୍ନ୍ୟାସୀ ହେବାଲାଗି ଘରୁ ପଳାଇଯାଇଥିଲେ— ସମସ୍ତେ ଏହି ସତ୍ୟ ଲୁଚାଇ ରଖିଥିଲେ କାହିଁକି? ମୋ'ଠାରେ ଏ ସତ୍ୟ ଲୁଚାଇବାର କାରଣ କ'ଣ ହୋଇପାରେ? ତା'ହେଲେ କ'ଣ ପ୍ରତ୍ୟେକ ଲୋକ ପ୍ରତ୍ୟେକଙ୍କ ସହିତ ଏପରି ଲୁଚକାଳି ଖେଳନ୍ତି?

ମୋ ଦୁନିଆ କେବଳ ଫୁଲ, ପବନ ଓ ଜଳ ବ୍ୟତୀତ ଆଉ କିଛି ହେଲେ ନଥିଲା। ମୁଁ ରାତ୍ରିରେ ଶୋଇ ସକାଳେ ଉଠିଲାବେଳେ ମୋତେ ଜଣାପଡୁଥିଲା— ସତେଯେପରି, ଫୁଲଗୁଡ଼ିକ ରାତିରେ ଶୋଇ ସକାଳର ପବନରେ ଦୋହଲି ଉଠୁଛନ୍ତି। ଫୁଲ ଯେପରି ଝଡ଼ଝଞ୍ଜା, ପାଣିପବନକୁ ଭୟକରେନାହିଁ, ମୁଁ ସେପରି ଆଦୌ ଭୟକରୁନଥିଲି। ମୋର ଧାରଣା ଥିଲା, ପାଣି ପରି ପବନରେ ମଧ୍ୟ ତୁମୁଳ ଆନ୍ଦୋଳନ ସୃଷ୍ଟିହୋଇପାରେ। କୁଳୁକୁଳୁନାଦିନୀ ଝରଣା ଦେଖି ମୋର ମନେହେଉଥିଲା— ସେ ମୋ'ରି ପରି ଗୁଣୁଗୁଣୁ ସ୍ୱରରେ ଗୀତ ଗାଇ ଗାଇ ତା ବାଟରେ ଅଗ୍ରଗତି କରିଚାଲିଛି। ମୁଁ ଦେବ, ଦାନବ, ଯକ୍ଷ, ଗନ୍ଧର୍ବଙ୍କ କାହାଣୀ ଶୁଣିବାକୁ ଭଲପାଉଥିଲି; କିନ୍ତୁ ସେମାନଙ୍କ କାହାଣୀରେ ବର୍ଣ୍ଣିତ ଦୁନିଆଠାରୁ ମୋ ଦୁନିଆ ଥିଲା ଭିନ୍ନଧରଣର। ସ୍ୱପ୍ନିଳ ପ୍ରଜାପତି, ଫୁଲ ଓ ତାରକା, ଆକାଶର ବଉଦକୁ ଦେଖି ନାଚିଉଠୁଥିବା ମୟୂର, ମୟୂରର ଧ୍ୱନିରେ ଉନ୍ମାଦିତ ବଉଦ, ବିକଶିତ ପୁଷ୍ପସମ୍ଭାରରେ ଆମୋଦିତ ଉଷା, ମ୍ଳାନ ପୁଷ୍ପରାଶିପର ବିଷାଦିତ ସନ୍ଧ୍ୟା. ବସନ୍ତର ବାସନ୍ତୀଲେ ଆହ୍ଲାଦିତ ତରୁଲତା, ବର୍ଷାର ସାନ୍ଦ୍ରତାରେ ରଙ୍ଗାୟିତ ଇନ୍ଦ୍ରଧନୁ, ଟପ ଟପ ଟପ ଶବ୍ଦରେ ପବନ ପରି ବେଗବାନ୍ ଘୋଟକ, ଦେବାଳୟରେ ନିନାଦିତ ଘଣ୍ଟା ନଦୀତଟର

ବିସ୍ତାରିତ ସୁକୋମଳ ବାଲୁକାମୟ ତଟଦେଶ ଏବଂ ପଲଙ୍କରେ ପଡ଼ିଥିବା ମୁଲାୟମ ଉପାଧାନ – ସବୁ ଏକତ୍ରିତ ହୋଇ ମୋର ରଙ୍ଗିନ୍ ଦୁନିଆକୁ ରଙ୍ଗିମାରେ ଭରଦେଇଥିଲେ। ସେହି ରାତି ପର୍ଯ୍ୟନ୍ତ ଜାଗତିକ ବିଶ୍ୱର ପ୍ରକୃତି ଓ ପୁରୁଷ ମୋ ଦୃଷ୍ଟିରେ ଥିଲେ ଏକାକାର। ଆଃ... କେଡ଼େ ସୁଖଦ, ଆଉ ସ୍ୱପ୍ନିଳ ଏଇ ସାଂସାରିକ ଅନୁଭବ! କେତେ ମାଦକଭରା! କେଡ଼େ ମଧୁମୟ!! ଥରେ ଆକାଶରେ ଉଡ଼ିବୁଲୁଥିବା ଶୁଭ୍ର ମେଘଖଣ୍ଡଗୁଡ଼ିକୁ ଦେଖି ମୋର ଧାରଣା ହୋଇଥିଲା– ସତେଯେପରି, ଆମ ଉଦ୍ୟାନ ବାଟିକାର ଶଶକମାନଙ୍କ ପ୍ରତିବିମ୍ବ ଆକାଶଦର୍ପଣରେ ପ୍ରତିବିମ୍ବିତ ହୋଇଛି।

ଥରେ ଦି'ପହର ସମୟରେ ଭୀଷଣ ଗରମ ପଡୁଥିଲା। ମୋର ସମୁଦାୟ ଶରୀର ଝାଳରେ ଭିଜିଯାଇଥିଲା; ତଥାପି ହଠାତ୍ ଖେଳିବାକୁ ମୋ ମନରେ ଏକ ଅଦ୍ଭୁତ ଆଗ୍ରହ ଜାତହେଲା। ମୁଁ ରାଜମହଲର ସେବକମାନଙ୍କୁ ଲୁଚି ବାହାରକୁ ବାହାରିପଡ଼ିଲି। ନିକଟରେ ଥିଲା ଗୋଟିଏ ସୁନ୍ଦର ପତ୍ରଗହଳ ବୃକ୍ଷ। ତା'ରି ଶୀତଳ ଛାୟାରେ ବସି, ମନ ଓ ଶରୀରର ସମସ୍ତ ଅବସାଦ ମେଣ୍ଟାଇନେଲି। ମନେହେଲା, ସତେଯେପରି ମୁଁ ମାଆଙ୍କର ଅଭୟ ଅଞ୍ଚଳରେ ନିର୍ଭୟରେ ହସି ହସି ଶୋଇରହିଛି। ସେଠାରୁ ଉଠିଆସିବାକୁ ମନ କହୁନଥିଲା। ଶେଷକୁ ମୁଁ ତା'ର ଗୋଟିଏ ଶାଖାକୁ ଦୁଇ ବାହୁର ବନ୍ଧନରେ ଭିଡ଼ିଧରିଲି।

ସେଦିନର ରାତ୍ରି ପର୍ଯ୍ୟନ୍ତ ଏହାହିଁ ଥିଲା ମୋର ଅନୁଭବର ଦୁନିଆ। ଏହିପରି ରମଣୀୟ ତଥା ଅଦ୍ଭୁତ ଥିଲା ମୋର ସ୍ୱପ୍ନ! କାହାରି ଉପରେ ରାଗିଗଲେ, ମର୍କଟ ପରି କୁଦିପଡ଼ି ଗୋଟିଏ ଗଛକୁ ଚଢ଼ିଯାଇ ଭଗବାନ୍‌ଙ୍କୁ ସ୍ମରଣ କରେ। ମନେହୁଏ, ମୋର ନିବେଦନ ଶୁଣି ପରମାତ୍ମା ସେଇ ଗଛରୁ ତଳକୁ ଓହ୍ଲାଇଆସି ଦୋଷୀକୁ ସମୁଚିତ ଦଣ୍ଡ ଦେଇଦେବେ, ଏଇଥିରେ ଥିଲା ମୋର ଅତୁଟ ଶ୍ରଦ୍ଧା।

କିନ୍ତୁ କେଡ଼େ ମଧୁମୟ ତଥା ଅଦ୍ଭୁତ ସେହି କଳିକାର ସଂସାର! ସେ କେବଳ ନିଜର ସଙ୍କୁଚିତ ଆବେଷ୍ଟନୀ ମଧ୍ୟରେ ରହିଥାଏ; ସେ ଶୁଣିନଥାଏ ଭ୍ରମରର ମାଦକଭରା ଗୁଞ୍ଜନ କିମ୍ବା ସେ ପୁଲକିତ ହୋଇଉଠେନାହିଁ ବାଳସୂର୍ଯ୍ୟର ସ୍ୱର୍ଣ୍ଣିମ କିରଣର ସ୍ପର୍ଶରେ। ଅନନ୍ତ ଆକାଶର ବିଶାଳତା ଆଡ଼କୁ ସେ କଳିକା କେବେହେଲେ ଦୃଷ୍ଟି ଦେଇନଥାଏ। ଦେବବିଗ୍ରହର କମନୀୟ ମୂର୍ତ୍ତି କିମ୍ବା ମନମୋହିନୀ ବିଳାସିନୀର ସୁକୋମଳ କେଶପାଶର କଳ୍ପନା ସୁଦ୍ଧା ସେ ସ୍ୱପ୍ନରେ କରିନଥାଏ। କିନ୍ତୁ... ସେ କଳିକା କେତେ ଦିନ ସେହିପରି ଭାବରେ ରହିପାରିବ? ଦିନେ ନା ଦିନେ ତାକୁ ବଡ଼ ହେବାକୁ ପଡ଼ିବ।

ସେଦିନର ସେହି ରାତ୍ରିଠାରୁ ମୁଁ ମଧ୍ୟ ସୁକୋମଳ କଳିକାରୁ ବିକଶିତ ପୁଷ୍ପରେ ପରିଣତ ହୋଇ ବଡ଼ ହେବାକୁ ଲାଗିଲି। ଦିନେ ନା ଦିନେ ଯତିକୁ ଖୋଜି ବାହାରକରିବାପାଇଁ ମୁଁ ସେହିଦିନ ରାତିରୁ ମନେ ମନେ ପ୍ରତିଜ୍ଞା କରିନେଲି। ତାକୁ ମା'ଙ୍କ ସହିତ ସାକ୍ଷାତ୍ କରାଇବାଲାଗି ନେଇଆସି କହିବି– "ତୁମେ ମୋର ବଡ଼ଭାଇ, ଏ ସମଗ୍ର ରାଜ୍ୟରେ ଅଧିକାର ତୁମର। ପିଲାଦିନେ ଯେପରି ଗୋଟିଏ ଜିନିଷକୁ ଦୁଇଭାଇ ମିଳିମିଶି ଖାଆନ୍ତି, ଆମେ ଦୁହେଁ ସେହିପରି ଆନନ୍ଦ ମନରେ ଏ ସାମ୍ରାଜ୍ୟର ପ୍ରତିପାଳନ ନ କରିବା କାହିଁକି?"

ଏହି ବିଚାରଧାରା ଫଳରେ କେବଳ ଯେ ମୋର ଶୈଶବ ବିତିଯାଇଥିଲା ତା' ନୁହେଁ; ମୁଁ ଛଅବର୍ଷର ରାଜକୁମାର ହୋଇଥିବାରୁ, ପିତା ମୋର ଶିକ୍ଷାଦୀକ୍ଷା ଲାଗି ଅନେକ କିଛି ଆୟୋଜନ କରି ବିଭିନ୍ନ ଗୁରୁଙ୍କୁ ନିଯୁକ୍ତ କରିଥିଲେ। ପ୍ରଥମରୁ ସେମାନଙ୍କୁ ମୁଁ ମୋର ଶତ୍ରୁ ବୋଲି ମନେକରୁଥିଲି, ବିଶେଷତଃ ମୋତେ ମଲ୍ଲବିଦ୍ୟା ଶିଖାଉଥିବା ଗୁରୁଙ୍କୁ ମୁଁ ରାକ୍ଷସ ବୋଲି ମନେକରୁଥିଲି। ତାଙ୍କର ଦୈତ୍ୟାକାର ଶରୀର, ପ୍ରାତଃକାଳରୁ ଉଠି ଆଖଡ଼ାଘରେ ମାଟି ଉପରେ ଧସ୍ତାଧସ୍ତିରେ ମୁଁ ଖୁବ୍ ବିରକ୍ତ ହୋଇଉଠୁଥିଲି। ପ୍ରଥମରୁ କେତେଦିନ ମୋ ଶରୀରରେ ଭୀଷଣ ପୀଡ଼ା ହେଉଥିଲା। ମୁଁ ମାଆଙ୍କ ଆଗରେ ଅଭିଯୋଗ କଲି; ମାତ୍ର ସେ ମୋତେ ରାଜାର କର୍ତ୍ତବ୍ୟ ସମ୍ବନ୍ଧରେ ବୁଝାଇ ଶାନ୍ତ କରାଇଲେ। ସେଦିନଠାରୁ 'ମୁଁ ରାଜା ହେବି' –ଏହି ମନ୍ତ୍ର ଜପ କରିବାରେ ଲାଗିଲି। ପ୍ରଥମେ ପ୍ରଥମେ ମୁଁ ମଲ୍ଲବିଦ୍ୟାରେ ହାରିଯାଉଥିଲି ଏବଂ ଏ ବିଦ୍ୟା ମୋ'ଦ୍ୱାରା ସମ୍ଭବ ନୁହେଁ ବୋଲି ଭାବି ହତାଶ ହୋଇପଡୁଥିଲି; କିନ୍ତୁ ମୋ ଗୁରୁଦେବ ମୋତେ ବରାବର ସାହସ ଦେଇ କହୁଥିଲେ– "ତୁମ ବୟସରେ ମୁଁ ମଧ୍ୟ ଲହୁଣିପିତୁଳା ପରି ନିତାନ୍ତ କୋମଳ ଥିଲି, କିନ୍ତୁ ଏବେ ଦେଖିଲ ମୋ ବାହୁକୁ– ଲୌହଦଣ୍ଡ ମଧ୍ୟ ଯା' ତୁଳନାରେ ମୁଲାୟମ୍ ଜଣାଯିବ! ସାତ-ଆଠ ବର୍ଷ ମଧ୍ୟରେ ଅନେକ ଗୁରୁଜନ, ମିତ୍ର ତଥା ପଠିତ ଗ୍ରନ୍ଥଗୁଡ଼ିକର ପ୍ରଭାବ ମୋ ଉପରେ ପଡ଼ିଲା।

ଚଉଦ ପନ୍ଦର ବର୍ଷ ବୟସର ଘଟଣା। ଗୋଟିଏ ଦର୍ପଣ ଆଗରେ ଛିଡ଼ାହୋଇ ମୋର ସୁନ୍ଦର ତଥା ବଳିଷ୍ଠ ଶାରୀରିକ ସୌନ୍ଦର୍ଯ୍ୟକୁ ମୁଁ ଅତୃପ୍ତ ଦୃଷ୍ଟିରେ ଦେଖେ। ମନେହୁଏ– ଦର୍ପଣରେ ପ୍ରତିବିମ୍ବିତ ବ୍ୟକ୍ତିର ସୁଦୃଢ଼ ଭୁଜଦଣ୍ଡକୁ ଧରି ଥରେ ଜୋର୍‌ରେ ହଲାଇଦେବାକୁ ଏବଂ ସେହି ବଳିଷ୍ଠ ଭୁଜକୁ ଉପାଧାନ କରି ଶୋଇପଡ଼ିବାଲାଗି ମଧ୍ୟ କମ୍ ଇଚ୍ଛା ହୁଏନାହିଁ। ସେତେବେଳେ ମୋର ମନେପଡ଼ିଗଲା ବୃତ୍ରାସୁରକୁ ବଧକରି ଇନ୍ଦ୍ରାଣୀଙ୍କ ବାହୁରେ ମସ୍ତକ ରଖି ଇନ୍ଦ୍ରଙ୍କର ଶୟନ ଦୃଶ୍ୟ ଥିବା ଚିତ୍ର ବିଷୟ।

ଏ ପ୍ରକାର କେତେ କେତେ କଳ୍ପନାବିଳାସର ମାଦକତା ଭରା ମଦିରାଠାରୁ କମ୍ ମାଦକ ନଥିଲା। ସେହି ମାଦକତାରେ ବୁଡ଼ିରହି ମୁଁ କେତେ ସମୟ ପର୍ଯ୍ୟନ୍ତ ଦର୍ପଣ ଆଗରେ ଛିଡ଼ାହୋଇରହେ, ମୁଁ ତାହା ଜାଣିପାରେନାହିଁ। ହଠାତ୍ କାହାର ଶବ୍ଦ ଶୁଣି ଚମକିପଡ଼ି ଦେଖେ, ମାଆ କହୁଥାନ୍ତି– ଓଃ... ପୁରୁଷମାନେ ମଧ୍ୟ ଦର୍ପଣ ଆଗରେ ଛିଡ଼ାହୋଇ ଘଣ୍ଟା ଘଣ୍ଟା ଧରି ନିଜ ଚେହେରା ଦେଖନ୍ତି! ମୋର ତ ଧାରଣା ଥିଲା କେବଳ ନାରୀମାନେ ନିଜର ସୌନ୍ଦର୍ଯ୍ୟ ନିରୀକ୍ଷଣ କରନ୍ତି ଦର୍ପଣ ଆଗରେ ଛିଡ଼ାହୋଇ ଏବଂ ନିଜ ରୂପର ଗର୍ବ ସେମାନଙ୍କର ଥାଏ ବୋଲି! ଆଃ... ଆମ ଯଯୁ ଏବେ ବଡ଼ହୋଇଗଲାଣି, ଏସବୁ ଦେଖିଲେ ସେ କ'ଣ ଭାବିବ...।"

ମୁଁ ମୁହଁ ବୁଲାଇ ଚାହିଁନଥିଲେ ମାଆ ଆହୁରି କ'ଣ କହିଚାଲିଥାଆନ୍ତେ; କିନ୍ତୁ ମୋତେ ଦେଖିପକାଇ 'ଓ... ମା...' –କହି ନିଜେ ଲଜ୍ଜିତ ହେବା ସଙ୍ଗେ ସଙ୍ଗେ ହସିଦେଇ ମୋ ପାଖକୁ ଆସି ମୋ ପିଠିରେ ହାତବୁଲାଇ କହିଲେ– "ଦେଖୁ ଦେଖୁ ମୋର ଯଯୁ କେଡ଼େ ବଡ଼ ପିଲାଟେ ହୋଇଗଲାଣି। ଯାଃ... ମୁଁ କ'ଣ କହୁଛି ଦେଖ, ମୁଁ ମୋ ପିଲାଟାକୁ ଖୁଣ୍ଟିପକାଉଛି! ତୁ ମୋ ଆଡ଼କୁ ପିଠିକରି

ଛିଡ଼ାହୋଇଥିଲୁ। ମୋତେ ଜଣାଗଲା ସତେଯେପରି, ମହାରାଜ ଦର୍ପଣ ଆଗରେ ଛିଡ଼ାହୋଇ...'' ସେ ହଠାତ୍ ଚୁପ୍ ହୋଇଗଲେ, ତାଙ୍କ ଆଖି ଛଳଛଳ ହୋଇଆସିଲା। ସେ ଅଶ୍ରୁଳ ନୟନରେ ମୋ ଆଡ଼କୁ ଚାହିଁ କହିଲେ– ''ଯା'ହେଉ, ଏବେ ମୋର ଗୋଟିଏ ଚିନ୍ତା ଦୂରହୋଇଗଲା।''

–''କି ଚିନ୍ତା ମାଆ ?''

–''ଆରେ... କେତେବର୍ଷ ବିତିଗଲାଣି, ସେ ସମ୍ବନ୍ଧରେ ତୋତେ କିଛିହେଲେ କହିପାରିଲିନାହିଁ; ଭିତରେ ଭିତରେ ମୋ କଳିଜାରେ ଘୁଣ ଲାଗିଯାଉଛି।''

–''ମା'! ତୁମେ ହସ୍ତିନାପୁରର ରାଜରାଣୀ, କୌଣସି ଦରିଦ୍ର ଋଷି କିମ୍ବା ହତଭାଗ୍ୟ ଦସ୍ୟୁର ପତ୍ନୀ ନୁହଁ– ତୁମର ପୁଣି ଚିନ୍ତା ?''

–''କିନ୍ତୁ ମୁଁ ମଧ୍ୟ ମମତାମୟୀ ମାଆ ଯଯୁ!''

–''କିଏ ମନାକରୁଛି ଯେ...? କିନ୍ତୁ ମୋରି ମାଆ!''

ମୁଁ ଜାଣିଶୁଣି 'ମୋରି' ଶବ୍ଦ ଉପରେ ଜୋର୍ ଦେଇ କହିଲାବେଳେ ମୋର ଦୃଷ୍ଟି ପଡ଼ିଲା ଦର୍ପଣରେ ପ୍ରତିବିମ୍ବିତ ମୋର ହୃଷ୍ଟପୁଷ୍ଟ ଶରୀର ଉପରେ। ସେଆଡ଼କୁ ଚାହିଁଦେଇ ପ୍ରଥମେ ମା' ହସିଦେଲେ ଏବଂ ତା'ପରେ ଗମ୍ଭୀର ହୋଇ କହିଲେ– ତା' ତ ସତ; କିନ୍ତୁ ଯାହାର ଗୋଟିଏ କଳସରେ ଥିବା ଅମୃତତକ ବିଷ ହୋଇଯାଇଛି, ଆଉ ଗୋଟିଏ କଳସର ଅମୃତକୁ ସେ କିପରି ଭରସା କରିପାରିବ ?''

ମା'ଙ୍କ କଥାରୁ ବେଶ୍ ଜଣାପଡୁଥିଲା ଯେ ସେ ଯତି ବିଷୟରେ କହୁଛନ୍ତି। ମୁଁ ଖୁବ୍ ଛୋଟ ଥିବାବେଳେ ମାଆ ଥରେ ତାଙ୍କର ହୃଦୟର ବ୍ୟଥା ମୋତେ ଶୁଣାଇଥିଲେ; କିନ୍ତୁ ସେତେବେଳେ ତାଙ୍କ ଦୁଃଖ ନିବାରଣ କରିବାର କୌଣସି ପ୍ରକାରର ପରିସ୍ଥିତିରେ ମୁଁ ନଥିଲି; କିନ୍ତୁ ଏଣିକି ମୁଁ ବଡ଼ହୋଇଗଲିଣି; ମଲ୍ଲବିଦ୍ୟା, ଧନୁର୍ବିଦ୍ୟା, ଅଶ୍ୱାରୋହଣ ଓ ଯୁଦ୍ଧକଳାରେ ପାରଗ ହୋଇଗଲିଣି। ଏଥର ଯତିକୁ ଖୋଜିବାଲାଗି ସମଗ୍ର ଆର୍ଯ୍ୟାବର୍ତ୍ତକୁ ହନ୍ତାଳିଦେବା ମୋ ପକ୍ଷରେ କଠିନ କାମ ନଥିଲା। ମୁଁ ମା'ଙ୍କୁ କହିଲି– ''ମାଆ! ତୁମେ ବାପାଙ୍କଠାରୁ ଅନୁମତି କରାଇଦିଅ, ମୁଁ ସମଗ୍ର ପୃଥିବୀ ଓଲଟପାଲଟ କରିଦେଇ ଯତିକୁ ଆଣି ତୁମ ପାଖରେ ପହଞ୍ଚାଇଦେବି।''

ମୋ କଥା ଶୁଣି ତାଙ୍କ ଓଠ ଥରିବାକୁ ଲାଗିଲା ଏବଂ ଆଖିପତା ଓଦା ହୋଇଆସିଲା। ଯତିପାଇଁ ତାଙ୍କ ହୃଦୟ ବାସ୍ତବିକ ତରଳିଯାଇଥିଲା। ପ୍ରକୃତରେ ଯତି ତାଙ୍କ ହୃଦୟକୁ ଏପରି ଭାବରେ ଚହଲାଇ ଦେଇଥିଲା ଯେ ତାଙ୍କ ଆଗରେ ଅନ୍ୟ କେହି, ବିଶେଷତଃ ପିତା ମଧ୍ୟ ସେ କଥା ମୁହଁ ଫିଟାଇ କହୁନଥିଲେ। ମା'ଙ୍କର ଅବସ୍ଥା ଏପରି ହୋଇଥିଲା ଯେ, ମନେହେଉଥିଲା ସତେଯେପରି, ଘୋଡ଼ା ପିଠିର ଜିନ୍ ଉପରୁ କେହି ତାଙ୍କୁ ଠେଲି ତଳକୁ ପକାଇଦେଇଛି, ତାଙ୍କର ବ୍ୟଥା ଉପରକୁ ଦେଖାଯାଉନାହିଁ ଏବଂ ସର୍ବାଙ୍ଗ ଅସହ୍ୟ ବ୍ୟଥାରେ ଭାଙ୍ଗିପଡୁଛି; ସେ ମୁହଁ ଖୋଲି କିଛି କହିପାରୁନାହାନ୍ତି। ସାତବର୍ଷ ପର୍ଯ୍ୟନ୍ତ ମୁଁ କେତେଜଣ ଗୁରୁଜନଙ୍କଠାରୁ ଶିକ୍ଷା ଲାଭ କରିଛି, କେତେଥର ରାଜପୁତ୍ର ଭାବରେ ଗର୍ବର ସହିତ ଶିକାରକୁ ଯାଇଛି, ନାନାପ୍ରକାର ମହୋତ୍ସବରେ ଅଭିମାନର ସହିତ ଭାଗନେଇଛି; କିନ୍ତୁ କୌଣସିଠାରେ

କେହିହେଲେ ଯତି ବିଷୟରେ ପଦେହେଲେ ମୁହଁ ଖୋଲି ମୋ' ଆଗରେ କହିବାର ସାହସ କରିନାହାନ୍ତି। ମୋର ଗୋଟିଏ ଭାଇ ଥିଲା, ସେ ବ୍ରହ୍ମର୍ଷି ହେବାର ଲାଳସାରେ ରାଜପ୍ରାସାଦ ତ୍ୟାଗ କରି ଘନଜଙ୍ଗଲକୁ ଚାଲିଯାଇଥିଲା – ଏକଥା ମୁଁ ପ୍ରାୟ ଭୁଲିଯାଇଥିଲି।

କିନ୍ତୁ ସେଦିନ ମା'ଙ୍କ ଆଗରେ ମୋର ଅତୀତର ସ୍ମୃତି ପୁଣି ସଜୀବ ହୋଇଉଠିଲା। ମୋ ଆଡ଼କୁ ଏକଲୟରେ ଚାହିଁ ମାଆ କହିଲେ – ''ଯଯୁ, ତୁ ଖୁବ୍ ଶୀଘ୍ର ବଡ଼ହୋଇଯାଇଛୁ, ତୋର ଶରୀର ମଧ ଖୁବ୍ ହୃଷ୍ଟପୁଷ୍ଟ ହୋଇଯାଇଛି। କଳା ଓ ଅନ୍ୟାନ୍ୟ ବିଦ୍ୟାରେ ତୁ ମଧ ସୁନିପୁଣ ହୋଇପାରିଛୁ। ଏଥର ତୋର ବିବାହ ସମ୍ପନ୍ନ କରିବାରେ ଆଉ କୌଣସି ଆପତ୍ତି ନାହିଁ। ତୋର ବିବାହ ହୋଇଗଲେ, ମୋର ଅବଶିଷ୍ଟ ଚିନ୍ତା ଆପେ ଆପେ ଦୂରହୋଇଯିବ। ମୁଁ ଆଜି ମହାରାଜାଙ୍କ ନିକଟରେ ଏ ବିଷୟରେ କଥାବାର୍ତ୍ତା ଆରମ୍ଭ କରିବି।''

ପିତା ଥିଲେ ଭିନ୍ନଧରଣର ବ୍ୟକ୍ତି। ସେ ଯତି ବିଷୟରେ କାହାରି ନିକଟରେ କେବେହେଲେ କିଛି କହୁନଥିଲେ କିମ୍ୱା କିଛି କାହାରିଠାରୁ ଶୁଣୁନଥିଲେ। କିନ୍ତୁ ଅନ୍ୟ ସମସ୍ତ ବିଷୟରେ ସେ ମାଆଙ୍କ କଥାକୁ ଆଦୌ ଟାଳିପାରୁ ନଥିଲେ। ମାଆଙ୍କର କୌଣସି ଇଚ୍ଛା ପ୍ରତି ସେ ଅବହେଳା ପ୍ରଦର୍ଶନ କରୁନଥିଲେ। ଥରେ ଜଣେ ଗୁରୁଦେବ, ମୋତେ କୌଣସି ଆଶ୍ରମରେ କିଛିଦିନ ରଖାଯିବା ଉଚିତ ବୋଲି ପରାମର୍ଶ ଦେଇଥିଲେ। ପିତା ତାଙ୍କୁ ଉତ୍ତର ଦେଇ କହିଥିଲେ – ''ଆପଣ ଠିକ୍ କହିଛନ୍ତି। ଗୋଟିଏ ବୃକ୍ଷର ସମୁଚିତ ବିକାଶକ୍ଷେତ୍ରରେ ବର୍ଷା ପରି ତୀବ୍ର ଆତପର ଆବଶ୍ୟକତା ମଧ ରହିଛି।''

ଏ କଥାବାର୍ତ୍ତା ମୋ' ସମ୍ମୁଖରେ ହୋଇଥିଲା। ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି। ମୋତେ ଯେଉଁଦିନଠାରୁ ମା'ଙ୍କ ଦୁଃଖ ବିଷୟରେ ଜଣାପଡ଼ିଲା, ସେହିଦିନଠାରୁ ଆଶ୍ରମଜୀବନ, ମୁନିଋଷିଙ୍କ କଠୋର ଜୀବନ, ସେମାନଙ୍କ ଲମ୍ୱ ଲମ୍ୱ ଦାଢ଼ି ନିଶ, ସେମାନଙ୍କ ପରିଧେୟ ବଲ୍‌କଳ, ବିଭୂତିଭୂଷିତ ଭୟଙ୍କର ଚେହେରା ପ୍ରଭୃତି ମୋ ପକ୍ଷରେ ନିତାନ୍ତ ଘୃଣାସ୍ପଦ ହୋଇଉଠିଥିଲା। ମୋର ଜ୍ଞାନ ହେବା ଦିନରୁ, ପ୍ରତିବର୍ଷ ପ୍ରାୟ ମୋ ମନରେ ମୁନିଋଷିଙ୍କ ପ୍ରତି ବିରକ୍ତିକର ଧାରଣା ସୃଷ୍ଟି ହେଉଥିଲା। ମୁଁ ଆଦୌ ଧାରଣା କରିପାରୁନଥିଲି ଯେ, କିପରି ଦେବାଧିଦେବ ଏପରି ଗୁଡ଼େ ଅବାଞ୍ଛିତ ଲୋକଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ, ଏମାନଙ୍କୁ ବର ବା ଅଭିଶାପର ଶକ୍ତି ପ୍ରଦାନ କରୁଛନ୍ତି! ମୋ ନିକଟରେ ଏହା ଏକ ଗୋପନୀୟ ଅଧ୍ୟାୟ ହୋଇ ରହିଗଲା। ମୋର ପ୍ରତ୍ୟେକ ଗୁରୁଜନ ସୌନ୍ଦର୍ଯ୍ୟ ତଥା ସାମର୍ଥ୍ୟର ଉପାସକ ହେବାଲାଗି ମୋତେ ଉପଦେଶ ଦେଇଛନ୍ତି; କିନ୍ତୁ ଆଶ୍ରମ-ଜୀବନରେ ଏ ଦୁଇଟି ଉପାସନା କୌଣସିଠାରେ ଦେଖାଯାଏନାହିଁ। ଆପେ ଆପଣାକୁ ଦଣ୍ଡଦେବା ଏଠାରେ ଥିଲା ପଞ୍ଚମ ବେଦ। କନ୍ଦମୂଳ ଥିଲା ସେଠାରେ ମିଷ୍ଟାନ୍ନ, ମନ୍ତ୍ରର ସଘୋଷ ଉଚ୍ଚାରଣ ଥିଲା ତର୍ଜନଗର୍ଜନ। ଶାଗପତ୍ରକୁ କାଟିବା ସେମାନଙ୍କର ମୃଗୟା, କୁଟୀର ଥିଲା ସେମାନଙ୍କର ରାଜପ୍ରାସାଦ ଏବଂ ସେଠାକାର ସ୍ତ୍ରୀମାନଙ୍କ ତୁଳନାରେ ଆମ ଦାସୀମାନେ ଥିଲେ ଅପ୍‌ସରା। ଏଇପରି ଏକ ଅଦ୍ଭୁତ ଆଶ୍ରମକୁ ହିଁ ମୋତେ ଯିବାକୁ ପଡ଼ିବ – ଏହି କଳ୍ପନାରେ ମୋର ଦେହ ଶୀତେଇଉଠି ମନ ଅଶାନ୍ତିରେ ଭରିଗଲା।

ପରଦିନ ପିତା ସେହି ଗୁରୁଦେବଙ୍କ ସହିତ ଆହୁରି କଥାବାର୍ତ୍ତା କରିବା ସମୟରେ ମୁଁ ଦ୍ୱାରର ଅନ୍ତରାଳରେ ଛିଡ଼ାହୋଇ ସବୁକଥା ଶୁଣିପାରିଲି। ପ୍ରଥମେ ତାଙ୍କ କଥା ଶୁଣି ମୋତେ ଖୁବ୍ ଡରଲାଗିଲା, କିନ୍ତୁ ପରମୁହୂର୍ତ୍ତରେ ପିତା କହିଲେ– ''ଯଯୁ କୌଣସି ଆଶ୍ରମକୁ ଯାଇ ରହୁ ଏହା ମୋର ଏକାନ୍ତ ଇଚ୍ଛା; କିନ୍ତୁ ମହାରାଣୀ ଏଥିରେ ଆଦୌ ରାଜି ନୁହଁନ୍ତି।''

ସେଦିନ ମାଆ ମୋତେ ଗୋଟିଏ ବିପଦରୁ ଉଦ୍ଧାର କରି ଆଜି ପୁଣି ବିବାହବନ୍ଧନରୂପକ ଆଉ ଗୋଟିଏ ବିପଦମୁହଁକୁ ଠେଲିଦେବାକୁ ଯାଉଛନ୍ତି କାହିଁକି? ବିବାହ ସମସ୍ତେ କରନ୍ତି, ମୋତେ ମଧ୍ୟ ଦିନେ ବିବାହ କରିବାକୁ ପଡ଼ିବ। କୌଣସି ଏକ ସୁନ୍ଦରୀ ରାଜକନ୍ୟା ମୋର ମହାରାଣୀ ହୋଇ ଆସିବ। ଅବଶ୍ୟ ଏସବୁ ଭାବନା ମୋ ମନରେ ବେଳେବେଳେ ଯେ ଉଠୁନଥିଲା ତା' ନୁହେଁ; କିନ୍ତୁ ସେହି ବିଚାରର ବୀଚିମାଳା ଉତ୍ତୁଙ୍ଗ ତରଙ୍ଗରେ ପରିଣତ ହୋଇନଥିଲା। ପ୍ରକୃତରେ କହିବାକୁ ଗଲେ– ସେପ୍ରକାର ଚିନ୍ତାଧାରା ଥିଲା ମୋ ମନର ସୁଖଦ କଳ୍ପନା।

ସାରାଦିନ ନାନାପ୍ରକାର କାର୍ଯ୍ୟରେ ଦେହ ଓ ମନକୁ ବ୍ୟସ୍ତରଖିବାକୁ ପଡୁଥିଲେ ମଧ୍ୟ ରାତ୍ରିର ନୀରବ କ୍ଷଣରେ ଶରୀର ସୁକୋମଳ ଶଯ୍ୟା ଉପରେ ମଧ୍ୟ ବିଶ୍ରାମ ପାଉନଥିଲା। ଦିନେ ଦିନେ ମୋ ନିଦ୍ରାଭଙ୍ଗ ହୋଇଯାଉଥିଲା ଏବଂ ମୁଁ ହଠାତ୍ ଶେଯ ଉପରେ ଉଠି ବସିପଡୁଥିଲି। ମୋର ତନ୍ଦ୍ରିଳ ଚକ୍ଷୁ ଆଗରେ ଭାସିଉଠିଥିଲା– ପରାକ୍ରମ, ଅଶ୍ୱମେଧ ତଥା ଦେବଦାନବଙ୍କ ଯୁଦ୍ଧ ପ୍ରଭୃତି କେତେ କ'ଣ! ମୋର ପ୍ରପିତାମହ ପୁରୁରବା ଥିଲେ ମହାପରାକ୍ରମଶାଳୀ ବୀର; ସେ ଅପହରଣକାରୀ ରାକ୍ଷସକୁ ପରାସ୍ତକରି ଦେବାଙ୍ଗନା ଅପ୍ସରା ଉର୍ବଶୀଙ୍କୁ ନିଜର ପ୍ରଣୟିନୀ କରିପାରିଥିଲେ। ତାଙ୍କ ଯଜ୍ଞକୁଣ୍ଡକୁ ପ୍ରଜ୍ୱଳିତ କରିବାଲାଗି ସେ ଗନ୍ଧର୍ବଲୋକରୁ ଆଣିଥିବା ଅଗ୍ନିତ୍ରୟଙ୍କ ମନ୍ଦିର ଆଜି ମଧ୍ୟ ହସ୍ତିନାପୁରର ଗୌରବଶ୍ରୀ ଅଭିବୃଦ୍ଧି କରୁଛି। ମୋର ପିତା ମଧ୍ୟ ପ୍ରପିତାମହଙ୍କ ପରି ଶୂରବୀର ରୂପେ ସୁଖ୍ୟାତି ଅର୍ଜନ କରିଥିଲେ; ସେ ନିଜର ଯୁବାବୟସରେ ଦସ୍ୟୁମାନଙ୍କୁ ସଂହାର କରି ମୁନିଋଷିମାନଙ୍କୁ ଅଭୟ ଦାନ କରିଥିଲେ। ଆଉ ମଧ୍ୟ ଶୁଣାଯାଏ– ସେ ଦେବତାମାନଙ୍କୁ ପରାସ୍ତ କରି ଇନ୍ଦ୍ରପଦ ଅଧିକାର କରିଥିଲେ। ଆମ ବଂଶର ସେହି ପ୍ରଖ୍ୟାତଯଶା ବୀରଦ୍ୱୟଙ୍କ ପରି, କିଛି ଅଦ୍ଭୁତ ତଥା ଅଲୌକିକ କାର୍ଯ୍ୟ କରିବାଲାଗି ମୋ ମନ ସର୍ବଦା ବ୍ୟାକୁଳ ହେଉଥିବା ସମୟରେ ମା' ମୋର ବିବାହ ଲାଗି ଆୟୋଜନ କରୁଛନ୍ତି!

ବିବାହ ବିଷୟରେ ମାଆଙ୍କର ଏ ବ୍ୟଗ୍ରତା ମୁଁ ଆଦୌ ପସନ୍ଦ କଲିନାହିଁ। ତେଣୁ ମୁଁ ହସି ହସି କହିଲି– ''ମାଆ! କହିବି, ତୁମେ କାହିଁକି ମୋତେ ଶୀଘ୍ର ବିବାହବନ୍ଧନରେ ବାନ୍ଧିଦେବାକୁ ଚାହୁଁଛ?''

–''ବୋହୂ ଦେଖିବାଲାଗି ମୁଁ ବ୍ୟାକୁଳ ହୋଇଗଲିଣି!''

–''ନା... ନା... ତୁମ ମନରେ ଭୟ ଜାତ ହେଉଛି– ମୁଁ କାଳେ ଯତି ପରି ସନ୍ନ୍ୟାସୀ ହୋଇ କୁଆଡ଼େ ଚାଲିଯିବି! ମୋତେ ଆହୁରି ଦୃଢ଼ଭାବରେ ବାନ୍ଧିରଖିବାଲାଗି ତୁମର ଆଉ ଦୁଇଟି ହାତର ଆବଶ୍ୟକତା ପଡୁଛି। କିନ୍ତୁ ମୁଁ ସତ୍ୟ କହୁଛି ମାଆ,

ପତ୍ନୀର ମୁଖାବଲୋକନରେ ଯେଉଁ ଶକ୍ତି ଅଛି, ତା'ଠାରୁ ଅଧିକ ଶକ୍ତିଶାଳୀ ମା'ର ସୁଖଦ ମମତାମୟୀ ହାତର ସ୍ପର୍ଶ !''

—''ଯାଃ . . . ତୁ ଭାରି ଜଣେ କୁହାଳିଆ ହେଲୁଣି !'' କହିଲେ ମାଆ ।

—''କିନ୍ତୁ ତୁମର ଏ ଧାରଣା ସଂପୂର୍ଣ୍ଣ ଅମୂଳକ !''

—''ନା ବାପା, ଏହା ମୋ ଶରୀରର ଛାୟା ପରି ସଂପୂର୍ଣ୍ଣ ସତ୍ୟ !''

—''ମୁଁ ଜଣେ ପରାକ୍ରମଶାଳୀ ବୀର ହେବାକୁ ଚାହେଁ— ସନ୍ନ୍ୟାସୀ ନୁହେଁ !''

—''କିନ୍ତୁ . . .''

—''କିନ୍ତୁ କ'ଣ ?''

—''ତୋର ଜନ୍ମ ସମୟରେ ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ତୋ'ର ଜାତକ ପ୍ରସ୍ତୁତ କରିଥିଲେ . . .''

ଖୁବ୍ ଉତ୍ସୁକତାର ସହିତ ମୁଁ ପଚାରିଲି— ''କ'ଣ ସେ କହିଥିଲେ ? ମୋ ଦ୍ୱାରା ଶତସହସ୍ର ରାକ୍ଷସ ବଧ ହେବେ ବୋଲି ସେ କହିଥିଲେ ତ ?''

—''ଦୁର୍ ପାଗଳା . . . !''

—''ସେ ଆଉ ମଧ୍ୟ ଲେଖିଥିବେ— ମୁଁ କେତେଗୋଟି ଅଶ୍ୱମେଧ ଯଜ୍ଞ କରିବି !''

ମାଆ ମୁଣ୍ଡହଲାଇ 'ନା' କହିଲାରୁ ମୁଁ ନିରାଶ ହୋଇ କହିଲି— ''ତା'ହେଲେ . . . ଆଉ କ'ଣ କହିଥିଲା ସେ ଜ୍ୟୋତିର୍ବିଦ୍ ?''

ମାଆଙ୍କର ମୁଖଭଙ୍ଗୀରୁ ଜଣାଗଲା— ଜ୍ୟୋତିର୍ବିଦ୍‌ଙ୍କ ଭବିଷ୍ୟବାଣୀ ମୋ ଆଗରେ ଖୋଲି କହିବାଲାଗି ସେ ଆଦୌ ନାରାଜ ନୁହଁନ୍ତି; କିନ୍ତୁ ମୁଁ ଜ୍ୟୋତିଷୀଙ୍କ ସମ୍ବନ୍ଧରେ ଏପରି ଅବମାନନା କଥା କହିଥିବାରୁ ସେ ବିଶେଷ ଖୁସିହୋଇନଥିଲେ । ସେ କିଛି ସମୟ ନୀରବ ରହିବାପରେ କହିଲେ, ''ଯଯୁ, ସେ ଜ୍ୟୋତିର୍ବିଦ୍ କହିଥିଲେ— ଏ ବାଳକ ଅତ୍ୟନ୍ତ ଭାଗ୍ୟଶାଳୀ । ଏ ରାଜା ହୋଇ ସମସ୍ତ ପ୍ରକାର ସୁଖର ଅଧିକାରୀ ହେଲେ ମଧ୍ୟ କେବେହେଲେ ସୁଖୀ ହୋଇପାରିବ ନାହିଁ ।''

ଜ୍ୟୋତିଷୀଙ୍କର ଏପରି ନିର୍ମମ ସତ୍ୟ ଗଣନା ଶୁଣିବାପରେ ମୁଁ ଅଟ୍ଟହାସ କରି ମନେ ମନେ ଭାବିଲି— ବୋଧହୁଏ ସେ ନିର୍ବୋଧ ଜ୍ୟୋତିଷୀ ନିଜ ଗଣନାର ଅର୍ଥ ନିଜେ ହୃଦୟଙ୍ଗମ କରିପାରିନଥିଲା । ସମସ୍ତ ପ୍ରକାର ସୁଖର ଅଧିକାରୀ ହୋଇ ଯେ ସୁଖଭୋଗ କରିନପାରେ, ସେ ବ୍ୟକ୍ତି ନିଶ୍ଚୟ ପାଗଳ କିମ୍ବା ଏପରି ବିଭ୍ରାନ୍ତିକର ଗଣନାକାରୀ ଜ୍ୟୋତିଷୀ ନିଶ୍ଚୟ ବାଚାଳ । ଶେଷକୁ ମୁଁ କହିଲି— ମାଆ ! ତୁମେ ଯଦି ଚାହିଁବ ତା'ହେଲେ ଭବିଷ୍ୟତରେ ମୁଁ ଗୋଟିଏ ନୁହେଁ, ଶହ ଶହ ବିବାହ କରିବି; କିନ୍ତୁ ବର୍ତ୍ତମାନ ମୋ ହୃଦୟରେ ପ୍ରଣୟର ପିପାସା ଅପେକ୍ଷା ପରାକ୍ରମର ଜ୍ୱାଳା ଅଧିକତର ପ୍ରଜ୍ୱଳିତ ହେଉଛି । ବର୍ତ୍ତମାନ ରଙ୍ଗମହଲର ବିଳାସ-ବ୍ୟସନରେ ବୁଡ଼ିରହିବାକୁ ମୋର ଆଦୌ ସ୍ପୃହା ଜାତ ହେଉନାହିଁ; ମୁଁ ଚାହେଁ ରଣଭୂମିରେ ଅପୂର୍ବ ଦକ୍ଷତା ଦେଖାଇ ଗୌରବ ଅର୍ଜନ କରେ । ଶୁଣିଲି, ଦେବଦାନବଙ୍କ ମଧ୍ୟରେ ପୁଣି ଯୁଦ୍ଧର ଆୟୋଜନ ଚାଲିଲାଣି । ମୋତେ ଏହି ଯୁଦ୍ଧରେ ଭାଗ ନେବାପାଇଁ ତୁମେ ସମସ୍ତ ପ୍ରକାର ସୁବିଧା ଦିଅ । ନୋହିଲେ ପିତାଙ୍କୁ କୁହ, ସେ ଅଶ୍ୱମେଧ,

ଯଜ୍ଞ ଆୟୋଜନ କରନ୍ତୁ! ଯଜ୍ଞଅଶ୍ୱକୁ ନେଇ ମୁଁ ସମଗ୍ର ଆର୍ଯ୍ୟାବର୍ତ୍ତରେ ବୀରତ୍ୱର ସହିତ ଭ୍ରମଣ କରିଆସେ। ସମୁଦାୟ ବୀରସମାଜରେ ବିଜୟୀ ହୋଇ ମୁଁ ଫେରିଆସେ, ତା'ପରେ ଯାଇ ମୁଁ ବିବାହ କରିବି।''

ଜଣେ ବୀରପୁରୁଷ ରୂପେ ଅପ୍ରତିଦ୍ୱନ୍ଦ୍ୱୀ ଗୌରବ ଅର୍ଜନ କରିବାର ମୋର ଅଦମ୍ୟ ପିପାସା ସମ୍ବନ୍ଧରେ ମାଆ ବେଶ୍ ଅନୁମାନ କରିପାରିଥିଲେ। ତେଣୁ ସେ ପିତାଙ୍କ ଆଗରେ ମୋ ବିବାହ ସମ୍ବନ୍ଧରେ ପ୍ରସ୍ତାବ ଉଠାଇନଥିଲେ।

ବିଦ୍ୟାର୍ଜନ ସମୟରେ ମୁଁ କେତେ ବଦଳିଯାଇଥିଲି, ଏ ଧାରଣା ମୋର ମଧ୍ୟ ନଥିଲା। ଆଖପାଖର ଭୂ-ଭାଗ ଦିନେ ଜଳଧାରାର ପ୍ରବାହରେ ନଦୀରେ ପରିଣତ ହୋଇଯାଏ; ଠିକ୍ ସେହିପରି ମୋର ଆଶାୟୀ ମନ ଖୁବ୍ ଶୀଘ୍ର ପରିବର୍ତ୍ତିତ ହେବାକୁ ଲାଗିଲା। ଧନୁର୍ବିଦ୍ୟାରେ ଦକ୍ଷତା ଅର୍ଜନ କରିବାକୁ ହେଲେ କିପରି ମନକୁ ଏକାଗ୍ର କରିବାକୁ ହୁଏ, ତା'ର ଆନନ୍ଦ ମୁଁ ପ୍ରଥମେ ଅନୁଭବ କରିଥିଲି। ପିଲାଦିନେ ରାଜମହଲର ଝରକା ଖୋଲିବାମାତ୍ରେ ଉଦ୍ୟାନର ବିକଶିତ ପୁଷ୍ପରାଜିକୁ ଦେଖି ମୁଁ ଆନନ୍ଦରେ ବିଭୋର ହୋଇଯାଉଥିଲି; କିନ୍ତୁ ଧନୁର୍ବାଣରେ ଲକ୍ଷ୍ୟସାଧନ କରିବା ସମୟରେ ମୁଁ ଠିକ୍ ତା'ର ବିପରୀତଭାବ ଅନୁଭବ କଲି। ବୋଧହେଲା – ସତେଯେପରି, ଆଖପାଖର ସମଗ୍ର ଦୁନିଆ ହଜିଯାଏ; ଠିକ୍ ସେହିପରି ମୋ ଆଗରେ ପ୍ରତିଭାତ ହୁଏ ସତେଯେପରି, ବିଶ୍ୱର ସମସ୍ତ ଅସ୍ତିତ୍ୱ ବିଲୁପ୍ତ ହୋଇଯାଇଛି। ନୀଳାଭ ପର୍ବତଶୃଙ୍ଗ, ସବୁଜ ରଙ୍ଗର ବୃକ୍ଷଲତା, ଆକାଶର ନୀଳିମା, କାହାରି କିଛିହେଲେ ଅସ୍ତିତ୍ୱ ନାହିଁ; ମୋ ଆଗରେ କେବଳ ରହିଛି ଗୋଟିଏ କୃଷ୍ଣବର୍ଣ୍ଣ ବିନ୍ଦୁ। ତାକୁଇ ଲକ୍ଷ୍ୟକରି ମୁଁ ମୋର ଶର ସନ୍ଧାନ କରିବି। ସେହି କୃଷ୍ଣବର୍ଣ୍ଣ ବିନ୍ଦୁହିଁ ଥିଲା ମୋର ଏକମାତ୍ର ଦୁନିଆ – ଏକମାତ୍ର ଲକ୍ଷ୍ୟ।

ଏହି ନୂତନ ଅନୁଭୂତିରେ ମୋର ଶରୀର ରୋମାଞ୍ଚିତ ହୋଇଉଠିଲା। ନିର୍ଜୀବ ବିନ୍ଦୁ ଉପରକୁ ଅବ୍ୟର୍ଥ ଶର ନିକ୍ଷେପ କରିବା ଥିଲା ମୋର ଏକମାତ୍ର ଧ୍ୟେୟ ଏବଂ ଅଚିରେ ମୁଁ ସେଥିରେ ପାରଙ୍ଗମ ହୋଇଗଲି। ତା'ପରେ ଆସିଲା ସଜୀବ ଜନ୍ତୁଙ୍କ ଉପରେ ଶରସନ୍ଧାନର ଅବସର। ଆଜି ଏତେ ବର୍ଷ ପରେ ମଧ୍ୟ ସେ କଥା ଭାବିଲେ ମୋର ମନ ଶୀତେଇଉଠେ। ଦିନେ ଦେଖିଲି ଏକ ଉନ୍ନତ ବୃକ୍ଷ ଉପରେ ଗୋଟିଏ ମାଈ ଚଢ଼େଇ ବସିଥାଏ; କେବଳ ଚଢ଼େଇଟିଏ ... ନା ... ନା ... ଗୋଟିଏ ଧ୍ୟାନମଗ୍ନା ତପସ୍ୱିନୀ! ପରକ୍ଷଣରେ ନୀଳ ଆକାଶର ଅନନ୍ତ ବିତାନରେ ସେ ଉଡ଼ିଯିବାକୁ ଚାହୁଁଥିଲା। ଜଣାପଡୁଥିଲା ସତେଯେପରି, ଆକାଶର ନୀଳବର୍ଣ୍ଣ ପଟ୍ଟଭୂମିରେ ଗୋଟିଏ ବର୍ଣ୍ଣାଢ଼୍ୟ ଆଲେଖ୍ୟ। ବୋଧହୁଏ କୌଣସି ନୀଡ଼ ମଧ୍ୟରେ ତା'ର ଛୋଟ ଛୋଟ ଛୁଆଗୁଡ଼ିକ ମା'ର ଫେରିଲା ବାଟକୁ ଚାହିଁରହିଥିବେ। ପିଲାଗୁଡ଼ିକଙ୍କର ଡେଣା ଅଙ୍କୁରି ନଥିବ। କିନ୍ତୁ ମୋତେ କିମ୍ୱା ମୋର ଶିକ୍ଷାଗୁରୁଙ୍କୁ ପକ୍ଷୀଟିର ପରିବାର ସମ୍ବନ୍ଧରେ ଧାରଣା କରିବାର ଅବସର ନଥିଲା। ମୁଁ ଧନୁର୍ବିଦ୍ୟାରେ ନିପୁଣ ହେବାକୁ ଚାହୁଁଥିଲି ଏବଂ ମୋ ଗୁରୁଦେବ ନିଜର ଦକ୍ଷତା ଦେଖାଇ ଜୀବିକାର୍ଜନ କରିବାକୁ ଇଚ୍ଛା କରୁଥିଲେ। ସେହି ସୁକୋମଳ ପକ୍ଷୀଟି ଉପରେ ଶରସନ୍ଧାନ କରିବା ସମୟରେ ମୋ ହୃଦୟରେ ଅସୀମ ବେଦନା ଜାତହୋଇଥିଲା। ସେଦିନ ପର୍ଯ୍ୟନ୍ତ

ପ୍ରକୃତି ସହିତ ମୋର ଅତୁଟ ସମ୍ପର୍କ କ୍ଷଣକରେ ତୁଟିଯାଇଥିଲା। ସେ ପର୍ଯ୍ୟନ୍ତ ବୋଧହୁଏ ମୋ ହୃଦୟରେ କେଉଁ ଗଭୀର କୋଣରେ ଉଙ୍କି ମାରୁଥିଲା ଗୋଟିଏ କବିର ଆତ୍ମା; କିନ୍ତୁ ସେହି ସମୟରେ ଯଶଲିପ୍ସା ମୋର ଭାବୁକ ଆତ୍ମାକୁ ଆତ୍ମସାତ୍ କରିଦେଲା।

ମୁଁ ଜଣେ ପ୍ରଖ୍ୟାତ ବୀର ହେଲି ସତ୍ୟ; କିନ୍ତୁ ଏତେ ସହଜରେ ନୁହେଁ। ମୋ ହୃଦୟ-ରାଜ୍ୟରେ ବିଚରଣ କରୁଥିବା ଗୋଟିଏ ଭାବୁକ-ଆତ୍ମାକୁ ହତ୍ୟାକରି ତା'ର ସମାଧି ଉପରେ ବୀରତ୍ୱ ସେହି ସିଂହାସନ ଅଧିକାର କରିବସିଲା। ସେଦିନର ଅବ୍ୟର୍ଥ ଲକ୍ଷ୍ୟ ତଥା ଶରସନ୍ଧାନର ପ୍ରଶଂସା ସେହିଦିନ ରାତିରେ ଖୁବ୍ କରାଗଲା। ରାଜପ୍ରାସାଦରେ ମୋ ମାଆ ଶିକାର ପକ୍ଷୀର ମାଂସ ନିଜେ ରନ୍ଧନ କରିଥିଲେ। ମାଂସକୁ ନାନାପ୍ରକାର ପ୍ରକ୍ରିୟାରେ ସୁସ୍ୱାଦୁ କରି ମୋତେ ଓ ପିତାଙ୍କୁ ପରିବେଷଣ କରିବାପରେ ନିଜେ ମଧ୍ୟ ଆନନ୍ଦରେ ଭୋଜନ କରିଥିଲେ। ବାପା ପ୍ରତି ଗ୍ରାସରେ ମୋତେ ନାନାପ୍ରକାର ପ୍ରଶଂସା କରିବା ସଙ୍ଗେ ସଙ୍ଗେ, ପରମ ତୃପ୍ତିର ସହିତ ମାଂସ ଭକ୍ଷଣ କରିଥିଲେ। କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ମୁଁ ପ୍ରତିଟି ଗ୍ରାସ ଅତି କଷ୍ଟରେ ଢୋକିପାରିଥିଲି। ରାତିରେ ଦୁଇ ଚାରିଥର ମୋ ନିଦ ଭାଙ୍ଗିଗଲା। ମୁଁ ଚମକିପଡ଼ି ଉଠିବସିଲି। ମୋତେ ଜଣାଗଲା— ସତେଯେପରି, ଶରବିଦ୍ଧା ପକ୍ଷିଣୀର ଆର୍ତ୍ତନାଦ ବାୟୁମଣ୍ଡଳ ଭେଦକରି ମୋ'ରି ଆଡ଼କୁ ତୀବ୍ର ବେଗରେ ଭାସିଆସୁଛି। ପୁଣି ଥରେ ସେ ପକ୍ଷୀ-ଶାବକଙ୍କ ଚେଁ... ଚାଁ... କଳରବ ଶୁଣି ମୋ ନିଦ ଭାଙ୍ଗିଗଲା। କେତେ ବର୍ଷ ତଳେ ଅନ୍ତର୍ଦ୍ଧାନ ହୋଇଯାଇଥିବା ପୁତ୍ରର ସ୍ମୃତିରେ ଯେଉଁ ମାତା ଆଜି ସୁଦ୍ଧା ତପ୍ତ ଅଶ୍ରୁଧାର ଗଡ଼ାଇ ବ୍ୟାକୁଳ ହେଉଛି, ସେହି ମାତା ଛୋଟ ଛୋଟ ଅସହାୟ ଶାବକଗୁଡ଼ିକଙ୍କ ମାତାର କରୁଣ ମୃତ୍ୟୁରେ ଉତ୍‌ଫୁଲ୍ଲିତା ହୋଇପାରୁଛି! ସେହି ନିରୀହ ପ୍ରାଣୀଟିକୁ ହତ୍ୟା କରିଥିବା ନିଜ ପୁତ୍ରର ବୀରତ୍ୱକୁ ପ୍ରଶଂସା କରୁଛି ଏବଂ ସେହି ମୃକ ମାତାର ମାଂସକୁ ଅତି ଆଗ୍ରହ ତଥା ଆନନ୍ଦରେ ଗ୍ରାସ କରିଚାଲିଛି! ସେ ଭୁଲିଯାଇଛି— ଏଇ ମାଂସର ପ୍ରତ୍ୟେକଟି କଣିକା ଶେଷ ପର୍ଯ୍ୟନ୍ତ ନିଜ ଶାବକ ଲାଗି ଛଟପଟ ହେଉଥିଲା। ଜୀବନଦର୍ଶନର ଏଇ ବିଚିତ୍ର ବିରୋଧାଭାସରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲି।

ପରଦିନ ଦେବଦର୍ଶନ ସାରି ରାଜପ୍ରାସାଦକୁ ଆସିଥିବା ବୃଦ୍ଧ ମନ୍ତ୍ରୀଙ୍କ ଆଗରେ ମୁଁ ମୋର ମନର ସନ୍ଦେହ ଉପସ୍ଥାପନ କଲି। ସେ ହସି ହସି ଉତ୍ତରଦେଲେ— "ଯୁବରାଜ! ବର୍ତ୍ତମାନ ଆପଣ ଅତ୍ୟନ୍ତ ଛୋଟ ପିଲା; କିନ୍ତୁ ଦୁନିଆର ଅନୁଭବରେ ମୋର କେଶ ପକ୍ୱ ହୋଇଗଲାଣି। ଏ ବୃଦ୍ଧର ଅନୁଭବପୂର୍ଣ୍ଣ ଉପଦେଶ ମନେରଖନ୍ତୁ— ମଣିଷ ମନର ଦୟା ଉପରେ ଏ ସଂସାର ଆଧାରିତ ନୁହେଁ; ବରଂ କହିବାକୁ ହେବ ଏ ଜଗତ୍ ତିଷ୍ଠିରହିଛି ବ୍ୟକ୍ତିତ୍ୱର ଭୁଜଦଣ୍ଡ ଉପରେ। ମଣିଷ କେବଳ ସ୍ନେହ ଓ ମମତାରେ ବଞ୍ଚିରହିପାରେନାହିଁ; ସେ ଅନ୍ୟକୁ ପରାଭୂତ କରି ନିଜର ଅସ୍ତିତ୍ୱ ବଞ୍ଚାଇ ରଖିପାରେ। ମଣିଷ ଏ ଦୁନିଆରେ ଯେତେ କିଛି ଆୟୋଜନ କରିଛି ବା କରୁଛି ସବୁ କେବଳ ନିଜର ଆତ୍ମପ୍ରସାଦ ଲାଗି, ନିଜର ଉପଭୋଗ ଲାଗି।

"ତ୍ୟାଗ, ପ୍ରେମ, ଦାନ ସବୁକିଛି ଦେବମନ୍ଦିରର ପୁରାଣପାଠ ତଥା ଭଜନ କୀର୍ତ୍ତନରେ ସୀମିତ; କିନ୍ତୁ ଜୀବନ ଗୋଟିଏ ଆତ୍ମୟରପୂର୍ଣ୍ଣ ମନ୍ଦିର ନୁହେଁ, ବରଂ ଏହା ଏକ କଠୋର ସମରଭୂମି।"

ତା'ପରେ ବୃଦ୍ଧ ଅମାତ୍ୟ କେତୋଟି ବୈଦିକ କାହାଣୀ ମୋତେ ଶୁଣାଇଲେ। ପଶୁପକ୍ଷୀଙ୍କର ମନୋମୋହକ ଗଳ୍ପ କହି ମୋତେ ଉପଦେଶ ଦେଇ କହିଲେ– "ଏ ଦୁନିଆ କେବଳ ସାମର୍ଥ୍ୟର ଅଧୀନ, କେବଳ ପ୍ରତିଯୋଗିତା ଫଳରେ ଦୁନିଆର ଅସ୍ତିତ୍ୱ ରହିପାରିଛି। ମଣିଷ ଯାହାକିଛି କରୁଛି, କେବଳ ନିଜର ଉପଭୋଗପାଇଁ କରୁଛି।" ସେହିଦିନଠାରୁ ମୁଁ ଶକ୍ତିର ଉପାସକ ହୋଇଗଲି ଏବଂ ମନେ ମନେ ସ୍ଥିର କରିନେଲି– କ୍ରୂରତା ଓ ଶୂରତା ଦୁଇଟି ଯମଜ ଭଗିନୀ।

ପିଲାଦିନେ ରାଜପ୍ରାସାଦରେ ମୁଁ ମୃଗଶାବକମାନଙ୍କ ସହିତ ଖେଳୁଥିଲି। ସେଇମାନେ ହିଁ ଥିଲେ ମୋର କ୍ରୀଡ଼ା-ସହଚର। ତା'ପରେ ମୁଁ ମୃଗମାନଙ୍କର ଶତ୍ରୁ ହୋଇଗଲି। ହରିଣୀର ଚପଳତା ଦେଖି ପିଲାଦିନେ ମୁଁ ତନ୍ମୟ ହୋଇଯାଉଥିଲି, ତା'ପରେ ସେମାନଙ୍କ ଚପଳତା ମୋର କ୍ରୋଧର କାରଣ ହୋଇଥିଲା। ମାଆଙ୍କ କକ୍ଷର ଦ୍ୱାରଦେଶରେ ମୁଁ ପିଲାଦିନେ ହରିଣୀର ବକ୍ରିମ ଗତି ତଥା ଚିତ୍ରିତ ଶରୀରର ଗୋଟିଏ ବଙ୍କାଟେଢ଼ା ଚିତ୍ର ଅଙ୍କନ କରିଥିଲି। ତା'ପରେ ସେହି ଚିତ୍ରଟିକୁ ମୁଁ ହରିଣର ରକ୍ତରେ ରଞ୍ଜିତ କରିଦେଲି। ଥରେ ମାଆଙ୍କଦ୍ୱାରା ପାଳିତା ହରିଣୀର ପିଠିରେ ଗୋଟିଏ ବଡ଼ ଘାଆ ହୋଇଗଲା। ସେ ଘାଆ ଉପରେ ମାଛି ବସିଲେ ସେ ଅତ୍ୟନ୍ତ ବ୍ୟାକୁଳ ହୋଇଉଠୁଥିଲା। ପିତାଙ୍କ ନିକଟରେ ଥିବା ମୟୂରପୁଚ୍ଛ ପଙ୍ଖାଟି ଧରି ମୁଁ ଘଣ୍ଟା ଘଣ୍ଟା କାଳ ବିଞ୍ଚି ସେହି ହରିଣୀ ପିଠିରୁ ମାଛିମାନଙ୍କୁ ଘଉଡ଼ାଇଦେଉଥିଲି। ପରବର୍ତ୍ତୀ କାଳରେ ହରିଣୀମାନଙ୍କ ଶରୀର ସହିତ ମୋର ସମ୍ପର୍କ ଥିଲା ଅନ୍ୟ ଧରଣର, ମୁଁ ଶିକାର କରି ଆଣିଥିବା ହରିଣୀର ଚମଡ଼ା ବାହାରକରି; ତାକୁ ସିଝାଇ ଶୁଖାଇ ମୋତେ ସେବକମାନେ ଦେଲେ ଯାଇ ମୋ ମନରେ ଆନନ୍ଦ ଜାତ ହେଉଥିଲା। ଅତ୍ୟନ୍ତ ଅଭିମାନର ସହିତ ମୁଁ ସେହି ମୃଗଚର୍ମ ଉପରେ ହାତ ବୁଲାଉଥିଲି; ତା'ର ସୁକୋମଳ ସ୍ପର୍ଶରେ ମୋ ମନ ମଧ୍ୟରେ ଏକପ୍ରକାରର ଆତ୍ମବଡ଼ିମାର ସ୍ପର୍ଦ୍ଧା ଜାତହେଉଥିଲା। ଶରାଘାତରେ ହରିଣୀର ବ୍ୟାକୁଳତା, ଶେଷ ନିଃଶ୍ୱାସ ତ୍ୟାଗ କରିବା ସମୟରେ ତା'ର ସ୍ଥିରଦୃଷ୍ଟି, ଶିଥିଳ ହୋଇଆସୁଥିବା ତା'ର କରୁଣ କ୍ରନ୍ଦନ, ଆଘାତ ସ୍ଥାନରୁ ଛୁଟୁଥିବା ରକ୍ତର ଫୁଆରା ଆଦି କେବେହେଲେ ମୋତେ ବିବ୍ରତ କରିନାହିଁ। ମୁଁ ସେହି ମୃଗଚର୍ମଗୁଡ଼ିକୁ ନେଇ ମୋର ଗୁରୁଜନମାନଙ୍କୁ ଉପହାର ଦେଉଥିଲି ଏବଂ ସେମାନେ ମୋ ଲକ୍ଷ୍ୟଭେଦର କୌଶଳ ମୁକ୍ତକଣ୍ଠରେ ବ୍ୟାଖ୍ୟାନକରି ମୋତେ ଅତ୍ୟନ୍ତ ପ୍ରଶଂସା କରୁଥିଲେ।

ମୋ ବୀରତ୍ୱର ପରିଚୟ ଲାଗି ହଠାତ୍ ଗୋଟିଏ ଅବସର ଆସିଗଲା। କେବେ କେବେ ନାରଦ ପ୍ରଭୃତି ମହର୍ଷିମାନେ ଆସି ଦିନକୁଦିନ ବଢୁଥିବା ଦେବଦାନବଙ୍କ କଳହ ସମ୍ବନ୍ଧରେ ଆଲୋଚନା କରୁଥିଲେ। ସେପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରେ ଯୁଦ୍ଧ ଘୋଷଣା କରାଯାଇନଥିଲା; କିନ୍ତୁ ଉଭୟପକ୍ଷ ସମୟସମୟରେ ମୁହାଁମୁହିଁ ହୋଇଯାଉଥିଲେ। ଏହିପରି ଏକ ଅବସରରେ ଦେବତାମାନଙ୍କ ପକ୍ଷରୁ ଅସୁରମାନଙ୍କୁ ପରାଭୂତ କରି,

ପ୍ରଜାମାନଙ୍କ ଶ୍ରଦ୍ଧାଭାଜନ ହେବାଲାଗି ମୋ ମନରେ ଖୁବ୍ ଆଗ୍ରହ ଜାତହେଉଥିଲା; କିନ୍ତୁ ପିତା ରାକ୍ଷସମାନଙ୍କ ପରି ଦେବତାମାନଙ୍କୁ ମଧ୍ୟ ଘୃଣା କରୁଥିଲେ। ସେ ସବୁବେଳେ କହୁଥିଲେ– "ବୃଷପର୍ବା ଯଦି ଇନ୍ଦ୍ରଙ୍କୁ ବନ୍ଦୀ କରି ନିଜ ରାଜପ୍ରାସାଦର ଝାଡୁଦାର ରୂପେ ନିଯୁକ୍ତ କରେ, ତଥାପି ମୁଁ ତୋତେ ଇନ୍ଦ୍ରଙ୍କର ସାହାଯ୍ୟ ଲାଗି ଅନୁମତି ଦେବିନାହିଁ।" କିନ୍ତୁ ପିତା କାହିଁକି ଯେ ଇନ୍ଦ୍ର ଓ ଦେବତାମାନଙ୍କ ବିରୁଦ୍ଧରେ ମତ ପୋଷଣ କରୁଥିଲେ, ମୁଁ ଯେତେ ଚେଷ୍ଟା କଲେ ମଧ୍ୟ ଜାଣିପାରୁନଥିଲି। ଏ ସମ୍ବନ୍ଧରେ ମୁଁ ବୃଦ୍ଧ ଅମାତ୍ୟଙ୍କୁ କେତେଥର ଖୋଳିତାଡ଼ି ପଚାରିଛି, କିନ୍ତୁ ସେ ପ୍ରତ୍ୟେକଥର କହନ୍ତି– "ଦୁନିଆଁର ପ୍ରତ୍ୟେକ ବିଷୟ ମଣିଷକୁ ଠିକ୍ ସମୟରେ ହିଁ ଜଣାପଡ଼ିଥାଏ! ବୃକ୍ଷର ପତ୍ର ସହିତ ଫୁଲ ଓ ଫଳ ଲାଗି ରହିନଥାଏ।" ଏପରି ଅବସ୍ଥାରେ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ସାହସିକ କାର୍ଯ୍ୟଦ୍ୱାରା ମୋର ମନୋବାଞ୍ଛା ପୂରଣ କରିବାଲାଗି ମୁଁ ଚିନ୍ତାକରିଥିଲି। ଭାବୁଥାଏ– ଯାଉଛି, ଶିକାର କରିବା ଉଦ୍ଦେଶ୍ୟରେ ସିଧା ହିମାଳୟର ପାଦଦେଶ ପର୍ଯ୍ୟନ୍ତ ଅଗ୍ରସର ହୋଇଯିବି; ସେଠାରେ ନାନାପ୍ରକାର ପଶୁ ଶିକାର କରିବି। ପୁଣି ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳକୁ ଯାଇ, ସେଠାକାର ଜଙ୍ଗଲରେ ସ୍ୱଚ୍ଛନ୍ଦରେ ବୁଲୁଥିବା ମଦମତ୍ତ ହସ୍ତୀମାନଙ୍କୁ ଆୟତ୍ତକୁ ଆଣିବି। ଜାଣିଥିଲି– ପୂର୍ବାଞ୍ଚଳରେ ଅନେକ ଦନ୍ତାବଳ ହସ୍ତୀ ଜଙ୍ଗଲରେ ଅଛନ୍ତି ଏବଂ ମୁଁ ମଧ୍ୟ ସେ ପର୍ଯ୍ୟନ୍ତ କୌଣସି ହସ୍ତୀ ଶିକାର କରିନଥିଲି। ସେଠାରେ ଏକ, ଦୁଇ, ତିନି, ଚାରି କିମ୍ବା ବହୁସଂଖ୍ୟକ ହସ୍ତୀ ଶିକାର କରାଯାଇପାରେ। ସେମାନଙ୍କର ଲମ୍ବ ଲମ୍ବ ସୁନ୍ଦର ଦାନ୍ତଗୁଡ଼ିକ ଆଣି ମା'ଙ୍କୁ ଉପହାର ଦେଇ କହିବି . . .।

କିନ୍ତୁ ମାଆ ଏ ପର୍ଯ୍ୟନ୍ତ ମୋତେ ଗୋଟିଏ ଦୁଧଖିଆ ଛୋଟପିଲା ବୋଲି ଭାବୁଛନ୍ତି। ପିତା ତାଙ୍କର ପ୍ରତ୍ୟେକ କଥାକୁ ମାନିଯାଉଥିବାରୁ ଭୂ-ଗର୍ଭରେ ଗଚ୍ଛିତ ମଣି-ମାଣିକ୍ୟ ପରି ମୋର ସମସ୍ତ ଆଶା ତଥା ଉତ୍ସାହରେ ତୁଷାରପାତ ହେଉଥିଲା। ସେଭଳି ଆଶା ଓ ଉତ୍ସାହର ମୂଲ୍ୟ କ'ଣ ?

ରାଜପ୍ରାସାଦରେ ମୋର ଶରୀର ସୁରକ୍ଷା ତଥା ରାଜପୁତ୍ର ଭାବରେ ମୋର ମାନମର୍ଯ୍ୟାଦା ଓ ଆଡ଼ମ୍ବରରେ ମୁଁ ବନ୍ଦୀହୋଇ ରହିଥିଲି। ସେହି ପ୍ରଶଂସାତ୍ମକ ଆବେଷ୍ଟନୀ ମଧ୍ୟରୁ କିପରି ଉଦ୍ଧାର ପାଇବି, ଦିନରାତି ସେହି ଚିନ୍ତାରେ ବିବ୍ରତ ହୋଇଉଠିଲି। ହଠାତ୍ ଏହି ସମୟରେ ଗୋଟିଏ ସ୍ୱର୍ଣ୍ଣିମ ଅବସର ଆପଣାଛାଏଁ ଆସି ମୋ ପାଦତଳେ ପହଞ୍ଚିଗଲା।

ନଗରଦେବତାଙ୍କ ବାର୍ଷିକ ଉତ୍ସବ ଆସି ଉପସ୍ଥିତ ହେଲା। ସେହି ଉତ୍ସବରେ ଯୋଗ ଦେବାଲାଗି ଦୂରଦୂରାନ୍ତରୁ କେତେ ଲୋକ ଆସି ଉପସ୍ଥିତ ହେଉଥିଲେ। ସେ ସମୟରେ ହସ୍ତିନାପୁର ଲୋକାରଣ୍ୟ ହୋଇଯାଉଥିଲା। ଗୀତ, ନାଚ୍, ପାଲା, କୀର୍ତ୍ତନ, ପୁରାଣ, ପ୍ରବଚନ, ଭଜନ, ପୂଜନ, ନାରୀ-ପୁରୁଷଙ୍କର ବିଭିନ୍ନ ଖେଳକୁଦ, ବିଭିନ୍ନ ପ୍ରକାରର ଯାତ୍ରାତାମସା ଆଦିର ଏପରି ଆଡ଼ମ୍ବରମୟ ବାତାବରଣ ସୃଷ୍ଟିହୁଏ ଯେ, ସେହି ଦଶଦିନକାଳ କିପରି ମୁହୂର୍ତ୍ତକ ମଧ୍ୟରେ ବିତିଯାଏ ଜଣାଯାଏନାହିଁ।

ଏ ବର୍ଷର ଆୟୋଜନ ମଧ୍ୟରେ ସେନାପତି ଗୋଟିଏ ନୂତନ ଖେଳର ବ୍ୟବସ୍ଥା

କରିଥିଲେ। ସେ ଖେଳର ଆୟୋଜନ ଉତ୍ସବର ଶେଷଦିନ ଲାଗି ନିର୍ଦ୍ଦିଷ୍ଟ ହୋଇଥିଲା। ଖୁବ୍ ସମ୍ଭବତଃ ସାହସୀ ତଥା କୌଶଳୀ ସୈନିକମାନଙ୍କୁ ଉତ୍ସାହିତ ତଥା ପୁରସ୍କୃତ କରିବାଲାଗି ସେନାପତି ଏହି ଖେଳର ଆୟୋଜନ କରିଥିଲେ। ସେ ଖେଳ ହେଉଛି – ଗୋଟିଏ ବିଶାଳକାୟ ବେଗବାନ୍ ଘୋଡ଼ାକୁ ମଦ୍ୟପାନ କରାଇ ଗୋଲାକାର ପଡ଼ିଆରେ ଛାଡ଼ିଦିଆଯିବ। ତା' ପିଠିରେ ଲଗାମ, ଜିନ୍, ରେକାବ୍ କିଛିହେଲେ ନଥିବ। ସେ ମତୁଆଲା ହୋଇ ଖୁବ୍ ଜୋର୍‌ରେ ଦୌଡୁଥିବା ସମୟରେ ଖେଳାଳି ପଡ଼ିଆର ଯେକୌଣସି ସ୍ଥାନରେ ତାକୁ ଅଟକାଇ ତା' ଉପରେ ବସିପଡ଼ିବ ଏବଂ ଗୋଲାକାର ପଡ଼ିଆରେ ପାଞ୍ଚଥର ଚକ୍‌କର ମାରିବାପରେ ଦୌଡୁଥିବା ଘୋଡ଼ା ଉପରୁ କୁଦିପଡ଼ି ଚାଲିଆସିବ। ପ୍ରତ୍ୟେକ ଖେଳାଳିଙ୍କପାଇଁ ନୂତନ ଘୋଡ଼ାର ବ୍ୟବସ୍ଥା କରାଯିବାର ସର୍ତ୍ତ ରଖାଯାଇଥିଲା।

ଏ ଖେଳ ମୋତେ ଖୁବ୍ ଭଲଲାଗିଲା। କିନ୍ତୁ ଏହା ଥିଲା ସାଧାରଣ ସୈନିକମାନଙ୍କପାଇଁ; ସେଥିରେ ଯୁବରାଜ ଭାଗ ନିଅନ୍ତୁ କେହି ପସନ୍ଦ କରିନଥାନ୍ତେ। ସେଭଳି ଏକ ଉନ୍ମାଦ ତଥା ଉତ୍ସାହବର୍ଦ୍ଧକ ଖେଳ ଚାଲିଥିବା ସମୟରେ ମୁଁ ଅତୃପ୍ତ କାମନା ନେଇ ସତୃଷ୍ଣଦୃଷ୍ଟିରେ ଚାହିଁ ପିତାମାତାଙ୍କ ପାଖରେ ବସିଥିଲି। ଚାରୋଟି ଘୋଡ଼ା ପଡ଼ିଆରେ ଦୌଡୁଥିଲେ। ସେମାନଙ୍କ ଉପରେ ବସିଥିବା ସାହସୀ ଖେଳାଳିମାନେ ଚାରିଥର ଚକ୍‌କର ପୂର୍ଣ୍ଣ କରିବାମାତ୍ରେ ପଞ୍ଚମଥର ବେଳକୁ କନ୍ଦୁକ ପରି ସଓ୍ୱାରକୁ ଫିଙ୍ଗିଦେଇ ଘୋଡ଼ାମାନେ ଆଗେଇଗଲେ। ଏଥର ଆସିଲା ପଞ୍ଚମ ଘୋଡ଼ାର ପାଳି। ସେ ଘୋଡ଼ାକୁ ଦେଖି ମୁଁ ସ୍ତବ୍ଧ ହୋଇ ରହିଗଲି। ମନେହେଲା, ସତେ ଯେପରି ବିଶାଳକାୟ ଗୋଟିଏ ଦୈତ୍ୟ ସାହସୀ ବୀରର ସମ୍ମୁଖୀନ ହେବାଲାଗି ଆଗେଇ ଆସୁଛି। ତା'ର ତେଜିୟାନ୍ ଆଖିରୁ ନିଆଁହୁଳା ବାହାରିଲାପରି ମନେହେଉଥିଲା ଏବଂ ନାକପୁଡ଼ା ଫୁଲି ସେ ଭୟଙ୍କର ଦେଖାଯାଉଥିଲା। ତା'ର ମଦମତ୍ତ ଚାଲିରେ ଥିଲା ଲୋଭାଣିଆ ଆକର୍ଷଣୀୟ ଶକ୍ତି। ତାକୁ ଦେଖିବାମାତ୍ରେ ସମସ୍ତ ଜନତା ହତପ୍ରଭ ହୋଇଗଲେ। ପ୍ରତ୍ୟେକଙ୍କ ଦୃଷ୍ଟିରେ ଥିଲା ଭୟମିଶ୍ରିତ ଏକ ଆଶ୍ଚର୍ଯ୍ୟ ଭାବ। ଛଅଜଣ ସେବକ ସେ ଘୋଡ଼ାକୁ ବାନ୍ଧି ପଡ଼ିଆ ମଧ୍ୟକୁ ଆଣୁଥିଲେ ମଧ୍ୟ, ସେ ଆୟତ୍ତ ହୋଇପାରୁନଥିଲା ଏବଂ ତୀବ୍ର ହ୍ରେଷାରବ କରିବା ସଙ୍ଗେ ସଙ୍ଗେ, ନିଜ ଟାପୁରେ ଧୂଳି ଫିଙ୍ଗି ସେବକମାନଙ୍କୁ ଅସ୍ତବ୍ୟସ୍ତ କରିଦେଉଥିଲା। ବେଳେବେଳେ ସେ ଖୁବ୍ ଆବେଗର ସହିତ ମୁଣ୍ଡ ଉଠାଇଦେଉଥିଲା। ସେଥିରୁ ମନେହେଉଥିଲା, ସତେଯେପରି ସେ କହୁଛି ମୁଁ ତୁମମାନଙ୍କ ଇଚ୍ଛାର ଦାସ ନୁହେଁ। ସେ ବେଳେବେଳେ ଜୋର୍‌ରେ ଗର୍ଦ୍ଦନ ଦୋହଲାଇଦେଲାବେଳେ ତା'ର କେଶଗୁଡ଼ିକ ଅସ୍ତବ୍ୟସ୍ତ ହୋଇପଡୁଥିଲା ଏବଂ ମନେହେଉଥିଲା ସତେଯେପରି, କୌଣସି ମହର୍ଷି କ୍ରୁଦ୍ଧ ହୋଇ ଅଭିଶାପ ଦେବାବେଳେ ତାଙ୍କର ଜଟାଜୂଟ ବିପର୍ଯ୍ୟସ୍ତ ହୋଇପଡ଼ିଛି। ତାକୁ ଦେଖିବାମାତ୍ରେ ମୋର ମନ ଉନ୍ମାଦନାରେ ପୂର୍ଣ୍ଣ ହୋଇଗଲା ଏବଂ ବାହୁଯୁଗଳରେ ସ୍ଫୁରଣ ଆରମ୍ଭ ହୋଇଗଲା। ମୁଁ ଆଉ ମୋର ବ୍ୟଗ୍ର ମନକୁ ଆୟତ୍ତ କରିପାରିଲିନାହିଁ। ଅଜ୍ଞାତସାରରେ ମୁଁ ମୋର ଦୁଇପାଦ ଭୂମି ଉପରେ କଚାଡ଼ିବାକୁ ଲାଗିଲି ଏବଂ ମୋର ପ୍ରତ୍ୟେକ ରୋମମୂଳ ଟାଙ୍କୁରିଉଠି ଉଚ୍ଚ ଫୁଆରାର ଜଳଧାରା ପରି ମୋ' ମନ ଚଞ୍ଚଳ ହେବାକୁ ଲାଗିଲା।

ମୁଁ ମା'ଙ୍କ ଆଡ଼କୁ ଲକ୍ଷ୍ୟକଲି– ତାଙ୍କ ଆଖିରେ ଭୟର ମୂର୍ତ୍ତିମାନ୍ ସ୍ୱରୂପ ଝଲସିଉଠୁଥିଲା। ମା' ବାପାଙ୍କ ଆଡ଼କୁ ଚାହିଁ କହିଲେ– ''ଏ ଭୟଙ୍କର ଘୋଡ଼ାଟାକୁ ଏଠାରୁ ନେଇଯିବା ଲାଗି ଆଦେଶ ଦିଅନ୍ତୁ। ଏହାର ଚେହେରା ଅତି ଭୟଙ୍କର ଦେଖାଯାଉଛି। କାଳେ କୌଣସି ଦୁର୍ଘଟଣା ଘଟିଯାଇପାରେ! ବୃଥାଟାରେ ଏ ଉତ୍ସବର ଶେଷ ଦିନଟାରେ ଅମଙ୍ଗଳ ଘଟିବ।''

ବାପା ହସି ହସି କହିଲେ– ''ମହାରାଣି! ପୁରୁଷ କେବଳ ସାମର୍ଥ୍ୟର ପ୍ରଦର୍ଶନ ଲାଗି ଜନ୍ମହୋଇଛି।'' ପିତାଙ୍କର ସେହି ଉତ୍ସାହପୂର୍ଣ୍ଣ କଥାରେ ମୋ'ର ହୃଦୟ ଆହ୍ଲାଦିତ ହେବାକୁ ଲାଗିଲା। ଚକ୍ଷୁ ବୁଜିଦେଇ ମୁଁ ବାପାଙ୍କର ସେହି ଓଜସ୍ୱିନୀ ବାଣୀକୁ ହୃଦୟରେ ଚିନ୍ତାକରି ଉତ୍‌ଫୁଲ୍ଲ ହୋଇଉଠିଲି। ହଠାତ୍ ଜନତା ମଧ୍ୟରୁ ଏକ ଭୟଙ୍କର ଶବ୍ଦ ଉଠି ମୋର ତନ୍ଦ୍ରା ଭାଙ୍ଗିଦେଲା। ସେହି ଗୋଲାକାର ପଡ଼ିଆର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସେହି ଭୟମିଶ୍ରିତ ଧ୍ୱନି ପ୍ରତିଧ୍ୱନିତ ହେବାକୁ ଲାଗିଲା। ମୁଁ ଆଖି ଖୋଲି ଦେଖିଲି... ସେହି ଭୟଙ୍କର ଘୋଡ଼ା ଉପରେ ସୱାର ହେବାଲାଗି ଜଣେ ସାହସୀ ସୈନିକ ଚେଷ୍ଟାକରି ବିଫଳ ହୋଇଯାଇଛି। ସେହି ସୈନିକକୁ ଦୂରକୁ ଫିଙ୍ଗିଦେଇ ଘୋଡ଼ା ତୀବ୍ର ବେଗରେ ଛୁଟିଯାଉଥିଲା। ତା' ପରେ ପରେ ଦ୍ୱିତୀୟ, ତୃତୀୟ, ଚତୁର୍ଥ– ଏପରି ଅନେକ ସୈନିକ ଆଗେଇଆସିଲେ; କିନ୍ତୁ ସମସ୍ତେ ବିଫଳ ହୋଇ ଭୂଇଁରେ ଲୋଟିଗଲେ। ପ୍ରତ୍ୟେକ ଦର୍ଶକର ହୃଦୟରେ ଭୟ ସାକାର ହୋଇଉଠିଲା ଏବଂ ସେମାନେ ନିଃଶ୍ୱାସ ରୋଧକରି ଏକଲୟରେ ସେହି ଭୟଙ୍କର ଦୃଶ୍ୟ ଅବଲୋକନ କରିବାରେ ଲାଗିଲେ। ଘୋଡ଼ା କୌଣସିମତେ ଆୟତକୁ ଆସିଲାନାହିଁ। ସେତିକିବେଳେ ମୋ କାନ ପାଖରେ ଗୋଟିଏ ଶବ୍ଦ ପ୍ରତିଧ୍ୱନିତ ହେଉଥିଲା– ''ଉଠ! ଉଠ!! ପୁରୁଷ ଜାତି ସାମର୍ଥ୍ୟର ଉପାସକ, ଶକ୍ତି ପ୍ରଦର୍ଶନରେହିଁ ତା'ର ପୌରୁଷ ଯଥାର୍ଥ ପ୍ରକଟିତ ହୁଏ, ଉଠ... ଯଯାତି, ଉଠ! ତୁମେ ହସ୍ତିନାପୁରର ଭାବୀ ଶାସକ। ବାସ୍ତବରେ ରାଜାଠାରୁ ଭୟ ଦୂରେଇ ରହେ! ନୋହିଲେ କାଲି ସକାଳେ ତୁଣ୍ଡ ବାଇଦ ରଟିବ, ହସ୍ତିନାପୁରରୁ ପୌରୁଷ ଲୋପପାଇଲାଣି ...କ୍ଷାତ୍ରଧର୍ମ ବିଲୁପ୍ତ ହେଲାଣି! ଗୋଟେ ଛାର ଘୋଡ଼ା ବୀରପ୍ରସୂ ହସ୍ତିନାପୁରକୁ ଅନାୟାସରେ ପରାଭୂତ କରିଦେଲା!! ଏ ଦୁର୍ନାମ ଦେବ ଓ ଦାନବଙ୍କ ପର୍ଯ୍ୟନ୍ତ ବ୍ୟାପିଯିବ। ତୁମେ ମହାପରାକ୍ରମୀ ପୁରୁରବାଙ୍କ ପ୍ରପୌତ୍ର ଓ ମହାବୀର ନହୁଷଙ୍କ ପୁତ୍ର...''

ମୁଁ ବିଦ୍ୟୁତ୍‌ବେଗରେ ଛିଡ଼ାହୋଇପଡ଼ି ଦି' ପହଣ୍ଡ ଆଗେଇଗଲି। ସେତିକିବେଳେ ଅନୁଭବ କଲି– କାହାର ସୁକୋମଳ କରସ୍ପର୍ଶ; ଫେରିପଡ଼ି ଚାହିଁଦେଖିଲି, ମୋର ସ୍ନେହମୟୀ ଜନନୀ! ମାଆ...? ନା... ନା... ମୋ ପୂର୍ବଜନ୍ମର ଶତ୍ରୁ ମୋତେ ଏପରି ସାହସିକ ପଦକ୍ଷେପରୁ ବାରଣ କରୁଛି! ମୋର ସବୁଠାରୁ ବଡ଼ ଆଶାରେ ତୁଷାରପାତ କରୁଛି! ନା... ସେ ମୋର ସ୍ନେହମୟୀ ଜନନୀ! ତା'ର ମମତାମୟୀ ଅନ୍ଧଧାରଣା, ତା'ର ବିଚାରବୁଦ୍ଧିର ପଙ୍ଗୁତା ମୋର ପଥ ରୋଧକରି ଛିଡ଼ାହୋଇଛି। ଘୋର ଜଙ୍ଗଲର ବିଚରଣକାରୀ ଯାତ୍ରୀ ଯେପରି ମାର୍ଗରୋଧକାରୀ ବୃକ୍ଷଶାଖା ତଥା ଲତାଗୁଳ୍ମକୁ ହାତରେ ଆଡ଼େଇଦେଇ ଆଗେଇଯାଏ, ମୁଁ ଠିକ୍ ସେହିପରି ମା'ଙ୍କ

ହାତକୁ ଆଡ଼େଇଦେଇ ପଲକମାତ୍ରକେ ଯାଇ ପଡ଼ିଆରେ ପହଞ୍ଚିଗଲି । ଚତୁର୍ଦ୍ଦିଗରେ ଅସୁମାରି ନିଶ୍ଚଳ ଆଖି ମୋ'ରି ଆଡ଼କୁ ଚାହିଁରହିଥିଲା । ପ୍ରକୃତରେ ସେ ଆଖିରେ ନଥିଲା ଓଜ, ସେ ଆଖିରେ ନଥିଲା ବୀରତ୍ୱବ୍ୟଞ୍ଜକ ତେଜ; ସେଗୁଡ଼ିକ ଥିଲା ପାଷାଣନିର୍ମିତ ଚକ୍ଷୁ ! ପରକ୍ଷଣରେ ମୋ ଦୃଷ୍ଟିଅନ୍ତରାଳକୁ ଚାଲିଗଲା ସେ ନିର୍ବାକ୍-ଚାହାଣି । ମୋର ଦୃଷ୍ଟି ନିବଦ୍ଧ ଥିଲା ସେହି ମତୁଆଲା ଘୂର୍ଣ୍ଣାୟମାନ ଘୋଟକ ଉପରେ । ସେ ବିଜୟଦୃପ୍ତ ଚାହାଣିରେ ମୋତେ ଥରେମାତ୍ର ଦେଖିନେଲା । ତାର ଚାହାଣିରୁ ଝଲସିଉଠୁଥିଲା ମହାବୀର ନହୁଷଙ୍କ ରାଜ୍ୟର ବୀରମାନଙ୍କ ପ୍ରତି ଅବମାନନା । ପ୍ରତିଟି ମୁହୂର୍ତ୍ତ ଘୋଡ଼ା ଓ ମୋ ମଧ୍ୟରେ ବ୍ୟବଧାନ ସୀମିତ ହୋଇଆସିଲା । ମୁଁ ମନେ ମନେ ଭାବୁଥିଲି– 'ଏ କ'ଣ ଗୋଟେ ଘୋଡ଼ା ? ନା ନା... ଗୋଟେ କ୍ଷୁଦ୍ର ଶଶକ ଏବଂ ତା'ର ଗ୍ରୀବାରେ ଫର୍ ଫର୍ ହୋଇ ଉଡୁଛି ଶ୍ୱେତ ରୋମରାଜି ।

ସଙ୍ଗେ ସଙ୍ଗେ ଗୋଟିଏ କାକୁତିଭରା ଶବ୍ଦ ଦୂରରୁ ଭାସିଆସି ମୋର କର୍ଣ୍ଣକୁହରରେ ତୀବ୍ର ଆଘାତ ଦେଲା– "ଏ' ପାଗଳ, କୁଆଡ଼େ ଆଗେଇ ଯାଉଛୁ, ସମ୍ମୁଖରେ ମୃତ୍ୟୁର ବିଭୀଷିକାମୟ ଅତଳ ଗହ୍ୱର !" ମୁଁ ମଧ୍ୟ ଖୁବ୍ ଜୋର୍‌ରେ ଉତ୍ତର ଦେଇ କହିଲି– "ନା... ନା..., ମୃତ୍ୟୁର ଗହ୍ୱର ନୁହେଁ... କୀର୍ତ୍ତିର ଉତ୍ତୁଙ୍ଗଶିଖର । ସେହି ଉନ୍ନତ ଶିଖରରେ ମୁଁ ଆରୋହଣ କରିବାକୁ ଚାଲିଲି । ଦେଖ, ଏଇ ଦେଖ, ମୁଁ ସେହି ଶିଖର ଉପରକୁ ଅବଲୀଳାକ୍ରମେ କିପରି ଉଠିଯାଉଛି । ବେଶ୍... ଏଥର ମୁଁ ଶିଖରର ଶୀର୍ଷଦେଶରେ ପହଞ୍ଚିଗଲି !"

ପରମୁହୂର୍ତ୍ତରେ କ'ଣ ଘଟିଗଲା ମୁଁ ଜାଣିପାରିଲିନାହିଁ । ସମ୍ପୂର୍ଣ୍ଣ ସଜାଗ ହେବାବେଳକୁ ଦେଖିଲି, ମୁଁ ଘୋଡ଼ାର ପିଠି ଉପରେ ବେଶ୍ ବୀରଦର୍ପରେ ବସିଛି ଏବଂ ସେହି ମଦମତ୍ତ ଘୋଟକ ପ୍ରଭଞ୍ଜନର ସହଚର ପରି ଧୂଳି ଉଡ଼ାଇ ତୀବ୍ରବେଗରେ ଛୁଟିବାରେ ଲାଗିଛି । ମୁଁ ଗୋଟିଏ ପ୍ରଚଣ୍ଡ ଧୂମକେତୁ ଉପରେ ଆସ୍ଥାନ ଜମେଇ ବସିଛି ଏବଂ ମୋର ହାତଗୋଡ଼ ବିଜୁଳିଠାରୁ ଆହୁରି କ୍ଷିପ୍ରଗତିରେ ସଞ୍ଚାଳିତ ହେଉଛି ।

ପ୍ରଥମ ଘେରା ଶେଷ ହେଲା; ଦ୍ୱିତୀୟ ଘେରା ଆରମ୍ଭ ହେବାମାତ୍ରେ ଜନସମୁଦାୟର ତୁମୁଳ ଆନନ୍ଦୋଲ୍ଲାସ ମୋର ପ୍ରଶଂସାରେ ଫାଟିପଡ଼ିଲା । ସେହି ହର୍ଷୋଲ୍ଲାସର ଉଚ୍ଛ୍ୱସିତ ଲହରୀ ମୋ' ଆଡ଼କୁ ତୀବ୍ରବେଗରେ ଛୁଟିଆସିଲା । ସେ ସମୟରେ ମୁଁ କ'ଣ ଭାବୁଥିଲି, ମୁଁ ନିଜେ ମଧ୍ୟ କହିପାରିବିନାହିଁ । ମୁଁ ଅତ୍ୟନ୍ତ ଉତ୍ସାହରେ ବାହ୍ୟଜ୍ଞାନ ହରାଇଥିଲି କିମ୍ବା ସମାଧିସ୍ଥ ହୋଇଯାଇଥିଲି; ଏହା ସ୍ପଷ୍ଟଭାବରେ ମୁଁ କହିପାରିବିନାହିଁ । କେଉଁ ଅତୀନ୍ଦ୍ରିୟ ଶକ୍ତିବଳରେ ମୋ ଶରୀରର ପ୍ରତ୍ୟେକ ଲୋମରେ ଅପୂର୍ବ ଓଜ ଜାଗ୍ରତ ହୋଇଥିଲା, ମୁଁ ଠିକ୍ କହିପାରିବିନାହିଁ । ତା'ରି ଫଳରେ ମୁଁ ସମସ୍ତ ବଳ ଖଟାଇ, ସେହି ଦୁର୍ଦ୍ଦାନ୍ତ ଘୋଡ଼ାକୁ ଖୁବ୍ ଜୋର୍‌ରେ ଧରିଥିଲି । ମୋର ଦୃଢ଼ବନ୍ଧନରେ ତିଳେମାତ୍ର ଅବହେଳା ନଥିଲା ।

ସେ ଥିଲା ଗୋଟିଏ ମଦମତ୍ତ ଘୋଟକ; ତା' ଉପରେ ମଧ୍ୟ ବସିଥିଲା ଅଲୌକିକ ଶକ୍ତିସମ୍ପନ୍ନ ଯଯାତି । ଦୁହେଁ ଦୁହିଁଙ୍କ ଆବେଗରେ ଉନ୍ମତ୍ତ । ଦୁହେଁ ଥିଲେ ଘୂର୍ଣ୍ଣାୟମାନ ଦୁଇଟି ପ୍ରାଣୀ; ଗୋଟିଏ ଥିଲା ପଶୁ ଏବଂ ଅନ୍ୟଜଣକ ମନୁଷ୍ୟ । ଗୋଟିଏ କ୍ରୀଡ଼ାପୁତ୍ତଳିକା

ଉପରେ ଆଉ ଗୋଟିଏ ତେଜସ୍ୱୀ ପୁତ୍ତଳିକା ଆରୋହଣ କରିଥିଲା। ଦୁଇଟିଯାକ ପୁତ୍ତଳିକା ପ୍ରଚଣ୍ଡ ବେଗରେ ଧାଉଁଥିଲେ, ଦୁହେଁ ଦୁହିଁଙ୍କ ଦେହରେ ମିଶିଯାଇଥିଲେ, ସତେଯେପରି ପୂର୍ବଜନ୍ମର ପାପ ଓ ପୁଣ୍ୟ।

ଦ୍ୱିତୀୟ, ତୃତୀୟ, ଚତୁର୍ଥ ଘେରା ଶେଷହୋଇଗଲା। ପଞ୍ଚମ ତଥା ଶେଷ ଚକ୍କର ଆରମ୍ଭ ହୋଇଗଲା। ଯାହା କେହି କେବେହେଲେ ଦେଖିନଥିଲେ କିମ୍ବା ଶୁଣିନଥିଲେ, ସେପରି ଏକ ଆଶ୍ଚର୍ଯ୍ୟ ଧରଣର ପରାକ୍ରମ ମୁଁ ଦେଖାଇଥିଲି। କୈଶୋରର ସଞ୍ଚିତ ଆକାଙ୍‌କ୍ଷା ସେଦିନ ପୂରଣ ହେବାକୁ ଯାଉଥିଲା। ସତେ ଅବା ସ୍ୱାତିର ଜଳଧାରା ଶାମୁକାଗର୍ଭରେ ପଡ଼ି ମୋତିରେ ପରିଣତ ହୋଇଯାଇଛି। ତେଣୁ ମନ ମଧ୍ୟରେ ମୋର ଆନନ୍ଦର ହିଲ୍ଲୋଳ କୂଳ-କିନାରା ପାଉନଥିଲା। ମୋର ମନେହେଉଥିଲା, ସେଇ ସୁଦୂର ଗଗନ, ସେଇ ନୀଳାଭ ଆକାଶ, ସେଇ ଅନନ୍ତ ବିତାନ, ମୋ'ଠାରୁ ଖୁବ୍ ବେଶି ଦୂରରେ ନାହିଁ; ମାତ୍ର ଚାରିହାତ ଉଚ୍ଚରେ! ମନେହେଉଥିଲା, ସେଇ ଘୋଡ଼ାର ପିଠି ଉପରେ ଛିଡ଼ାହୋଇପଡ଼ି ଗୋଟିଏ ଲମ୍ଫରେ ଆକାଶକୁ ନିଜର ହାତମୁଠାରେ ବନ୍ଦକରି ରଖିନେବି ଏବଂ ଚିରଦିନ ଲାଗି ବିଶ୍ୱନିୟନ୍ତାଙ୍କ ବାସସ୍ଥଳୀ ସେଇ ଅନନ୍ତ ବିତାନର ନାମ ଲୋପକରିଦେବି।

ପ୍ରକୃତରେ ଏସବୁ ଉଦ୍‌ଭ୍ରାନ୍ତ ଚିନ୍ତା ଉଠୁଥିଲା ମୋର ଉତ୍ସାହଭରା ଚଞ୍ଚଳମନରେ। ଧାଇଁ ଧାଇଁ ଘୋଡ଼ାର ମୁହଁରୁ ଫେନ ନିର୍ଗତ ହେବାକୁ ଲାଗିଲା ଏବଂ ତା'ର ଗତି ମନ୍ଥର ହୋଇଆସିବାର ମୁଁ ସ୍ପଷ୍ଟ ଅନୁଭବ କଲି। ତଥାପି ମୋର ଆବେଗଭରା ମନ ମୋତେ ବାରମ୍ବାର ସଚେତ କରାଇ କହୁଥିଲା— ସାବଧାନ! ହୁସିଆର୍!!

ପଞ୍ଚମ ଘେରା ପୂର୍ଣ୍ଣ ହୋଇଆସୁଥିଲା। ମୋର ବାପା ଓ ମାଆ ଯେଉଁଠି ବସିଥିଲେ, ଠିକ୍ ତା'ର କିଛି ଦୂରରେ ଲକ୍ଷ୍ୟସ୍ଥଳ। କ୍ରମେ ସେଇ ଲକ୍ଷ୍ୟସ୍ଥଳର ଦୂରତା ହ୍ରାସପାଇଆସିଲା। ମୁଁ ପିତାମାତାଙ୍କ ପାଖଦେଇ ଆଗେଇଗଲି। କିଛି ସମୟ ପୂର୍ବରୁ ମୋର ଗୌରବମୟ ପଥର ଅବରୋଧକାରିଣୀ ମୋ ମାଆ ବର୍ତ୍ତମାନ କେଡ଼େ ଆନନ୍ଦିତା ହେଉନଥିବେ; ଏହା ଦେଖିବାର ଲୋଭ ମୁଁ ସମ୍ବରଣ କରିପାରିଲିନାହିଁ। ଠିକ୍ ସେଇ ପାଖଦେଇ ଘୋଡ଼ା ଆଗେଇଚାଲିବା ମାତ୍ରେ, ମୁଁ ଟିକିଏ ବକ୍ର-ଚାହାଣିରେ ପଛକୁ ଫେରି ଚାହିଁଦେଲି।

ସେଇ ଦୁର୍ବଳ ତଥା ମୋହାସକ୍ତ ମୁହୂର୍ତ୍ତରେ ଖୁବ୍ ସମ୍ଭବତଃ, ମୋର ଦୃଢ଼ ବନ୍ଧନ ଟିକିଏ ଶିଥିଳ ହୋଇଗଲା। ମୋର ସଚେତନ ମନରେ ଏ ଧାରଣା ଜାତହେବା ପୂର୍ବରୁ, ସେଇ କ୍ରୋଧୋନ୍ମତ୍ତ ପଶୁଟା ମୋତେ ତୀବ୍ରବେଗରେ ପିଠିରୁ ଫିଙ୍ଗିଦେଇ ପଳାଇଗଲା। ମନେହେଲା— ସତେଯେପରି, ସେଇ ମୂକ ପଶୁଟା ତୀବ୍ର ପ୍ରତିଶୋଧ ନନେଇ ଛାଡ଼ିଲାନାହିଁ। ସେଇ ମୁହୂର୍ତ୍ତରେ ଆର୍ତ୍ତ ତଥା କରୁଣ ଚିତ୍କାରର ଝଙ୍କାର ମୋର କର୍ଣ୍ଣକୁହରକୁ ବଧିର କରିଦେଲା। କିନ୍ତୁ ମାତ୍ର କ୍ଷଣକଲାଗି ମୁଁ ସେଇ ବୁକୁଫଟା କ୍ରନ୍ଦନ ଶୁଣିପାରିଲି; ପରମୁହୂର୍ତ୍ତରେ ଜଣାଗଲା ମହାସାଗରର ଅତଳ ତଥା ଅନ୍ଧକାରମୟ ଗହ୍ୱରଆଡ଼କୁ ମୁଁ ଓଟାରିହୋଇଯାଉଛି!

ସେଇ ଭୟାବହ ତଥା ଘନାନ୍ଧକାର ଗହ୍ୱର ମଧ୍ୟରୁ, ବାହାରକୁ ମୁଣ୍ଡଟେକି

ବାହାରି ଆସିବାମାତ୍ରେ, ମୁଁ ମନ୍ଦ ଆଲୋକର ସ୍ତିମିତ ରଶ୍ମି ଦେଖିବାକୁ ପାଇଲି। ମୁଁ କେଉଁଠି? ହାୟ! ମୁଁ କ'ଣ ନାଗଲୋକରେ ପ୍ରବେଶ କରିଗଲି କି? ଏ କ'ଣ, କେଉଁ କୋଣରେ ସଗର୍ବରେ ଫଣା ଟେକି ବସିରହିଥିବା ନାଗରାଜଙ୍କ ମସ୍ତକର ମଣି ନୁହେଁ କି? ଓଃ... କିଛି ହେଲେ ବୁଝି ସ୍ଥିର କରିପାରିଲିନାହିଁ।

ଗୋଟିଏ ମୁହୂର୍ତ୍ତ ପରେ ଅନୁଭବ କଲି– ମୁଁ ରାଜପ୍ରାସାଦର ଗୋଟିଏ ପ୍ରଶସ୍ତ କକ୍ଷରେ ପଲଙ୍କ ଉପରେ ଶୋଇରହିଛି, ତନ୍ଦ୍ରାବିଜଡ଼ିତ ବିନମ୍ର ଚକ୍ଷୁଯୁଗଳ ମୋର ଧୀରେଧୀରେ ବନ୍ଦହୋଇଆସୁଛି। ଉଠିବାକୁ ମନ ହେଉଥିଲେହେଁ, ଉଠିବାର ଶକ୍ତି ମୋର ନାହିଁ ବୋଲି ମୁଁ ବେଶ୍ ଅନୁଭବ କଲି। ବାହାରେ କାହିଁ ଉଷାର ଧୂମିଳ ରଶ୍ମି ଦେଖାଯାଉନାହିଁ! ପିତାଙ୍କ କକ୍ଷର ଦ୍ୱାରଦେଶରୁ ପ୍ରଭାତର ମଙ୍ଗଳସଙ୍ଗୀତ ଭାସିଆସୁନାହିଁ ତ? ଓଃ... ଆଜି ଉତ୍ସବର ଅନ୍ତିମ ଦିବସ। ଆଜି ଉଦ୍‌ଘୋଷିତ ହେବ ମଦମତ୍ତ ଘୋଟକର ପୃଷ୍ଠରେ ଆରୋହଣ...।

ହଠାତ୍ ମୋର ବିଲୁପ୍ତ ସ୍ମୃତି ଜାଗ୍ରତ ହୋଇଉଠିଲା ଏବଂ ତା' ସହିତ ଅଙ୍ଗପ୍ରତ୍ୟଙ୍ଗର ଯନ୍ତ୍ରଣା ମୁଁ ବେଶ୍ ଅନୁଭବ କଲି। ପ୍ରଚଣ୍ଡ ପବନର ଆଘାତରେ ଉଡ଼ିଯାଉଥିବା ଶୁଷ୍କ ପତ୍ରପରି ମୋତେ ଉଡ଼ାଇ ଦେଇ ସେହି ଦୁର୍ଦ୍ଦାନ୍ତ ଘୋଡ଼ାଟା ଚାଲିଗଲା; କିନ୍ତୁ ମୁଁ ପଡ଼ିଲି ଯାଇ କେଉଁଠି? ଡାହାଣ ହାତ ଉଠାଇ ମୁଁ ମୁଣ୍ଡ ଉପରେ ଥୋଇଲି। ସେଠାରେ ଥଣ୍ଡା ପାଣିର ପଟି ରଖାଯାଇଥିଲା; ଅନୁଭବ କଲି, ବୋଧହୁଏ ମୋତେ ଜ୍ୱର ହୋଇଯାଇଥିଲା! କିନ୍ତୁ ମୋର ନିକଟରେ କେହି ନଥିଲେ ତ! ତା'ହେଲେ... ଏ ପଟିଟି ଥଣ୍ଡା ରହିଛି କିପରି? ମନର ସମ୍ପୂର୍ଣ୍ଣ ଶକ୍ତି ଲଗାଇ ମୁଁ ଡାକିଲି– "ମା... ଆ... ଆ... ଆ...!"

ଚୁଡ଼ିର ରୁଣୁଝୁଣୁ ଶବ୍ଦ ମୋ କାନକୁ ଶୁଣାଗଲା; ବୋଧହୁଏ ମାଆ ମୋ ପାଖକୁ ଲାଗିଆସୁଛନ୍ତି! ମୁଁ ଆଖି ଖୋଲି ଚାହିଁ ଦେଖିଲି; ନା... ଏ ମାଆ ନୁହେଁ ତ! ତା'ହେଲେ... ଆଉ କିଏ ସେ? ତା'ହେଲେ... ଏହି ଦୁର୍ଘଟଣାରେ ମୋତେ କ'ଣ ପ୍ରାଣାନ୍ତକ ଆଘାତ ଲାଗିଥିଲା? ମୁଁ ବର୍ତ୍ତମାନ କେଉଁଠି? ରାଜାପ୍ରାସାଦର କୌଣସି କକ୍ଷ ମଧ୍ୟରେ କିମ୍ବା ମୃତ୍ୟୁର ନିର୍ମମ ଦ୍ୱାରଦେଶରେ? ଅନୁମାନ କରି କିଛି ସ୍ଥିର କରିପାରିଲିନାହିଁ। ମୋ'ର ମୁଣ୍ଡ ପାଖରେ ନିଶ୍ଚଳଭାବରେ ଛିଡ଼ାହୋଇଥିଲା ସେହି ଆକୃତି ଆଡ଼କୁ ମୁଁ ନିର୍ନିମେଷ ଦୃଷ୍ଟିରେ ଚାହିଁରହି ଭାବିଲି, ମୃତ୍ୟୁ କ'ଣ ଏଡ଼େ ସୁନ୍ଦର ଲୋଭାଣିଆ ଚେହେରାରେ ମଣିଷ ପାଖକୁ ଆସିପାରେ! ତେବେ... ଦୁନିଆରେ ସମସ୍ତେ ମୃତ୍ୟୁକୁ ଏତେ ଭୟ କରନ୍ତି କାହିଁକି?

ଠିକ୍ ସେତିକିବେଳେ ଶୁଣାଗଲା କାନ୍ତକୋମଳ କଣ୍ଠର ମଧୁମୟ ଝଙ୍କାର– "ଯୁବରାଜ!" ମୁଁ ବେଶ୍ ବାରିପାରିଲି, ଏହା ଅଳକାର କଣ୍ଠସ୍ୱର। ତା'ପରେ ପଚାରିଲି– "କଅଣ, ଉତ୍ସବ ଶେଷ ହୋଇଗଲାଣି?"

–"ହଁ... କେବେଠାରୁ...!"

–"କେତେଦିନ ହେଲାଣି?"

–"ଆଠ..."

—''ଆଠଦିନ ?''

—''ହଁ... ଅ...''

ତା'ର କଣ୍ଠସ୍ୱରରେ ଥିଲା ମଧୁର କମ୍ପନ। ଆଠଦିନ ହେଲା ପ୍ରତ୍ୟେକ ଦିନ ଉଷାର ସୁନେଲି କିରଣ ଭେଦକରି ସୂର୍ଯ୍ୟ ଉଦିତ ହେଉଛନ୍ତି ଏବଂ ପୁଣି ସନ୍ଧ୍ୟାର କୃଷ୍ଣ କବରୀ ତଳେ ମୁହଁ ଲୁଚାଇ ନେଉଛନ୍ତି... ଅଥଚ ମୁଁ କିଛି ଜାଣିପାରୁନାହିଁ! ମୁଁ ଏହି ଆଠଦିନ କାଳ କ'ଣ କରୁଥିଲି ? କେଉଁଠି ଥିଲି ? କେଉଁ ସ୍ୱପ୍ନିଳ ଦୁନିଆରେ ବିଚରଣ କରୁଥିଲି ? ଆଉ କରୁଥିଲି କ'ଣ ? ମୁଁ ନିତାନ୍ତ ଅସମଞ୍ଜସରେ ପଡ଼ିଗଲି। ମୋର ବିଶ୍ୱାସ ଥିଲା, ମୋ ଶରୀରର ମମତ୍ୱ ଉପରେ। କିନ୍ତୁ ବିଗତ ଆଠଦିନ ମଧ୍ୟରେ ସେହି 'ମମତ୍ୱ' କେଉଁଠି ଗୋପନରେ ରହିଲା ? ମୁଁ ଅଳକାକୁ ପଚାରିଲି — ''ମାଆ କେଉଁଠି ?''

''ମହାରାଣୀ ନିଜ ମହଲର କକ୍ଷରେ ଅଛନ୍ତି। ସେହିଦିନଠାରୁ ସେ ଅନ୍ନ-ଜଳ ତ୍ୟାଗ କରିଦେଇଛନ୍ତି। କାଲି ବଡ଼ କଷ୍ଟରେ ଆପଣଙ୍କୁ ଦେଖିବାଲାଗି ଆସିଥିଲେ, ମାତ୍ର ଆପଣଙ୍କ ଅବସ୍ଥା ଦେଖି ସଙ୍ଗେ ସଙ୍ଗେ ବେହୋସ୍ ହୋଇ ତଳେ ପଡ଼ିଗଲେ। ତାଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ; ତେଣୁ ବିଛଣାରୁ ଉଠିବା ଲାଗି ରାଜବୈଦ୍ୟ ତାଙ୍କୁ ବାରଣ କରିଦେଇଛନ୍ତି।''

—''ତୁମ ମାଆ କେଉଁଠି ?''

''ସେ ମହାରାଣୀଙ୍କ ସେବାରେ ଲାଗିଛନ୍ତି। ରାଜବୈଦ୍ୟ ଅପଲକ ଚକ୍ଷୁରେ ଆଜକୁ ଆଠଦିନ ହେଲା ଆପଣଙ୍କ ଶୁଶ୍ରୁଷାରେ ଲାଗିଛନ୍ତି। ଏବେ କିଛି ସମୟ ପୂର୍ବରୁ ସେ ଆପଣଙ୍କ ନାଡ଼ି ପରୀକ୍ଷା କରି ଛୋଟପିଲାଙ୍କ ପରି ନାଚିଉଠି ମୋତେ କହିଲେ — 'ଅଳକା, ମୋର ଖୁବ୍ ଭୟ ଥିଲା, ମୋର ବିଦ୍ୟା ମୋ ପକ୍ୱକେଶର ସମ୍ମାନ ରକ୍ଷା କରିବ ତ ?' ସେହି ଭୟରେ ମୁଁ ଆଜିକୁ ଆଠଦିନ ହେଲା ଆଖି କଷା କରିନାହିଁ। ଆଉ ଏଣିକି ଯୁବରାଜଙ୍କର କିଛି ବିପଦର ସମ୍ଭାବନା ନାହିଁ। ବୋଧହୁଏ ଆଜି ମଧ୍ୟରାତ୍ରି ସୁଦ୍ଧା ଯୁବରାଜଙ୍କର ଚେତନା ଫେରିଆସିବ। ଖୁବ୍ ବେଶି ବିଳମ୍ବ ହେଲେ ସିନ୍ଦୂରାଫାଟିବାବେଳକୁ ନିଶ୍ଚୟ ଯୁବରାଜଙ୍କ ଚେତନା ଆସିବ। ତୋତେ କିନ୍ତୁ ସଜାଗ ରହିବାକୁ ପଡ଼ିବ। ବରାବର ତାଙ୍କ ମୁଣ୍ଡର ପଟି ଥଣ୍ଡା ରଖିବାକୁ ହେବ।''

କହୁ କହୁ ହଠାତ୍ ତା'ର କ'ଣ ମନେପଡ଼ିଗଲା କେଜାଣି, — ସେ ଶୀଘ୍ର ସେଠାରୁ ଚାଲିଯାଇ ପୁଣି ଫେରିଆସିଲା ପଲଙ୍କ ପାଖକୁ। ଏଥର ମୋତେ ପୂର୍ବ ଅପେକ୍ଷା ଅଧିକ ସ୍ପଷ୍ଟଭାବରେ ଦେଖାଯାଉଥିଲା। ପ୍ରକୃତରେ କ'ଣ ମୋ ମୁଣ୍ଡ ପାଖରେ ଅଳକା ଛିଡ଼ାହୋଇଥିଲା ? ନା... ସେହି ଦୁର୍ଘଟଣାରେ ମୁଁ ବୋଧହୁଏ ମୃତ୍ୟୁମୁଖରେ ପଡ଼ି ସ୍ୱର୍ଗଲୋକରେ ପହଞ୍ଚିଯାଇଛି ଏବଂ ସେଠାକାର କୌଣସି ଅପ୍ସରା ମୋ'ର ମୁଣ୍ଡ ପାଖରେ ଆସି ଛିଡ଼ାହୋଇଛି !

ମୋ ମନର ଏପରି ଅବାନ୍ତର କଳ୍ପନାରେ ମୁଁ ମନକୁମନ ହସିଉଠିଲି। ମୋତେ ହସୁଥିବାର ଦେଖି ପଚାରିଲା ଅଳକା — ''ଆପଣ ହସିଲେ କାହିଁକି ?''

—''ହସିବା ଲାଗି କ'ଣ ଗୋଟିଏ କିଛି କାରଣର ଆବଶ୍ୟକତା ରହିଛି ?''

—''ହଁ, ମୁଁ ତ ସେଇଆ ଭାବିଛି !''

—''ତା'ହେଲେ ... କହିଲୁ, ଫୁଲ କାହିଁକି ହସେ ?''

ଏହି ପ୍ରଶ୍ନ ସେ ନିଜେ ନିଜକୁ ପଚାରିବସିଲା– ''ଫୁଲ କାହିଁକି ହସେ ?'' ସତେ ଅବା ସେଠାରେ ଦୁଇଜଣ ଅଳକା ଛିଡ଼ାହୋଇଛନ୍ତି ଏବଂ ଜଣେ ଅନ୍ୟକୁ ସେହି ପ୍ରଶ୍ନ ପଚାରି ବୁଝିବାକୁ ଚେଷ୍ଟାକରୁଛି। ଦ୍ୱିତୀୟ ଅଳକା ଅସମଞ୍ଜସରେ ପଡ଼ିଗଲା। ଏହା ଦେଖି ପ୍ରଥମ ଅଳକା ଧୀରେ ହସିଦେଇ ଟିକିଏ ଲାଜେଇଗଲା। ଅଳକାର ସେହି ଲାଜକୁଳୀ ଚେହେରା ଆହୁରି ମନେମୋହକ ହୋଇଉଠିଲା। ସୌନ୍ଦର୍ଯ୍ୟର ସାଗରରେ ହଠାତ୍ ଜୁଆର ମାଡ଼ିଆସିଲା କି? ମୁଁ ଜାଣେନା କାହିଁକି ଅଳକାର ସେହି ଚେହେରା ମୋ ନିକଟରେ କ୍ଷଣକୁ କ୍ଷଣ ଅଧିକ ସୁନ୍ଦର ଦେଖାଗଲା। ତେଣୁ ମୁଁ ହସି ହସି କହିଲି– ''ମୁଁ କହିବି ?''

—''ହଁ... କୁହନ୍ତୁ ତ !''

—''ସ୍ତ୍ରୀମାନେ ଖୁବ୍ ଲାଜକୁଳୀ ହୋଇଯାଆନ୍ତି; ତେଣୁ ଫୁଲ ସେମାନଙ୍କୁ ଦେଖି ହସିଦିଏ।''

—''ହଁ... ଭାରି ଜଣେ ଆପଣ, ଥାଉ ସେତିକି...''

ଅଳକାର ଏଇ ଆଡ଼ରୁଷା ମୋତେ ଖୁବ୍ ଭଲଲାଗିଲା। ମୁଁ ସେତେବେଳେ ଭୁଲିଗଲି– ମୁଁ ବେମାର ହୋଇ ବିଛଣାରେ ପଡ଼ିରହିଛି। ବିଗତ ଆଠଦିନଧରି ବିଛଣାରେ ଅସକ୍ତ ଅବସ୍ଥାରେ ପଡ଼ିରହିଥିଲେହେଁ ମୁଁ ଅପଲକଦୃଷ୍ଟିରେ ତା'ରି ମୁହଁକୁ ଚାହିଁରହିଲି। ସେ ଚମକିପଡ଼ି ଅସ୍ପଷ୍ଟ ସ୍ୱରରେ କହିବାକୁ ଲାଗିଲା– ''ଆରେ... ମୁଁ କେଡ଼େ ପାଗଳୀଟେ... ପଟି ଉପରେ ଲଗାଇବାଲାଗି ଔଷଧ ନେଇଆସିଲି; କିନ୍ତୁ କଥାକଥାରେ ମାତି ଲଗାଇବାକୁ ଭୁଲିଗଲି। ହଉ... ଆପଣ ଆଖି ବୁଜିଲେ...''

—''କାହିଁକି ?''

—''ଏ... ଔଷଧ ଖୁବ୍ ବିଷାକ୍ତ। ରାଜବୈଦ୍ୟ ମୋତେ ବାରମ୍ବାର ତାଗିଦ୍ କରିଛନ୍ତି, ଏ ଔଷଧରୁ ଗୋଟିଏ ବୁନ୍ଦା ଯେପରି ଆଖିରେ ନପଡ଼େ।''

—''କିନ୍ତୁ... ମୁଁ କ'ଣ କରିବି? ମୋ ଆଖି ବନ୍ଦ ହେବାକୁ ମୋତେ ବାରଣ କରିଦେଉଛି।''

—''କାହିଁକି ?''

ମୁଁ ଏସବୁ ଅଳକାକୁ କିପରି ବୁଝାଇବି ଯେ ମୋ ଆଖି ତା'ରି ସୌନ୍ଦର୍ଯ୍ୟ ଆକଣ୍ଠ ପାନଲାଗି ପିଆସି ହୋଇଯାଇଛି। ସେ କ'ଣ ଏ କଥା ଶୁଣିଲେ ଖୁସିହେବ ? ସେ କେବଳ ଗୋଟିଏ ସାମାନ୍ୟ ଦାସୀର କନ୍ୟା ନଥିଲା; ପିଲାଦିନେ ତା' ମାଆ ମୋତେ ନିଜ କ୍ଷୀରରେ ପୁଷ୍ଟ କରିଛି। ମୋତେ ନିଜ କୋଳରେ ବସାଇ ବଡ଼କରିଛି। ପିତା ମଧ କଳିକାକୁ ଖୁବ୍ ଆଦରକରନ୍ତି। ମାଆ ମଧ ତା' ସାଥିରେ ଅତି ଆତ୍ମୀୟତାର ସହିତ ବ୍ୟବହାର କରନ୍ତି। ମାଆ ସବୁବେଳେ କୁହନ୍ତି– ''ଯଯୁ ପାଇଁ ମୋ'ଠାରୁ ଅଧିକ ଚିନ୍ତା କଳିକାର। ସେଇ କଳିକାର ଝିଅ ସାଥିରେ...।''

—''ଦେଖନ୍ତୁ... ଯଦି ଆପଣ ଆଖି ବନ୍ଦନକରନ୍ତି, ମୁଁ ଆପଣଙ୍କ ସହିତ 'କଟି' ପକାଇଦେବି।''

ଅଳକାର ଏଇ ମିଠା ମିଠା କେଇଟି ଶବ୍ଦ ଯୋଗୁଁ ପୁଣି ଫେରିଗଲି ଅତୀତର ଶୈଶବ ଅବସ୍ଥାକୁ। ସତେଯେପରି, ସମୁଦ୍ରରେ ମିଶିଥିବା ନଦୀର ମଧୁରଜଳ ଲୁଣିଆ ଜଳଠାରୁ ପୃଥକ୍ ହୋଇଯାଉଛି। ତା'ପରେ ମୁଁ ଚୁପ୍‌ଚାପ୍ ଆଖି ବନ୍ଦକରିଦେଲି ଏବଂ ଅଳକା ଧୀରେ ଧୀରେ ଖୁବ୍ ସାବଧାନତାର ସହିତ ମୋ ମୁଣ୍ଡରେ ଲାଗିଥିବା ପଟି ଉପରେ ଔଷଧ ଲଗାଇବାକୁ ଲାଗିଲା। କେବେ କେବେ ଖୋଲା ଆଖି ଅପେକ୍ଷା ମୁଦ୍ରିତ ଚକ୍ଷୁ ଅଧିକ ଉଜ୍ଜ୍ୱଳତାର ସହିତ ଦେଖିବାରେ ସମର୍ଥ ହୋଇଥାଏ। ମୋ ସହିତ 'କଟି' ପକାଇଥିବା ପିଲାଦିନର ଅଳକାଠାରୁ ଆରମ୍ଭକରି, ମୋ ମୁଣ୍ଡ ପାଖରେ ଛିଡ଼ାହୋଇ ଔଷଧ ବୋଳୁଥିବା ଅଳକା ପର୍ଯ୍ୟନ୍ତ ତା'ର ବିଭିନ୍ନ ରୂପ ମୋର ମାନସପଟରେ ଭାସିଉଠିଲା। କାଲି ସେ ଗୋଟିଏ କଳିକା ଥିଲା, ଧୀରେ ଧୀରେ ବିକଶିତ ହୋଇ ସେ ପ୍ରତ୍ୟେକ ଅବସ୍ଥାରେ ନୂଆ ନୂଆ ରୂପ ଧାରଣକରି ଆଗେଇ ଚାଲିଛି। ଅଳକାର ପ୍ରତ୍ୟେକ ରୂପରେ ଥିଲା ସ୍ୱତନ୍ତ୍ର ମାଦକତା ତଥା ମନୋମୋହିନୀ ଛବି।

ଅଳକା ନିଜ ମାଆ ସାଥିରେ ରାଜପ୍ରାସାଦ ମଧ୍ୟରେ ରହୁଥିଲା; ତେଣୁ ତା'ର ପ୍ରତ୍ୟେକ ପରିବର୍ତ୍ତିତ ରୂପ ମୁଁ ଲକ୍ଷ୍ୟ କରିଥିଲି। ତା' ସମ୍ବନ୍ଧରେ ମୋ ମନ ମଧ୍ୟରେ ଆଜି ଯେପରି ଭାବନା ଜାଗିଉଠିଛି, ଆଉ କେବେହେଲେ ସେପରି ଭାବନା ଉଠିନଥିଲା। ମୁଁ ଭାବିବାକୁ ଲାଗିଲି, 'ଏପରି ହେଲା କାହିଁକି?' ଛଅବର୍ଷ ବୟସ ପର୍ଯ୍ୟନ୍ତ ଅଳକା ଥିଲା ମୋର କ୍ରୀଡ଼ାସଙ୍ଗିନୀ; କିନ୍ତୁ ପରେ ପରେ ଆମେ ଦୁହେଁ ପରସ୍ପରଠାରୁ ଦୂରେଇଗଲୁ। ମୁଁ ଥିଲି ଅଳିଅଳ ରାଜକୁମାର; ତେଣୁ ରାଜପ୍ରାସାଦ, ଦରବାର, ରାଜସଭା ଆଦିରେ ଖୁବ୍ ଆଡ଼ମ୍ବର ତଥା ଅଭିମାନର ସହିତ ବୁଲୁଥିଲି। କିନ୍ତୁ ସେ ଥିଲା ଗୋଟିଏ ଦାସୀର କନ୍ୟା, ତେଣୁ ସେ ପଛରେ ପଡ଼ିଗଲା। ରାଜପ୍ରାସାଦ ମଧ୍ୟରେ ସେ ନିଜର ମାଆ ସହିତ ଛୋଟଛୋଟ କାମଧନ୍ଦାରେ ସାହାଯ୍ୟକଲା। ଭାବୀ ଜୀବନରେ ହସ୍ତିନାପୁରର ରାଜସିଂହାସନରେ ଆରୋହଣ କରି ବିଶ୍ୱବିଜୟୀ ହେବାର ଦୁର୍ବାର କାମନା ମୋ ହୃଦୟରେ ଜାଗିଉଠିଲା। ଦାସୀର ପୁତ୍ରୀ ଭାବରେ ଭାବୀଜୀବନରେ ଗୋଟିଏ ଦାସୀରୂପେ ଜୀବନ ବିତାଇବା ଥିଲା ତା'ର ଲକ୍ଷ୍ୟ; ତେଣୁ ଆମେ ଦୁହେଁ ଅଜ୍ଞାତସାରରେ ପରସ୍ପରଠାରୁ ଦୂରେଇଗଲୁ।

ହଠାତ୍ କୌଣସି ଏକ ସ୍ୱର୍ଗୀୟ ସୁଗନ୍ଧ ମୋତେ ଏକାବେଳକେ ମତୁଆଲା କରିଦେଲା। ସେ ପର୍ଯ୍ୟନ୍ତ ମୁଁ ଆଖି ବୁଜି ରହିଥିଲି। ଧୀରେ ଧୀରେ ଡାହାଣ ହାତ ଉଠାଇ ଜାଣିପାରିଲି, ଅଳକା ମୋ ମୁହଁ ଉପରକୁ ଝୁଙ୍କିପଡ଼ି ଖୁବ୍ ସାବଧାନତାର ସହିତ ଔଷଧବିନ୍ଦୁଗୁଡ଼ିକ ପଟି ଉପରେ ପକାଇବାରେ ଲାଗିଛି। ତା'ର ସୁବିନ୍ୟସ୍ତ କେଶପାଶରୁ କେରାଏ ଝୁଲିଆସି ମୋର କପୋଳ ସ୍ପର୍ଶ କରୁଛି। ସେହି କେଶକେରାଟିରେ ହାତ ଲାଗିଯିବାକ୍ଷଣି ମୋ ଶରୀର ରୋମାଞ୍ଚିତ ହୋଇଉଠିଲା। ମୁଁ ବେଶ୍ ଜାଣିପାରିଲି, ମୁଁ ଆଖି ଖୋଲିଦେବାମାତ୍ରେ ଅଳକା ଦୂରେଇଯିବ। ତେଣୁ ମୁଁ ପୂର୍ବପରି ଆଖି ବନ୍ଦ ରଖି ହସି ହସି ପଚାରିଲି— ''ଅଳକା, ମୋ ନାକ ଖୁବ୍ ରାଗିଗଲାଣି!''

—''କାହା ଉପରେ?''

—''ଆଖି ଉପରେ...''

—"କା ଆଖି ଉପରେ ?"

—"ମୋ'ରି ..."

—"କାରଣ କ'ଣ ଯେ ...?"

—"କାରଣ ... ସେ ଜାଣିପାରୁନି ଯେ ଏତେ ସୁନ୍ଦର ସୁଗନ୍ଧ କେଉଁଠୁ ଆସୁଛି ?"

—"ମୁଁ ନାକକୁ କିଛି ପଚାରିବାକୁ ଚାହୁଁଛି !"

—"ପଚାରି ବୁଝ ...!"

—"କ'ଣ ଈଶ୍ୱରଙ୍କ ଉପରେ ତା'ର ଆସ୍ଥା ଅଛି ?"

—"ମୋ ନାକ ତ କେବେହେଲେ ନାସ୍ତିକ ନଥିଲା ?"

—"ମନ୍ଦିରରେ ଈଶ୍ୱରଙ୍କ ମୂର୍ତ୍ତି ପାଷାଣରେ ନିର୍ମିତ ... ଏ କଥା ଆପଣଙ୍କ ନାକକୁ ଜଣାଅଛି କି ନାହିଁ ?"

—"ନିଶ୍ଚୟ ଜଣାଅଛି ।"

—"ତଥାପି ସେଇ ଈଶ୍ୱରଙ୍କ ଆଗରେ ସେ ନିଜେ କାହିଁକି ଘଷିହୁଏ ? ସେଇ ମୂର୍ତ୍ତିର ଆକୃତିରେ ତାକୁ କ'ଣ ଈଶ୍ୱର ଦେଖାଦିଅନ୍ତି ?"

—"ଦେଖାନଦେଲେ କ'ଣ ହେବ, ସେହି ପାଷାଣ ମଧ୍ୟରେ ଈଶ୍ୱରଙ୍କ ସତ୍ତା ରହିଛି ।"

—"ଏବେ ଆପଣଙ୍କ ନାକକୁ ଯେଉଁ ସୁଗନ୍ଧ ଯାଉଛି ତା'ର ମଧ୍ୟ ଅବସ୍ଥା ଠିକ୍ ସେହିପରି ।"

ଅଳକାର କଥା କହିବାର ଚାତୁରୀ ମୋତେ ସେତେବେଳେ ଖୁବ୍ ଆନନ୍ଦ ଦେଲା । ଜଣାଗଲା, ଯେପରି ଆମେ ଦୁହେଁ ଶୈଶବର ସୁଖଦ ମୁହୂର୍ତ୍ତକୁ ଫେରିଯାଇ ଶବ୍ଦର ଖେଳ ଖେଳିବସିଛୁ । କିନ୍ତୁ କେବଳ ଶବ୍ଦର ଖେଳ ଖେଳିବା ଅପେକ୍ଷା, ସେ ସମୟରେ ସୁଗନ୍ଧର ଆକଣ୍ଠ ପାନଲାଗି ମୁଁ ଉତଳା ହୋଇଉଠି ପଚାରିଲି— "କହୁନୁ କାହିଁକି, ଏ କି ସୁଗନ୍ଧ ?"

—"ଏ ... ଯୂଇ ଫୁଲର ବାସନା; ପିଲାଦିନେ ଆପଣ ଏ ଫୁଲକୁ ଖୁବ୍ ଭଲପାଉଥିଲେ ।"

ଠିକ୍ କହିଛି ଅଳକା; କିନ୍ତୁ ଧନୁର୍ବାଣର ଟଙ୍କାର, ଘୋଡ଼ାର ଟପ୍‌ଟାପ୍ ଚାଲି ମଧ୍ୟରେ ଯୂଇ କୁସୁମର ଏଇ ମନମତାଣିଆ ସୁଗନ୍ଧ କୁଆଡ଼େ ହଜିଯାଇଥିଲା । ମୁଁ ପ୍ରକାଶ୍ୟରେ କହିଲି— "ଅଳକା, ସେ ଫୁଲକୁ ମୋ ନାକପାଖକୁ ଘେନିଆସିଲୁ, ମୁଁ ତା'ଠାରୁ କ୍ଷମା ମାଗିନେବାକୁ ଚାହୁଁଛି ।"

—"ଟିକିଏ ଅପେକ୍ଷା କରନ୍ତୁ, ମୁଁ ଗଜରା ହାରଟିକୁ ବାହାରକରିଦେଉଛି ।"

—"ଗଜରା ହାର ...?"

—"ଆଜ୍ଞା, ହଁ ... ମୋ ବେଣୀରେ ଗୁନ୍ଥାଯାଇଛି ।"

—"ତା'ହେଲେ ... ଥାଉ, କ୍ଷତି କ'ଣ ?"

—"କାହିଁକି ?"

—"ତୁ ଯଦି ସେ ହାରଟିକୁ ବେଣୀରୁ ଖୋଲିଦେବୁ ସେ ମୋ ଉପରେ ନାରାଜ ହୋଇଯିବ ।"

—"ଆପଣ ... ଭାରି ଜଣେ ..."

—"ସେ ସେଇଠି ଝୁଲୁଥାଉ ... ମୁଁ ଶୁଙ୍ଘିବି ..."

ମୋ ଶେଷ କଥାପଦକ ଶୁଣିବାପରେ ଅଳକା ଆଉ କିଛି ନକହି ନୀରବ ହୋଇଗଲା। ତା'ର ନୀରବତା ମୋ ପାଇଁ ଖୁବ୍ ଅସହ୍ୟ ହୋଇଉଠିଲା; ତେଣୁ ବ୍ୟଗ୍ରହୋଇ କହିଲି— "ଦେଖ ଅଳକା, ତୁ ଯଦି ମୋତେ ତୋର ବେଣୀ ଶୁଙ୍ଘିବାକୁ ନଦେଉ, ତା'ହେଲେ ମୁଁ ଜୋର୍‌ରେ ପାଟିକରି ସମସ୍ତଙ୍କୁ ଉଠାଇଦେବି।"

ବୋଧହୁଏ ପଟି ଉପରେ ପକାଯାଉଥିବା ଔଷଧ ଶେଷହୋଇଗଲା। ସେ ତା'ର କୋମଳ ହାତ ପାପୁଲିଟିକୁ ମୋ ପାଟିରେ ରଖି କହିଲା— "ନା ... ନା ... ନା ... ଆପଣ ଆଦୌ ପାଟିକରନ୍ତୁନାହିଁ। ଆଜିକୁ ଆଠଦିନ ହେଲା ସାରା ରାଜମହଲରେ କାହାରିହେଲେ ପିଣ୍ଡରେ ପ୍ରାଣ ନଥିଲା। ଆଜି ରାଜବୈଦ୍ୟ ଆପଣଙ୍କ ସୁସ୍ଥତା ବିଷୟରେ ନିର୍ଭର ଜବାବ୍ ଦେଲାରୁ ସମସ୍ତେ ଟିକିଏ ଆରାମରେ ଶୋଇପଡ଼ିଛନ୍ତି। ରାଜବୈଦ୍ୟ ମଧ୍ୟ ଏଇ ପାଖ କୋଠରିରେ ବିଶ୍ରାମ ନେଇଛନ୍ତି। ଆପଣ ପାଟିକରିଦେବା ମାତ୍ରେ ସମସ୍ତେ ଧାଇଁ ଦୌଡ଼ି ଏଠାକୁ ପଶିଆସିବେ। ମୋ ମାଆ ମୋତେ କଞ୍ଚା ଖାଇଯିବ ଏବଂ ଖୁବ୍ ବିରକ୍ତ ହୋଇ କହିବ— ପୋଡ଼ାମୁହିଁଟା, ଟିକିଏ ଭଲଭାବରେ ସେବା କରିପାରିଲୁନି? ତା'ପରେ ସେ ମୋତେ ଶୂଳିରେ ଚଢ଼ାଇ ମାରିଦେବ।"

"ବେଶ୍, ଶୂଳି ଉପରେ ଚଢ଼ିବା ଅପେକ୍ଷା ମୋତେ ଫୁଲହାରଗୁନ୍ଥା ବେଣୀଟି ଶୁଙ୍ଘିବାକୁ ବଢ଼ାଇଦେ। ପୁରୁଖା ଲୋକେ କହନ୍ତି, ଭଲ କାମରେ ଡେରି କରିବା ଉଚିତ ନୁହେଁ...! ଆଉ ଦେଖ ... ମୁଁ ପାଞ୍ଚ ପର୍ଯ୍ୟନ୍ତ ଗଣୁଛି; ତା' ପୂର୍ବରୁ ... ଏକ ... ଦୁ ... ଇ, ... ତି ... ନି ... ଚା ... ରୀ ..."

ନନ୍ଦନବନରେ ଫୁଟିଥିବା ଫୁଲଗୁଡ଼ିକର ସୁଗନ୍ଧ ବହନକରି ଯୂଇ ଫୁଲର ଜନ୍ମ ... ଅଳକାର ବେଣୀରେ ଗୁନ୍ଥାଯାଇଥିବା ଯୂଇ ଫୁଲର ଗଜରାଟିକୁ ଶୁଙ୍ଘି ଶୁଙ୍ଘି ମୋତେ ଏକପ୍ରକାର ନିଶା ଘାରିଗଲା। ସେଇ ଫୁଲ ସାଥିରେ ମୋ ଗାଲରେ ଲାଗିଥିବା ଅଳକାର କେଶକେରାକ ମୋତେ ଖୁବ୍ ଆନନ୍ଦ ଦେଉଥିଲା! ବାସ୍ତବିକ୍ ... ବଡ଼ ଉନ୍ମାଦକ ସେ ସ୍ପର୍ଶ! ମୁଁ ବେଶ୍ ଅନୁଭବ କଲି ଯେ, ଅଳକା ମୋ'ଠାରୁ ଦୂରେଇଯିବାକୁ ଚାହୁଁଛି। ତେଣୁ ମୁଁ ବୁଦ୍ଧି-ବିବେକ ହରାଇବସିଲି। କେବଳ ସେଇ ଯୂଇ ଫୁଲର ସୁଗନ୍ଧରେ ମୋର ମନ ତୃପ୍ତ ହେଲାନାହିଁ... ପ୍ରତ୍ୟେକ ରୋମମୂଳରେ ଅଙ୍କୁରି ଉଠିଲା ଅଳକାର ସ୍ପର୍ଶ। ମୁଁ ଧୀରେ ଆଖି ଖୋଲିଦେଲାମାତ୍ରେ ସେ ଦୂରେଇଯିବାକୁ ବସିଲା। ସଙ୍ଗେ ସଙ୍ଗେ ମୁଁ ଯୂଇ ଫୁଲର ଗଜରାଟିକୁ ଜୋର୍‌କରି ଭିଡ଼ିଆଣିଲି ତା'ର ଗଭାରୁ ଏବଂ ଦୁଇ ହାତରେ ଫୁଲଗୁଡ଼ିକୁ ଦଳିଦେଇ ନାକପାଖରେ ଚାପିଧଇଲି।

—"ଏ କି ପାଗଳାମି ଯୁବରାଜ ...!" ଅଳକାର କଣ୍ଠସ୍ୱର କମ୍ପିତ ହେବାକୁ ଲାଗିଲା।

—"ଏବେ ସୁଦ୍ଧା ମୋର ମନ ତୃପ୍ତ ହେଲାନି ଅଳକା! ମୋତେ ଆହୁରି ... ଆହୁରି ସୁଗନ୍ଧ ଦରକାର!" ହଠାତ୍ ମୁଁ କ'ଣ କରିବାକୁ ଯାଉଛି ଏହା ସେ ଚିନ୍ତା କରିବା ପୂର୍ବରୁ, ମୁଁ ହାତ ବଢ଼ାଇ ଅଳକାର ବେକ ନୁଆଁଇଆଣି ତା'ର

ସୁକୋମଳ ଗୋଲାପୀ ଓଠରେ ଲଗାଇଦେଲି ମୋର ଅତୃପ୍ତ ଅଧର। ଓଃ... କି ମଧୁରିମା ଭରିରହିଥିଲା ସେଇ ସୁକୋମଳ ଓଠରେ! ଡହଡହ ଜଳୁଥିବା ମରୁଭୂମିର ବାଲିପରି ମୋର ଓଠ ଶୁଖିଯାଇଥିଲା, ଦେହ ଓ ମନରେ ଜାଗିଉଠିଥିଲା ଅଦମ୍ୟ ପିପାସା। ଅଳକାର ଅଧରରୁ ପିଇଗଲି ଆକଣ୍ଠ ଅମୃତ, ଆକଣ୍ଠ ମଧୁ...! ଆହୁରି... ଆହୁରି... ଆହୁରି... ଗୋଟିଏ ଅସ୍ଫୁଟ ଗୁଞ୍ଜନ ଫୁଟିଉଠୁଥିଲା। ମୋର ଏତିକିମାତ୍ର ଧାରଣା ଥିଲା – ମୁଁ ଏକ ଅନିର୍ବଚନୀୟ ସୁଖଦ ଜଳାଶୟରେ ହତଜ୍ଞାନ ହୋଇ ସନ୍ତରଣ କରୁଛି। କିନ୍ତୁ ସେଥିରେ ନଥିଲା ପର୍ଯ୍ୟାପ୍ତ ଜଳ।

ହଠାତ୍ ସେହି ଜଳାଶୟରୁ ପ୍ରଶ୍ନ ହେଲା – "ଏ କ'ଣ ହେଉଛି ଯୁବରାଜ!" ମନେହେଲା, କ'ଣ କେହି ମତ୍ସ୍ୟକନ୍ୟା ସେଇ ଜଳକୁଣ୍ଡରୁ ମୋତେ ଏପରି ପ୍ରଶ୍ନ ପଚାରୁଛି; କିନ୍ତୁ ପ୍ରକୃତରେ ଆଉ କେହି ନଥିଲେ ସେଠାରେ; କେବଳମାତ୍ର ଥିଲା ଅଳକା। ମୋ ଶେଯ ପାଖରୁ ଦୂରେଇଯାଇ ଛିଡ଼ାହୋଇଥିଲା ଅଳକା। କିନ୍ତୁ ମୋ ଓଠର ପିପାସା ଆଦୌ ଶାନ୍ତ ହୋଇନଥିଲା, ମନ ଆଦୌ ତୃପ୍ତ ହୋଇନଥିଲା। ଶରୀରର ପ୍ରତ୍ୟେକ କଣିକା ଜାଗିଉଠିଥିଲା। ମୁଁ ଯେଉଁ ଅମୃତ ଆସ୍ୱାଦନ କରିଥିଲି, ତାହା ମୋ ପକ୍ଷରେ ହଳାହଳରେ ପରିଣତ ହୋଇଥିଲା। ସେଇ ଜ୍ୱାଳାର ଉପଶମ ଲାଗି ମୁଁ ଚାହୁଁଥିଲି ଆହୁରି ଅମୃତ।

ଅଳକାକୁ ଭିଡ଼ିଆଣିବାଲାଗି ମୁଁ ଯଥାସାଧ୍ୟ ଚେଷ୍ଟା କରି ଉଠିବାକୁ ଉଦ୍ୟତ ହେଲି; କିନ୍ତୁ ମୋର ଡାହାଣ ଗୋଡ଼ରେ ଭୀଷଣ ଆଘାତ ଲାଗିଥିବା ଯୋଗୁଁ ଅସହ୍ୟ ପୀଡ଼ା ହେବାକୁ ଲାଗିଲା। ତୀକ୍ଷ୍ଣ ଶରାଘାତରେ ଆହତ ପକ୍ଷୀପରି ଏକ ବିକଟ ଚିତ୍କାର କରି ମୁଁ ଧଡ଼୍‌କରି ଲୋଟିପଡ଼ିଲି ଶେଯ ଉପରେ।

ସେଇ ପ୍ରାଣଘାତୀ ରୋଗର ଉପଶମ ଲାଗି ଅନ୍ତତଃ ତିନି-ଚାରି ମାସ ଲାଗିଲା; କିନ୍ତୁ ସେଇ ରାତିରେ ମୋର ଆର୍ତ୍ତ ଚିତ୍କାର ଶୁଣି ରାଜପ୍ରାସାଦର ସମସ୍ତ ବ୍ୟକ୍ତି ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଥିଲେ। ସମସ୍ତେ ଧାରଣା କରିନେଲେ ଯେ ମୁଁ ମୃତ୍ୟୁମୁଖରୁ ଫେରିଆସିଛି, ମୋର ସଂଜ୍ଞା ଫେରିଆସିଛି। ରାଜବୈଦ୍ୟ ବିଚରା ଛୋଟ ବାଳକଟିଏ ପରି ଧାଇଁ ଧାଇଁ ମୋ ଶେଯ ପାଖକୁ ଆସି କଇଁକଇଁ ହୋଇ କାନ୍ଦିପକାଇଲେ। ତାଙ୍କର ଦୁଇ ଚକ୍ଷୁରୁ ଧାର ଧାର ହୋଇ ଝରିପଡ଼ିଲା ଆନନ୍ଦାଶ୍ରୁର ଅବାରିତ ଧାରା। ଆଠଦିନ ପର୍ଯ୍ୟନ୍ତ ମୁଁ ନିର୍ଜୀବ ଅବସ୍ଥାରେ ପଡ଼ିରହିଥିବାରୁ ମାଆ ମୋ ଉପରୁ ସଂପୂର୍ଣ୍ଣ ଭରସା ତୁଟାଇଦେଇ ନଗରର ପ୍ରତ୍ୟେକ ଦେବଦେବୀଙ୍କ ପାଖରେ ମାନସିକ ମାନିଥିଲେ। ମୁଁ ଟିକିଏ ଚଲାବୁଲା ଆରମ୍ଭ କରିଦେବାମାତ୍ରେ ସେ ଖୁବ୍ ଧୁମ୍‌ଧାମ୍‌ରେ ତାଙ୍କର ମାନସିକଗୁଡ଼ିକ ପୂରଣ କରିବାରେ ଲାଗିଗଲେ।

ମୋର ଜ୍ୱର ଭଲହୋଇଗଲା; କିନ୍ତୁ ଗୋଡ଼ର ଗୋଟିଏ ହାଡ଼ ଭାଙ୍ଗିଯାଇଥିବାରୁ ପୀଡ଼ା ସେଇ, ଅବଶ୍ୟ ମୋତେ ଅନେକ କଷ୍ଟ ଦେଲା। ଯା' ମଧ୍ୟରେ ରାଜବୈଦ୍ୟ ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳରୁ ଜଣେ ହାଡ଼ଯୋଡ଼ିଦେବା ବୈଦ୍ୟକୁ ଡାକିଆଣିଲେ। ସେ ଲୋକଟି ଥିଲା ନିପଟ ଜଙ୍ଗଲୀ; କିନ୍ତୁ ହାଡ଼ଯୋଡ଼ିଦେବା ବିଦ୍ୟାରେ ଧୁରନ୍ଧର। ତାଙ୍କୁ ଆଣିବାଲାଗି ରାଜବୈଦ୍ୟଙ୍କୁ ଖୁବ୍ ପରିଶ୍ରମ କରିବାକୁ ପଡ଼ିଥିଲା; କିନ୍ତୁ ସେ ବ୍ୟକ୍ତି

ମୋର ଭଙ୍ଗା ହାଡ଼ଗୁଡ଼ିକୁ ନିର୍ଭୁଲ ଭାବରେ ଯୋଡ଼ିଦେଲା। ମୋର ଚାଲବୁଲରେ ଆଉ କୌଣସି ଅସୁବିଧା ରହିଲାନାହିଁ। କିନ୍ତୁ ସେହି ତିନି-ଚାରି ମାସ କାଳ ମୋତେ ଅନେକ କଷ୍ଟ ତଥା ମନସ୍ତାପ ଭୋଗିବାକୁ ପଡ଼ିଲା। ମୋ କକ୍ଷର ବାତାୟନ ପାଖରେ ଛିଡ଼ାହୋଇ ମୁଁ ଲକ୍ଷ୍ୟକରେ ସ୍ୱଚ୍ଛନ୍ଦରେ ବିହାରକରୁଥିବା ଆକାଶର ପକ୍ଷୀମାନଙ୍କୁ। ସେମାନଙ୍କୁ ଦେଖି ମୁଁ ମୋର ପଙ୍ଗୁତା ପାଇଁ ନିତାନ୍ତ ଅସହାୟ ବୋଧକରୁଥିଲି। ମନହୁଏ— ଯା' ହେବାର ହେଉପଛକେ, ମୁଁ ସେଇ ଉଡ଼ନ୍ତା ଚଢ଼େଇଗୁଡ଼ିକ ପରି ଅନନ୍ତ ଆକାଶରେ ବିଚରଣ କରିବାଲାଗି ଏ ଝରକା ଡେଇଁ ପଳାଇଯିବି। ଘୋଡ଼ାର ହ୍ରେଷାରବ ଶୁଣିଲେ ମୋର ମନ ଚଞ୍ଚଳ ହୋଇଉଠେ, ଭୁଜଯୁଗଳରେ ସ୍ଫୁରଣ ଜାତହୁଏ, ଛାତି ଫୁଲିଉଠେ। କିନ୍ତୁ ନିଜର ପଙ୍ଗୁତା ସମ୍ବନ୍ଧରେ ବିଚାରକରି ମୁଁ ମନେ ମନେ ଖୁବ୍ ବିରକ୍ତ ହୋଇ ଚାହିଁରହେ ମୋର ଶରୀରକୁ। ଗତ ଦଶବର୍ଷହେଲା ଯେଉଁ ଶରୀରର ସୌନ୍ଦର୍ଯ୍ୟ ବୃଦ୍ଧିଲାଗି ମୁଁ ମନ ପ୍ରାଣ ଦେଇ ରାତିଦିନ ଲାଗିପଡ଼ିଥିଲି, ସେଇ ଶରୀର ଆଜି ମୋ ପ୍ରତି କୃତଘ୍ନ ହୋଇଉଠିଛି। ନା... ମଣିଷ ତା'ର ଶରୀରକୁ ଭଲପାଏ; କିନ୍ତୁ ପ୍ରତିଦାନରେ ଶରୀର ତାକୁ ଭଲପାଇପାରେନା; ବରଂ ସୁବିଧା ଦେଖି ବିଶ୍ୱାସଘାତକ ହୋଇଉଠେ। ଅବସ୍ଥାଚକ୍ରରେ ତା'ର ଶତ୍ରୁ ହୋଇଯାଏ।

ମୁଁ ଶେଯରେ ପଡ଼ିରହି ଅନେକ ଚିନ୍ତାକରେ— ଏ ଶରୀର କାହିଁକି କିପରି ମଣିଷର ଶତ୍ରୁ ହୋଇଯାଏ; କିନ୍ତୁ ତିଳେହେଲେ ସମାଧାନରେ ପହଞ୍ଚିପାରେନାହିଁ। ଅନେକ ସମୟରେ ମୁଁ ଭାବିଛି— ଏ ଶରୀରରେ ମୋ ଭିନ୍ନ ଆଉ ଗୋଟିଏ ଭିନ୍ନ ଯଯାତି ନିଶ୍ଚୟ ରହିଛି; କିନ୍ତୁ ତାକୁ ମୁଁ ଚିହ୍ନିବି କିପରି? ମୁଁ ଭଲଭାବରେ ଜାଣିଥିଲି— ମନ, ବୁଦ୍ଧି ଓ ଅନ୍ତରାତ୍ମା ଶରୀରର ଅବୟବ ନୁହନ୍ତି, ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି। କିନ୍ତୁ ଶରୀର ମୋ ପ୍ରତି ଦାଉସାଧିବାବେଳେ ଏମାନେ ନୀରବ ଦ୍ରଷ୍ଟା ହୋଇ ରହିଲେ କାହିଁକି? ଆଠଦିନକାଳ ସଂଜ୍ଞାହୀନ ଅବସ୍ଥା। କେବଳ ଔଷଧ କାହିଁକି, ରାଜବୈଦ୍ୟ ମୋତେ ବିଷପାନ କରାଇଥିଲେ ବି ମୁଁ ଅମୃତ ପରି ତାକୁ ପାନକରିଥାଆନ୍ତି। ସେଇ ଚେତନାହୀନ ଅବସ୍ଥାରେ ମୋର ଅବଚେତନ ମନ ଥିଲା କେଉଁଠି? ବୁଦ୍ଧି କୁଆଡ଼େ ଉଭେଇଯାଇଥିଲା? ଅନ୍ତରାତ୍ମା କେଉଁଠି ଆତ୍ମଗୋପନ କରି ରହିଥିଲା? ସେତେବେଳେ ଥିଲା ଚତୁର୍ଦ୍ଦିଗ ଅନ୍ଧକାର, କେବଳ ଅନ୍ଧକାର! ମୁଁ ଛଟପଟ ହୋଇ ନିଜ ହାତଗୋଡ଼କୁ ଚାହିଁ ବିଡ଼୍‌ବିଡ଼୍ ହୋଇ କହୁଥିଲି— "ତୁମେଗୁଡ଼ାକ ପାଗଳ। ଏ ଶରୀରଟା ତୁମ ସହିତ ଚିରଦିନଲାଗି କ'ଣ ଶତ୍ରୁତା କଲା କି? ସେ ରାତିରେ ଅଳକାର ଗୋଲାପୀ ଅଧରର ସ୍ପର୍ଶ କିଏ ଦେଇଥିଲା ତୁମକୁ? ମୁଁ ନୁହେଁ କି?

ସେ ରାତିର ସେଇ ମଧୁର ସ୍ମୃତି ଜୀବନରେ ଏକ ଅଭୁଲା ରେଖା ଟାଣିଦେଇଛି। ମନରେ ଯେତେବେଳେ ସେଇ ସ୍ମୃତି ଜାଗ୍ରତ ହୁଏ, ମୁଁ କିଛି ସମୟ ଲାଗି ଭୁଲିଯାଏ ମୋର ସମସ୍ତ ଦୁଃଖ; ଏପରିକି ଶରୀରର ପଙ୍ଗୁତା ପ୍ରତି ମଧ୍ୟ ଖିଆଲ ରହେନାହିଁ। ବାହାରେ ଯେତେ ଦିବାଲୋକ ଥିଲେ ମଧ୍ୟ ମୋ ଆଖିଆଗରେ ଝଲସିଉଠେ ସେଦିନର ସେଇ ମଧୁର ରଜନୀ, ସତେ ଯେପରି ହାତରେ ଆରତିର ଥାଳି ଧରି କୌଣସି ରୂପସୀ ମୋ ଆଗରେ ଛିଡ଼ାହୋଇଛି ବନ୍ଦାପନାଲାଗି। ଯୂଇଫୁଲର ମନମତାଣିଆ

ସୁଗନ୍ଧ, ଅଳକାର କେଶଗୁଚ୍ଛର ସୁଖଦ ସ୍ପର୍ଶ, ତା'ର କାନ୍ତକୋମଳ ଅଧରର ମଧୁମୟ ପରଶ, ଏ ସବୁର ମଧୁର ସ୍ମୃତିରେ ମୋର ପ୍ରତ୍ୟେକ ରୋମମୂଳ ଟାଙ୍କୁରିଉଠେ ଏବଂ ମୁଁ ଆନନ୍ଦରେ ଆତ୍ମହରା ହୋଇଉଠେ।

ଅସୁସ୍ଥତାର ସେହି ତିନି-ଚାରିମାସ ମଧ୍ୟରେ ସବୁଠାରୁ ବେଶି ଆନନ୍ଦ ଦେଇଛି ମୋତେ ଏଇ ମଧୁମୟ ସ୍ମୃତି। ସମୟ ଅସମୟରେ ଏଇ ସ୍ମୃତିରେ ବିଜଡ଼ିତ ହୋଇ ପଡୁଥିବାର ଲକ୍ଷ୍ୟକରି ମୁଁ ବିସ୍ମିତ ହୋଇଉଠେ। କିନ୍ତୁ ଆଉଥରେ ସେଇ ଅଧରର ପରଶ ଲାଗି ମୁଁ ବ୍ୟାକୁଳ ହୋଇଥିଲେହେଁ, କେବେହେଲେ ସେପରି ସୁଯୋଗ ପାଇନାହିଁ। ଅବଶ୍ୟ ଅଳକା ମୋର ସେବାରେ ଅନେକଥର ନିଯୁକ୍ତ ହୋଇଛି; କିନ୍ତୁ ରାତିରେ ନୁହେଁ, ଦିନରେ। ରାତିବେଳେ କେତେ ନବଯୌବନା ଦାସୀ ପାଳିକରି ମୋ ସେବାରେ ନିଯୁକ୍ତ ହୋଇଛନ୍ତି; କିନ୍ତୁ ମୁଁ କାହାରିଆଡ଼କୁ ଆଡ଼ଆଖିରେ ସୁଦ୍ଧା ଚାହିଁନି; ମୁଁ କେବଳ ଚାହୁଁଥିଲି ଅଳକାର ସାନ୍ନିଧ। ସେ ବେଣୀରେ ଯୂଇଫୁଲ ଗଜରା ବାନ୍ଧି ମୋ ଆଗରେ ଆସି ଛିଡ଼ାହୋଇ କହନ୍ତା – 'ମୁଁ ଆପଣଙ୍କ ସହିତ କଟି କରିଦେବି' କିମ୍ବା ଆଡ଼ରୁଷା ଦେଇ କହନ୍ତା – 'ଏ କ'ଣ ହେଉଛି ଯୁବରାଜ!' ତାର କ୍ରୋଧମିଶା ସ୍ୱର, ବାଳସଙ୍ଗିନୀର ସେଇ ଅଭିମାନଭରା ଅସ୍ଫୁଟ ଗୁଞ୍ଜନ ଶୁଣିବାକୁ ମୋ ମନ ଉତଳା ହୋଇଉଠୁଥିଲା। ସେ ଦିନବେଳେ ମୋ ଚାରିପଟେ ଘୂରାଫେରା କରୁଥିବାବେଳେ ମୁଁ ତାକୁ ଦୀର୍ଘଦିନର ଦୀନ କାଙ୍ଗାଳପରି ପିଆସି ଚାହାଣିରେ ଚାହିଁରହେ; ତା'ର ପ୍ରତ୍ୟେକ ପଦକ୍ଷେପକୁ ମୁଁ ମୋର ସତୃଷ୍ଣ ଦୃଷ୍ଟିରେ ବାନ୍ଧିରଖେ।

ଅଳକାର ମଧୁର ସ୍ମୃତି ସହିତ ସେ ସମୟରେ ଆଉ ଗୋଟିଏ ମନଭୁଲା ସ୍ୱପ୍ନ ମୋ ମନମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା। ହାତ ଯୋଡ଼ିବାଲାଗି ଆସିଥିବା ସେଇ ଜଙ୍ଗଲୀ ଲୋକ ଆର୍ଯ୍ୟାବର୍ତ୍ତର ବିଭିନ୍ନ ଦେଶ ପରିଭ୍ରମଣ କରିଥିଲା। ବିଭିନ୍ନ ଗୁହା, ଗହ୍ୱର, ବଣ, ପାହାଡ଼, ସମୁଦ୍ର, ଦେବମନ୍ଦିର ତଥା ଜନସାଧାରଣଙ୍କ ସମ୍ବନ୍ଧରେ ଅନେକ କୌତୂହଳପୂର୍ଣ୍ଣ କାହାଣୀ ସେ ମୋ ଆଗରେ କହିଯାଉଥିଲା। ତା'ର କଥାଗୁଡ଼ିକ ଶୁଣି ଶୁଣି ମୋ ମନ ମଧ୍ୟରେ ଗୋଟିଏ ସୁନ୍ଦର ଭାବନା ମୁଣ୍ଡ ଟେକିଥିଲା। ସେତେବେଳେ ସେଇ ଭାବନା ସ୍ୱପ୍ନର ରୂପ ନେଇ ମୋ ମାନସପଟଳରେ ପ୍ରତିଭାତ ହୋଇଥିଲା – 'ଅଶ୍ୱମେଧ ଘୋଟକ' ନେଇ ମୁଁ ବାହାରିଯାଇ କେତେ ବଣ, ପାହାଡ଼, ନଦୀ, ଗହ୍ୱର ପାରହୋଇ ଆଗେଇ ଚାଲିଛି, କେତେ ସୁରମ୍ୟ ପ୍ରଦେଶରେ ବିଚରଣ କରିବା ସଙ୍ଗେ ସଙ୍ଗେ ଗୋଟିକ ପରେ ଗୋଟିଏ ଶକ୍ତିଶାଳୀ ଦେଶକୁ ପଦାନତ କରିଚାଲିଛି। ସେଇ ସ୍ୱପ୍ନର ଶେଷ ଦୃଶ୍ୟ ହେଉଛି – ଦିଗ୍‌ବିଜୟୀ ବୀର ଭାବରେ ମୁଁ ଫେରିଆସିଛି ରାଜଧାନୀକୁ; ମୋର ସ୍ୱାଗତ ସମ୍ବର୍ଦ୍ଧନାରେ ନଗର ଫାଟିପଡୁଛି। ମୋତେ ବୀରୋଚିତ ସ୍ୱାଗତ ଜଣାଇବାପାଇଁ ରାଜମହଲର ସିଂହଦ୍ୱାରରେ ଅର୍ଘ୍ୟଥାଳୀ ଧରି ବନ୍ଦାପନା ଉଦ୍ଦେଶ୍ୟରେ ଛିଡ଼ାହୋଇଥିବା ଯୁବତୀମାନଙ୍କ ମଧ୍ୟରେ ପଞ୍ଚଶାଖା ଦୀପମାଳା ଧରି ଆଗେଇ ଆସୁଛି ଅଳକା।

ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲି। ତା'ପରେ ଅମାତ୍ୟ ତଥା ଅନ୍ୟାନ୍ୟ ଗୁରୁଜନଙ୍କଠାରେ ସ୍ୱପ୍ନର ବୃତ୍ତାନ୍ତ ବର୍ଣ୍ଣନା କଲି। ସେମାନେ ମଧ୍ୟ ମୋର ସ୍ୱପ୍ନକୁ ସାକାର କରିବାଲାଗି

ଅନୁକୂଳ ମତ ଦେଲେ। ମାଆ ବାରମ୍ବାର ବାରଣ କରୁଥିଲେ ମଧ୍ୟ ପିତା ନଗରଦେବତାଙ୍କ ଉପବରେ 'ଅଶ୍ୱମେଧ ଯଜ୍ଞ'ର ଘୋଷଣା କରିଦେଲେ।

× × × × ×

ସେଦିନ କଥା ଏବେ ମଧ୍ୟ ମୋର ମନେପଡୁଛି; ବୀରପୁରୁଷର ପରାକ୍ରମ ପରି ସେ ସବୁ ଘଟଣା ଗୋଟି ଗୋଟି କରି ଆଖିଆଗରେ ନାଚିଉଠୁଛି। ସେଦିନର ସେହି ଅଭୁଲା ରାତିଗୁଡ଼ିକ ଆଜି ମଧ୍ୟ ମନକୁ ଉନ୍ମାଦିନୀ ନାୟିକାର ନୂପୁରନାଦିତ ପଦବିନ୍ୟାସ ପରି ଝଙ୍କୃତ କରୁଛି।

ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ମୁଁ ଅଶ୍ୱମେଧ ଘୋଡ଼ା ସହିତ ପରିଭ୍ରମଣ କଲି। ପ୍ରତ୍ୟେକ ପଦକ୍ଷେପରେ ମୁଁ ଏଇ ପବିତ୍ର ତଥା ପ୍ରାଚୀନ ଭୂମିର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲି। ପଞ୍ଚମହାଭୂତର ତାଳେ ତାଳେ ଗୁଞ୍ଜରିତ ସେହି ମଧୁର ସଙ୍ଗୀତ ମୋର କାନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା ଏବଂ ତା'ର ନିତ୍ୟ ନୂତନ ମଧୁର ନୃତ୍ୟ ମୁଁ ମନ ମଧ୍ୟରେ ସାଇତି ରଖିଲି। ଅଶ୍ୱମେଧର ଘୋଟକ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଚତୁର୍ଦ୍ଦିଗରେ ଘୂରିବାକୁ ଲାଗିଲା। ପ୍ରତ୍ୟେକ ଦିଗର ସୁନ୍ଦର ଭୂମିର ରମଣୀୟତା ମୋ ମନରେ ଲାଖିରହିଲା। ପ୍ରତ୍ୟେକ ଋତୁରେ ଧରଣୀରାଣୀ ଅଭିନବ ବେଶଭୂଷାରେ ଅଳଙ୍କୃତ ହେଉଥିଲେ। ସେହି ଭବ୍ୟ ମୂର୍ତ୍ତି ସନ୍ଦର୍ଶନରେ ମୁଁ ବିଭୋର ହୋଇଉଠିଲି। ଦେଶର ନଦୀଗୁଡ଼ିକରେ ଦୁଗ୍ଧଧାରା ପରି ଜଳଧାରା ପ୍ରବାହିତ ହେଉଥିଲା। ପର୍ବତଗୁଡ଼ିକ ଧରଣୀରାଣୀର ବକ୍ଷୋଜ ପରି ମୋ ଆଗରେ ପ୍ରତିଭାତ ହେଲେ। ମୁଁ ସେହି ଅଭିନବ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଲୋକମାତାଙ୍କର କଲ୍ୟାଣକର ପରିପ୍ରକାଶରେ ପୁଲକିତ ହୋଇଉଠିଲି।

କେବେ କେବେ ରାତିରେ ମୋ ସ୍ନେହମୟୀ ଜନନୀଙ୍କର ସ୍ମୃତି ମୋ ଆଖି ଆଗରେ ଭାସିଉଠେ, ତାଙ୍କର ଉପଦେଶ ତଥା ଆକୁଳତା ମୋ ମନଗହନରେ ଅଙ୍କିତ ହୋଇଯାଏ। ମୁଁ ମନେମନେ ପ୍ରତିଜ୍ଞା କରି କହିଦିଏଁ– ନା ... ନା ... ନା ... ମୁଁ ସନ୍ୟାସୀ ହେବିନାହିଁ। ମୁଁ ମା'ଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହୋଇଥିଲି; ତେଣୁ ଦୁନିଆକୁ ମୁହଁ ମୋଡ଼ିଦେବା ଅପେକ୍ଷା, ମୁଁ ତା'ର ସମ୍ମୁଖୀନ ହେବାକୁ ଅଧିକ ଶ୍ରେୟ ମନେକଲି। ଦୁନିଆର ସୁଖସମୃଦ୍ଧିକୁ ତ୍ୟାଗକରି ମୁଁ ଜଙ୍ଗଲକୁ ଚାଲିଯିବାକୁ ପସନ୍ଦ କରୁନଥିଲି; ବରଂ ଦୁନିଆର ସମସ୍ତ ଭୋଗବିଳାସରେ ଲିପ୍ତ ରହି ଅଜେୟ ହେବାକୁ ଚାହୁଁଥିଲି। ପୃଥ୍ୱୀପତି ଭାବରେ କିଛି କରିଯିବା ଲାଗି ମନେ ମନେ ଦୃଢ଼ ହେଉଥିଲି।

ଆମ ଅଶ୍ୱମେଧ ଘୋଟକର ବିରୋଧ ଅଳ୍ପ କେତୋଟି ରାଜ୍ୟରେ ହୋଇଥିଲା। ପିତା ନିଜର ଶୌର୍ଯ୍ୟବଳରେ ସମଗ୍ର ଆର୍ଯ୍ୟାବର୍ତ୍ତରେ ପ୍ରଭାବ ପକାଇଥିଲେ। ତେଣୁ ଇନ୍ଦ୍ରଙ୍କ ପରାଭବକାରୀ ମହାରାଜା ନହୁଷଙ୍କ ଘୋଟକର ବିରୁଦ୍ଧାଚରଣ କରିବାକୁ ସାହସ ଅବା କିଏ କରନ୍ତା ? ଅବିଚାରିତ ଭାବରେ ଜଣେ ଅଧେ କେହି ସେପ୍ରକାର ସାହସ କରିଥିଲେହେଁ ମୁଁ ମୋର ପରାକ୍ରମ ବଳରେ ସେମାନଙ୍କୁ ପରାଭୂତ କରି ଜଣାଇଦେଇଥିଲି– ନହୁଷଙ୍କ ପୁତ୍ର ଯଯାତି ପିତାଙ୍କ ପରି ଶକ୍ତିଶାଳୀ, ଶୌର୍ଯ୍ୟସମ୍ପନ୍ନ ତଥା କୌଣସି ଗୁଣରେ କମ୍ ନୁହେଁ।

ଏହିପରି କେତୋଟି ଛୋଟ ବଡ଼ ସଙ୍ଘର୍ଷରେ ମୋତେ ଖୁବ୍ ଆନନ୍ଦ ମିଳିଥିଲା। ତା' ବ୍ୟତୀତ ଶିକାରରେ ମୁଁ ଖୁବ୍ ଆନନ୍ଦିତ ହେଉଥିଲି; ଛୋଟବଡ଼ ସବୁପ୍ରକାର ପଶୁ ମୋର ଆଖେଟରେ ଶରବ୍ୟ ହୋଇଥିଲେ। କିନ୍ତୁ କେବେକେବେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ମାନବୀ ଶକ୍ତିର ସମ୍ମୁଖୀନ ହେବାକୁ ମୁଁ ସ୍ୱାଗତ ଜଣାଉଥିଲି। ପ୍ରକୃତରେ ଏପରି ଅବସରରେ ଶୂରବୀରମାନଙ୍କ ବାହୁରେ ଯାଦୁକରୀ ଶକ୍ତିର ସଞ୍ଚାର ହୋଇଥାଏ। ଶିକାରର ଆନନ୍ଦ ଅପେକ୍ଷା, ଯୁଦ୍ଧରେ ବିଜୟ ଲାଭ କରିବା ଅଧିକ ଉନ୍ମାଦକର ହୁଏ। ମୁଁ ସେପରି ଉନ୍ମାଦନାକୁ ସ୍ୱାଗତ ଜଣାଉଥିଲି ଏବଂ ସେହିପରି ଉନ୍ମାଦନାର ମଧୁରିମା ମୁଁ ଆସ୍ୱାଦ କରୁଥିଲି। ସେଇଥିପାଇଁ ମୁଁ ସେଦିନ ନଗରଦେବତାଙ୍କ ଉତ୍ସବରେ ସେପରି ଉନ୍ମାଦନା ଦେଖାଇ ଗୋଟିଏ ନିର୍ବାକ୍ ପଶୁ ଉପରେ ବିଜୟ ଲାଭ କରିଥିଲି।

ଅଶ୍ୱମେଧ-ଘୋଟକ ସହିତ ବୁଲୁଥିବା ଅବସ୍ଥାରେ ବଡ଼ ବଡ଼ ପରାକ୍ରମଶାଳୀ ରାଜାମହାରାଜାଙ୍କୁ ପଦାନତ ହେଉଥିବାର ଦେଖି, ଧୁରନ୍ଧର ଶକ୍ତିଶାଳୀ ବୀରମାନଙ୍କୁ ଦନ୍ତରେ ତିରଣ ଧରି ମୋ ଆଗରେ ଯୋଡ଼ହସ୍ତରେ ଛିଡ଼ାହୋଇଥିବାର ଅବଲୋକନ କରି ମୁଁ ଆନନ୍ଦର ଉତ୍ତୁଙ୍ଗ ଶିଖରରେ ଆରୋହଣ କରିଥିଲି। ପିଲାଦିନେ ଗଙ୍ଗଶିଉଳି ଫୁଲଗଛକୁ ଜୋର୍‌ରେ ହଲାଇଦେଇ ଝଡ଼ିପଡୁଥିବା ଫୁଲଗୁଡ଼ିକୁ ଦେଖି ମୁଁ ଖୁବ୍ ଆନନ୍ଦ ଅନୁଭବ କରୁଥିଲି। ସେହିପରି ଆକାଶରୂପୀ ବୃକ୍ଷକୁ ଦୋହଲାଇ ଦେଇ, ଅସଂଖ୍ୟ ତାରାଗୁଡ଼ିକୁ ପୃଥିବୀପୃଷ୍ଠରେ ବିଭୂଷିତ କରିଦେବାଲାଗି ମୋ ମନରେ ଲାଳସା ଜାଗିଉଠିଲା। କିନ୍ତୁ ପରମୁହୂର୍ତ୍ତରେ ଭାବିଲି– ମୁଁ କେଡ଼େ ପାଗଳଟାଏ ? ଅର୍ଦ୍ଧରାତ୍ରିରେ ଦପ୍‌ଦପ୍ ଜଳୁଥିବା ଆକାଶବିତାନର ଏହି ନକ୍ଷତ୍ରରାଶିକୁ ଦେଖିବାରେ ଯେଉଁ ଆନନ୍ଦ, ଗଗନର ଚନ୍ଦ୍ରଉଦିଆଗୁଡ଼ିକୁ ତଳକୁ ଖସାଇଦେଲେ ସେ ଅପାସୋରା ସୁଖ ମିଳିବ କାହୁଁ? ପ୍ରକୃତିରାଣୀର ପ୍ରାଙ୍ଗଣରୁ ସେହି ଦୀପଗୁଡ଼ିକୁ ଲିଭାଇଦେବାରେ ସେ ପୁଲକ ଜାତ ହେବ କିପରି ?

ଏଇ ପ୍ରବାସ କାଳରେ ମୋତେ ଅନେକ ସମୟ ରାତିରେ ନିଦ ହୁଏ ନାହିଁ। ମାଆଙ୍କୁ ସ୍ମରଣ କରି କିମ୍ବା ଅନ୍ୟ କୌଣସି କାରଣବଶତଃ ଯେ ଏପରି ହେଉଥିଲା ତା' ନୁହେଁ; ବରଂ କୌଣସି ଏକ ଅକୁହା, ଅଦେଖା ସ୍ମୃତିରେ ମୋ ଆଖିରୁ ନିଦ କୁଆଡ଼େ ଉଭେଇଯାଉଥିଲା; ଶରୀର ଅବଶ ହୋଇଉଠୁଥିଲା; କିନ୍ତୁ ଆରୋହଣକାରୀର ଶାରୀରିକ ଶୈଥିଲ୍ୟ ପ୍ରତି ଦୃଷ୍ଟି ନଦେଇ, ଯେପରି ରଥରେ ଯୋଚ୍ଚାଯାଇଥିବା ଘୋଡ଼ାମାନ ପ୍ରଚଣ୍ଡବେଗରେ ରଥକୁ ଟାଣିନେଇ ଆଗେଇଯାଆନ୍ତି; ଠିକ୍ ସେହିପରି ମୋର ଶିଥିଳ ଶରୀରକୁ ଚଞ୍ଚଳ ମନ ଓଟାରିନେଇ ସ୍ୱଚ୍ଛନ୍ଦ ପରିଭ୍ରମଣରେ ବାହାରି ପଡୁଥିଲା। ଜନ୍ମ, ମୃତ୍ୟୁ, ପ୍ରଣୟ, ଗୌରବ, ଧର୍ମ ଓ ଈଶ୍ୱର ଆଦି କେତେ କ'ଣ ଦ୍ୱାହିଦେଇ ମନଗହନରେ ଅନେକ ପ୍ରଶ୍ନର ଚକ୍ରବ୍ୟୂହ ସୃଷ୍ଟିକରୁଥିଲା। ମନେହୁଏ – ମୃତ୍ୟୁର ଗୋପନୀୟ ରହସ୍ୟ ଜାଣିବାକୁ ବ୍ୟଗ୍ର ହୋଇଥିବା ଋଷିକୁମାର ନଚିକେତାର କାହାଣୀ ନିପଟ ମିଥ୍ୟା। ମୋର ପ୍ରତ୍ୟେକ ଲୋମକୂପରୁ ନିନାଦିତ ହେଉଥିଲା – 'ମୁଁ ବଞ୍ଚିରହିବି'। କିନ୍ତୁ ପରମୁହୂର୍ତ୍ତରେ ମନ ପରିହାସ କରି କହିଉଠୁଥିଲା – 'ତେବେ . . . ତୁମେ ମୃତ୍ୟୁଆଡ଼କୁ ଜାଣିଶୁଣି ସ୍ୱେଚ୍ଛାକ୍ରମେ ଅଗ୍ରସର ହେଉଛ କାହିଁକି ? ଏ ଅଶ୍ୱମେଧ ଘୋଡ଼ା ପଛରେ

ଧାଇଁଚାଲିଛ କାହିଁକି ? ହୁଏତ କୌଣସି ସ୍ଥାନରେ ବିରୋଧ ହୋଇପାରେ; ତା'ପରେ ଲାଗିଯିବ ଘମାଘୋଟ ଯୁଦ୍ଧ, ସେଇ ଯୁଦ୍ଧର ବଳିବେଦୀରେ ତୁମେ ହୁଏତ ସ୍ୱାହା ହୋଇଯିବ। ଯେ ବଞ୍ଚିବାକୁ ଚାହେଁ, ସେ ଏପରି କଣ୍ଟକିତ ପଥରେ ଜାଣିଶୁଣି ପାଦ ଦେବ କାହିଁକି ? ଯେଉଁଠି ମୃତ୍ୟୁ କରାଳ ରୂପରେ ପରିକ୍ରମା କରିଚାଲିଛି, ସେ ଆଡ଼କୁ ଅଗ୍ରସର ହେବ କାହିଁକି ?

ମୋର ମନ ମଧ୍ୟରେ ସଦାସର୍ବଦା ଲାଗିରହିଥିବା ବିଷାଦର ସମାଧାନ ଲାଗି ମୁଁ ଅସମର୍ଥ ହୋଇଉଠେ; ସେତିକିବେଳେ ବିଶ୍ରାମର କୁସୁମିତ ଶଯ୍ୟା ମଧ୍ୟ କଣ୍ଟକିତ ହୋଇଯାଏ ଏବଂ ଶେଯରୁ ଧୀରେ ଉଠି ବାହାରକୁ ବାହାରିଆସେ। ଅନନ୍ତ ଆକାଶରେ ଲୁଚକାଳି ଖେଳୁଥିବା ତାରାଗୁଡ଼ିକ ଆଡ଼କୁ ଅପଲକ ଦୃଷ୍ଟିରେ ଚାହିଁରହେ। ଶରୀରରେ ଶିହରଣଜାତକାରୀ ସୁଲୁସୁଲିଆ ବାଆ ସହିତ ମନଖୋଲି କଥାବାର୍ତ୍ତା କରେ। ସେତିକିବେଳେ ଆଖପାଖର ବଗିଚାରେ ଆମ୍ରଗଛଗୁଡ଼ିକ କ'ଣ କେଜାଣି ନିଜ ଭାଷାରେ କେତେ କଥା ଫୁସ୍‌ଫାସ୍ ହୁଅନ୍ତି; କିନ୍ତୁ ସବୁ ଶୁଣେ; ପାଖରେ ଥିବା କୌଣସି ଏକ ଜଳାଶୟରୁ ଭାସିଆସୁଥିବା ଚକୁଆ-ଚକୋଇର ବିକଳ ରାଗିଣୀର ମର୍ମ ବୁଝେ; ପ୍ରକୃତରେ ସେ କରୁଣ ତାନ ମୋ ଅନ୍ତରରେ ଏକ ଅଭୁଲା ଶିହରଣ ସୃଷ୍ଟିକରେ। ହଠାତ୍ ମହାକାଶର ଅନନ୍ତ ବିତାନରୁ ଗୋଟିଏ ତାରକା ଜ୍ୱଳନ୍ତ ଅଗ୍ନିକଣିକା ପରି ଖସିଆସି କେଉଁଆଡ଼େ ଉଭେଇଯାଏ। ଧୀରେ ଧୀରେ ମୋ ଅଶାନ୍ତ ମନରେ ଶାନ୍ତି ଛାଇଯାଏ। ନିଶାର୍ଦ୍ଧରେ ସୁଷୁପ୍ତିର ନିସ୍ତବ୍‌ଧତା ଚାରିଆଡ଼େ ବ୍ୟାପିଯାଏ; ଏପରିକି ମୋ ସେନାଛାଉଣୀରୁ ଘୋଟକମାନଙ୍କର ହ୍ରେଷାରବ ମଧ୍ୟ ଶୁଭେନାହିଁ। ପ୍ରକୃତରେ ଏହି ସୁଖଦ ମୁହୂର୍ତ୍ତର ପ୍ରଶାନ୍ତି ଅନୁଭବ କରିବାପରେ, ଅଜାଣତରେ ମୋର ଅନ୍ତରାତ୍ମା ବିମୁଗ୍ଧ ହୋଇଉଠେ ଏବଂ ମୋ ମୁହଁରୁ ପରିତୃପ୍ତିର ସହିତ ବାହାରିପଡ଼େ— 'ଓଁ ଶାନ୍ତିଃ। ଶାନ୍ତିଃ।। ଶାନ୍ତିଃ।।। ତା'ପରେ ନିଦ୍ରାଦେବୀ ତାଙ୍କର ରେଶମୀ ଚାଦର ମୋ ଉପରେ ଘୋଡ଼ାଇଦେଇ ନାନାବାୟାଗୀତ ଗାଇଉଠନ୍ତି।

ଦିବସର ପରାକ୍ରମଜନିତ ଉନ୍ମାଦନା ତଥା ରାତ୍ରିର ସୁଷୁପ୍ତିଜନିତ ପ୍ରଶାନ୍ତି, ଉଭୟ ମୋ ପକ୍ଷରେ ଆନନ୍ଦପ୍ରଦ ହୋଇଥାଏ; କିନ୍ତୁ କିପରି ଏ ଦୁହିଁଙ୍କ ମଧ୍ୟରେ ମିଳନ ସମ୍ଭବ ହେବ ମୁଁ ଆଦୌ ଉପାୟ ଖୋଜି ପାଏନାହିଁ। ଅଶ୍ୱମେଧ ଘୋଟକର ଅନୁସରଣ ମୁଁ କରିଚାଲିଥାଏ ଏବଂ ପ୍ରତିମୁହୂର୍ତ୍ତରେ ସମୟରୂପକ ବୃକ୍ଷରୁ ଗୋଟିଏ ଗୋଟିଏ ଶୁଷ୍କ ପତ୍ର ଝରିପଡୁଥାଏ। ଏଇ ପରିଭ୍ରମଣ ମଧ୍ୟରେ ମୁଁ ପ୍ରଶାନ୍ତି ଓ ଉନ୍ମାଦନାର କେତେ ଯେ ଦିବ୍ୟରୂପ ଅବଲୋକନ କରିଛି ତା'ର କଳନା ନାହିଁ।

ନୃତ୍ୟରେ ବିଭୋର ନର୍ତ୍ତକୀର ଅଙ୍ଗବାସ ଅସ୍ତବ୍ୟସ୍ତ ହୋଇଗଲେ ତା'ର ରୂପସମ୍ଭାର ଚକ୍ଷୁର ଦୃଷ୍ଟିଗୋଚର ହୋଇଥାଏ; କେତେଥର ସେଇପରି ଅପରୂପ ଶୋଭାଯୁକ୍ତ ଶୁକ୍ଳ-ଚତୁର୍ଥୀର ଚାନ୍ଦିନୀ ମୁଁ ଅବଲୋକନ କରି ଆତ୍ମବିଭୋର ହୋଇଉଠିଛି। ଥରେ ଘନ ଜଙ୍ଗଲରେ ମଧ୍ୟରାତ୍ରିରେ ମୁଁ ଶିବିରରୁ ଉଠି ବାହାରକୁ ଚାଲିଗଲି। ନିସ୍ତବ୍‌ଧ ରଜନୀରେ ଝିଙ୍କାରୀର ଝିଁ ଝିଁ ଶବ୍ଦ, ହିଂସ୍ରଜନ୍ତୁଙ୍କର ଭୟଙ୍କର ଗର୍ଜନ, ରାତ୍ରିର ଘନ ଅନ୍ଧକାର ମଧ୍ୟରେ ମୋର ମନେହେଲା, ସତେଯେପରି, ମୁଁ କେଉଁ ଯକ୍ଷଲୋକରେ

ବିଚରଣ କରୁଛି। କିନ୍ତୁ ସଘନ ବୃକ୍ଷରାଜିର ରନ୍ଧ୍ର ଭେଦକରି ଝରିପଡୁଥିବା ଜ୍ୟୋତ୍ସ୍ନା ଅବଲୋକନ କରି ମୁଁ ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲି।

ସେ ରାତିର ସେହି ଜ୍ୟୋତ୍ସ୍ନାଲୋକ ପରି ଅନ୍ୟ ଗୋଟିଏ ଦିନର ବନାଗ୍ନିର ବିଭୀଷିକା ଅଦ୍ୟାପି ମୋ ହୃଦୟପଟରେ ଅଙ୍କିତ ହୋଇ ରହିଛି। ମନେହେଲା – ସତେ ଅବା ସମୁଦାୟ ଜଙ୍ଗଲଟିକୁ ଅଗ୍ନି ଗ୍ରାସ କରିଯାଉଛି; କିନ୍ତୁ ସେ ଦୃଶ୍ୟର ଭୟଙ୍କରତା ମଧ୍ୟରେ ତାର ଭବ୍ୟରୂପ ମଧ୍ୟ ମୋ ସମ୍ମୁଖରେ ପ୍ରତିଭାତ ହୋଇଥିଲା। ଜଣାଯାଉଥିଲା – ସତେ କ'ଣ ସ୍ରଷ୍ଟାଙ୍କର ଏହା ଏକ ଯଜ୍ଞକୁଣ୍ଡ, ପ୍ରଚୁର ଘୃତାହୁତି ଫଳରେ ଅଗ୍ନିର ଲେଲିହାନ ଶିଖା ଗଗନକୁ ସ୍ପର୍ଶ କରିବାଲାଗି ଅଗ୍ରସର ହେଉଛି! ଏହିପରି ଏକ ଯଜ୍ଞକୁଣ୍ଡରେ ମହାସତୀ ପାର୍ବତୀ ପ୍ରେମର ପ୍ରତିଦାନ ସ୍ୱରୂପ ଆତ୍ମାହୁତି ଅର୍ପଣ କରିଥିଲେ। ସେଦିନର ଦାବାନଳ ଦେଖି ମୋ ମନରେ ପ୍ରେମର ସେହି ଅମର ଆଖ୍ୟାୟିକା ପ୍ରତିଧ୍ୱନିତ ହେବାକୁ ଲାଗିଲା। ମୁଁ ମନେମନେ ଭାବିଲି – ମୋର କେହି ପ୍ରେୟସୀ ଥାଆନ୍ତା କି! ତା'ର ଆର୍ତ୍ତ ଚିତ୍କାର ଶୁଣି ମୁଁ ଏଇ ଦାବାନଳ ମଧ୍ୟକୁ ପ୍ରବେଶ କରି ମୋର ପ୍ରାଣ-ପ୍ରତିମାକୁ କୋଳକରି ବାହାରିଆସନ୍ତି। ତା' ପ୍ରତି ମୋର ଏ ପ୍ରକାର ନିଶ୍ଚଳ ପ୍ରେମ ଦେଖି ଦେବତାମାନେ ମୋ ଶିରରେ ପୁଷ୍ପବୃଷ୍ଟି କରନ୍ତେ ଏବଂ କୌଣସି ପ୍ରତିଭାଶାଳୀ କବି ଦୂରଦେଶରୁ ଆସି ମୋତେ କହନ୍ତେ – 'ଯୁବରାଜ ଯଯାତି! ଆଜି ମୋର ଜୀବନ ଧନ୍ୟ ହୋଇଗଲା; ଏ ସଂସାରରେ ଜନ୍ମଗ୍ରହଣକରି ଯାହା ଦେଖିବାର ଅଭିଳାଷ ଥିଲା, ତାହା ଏବେ ପ୍ରତ୍ୟକ୍ଷ କଲି। ମହାକାବ୍ୟର ରଚନାଲାଗି ମୋତେ ସାମଗ୍ରୀ ମିଳିଗଲା!'

ପ୍ରଶାନ୍ତି ତଥା ଉନ୍ମାଦନାର ଯେତେ ଭୀମକାନ୍ତ ରୂପ ମୁଁ ପ୍ରତ୍ୟକ୍ଷ କରିଛି, ତାହା ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ। ଏହି ବିପୁଳା ପୃଥ୍ୱୀର ଲୋମରାଜି ଭଳି ପରିଶୋଭିତ ହରିଦ୍‌ବର୍ଣ୍ଣ ଦେବଦାରୁଶ୍ରେଣୀ, ପୁରୋହିତଙ୍କ ଆଶୀର୍ବାଦ ଜଳପରି ବୋଧହେଉଥିବା ରିମ୍‌ଝିମ୍ ବର୍ଷା, ମହାପ୍ରଳୟରେ ପର୍ବତାକାର ଲହରୀ ପରି ପ୍ରଚଣ୍ଡ ଜଳଧାରା, ମୁଦ୍ରିକାରେ ଲାଗିଥିବା ଚମତ୍କାର ରଙ୍ଗିନ୍ ହୀରକଖଣ୍ଡ ପରି ଛୋଟ ଛୋଟ ପ୍ରଜାପତି, ଘୋଡ଼ା ସମେତ ଆରୋହୀକୁ ଗ୍ରାସ କରି ଦୁହିଁଙ୍କୁ କବଳିତ କରିବାପରି ଶକ୍ତିଶାଳୀ ମହାଭୟଙ୍କର ଅଜଗର, ମନ୍ଦିରର ସୁଦୃଶ୍ୟ ଗୋପୁର ତଥା କାରୁକାର୍ଯ୍ୟଖଚିତ ଉତ୍ତୁଙ୍ଗ ଶିଖର, ଶୂରବୀରମାନଙ୍କ ସ୍ମାରକ ଉଦ୍ଦେଶ୍ୟରେ ସ୍ଥାପିତ ବିଶାଳ ପ୍ରତିକୃତି, ପାର୍ବତ୍ୟ ଗୁହାଗୁଡ଼ିକର ସୂକ୍ଷ୍ମକଳାପୂର୍ଣ୍ଣ ଭବ୍ୟ କାରିଗରୀ ଏବଂ ବିଳାସିନୀ ଗଣିକାମାନଙ୍କର ଆଡ଼ମ୍ବରପୂର୍ଣ୍ଣ ବିଳାସଭବନ ମୋତେ ବିମୁଗ୍ଧ କରିଛି; ମୋ ମନରେ ଭାବନାର ଅନନ୍ତ ସ୍ରୋତ ଖେଳାଇଦେଇଛି।

ଏହିପରି ଏକ ଅବସରରେ ମୁଁ କାମପତ୍ନୀ ରତିଙ୍କର ଗୋଟିଏ ଭବ୍ୟମୂର୍ତ୍ତି ଦେଖିବାର ସୁଯୋଗ ପାଇଥିଲି। ମୋ ସହିତ ଆସିଥିବା ପାରିଷଦବର୍ଗ ବାହାରେ ଛିଡ଼ାହେଲେ; ମୁଁ ଭିତରେ ପ୍ରବେଶକଲି। ଶଙ୍କରଙ୍କ କୋପାନଳରେ ଦଗ୍ଧ ପ୍ରାଣପ୍ରିୟ ମଦନର ବିରହରେ ଶୋକାକୁଳା ରତିର ଭବ୍ୟମୂର୍ତ୍ତି ସନ୍ଦର୍ଶନରେ ମୁଁ ଆତ୍ମହରା ହୋଇଉଠିଲି। ଜଣେ ନିପୁଣ ଶିଳ୍ପୀଦ୍ୱାରା ଗଠିତ ଗୋଟିଏ ପାଷାଣ ପ୍ରତିମା ବୋଲି ମୋର ଜ୍ଞାନ

ରହିଲାନାହିଁ। ମୁଁ କ'ଣ କରୁଛି ବୋଲି ମୋର ଧାରଣା ହେବା ପୂର୍ବରୁ, ମୁଁ ଆବେଗର ସହିତ ଆଗେଇଯାଇ ପ୍ରତିମାର ଗଣ୍ଡଦେଶରେ ଚୁମ୍ବନଟିଏ ଆଙ୍କିଦେଲି। ନିର୍ଜୀବ ପାଷାଣର ଶୀତଳ ସ୍ପର୍ଶରେ ମୋର ଜ୍ଞାନୋଦୟ ହେଲା; ଅନ୍ୟଥା ସେ କମନୀୟ ଗଣ୍ଡରେ ଅସଂଖ୍ୟ ଚୁମ୍ବନ ଦେଇଥିଲେ ମଧ୍ୟ ମୋର ଅଶାନ୍ତ ମନ ତୃପ୍ତ ହୋଇନଥାନ୍ତା। ହଠାତ୍ ମୋ ମନରେ ଧାରଣା ହେଲା– 'ମୁଁ ପାପ କଲିନାହିଁ ତ?' ଆଶଙ୍କିତ ମନକୁ ପୁଣି ନିଜେ ବୁଝାଇଦେଲି– ଏ' ମୂର୍ତ୍ତି ରତିଦେବୀ ନୁହନ୍ତି କିମ୍ବା ସତୀନାରୀ ଭାବରେ ତାଙ୍କର ପ୍ରଖ୍ୟାତି ନାହିଁ, ତେଣୁ ଏ ଚୁମ୍ବନ ଫଳରେ ପାପ ହେବ କାହିଁକି?

ଅଶ୍ୱମେଧ ଘୋଡ଼ା ବୁଲି ବୁଲି ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳରେ ପ୍ରବେଶକଲା। ଘନ ଘୋର ବନଗହନ ପ୍ରଦେଶ, ମଝିରେ ମଝିରେ ଶସ୍ୟଶାମଳା ଧରଣୀ, କେଉଁଠି ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ନଗରର ଅବସ୍ଥିତି; ବିଶେଷତଃ ଆଦିବାସୀଙ୍କଦ୍ୱାରା ଅଧ୍ୟୁଷିତ ସେ ଅଞ୍ଚଳ ମୋତେ ବେଶ୍ ଭଲଲାଗିଲା। ସେହି ଅଞ୍ଚଳରେ ଯୁଦ୍ଧ କରିବାର ଅବକାଶ ପ୍ରାୟ ଆଦୌ ଆସିଲାନାହିଁ। କିନ୍ତୁ ଜୀବନରେ ମୋର ଯେଉଁ ଦ୍ୱନ୍ଦ୍ୱ ଉପସ୍ଥିତ ହୋଇଥିଲା, ସେଥିରେ ମୁଁ ଏକାବେଳକେ ବିବ୍ରତ ହୋଇଉଠିଲି।

ଶୁଣିଥିଲି– ଏ ଅଞ୍ଚଳ ମଦମତ୍ତ ଦନ୍ତାବଳ ହସ୍ତୀଙ୍କ ଲାଗି ପ୍ରସିଦ୍ଧ; ତେଣୁ ହସ୍ତୀ ଶିକାରରେ ମଜ୍ଜିଯାଇ ବିକଳ ମନକୁ ଆଶ୍ୱସ୍ତ କରିବା ଲାଗି ଅପେକ୍ଷାରତ ରହିଲି। ବଡ଼ ବଡ଼ ହାତୀମାନେ ଦଳବଳ ସହିତ ଜଙ୍ଗଲ ମଧ୍ୟରେ ଥିବା ଜଳାଶୟଗୁଡ଼ିକୁ ତୃଷା ମେଣ୍ଟାଇବାଲାଗି ଆସନ୍ତି। ମନେ ମନେ ଭାବିଲି– ଏକାକୀ ଯାଇ ହସ୍ତୀ ଶିକାର କରିବି। ଦିନେ ମଧ୍ୟରାତ୍ରିରେ ଜଙ୍ଗଲର ଘନ ଅନ୍ଧକାର ଭେଦକରି ଏକାକୀ ଚାଲିଗଲି ଖୁବ୍ ଦୂରକୁ। ଜଳାଶୟର ନିକଟରେ ଥିବା ଗୋଟିଏ ପତ୍ରଗହଳ ବୃକ୍ଷରେ ଆରୋହଣ କରି ହାତୀମାନଙ୍କ ଆଗମନକୁ ଅପେକ୍ଷା କରି ରହିଲି। ଓଃ... କି ରୋମାଞ୍ଚକର ସେ ଅନୁଭବ! ଘନତମିସ୍ରାର ଦିଗନ୍ତବ୍ୟାପୀ ବିସ୍ତାର ଫଳରେ ମୁହଁକୁ ମୁହଁ ଦିଶୁନଥିଲା; ସତେଯେପରି ବିଶାଳ ବନାନୀ ରୋଗବିକାରରେ ଆର୍ତ୍ତ ଚିତ୍କାର କରୁଛି। ସନ୍ନିପାତ ରୋଗୀର ମନ୍ଦ୍ର ଗର୍ଜନ ପରି ମଝିରେ ମଝିରେ ସିଂହର ଗର୍ଜନ ମନରେ ଭୟଜାତ କରାଉଛି।

ଏପରି ଏକ ନିସ୍ତବ୍ଧ ପରିବେଶ ମଧ୍ୟରେ ହସ୍ତୀଶିକାର କରିବା ବ୍ରହ୍ମାନନ୍ଦ ସୁଖପ୍ରାପ୍ତି ପରି ମନେହେଲା। ମୁଁ ଏକାଗ୍ରତାର ସହିତ ଧନୁରେ ଗୁଣଦେଇ, ଉତ୍କର୍ଣ୍ଣ ହୋଇ ବସିରହିଲି। ବହୁ ଚେଷ୍ଟା ସତ୍ତ୍ୱେ କିଛି ଦୃଷ୍ଟିଗୋଚର ହେଉନଥିବାରୁ ମୁଁ କେବଳ ଶବ୍ଦଭେଦୀ ବାଣ ପ୍ରୟୋଗଲାଗି ଅବସରର ଅପେକ୍ଷାରେ ରହିଲି। ପ୍ରଥମ ବାଣ ପ୍ରୟୋଗରେ ହାତୀ ପେଁ... ଏଁ... ଏଁ... ବୋବାଳି ଛାଡ଼ିବ ଏବଂ ସେହି ଶବ୍ଦର ଅନୁସରଣରେ ସାଏଁ... ସାଏଁ... ସାଏଁ... କରି ଶରବୃଷ୍ଟି କରିବାର ଯୋଜନାରେ ମୁଁ ବସିରହିଲି।

'ଡବ୍... ଡବ୍... ଡବ୍‌ଡବ୍...' ଶବ୍ଦ ଶୁଣି ମୁଁ ଗୋଟିଏ ଶର ଛାଡ଼ିଦେଲି। ଲକ୍ଷ୍ୟସ୍ଥଳରେ ଶର ବାଜିବାମାତ୍ରେ ହଠାତ୍ ମନୁଷ୍ୟର କର୍କଶ ସ୍ୱର ଭାସିଆସି ମୋର କର୍ଣ୍ଣକୁହରକୁ ବିଦୀର୍ଣ୍ଣ କରିଦେଲା– "କିଏ ସେ... କିଏ... ସେ ପାପୀ ଏ

ଶର ମାରିଛି? ଶୀଘ୍ର ଚାଲିଆ ମୋ ଆଗକୁ... ନୋହିଲେ...।''

ଝାଳରେ ଜୁତୁବୁତୁ ହୋଇଗଲା ମୋର ସର୍ବାଙ୍ଗ। ମୋର ଶର ହାତୀ ବଦଳରେ କୌଣସି ଏକ କ୍ରୋଧୀ ମୁନି ଦେହରେ ବାଜିଛି; ଏଇ ମୁହୂର୍ତ୍ତରେ ଅଭିଶାପ ଦେଇ ମୋର ସର୍ବନାଶ କରିଦେବେ। କମ୍ପିତ ସ୍ୱରରେ ବୃକ୍ଷ ଉପରେ ଥାଇ କହିଲି – ''କ୍ଷମା କରନ୍ତୁ ମହାଶୟ, ମୁଁ ଅଜ୍ଞାତସାରରେ ମହାପାପ କରିଛି।'' ଶଶକଠାରୁ ଆହୁରି ବେଗରେ ମୁଁ ଧାଇଁଯାଇ ଜଳଘାଟରେ ଛିଡ଼ାହୋଇଥିବା ମୂର୍ତ୍ତିଟିକୁ ସ୍ପଷ୍ଟଭାବରେ ନଚାହିଁ, ତାଙ୍କ ପାଦସ୍ପର୍ଶ କରିବାକୁ ଲଇଁପଡ଼ିଲି। ସେ ହଠାତ୍ ପଛକୁ ଘୁଞ୍ଚିଯାଇ କହିଲେ – ''ପାପୀ, ମୋତେ ସ୍ପର୍ଶ କରନା।''

''ମହାମୁନି! ମୁଁ ପାପୀ ନୁହେଁ, ଆଖେଟ ଅଭିଳାଷରେ ମୁଁ ବନମଧ୍ୟରେ ପ୍ରବେଶ କରି ହସ୍ତୀର ଜଳପାନ ଶବ୍ଦ ଭାବି ଶର ନିକ୍ଷେପ କରିଛି। ମୁଁ କ୍ଷତ୍ରିୟ; ଆଖେଟ ମୋର କୁଳଧର୍ମ।''

''ଧର୍ମ ଅଧର୍ମ ବିଷୟ ତୁ ମୋତେ ଶିକ୍ଷାଦେବୁ ଅଧମ? ମୁଁ ଜଣେ ବ୍ରତନିଷ୍ଠ ବ୍ରହ୍ମଚାରୀ। ରମଣୀର ଅଧରସ୍ପର୍ଶରେ ତୋର ଓଷ୍ଠ ଅପବିତ୍ର ନୁହେଁ କି? ତଥାପି ତୁ ଯଦି ନିଜକୁ ପବିତ୍ରାତ୍ମା ବୋଲି ମନେକରୁଛୁ, ତା'ହେଲେ ମୋର ଚରଣ ସ୍ପର୍ଶ କରିପାରୁ।''

ମିଥ୍ୟାର ଆଶ୍ରୟ ନେଇପାରିଲିନାହିଁ; ଆଖି ଆଗରେ ନାଚିଉଠିଲା ସେଦିନ ରାତ୍ରିର ଦୃଶ୍ୟ। ଭାବନାର ଆବେଶରେ ମୁଁ ଅଳକାର ଗୋଲାପୀ ଅଧରରେ ଆଙ୍କିଦେଇଥିଲି ଏକ ପରିତୃପ୍ତ ଚୁମ୍ବନ। ନିଶ୍ଚୟ ଏ ଯୋଗୀ ତ୍ରିକାଳଦର୍ଶୀ; ମିଥ୍ୟାର ଅବତାରଣା କଲେ ଏ ଅଭିଶାପରେ ମୋତେ ଧ୍ୱଂସକରିଦେବେ। ତେଣୁ କିଛି ଉତ୍ତର ନଦେଇ ନୀରବରେ ମୁଣ୍ଡ ନୁଆଇଁ ଛିଡ଼ାହୋଇ ରହିଲି।

ଅତ୍ୟନ୍ତ କର୍ଣ୍ଣକଟୁ ସ୍ୱରରେ କହିଲେ ଯୋଗିରାଜ – ''ଲମ୍ପଟ...।''

ପ୍ରକୃତରେ ମୁଁ କ'ଣ ଲମ୍ପଟ? ସ୍ତ୍ରୀର ଶରୀରସ୍ପର୍ଶରେ ମନୁଷ୍ୟ କ'ଣ ପାପୀ ହୋଇଯାଏ? ମନ ମଧ୍ୟରେ ଏହାର ସପକ୍ଷ-ବିପକ୍ଷରେ କେତେ କ'ଣ ପ୍ରଶ୍ନ ଉଙ୍କିମାରିଲା। ନିଜେ ଧାରଣା କରିପାରିଲିନି – କିଛି କହିବି ନା ନୀରବ ରହିବି?

ଯୋଗିରାଜ ପୁଣି ନିତାନ୍ତ ମର୍ମଭେଦୀ ସ୍ୱରରେ କହିଲେ – ''ତୋ'ପରି ତୁଚ୍ଛ ମଣିଷ ସହିତ ବାକ୍ୟାଳାପ କରି ସମୟ ନଷ୍ଟ କରିବାକୁ ମୋର ସମୟ ନାହିଁ। ମଧ୍ୟରାତ୍ରି ପରେ ଘଡ଼ିଏ ଦି'ଘଡ଼ି ମଧ୍ୟରେ ମୋର ସମସ୍ତ ନିତ୍ୟକର୍ମ ଶେଷକରି ମୋତେ ସମାଧିସ୍ଥ ହେବାକୁ ପଡ଼ିବ।'' ସେ ଅଗ୍ରସର ହୋଇ କମଣ୍ଡଳୁରେ ଜଳ ପୂର୍ଣ୍ଣ କରିବାକୁ ଉଦ୍ୟତ ହେଲେ। ମୁଁ ତଳେ ଆଣ୍ଠୁମାଡ଼ି ବସିଯାଇ କହିଲି – ''ମହାରାଜ, ଆଶୀର୍ବାଦ ଦିଅନ୍ତୁ!''

''ଯେକୌଣସି ବ୍ୟକ୍ତିକୁ ଆଶୀର୍ବାଦ ଦେବାପାଇଁ ମୁଁ ଭୋଳାମହେଶ ନୁହେଁ। ତୁମର ସମ୍ପୂର୍ଣ୍ଣ ପରିଚୟ ନପାଇ ତୁମକୁ ଆଶୀର୍ବାଦ ଦେବି କିପରି?''

''ମୁଁ ଜଣେ ରାଜପୁତ୍ର।''

''ତୁମେ ମୋର ଆଶୀର୍ବାଦର ପାତ୍ର ଆଦୌ ନୁହଁ।''

"କାହିଁକି ?" – ମୁଁ ଭୟରେ ଥରି ଥରି ପ୍ରଶ୍ନ କଲି।

"ତୁମେ ଶରୀରର ଦାସ। ବୈଭବ ବୃଦ୍ଧି ସହିତ ଆତ୍ମାର ଅପବିତ୍ରତା ବୃଦ୍ଧିପାଏ। ତୁମପରି ରାଜକୁମାରମାନେ ରସନାର ଦାସ, ଶରୀରର ଭୃତ୍ୟ। ପ୍ରତ୍ୟେକ ମୁହୂର୍ତ୍ତରେ ସୁଦୃଶ୍ୟ ଜିନିଷ ପ୍ରତି ତୁମର ଦୃଷ୍ଟି ନିବଦ୍ଧ ଥିବାରୁ ତୁମେ ଦୃଷ୍ଟିର ଅଧୀନ। ସୁଗନ୍ଧିତ ଦ୍ରବ୍ୟ ଆଘ୍ରାଣ କରି କରି ତୁମେ ଘ୍ରାଣଶକ୍ତିର ସେବକ ହୋଇଯାଅ। ତୁମେମାନେ ପ୍ରଜାମାନଙ୍କ ଉପରେ ଶାସନ କର ସତ; କିନ୍ତୁ ତୁମମାନଙ୍କ ମନ ଉପରେ ଇନ୍ଦ୍ରିୟମାନେ ଶାସନ ଚଳାଇଥା'ନ୍ତି। ଆଉ ମଧ୍ୟ ସ୍ତ୍ରୀ-ସମ୍ଭୋଗରେ ସମସ୍ତ ସୁଖ ଏକତ୍ରିତ ହୋଇଥାଏ। ଏଣୁ ମୋ'ପରି ଯୋଗୀମାନଙ୍କଦ୍ୱାରା ତୁମେ ଅସ୍ପୃଶ୍ୟ। ଯଦି ପ୍ରକୃତରେ ଆଶୀର୍ବାଦ ଚାହୁଁଥାଅ, ତେବେ ସମସ୍ତ ବିଷୟବାସନାକୁ ତ୍ୟାଗକରି ମୋ ପାଖକୁ ଚାଲିଆସ। ତେବେ...।"

"କିନ୍ତୁ ମହାରାଜ, କୌଣସିମତେ ସନ୍ନ୍ୟାସୀ ନହେବାଲାଗି ମୁଁ ବଚନବଦ୍ଧ ହୋଇଛି।"

"କାହା ପାଖରେ ?"

"ନିଜ ସ୍ନେହମୟୀ ଜନନୀଙ୍କ ନିକଟରେ।"

ବୋଧହୁଏ ଯୋଗିରାଜଙ୍କ ମନରେ ଜିଜ୍ଞାସା ଜାତହେଲା। ସେ କୌତୂହଳୀ ହୋଇ ପଚାରିଲେ, "ଏପରି ପ୍ରତିଶ୍ରୁତି ତୁମେ ଦେଲ କାହିଁକି ?"

"ମୋର ବଡ଼ଭାଇ ଗୃହତ୍ୟାଗୀ ହୋଇ କେଉଁଆଡ଼େ ଚାଲିଯାଇଛନ୍ତି; ମୋ ମାଆ ସେ ଦୁଃଖକୁ ଅଦ୍ୟାପି ଭୁଲିପାରିନାହାନ୍ତି।"

"କ'ଣ କହିଲ ? ତୁମର ବଡ଼ଭାଇ ?"

"ହଁ, ମହାରାଜ ! ସେ ହୁଏତ କେବେହେଲେ ଆପଣଙ୍କ ସାନ୍ନିଧ ଲାଭକରିଥିବେ। ସେ କେଉଁଠି ଅଛନ୍ତି ମୁଁ ଜାଣିପାରିଲେ ହସ୍ତିନାପୁର ଫେରିଯାଇ ମାଆଙ୍କୁ ନେଇ ଆସିପାରନ୍ତି।"

"ହସ୍ତିନାପୁରରୁ ? ତେବେ... ତୁମେ କ'ଣ ହସ୍ତିନାର ଯୁବରାଜ ?"

"ହଁ ମହାରାଜ।"

"ତୁମ ନାମ ?"

"ଯ... ଯା... ତି।"

"ତୁ... ମ... ବଡ଼ଭାଇଙ୍କ... ନାମ ?"

"ଯତି !"

"ଯତି...?" କମ୍ପିତ ସ୍ୱରରେ କହିଲେ ଯୋଗିରାଜ। ସେହି ଶବ୍ଦ ତାଙ୍କ ମୁହଁରୁ ଏପରିଭାବରେ ଶୁଣି ମନେହେଲା ଯେପରି ଋଷିରାଜ କିଛି କହିନାହାନ୍ତି, ମୋ'ରି ମୁଖନିସୃତ ଶବ୍ଦ ପର୍ବତର କନ୍ଦରାରେ ବାଜି ପ୍ରତିଧ୍ୱନିତ ହେଉଛି।

ଏଣିକି ମୁଁ ଯୋଗିରାଜଙ୍କ ଆକୃତି ଅପେକ୍ଷାକୃତ ସ୍ପଷ୍ଟଭାବରେ ଦେଖିପାରୁଥିଲି। ବୋଧହୁଏ ମୋ କାନ୍ଧ ଉପରେ ରଖିବାଲାଗି ସେ ନିଜର ବାମହସ୍ତଟି ଉଠାଇଲେ। ମୁଁ ସ୍ପଷ୍ଟ ଦେଖିପାରୁଥିଲି– ସେ ହାତଟି ଥରୁଛି; ନା... ନା, ଅର୍ଦ୍ଧରାତ୍ର ବିତିଗଲାଣି, ଶେଷ ନିଶାର ଥଣ୍ଡାପବନ ବାଆ ବହୁଥିବାରୁ ବୋଧହୁଏ ତାଙ୍କର ହାତଟି ଥରୁଛି।

"ମୋ ପଛେ ପଛେ ଆ...।" ସେ ମୋତେ ଆଦେଶ ଦେଇ ଆଗେ ଆଗେ ଚାଲିଲେ। କିଛି ପହଣ୍ଡ ଆଗେଇଯାଇ ପୁଣି ରାଗିଯାଇ ପଛକୁ ଫେରି ଚାହିଁଲେ। ମୁଁ ନିଜ ସ୍ଥାନରୁ ତିଳେହେଲେ ଘୁଞ୍ଚି ନଥିଲି। ଯୋଗିରାଜ ଟିକିଏ ନମ୍ରସ୍ୱରରେ କହିଲେ– "ଯଯାତି, ତୁମର ବଡ଼ଭାଇ ତୁମକୁ ଆଦେଶ ଦେଉଛି, ମୋ ପଛେ ପଛେ ଚାଲିଆସ।"

ଯତିଙ୍କର ଗୁମ୍ଫା ବେଶି ଦୂରରେ ନଥିଲା; କିନ୍ତୁ ଜଙ୍ଗଲ ମଧ୍ୟରୁ ଶୁଣାଯାଉଥିବା ବିଭିନ୍ନ ଜୀବଜନ୍ତୁଙ୍କ ବିକଟ ସ୍ୱର ଶୁଣି ମୋ ଅନ୍ତରାତ୍ମା କମ୍ପିଉଠିଲା। ମନେ ମନେ ଭାବିଲି– 'ଏ ଯଦି ମୋତେ ଗୋଟିଏ ଗୁହା ମଧ୍ୟରେ ବନ୍ଦୀକରିଦିଅନ୍ତି? ମୁଁ ଯେତେ ପରାକ୍ରମୀ ହେଲେ ମଧ୍ୟ ଏ ହଠଯୋଗୀଙ୍କ କାରସାଦି କବଳରୁ ମୁକ୍ତ ହେବି କିପରି? ଏ ଯଦି ମୋତେ ଗୋଟିଏ ଜନ୍ତୁରେ ପରିଣତ କରିଦିଅନ୍ତି? ଅଶ୍ୱମେଧ ସେହିପରି ଚିରଦିନଲାଗି ଅପୂର୍ଣ୍ଣ ରହିଯିବ। ମୋ ପାରିଷଦ୍‌ମାନଙ୍କୁ ମୋ ବିଷୟରେ କିଛିହେଲେ ଖବର ଜଣାପଡ଼ିବ ନାହିଁ। ଯକ୍ଷ ବା ନାଗପୁରରେ ମୁଁ ରହିଛି ସେମାନେ କିଛିହେଲେ ଖବର ନପାଇ, ମୁଣ୍ଡ ତଳକୁ କରି ହସ୍ତିନାପୁରକୁ ଫେରିଯିବେ। ଏ ସମ୍ବାଦ ଶୁଣି ପିତା ମୁଣ୍ଡ ପିଟିଦେବେ; ଏ ବୁକୁଫଟା ସମ୍ବାଦ ଶୁଣି ମାଆ ମୂର୍ଚ୍ଛିତା ହେବେ।

ହୃଦୟରେ ଆଶାର ଅଭିନବ ସଞ୍ଚାର ପରି ଭୟର ସଞ୍ଚାର ହୋଇଥାଏ; ମସ୍ତିଷ୍କରେ ନାନା ପ୍ରକାର ଦୁଶ୍ଚିନ୍ତା ଖେଳିଯାଇଥିଲା। କିନ୍ତୁ ମୋର ବଡ଼ଭାଇ ଯତିକୁ ମୁଁ ଜୀବନରେ ପ୍ରଥମଥରଲାଗି ଦେଖିବାର ସୁଯୋଗ ପାଇଛି; ବାସ୍ତବରେ ଆକସ୍ମିକ ସାକ୍ଷାତ୍ ଫଳରେ ମୋ ହୃଦୟ ଆନନ୍ଦରେ ନାଚ଼ିଉଠିବା ସ୍ୱାଭାବିକ; କିନ୍ତୁ ତାଙ୍କ କଥା ଶୁଣି ମୋ ହୃଦୟ କମ୍ପିଉଠୁଛି। ମନେ ମନେ ଭାବୁଥିଲି, ଗୁହା ଭିତରକୁ ଯାଇ କ'ଣ କଥାବାର୍ତ୍ତା କରିବି?

ଶୀଘ୍ର ଶୀଘ୍ର ଯାଇ ଆମେ ଗୁହାଦ୍ୱାରରେ ପହଞ୍ଚିଗଲୁ। ସେ ଗୋଟିଏ ଡେଙ୍ଗାମେଙ୍ଗା କଦର୍ଯ୍ୟ ଗୁମ୍ଫା। କଣ୍ଟାଡାଳ କେଇଖଣ୍ଡ ଦ୍ୱାରଦେଶରେ ଆଉଜାହୋଇଥିଲା। ଯତି ଗୋଟିଏ ହାତରେ କଣ୍ଟାଡାଳଗୁଡ଼ିକ ଆଡ଼େଇ ଦେବାରୁ ଜଣାପଡ଼ିଲା ସେଠାରେ ଗୋଟିଏ ଗୁମ୍ଫାର ଅସ୍ତିତ୍ୱ। ମୁଁ ଖୁବ୍ ସାବଧାନତାର ସହିତ ଗୁହା ମଧ୍ୟରେ ପ୍ରବେଶ କରିଥିଲେହେଁ, ଗୋଟିଏ ଦୁଇଟି କଣ୍ଟା ମୋ ଦେହରେ ଫୋଡ଼ିହୋଇଗଲା। ଭିତରେ ପହଞ୍ଚିବାମାତ୍ରେ ଗୋଟିଏ ସିଂହର ଗର୍ଜନ ଶୁଣାଗଲା। ମୁଁ ସଙ୍ଗେ ସଙ୍ଗେ ଧନୁ ପ୍ରସ୍ତୁତ କରି ଶର ସନ୍ଧାନ କରିବାକୁ ହାତ ବଢ଼ାଇଲି। ଯତି ପଛକୁ ଚାହିଁଦେଇ ହସି ହସି କହିଲେ– ଆଁ... ହାଁ... ସେସବୁ ଏଠାରେ ଆବଶ୍ୟକ ନାହିଁ। ତୋ'ରି ସୁଗନ୍ଧ ପାଇ ସେ ଏପରି ଗର୍ଜି ଘୁମୁରି ହେଉଛି। ନୋହିଲେ ସାରାଦିନ ଠେକୁଆଟିଏ ପରି ପଡ଼ିରହୁଛି। ମୁଁ ଯୁଆଡ଼େ ଯାଉଛି ସେଠାକାର ହିଂସ୍ରଜନ୍ତୁଗୁଡ଼ିକ ମୋର ପରମ ମିତ୍ର ହୋଇଯାଉଛନ୍ତି। ମଣିଷମାନଙ୍କଠାରୁ ସେମାନେ ବାସ୍ତବରେ ସରଳ ଓ ପବିତ୍ର ପ୍ରାଣୀ!"

ଚାଲି ଯାଉଁ ଯାଉଁ ଯତି ସିଂହର ମୁଣ୍ଡ ଆଉଁଷିଦେଲେ, ଗୋଟିଏ ବିରାଡ଼ିଛୁଆ ପରି ସେ ଯତି ସହିତ ଖେଳିବାକୁ ଲାଗିଲା। ତା'ପରେ ଆମେ ଯାଇ ଗୁମ୍ଫାର ଭିତର ମହଲାରେ ପହଞ୍ଚିଗଲୁ। ତା' ମଧ୍ୟରେ ଗୋଟିଏ ଅଦ୍ଭୁତ ଧରଣର ଆଲୋକରଶ୍ମି ବିଚ୍ଛୁରିତ

ହୋଇଥିଲା । ମୁଁ ଚାରିଆଡ଼କୁ କୌତୂହଳପୂର୍ଣ୍ଣ ଚାହାଣିରେ ଚାହିଁ ଦେଖିଲି— ପ୍ରତ୍ୟେକ କୋଣରେ ଗୋଟିଏ ଲେଖାଏଁ ନାଗରାଜ କୁଣ୍ଡଳୀକରି ଫଣା ଟେକିଛନ୍ତି । ପ୍ରତ୍ୟେକଙ୍କ ଫଣାରେ ଦେଦୀପ୍ୟମାନ ମଣି ଶୋଭାପାଉଥିଲା । ଡାହାଣଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶକରି କହିଲେ ଯତି— "ଏଇ ଦେଖ ମୋର ବିଛଣା ।" ମୁଁ ଲାଇଁପଡ଼ି ଦେଖିଲି, ଯତି ଗୋଟିଏ ଉଚ୍ଚ ଚଟାଣକୁ ଉପାଧାନ କରି କେଇଖଣ୍ଡି ଛୋଟ କଣ୍ଟାଡାଳ ବିଛାଇ ଶୟନ କରୁଛି । ଏହା ଦେଖିବାମାତ୍ରେ ମୋ ଦେହ ଶୀତେଇଯାଇ ରୋମମୂଳ ଟାଙ୍କୁରି ଉଠିଲା । ମୁଁ ଭାବିଲି— 'ଏ ମୋର ବଡ଼ଭାଇ; ଆଜି ଏ ହସ୍ତିନାପୁରରେ ଥିଲେ ସମସ୍ତ ରାଜଭୋଗ ହାତଯୋଡ଼ି ଯା'ରି ସେବାରେ ଲାଗିପଡ଼ିଥା'ନ୍ତେ । ସେ ସବୁକୁ ତ୍ୟାଗକରି ଏ କାହିଁକି ଏପରି କଣ୍ଟକମୟ ଜୀବନ ଆଦରିନେଇଛି ? ଏଥିରୁ ତାକୁ କି ସୁଖ ଅବା ମିଳୁଥିବ ? ସେ କି ଅନୁସନ୍ଧାନରେ ଲାଗିଛି ? ଶେଷରେ ତାକୁ ମିଳିବ କ'ଣ ?

ଯତି ସେଇଠାରୁ ଖଣ୍ଡିଏ ମୃଗଛାଲ ଉଠାଇଆଣି ମୋ ପାଇଁ ବିଛାଇଦେଇ କହିଲା— "ବସ ।" ସେ ନିଜେ ସେହି କଣ୍ଟକମୟ ଶେଯ ଉପରେ ବସିପଡ଼ିଲା; ମୁଁ ବହୁ କଷ୍ଟରେ ସେହି ଉଚ୍ଚାନୀଚ୍ଚା ଭୂଇଁରେ ମୃଗଛାଲ ଉପରେ ବସିପଡ଼ିଲି । କିନ୍ତୁ ଯତି ଅତ୍ୟନ୍ତ ପରିତୃପ୍ତିର ସହିତ, ସତେଯେପରି ସିଂହାସନ ଉପରେ ବସିଛି, ସେହି କଣ୍ଟକମୟ ଶେଯ ଉପରେ ବସିପଡ଼ିଲା; କିନ୍ତୁ ମୁଁ କଣ୍ଟା ବୁଦାରେ ପଡ଼ିଗଲାପରି ମନେ ମନେ ଛଟପଟ ହେଉଥିଲି । ମୁଁ ଏଥର ସ୍ପଷ୍ଟଭାବରେ ଯତିକୁ ଦେଖିପାରୁଥିଲି; ମସ୍ତକରେ କଳା ମଚ୍‌ମଚ୍ ଜଟା, ନାକତଳେ କଳା କିଟିକିଟି ଦାଢ଼ି ତଳକୁ ଲମ୍ବିଯାଇଛି । ସେହି ଦାଢ଼ି ନିଶ ମଧ୍ୟରୁ ଛୋଟ ପିଲାର ସରୁ ମୁହଁ ପରି ତା ମୁହଁରୁ ତେଜ ଝଲସି ଉଠୁଛି । କିନ୍ତୁ ଏ ପିଲାଟି ସାଧାରଣ ପିଲାଙ୍କ ପରି ନୁହେଁ; ଅସମୟରେ ଯେପରି ସେ ପିଲାଟି ବୃଦ୍ଧରେ ପରିଣତ ହୋଇଯାଇଛି । ତା'ର ଜ୍ଜୁଳୁଜ୍ଜୁଳୁ କଳା ମଚ୍‌ମଚ୍ ଡୋଳା ଯୋଡ଼ିକ ପେଚ୍ଚା ଆଖିପରି ଦେଖାଯାଉଥିଲା, ଶରୀରରେ କେବଳ ମାତ୍ର କଙ୍କାଳ ଅବଶେଷ ରହିଥିଲା । ହିମଋତୁର ଶୁଖିଲା ପତ୍ର ପରି ଶରୀରର ବର୍ଣ୍ଣ ଫିକା ଦେଖାଯାଉଥିଲା । ଶରୀରର ଚମ ଧୁତୁଧୁତୁ ହୋଇଯାଇଥାଏ । ମଝିରେ ମଝିରେ ମୁଁ କୌତୂହଳପୂର୍ଣ୍ଣ ଦୃଷ୍ଟିରେ ତାକୁ ଚାହିଁରହିଲି । ଶରୀରର କୃଶତା ଯୋଗୁଁ ନାକଟି ଶୁକଚଞ୍ଚୁ ପରି ଗୋଜିଆ ଦେଖାଯାଉଥିଲା । ସେ ଚେହେରା ଦେଖିଲେ କେବେହେଲେ ବିଶ୍ୱାସ କରାଯାଇନପାରେ ଯେ, ଏ ବ୍ୟକ୍ତି ଦିନେ ଆକର୍ଷଣୀୟ ଚେହେରାର ତରୁଣ ଥିଲା । ଯୁଦ୍ଧଜନିତ ଆନନ୍ଦ ତ ଦୂରର କଥା, କେବେହେଲେ ଦିନେ ଘୋଡ଼ା ଉପରେ ବସିବାର ସୌଭାଗ୍ୟ ମଧ୍ୟ ଏ ଅର୍ଜନ କରିନଥିବ । ଆଉ ଅଳକା ପରି କୋମଳାଙ୍ଗୀ ଲଳନାର ନବନୀତ କୋମଳ ଅଧର ସ୍ପର୍ଶ ତ . . .

ସେ ଗୁମ୍ଫା ଓ ଯତିର ପ୍ରତ୍ୟକ୍ଷ ଦର୍ଶନ ଫଳରେ ମୋର ପ୍ରାଣ କଣ୍ଠାଗ୍ରତ ହୋଇଆସୁଥିଲା । ବାସ୍ତବିକ ଦୁଃଖ ଓ ଅନୁତାପର ବିଷୟ ହେଉଛି, ଜୀବନରେ ପ୍ରଥମଥର ମୋର ବଡ଼ଭାଇ ଯତିର ସାକ୍ଷାତ୍ ପାଇଥିଲେହେଁ ତାକୁ ଆନନ୍ଦରେ ଆଲିଙ୍ଗନ କରିପାରୁନଥିଲି କିମ୍ବା ବଳପୂର୍ବକ ହସ୍ତିନାପୁରକୁ ଟାଣିନେଇଯାଇ ମାଆଙ୍କ ଶ୍ରୀଚରଣରେ ନତ କରାଇବାର ଚେଷ୍ଟା କରିନଥିଲି । ମୁଁ ସେତେବେଳେ କିଂକର୍ତ୍ତବ୍ୟବିମୂଢ଼ ଭାବରେ

ବସିରହିବା ବ୍ୟତୀତ ହଠାତ୍ ମୋ ମୁହଁରୁ କିଛିହେଲେ ସ୍ଫୁରିଲାନାହିଁ। ପରିଶେଷରେ କିଛି କହିବାକୁହିଁ ପଡ଼ିବ ବୋଲି ଭାବି ମୁଁ କହିଲି– ''ତୁମକୁ ଦେଖିଲେ ମାଆ ଖୁବ୍ ଖୁସିହୁଅନ୍ତେ।''

''ଏ ସଂସାରରେ ସବୁଠାରୁ ଅଧିକ ଆନନ୍ଦର ବିଷୟ କ'ଣ ଜାଣିଚ଼– ବ୍ରହ୍ମାନନ୍ଦ। ଶାରୀରିକ ସୁଖଭୋଗ ପରିଣାମରେ ବିଷମୟ ହୋଇଯାଏ; ସେ ସୁଖ ସ୍ପର୍ଶସୁଖ ହୋଇପାରେ କିମ୍ବା ଦୃଷ୍ଟିସୁଖ ହୋଇପାରେ। ଶରୀର ହେଉଛି ମଣିଷର ସବୁଠାରୁ ବଡ଼ ଶତ୍ରୁ; ତା' ଉପରେ ବିଜୟ ହାସଲ କରିବା ପ୍ରତ୍ୟେକ ମଣିଷର ଧ୍ୟେୟ ହେବା ଉଚ଼ିତ। ଏଇ ଦେଖ ଗୋଟିଏ ଫଳ– ମୁଁ ପ୍ରତିଦିନ ଏହାହିଁ ସେବନ କରୁଛି।''

ଏହା କହି ସେ ମୋ ଆଡ଼କୁ ଗୋଟିଏ ଫଳ ବଢ଼ାଇଦେଲେ। ମୁଁ ତା'କୁ ପ୍ରସାଦ ମନେକରି ସେଥିରୁ କଳେ କାମୁଡ଼ିଦେଇ– ଯାଏ କୁଆଡ଼େ? ମୋର ପାଟି ଓ ଜିଭ ତିକ୍ତତାର କଟୁ ଆସ୍ୱାଦନରେ ମୁଖଭଙ୍ଗୀ ବିକୃତ ହୋଇଗଲା। ସେ ତାହା ଲକ୍ଷ୍ୟକରି କହିଲେ– ''ମଣିଷର ଜିହ୍ୱା ସବୁବେଳେ ଚାହେଁ ମଧୁର ରସାସ୍ୱାଦନ ଏବଂ ଆମେ ମଧ୍ୟ ତାକୁ ସେଇ ପ୍ରକାର ଫଳ ଯୋଗାଇଦେବା ଛଳରେ ସୁସ୍ୱାଦ ପ୍ରତି ଆମର ଆସକ୍ତି ବୃଦ୍ଧିକରୁଥାଇଁ। ଏହି ଆସକ୍ତି ଫଳରେ ମଣିଷ ଶରୀରର ଉପାସକ ହୋଇପଡ଼େ। ଶରୀର-ଉପାସକମାନଙ୍କର ଆତ୍ମା ଚେତନାବିହୀନ ହୋଇଯାଏ; କିନ୍ତୁ ଜାଣିଛ, ଆତ୍ମଶକ୍ତିକୁ କେବଳ ତ୍ୟାଗ ମାଧ୍ୟମରେ ଜାଗ୍ରତ କରାଯାଇପାରେ। ମନରେ ତୀବ୍ର ବିରକ୍ତିର ଜାଗରଣ ଲାଗି ମୁଁ ଏହି ତିକ୍ତ ଫଳ ସେବନ କରୁଛି।'' ତା'ପରେ ସେ ସେଇଥିରୁ ଗୋଟିଏ ଫଳ ଉଠାଇନେଇ ରସ୍‌ମସ୍ କରି ଚୋବାଇ ଖାଇଗଲେ। ଗୁହା ବାହାରକୁ ଯିବାର ସୁବିଧା ଥିଲେ, ମୁଁ କେତେବେଳୁ ମୋ ପାଟିରେ ସେ ଫଳ ଥିବା ଖଣ୍ଡିକୁ ଫିଙ୍ଗିସାରନ୍ତିଣି।

ଯତି ହେଉଛି ମୋର ସହୋଦର ଭାଇ; କିନ୍ତୁ ଆମ ଦୁହିଁଙ୍କ ମଧ୍ୟରେ ପ୍ରଚ଼ଣ୍ଡ ତାରତମ୍ୟ। ତା'ର ଜୀବନଧାରା କେଉଁ ଗଭୀରତମ ପ୍ରଦେଶ ଦେଇ ଅତିକ୍ରମ କରୁଛି, ମୁଁ ତାହା ପ୍ରତ୍ୟକ୍ଷ କରିପାରିଲି। ଫଳଟି ଖାଇସାରି କହିଲା ଯତି– ''ପ୍ରତ୍ୟେକ ଇନ୍ଦ୍ରିୟ ଉପରେ ମଣିଷ ଏହିପରି ଭାବରେ ବିଜୟଲାଭ କରିବା ଉଚ଼ିତ। ମୁଁ ଏ ମାର୍ଗରେ ପାଦଦେଲା ଦିନରୁ ସେଥିଲାଗି ଯତ୍ନବାନ୍ ହେଉଛି। କିନ୍ତୁ ଅଦ୍ୟାପି ମୁଁ ମୋ ଉପରେ ସଂପୂର୍ଣ୍ଣ ଭରସା କରିପାରୁନାହିଁ; କାରଣ ସବୁଜ କୋମଳ ଦୂର୍ବାଘାସ ତଳେ ବିଷଧର ସର୍ପ ବାସକରିବା ଅସମ୍ଭବ ନୁହେଁ; ଠିକ୍ ସେହିପରି ଅତ୍ୟଧିକ ବିରକ୍ତି ପ୍ରତି ଅନୁରାଗ ହିଁ ମନରେ ଆସକ୍ତି ଜାତକରାଏ।''

ପିଲାଦିନେ, ଗୋଟିଏ ଦିନ ନିଶାର୍ଦ୍ଧରେ ମାଆଙ୍କୁ ତ୍ୟାଗକରି ଏ କାହିଁକି ପଳାଇଆସିଲେ, ତାହା ମୋ ପକ୍ଷରେ ଥିଲା ଏକ ରହସ୍ୟ; ତେଣୁ ମୁଁ ମନରେ ସାହସ ବାନ୍ଧି ପଚ଼ାରିଲି– ''ଏତେ ପିଲାଦିନରୁ ତୁମେ କାହିଁକି ଏ ମାର୍ଗର ପଥିକ ହେଲ ?''

ସଙ୍ଗେ ସଙ୍ଗେ ମୋ ପ୍ରଶ୍ନର ଉତ୍ତର ଦେଇ କହିଲେ ଯତି– ''ଯେଉଁ ମହର୍ଷିଙ୍କ ଅନୁକମ୍ପାରୁ ମୋର ଜନ୍ମ ହୋଇଥିଲା, ତାଙ୍କରି ଆଶ୍ରମରେ ହିଁ ମୋ ମନରେ ବିରକ୍ତି

ଜାତହୋଇଥିଲା । ମା' ମୋତେ ତାଙ୍କ ଦର୍ଶନ କରାଇବାଲାଗି ଆଶ୍ରମକୁ ନେଇଯାଇ ସେଠାରେ ରାତ୍ରିଯାପନ କରିଥିଲେ; କିନ୍ତୁ ନିଶାର୍ଦ୍ଧରେ ଅଦ୍ଭୁତ ପ୍ରକାର ଗୋଟିଏ ସ୍ୱପ୍ନ ଦେଖି ମୁଁ ଶେଯରୁ ଉଠି ବାହାରକୁ ଚାଲିଆସିଲି । ମୁଁ ଧୀର ପଦପାତର ସହିତ ଗୋଟିଏ କୁଟୀର ନିକଟରେ ଛିଡ଼ାହୋଇ ଶୁଣିଲି – 'ନହୁଷ ରାଜାର ପୁତ୍ର କେବେହେଲେ ସୁଖୀ ହୋଇପାରିବନାହିଁ' . . . ଆଲୋଚନା କରୁଥିଲେ କେତେଜଣ ଋଷି ।

ଏ କଥା ଶୁଣିବାମାତ୍ରେ ମୁଁ ଭୟରେ କମ୍ପିଉଠିଲି, ମୋର ରୋମମୂଳ ଟାଙ୍କୁରିଉଠିଲା । ତା'ହେଲେ କ'ଣ ସେଇ ଋଷିକୁମାରମାନଙ୍କ ଭବିଷ୍ୟତବାଣୀ ସତ୍ୟ ହେବ ? ଯଦି ହୁଏ . . . ? ଅଜାଣତରେ ମୋ ମୁହଁରୁ ବାହାରିଗଲା – ''ନହୁଷ ରାଜାର ସନ୍ତାନ ସୁଖୀ ହେବେନାହିଁ ?''

–''କାହିଁକି ?''

–''ଅଭିଶାପ ।''

–''କାହାର ?''

–''କେଉଁ ଋଷିରାଜଙ୍କର ।'' – ଉତ୍ତର ଦେଲେ ଗମ୍ଭୀର ସ୍ୱରରେ ଯତି ।

–''ପିତା ଏପରି କି ଗୁରୁତର ପାପ କରିଥିଲେ ଯେ ଏପରି ଗୋଟିଏ ମର୍ମନ୍ତୁଦ ଅଭିଶାପ ପଡ଼ିଲା ?''

''ସେ ସମ୍ବନ୍ଧରେ ମୁଁ ବିଶେଷ କିଛି ଜାଣିନି । ସେ ଯାହେଉ, ତୁ ଏବେ ଏଠାରୁ ଚାଲିଯା' । ମୋର ଧ୍ୟାନ ଧାରଣା ତଥା ସମାଧିସ୍ଥ ହେବାର ସମୟ ହୋଇଗଲାଣି । କିନ୍ତୁ ଗୋଟିଏ କଥା ମନେରଖ, ସେଦିନ ଋଷିକୁମାରଙ୍କ ଚେତାବନୀ ଶୁଣି ମୁଁ ମନେ ମନେ ସ୍ଥିରକରିନେଲି, ମୁଁ ଗୋଟିଏ ଦୁଃଖୀ ରାଜକୁମାର ହେବା ଅପେକ୍ଷା ଜଣେ ସୁଖୀ ସନ୍ନ୍ୟାସୀ ହେବାପାଇଁ ଚେଷ୍ଟା କରିବି । ମୁଁ ଘରୁ ବାହାରି ଏଣେତେଣେ ବୁଲି ଶେଷରେ ହିମାଳୟକୁ ଚାଲିଗଲି । ସେଠାରେ ମୋତେ ଜଣେ ହଠଯୋଗୀ ମିଳିଗଲେ ।''

ମୁଁ ହଠାତ୍ ଯତିରାଜଙ୍କ କଥାରେ ବାଧାଦେଇ କହିଲି – ''ଯତି ! ଛୋଟଭାଇ ହିସାବରେ ମୋର ଗୋଟିଏ ମାଗୁଣି ତୁମେ ସ୍ୱୀକାର କରିବ କି ?''

–''ତୁ କ'ଣ ଚାହୁଁଛୁ ?''

–''ମୁଁ ହସ୍ତିନାପୁରକୁ ଯାଇ ମାଆଙ୍କୁ ଘେନିଆସେ; ତୁମେ ଥରେମାତ୍ର ତାଙ୍କୁ ସାକ୍ଷାତ୍ କର ।''

ଅନ୍ୟମନସ୍କ ଭାବରେ ମୁଣ୍ଡ ହଲାଇ କହିଲେ ଯତି – ''ଅସମ୍ଭବ ।''

–''କାହିଁକି ?'' – ଜୋର୍‌ଦେଇ ପଚାରିଲି ମୁଁ ।

–''ମୋର ତପସ୍ୟା ଏ ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇନାହିଁ; ଅଦ୍ୟାପି ମୁଁ ପରମାତ୍ମାଙ୍କୁ ହାତମୁଠାରେ ପାଇପାରିନାହିଁ । ତୁ ତାଙ୍କୁ ନେଇ ଆସିଲେ ମଧ୍ୟ ମୋର ସାକ୍ଷାତ୍ ପାଇପାରିବୁନାହିଁ । ମୁଁ ଗୋଟିଏ ସ୍ଥାନରେ ବେଶିଦିନ ରହେନାହିଁ; କାରଣ ଆସକ୍ତି ହିଁ ଆତ୍ମାର ସବୁଠାରୁ ବଡ଼ ଶତ୍ରୁ । ଗୋଟିଏ ସ୍ଥାନ ପ୍ରତି ମୋ ମନରେ ଆଗ୍ରହ ଜାତହେବାମାତ୍ରେ ମୁଁ ସେହି ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଯାଏ ।''

—"ତା'ହେଲେ ମୋ ସହିତ ତୁମର ସାକ୍ଷାତ୍ ହେବ କେବେ ?"

—"କିଏ ଜାଣେ ? ହୋଇପାରେ କିମ୍ୱା ନ ହୋଇପାରେ।"

—"ଆମ ଦୁହିଁଙ୍କର ସାକ୍ଷାତ୍ ..."

—"ଆଜିପରି କୌଣସି ସ୍ଥାନରେ ଆକସ୍ମିକ ଭାବରେ ହେବ; କିନ୍ତୁ ମନେରଖ, ସେତେବେଳକୁ ମୁଁ ନିଶ୍ଚିତ ଭାବରେ ସିଦ୍ଧିଲାଭ କରିସାରିଥିବି। ହେଉ... ଛାଡ଼ ସେ କଥା; ସମାଧିସ୍ଥ ହେବାର ସମୟ ହୋଇଗଲାଣି; ଚାଲ, ମୁଁ ତୋତେ ବାହାରେ ଛାଡ଼ିଦେଇ ଆସେ।"

ଯତି ପାଖରୁ ବିଦାୟ ନେବା ଅନିର୍ବାର୍ଯ୍ୟ ହୋଇପଡ଼ିଲା। ବିଦାୟବେଳେ ମୁଁ ବାଷ୍ପରୁଦ୍ଧ କଣ୍ଠରେ କହିଲି– "ଯତି, ମୁଁ ଚାଲିଲି; କିନ୍ତୁ ତୁମେ ମୋତେ ଭୁଲିଯିବନାହିଁ।"

ମୁଁ ଗୁମ୍ଫା ଭିତରକୁ ଆସିବାଠାରୁ ବିଦାୟନେବା ପର୍ଯ୍ୟନ୍ତ ଯତି ମୋତେ ସ୍ପର୍ଶ କରିନଥିଲେ; କିନ୍ତୁ ବିଦାୟ ମୁହୂର୍ତ୍ତରେ ଖୁବ୍ ସମ୍ଭବତଃ ସେ ନିଜର ଦୃଢ଼ତାରୁ ଟଳିଯାଇ ତାଙ୍କ ବାମହସ୍ତ ମୋ ଡାହାଣ କାନ୍ଧରେ ରଖି କହିଲେ– "ଯଯାତି ! ଆଜି ବା କାଲି ତୁ ରାଜା ହେବୁ; ସମ୍ରାଟ୍ ହୋଇ ଶତଶତ ଅଶ୍ୱମେଧର ଆୟୋଜନ କରିବୁ। କିନ୍ତୁ ଗୋଟିଏ କଥା ସବୁବେଳେ ମନେରଖିଥିବୁ; ଜଗତକୁ ଜୟ କଲାପରି, ମନକୁ ଜୟ କରିବା ଆଦୌ ସହଜ ନୁହେଁ।"

× × × × ×

ଅଶ୍ୱମେଧର ଦିଗ୍‌ବିଜୟୀ ଘୋଡ଼ାକୁ ଘେନି ମୁଁ ହସ୍ତିନାପୁରକୁ ଫେରିଆସିଲି। ରାଜଧାନୀରେ ମୋର ଭବ୍ୟ ସ୍ୱାଗତ କରାଗଲା। ସମଗ୍ର ନଗରୀ ଗୋଟିଏ ନୃତ୍ୟକୁଶଳା ରମଣୀପରି, ଅତ୍ୟନ୍ତ ସାଜ-ଶୃଙ୍ଗାରରେ ବିଭୂଷିତ ହୋଇଥିଲା। ଭାବଭଙ୍ଗିମାର ଅପୂର୍ବ ଲାସ୍ୟରେ ଛନ୍ଦାୟିତ ଲାବଣ୍ୟପସରା ପରି ରାଜଧାନୀର ପ୍ରତ୍ୟେକ ତୋରଣ ସଜ୍ଜିତ ହୋଇଥିଲା। ଏହି ଲୋକୋତ୍ତର ଆଡ଼ମ୍ବର ମଧ୍ୟରେ ମୁଁ ଯେତିକି ଆନନ୍ଦିତ ହେବାର କଥା ଅନୁରୂପ ଆନନ୍ଦ ଲାଭକରିପାରିନଥିଲି। ମୋର ସ୍ୱାଗତ ଉଦ୍ଦେଶ୍ୟରେ ଆସୁଥିବା ଅସଂଖ୍ୟ ପୁଷ୍ପଗୁଚ୍ଛ ତଥା ଫୁଲହାରଗୁଡ଼ିକ ମଧ୍ୟରେ ମୁଁ ମୋର ମନଲାଖି ପୁଷ୍ପମାଳା ପାଇପାରୁନଥିଲି। ନଗରର ମୁଖ୍ୟ ଦ୍ୱାରଦେଶରେ ମୋର ବନ୍ଦାପନା ଲାଗି ଛିଡ଼ାହୋଇଥିବା ଦାସୀମାନଙ୍କ ମଧ୍ୟରେ ପଞ୍ଚମୁଖୀ ଦୀପାବଳୀ ଧରି ଅଳକା ନଥିଲା। ମୋର ପିଆସୀ ଦୃଷ୍ଟି କେବଳ ଅଳକାକୁ ଖୋଜୁଥିଲା; କିନ୍ତୁ ମୋର ସେ ପିପାସା ମେଣ୍ଟିଲାନାହିଁ।

ମା'ଙ୍କର ପ୍ରତ୍ୟେକ ଗତିବିଧିରୁ ଆନନ୍ଦର ସୁଅ ଛୁଟିଥିଲା; ସତେଅବା ତାଙ୍କର ତାରୁଣ୍ୟ ଫେରିଆସିଛି। ତାଙ୍କର ମମତା ବାତ୍ସଲ୍ୟରସଧାରାରେ ସିକ୍ତ ହୋଇଥିଲେହେଁ, ମୋ ଅନ୍ତରର କୌଣସି ଏକ ନିଭୃତ କୋଣରେ ମରୁଭୂମିର ଭୀଷଣତା ଅନୁଭୂତ ହେଉଥିଲା। ଶେଷକୁ ଅତି ସାଧାରଣ ଭାବରେ ମୁଁ ପଚାରିଲି ମାଆଙ୍କୁ– "ଅଳକା କାହିଁ ଦେଖାଯାଉନାହିଁ ତ ?"

—"ସେ ତା' ମାଉସୀଘରକୁ ଯାଇଛି।"

—"ତା' ମାଉସୀ ରହେ କେଉଁଠି ?"

—"ବହୁତ ଦୂର, ହିମାଳୟର ତଳଘଟି ଇଲାକାର କୌଣସି ଗୋଟିଏ ଗ୍ରାମରେ; ତା'ପରେ ରାକ୍ଷସମାନଙ୍କ ରାଜ୍ୟ ଆରମ୍ଭ ହୋଇଯାଏ।"

ସେ ରାତ୍ରିରେ ମୁଁ କେବଳ ଯତି ଓ ଅଳକା ବିଷୟରେ ଅନେକ କିଛି ଭାବିଲି। ମୁଁ ଏଠାରେ ଦୁଗ୍‌ଧଫେନ ପରି କୋମଳ ଶଯ୍ୟାରେ ପଡ଼ି ଛଟପଟ ହେଉଛି; ଅଥଚ ଯତି ସେହି ସୁଦୂର ବନାନୀର କେଉଁ ଜଳାଶୟରୁ ନିତ୍ୟକର୍ମ ଶେଷକରି ଫେରିଆସୁଥିବ। ତା' ମନରେ ଭୟ କିମ୍ବା କାହାରି ପ୍ରତି ସ୍ନେହ-ମମତା ଜାଗିଉଠୁନାହିଁ। ତାହା କ'ଣ ପ୍ରକୃତରେ ସୁଖପ୍ରାପ୍ତିର ପ୍ରକୃତ ମାର୍ଗ? ତା'ହେଲେ ମୁଁ କାହିଁକି ସେହି ମାର୍ଗରେ ପଥିକ ହେବାଲାଗି ଉନ୍ମୁଖ ହେଉନାହିଁ? ମୋ ମନମଧ୍ୟରେ ଅଳକାର ସ୍ମୃତି କାହିଁକି ଉଙ୍କିମାରୁଛି? ବନ ମଧ୍ୟରେ ଥିବା ସେହି ମନ୍ଦିର ମୂର୍ତ୍ତିପରି, କିଏ ସେ ଅଳକାର କମନୀୟ ଛବି ମୋ ହୃଦୟରେ ଅଙ୍କିତ କରିଦେଲା? ସେ ଏ ସମୟରେ କ'ଣ କରୁଥିବ? ଆନନ୍ଦରେ ଶୋଇପଡ଼ିଥିବ କିମ୍ବା ସ୍ୱପ୍ନଲୋକରେ ବିଚରଣ କରି ହସ୍ତିନାପୁରର ମୋ'ରି କକ୍ଷ ଚାରିପଟେ ଘୂରିବୁଲୁଥିବ?

ଅଶ୍ୱମେଧ ସମାରୋହର ଧୁମ୍‌ଧାମ୍ ମଧ୍ୟରେ ମୁଁ ଧୀରେ ଧୀରେ ଅତୀତର ସବୁ କଥା ଭୁଲିଗଲି। ଠିକ୍ ଅଶ୍ୱମେଧ ସମାପ୍ତ ହେବା ପରେ ପରେ, ଯେଉଁ ମହର୍ଷିଙ୍କ ଆଶୀର୍ବାଦରେ ଯତି ଜନ୍ମଲାଭ କରିଥିଲା, ତାଙ୍କ ଶିଷ୍ୟ ଆସି ପିତାଙ୍କ ନିକଟରେ ପହଞ୍ଚି ଗୁରୁଙ୍କ ସନ୍ଦେଶ ଜଣାଇଲା। ଆମ ବଂଶର ଗୋଟିଏ କୌଳିକ ପରମ୍ପରା ଅନୁସାରେ ଆମେ କେହି ହେଲେ ସେ ମହର୍ଷିଙ୍କ ନାମ ଧରୁନଥିଲୁ; ଅବଶ୍ୟ ମୁଁ ଜାଣେନି, ଏ ପ୍ରଥା ମୂଳରେ ଆଦରସୂଚକ ଭକ୍ତି କିମ୍ବା ବିରକ୍ତିସୂଚକ କ୍ରୋଧ ରହିଥିଲା; ତାହା ମୁଁ ଜାଣିନଥିଲି! କିନ୍ତୁ ମୁଁ ଯେତେବେଳେ ଆତ୍ମକାହାଣୀ କହିବାକୁ ଯାଉଛି, ସେଥିରେ କୌଣସି ଗୋପନ ତଥ୍ୟ ରହିବା ଉଚିତ ନୁହେଁ। ତେଣୁ ମୁଁ ପ୍ରକାଶ କରୁଛି– ସେ ମହର୍ଷିଙ୍କ ନାମ ଥିଲା ଅଙ୍ଗିରସ।

ଦେବ-ଦାନବଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଆରମ୍ଭ ହୋଇଯିବାର ସୂଚନା ସ୍ପଷ୍ଟ ହୋଇଉଠୁଥିଲା। ସେହି ମହାଯୁଦ୍ଧର ନିରାକରଣ ନିମିତ୍ତ ମହର୍ଷି ଅଙ୍ଗିରସ ଗୋଟିଏ ଶାନ୍ତିଯଜ୍ଞର ଆୟୋଜନ କରୁଥିଲେ। ଏହି ଯଜ୍ଞରେ ମୁଖ୍ୟ ଋତ୍ୱିକ୍ ପଦରେ ମହର୍ଷିଙ୍କ ପ୍ରିୟଶିଷ୍ୟ ଆଚାର୍ଯ୍ୟ କଚ ଅଭିଷିକ୍ତ ହେବାର ସ୍ଥିରହୋଇଥିଲା। କଚ ଥିଲେ ଦେବଗୁରୁ ବୃହସ୍ପତିଙ୍କର ପୁତ୍ର; ତେଣୁ ରାକ୍ଷସଙ୍କ ପକ୍ଷରୁ ଯଜ୍ଞର ବିରୋଧ ହେବାର ସମ୍ଭାବନା ଥିଲା। ସେ ବିରୋଧର ସମ୍ମୁଖୀନ ହୋଇ ଯଜ୍ଞରକ୍ଷା କରିବାଲାଗି ଆଚାର୍ଯ୍ୟ ଅଙ୍ଗିରସ ପିତୃଦେବଙ୍କୁ ତାଙ୍କର ଦିଗ୍‌ବିଜୟୀ ପୁତ୍ରର ସାହାଯ୍ୟ ଲୋଡୁଥିଲେ।

ଅବଶ୍ୟ ଏହା ଥିଲା ଅଶ୍ୱମେଧଠାରୁ ଆହୁରି ସମ୍ମାନାସ୍ପଦ ବିଷୟ। ମୁଁ ଏହା ଶୁଣିବା ମାତ୍ରେ କଳ୍ପନାରେ ସେହି ଶାନ୍ତିଯଜ୍ଞର ପରିକ୍ରମା କରିବାକୁ ଲାଗିଲି; କିନ୍ତୁ ଯତି ସହିତ ସାକ୍ଷାତ୍‌କାର ଥିଲା ମୋ ଜୀବନରେ ଏକ ଭୟଙ୍କର ସ୍ୱପ୍ନ ଏବଂ ଅଳକାର ଗୋଲାପୀ ଅଧରରେ ଚୁମ୍ବନ ଥିଲା ଏକ ସୁଖଦ ସ୍ୱପ୍ନ; ଯାହାହେଉ, ସେ ଉଭୟ ହିଁ ଥିଲା ସ୍ୱପ୍ନ। କିନ୍ତୁ ଶାନ୍ତିଯଜ୍ଞରେ ମୋର ଯୋଗଦାନ ପ୍ରକୃତରେ ସ୍ୱପ୍ନ ନଥିଲା; ବରଂ ଯଜ୍ଞରକ୍ଷା କରିବା ସମୟରେ ମୋର ବୀରତ୍ୱ ତଥା ଶୌର୍ଯ୍ୟର

ପ୍ରଦର୍ଶନ ଥିଲା ଏକ ମୁଖ୍ୟ ଅଙ୍ଗ। ରାକ୍ଷସମାନଙ୍କୁ ନିମିଷକ ମଧ୍ୟରେ ପରାଭୂତ କରିଥିବା ଏ ବୀର କିଏ ? ଏହା ଜାଣିବାଲାଗି ଇନ୍ଦ୍ରଦେବ ମୋତେ ଆମନ୍ତ୍ରଣ କରିବେ। ତା'ପରେ ମୁଁ ସ୍ୱର୍ଗରାଜ୍ୟରେ ପ୍ରବେଶକରିବି ଏବଂ ଅଳକାଠାରୁ ସହସ୍ର ଗୁଣରେ ସୁନ୍ଦରୀ ଅପ୍ସରା ମୋତେ ମୁଗ୍ଧ କରିବାଲାଗି ପ୍ରୟାସ କରିବେ। ମୁଁ ସେମାନଙ୍କ ଚାରୁଚନ୍ଦ୍ରାନନ ତଥା କୁଟୀଳ କଟାକ୍ଷ ପ୍ରତି ଦୃଷ୍ଟିପାତ ନକରି ଇନ୍ଦ୍ରଦେବଙ୍କୁ କହିବି– "ଦେବରାଜ, ସମାଗତ ଦେବ-ଦାନବ ଯୁଦ୍ଧରେ ମୁଁ ଆପଣଙ୍କ ପକ୍ଷରେ ରହି ଯୁଦ୍ଧ କରିବି। କିନ୍ତୁ ଆପଣ ମଧ୍ୟ ମୋ ପାଇଁ କିଛି ଉପକାର କରିବେ; ଅର୍ଥାତ୍ ଆମ ବଂଶ ପ୍ରତି ଥିବା ସେହି ମର୍ମନ୍ତୁଦ ଅଭିଶାପରୁ ମୁକ୍ତ ହେବାଲାଗି ଆପଣ ମୋତେ ଉପାୟ ବତାଇଦେବେ।"

ମୁଁ ଆଶ୍ରମକୁ ନଯିବାଲାଗି ମାଆ ଅନେକ ଚେଷ୍ଟା କଲେ; ଅଶ୍ରୁଳ ନେତ୍ରରେ ସେ ଅନେକଥର ମୋତେ ବୁଝାଇବା ଉଦ୍ଦେଶ୍ୟରେ କହିଲେ, "ପୁତ୍ର କେଡ଼େ ବୀର ହେଉନା କାହିଁକି, ମାଆ ନିକଟରେ ସେ ଚିରଦିନ ଶିଶୁ ହୋଇ ରହିଥାଏ।" ମାଆଙ୍କର ଏପରି ଦୁର୍ବଳତା ଲାଗି ମୋ ମନରେ ଦୟା ଜାତହୋଇଥିଲା। କାରଣ ମୁଁ କେବଳ କଳ୍ପନା କରୁଥିଲି, ରାକ୍ଷସଙ୍କୁ କିପରି ପରାଭୂତ କରି ନିଜର ଶୌର୍ଯ୍ୟ ପ୍ରଦର୍ଶନ କରିବି; ତେଣୁ ହସି ହସି କହିଲି– "ମା'। ତୁମ କଥାରେ କେତେଦୂର ସତ୍ୟତା ରହିଛି ମୁଁ ବୃଦ୍ଧବୟସରେ ପଦାର୍ପଣ କଲେ ତା' ଅନୁଭବ କରିପାରିବି, ଏବେ ନୁହେଁ। କିନ୍ତୁ ମାଆ ! ଯଦି ସେ ବୟସରେ ମୁଁ କିଛି ପିଲାଳିଆ କାମ କରିଦିଏ, ତା'ହେଲେ ତୁମେ ମୋତେ କ୍ଷମା ଦେବ ତ ?" ମାଆ ବାଷ୍ପରୁଦ୍ଧ କଣ୍ଠରେ କହିଲେ– "ବାପା, ତୋତେ ବୃଦ୍ଧ ବୟସରେ ପଦାର୍ପଣ କରିବାର ଦେଖିଲେ ମୋର ଆତ୍ମା ଚିରଶାନ୍ତି ଲାଭକରିବ। ମୋତେ ପରମାତ୍ମା ସେହିଦିନ ଦେଖାନ୍ତୁ, ଏହାହିଁ ମୋର ପ୍ରାର୍ଥନା।" ମାଆଙ୍କ ହୃଦୟର ମମତା ତଥା ବ୍ୟାକୁଳତା ମୁଁ ପ୍ରକୃତରେ କ'ଣ ସେତେବେଳେ ବୁଝିପାରିଥିଲି ? ମୁଁ କେବଳ ଭାବୁଥିଲି– ଗଭୀର ଘନଘୋର ରାତ୍ରିରେ ମାଆଙ୍କୁ ତ୍ୟାଗକରି ଯତି ପଳାଇଯାଇଥିବାରୁ ତାଙ୍କ ମନର ଭୂତ ତାଙ୍କୁ ଡରାଇବାରେ ଲାଗିଛି। ସେ କୌଣସିମତେ ସେଦିନର କାଳରାତ୍ରିକୁ ଭୁଲିପାରୁନାହାନ୍ତି।

× × × × ×

ମୋର ଅଙ୍ଗରକ୍ଷକ ଧୀରେ ଧୀରେ ମୋ ପଛରେ ଆସୁଥିଲା। ତା' ଆଳସ୍ୟର ଏକମାତ୍ର କାରଣ ଥିଲା– ମହର୍ଷି ଅଙ୍ଗିରସଙ୍କ ଆଶ୍ରମ। ସେହି ଉଦ୍ଦେଶ୍ୟରେ ମନ୍ଥର ଗତିରେ ଚାଲିଚାଲି ମୋ ଘୋଡ଼ା ମଧ୍ୟ ମନେମନେ ବିରକ୍ତ ହୋଇଯାଇଥିଲା। କିଛି ସମୟ ମଧ୍ୟରେ ଆମେ ଯାଇ ମହର୍ଷିଙ୍କ ଆଶ୍ରମର ଉପକଣ୍ଠରେ ଉପସ୍ଥିତ ହୋଇଗଲୁ।

ସନ୍ଧ୍ୟା ସମାଗତ ପ୍ରାୟ। ବୃକ୍ଷରାଜି ଭେଦକରି ଯଜ୍ଞ ଧୂମର ଏକ ସୂକ୍ଷ୍ମରେଖା ନର୍ତ୍ତକୀର ତାଳବଦ୍ଧ ପଦବିନ୍ୟାସ ପରି ଆକାଶକୁ ଉଠିଯାଉଥିଲା। ଗୋଟିଏ ପ୍ରକାଣ୍ଡ ଯଜ୍ଞକୁଣ୍ଡରେ ଧୂ-ଧୂ ହୋଇ ଜଳିଉଠୁଥିବା ଅଗ୍ନିଶିଖା ପରି ପଶ୍ଚିମ ଦିଗ୍‌ବଳୟ ଶୋଭାପାଉଥିଲା ଏବଂ ମନେହେଉଥିଲା, ସତେ ଅବା ମେଘମାଳା ସେ ଯଜ୍ଞକୁଣ୍ଡରେ ଆହୁତିରୂପେ

ଏବଂ ସାୟଂକାଳୀନ ପକ୍ଷୀମାନଙ୍କ କଳକୂଜନ ଋତ୍ୱିକ୍‌ମାନଙ୍କର ସମବେତ ମନ୍ତ୍ରୋଚ୍ଚାରଣରେ ପରିଣତ ହୋଇଛି।

ନାନା ପ୍ରକାରର ପକ୍ଷୀ ନିଜନିଜର ନୀଡ଼କୁ କୋଳାହଳ କରି ଫେରିଆସୁଥିଲେ। ରାଜପ୍ରାସାଦ ମଧ୍ୟରେ ଏତେ ରଙ୍ଗବେରଙ୍ଗର ପକ୍ଷୀ ମୁଁ କେବେହେଲେ ଦେଖିନଥିଲି। ମୁଁ ଘୋଡ଼ା ଅଟକାଇଦେଇ ସେହି ରଙ୍ଗର ଚପଳଛନ୍ଦ ଦେଖି ମନ୍ତ୍ରମୁଗ୍ଧ ହୋଇଗଲି। ଏହି ସମୟରେ ଗୋଟିଏ ପଞ୍ଚରଙ୍ଗୀ ପକ୍ଷୀ ମୋ ଆଗଦେଇ ଉଡ଼ିଗଲା। ତା' ରଙ୍ଗର ଆକର୍ଷଣ ମୁଁ ଏତେ ତୀବ୍ରଭାବରେ ଅନୁଭବ କଲି ଯେ, ପକ୍ଷୀଟିକୁ ମାରି ତା'ର ଡେଣା ନିଜ ପାଖରେ ସାଇତିରଖିବା ଲାଗି ମୁଁ ବ୍ୟାକୁଳ ହୋଇ ଧନୁରେ ଗୁଣ ଚଢ଼ାଇଲି। ଏହି ସମୟରେ ଏକ କଠୋର ଅଥଚ୍ ସଂଯତ ବାଣୀ ଭାସିଆସିଲା – "ରହିଯାଅ . . ."

ଏହା ଅନୁରୋଧ ନୁହେଁ, ଆଦେଶ ପରି ମୋତେ ଜଣାପଡ଼ିଲା। ମୁଁ ପକ୍ଷୀର ରଙ୍ଗମୋହରେ ଏତେ ମଜ୍ଜିଯାଇଥିଲି ଯେ, ମୋ ପାଖରେ କୌଣସି ସତ୍ତା ଥିବାର ମୁଁ ଅନୁଭବ କରିପାରିନଥିଲି। ହଠାତ୍ ଏ ଆଦେଶସୂଚକ ଶବ୍ଦ ଶୁଣି ମୁଁ ଚମକିଉଠି ବାମଆଡ଼କୁ ଫେରି ଚାହିଁ ଦେଖିଲି – କୌଣସି ଏକ ଋଷିକୁମାର ସନ୍ଧ୍ୟାକାଳୀନ ଶୋଭା ଦେଖିବାଲାଗି ବୃକ୍ଷଶାଖାରେ ବସିଥିଲେ; ତେଣୁ ତାଙ୍କର ଏ ପ୍ରକାର ଆଦେଶପୂର୍ଣ୍ଣ ବାଣୀରେ ମୁଁ ମନେ ମନେ ବିରକ୍ତ ହୋଇଥିଲେହେଁ, ଆପଣାଛାଏଁ ମୋର ଧନୁଶର ସହିତ ହାତ ତଳକୁ ନଇଁଆସିଲା। ମୁଁ ଋଷିକୁମାରଙ୍କ ଉପରେ ରାଗିବା ଅପେକ୍ଷା ନିଜ ଉପରେହିଁ ଖୁବ୍ ରାଗିଗଲି। ଏହି ସମୟରେ ମୁନିକୁମାର ଗଛଡାଳରୁ ଫକ୍‌କରି ତଳକୁ ଡେଇଁପଡ଼ି· ମୋ ଆଗରେ ଛିଡ଼ାହୋଇ କହିଲେ – "ଏ ପରା ମହର୍ଷି ଅଙ୍ଗିରସଙ୍କ ଆଶ୍ରମ!"

ମୁଁ ବିରକ୍ତିମିଶା ରୁକ୍ଷ ସ୍ୱରରେ କହିଲି – "ହଁ . . . ହଁ . . . ଜାଣିଛି।"

"ଆଶ୍ରମର ଏହି ପବିତ୍ର ପରିସର ମଧ୍ୟରେ ତୁମେ ପକ୍ଷୀଟିକୁ ମାରିଥିଲେ କେଡ଼େ ଅଧର୍ମ ହୋଇଥା'ନ୍ତା?"

"ମୁଁ କ୍ଷତ୍ରିୟ! ହିଂସା ମୋର ଧର୍ମ।"

"ଆତ୍ମରକ୍ଷା କିମ୍ବା ଦୁଷ୍ଟର ବିନାଶ ଲାଗି ଉଦ୍ଦିଷ୍ଟ ହିଂସା ଧର୍ମ ହୋଇପାରେ, ଏ ବିଚ଼ରା ମୂକ ପକ୍ଷୀଟି ତୁମର କ'ଣ ଅପକାର କରିଛି କିମ୍ବା ନିଜେ କି ଅକର୍ମ କରିଛି କହିଲ?"

"ସେଇ ପକ୍ଷୀଟିର ଆକର୍ଷକ ରଙ୍ଗରେ ମୁଁ ମୁଗ୍ଧ ହୋଇଯାଇଥିଲି।"

"ଖୁବ୍ ରସିକ ଜଣାପଡୁଛ! କିନ୍ତୁ ମନେରଖ, ଯେଉଁ ପରମାତ୍ମା ତୁମ ମନରେ ରସିକତା ଭରିଦେଇଛନ୍ତି, ସେ ହିଁ ସେହି ପକ୍ଷୀଟିର ଜୀବନଦାତା।"

ମୁଁ ଆଉ କିଛି ଯୁକ୍ତି କରି ନପାରି କହିଲି – "ଏଭଳି ନୀରସ ବିତର୍କ କେବଳ କୌଣସି ମନ୍ଦିରରେ ଶୋଭାପାଏ।" ମୁନିକୁମାର ହସି ହସି କହିଲେ – "ପ୍ରକୃତରେ ତୁମେ ଗୋଟିଏ ମନ୍ଦିରରେ ହିଁ ଛିଡ଼ାହୋଇଛ। ଏହି ଦେଖ, ପଶ୍ଚିମରେ ଏହି ମନ୍ଦିରର ଅକ୍ଷୟଦୀପ ଦପ୍‌ଦପ୍ ଲିଭିବାକୁ ବସିଲାଣି। ଏଥର ଉପରକୁ ଚାହଁ ଦେଖିବ, ସନ୍ଧ୍ୟାର ଆରତିଲାଗି ଆକାଶରେ ଅଗଣିତ ଦୀପାବଳି ଜଳିଉଠିବ।"

ବେଶଭୂଷାରୁ ସେ ଗୋଟିଏ ମୁନିକୁମାର ପରି ଜଣାପଡୁଥିଲେ; କିନ୍ତୁ ତାଙ୍କର ତର୍କବିତର୍କରେ ଥିଲା କବିତ୍ୱର ଛଟା। ତେଣୁ ପରିହାସମିଶା ସ୍ୱରରେ ମୁଁ ପଚାରିଲି– ''କବିରାଜ ମହୋଦୟ, ଆପଣ କ'ଣ ଘୋଡ଼ାରେ ବସିଜାଣନ୍ତି ?''

–''ନାଁ . . .''

–''ତା'ହେଲେ ମୃଗୟାରେ କି ଆନନ୍ଦ ଆପଣ ଅନୁଭବ କରିବେ କୁଆଡୁ ?''

–''କିନ୍ତୁ ମୁଁ ମଧ୍ୟ ଶିକାର କରେ।''

–''କାହାର ଶିକାର କରନ୍ତି ? କ'ଣ କୁଶମୂଳକୁ ଉପାଡ଼ି ନା ଆଉ କିଛି ?'' ମୋ ସ୍ୱରରେ ଥିଲା ଉପହାସର ଅସ୍ଫୁଟ ଗୁଞ୍ଜନ।

କିନ୍ତୁ ସେ ଶାନ୍ତ ସ୍ୱରରେ ଉତ୍ତରଦେଲେ– ''ମୁଁ ମୋ ଶତ୍ରୁଙ୍କ ସଂହାରଲାଗି ଶିକାର ଖେଳେ।''

–''ବଲ୍‌କଲଧାରୀ ଆଶ୍ରମବାସୀ ମୁନିଋଷିଙ୍କର କ'ଣ ଶତ୍ରୁ ଅଛନ୍ତି ?'' ଆଶ୍ଚର୍ଯ୍ୟମିଶା ସ୍ୱରରେ କହିଲି ମୁଁ।

–''ଗୋଟିଏ ନୁହେଁ, ଅନେକ . . .''

–''କିନ୍ତୁ ଶତ୍ରୁର ସମ୍ମୁଖୀନ ହେବାଲାଗି ତୁମ ପାଖରେ ଅସ୍ତ୍ରଶସ୍ତ୍ର କାହିଁ ?''

–''ସୂର୍ଯ୍ୟ ଓ ଇନ୍ଦ୍ରଙ୍କ ଘୋଡ଼ା ଅପେକ୍ଷା ଅଧିକ ତେଜସ୍ୱୀ ଅଶ୍ୱ ମୋ ନିକଟରେ ଅଛି।''

–''ଆଶ୍ଚର୍ଯ୍ୟ ! ଏବେ ତୁମେ ନିଜେ ତ କହୁଥିଲ ଯେ ତୁମକୁ ଘୋଡ଼ା ଚଢ଼ି ଆସେନାହିଁ !''

''ମୁଁ ତୁମ ଘୋଡ଼ା ଉପରେ ବସିପାରିବିନାହିଁ ସିନା; କିନ୍ତୁ ନିଜ ଘୋଡ଼ା ଉପରେ ମୁଁ ସବୁବେଳେ ବସି ତାକୁ ଆୟତ୍ତ କରିପାରିଛି। ଓଃ, ଜାଣିଛ ମୋ ଘୋଡ଼ା ଖୁବ୍ ସୁନ୍ଦର ତଥା ବେଗବାନ୍। ସେ ଏତେ ଜୋର୍‌ରେ ଦୌଡ଼ିପାରେ ଯେ, ଆଉ ସେ କଥା ପଚାରନାହିଁ। ଗୋଟିଏ ପଲକପାତ ମଧ୍ୟରେ ସେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନ ବୁଲିଆସିବ। ଆଲୋକର ରଶ୍ମି ଯେଉଁ ଅଞ୍ଚଳକୁ ଭେଦକରିନପାରେ, ମୋ ଘୋଟକ ଅନାୟାସରେ ସେ ମଧ୍ୟରେ ପ୍ରବେଶ କରିପାରେ। କେତୋଟି ଅଶ୍ୱମେଧର ଘୋଟକକୁ ମଧ୍ୟ ତା'ଠାରୁ ହାରମାନିବାକୁ ପଡ଼ିପାରେ। ତା'ର ପରାକ୍ରମ ଆଗରେ ନର, ଦେବ, ଏପରିକି ନାରାୟଣଙ୍କୁ ମଧ୍ୟ ପରାସ୍ତ ସ୍ୱୀକାର କରିବାକୁ ପଡ଼ିବ। ସେ ଦେବାଧିଦେବ ମହାଦେବରେ ପରିଣତ ହୋଇପାରେ।''

ତାଙ୍କର କଥାଗୁଡ଼ିକ ମୋତେ ବିଚଳିତ କରିଦେଲା। କିନ୍ତୁ ତାଙ୍କର କଥାର ଅର୍ଥ ମୁଁ ଆଦୌ ହୃଦୟଙ୍ଗମ କରିପାରିଲିନାହିଁ। ମନେ ମନେ ରାଗିଯାଇ ଘୋଡ଼ା ଚଳାଇଦେଇ ପଚାରିଲି– ''କାହିଁ ତୁମ ଘୋଡ଼ା ?''

–''ସେ ଘୋଡ଼ାକୁ ମୁଁ ଦେଖାଇପାରିବିନାହିଁ; କିନ୍ତୁ ଦିନରାତି ମୋ ପାଖରେ ରହି ମୋ'ରି ସେବାରେ ଲାଗିଛି।''

–''ଆରେ ଭାଇ, ତୁମ ଘୋଡ଼ାର କିଛି ନାମ ଅଛି ତ !''

–''ନିଶ୍ଚୟ।''

—''ତା'ହେଲେ . . . କହୁନାହଁ ତା' ନାମ କ'ଣ ?''

—''ଆମ୍ଭ ।''

ଆସିଲାବେଳେ ମାଆ ମୋତେ ବିନମ୍ରଭାବରେ ଚଳିବାଲାଗି ବାରମ୍ବାର ସାବଧାନ କରାଇଦେଇଥିଲେ; ଏଣୁ ମୁଁ ରାଜପରିଚ୍ଛଦ ଓ ଅଳଙ୍କାର ଆଦି ଆଗରୁ ବାହାରକରିଦେଇଥିଲି । ଗୋଟିଏ ସାଧାରଣ ସୈନିକପରି ଦେଖାଯାଉଥିବାରୁ ସେ ମୁନିକୁମାର ମୋତେ ଚିହ୍ନିପାରିଲେନାହିଁ । ମୁଁ ମଧ୍ୟ ତାଙ୍କୁ କେବେହେଲେ ଦେଖିନଥିଲି; ତେଣୁ ଚିହ୍ନନ୍ତି ଅବା କିପରି ? ସବୁ ଋଷି ଜଟା, ଯଜ୍ଞୋପବୀତ, ବଲ୍କଳ ଓ ବିଭୂତିଭୂଷିତ ହୋଇ ଏକାପରି ଦେଖାଯା'ନ୍ତି । କିନ୍ତୁ ସେହିଦିନ ରାତ୍ରିର ପ୍ରାର୍ଥନା ସମୟରେ ମହର୍ଷି ଅଙ୍ଗିରସ ଆମ ଦୁହିଁଙ୍କର ପରିଚୟ କରାଇ ଦିଅନ୍ତେ, ମୁଁ ନିତାନ୍ତ ଅପ୍ରତିଭ ହୋଇଗଲି । ସେ ଥିଲେ— ମହର୍ଷି କଚ, ଦେବଗୁରୁ ବୃହସ୍ପତିଙ୍କ ପୁତ୍ର ଏବଂ ଶାନ୍ତିଯଜ୍ଞର ପୁରୋଧା । ସେ ମୋ'ଠାରୁ ବୟସରେ ଛୋଟ ବୋଲି ଜଣାପଡୁଥିଲେ; ନୋହିଲେ ହୁଏତ ବର୍ଷେ ଅଧେ ବଡ଼ହୋଇପାରନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ ଭାବିଲି, କିପରି ଏତେ କମ୍ ବୟସର ପିଲାଟିକୁ ଅଙ୍ଗିରସଙ୍କ ପରି ମହାମୁନି ମହାଶାନ୍ତିଯଜ୍ଞର ପୁରୋଧା ରୂପେ ବରଣକଲେ ? ପ୍ରକୃତରେ ସ୍ନେହ ଓ ମମତା ନିତାନ୍ତ ଅନ୍ଧ; ସେ ମମତା ପୁତ୍ର ପ୍ରତି ମା'ର ହୋଇପାରେ କିମ୍ବା ଶିଷ୍ୟ ପ୍ରତି ଗୁରୁଙ୍କର ।

ମୋ ପରିଚୟ ପାଇ କଚ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ସେଇଦିନ ସନ୍ଧ୍ୟାରେ ଆମେ ଦୁହେଁ ନିଜ ମଧ୍ୟରେ ବକ୍‌ବକ୍ ଝକ୍‌ଝକ୍ କରିଥିଲୁ । ବୋଧହୁଏ ସେହି କଥାକୁ ମନେପକାଇ କଚ ମୋ ନିକଟକୁ ଆସି ଅଭିବାଦନ ଜଣାଇବା ସଙ୍ଗେ ସଙ୍ଗେ କହିଲେ— ''ଯୁବରାଜ, ମନେନାହିଁ— ସନ୍ଧ୍ୟାବେଳେ କେତେ କ'ଣ ମୁଁ ଆପଣଙ୍କୁ କହିଛି । ହୁଏତ ମୁଁ କିଛି ଭଲମନ୍ଦ କଥା କହିଦେଇଥିବି । ଗୁରୁଦେବଙ୍କ ଉପଦେଶ— 'ସତ କୁହ, କିନ୍ତୁ ଶ୍ରୋତାକୁ ଯେପରି ଆନନ୍ଦ ବୋଧହେବ ସେପରି କଥା କୁହ ।' ଏହାର ପ୍ରକୃତ ଅର୍ଥ ମୁଁ ଏଯାବତ୍ ବୁଝିପାରିନାହିଁ । ମୁଁ ଯାହା କହିଦେଇଛି, ସେଥିଲାଗି କିଛି ଭାବିବେ ନାହିଁ । ମନର ଘୋଡ଼ାଟା କେବେ କିପରି ଅବସ୍ଥାରେ ବେକାବୁ ହୋଇଯାଏ ଠିକ୍ ଜାଣିହୁଏନାହିଁ । ମୋତେ କ୍ଷମାକରିବେ ।''

ମୁଁ ମଧ୍ୟ ପ୍ରତିନମସ୍କାର କଲି । 'ଆପଣ ମୋତେ କ୍ଷମା କରିଦେବେ', ଏ ଶବ୍ଦ ମୋ ମନକୁ ଆସିଲା; ମାତ୍ର କହିବାକୁ ତୁଣ୍ଡ ଲେଉଟିଲା ନାହିଁ । ମନ ମଧ୍ୟରେ ଅହଂଭାବ ଜାଗିଉଠିଲା; 'ମୁଁ ହସ୍ତିନାପୁରର ଯୁବରାଜ, ଗୋଟିଏ ମୁନିକୁମାରଠାରେ କ୍ଷମାପ୍ରାର୍ଥନା କରିବି !' ମନେ ମନେ କ'ଣ ଗୁଣୁଗୁଣ ହୋଇ କଚ ହୋମଶାଳାରୁ ବାହାରକୁ ଆସିଲେ; ମୋତେ କେବଳ କେତୋଟି ଶବ୍ଦ ଶୁଣାଗଲା— 'ଆତ୍ମା ବା ଅରେ ମନ୍ତବ୍ୟଃ ଶ୍ରୋତବ୍ୟଃ, ଆତ୍ମା ବା ଅରେ ନିଦିଧ୍ୟାସିତବ୍ୟଃ' ।

ଆମ ଦୁହିଁଙ୍କୁ ଭିନ୍ନ ଭିନ୍ନ କୋଠରିରେ ରଖାଯାଇଥିଲା । ସେ କୋଠରି ଦୁଇଟି ଆଶ୍ରମର ଗୋଟିଏ କୋଣରେ ଥିଲା । ଗହଳ ବୃକ୍ଷ ତଥା ମନୋରମ ବାଟିକାର ପରିବେଶ ମଧ୍ୟରେ, ଦୁଇଟି ଛୋଟ ଭଉଣୀ ପରସ୍ପରକୁ ଜାବୁଡ଼ି ଧରି ଗୋଟିଏ କମ୍ବଳ ଢାଙ୍କିହୋଇ ଶୋଇଥିବାଭଳି ଜଣାପଡୁଥିଲେ । ମୋ ଆଡ଼କୁ ଚାହିଁ ହସି ହସି

କହିଲେ କଚ୍– ‘‘ଯୁବରାଜ, ଏବେ ଆମେ ଦୁହେଁ ପଡ଼ୋଶୀ ହୋଇଗଲେ।’’ ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ଚିଡ଼ାଇବାଲାଗି ପରିହାସମିଶା ସ୍ୱରରେ କହିଲି– ‘‘କଚ୍‌ଦେବ, ମନେଅଛି ତ, ଲୋକେ କହନ୍ତି ପଡ଼ୋଶୀଠାରୁ ବଳି ଆଉ ବଡ଼ ଶତ୍ରୁ କେହି ନାହିଁ।’’

‘‘ପ୍ରତ୍ୟେକ ଲୋକପ୍ରିୟ ପ୍ରବଚନ ସମ୍ପୂର୍ଣ୍ଣ ସତ୍ୟ ହୁଏନା’’ –ସେ ମଧ୍ୟ ହସି ହସି ଉତ୍ତରଦେଲେ। ପତ୍ରକୁଡ଼ିଆର ଶେଯ ଉପରେ ମୁଁ ଯାଇ ଲୋଟିପଡ଼ିଲି; କିନ୍ତୁ ମୋ ଆଖିକୁ ଟିକିଏହେଲେ ନିଦ ଆସିଲାନାହିଁ। ମୁଁ ନିଜ ଆଖିରେ ଯତିର ଯେଉଁ କଣ୍ଟକପୂର୍ଣ୍ଣ ଶେଯ ଦେଖିଆସିଥିଲି, ତା ତୁଳନାରେ ଏ ଶେଯ ଲକ୍ଷେ ଗୁଣରେ ଉନ୍ନତ; କିନ୍ତୁ ରାଜପ୍ରାସାଦର ବିଳାସମୟ କକ୍ଷରେ ପଡ଼ିଥିବା ମୋର କୋମଳ ଶେଯରେ ଶୋଇବାରେ ମୁଁ ଅଭ୍ୟସ୍ତ, ତେଣୁ ଏହା ମୋ ପକ୍ଷରେ ଅତ୍ୟନ୍ତ କଷ୍ଟଦାୟକ ହୋଇଥିଲା। ବୋଧହୁଏ ଇଙ୍ଗୁଦି ତେଲର ଛୋଟ ଦୀପଟିଏ କ୍ଷୀଣ ଆଲୋକ ବିକିରଣ କରି କୁଟୀରର ଗୋଟିଏ କୋଣରେ ଜଳୁଥିଲା। ଏହି ଦାରିଦ୍ର୍ୟମୟ ପରିବେଶ ମଧ୍ୟରେ ମୋତେ ଶାନ୍ତିଯଜ୍ଞର ସମାପ୍ତି ପର୍ଯ୍ୟନ୍ତ ରହିବାକୁ ପଡ଼ିବ; ଏହା ଭାବିବାମାତ୍ରେ ମୋର ଶରୀର ଥରିଉଠିଲା। ପାଖରେ ଥିବା ପର୍ଣ୍ଣକୁଟୀର ମଧ୍ୟରୁ ମଧୁର ଗୁଞ୍ଜନ ଶୁଣାଯାଉଥିଲା। ବାସ୍ତବିକ, ସେ ଧ୍ୱନି ମୋତେ ଅତ୍ୟନ୍ତ ଆନନ୍ଦ ଦେଉଥିଲା, ମୁଁ ଆଖିବୁଜି ସେହି କୁଳୁକୁଳୁନାଦିନୀ ଗଙ୍ଗାପ୍ରବାହ ପରି ଶୁଚିମନ୍ତ ଧ୍ୱନିକୁ ଶୁଣୁଥିଲି। ବୋଧହୁଏ କଚ୍ ଶୋଇବା ପୂର୍ବରୁ ନିତ୍ୟକର୍ମ ସାରି ମନ୍ତ୍ରୋଚ୍ଚାରଣ କରୁଥିଲେ। ଆତପକ୍ଲିଷ୍ଟ ବ୍ୟକ୍ତିକୁ ଯେପରି ବର୍ଷାବିନ୍ଦୁ ସୁଖକର ବୋଧହୁଏ, ଠିକ୍ ସେହିପରି ମୋତେ ସେ ଧ୍ୱନି ଆନନ୍ଦିତ କରିଥିଲା। ଧୀରେ-ଧୀରେ ନିଦ୍ରାଦେବୀ ନିଜର ଅଞ୍ଚଳ ପ୍ରସାରି ମୋତେ ନିଜ କୋଳକୁ ଆଦରିନେଲେ। ମୁଁ ସେହି ତନ୍ଦ୍ରିଳ ଅବସ୍ଥାରେ ଗୋଟିଏ ସ୍ୱପ୍ନ ଦେଖିଲି– ‘ଅଳକା ଗୁଣୁଗୁଣୁ ସ୍ୱରରେ ଗାଇଚାଲିଛି – ଆତ୍ମା ବା ଅରେ ମନ୍ତବ୍ୟଃ, ଶ୍ରୋତବ୍ୟଃ, ନିଦିଧ୍ୟାସିତବ୍ୟଃ’; ଅର୍ଥାତ୍ ହେ ମାନବ, ଆତ୍ମାର ସ୍ୱରୂପ ଚିନ୍ତନ କର, ଆତ୍ମାର ଆହ୍ୱାନ ଶ୍ରବଣ କର। ଆତ୍ମଚିନ୍ତନ ହିଁ ତୁମର ଧ୍ୟେୟ ହେଉ ଏବଂ ତାହାରି ଉନ୍ନତିଲାଗି ତୁମେ ପାଗଳ ହୋଇଯାଅ।

‘‘ଆଚ୍ଛା . . . ଯା’ ଭିତରେ ତୁ ଗାର୍ଗୀ, ମୈତ୍ରେୟୀ କେବେ ହୋଇଗଲୁ ଅଳକା ?’’ ଏହା କହି ମୁଁ ଆଗେଇଯାଇ ଅଳକାର କାନ୍ଧରେ ହାତ ପକାଇଦେଲି; କିନ୍ତୁ ସେ ସଙ୍ଗେ ସଙ୍ଗେ କୁଆଡ଼େ ଅଦୃଶ୍ୟ ହୋଇଗଲା।

ଜପମାଳାର ରୁଦ୍ରାକ୍ଷ ଗୋଟିଏ ଗୋଟିଏ ତଳକୁ ଖସିଆସି ଜପ ଶେଷ ହେବାର ସୂଚନା ଦେଲା ପରି, ଦିନ ପରେ ଦିନ ବିତିଯାଇ ଆଶ୍ରମରେ ମୋର ରହିବା ଦିନ ଉଣା ହୋଇଆସିଲା। ପ୍ରତ୍ୟେକ ଦିନ ଶରୀରର ଅସୁବିଧାଗୁଡ଼ିକ କୌଣସି ନା କୌଣସି ଆନନ୍ଦରେ ମାତିଯାଇ ନିଜକୁ ଭୁଲିଯାଉଥିଲା। ମୋର ଧାରଣା, ମନ୍ତ୍ରର ମଞ୍ଜୁ ଘୋଷ ମଧ୍ୟରେ ଝିଙ୍କାରିର ଝିଂ-ଝିଂ ସ୍ୱନ ଅନ୍ତର୍ହିତ ହୋଇଗଲାପରି, ମୋର ଶାରୀରିକ ଅସୁବିଧା ଆଶ୍ରମର ଆନନ୍ଦଦାୟୀ ବାତାବରଣରେ ବୁଡ଼ିଯାଇ ମୋତେ ବିଶେଷ କଷ୍ଟ ଦେଉନଥିଲା। ମହର୍ଷି ଅଙ୍ଗିରସ ଶାନ୍ତିଯଜ୍ଞକୁ ସଫଳତାର ସହିତ ସମ୍ପନ୍ନ କରିବାଲାଗି ହେଉ କିମ୍ବା ମୋର ପ୍ରଶଂସା ଉଦ୍ଦେଶ୍ୟରେ ହେଉ, ଅନେକ ସମୟରେ

କହୁଥିଲେ– ''ତୁମେ ଏଠାକୁ ଆସିଛ ବୋଲି ବୋଧହୁଏ ଅସୁରମାନେ ଜାଣିପାରିଛନ୍ତି, ତେଣୁ ସେମାନେ ଯଜ୍ଞ ବିଘ୍ନ କରିବାଲାଗି ସାହସ କରୁନାହାନ୍ତି।'' ଯା' ମଧ୍ୟ ହୋଇପାରେ ଯେ, ଆଶ୍ରମବାସୀଙ୍କ ସରଳ, ଚିନ୍ତାମୁକ୍ତ ଜୀବନ ମୋତେ ଖୁବ୍ ଆନନ୍ଦ ଦେଉଥିଲା କିମ୍ବା କଚ୍‌ପରି ଜଣେ ତେଜସ୍ୱୀ, ବିଦ୍ୱାନ୍ ମୋତେ ମିତ୍ରରୂପେ ମିଳିଥିବାରୁ ମୁଁ ଶାରୀରିକ ଅସୁବିଧାର ଯନ୍ତ୍ରଣା ଆଦୌ ଅନୁଭବ କରିପାରିନଥିଲି।

କଚ୍ ଜଣେ ସାଧାରଣ ସାଧକ ନଥିଲେ; ସେ ଶାନ୍ତିଯଜ୍ଞର ପୁରୋଧା ହୋଇଥିବାରୁ ସୂର୍ଯ୍ୟୋଦୟଠାରୁ ଆରମ୍ଭକରି ସନ୍ଧ୍ୟା ପର୍ଯ୍ୟନ୍ତ କେବଳ ପାଣି ପିଇ ରହିଯାଉଥିଲେ। ଯଜ୍ଞର ରକ୍ଷକ ଭାବରେ ମୁଁ ମଧ୍ୟ ସେହିପରି ଉପବାସ ରହିବା କଥା; କିନ୍ତୁ ମହର୍ଷି ଅଙ୍ଗିରସ ମୋ ସୈନ୍ୟମାନଙ୍କ ମଧ୍ୟରୁ ଛଅଜଣଙ୍କୁ ବାଛି ମୋ ସହିତ ରଖାଇଥିଲେ। ଆମେ ସାତଜଣ ଯଜ୍ଞରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲୁ। ତେଣୁ ପ୍ରତ୍ୟେକ ଦିନ ଜଣେଲେଖାଏଁ କଠୋର ଉପବାସ-ବ୍ରତ ପାଳନ କରୁଥିଲୁ। ମୋର ଯେଉଁଦିନ ପାଳି ପଡୁଥିଲା, ସେଦିନଟି ମୋ ପକ୍ଷରେ ନିତାନ୍ତ ଅସହ୍ୟ ବୋଧହେଉଥିଲା। କ୍ଷୁଧାର ଜ୍ୱାଳା ଉତ୍କଟ ହୋଇଗଲେ ମୁଁ ଅସ୍ଥିର ହୋଇଉଠେ। ଅବଶ୍ୟ ଅଶ୍ୱମେଧ ଘୋଡ଼ା ପଛରେ ଦେଶ-ଭ୍ରମଣ କରିବା ସମୟରେ କିମ୍ବା ମୃଗୟାରେ ଯାଉଥିବାବେଳେ ମୁଁ ଠିକ୍ ସମୟରେ ଭୋଜନ ପାଇପାରୁନଥିଲି; କିନ୍ତୁ ସେହି ଅବସରରେ ମନ ଗୋଟିଏ ଅଦ୍ଭୁତ ଉନ୍ମାଦନାରେ ମାତିଉଠିବା ସଙ୍ଗେ ସଙ୍ଗେ ଭୋକ ଶୋଷ ଭୁଲିଯାଉଥିଲି। ମୁଁ ଭୋକରେ ଆଉଟିପାଉଟି ହେବାବେଳେ ମନେ ମନେ ଭାବେ– 'ଏହି ସମୟରେ ରାକ୍ଷସମାନେ ଯଜ୍ଞଶାଳା ଉପରେ ଆକ୍ରମଣ କରିଦିଅନ୍ତେ କି, ମୁଁ ସେମାନଙ୍କ ସହିତ ଘୋର ଯୁଦ୍ଧରେ ମାତି ଖାଇବା ପିଇବା ଭୁଲିଯାଆନ୍ତି।' କିନ୍ତୁ ଏପରି ଅବସର କେବେହେଲେ ମୋତେ ମିଳିଲା ନାହିଁ।

କିନ୍ତୁ କଚ୍‌ଦେବ ପ୍ରତିଦିନ ଏପରି ରହୁଥିବାରୁ ମୁଁ ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇଯାଉଥିଲି। ମୁଁ ସପ୍ତାହରେ ଗୋଟିଏ ଦିନ ମାତ୍ର ଉପବାସ କରି ଏତେ ବିବ୍ରତ ହୋଇଉଠୁଥିବା ବେଳେ, ସେ ପ୍ରତିଦିନ ଅତ୍ୟନ୍ତ ଆନନ୍ଦର ସହିତ ଉପବାସ କରିପାରୁଥିଲେ। ଏତେ ମନୋବଳ ତାଙ୍କର ଆସିଲା କେଉଁଠୁ? ଏହି ପ୍ରଶ୍ନର ଉତ୍ତର ମୁଁ ମନେ ମନେ ଖୋଜି ଖୋଜି ଶେଷରେ ନିରସ୍ତ ହୋଇପଡୁଥିଲି। ଶେଷକୁ ମନକୁ ଆଶ୍ୱାସନା ଦେଇ କହୁଥିଲି– 'ମୋର ଜୀବନ ଗୋଟିଏ ସାଧାରଣ ଋଷିକୁମାରର ଜୀବନ ନୁହେଁ; ଗୋଟିଏ ପ୍ରଖ୍ୟାତ ଶୂରବୀରର ଜୀବନ। ବୀରର ପରାକ୍ରମ ତା'ର ଶରୀର ଉପରେ ଆଧାରିତ। ପିଲାଦିନରୁ ଶରୀରକୁ ପୁଷ୍ଟ କରିବାଲାଗି ମୁଁ ଶିକ୍ଷାପାଇଆସିଛି; ତେଣୁ ମୁଁ କ୍ଷୁଧା ବିରୁଦ୍ଧରେ ବିଜୟଲାଭ କରିପାରୁନାହିଁ। କଚ୍‌ଦେବଙ୍କର ଭୁଜ ଶୁଷ୍କ ଲତାପରି ହେଲେ ଚଳିଯାଇପାରେ; କିନ୍ତୁ ମୋର ଭୁଜଦଣ୍ଡ ଲୌହଠାରୁ ଅଧିକ ଦୃଢ଼ ହେବା ଉଚିତ। କଚ୍‌ଦେବ ଅବଶ୍ୟ କଠୋର ତପ ସାଧନ କରିପାରନ୍ତି; କିନ୍ତୁ ସୈନ୍ୟବାହିନୀଙ୍କ ସହିତ ଅଶ୍ୱମେଧ ଘୋଟକ ପଛରେ ସେ ସମଗ୍ର ଆର୍ଯ୍ୟାବର୍ତ୍ତରେ କେବେହେଲେ ବୁଲିପାରିବେନାହିଁ କିମ୍ବା ଧନୁରେ ଗୁଣ ଚଢ଼ାଇପାରିବେନାହିଁ। ତପସ୍ୟାବଳରେ ସେ ଅବଶ୍ୟ ଦୀପ୍ତିମାନ୍ ଦେଖାଯାଉଛନ୍ତି ସତ; କିନ୍ତୁ ମୋ ପରି ଅସୁର ସଂହାର କାର୍ଯ୍ୟରେ ସେ ନିଯୁକ୍ତ ହୋଇପାରିବେନାହିଁ।

କଚ୍‌ଦେବଙ୍କ ବୈଶିଷ୍ୟ କେବଳ ଯେ ଉପବାସ ଦିନ ମୁଁ ଅନୁଭବ କରୁଥିଲି ତା ନୁହେଁ, ଅନେକ ଅବସରରେ ତାଙ୍କର ଗୁଣ ତଥା ଆତ୍ମିକ ସାଧନା ମୋତେ ମୁଗ୍ଧ କରିଥିଲା ଏବଂ ତାଙ୍କର ଉଗ୍ର ତେଜ ଆଗରେ ମୋ ଆଖି ଝଲସି ଉଠୁଥିଲା।

ଯଜ୍ଞର ମୁଖ୍ୟ ଭାଗ ନିର୍ବିଘ୍ନରେ ପରିସମାପ୍ତି ହୋଇଥିବାରୁ ମହର୍ଷି ତିନିଦିନ ବ୍ୟାପୀ ଆଶ୍ରମରେ ଆନନ୍ଦୋତ୍ସବର ଆୟୋଜନ କରିଥିଲେ। ସେହି ଉତ୍ସବରେ କଚ୍ ଅତ୍ୟନ୍ତ ମଧୁର କଣ୍ଠରେ ଗୀତ ଗାୟନ କରିଥିଲେ। ସେ ପୁଷ୍କରିଣୀରେ ଏତେ ଦକ୍ଷତାର ସହିତ ସନ୍ତରଣ କରୁଥିଲେ ଯେ, ମନେହେଉଥିଲା— ସତେଯେପରି, ସେ ପୂର୍ବଜନ୍ମରେ ମତ୍ସ୍ୟ ଥିଲେ। ଦିନେ ହଠାତ୍ ଗୋଟିଏ ପିଲା କାନ୍ଦିଉଠିଲା। ତା'ର ମାଆ ତାକୁ କୌଣସିମତେ ବୋଧ କରାଇ ପାରିଲାନାହିଁ; କିନ୍ତୁ କଚ୍‌ଦେବ ସଙ୍ଗେ ସଙ୍ଗେ ପିଲାଟିକୁ ଉଠାଇନେଇ ବାହାରକୁ ଚାଲିଗଲେ, ଗୋଟିଏ ଦୁଇଟି ଜାମୁକୋଳି ଖାଇ ତାଙ୍କର କଳା ଜିଭଟିକୁ ପିଲା ଆଗରେ ଦେଖାଇଦେଲେ। ପିଲାଟି ତତ୍‌କ୍ଷଣାତ୍ କାନ୍ଦଣା ବନ୍ଦ କରି ଠୋ'-ଠୋ' ହୋଇ ହସିଉଠିଲା। ମୁଁ ସ୍ୱଚକ୍ଷୁରେ ଦେଖିଛି, କାନ୍ଦୁରା ପିଲାଟି ଆଗରେ ମର୍କଟପରି ଜିଭ ବାହାରକରୁଥିବା ଏବଂ ଶାନ୍ତିଯଜ୍ଞରେ ବିଶୁଦ୍ଧ ମନ୍ତ୍ରୋଚ୍ଚାରଣ କରୁଥିବା ବ୍ୟକ୍ତି ହେଉଛନ୍ତି ସେହି କଚ୍‌ଦେବ। ଗୋଟିଏ ବ୍ୟକ୍ତିତ୍ୱ ମଧ୍ୟରେ ଏପରି ଭିନ୍ନ ଭିନ୍ନ ରୂପ ଦେଖି ମୁଁ ବାସ୍ତବିକ ଆଶ୍ଚର୍ଯ୍ୟାନ୍ୱିତ ହୋଇଉଠୁଥିଲି।

କଚ୍‌ଦେବଙ୍କର କେବଳ ଦୁଇଟି ରୂପ ନୁହେଁ, ମୋତେ ତାଙ୍କର ବିଭିନ୍ନ ରୂପ ବିସ୍ମିତ କରିଛି। ସେ ରାତିରେ ଫଳାହାର କରୁଥିବା ସମୟରେ, ମୁଁ ପ୍ରାୟ ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିଦିଏ। ଥରେ ଗୋଟିଏ ମିଠା ଫଳରେ ପୋକ ଲାଗିଥିବାର ଦେଖି ସେ ହଠାତ୍ ଚିନ୍ତାମଗ୍ନ ହୋଇଉଠିଲେ। ସେ ନିଜର ହସ ହସ ମୁହଁରେ ଗଭୀର ଭାବ ଫୁଟାଇ, ମୋ ଆଡ଼କୁ ବିସ୍ଫାରିତ ଚକ୍ଷୁରେ ଚାହିଁ କହିଲେ— "ଯୁବରାଜ, ମନୁଷ୍ୟର ଜୀବନ ଠିକ୍ ଫଳ ସହିତ ସମାନ। ମନୁଷ୍ୟର ସୁନ୍ଦର ତଥା ମଧୁମୟ ଜୀବନରେ କେବେ କୀଟ ଦଂଶନ କରିବ, କିଏ କହିପାରେ?" ତା'ପରେ କିଛି ସମୟ ପୁଣି ଚିନ୍ତାମଗ୍ନ ରହିବାପରେ କୌଣସି ଏକ ଶ୍ଳୋକରୁ ଗୋଟିଏ ଚରଣ ଗୁଣୁଗୁଣୁ ହୋଇ ଗାଇବାକୁ ଲାଗିଲେ, ଯାହାର ଭାବାର୍ଥ ହେଉଛି 'ମଧୁର ଫଳରେ ପୋକ ଲାଗିଯିବାର ବିପଦ ଖୁବ୍ ବେଶି।' ଶ୍ଳୋକଟିକୁ ପାଠକରିସାରିବା ପରେ ଜୋର୍‌ରେ ଥରେ ହସିଦେଇ ପୁଣି କହିଲେ— "ଯୁବରାଜ! ଶ୍ଳୋକଟିର ଗୋଟିଏ ଚରଣ ମୁଁ କୌଣସିମତେ ରଚନା କରିଦେଲି ସିନା; କିନ୍ତୁ ଅନ୍ୟ ପାଦଗୁଡ଼ିକ ପୂରଣ କରିପାରୁନାହିଁ। ମୁଁ ପ୍ରକୃତରେ କହିବାକୁ ଚାହୁଁଛି— ଯେଉଁମାନେ ସର୍ବଗୁଣରେ ସମ୍ପନ୍ନ ବୋଲି. ମନେ ମନେ ଅହଂକାର କରୁଛନ୍ତି, ସେମାନେ ଏହି ସୁମିଷ୍ଟ ଫଳଠାରୁ ଅନେକ କିଛି ଶିକ୍ଷା କରିବା ଉଚିତ। କିନ୍ତୁ ଏହି ଭାବଧାରାକୁ ମୁଁ ଛନ୍ଦୋବଦ୍ଧ ଭାବରେ ରଚନା କରି ହୃଦୟର ଆବେଗ ପ୍ରକାଶ କରିପାରୁନାହିଁ।"

ସେଦିନ ରାତିରେ ମୁଁ ଜାଣିପାରିଲି ଯେ, କଚ୍ ଜଣେ କବି, କେବେକେବେ ତାଙ୍କ ମନକୁ ଛୁଇଁଲାଭଳି କୌଣସି ବିଷୟ ଉପରେ ସେ କବିତା ରଚନା କରିଥାନ୍ତି। ଅବଶ୍ୟ ତାଙ୍କର କବିତା ବା ଶ୍ଳୋକଗୁଡ଼ିକ ସବୁବେଳେ ସ୍ୱୟଂସମ୍ପୂର୍ଣ୍ଣ ହୋଇନଥାଏ।

ହାୟ... ମୁଁ ଭଲା ସେହି ଶ୍ଳୋକଗୁଡ଼ିକରୁ ଗୋଟିଏ ଅଧେ ଲେଖି ରଖିଥାନ୍ତି ! ଯେକୌଣସି ଦ୍ରବ୍ୟର ମୂଲ୍ୟବୋଧ ତା'ର ଅଭାବରେ ହିଁ ଜାତହୋଇଥାଏ। କେତୋଟି ଦିନ ଆମେ ଏକସଙ୍ଗରେ ରହିଲୁ; କିନ୍ତୁ ସେହି ସମୟ ମଧ୍ୟରେ କଚ୍‌ଦେବଙ୍କଦ୍ୱାରା ଆବୃତ୍ତି କରାଯାଇଥିବା ବହୁ ଶ୍ଳୋକ ମଧ୍ୟରୁ ଗୋଟିଏ ଶ୍ଳୋକ କାହିଁକି, କୌଣସି ଶ୍ଳୋକର ଗୋଟିଏ ଚରଣ ସୁଦ୍ଧା ମୋର ମନେନାହିଁ। କେବଳ ଗୋଟିଏ ଚରଣରୁ ତିନୋଟି ଶବ୍ଦ ଆଜି ମୋର ମନେପଡୁଛି– ''ଜଗଦ୍‌ଦ୍ରୁମସ୍ୟ ହେ ପର୍ଣ୍ଣ...''

ଥରେ ଗୋଟିଏ ପ୍ରସଙ୍ଗରେ ତାଙ୍କ ମୁହଁରୁ ସ୍ୱତଃ ଶ୍ଳୋକଟିଏ ବାହାରିଥିଲା; ସେହି ପ୍ରସଙ୍ଗ ଆଜି ସୁଦ୍ଧା ମୋର ସ୍ପଷ୍ଟ ମନେପଡୁଛି। ଦିନେ ଚାନ୍ଦିନୀ ରାତିରେ ଆମେ ଦୁହେଁ ମୁକ୍ତ ଅଗଣାରେ ବୁଲୁଥାଉଁ। ପବନ ନିସ୍ତବ୍ଧ; କିନ୍ତୁ ହଠାତ୍ ବାୟୁ ପ୍ରବାହରେ ଗୋଟିଏ ଶୁଷ୍କପତ୍ର ଉଡ଼ିଆସି କଚ୍‌ଦେବଙ୍କ ଜଟା ଉପରେ ପଡ଼ି ତଳକୁ ଖସିପଡ଼ିଲା। କାଳେ ପତ୍ରଟି ପାଦରେ ଦଳିହୋଇଯିବ, ସେଥିପାଇଁ ସେ ପତ୍ରଟିକୁ ତଳୁ ଗୋଟାଇ ଆଣିଲେ। ଏକଲୟରେ ଅନେକ ସମୟ ପର୍ଯ୍ୟନ୍ତ ତା'ରି ଆଡ଼କୁ ଚାହିଁବାପରେ ତାଙ୍କ ମୁହଁରୁ ବାହାରିପଡ଼ିଲା ଶ୍ଳୋକଟିଏ – 'ଜଗଦ୍‌ଦ୍ରୁମସ୍ୟ ହେ ପର୍ଣ୍ଣ...' ଶ୍ଳୋକର ଅନ୍ୟ ଚରଣଗୁଡ଼ିକ ମୋର ମନେନାହିଁ; କିନ୍ତୁ ତାର ଭାବାର୍ଥ ମୁଁ ଜୀବନରେ କେବେହେଲେ ଭୁଲି ପାରିବିନାହିଁ– ହେ କୋମଳ ପଲ୍ଲବ ! ତୁମର ଅକାଳ ବିୟୋଗରେ ଶୋକ କରିବାର କୌଣସି କାରଣ ନାହିଁ। ତୁମେ ବୃକ୍ଷର ସୌନ୍ଦର୍ଯ୍ୟ ବୃଦ୍ଧିକରି, ଆମପରି ଅନେକ ଲୋକଙ୍କୁ ଟିକିଏହେଲେ ଛାୟାଦାନ କରିଛ। ତୁମର ଜୀବନ ସାର୍ଥକ ଏବଂ ସ୍ୱର୍ଗରେ ତୁମର ସ୍ଥାନ ନିଶ୍ଚିତ ହୋଇସାରିଛି।

× × × × ×

ଦିନେ ଗୋଟିଏ ଛୋଟ ମୁନିକନ୍ୟା ଆସି ଆମ ହାତଧରି ତାଙ୍କ ଅଗଣାଆଡ଼କୁ ଟାଣିବାରେ ଲାଗିଲା। ସେ ଲଗାଇଥିବା ଫୁଲଗଛରେ ପ୍ରଥମ ଫୁଲଟି ଫୁଟିଥିଲା, ତେଣୁ ସେ ତାହା ଦେଖାଇବାଲାଗି ଚାହୁଁଥିଲା। ତାକୁ ପ୍ରଶଂସା କରି ଆମେ ଯିବାଲାଗି ବାହାରିବା ବେଳେ ଝିଅଟି ଟିକିଏ ଅପ୍ରତିଭ ହେଲାପରି ଜଣାପଡ଼ିଲା; କାରଣ ସେ ଦୁଇଜଣ ଅତିଥିଙ୍କୁ ଡାକୁଥିଲା; ମାତ୍ର ତା ଗଛରେ ଫୁଲ ଥିଲା ଗୋଟିଏ। ସେ ସ୍ଥିରକରିପାରୁନଥିଲା ଫୁଲଟି କାହାକୁ ଦେବ। ତା'ର ଅସୁବିଧା ହୃଦୟଙ୍ଗମ କରି କଚ୍‌ଦେବ କହିଲେ– ''ଝିଅ, ତୁ ଫୁଲଟି ଯୁବରାଜଙ୍କୁ ଦେଇଦେବୁ...।'' ମୁଁ ତାଙ୍କ କଥା ମଝିରେ କହିଲି– ''ନା... ନା... ସେ ହେଉଛନ୍ତି ଜଣେ ପ୍ରସିଦ୍ଧ ଋଷି, ଫୁଲଟି ତାଙ୍କୁ ହିଁ ଦେବୁ।''

ଝିଅଟି ଫୁଲ ତୋଳିବାଲାଗି ଗଛ ପାଖକୁ ଆଗେଇଯିବା ମାତ୍ରେ କଚ୍‌ଦେବ ତା' ହାତଟିକୁ ଧରି ଧୀରେ କହିଲେ– ''ତୁମର ଏ ସ୍ନେହୋପହାର ମୁଁ ପାଇସାରିଲିଣି, ଫୁଲଟି ସେଇଠି ଥାଉ, ବୃନ୍ତରେ ରହି ବେଶ୍ ଭଲକରି ଫୁଟିଯାଉ। ସେ ସେଇଠି ରହି ଆନନ୍ଦରେ ହସି ଖେଳି ଦୋହଲୁଥାଉ। ମୁଁ ପ୍ରତିଦିନ ସକାଳେ ଆସି ତୋ' ଫୁଲ ସହିତ କଥାବାର୍ତ୍ତା କରିବି। ଏବେ ତୁ ଖୁସି ତ ?''

କଚ୍‌ଦେବଙ୍କ କଥା ଶୁଣି ଝିଅଟି ଖୁବ୍ ଖୁସିହେଲା; ମୁଁ କିନ୍ତୁ ଏ କଥାରେ ଆଦୌ ସନ୍ତୁଷ୍ଟ ହୋଇପାରିଲିନାହିଁ। ସେହିଦିନ ରାତିରେ ମୁଁ ଆଲୋଚନା ପ୍ରସଙ୍ଗରେ ଏହି ବିଷୟ ଉଠାଇ କହିଲି– "କଚ୍‌ଦେବ, କଳିକାଟି ଆଜିକାଲି ମଧ୍ୟରେ ଫୁଟି ବିକଶିଉଠିବ ଏବଂ ଦୁଇଚାରି ଦିନ ଦୋହଲିବା ପରେ ପୁଣି ମଉଳିଯିବ। ତା' ପରେ ପରେ ଫୁଲଟି ଆପଣା ଛାଏଁ ଝରିପଡ଼ିବ। ଏହାକୁ କେବଳ ଦେଖିବାରେ କ'ଣ ବା ଆନନ୍ଦ ମିଳିବ? କେବଳ ଦୂରରୁ ଦେଖି ଆନନ୍ଦ ପାଇବାପାଇଁ କ'ଣ ଫୁଲର ଜନ୍ମ? ମୋ ମତରେ ଫୁଲଟିକୁ ତୋଳିନେଇ ତା'ର ସୁଗନ୍ଧ ଆଘ୍ରାଣ କରିବା, ତାକୁ ହାରରେ ଗୁନ୍ଥି କେଶପାଶରେ ସଜାଇବା କିମ୍ବା ଶେଯରେ ବିଛାଇ ଆନନ୍ଦ ଉପଭୋଗ କରିବାରେ ଫୁଲର ପ୍ରକୃତ ସାର୍ଥକତା ରହିଛି।

କଚ୍‌ଦେବ ହସି ହସି କହିଲେ– "ତା ଅବଶ୍ୟ ସତ; କିନ୍ତୁ ଏ ଆନନ୍ଦ କ୍ଷଣକପାଇଁ ନୁହେଁ କି? ତା' ବ୍ୟତୀତ ଏହା କେବଳ ଉପଭୋଗ ହେଉନାହିଁ କି?"

–"ଉପଭୋଗ କ'ଣ ପାପ?"

–"ଯେଉଁ ଉପଭୋଗ ଦ୍ୱାରା ଧର୍ମର ନୀତି ଲଙ୍ଘନ କରାଯାଉନାହିଁ, ସେଥିରେ କୌଣସି ପାପ ନାହିଁ। କିନ୍ତୁ ଏ ସଂସାରରେ ଉପଭୋଗ ଅପେକ୍ଷା ଆହୁରି ଶ୍ରେଷ୍ଠତର ଆନନ୍ଦମୟ ବସ୍ତୁ ରହିଛି।"

–"ସେ କଅଣ?"

–"ତାହା ହେଉଛି ତ୍ୟାଗ।"

ହଠାତ୍ ମୋର ମନେପଡ଼ିଗଲା ଯତିର ଜୀବନଧାରା! ପିଲାଟି ଦିନରୁ ସେ ସଂସାର ତ୍ୟାଗକରି ଚାଲିଯାଇଥିଲା। ସେଦିନ ଗଭୀର ରାତିରେ ହସ୍ତୀଶିକାର, ଯତି ସହିତ ଭେଟ, ତା'ର ଆଶ୍ଚର୍ଯ୍ୟକର ଗୁମ୍ଫା ଆଉ ତା'ର କଣ୍ଟକମୟ ଶଯ୍ୟା, ସବୁ ଗୋଟିଗୋଟିକରି ମୋର ମାନସପଟଳରେ ଭାସିଉଠିଲା। ମୁଁ କଚ୍‌କୁ ପ୍ରଶ୍ନକଲି– "ଏ ସଂସାରରେ ସନ୍ନ୍ୟାସ କ'ଣ ସୁଖ ପ୍ରାପ୍ତିର ଏକମାତ୍ର ମାର୍ଗ?"

ମୋ ପ୍ରଶ୍ନ ଶୁଣି ସେ ହସିଦେଇ କିଛି ସମୟ ନୀରବ ହୋଇ ବସିରହିଲେ। ତା'ପରେ ମୁଁ ପୁଣି ପଚାରିଲି– "ମୁଁ ଯଦି ରାଜା ନହୋଇ ସନ୍ନ୍ୟାସୀ ହୋଇଯାଏ, ତା'ହେଲେ କ'ଣ ଉଚିତ କାମ ହେବ?"

ଏଥର କଚ୍‌ଦେବଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇଗଲା। ସେ ଗୋଟିଏ ଆବେଶରେ କହିଉଠିଲେ– "କଦାପି ନୁହେଁ। ଯୁବରାଜ, ରାଜାହୋଇ ପ୍ରଜାଙ୍କୁ ପାଳନ କରିବା ଏବଂ ପ୍ରଜାଙ୍କ ହିତସାଧନ କରିବା ହେଉଛି ତୁମର ରାଜଧର୍ମ। ଏହା ସନ୍ନ୍ୟାସୀର ତ୍ୟାଗପୂତ ଜୀବନ ଅପେକ୍ଷା କୌଣସି ଗୁଣରେ ଊଣା ନୁହେଁ।"

"ରାଜସିଂହାସନରେ ଆରୋହଣ କରିବା ପରେ ସନ୍ନ୍ୟାସୀମାନଙ୍କ ପରି ଆଚରଣ କରିବା କ'ଣ ସମ୍ଭବ?" ପୁଣି ପ୍ରଶ୍ନକଲି ମୁଁ।

ମୋର ଦ୍ୱିତୀୟ ପ୍ରଶ୍ନ ଶୁଣି କଚ୍‌ଦେବଙ୍କ ଭ୍ରୂକୁଟି କୁଞ୍ଚିତ ହୋଇଗଲା। ତା'ପରେ ସେ ସହଜ ଭାବରେ କହିଲେ, "ଘର-ସଂସାର ଚଳାଇବା ମଣିଷର ସ୍ୱାଭାବିକ ବ୍ୟାପାର; ତେଣୁ ତା'ର ଜୀବନରେ ଉପଭୋଗର ଆବଶ୍ୟକତା ନିଶ୍ଚିତ ଭାବରେ

ରହିଛି। ମଣିଷ ଉପଭୋଗ ନକରୁ, ଏହା ଯଦି ଈଶ୍ୱରଙ୍କର ଇଚ୍ଛା ହୋଇଥାନ୍ତା, ତା'ହେଲେ ସେ ତାକୁ ଆଦୌ ଶରୀର ଦେଇନଥା'ନ୍ତେ। ଅବଶ୍ୟ ଏହାର ଏକମାତ୍ର ଅର୍ଥ ନୁହେଁ ଯେ, ଜୀବନର ଏକମାତ୍ର ଧ୍ୟେୟ ଉପଭୋଗ। ପରମାତ୍ମା ମଣିଷକୁ ଶରୀର ଦେବା ସଙ୍ଗେ ସଙ୍ଗେ ଆତ୍ମାର ସୃଷ୍ଟି କରିଛନ୍ତି। ମଣିଷର ପ୍ରତ୍ୟେକ ଅଭିଳାଷ ସହିତ ଆତ୍ମାର ସମ୍ପର୍କ ରହିବା ଉଚିତ; ସେହି ଦୃଷ୍ଟିରୁ ଆତ୍ମା ସଦାସର୍ବଦା ଜାଗ୍ରତ ଅବସ୍ଥାରେ ରହିବା ଏକାନ୍ତ ଆବଶ୍ୟକ। ନିଶାଭୋଳରେ ବେହୋସ ହୋଇ ସାରଥି ଘୋଡ଼ାମାନଙ୍କ ଲଗାମ୍ ଛାଡ଼ିଦେଲେ, ଘୋଡ଼ାମାନେ ଆୟତ୍ତରେ ନରହି ମନଇଚ୍ଛାରେ ରଥକୁ ନେଇ ଦୌଡୁଦୌଡୁ ଶେଷକୁ କୌଣସି ଏକ ବିପଦପୂର୍ଣ୍ଣ ଗହ୍ୱରରେ ପକାଇଦିଅନ୍ତି। ତା'ଫଳରେ ରଥ ଚୂର୍ଣ୍ଣବିଚୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଆରୋହୀ ଧନୁର୍ଦ୍ଧର ବୀର ବ୍ୟର୍ଥରେ ପ୍ରାଣହରାଇବସେ।''

କହୁ କହୁ ହଠାତ୍ ନୀରବ ହୋଇଗଲେ କଚ୍‌ଦେବ। ତା'ପରେ ସେ ନିର୍ମଳ ଆକାଶରେ ଉଙ୍କିମାରୁଥିବା ତାରକାପଟଳ ଆଡ଼କୁ ଚାହିଁ କହିଲେ– ''ଯୁବରାଜ, ମୋତେ କ୍ଷମା କରନ୍ତୁ। ଏଭଳି କୌଣସି ପ୍ରସଙ୍ଗ ଆସିଗଲେ ମୁଁ ଭାବବିହ୍ୱଳ ହୋଇପଡ଼େ। ମୁଁ ଜୀବନର ଚଲାପଥରେ ଜଣେ ପଥିକ; ଏ ମାର୍ଗରେ ବଣ, ପାହାଡ଼, ନଦୀ, ନାଳ, ଖାଲ, ଢିପ ଭିତରଦେଇ ମୁଁ ଆଦୌ ଗତି କରିନାହିଁ। ଏବେ ଯାହା ସବୁ ମୁଁ କହିଗଲି, ସେସବୁ ମୋର ପୋଥିଗତ ବିଦ୍ୟା। ସେଥିରେ ବ୍ୟାବହାରିକ ଜ୍ଞାନ ଖୁବ୍ କମ୍। କିନ୍ତୁ ବୃହସ୍ପତିଙ୍କ ପରି ପିତା, ଅଙ୍ଗିରସଙ୍କ ପରି ଗୁରୁଙ୍କ ସାନ୍ନିଧ୍ୟରୁ ମୁଁ ଯାହାକିଛି ଶିକ୍ଷା ପାଇଛି, ଏ ତା'ର ନିର୍ଯାସ ମାତ୍ର। ସୁନ୍ଦର ଫୁଲଟିକୁ ଦେଖି ମୁଁ ଖୁବ୍ ଖୁସିହେଲି ଏବଂ ସେ ଝିଅଟିକୁ ମୁଁ ଯେଉଁ ପ୍ରତିଶ୍ରୁତି ଦେଇଛି, ତଦନୁସାରେ ପ୍ରତିଦିନ ଯାଇ ଫୁଲଟିକୁ ଦେଖିଆସିବି। ଫୁଲଟି ସମ୍ପୂର୍ଣ୍ଣ ବିକଶିତ ହୋଇଗଲେ, ମୁଁ ତା'ର ସୁଗନ୍ଧ ଆଘ୍ରାଣ କରି ଆନନ୍ଦିତ ହେବି; କିନ୍ତୁ କୌଣସିମତେ ଫୁଲଟିକୁ ତା'ର ବୃନ୍ତରୁ ଛିଣ୍ଡାଇବିନାହିଁ। ଆଜି ଯଦି ସୁଗନ୍ଧର ପିପାସାରେ ମୁଁ ଫୁଲଟିକୁ ଛିଣ୍ଡାଇ ଆଣେ, ତା'ହେଲେ କାଲି ପୁଣି ତୃଷ୍ଣାର ଉପଭୋଗ ଲାଗି ମୋତେ ଅନେକଗୁଡ଼ିଏ ଫୁଲ ତୋଳିଆଣିବାକୁ ପଡ଼ିବ ଏବଂ ପରମୁହୂର୍ତ୍ତରେ ହୁଏତ ସେହି ତୃଷ୍ଣାର ବଶବର୍ତ୍ତୀ ହୋଇ ଅନ୍ୟର ପୁଷ୍ପ ଅପହରଣ କରିବାକୁ ପଡ଼ିପାରେ। କିନ୍ତୁ ଅପହରଣ ଯେ ମହାପାପ ଏଥିରେ ସନ୍ଦେହ ନାହିଁ।''

ମୋର ମନେହେଉଥିଲା– ସେ ସେହିପରି ଅନର୍ଗଳ କହିଚାଲିଥାନ୍ତେ, ଆଉ ମୁଁ ତାଙ୍କ ମୁହଁକୁ ଚାହିଁ ଶୁଣୁଥାଆନ୍ତି। ଏହାର ଏକମାତ୍ର କାରଣ, ତାଙ୍କର ସୁମଧୁର କହିବାର ଠାଣି। ତାଙ୍କର ପ୍ରତ୍ୟେକ କଥା ମୋତେ ଶୁଆସାରୀଙ୍କର ଅଭ୍ୟାସଗତ କହିବାପରି ବୋଧହୁଏ ଏବଂ ପୋଥି-ପୁରାଣର ଅତିଶୟୋକ୍ତିମୂଳକ ବର୍ଣ୍ଣନାପରି ଜଣାପଡ଼େ। ତାଙ୍କୁ କଥା ମଝିରେ ନୀରବ କରାଇଦେଇ ମୁଁ କହିଲି– ''ମହାଭାଗ! ମୁଁ ଗୋଟିଏ ପ୍ରଶ୍ନ ଉପସ୍ଥାପିତ କରିବି?''

''ହଁ, କରନ୍ତୁ। କିନ୍ତୁ ଗୋଟିଏ କଥା ମନେରଖିବେ, ଆପଣଙ୍କପରି ମୁଁ ମଧ୍ୟ ଗୋଟିଏ ଅନୁଭବହୀନ ଯୁବକ। ଜୀବନର ଗୂଢ଼ ରହସ୍ୟ ବରାବର ଗହନ ଗହ୍ୱରରେ

ଆତ୍ମଗୋପନ କରିଥାଏ। ଆମେମାନେ କେବଳ ସେହି ଗୁମ୍ଫା ମଧ୍ୟରେ ପ୍ରବେଶ କରିଥାଉଁ; ମାତ୍ର ଭିତରର ରହସ୍ୟ ଗାଢ଼ ଅନ୍ଧକାର ଯୋଗୁଁ କିଛି ଦେଖିପାରୁନଥାଉଁ। କିନ୍ତୁ ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକର କର୍ତ୍ତବ୍ୟ ହେଉଛି, ସେହି ଗାଢ଼ ଅନ୍ଧକାର ମଧ୍ୟରେ ଜୀବନର ଗୋପନ ରହସ୍ୟ ଅନୁସନ୍ଧାନ କରି ବାହାରକରିବା।''

''ସେସବୁ ଏବେ ରଖ; ମୋର ପ୍ରଶ୍ନ ହେଉଛି– ଦି' ଚାରିଦିନ ପରେ ସେ ଫୁଲଟି ଆପଣାଛାଏଁ ମଉଳିଯିବ; ତା'ହେଲେ ଆଜି ତାକୁ ତୋଳିଆଣି ଶୁଙ୍ଘିବା ଓ ଉପଭୋଗ କରିବାରେ ଆପତ୍ତି କ'ଣ? ଏଥିରେ କାହାରି କିଛିହେଲେ ଅସୁବିଧା ହେବନାହିଁ। ଏହା କରିବା ଫଳରେ, କ୍ଷଣକାଳ ଲାଗି ହେଉ ପଛକେ, ସେହି ଉନ୍ମାଦନାର ଆନନ୍ଦ ଅନୁଭବ କରାଯିବନାହିଁ କି?''

ମୋ ପ୍ରଶ୍ନର ଉତ୍ତର ସିଧାସଳଖ ଭାବରେ କଚ୍‌ଦେବ ଦେଇପାରିଲେନାହିଁ; କିନ୍ତୁ ନିଜେ ମଧ୍ୟ ହାରମାନିଲେନାହିଁ। ସେ କହିଲେ, ''ଏବେ ମୁଁ ଶୁଣିବାକୁ ପାଉଛି, ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ଉଗ୍ର ତପସ୍ୟାକରି ସଞ୍ଜୀବନୀ ବିଦ୍ୟାର ଅଧିକାରୀ ହୋଇପାରିଛନ୍ତି। ସେହି ବିଦ୍ୟାବଳରେ ସେ ମୃତବ୍ୟକ୍ତିକୁ ପୁଣି ଜୀଆଇଦେଇପାରିବେ। ମୁଁ ଯଦି ସେହି ବିଦ୍ୟା ପ୍ରାପ୍ତ ହୋଇପାରେ ତେବେ ମଉଳିଯାଇଥିବା ସେହି ଫୁଲଟିକୁ ପୁଣି ସତେଜ କରିଦେଇପାରିବି।''

କଚ୍ ଗୋଟିଏ ଅବୋଧ ବାଳକ ପରି ଆଲୋଚନାର ଉତ୍ତର ଦେଇଥିଲେ। ସେ ଏଭଳି ଉତ୍ତର ଯେ କେବଳ ଏବେ ଦେଇଥିଲେ ତା' ନୁହେଁ, ଅନେକ ସମୟରେ ସେ ଏପରି କଥାବାର୍ତ୍ତା କରୁଥିଲେ। ତାଙ୍କ କଥାଗୁଡ଼ିକୁ ମୁଁ ଆଦୌ ସମର୍ଥନ କରିପାରୁନଥିଲି। ଦେବ-ଦାନବଙ୍କ ମଧ୍ୟରେ ଛୋଟ ଧରଣର ଯୁଦ୍ଧ ପ୍ରାୟ ହେଉଥିଲା ଏବଂ ଶୁକ୍ରାଚାର୍ଯ୍ୟଙ୍କ ବିଦ୍ୟାଲାଭ ପରେ ସେହି ଯୁଦ୍ଧ ଭୀଷଣ ଆକାର ଧାରଣକରିବ। ବିଶ୍ୱକୁ ଏହି ଧ୍ୱଂସଲୀଳାରୁ ଉଦ୍ଧାର କରିବାଲାଗି ମହର୍ଷି ଅଙ୍ଗିରସ ଗୋଟିଏ ଶାନ୍ତିଯଜ୍ଞର ଆୟୋଜନ କରିଛନ୍ତି; ତେବେ ଦେବତାମାନେ ମଧ୍ୟ ଯୁଦ୍ଧର ଆୟୋଜନରେ ମାତିଛନ୍ତି। ସେହି ସମୟରେ ଦେବଗୁରୁଙ୍କ ପୁତ୍ର ଶାନ୍ତିଯଜ୍ଞରେ ପୌରୋହିତ୍ୟ କରିବାକୁ ଆସିଛନ୍ତି। ସେ ସବୁବେଳେ କହୁଥିଲେ– ''ଦେବତାମାନେ ନଗ୍ନ ବିଳାସିତାର ଅନ୍ଧ ଉପାସକ ଏବଂ ରାକ୍ଷସମାନେ ମଧ୍ୟ ଠିକ୍ ସେହି ମାର୍ଗ ଅନୁସରଣ କରିଚାଲିଛନ୍ତି। ତେଣୁ ଏମାନଙ୍କଦ୍ୱାରା ଜଗତ୍‌ର କିଛିହେଲେ ଉପକାର ହେବନାହିଁ। ଏମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରିପାରନ୍ତି; କିନ୍ତୁ ଯୁଦ୍ଧ ଫଳରେ ବିଶ୍ୱରେ କିଛିହେଲେ ନୂତନତାର ସନ୍ଧାନ ମିଳିବନାହିଁ।''

ଅତି ଆଶ୍ଚର୍ଯ୍ୟ ଧରଣର ତାଙ୍କ ବିଚାରଧାରା। ମୁଁ ଏତେଦିନଧରି ତାଙ୍କର ଘନିଷ୍ଠ ବନ୍ଧୁହୋଇ ରହିବା ପରେ ମଧ୍ୟ ତାଙ୍କ ମନସ୍ତତ୍ତ୍ୱର ସାର କିଛିହେଲେ ପାଇପାରିଲିନାହିଁ। ବେଳେବେଳେ ସେ ଯତିଠାରୁ ଆହୁରି ଉନ୍ନତ ସ୍ତରର ଆଲୋଚନା କଲେ ମଧ୍ୟ ଆଉ କେତେବେଳେ ତାଙ୍କ କଥାରୁ ପାଗଳାମୀର ଆଭାସ ମିଳୁଥିଲା। ତାଙ୍କର କେତେକ କଳ୍ପନା ମୋ ପକ୍ଷରେ ସ୍ୱପ୍ନ ବୋଧହେଉଥିଲା।

କିନ୍ତୁ ଗୋଟିଏ କଥା, ଆମେ ପରସ୍ପରଠାରୁ ଖୁବ୍ ଶୀଘ୍ର ପୃଥକ୍ ହୋଇଯିବାର ସମ୍ଭାବନା ଥିଲା; ତେଣୁ ସେହି ଚିନ୍ତାରେ ମୁଁ ମ୍ରିୟମାଣ ହୋଇଉଠିଲି। ପ୍ରକୃତରେ

ଖୁବ୍ ଶୀଘ୍ର ବିଚ୍ଛେଦର ଦିନ ଆସିଗଲା; ପିତା ଅତ୍ୟନ୍ତ ରୁଗ୍‌ଣ ତଥା ମୃତ୍ୟୁଶଯ୍ୟାରେ ପଡ଼ିଥିବାର ସମ୍ବାଦ ନେଇ ହସ୍ତିନାରୁ ଦୂତ ଆସି ପହଞ୍ଚିଗଲା। ମୋର ଶୀଘ୍ର ଫେରିଯିବାର କଥା; କିନ୍ତୁ ଚିନ୍ତାକରିପାରିଲିନି ଯେ କ'ଣ କରିବି? ତେଣୁ ମୁଁ ମହର୍ଷି ଅଙ୍ଗିରସଙ୍କ ନିକଟରେ ପହଞ୍ଚିଲି। ସେ ଅତ୍ୟନ୍ତ ମମତାପୂର୍ଣ୍ଣ ବ୍ୟବହାରରେ ମୋର ପିଠି ଥାପୁଡ଼େଇଦେଇ କହିଲେ– "ଯୁବରାଜ, ତୁମେ ଶୀଘ୍ର ଫେରିଯାଅ। ଏଠାକାର ଚିନ୍ତା ତୁମେ କରନାହିଁ। ଏଠାରେ ମୁଖ୍ୟକାର୍ଯ୍ୟ ତୁମଦ୍ୱାରା ସମ୍ପନ୍ନ ହୋଇସାରିଛି। ବର୍ତ୍ତମାନ ଧର୍ମସେବା ପରି ପିତୃସେବା ତୁମର ଏକାନ୍ତ କର୍ତ୍ତବ୍ୟ।"

ମୁଁ ଭକ୍ତି ଓ ଶ୍ରଦ୍ଧାର ସହିତ ମହର୍ଷିଙ୍କୁ ପ୍ରଣାମକଲି। ସେ ବାତ୍ସଲ୍ୟ-ମମତାପୂର୍ଣ୍ଣ ଦୃଷ୍ଟିରେ ମୋ ଆଡ଼କୁ ଚାହିଁ କହିଲେ– "ଯୁବରାଜ, 'ତୁମେ ସୁଖୀ ହୁଅ' ବୋଲି ମୁଁ ତୁମକୁ ଆଶୀର୍ବାଦ ଦେଉନାହିଁ। ମଣିଷର ମନ ତଥା ଜୀବନର ଗୂଢ଼ ରହସ୍ୟ ବିଲକ୍ଷଣ ଢଙ୍ଗରେ ଗ୍ରଥିତ ହୋଇଛି। ଏଣୁ ଅନେକ ସମୟରେ ସୁଖର ଅନ୍ୱେଷଣ କରିବା ମରୀଚିକା ପଛରେ ଧାଇଁବା ପରି ହୋଇଥାଏ। ଏତେଦିନ ଧରି କଠୋର ତପସ୍ୟା କଲେ ମଧ୍ୟ ମୁଁ ସେହି ରହସ୍ୟ ଭେଦ କରିବାରେ ସମର୍ଥ ହୋଇପାରିନାହିଁ। କାରଣ ସୁଖଦୁଃଖର ଛାୟା କିମ୍ବା ଦୁଃଖସୁଖର ପ୍ରତିବିମ୍ବ ଏହା ମୁଁ ଆଦୌ ଜାଣିପାରିଲିନାହିଁ। ମୋର ଉପଦେଶ, ତୁମେ ମଧ୍ୟ ଏସବୁ ଝଞ୍ଜଟରେ ପଡ଼ିବାକୁ ଉଚିତ ମନେକରିବନାହିଁ। ଧର୍ମ, ଅର୍ଥ ଓ କାମ ହିଁ ହେଉଛି ତୁମର ପ୍ରଧାନ ପୁରୁଷାର୍ଥ। କିନ୍ତୁ ଅର୍ଥ ଓ କାମ ଦୁହେଁଯାକ ନାରାଚ୍ ପରି ତୀକ୍ଷ୍ଣ। ବିନୟ ମଧ୍ୟ ରୂପବତୀ ନାରୀର ଶୋଭା। ସେହିପରି ଅର୍ଥ ଓ କାମ ଧର୍ମଦ୍ୱାରା ଜଡ଼ିତ ହୋଇ ରହିପାରିଲେ ମଙ୍ଗଳପ୍ରଦ ହୁଏ। ଆଉମଧ୍ୟ ଦେଖିବାକୁ ଗଲେ– ଧର୍ମ କଅଣ? ମୁଁ ଯେଉଁ ଧରଣର ବ୍ୟବହାର ଦୁନିଆରୁ ଆଶା କରୁଛି ଠିକ୍ ସେହି ପ୍ରକାର ବ୍ୟବହାର ଦୁନିଆ ପ୍ରତି କରିବାର ଅପର ନାମ ହିଁ ଧର୍ମବୁଦ୍ଧି। ତୁମକୁ ସାରା ଜୀବନ ସେହି ଧର୍ମବୁଦ୍ଧି ପ୍ରାପ୍ତ ହେଉ, ଏହାହିଁ ମୋର କାମନା।"

ମାଆ ଯେପରି ମମତାମୟୀ ବାଣୀରେ ପୁତ୍ରକୁ ଉପଦେଶ ଦିଏ, ମହର୍ଷିଙ୍କର ପ୍ରତ୍ୟେକ ବାଣୀ ମୋତେ ସେହିପରି ବୋଧହେଲା। ସେ ଶବ୍ଦଗୁଡ଼ିକ ମୋର କାନକୁ ଖୁବ୍ ମଧୁର ବୋଧହେଉଥିଲେହେଁ ଅନ୍ତରର ଗଭୀରତମ ପ୍ରଦେଶକୁ ସ୍ପର୍ଶ କରିପାରୁନଥିଲା। କାରଣ ପିତାଙ୍କର ଅସୁସ୍ଥତାର ସମ୍ବାଦ ପାଇବା ପରେ ମୁଁ ଏକପ୍ରକାର ଅନ୍ୟମନସ୍କ ହୋଇଯାଇଥିଲି। ଅନେକ ଦୁର୍ଭାବନା ମଧ୍ୟ ମୋ ମନ ମଧ୍ୟରେ ଉଙ୍କିମାରୁଥିଲା। ବାଉଁଶ ବଣର କେଁ-କେଁ ବେସୁରା ଶବ୍ଦ ଶୁଣି, ସାପର ଫଁ-ଫଁ ଶବ୍ଦ ମନେକରି ପିଲା ଯେପରି ଡରି କାଙ୍କୁରିଉଠେ; ଠିକ୍ ସେହିପରି ଯତିଠାରୁ ଆମ ବଂଶ ପ୍ରତି ପଡ଼ିଥିବା ଅଭିଶାପ ବିଷୟ ସ୍ମରଣକରି ମୁଁ ଶଙ୍କିତ ହୋଇଉଠିଲି। ମନେମନେ ଭାବିଲି– ପିତାଙ୍କୁ ଏପରି କି ଅଭିଶାପ ମିଳିଛି? ସେହି ଅଭିଶାପ ଲାଗି ସେ ଆଜି ମୃତ୍ୟୁଶଯ୍ୟାରେ ଯନ୍ତ୍ରଣା ଭୋଗୁନାହାନ୍ତି ତ? ସେ ଅଭିଶାପର ନିବାରଣ ଲାଗି କ'ଣ କିଛି ହେଲେ ଉପାୟ ନାହିଁ? ମୁଁ ଆଉ ଧୈର୍ଯ୍ୟଧରି ରହିପାରିଲିନାହିଁ। ମନେମନେ ଶଙ୍କିଯାଇ ପଚାରିଲି– "ଗୁରୁଦେବ, ମୋତେ ଅନୁଗ୍ରହ କରି କୁହନ୍ତୁ, ମୋର ପିତୃଦେବ କେଉଁ

ଅଭିଶାପରେ ଗ୍ରସ୍ତ ହୋଇଛନ୍ତି ଏବଂ କିଏ ସେ ଅଭିଶାପ ଦେଇଛନ୍ତି ?''

ମୋ ପ୍ରଶ୍ନ ଶୁଣି ମହର୍ଷି ଅଙ୍ଗିରସଙ୍କ ମୁଖମଣ୍ଡଳରେ ବିଷାଦର କାଳିମା ବୋଳିହୋଇଗଲା। ସେ କିଛିକ୍ଷଣ ନୀରବ ରହିବା ପରେ ଗମ୍ଭୀର ସ୍ୱରରେ କହିଲେ, ''ହଁ... ଅଁ... ଅଁ...'' ତା'ପରେ ସେ ଆହୁରି କେତେ ମୁହୂର୍ତ୍ତ ସେହିପରି ନୀରବ ରହିବା ପରେ ତାଙ୍କ ପ୍ରଶାନ୍ତ ମୁଖମଣ୍ଡଳରୁ ଅଦିନର ମେଘ ଦୂରହୋଇଗଲା। ସେ ଓଠଫାଙ୍କରେ ଈଷତ୍ ହାସ୍ୟ ଖେଳାଇ କହିଲେ, ''ଯୁବରାଜ, ସେ ଅଭିଶାପ ଲାଗି ଭୟ କରିବାର କି ଆବଶ୍ୟକତା ଅଛି? ପ୍ରକୃତରେ ବୁଝିବାକୁ ଗଲେ ଆମେ ସାଂସାରିକ ପ୍ରାଣୀ, ପ୍ରତ୍ୟେକେ ଅଭିଶାପଗ୍ରସ୍ତ।''

''ପ୍ରତ୍ୟେକ ବ୍ୟକ୍ତି ... ?'' କାକୁତିଭରା ସ୍ୱରରେ ମୁଁ ପଚାରିଲି।

ସେ ହସି ହସି କହିଲେ– ''ତୁମେ, କଚ, ତୁମ ପିତା ଓ ମୁଁ; ଆମେ ସମସ୍ତେ ଅଭିଶାପଗ୍ରସ୍ତ। କାହାରି ଜୀବନର ସ୍ୱଚ୍ଛନ୍ଦ ମାର୍ଗରେ ପୂର୍ବଜନ୍ମର କର୍ମ ବାଧକ ହୋଇଛି, କିଏ ଅବା ପିତାମାତାଙ୍କ କୃତ୍ୟର ଫଳ ଭୋଗକରୁଛି, କେହି ବା ନିଜ କୁସ୍ୱଭାବ ହେତୁ ଦୁଃଖମୟ ଜୀବନଯାପନ କରୁଛି; ଆଉ ହୁଏତ କେହି ପାରିପାର୍ଶ୍ୱିକ ପରିସ୍ଥିତିର ଶୃଙ୍ଖଳାରେ ବନ୍ଦୀହୋଇ ଜୀବନପଥରେ ଅଗ୍ରସର ହେଉଛି।''

''ତା'ହେଲେ କ'ଣ ଜୀବନ ଗୋଟାଏ ଅଭିଶାପ ?''

''ନା ନା, ବରଂ କହିବାକୁ ହେବ ଯେ ଜୀବନ ଗୋଟିଏ ଦିବ୍ୟ ବରଦାନ। ଏହା ପରମାତ୍ମାଙ୍କର ଅସୀମ କୃପାର ଫଳ। ତା' ସହିତ ଆହୁରି ମଧ୍ୟ ମନେରଖ, ପ୍ରକୃତରେ ଜୀବନ ଗୋଟିଏ ଅଭିଶପ୍ତ ବରଦାନ।''

''ତା'ହେଲେ କୁହନ୍ତୁ– କ'ଣ କେବଳ ସେହି ଅଭିଶପ୍ତ ଜୀବନକୁ ଅନୁଭବ କରିବା ଲାଗି ମଣିଷ ଏ ସଂସାରକୁ ଆସିଛି ?''

''ନା ...'' ଗମ୍ଭୀରଭାବରେ କହିଲେ ମହର୍ଷି ଅଙ୍ଗିରସ; କିନ୍ତୁ ସଙ୍ଗେ ସଙ୍ଗେ ଶରତ୍ ଚାନ୍ଦିନୀପରି ହାସ୍ୟରେଖା ଫୁଟିଉଠିଲା ତାଙ୍କର ଦିବ୍ୟ ମୁଖମଣ୍ଡଳରେ। ମୁଁ ପୁଣି ବିନମ୍ରତାର ସହିତ ପ୍ରଶ୍ନ କଲି– ''ତା'ହେଲେ ମାନବ-ଜୀବନର ଉଦ୍ଦେଶ୍ୟ କ'ଣ ?''

''ଅଭିଶାପରୁ ମୁକ୍ତ ହେବାଲାଗି ପ୍ରଚେଷ୍ଟା ଚଳାଇବା ହେଉଛି ମଣିଷ-ଜୀବନର ଧ୍ୟେୟ। ଯଯାତି, ଶାରୀରିକ ସୁଖ-ଦୁଃଖ ବ୍ୟତୀତ ଅନ୍ୟ କୌଣସି ବିଷୟ ଅନୁଭବ କରିବାର ଶକ୍ତି ମନୁଷ୍ୟେତର ପ୍ରାଣୀମାନଙ୍କଠାରେ ଦେଖାଯାଏନାହିଁ; ଏହା କେବଳ ମନୁଷ୍ୟଲାଗି ଉଦ୍ଦିଷ୍ଟ ଐଶ୍ୱରୀୟ ଅବଦାନ। ଏହି ଅନୁଭୂତି ଫଳରେ ମନୁଷ୍ୟ ପଶୁତ୍ୱର ଊର୍ଦ୍ଧ୍ୱରେ ରହି, ସଂସ୍କୃତିର ଦୁର୍ଗମ ଗିରି ଲଙ୍ଘନ କରି ସୃଷ୍ଟିର ଆରମ୍ଭରୁ ଅଦ୍ୟାପି ଅବିରାମ ଗତିରେ ଅଗ୍ରସର ହୋଇଚାଲିଛି; ହୁଏତ କାଲି ପୁଣି ସେ ପର୍ବତର ଶିଖରଦେଶରେ ପହଞ୍ଚିଯାଇ ସମସ୍ତ ପ୍ରକାର ଅଭିଶାପରୁ ମୁକ୍ତ ହୋଇପାରିବ। ଦେଖ, ଗୋଟିଏ କଥା କେବେହେଲେ ଭୁଲିଯିବନାହିଁ– 'ଶାରୀରିକ ସୁଖ ମନୁଷ୍ୟ ଜୀବନର ଶ୍ରେଷ୍ଠ ତୁଳାଦଣ୍ଡ ନୁହେଁ; ଆତ୍ମସନ୍ତୋଷ ହିଁ ପ୍ରକୃତରେ ମାନବିକତା।'' ଟିକିଏ ନୀରବ ରହି ସେ ପୁଣି କହିଲେ– ''ଦେଖ, ମୁଁ କି ପାଗଳାମୀ କରୁଛି ? ସମୟ ଅସମୟ

କିଛି ଚିନ୍ତା ନକରି ମୁଁ ତୁମକୁ ବ୍ରହ୍ମଜ୍ଞାନ ପଢ଼ାଇବାକୁ ଯାଉଛି। ପ୍ରକୃତରେ ଲୋକେ ଯାହା କହନ୍ତି– କ୍ଷତ୍ରିୟର ଧନୁର୍ବାଣ ଓ ବ୍ରାହ୍ମଣର ଜିହ୍ୱା ସବୁବେଳେ ଶାଣ ଦିଆହୋଇ ରଖାଯାଇଥାଏ। ତୁମେ ଏକାବେଳକେ ନିଶ୍ଚିତ ହୋଇଯାଅ; ମୁଁ ତୁମ ବାପାଙ୍କର ଆରୋଗ୍ୟ କାମନା କରି ପ୍ରାର୍ଥନା କରୁଥିବି। ଯାଅ... ତୁମ ଯାତ୍ରା ନିର୍ବିଘ୍ନରେ ସମ୍ପନ୍ନ ହେଉ– 'ଶିବାସ୍ତେ ସନ୍ତୁ ପନ୍ଥାନଃ'।''

ହସ୍ତିନାପୁରରେ ପହଞ୍ଚିବା ପର୍ଯ୍ୟନ୍ତ କଚ୍ ଓ ଅଙ୍ଗିରସଙ୍କ ଦାର୍ଶନିକ ବିଚାରଧାରା ମୋ ମନକୁ ପ୍ରଭାବିତ କରି ରଖିଥିଲା। ସେହି ବିଚାରଧାରାରେ ନିହିତ ଥିଲା, ସନ୍ଧ୍ୟାକାଳୀନ ଧୂମିଳତା ଏବଂ ପ୍ରଭାତର ରମଣୀୟତା; କିନ୍ତୁ ରାଜଧାନୀରେ ପ୍ରବେଶ କରିବାମାତ୍ରେ ସେ ବିଚାରଧାରା ମୋ ମନଗହନରୁ କୁଆଡ଼େ ଉଭେଇଗଲା ଏବଂ ତା' ପରିବର୍ତ୍ତେ ଛାଇଗଲା ରାଜଧାନୀରେ ପରିବ୍ୟାପ୍ତ ବିଷାଦକାଳିମା। ଯେଉଁ ରାଜଧାନୀର ରାଜମାର୍ଗ ସଦାସର୍ବଦା ହସିଉଠୁଥିଲା, ସେହି ମାର୍ଗରେ ଆଜି ଲୋକମାନେ ବିଷାଦଭରା ମୁଖମଣ୍ଡଳକୁ ଆନତ କରି ପାଦ ଘୋଷାରି ଘୋଷାରି ଚାଲୁଥିଲେ। ଏହା ଦେଖି ମୋ ମନରେ ଆଶଙ୍କା ଜାତହେଲା– 'ମୁଁ ପିତାଙ୍କର ଅନ୍ତିମ ଦର୍ଶନ ପାଇପାରିବି ନାହିଁ କି ?' ଏହା ଭାବିବା ପରେ ପ୍ରତିଟି ମୁହୂର୍ତ୍ତ ମୋ ପକ୍ଷରେ ଭାରାକ୍ରାନ୍ତ ହୋଇଉଠିଲା ଏବଂ ନାନାପ୍ରକାର ଆଶଙ୍କାରେ ମୋ ହୃଦୟ ଥରିଉଠିଲା। ପରାଜିତ ରାଜକୁମାର ପରି ମୌନ ତଥା ଭାରାକ୍ରାନ୍ତ ମନରେ ମୁଁ ରାଜପ୍ରାସାଦରେ ପ୍ରବେଶ କଲି। ପିତାଙ୍କର ଆଦୌ ଚେତନା ନଥିଲା କହିଲେ ଚଳେ। ସେ ସମ୍ପୂର୍ଣ୍ଣ ଚେତନା ହରାଇ ନଥିଲେ ସୁଦ୍ଧା ମୋତେ ଆଦୌ ଚିହ୍ନିପାରିଲେ ନାହିଁ। ଗ୍ରୀଷ୍ମର ପ୍ରଚଣ୍ଡ ରୌଦ୍ରତାପରେ ଉତ୍ତପ୍ତ ମରୁଭୂମିର ବାଲୁକାରାଶି ପରି ତାଙ୍କ ଶରୀରରୁ ଉତ୍ତାପ ଜାତ ହେଉଥିଲା ଏବଂ ମରୁଭୂମିର ବାତ୍ୟା ପରି ସେ ଏଣୁତେଣୁ କ'ଣ ଗୁଡ଼ାଏ କହିଚାଲିଥିଲେ। ସେ ସନ୍ନିପାତ ରୋଗରେ ପୀଡ଼ିତ ହୋଇଥିଲେ ଏବଂ ତାଙ୍କ ପାଖରେ ଛିଡ଼ାହୋଇଥିବା ମାଆ, ବୃଦ୍ଧ ଅମାତ୍ୟ, ରାଜବୈଦ୍ୟ ଓ ଦାସଦାସୀମାନଙ୍କ ମୁହଁରୁ ଭୟ ଆଶଙ୍କାର ଚିହ୍ନ ସ୍ପଷ୍ଟ ହୋଇଉଠୁଥିଲା।

ମୁଁ ତାଙ୍କ ମୁଣ୍ଡପାଖରେ ବସିପଡ଼ି 'ବାପା' 'ବାପା' ବୋଲି କେତେଥର ଡାକିଲି। କିନ୍ତୁ ମୋ ଡାକରେ ସେ କିଛି ଉତ୍ତର ଦେଲେନାହିଁ; ସତେଅବା ସେ ଅନ୍ୟ କୌଣସି ରାଜ୍ୟରେ ମନେ ମନେ ବିଚରଣ କରୁଛନ୍ତି। ମୁଁ ସେଠାରୁ ଉଠିଆସି ତାଙ୍କର ପାଦପାଖରେ ବସି ପାଦ ଦୁଇଟିକୁ ଆଉଁସିବାରେ ଲାଗିଲି; ସେ କିନ୍ତୁ ମୋ ହାତର ସ୍ପର୍ଶ ଆଦୌ ଅନୁଭବ କରିପାରିଲେନାହିଁ। ତା'ପରେ ମୋ ଆଖିରୁ ଅବାରିତ ଲୁହଧାର ଗଡ଼ି ପିତାଙ୍କ ଚରଣ ଧୌତକଲା।

ଅମାତ୍ୟ ଧୀରେ ଧୀରେ ପାଖକୁ ଆସି ମୋ କାନ୍ଧରେ ହାତ ରଖି ମୋତେ ଅତ୍ୟନ୍ତ ସ୍ନେହ ଓ ଆଦର ସହକାରେ କକ୍ଷର ବାହାରକୁ ନେଇଗଲେ। ତା'ପରେ ବାଷ୍ପରୁଦ୍ଧ କଣ୍ଠରେ କହିବାକୁ ଲାଗିଲେ, ''ଯୁବରାଜ, ବର୍ତ୍ତମାନ ସୁଦ୍ଧା ଆପଣ ପିଲା, ଦୁନିଆର ଗତିବିଧି ସହିତ ଆଦୌ ପରିଚିତ ନୁହନ୍ତି। ଆଜି ଯାହା ଆପଣ ଦେଖୁଛନ୍ତି, ସବୁ ମୃତ୍ୟୁଲୋକର ଖେଳ। ମାନବଜୀବନ କଳ୍ପବୃକ୍ଷ ପରି ଆନନ୍ଦମୟ, ବିଷବୃକ୍ଷ

ପରି ମଧ୍ୟ ବିଷମୟ। ଆପଣ ମହାରାଜାଙ୍କ ମୃତ୍ୟୁକାଳୀନ ଯନ୍ତ୍ରଣା ଆଦୌ ସହ୍ୟ କରିପାରିବେ ନାହିଁ; ତେଣୁ ନଗରଠାରୁ ଦୁଇକୋଶ ଦୂରରେ ଅବସ୍ଥିତ ଆମର ଅତିଥିଭବନ 'ଅଶୋକ-ବନ'ରେ ପୂର୍ଣ୍ଣ ବିଶ୍ରାମ ନିଅନ୍ତୁ। ସେ ସ୍ଥାନଟି ଯେପରି ମନୋରମ ସେହିପରି ଏକାନ୍ତ ମଧ୍ୟ। ହିମାଳୟର କୌଣସି ଗୁମ୍ଫା ତୁଳନାରେ ତାହା କମ୍ ମନୋରମ ତଥା ଶାନ୍ତିଦାୟକ ନୁହେଁ। ରାଜପ୍ରାସାଦରୁ ଅଶୋକବନ ପର୍ଯ୍ୟନ୍ତ ଗୋଟିଏ ଅଳ୍ପଦୂରଗାମୀ ସୁଡ଼ଙ୍ଗ ରହିଛି; ଆପଣ ଯାଇ ସେଠାରେ ରହନ୍ତୁ। ଦିନରେ କେବଳ ଦୁଇଥର ଆସି ଆପଣ ମହାରାଜାଙ୍କୁ ଦେଖିଯିବେ, ଆଉ କିଛି ବିଶେଷ ଅସୁବିଧା ହେଲେ ଆପଣଙ୍କୁ ସେହି ମାର୍ଗରେ ଖବର ଦେଇହେବ। ମୁଁ ମହାରାଣୀଙ୍କ ସହିତ ପରାମର୍ଶ କରି ଏ ବ୍ୟବସ୍ଥା କରିଛି। ଅଶ୍ୱମେଧ ଯଜ୍ଞ ତଥା ଶାନ୍ତିଯଜ୍ଞରେ ଭାଗ ନେଇ ଆପଣ ଖୁବ୍ କ୍ଳାନ୍ତ ହୋଇପଡ଼ିଥିବେ। ଅଶୋକବନରେ ବିଶ୍ରାମ ନେଲେ ଆପଣଙ୍କର ସମସ୍ତ କ୍ଳାନ୍ତି ଦୂର ହୋଇଯିବ।''

ଆଖେଟ ତଥା ଯୁଦ୍ଧଭୂମିରେ ମୁଁ କାହାରିକୁ ଭୟକରେନାହିଁ କିମ୍ବା ସେ ସ୍ଥାନ ତ୍ୟାଗ କରି ମୁଁ କେବେହେଲେ ପଳାଇ ଆସିନାହିଁ। କିନ୍ତୁ ରାଜଭବନରେ ମୃତ୍ୟୁର ଯେଉଁ କରାଳଛାୟା ଘୋଟି ରହିଥିଲା ତାହା ଦେଖି ମୁଁ ନିତାନ୍ତ ଭୟଭୀତ ହୋଇଉଠିଥିଲି; ତେଣୁ ଅମାତ୍ୟଙ୍କ ପରାମର୍ଶ ମାନି ମୁଁ ବିନା ପ୍ରତିବାଦରେ ଅଶୋକବନକୁ ଚାଲିଗଲି।

ମୃତ୍ୟୁ ଭୟାନକ ଭଲ୍ଲୁକ ସଦୃଶ ଗୋଟିଏ ଜନ୍ତୁ; ମନୁଷ୍ୟ ତା' ଭୟରେ ଯେତେ ଉଚ୍ଚ ବୃକ୍ଷରେ ଆରୋହଣ କଲେ ମଧ୍ୟ ସେ ଅନାୟାସରେ ସେଠାରେ ପହଞ୍ଚିଯାଏ। ଯେକୌଣସି ସ୍ଥାନରେ ଆତ୍ମଗୋପନ କରି ବସିରହିଲେ ମଧ୍ୟ ସେହି କଦର୍ଯ୍ୟ କଳା-କିଟିକିଟି ଜନ୍ତୁଟା କୌଣସିମତେ ମଣିଷର ଗନ୍ଧ ବାରି ସେଇଠି ଯାଇ ପହଞ୍ଚିଯିବ ଏବଂ ତାକୁ ଦେଖିବାମାତ୍ରେ ମଣିଷର ପିଣ୍ଡରୁ ପ୍ରାଣ ଉଡ଼ିଯିବ।

ଅମାତ୍ୟ ମୋର ସୁଖସୁବିଧା ଲାଗି ଅଶୋକବନରେ ସବୁପ୍ରକାର ବ୍ୟବସ୍ଥା ଖଞ୍ଜିଦେଇଥିଲେ; କିନ୍ତୁ କୌଣସିମତେ ମୋର ମନ ସେଠାରେ ଶାନ୍ତି ପାଇପାରିଲା ନାହିଁ। ଦାସଦାସୀ ମୋ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଯୋଡ଼ହସ୍ତରେ ଛିଡ଼ାହୋଇଥିଲେ; କିନ୍ତୁ ସେମାନଙ୍କର କୌଣସି ସେବା ମୋର ଆବଶ୍ୟକ ହେଲାନାହିଁ। ସେମାନଙ୍କ ମଧ୍ୟରେ ମୁକୁଳିକା ନାମ୍ନୀ ଗୋଟିଏ ସୁନ୍ଦରୀ, ସ୍ୱାସ୍ଥ୍ୟବତୀ ତଥା ସୁଚତୁରୀ ନୂଆ ଦାସୀ ଥିଲା। ସେ ଅନ୍ୟାନ୍ୟ ଦାସଦାସୀଙ୍କୁ ଦୂରେଇଦେଇ ମୋରି ସେବାରେ ଲାଗିପଡ଼ିଲା। ସୁପକ୍ୱ ମିଷ୍ଟାନ୍ନ ଭୋଜନ ଛାଡ଼ି ମୁଁ ଉଠିବାକୁ ଉପକ୍ରମ କରନ୍ତେ, ସେ ପଙ୍ଖାଟି ଧରି, ଲଜ୍ଜାମିଶ୍ରିତ କରୁଣ ତଥା ମମତାପୂର୍ଣ୍ଣ ଚାହାଣିରେ ମୋ ଆଡ଼କୁ ଚାହିଁରହୁଥିଲା। ତା' ଚାହାଣିର ଭାଷା ଥିଲା– 'ଏ କ'ଣ ଯୁବରାଜ! ଆପଣ କିଛି ନଖାଇଲେ ଏ ଶରୀର ରହିବ କିପରି?'

ମୃତ୍ୟୁର କରାଳ ଛାୟାଠାରୁ ଦୂରେଇ ରହିବାଲାଗି ମୁଁ ସର୍ବଦା ମନେମନେ ଚିନ୍ତା କରୁଥିଲି; କିନ୍ତୁ ପିତାଙ୍କ ଦର୍ଶନ ନିମିତ୍ତ ସେହି କକ୍ଷରେ ପାଦ ଦେବାମାତ୍ରେ ମୋର ସମସ୍ତ ଆଶ୍ୱାସନା ତଥା ଚିନ୍ତନ କୁଆଡ଼େ ଅନ୍ତର୍ହିତ ହୋଇଯାଉଥିଲା। ମୃତ୍ୟୁର ଅଜେୟ ଶକ୍ତି ଆଗରେ ମୁଁ ନିତାନ୍ତ ଦୁର୍ବଳ ହୋଇଉଠୁଥିଲି ଏବଂ ମନେମନେ ଭାବୁଥିଲି–

'ଜଣେ ଅଶ୍ୱମେଧବିଜୟୀ ସମ୍ରାଟଙ୍କ ଅପେକ୍ଷା ମୃତ୍ୟୁର ବଳ ଅପରିସୀମ ତଥା ଅଜେୟ। ସଂସାରରେ ମୃତ୍ୟୁର ସମ୍ମୁଖୀନ ହେବାଲାଗି ଜଣେ ହେଲେ କେହି ନାହିଁ। ଆଜି ପିତାଙ୍କର ଅବସ୍ଥା ଯାହା, କାଲି ହୁଏତ ମୋର ସେଇ ଅବସ୍ଥା ହେବ। ଏହି ଦୃଶ୍ୟ ମୋ ଆଖି ଆଗରେ ଘୂରି ବୁଲୁଥିଲା। ମନେ ମନେ ଭାବୁଥିଲି, 'ଯାଉଛି କୁଆଡ଼େ ପଳାଇଯାଇ କେଉଁ ଗୋପନୀୟ ଗୁହାରେ ଆତ୍ମଗୋପନ କରିବି। ସେଠାରେ ମୃତ୍ୟୁର କରାଳଭୁଜ ପହଞ୍ଚିପାରିବନାହିଁ ହୁଏତ।'

ପିତାଙ୍କର ରୋଗଶଯ୍ୟାରେ ଏପରି କେତେକ ଘଟଣା ଘଟିଗଲା, ଯାହା ଫଳରେ ମୃତ୍ୟୁର ଭୀଷଣତା ମୋ ଆଗରେ ଆହୁରି ଜୀବନ୍ତ ହୋଇଉଠିଲା। ରୋଗର ବେଗ ଟିକିଏ କମିଯାଉଥିବାବେଳେ ପିତା ମୁହୂର୍ତ୍ତକଲାଗି ସୁସ୍ଥ ହୋଇଉଠୁଥିଲେ ଏବଂ ମା'ଙ୍କୁ ଚିହ୍ନିପାରି ପାଖକୁ ଇଶାରାରେ ଡାକୁଥିଲେ। ଦିନେ ମୁଁ ତାଙ୍କ ମୁଣ୍ଡପାଖରେ ବସିଥିବାର ସେ ଜାଣିନଥିଲେ ଏବଂ ସେହି ସମୟରେ ମା'ଙ୍କୁ ଡାକି କହିଲେ– ''ଏ ସମସ୍ତ ସୌନ୍ଦର୍ଯ୍ୟ ଓ ବିଭବ ତ୍ୟାଗକରି ମୋତେ ବୋଧହୁଏ ଚାଲିଯିବାକୁ ପଡ଼ିବ।''

ମାଆ ନିତାନ୍ତ ଅସମଞ୍ଜସରେ ପଡ଼ିଗଲେ। ସେ ଅବା ପିତାଙ୍କୁ କିପରି କହିବେ ଯେ, ମୁଁ ସେଠାରେ ଅଛି? ପିତା ଛୋଟ ପିଲାଟିଏ ପରି କଇଁକଇଁ ହୋଇ କାନ୍ଦିପକାଇ କହିଲେ– ''ଏ ଅଧରରୁ ଅମୃତ ପାନକରିବାକୁ ଏବେ ମଧ୍ୟ ମୋର ପିପାସା ରହିଛି; କିନ୍ତୁ . . .।''

ବାହାରକୁ ଚାଲିଯିବାଲାଗି ମାଆ ମୋତେ ଇଶାରାରେ ଜଣାଇଦେଲେ। କିନ୍ତୁ ପିତାଙ୍କର ସେଇ ଆର୍ତ୍ତକ୍ରନ୍ଦନ ମୋର ଅନ୍ତର୍ମନକୁ ଝଙ୍କୃତ କରିଦେଉଥିଲା। କାନରେ କେବଳ ସେଇ ଧ୍ୱନି ପ୍ରତିଧ୍ୱନିତ ହେଉଥିଲା। ଯେଉଁ ପିତୃଦେବ ନିଜ ପରାକ୍ରମରେ ସ୍ୱର୍ଗଲୋକକୁ ପ୍ରକମ୍ପିତ କରିଥିଲେ, ସେହି ଦିଗ୍‌ବିଜୟୀ ହସ୍ତିନାପୁରର ସମ୍ରାଟଙ୍କ ଆଖିରେ ଲୁହ, ହୃଦୟରେ ଅସହାୟ ବ୍ୟକ୍ତିର ବେଦନା। ମୁଁ କିଛି ବୁଝିପାରିଲିନାହିଁ; କିନ୍ତୁ ପିତାଙ୍କର ଏହି ବିକଳ ରୋଦନ ମୂଳରେ କିଛି ନା କିଛି ଗଭୀର ରହସ୍ୟ ରହିଛି।

ମାଆଙ୍କର ଦୁଃଖ ଦେଖି ମୁଁ ତାଙ୍କୁ ଟିକିଏ ବିଶ୍ରାମ ନେବାପାଇଁ ତାଙ୍କ ମହଲକୁ ପଠାଇଦେଇ ପିତାଙ୍କ ପାଖରେ ବସିରହିଲି। ସେ ଅନେକ ସମୟ ପର୍ଯ୍ୟନ୍ତ ଅଚେତ ହୋଇ ପଡ଼ିରହିଲେ, ତା'ପରେ ରାଜବୈଦ୍ୟ ଆସି ତାଙ୍କୁ କୌଣସି ଅବଲେହ ଚଟାଇଦେଇଗଲେ। କେତେ ସମୟ ବିତିଗଲା, ଦିନ ଅବସାନ ପ୍ରାୟ, ପିତା ଆଖି ଖୋଲି ମୋ ଆଡ଼କୁ ଚାହିଁଲେ। ବୋଧହୁଏ ମୋତେ ଚିହ୍ନିପାରିଲେ। ତା'ପରେ ସେ ମୋ ହାତଟିକୁ ଖୁବ୍ ଜୋର୍‌ରେ ଜାବୁଡ଼ିଧରି, ଭୟ-ବିକଳରେ ଚିତ୍କାର କରି କହିଲେ– ''ଯଯୁ-- ଯଯୁ, ମୋତେ ଦୃଢ଼ ଭାବରେ ଧରିନେ; ମୋତେ ସେମାନେ ନେଇଯିବେ। ନା . . . ନା . . . ମୁଁ ଯିବିନାହିଁ . . . ଯଯୁ . . . ଦେଖ . . . ଏ . . . ଯମଦୂତ . . .। ତୁ . . . ଏଡ଼େ ବଡ଼ ବୀର ଥାଉଁ ଥାଉଁ ସେମାନେ କିପରି ଆସିପାରିଲେ?''

ସେ ଭୟରେ ଥରିବାକୁ ଲାଗିଲେ। ଟିକିଏ ସମୟ ପରେ ପୁଣି ଚିତ୍କାର କରି କହିଲେ, ''ତୁମେମାନେ ସମସ୍ତେ କୃତଘ୍ନ। ନିଜନିଜର ଆୟୁଷରୁ ଗୋଟିଏ ଗୋଟିଏ ଦିନ ମୋତେ ଦେଲେ ମୁଁ . . . ଯଯୁ, ମୋତେ ଭିଡ଼ି ଅଟକାଇନେ . . . ମୋତେ

ଛାଡ଼ନା ... ଛାଡ଼ନା ...।'' ତା'ପରେ ସେ ପୁଣି ଅଚେତ ହୋଇଗଲେ। ସେ ମୁହଁ ଖୋଲି ବିଶେଷ କିଛି କହିପାରିଲେ ନାହିଁ ସତ; କିନ୍ତୁ ମୁଁ ତାଙ୍କ କମ୍ପିତ ହସ୍ତ ଓ ବ୍ୟଥିତ ମୁଖମଣ୍ଡଳରୁ ଅନ୍ତରର କଥା କିଛିକିଛି ଜାଣିପାରିଲି। କିଛି ସମୟ ପରେ ମୁଁ ଉଦାସ ମନରେ ଆଶୋକବନକୁ ଫେରିଗଲି। ମୋ ଆଖି ଆଗରେ ନାଚିଉଠିଲା ପିତାଙ୍କ କରୁଣ ରୋଦନ ଓ ଅସହାୟ ଅବସ୍ଥା। ପରମୁହୂର୍ତ୍ତରେ ମୁଁ ଅନୁଭବ କଲି, ପିତାଙ୍କ ସ୍ଥାନରେ ନିଜେ ଯଯାତି ମୃତ୍ୟୁର କରାଳ କବଳରୁ ରକ୍ଷାପାଇବାପାଇଁ ନିରୁପାୟ, ଅସକ୍ତ ଓ କରୁଣ ଭାବରେ ପଡ଼ିରହି, ମୃତ୍ୟୁଠାରୁ ପ୍ରାଣ ଭିକ୍ଷାକରୁଛି; ପାଗଳଙ୍କ ପରି ଆର୍ତ୍ତଚିତ୍କାର କରି ପ୍ରାଣ ବିକଳରେ ଏଣେତେଣେ ପଳାୟନ କରୁଛି।

ହଠାତ୍ ଅଙ୍ଗିରସ ଓ କଚ଼ଙ୍କର ଜନ୍ମମୃତ୍ୟୁ ସମ୍ବନ୍ଧୀୟ ଉପଦେଶ ମନେପକାଇଲି; କିନ୍ତୁ ମୋର ବିକଳ ମନକୁ ସେ ସମୟରେ କିଛି ଭଲଲାଗିଲାନାହିଁ। ଭାରାକ୍ରାନ୍ତ ମନରେ ମୁଁ ଶେଯ ଉପରେ ଲୋଟିପଡ଼ିଲି। ବାହାରର ଅନ୍ଧକାର ପରି ମୋ ମନରେ ଅନ୍ଧକାର ଘୋଟି ରହିଥିଲା। ଧୀରେ ଧୀରେ ଅନ୍ଧକାର ଭେଦକରି ମୁକୁଳିକା ମୋ କକ୍ଷ ଭିତରକୁ ପଶିଆସି ଆଲୋକ ଜଳାଇଦେଲା। ସେ ମୋ ଆଡ଼କୁ ପଛକରି ସ୍ୱର୍ଣ୍ଣଦୀପରେ ସୁଗନ୍ଧ ତୈଳ ଭରିଦେଲା। ସେ ସମୟରେ ତାର ଆକୃତି ମତେ ଖୁବ୍ ସୁନ୍ଦର ଦେଖାଗଲା। ମୁଁ ଟିକିଏ ବୁଲିପଡ଼ି ଚାହିଁଲି ତା'ର ପ୍ରତିଛବି ପଡ଼ିଥିବା କାନ୍ଥ ଉପରକୁ। ତା'ର ଆକୃତି ଖୁବ୍ ବଡ଼ ଏବଂ ମନୋମୋହକ ଦେଖାଯାଉଥିଲା।

ସେ ଦୀପ ଜଳାଇଦେଇ ମୋ ପଲଙ୍କ ଆଡ଼କୁ ଧୀରେ ଧୀରେ ଆସିଲା। ତାର ପଦବିନ୍ୟାସ କୌଣସି ଏକ ମନୋମୋହିନୀ ନର୍ତ୍ତକୀ ପରି ଅପରୂପ ଭାବରେ ପ୍ରତିଭାତ ହେଲା। ମୁଁ ଚାହିଁଥିବା ଦେଖି ସେ ପଚାରିଲା– ''ମହାରାଜାଙ୍କର ଦେହ ଖୁବ୍ ଭଲ ନାହିଁ କି?'' ତା'ର କଣ୍ଠସ୍ୱର ମୋତେ ବୀଣାର ଝଙ୍କାରପରି ମଧୁର ତଥା କୋମଳ ଜଣାଗଲା।

''ମୁଁ କିଛି ବୁଝିପାରୁନି ମୁକୁଳିକା! ପିତାଙ୍କ ଅବସ୍ଥା ଦେଖି ...।''

''ଶୁଣିଲି ... ଜ୍ୟୋତିଷୀମାନେ ଆଶ୍ୱାସନା ଦେଇ କହୁଚ଼ନ୍ତି। ଆଜି ରାଜଜ୍ୟୋତିଷୀ କହିଛନ୍ତି– ନାନାଦି ଅଶୁଭ ଗ୍ରହ ...।''

ମୁକୁଳିକାର କଥାରେ ବାଧାଦେଇ କହିଲି ମୁଁ– ''ମୋତେ ଟିକିଏ ମଦିରା ଆଣିଦେବ ମୁକୁଳିକା, ମୁଁ ଗ୍ରହ, ରୋଗ, ମୃତ୍ୟୁ ଏ ସବୁକୁ କିଛିକ୍ଷଣ ଭୁଲିଯିବାକୁ ଚାହେଁ।''

ସେ ମୋ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲା। କିଛି ସମୟ ନୀରବ ରହିବା ପରେ ମୁଁ ଚିଡ଼ିଯାଇ କହିଲି– ''ମୋତେ ଶୀଘ୍ର ମଦିରା ଆଣିଦିଅ।'' ସେ ମୁଣ୍ଡ ତଳକୁ କରି କହିଲା– ''ମହାରାଣୀଙ୍କର କଡ଼ା ଆଦେଶ ଯୁବରାଜ! ଏଠାକୁ ମଦ୍ୟ କିମ୍ବା ସେପରି କୌଣସି ପଦାର୍ଥ ଆସିବ ନାହିଁ।'' ତା'ର ଉତ୍ତର ଶୁଣି ମୋର ରାଗିଯିବାର କଥା; କିନ୍ତୁ ତଳକୁ ମୁହଁ କରି ଛିଡ଼ାହୋଇଥିବା ମୁକୁଳିକାର ଚେହେରା ମୋତେ ଏତେ ମୁଗ୍ଧ କରିଥିଲା ଯେ, ମୁଁ ତା' ଉପରେ ରାଗି ପାରିଲି ନାହିଁ। ଅନିମେଷ ନେତ୍ରରେ ତା'ରି ଆଡ଼କୁ ଚାହିଁରହି ଭାବିଲି, ମୁଁ ଚିତ୍ରକର କିମ୍ବା ଶିଳ୍ପୀ ହୋଇଥିଲେ ...।

ସ୍ତ୍ରୀମାନେ କ'ଣ ସ୍ୱଭାବରେ ଅନ୍ତର୍ଯ୍ୟାମୀ ? ସେମାନେ କ'ଣ ନିଜର ସୌନ୍ଦର୍ଯ୍ୟ ବିଷୟରେ ନିଜେ ଜାଣିଥାଆନ୍ତି ? ମୁକୁଳିକା ତଳକୁ ମୁହଁ କରି ଛିଡ଼ାହୋଇଥିଲା, ତଥାପି ସେ କିପରି ଜାଣିଗଲା ଯେ ମୁଁ ତା'ରି ଆଡ଼କୁ ଏକଲୟରେ ଚାହିଁରହିଛି ଏବଂ ମୋର ପିଆସି ଚକ୍ଷୁ ତା'ର ରୂପମଦିରା ଆକଣ୍ଠ ପାନ କରିଚାଲିଛି । ସେ ହଠାତ୍ ମୁହଁ ଉପରକୁ ଉଠାଇ ମୋତେ ଚାହିଁ ଓଠଫାଙ୍କରେ ଟେନାଏ ହସ ବିଛୁଦେଲା । ଜଣାଗଲା, ସତେଯେପରି ଅବା ଅନ୍ଧକାର ରାତିରେ ସ୍ୱଚ୍ଛ ନୀଳ ଆକାଶରେ ବିଜୁଳିର ଛଟା ଝଲକିଉଠିଲା । ତା'ର ଅପରୂପ ଛଟା, ମୃଦୁ ମନ୍ଦହାସ୍ୟରେଖା, ମାଦକଭରା ସୌନ୍ଦର୍ଯ୍ୟ, ସବୁ କିଛି ମୋ ମନ ମଧ୍ୟରେ ତୀବ୍ର ବେଦନା ଭରିଦେଲା ।

ତା'ପରେ... ତା'ପରେ ମୁକୁଳିକା ପୁଣି ଦୃଷ୍ଟି ତଳକୁ ନୁଆଁଇ ନେଲା; କିନ୍ତୁ ସେ ପୂର୍ବପରି ମୋର ପଲଙ୍କ ପାଖକୁ ଲାଗି ଛିଡ଼ାହୋଇଥିଲା । ମୁଁ ଅବଶ୍ୟ ମଦିରା ପାନ କରିନଥିଲି; କିନ୍ତୁ ମଦିରାର ପ୍ରଭାବ ମୋ ମନରେ ଛାଇଗଲା । ପରମୁହୂର୍ତ୍ତରେ ମୋ କାନରେ ପ୍ରତିଧ୍ୱନିତ ହୋଇଉଠିଲା ପିତାଙ୍କର ଆକୁଳ କ୍ରନ୍ଦନ– 'ଯଯୁ, ମୋତେ ଦୃଢ଼ତାର ସହିତ ଧରିରଖ, ମୋତେ ବଞ୍ଚିବାକୁ ହେବ ।' ଏହି ପ୍ରତିଧ୍ୱନିର ତୀବ୍ରତା ମୁଁ ମର୍ମେ ମର୍ମେ ଅନୁଭବ କଲି । ମୁଁ ପିଲାଦିନରୁ ମା'ଙ୍କୁ ପ୍ରତିଶ୍ରୁତି ଦେଇ କହିଥିଲି– ଯୁଦ୍ଧ ଓ ମୃଗୟା ବ୍ୟତୀତ ଅନ୍ୟ କୌଣସି ସମୟରେ ମୁଁ ମଦ୍ୟ ସ୍ପର୍ଶ କରିବି ନାହିଁ । ଆଜି ସୁଦ୍ଧା ମୁଁ ସେହି ପ୍ରତିଶ୍ରୁତି ଅକ୍ଷରେ ଅକ୍ଷରେ ପାଳନ କରିଥିଲି; କିନ୍ତୁ ଆଜି ମୋର ବ୍ୟଥିତ ମନକୁ ଶାନ୍ତ କରିବା ଲାଗି ମଦିରା ମାଗିଥିଲି । ମୁଁ ମୁକୁଳିକାକୁ ଟିକିଏ ନରମ ସ୍ୱରରେ ପଚାରିଲି– ''ସତରେ କ'ଣ ମାଆ ମନାକରିଛନ୍ତି ।''

''ଆଜ୍ଞା... ଯୁବରାଜ !''

''ମୁଁ ନିଶାରେ ବେହୋଶ ହୋଇଯିବି, ଏଇ ଭୟରେ...?''

''ନା... ଏ କଥା ନୁହେଁ, ଯୁବରାଜ ।''

''ତା'ହେଲେ...?''

''ଏ ବାଟିକାର ପରିବେଶ ଏକାନ୍ତ ତଥା ରାଜଅତିଥି ମୁନିଋଷିମାନେ ଏଠାରେ ରହନ୍ତି । ତେଣୁ ଏ ସ୍ଥାନ ଯେପରି କୌଣସିମତେ ଅପବିତ୍ର ନହୁଏ, ସେଇଥିପାଇଁ...।''

ପିତାଙ୍କର ଆର୍ତ୍ତ କ୍ରନ୍ଦନ, ତାଙ୍କର ଭୟବିହ୍ୱଳ ଦୃଷ୍ଟି ତଥା ତାଙ୍କ ମୁଖରୁ ନିଃସୃତ ପ୍ରତ୍ୟେକ ଶବ୍ଦ ମୋର ଅନ୍ତରକୁ ବିଦୀର୍ଣ୍ଣ କରିଦେଲା; ମୁଁ ନିରୁପାୟ ହୋଇ ଭୟରେ କମ୍ପିଉଠିଲି । ମୁଁ ଚାହୁଁଥିଲି କାହାରି ଆଶ୍ରୟ, କାହାରି ଆଶ୍ୱାସନା; ତେଣୁ କଡ଼ ଲେଉଟାଇ ମୁଁ ମୁକୁଳିକାର ହାତ ଧରିପକାଇଲି ।

× × × × ×

ସେ ଦିନର ସେ ରାତି– ଆଜି ସୁଦ୍ଧା ଗୋଟି ଗୋଟି କରି ପ୍ରତ୍ୟେକ କଥା ମୋର ମନେପଡୁଛି । କିନ୍ତୁ ବାରମ୍ବାର ମନ ମଧ୍ୟରୁ ଭାବନା ଜାଗ୍ରତ ହୋଇ ମୋତେ ସଜାଗ କରି କହୁଛି– ସେ ରାତ୍ରିର ଘଟଣା ଆଜୀବନ ଗୋପନ ରଖ । ପ୍ରଚଣ୍ଡ ବନ୍ୟାରେ ସ୍ରୋତର ବିପରୀତରେ ସନ୍ତରଣ କରିବାରେ ପ୍ରକୃତ ପୁରୁଷାର୍ଥ । ସେ

ପ୍ରବାହରେ ହାତ ଗୋଡ଼ ନ ହଲାଇ ଭାସିବାରେ ଲାଭ କ'ଣ ? ସେହି ପ୍ରବହମାନ ଅବସ୍ଥାର ବର୍ଣ୍ଣନା କଲେ ଆନନ୍ଦ ବା କ'ଣ ମିଳିବ ? ସେ ରାତିରେ ଯାହାକିଛି ହୋଇଛି କିମ୍ବା ହେବାର ସମ୍ଭାବନା, ତାହା ନିତାନ୍ତ ସ୍ୱାଭାବିକ। ବୋଧହୁଏ ଦୁନିଆର ପ୍ରତ୍ୟେକ ଘରେ, ପ୍ରତ୍ୟେକ ରାତିରେ ତାହାହିଁ ହେଉଥିଲା, ହେଉଛି ଏବଂ ହେବ। କିନ୍ତୁ ଏପରି କେତେକ ଘଟଣା, ଯାହା ସାଂସାରିକତା ଦୃଷ୍ଟିରୁ ସ୍ୱାଭାବିକ, ଅଥଚ ମୁହଁ ଖୋଲି ବର୍ଣ୍ଣନା କରିବାରେ ଜିଭ ଅଟକିଯାଏ, କହିବାକୁ ଲାଜଲାଗେ, ମନ କୁଣ୍ଠିତ ହୁଏ। କେବଳ ଏତିକି ନୁହେଁ, ପବିତ୍ର ଦେବମନ୍ଦିର ମଧ୍ୟରେ ଯୁବତୀ ନିଜର କାଞ୍ଚୁଲାର ଦୃଢ଼ ବନ୍ଧନ ବିଷୟରେ ସନ୍ଦିହାନହୋଇ ବାରମ୍ବାର ଅଣ୍ଡାଳି ଦେଖୁଥାଏ।

କିନ୍ତୁ ଜୀବନର ପ୍ରତ୍ୟେକ ଘଟଣାର ସତ୍ୟତା ବୟାନ କରିବାକୁ ପ୍ରଥମରୁ କହିଛି, ହୃଦୟ ଖୋଲି କହିଦେବାକୁ ସତ୍ୟକରିଛି; ତେଣୁ ମନର କୌଣସି ଏକ କୋଣରେ କିଛି ଗୋପନ କାହାଣୀ ଲୁଚାଇ ରଖିବା ନିଶ୍ଚୟ ଅପରାଧ ହେବ। ସୌନ୍ଦର୍ଯ୍ୟର ଆଭୂଷଣ ଲଜ୍ଜା; କିନ୍ତୁ ସତ୍ୟର ନୁହେଁ। ପ୍ରତ୍ୟେକ ଗୋପନୀୟତା ଉଦ୍‌ଘାଟନ ହିଁ ସତ୍ୟ। ସେଦିନ ରାତିଟି ମୁଁ ମୁକୁଳିକାର ବାହୁପାଶରେ କଟାଇଲି; ନା... ନା... ମୋ ବାହୁପାଶରେ ମୁକୁଳିକା ଥିଲା ବନ୍ଦିନୀ। ନା... ତା' ମଧ୍ୟ ନୁହେଁ। ତେବେ ସାକ୍ଷାତ୍ ପ୍ରେମର ଦେବତା କାମଦେବ ମଧ୍ୟ କହିପାରିବେନି ଯେ କିଏ କାହାର ବାହୁପାଶରେ ସେ ରାତିଟି କଟାଇଛି। ମୁକୁଳିକାର ହାତ ମୁଁ ଧରିପକାଇବା ମାତ୍ରେ, ନଶ୍ୱର ସଂସାରରୁ ମୋର ସମସ୍ତ ସମ୍ପର୍କ ତୁଟିଗଲା; ଆମେ ଆଉ ଏ ଧରାରେ ନଥିଲୁ। ଅନନ୍ତ ଆକାଶର ନକ୍ଷତ୍ରଲୋକ ପାରହୋଇ କେଉଁ ଅଦେଖା ଅଶୁଣା ରାଜ୍ୟରେ ଆମେ ପହଞ୍ଚିଗଲୁ। ଭୁଲିଯାଇଥିଲି ମୁଁ ହସ୍ତିନାପୁରର ଯୁବରାଜ, ସେ ମଧ୍ୟ ନିଜର ଦାସୀତ୍ୱକୁ ପାସୋରିଦେଇଥିଲା। ଆମେ ଦୁହେଁ ମିଶି ଏକାକାର ହୋଇଯାଇଥିଲୁ; ଆମେ ଥିଲୁ ଦୁଇଟି ପ୍ରେମିକ ପ୍ରେମିକା, ଦୁଇଟି ବନ୍ଧନମୁକ୍ତ ନୀଡ଼ହରା ପକ୍ଷୀ, ଅନନ୍ତ ଗଗନର ପାଖାପାଖି ଦୁଇଟି ଉଜ୍ଜ୍ୱଳ ତାରକା।

ଆମେ ଅଶୋକବନର ମହଲରେ ନଥିଲୁଁ, ହସ୍ତିନାପୁରରେ ନଥିଲୁ, ଏପରିକି ପୃଥ୍ୱୀରେ ନଥିଲୁ। ଆମେ ଏପରି ଏକ ସ୍ଥାନରେ ଯାଇ ଉପନୀତ ହୋଇଥିଲୁ ଯେଉଁଠି ନଥିଲା ରୋଗ, ଶୋକ, ଦୁଃଖ ମୃତ୍ୟୁ ଓ ଯନ୍ତ୍ରଣା। ସେ ଥିଲା ଏକ ବିଚିତ୍ର ଦୁନିଆ; କିନ୍ତୁ କେଡ଼େ ସୁନ୍ଦର ଓ ସୁଖଦ ସେ ସ୍ଥାନ। ସେ ଦୁନିଆ ଥିଲା ଯେତିକି ମନମୋହକ, ସେତିକି ଦାହକ। ତାହା କେବଳ ଥିଲା ଆମ ଦୁହିଁଙ୍କର ସ୍ଥାନ; ସେ ସ୍ଥାନଟି ଥିଲା ମଧୁମୟ ତଥା ମାଦକତାପୂର୍ଣ୍ଣ। ଗୋଟିଏ ବିଲକ୍ଷଣ ପାଗଳାମୀରେ ପୂର୍ଣ୍ଣ କିମ୍ବା ସୁନ୍ଦରତାର ଅକ୍ଷୟ ସମାଧି। ମୁଁ ଜାଣେନା, ଆମ ଦୁହିଁଙ୍କର ଅଧର ଏକତ୍ର ମିଳିତ ହେବାମାତ୍ରେ ମୋ ମନରୁ ମୃତ୍ୟୁର ଭୟ ଓ ଯନ୍ତ୍ରଣାର ଆକୁଳତା କୁଆଡ଼େ ଉଭେଇଗଲା। ସେ ରାତିରେ ମୁଁ କେତେ ଚୁମ୍ବନର ମଧୁମୟ ରେଖା ଆଙ୍କିଦେଇଛି ମୁକୁଳିକା ଗଣ୍ଡରେ କିମ୍ବା ସେ କେତେ ଚୁମ୍ବନ ଦେଇ ମୋର ତୃଷିତ ଅଧରକୁ ସିକ୍ତ କରିଛି, ତାହା କିଏ ଗଣନା କରି କହିପାରିବ ? ଆକାଶର ଅଗଣିତ ନକ୍ଷତ୍ର ପୁଞ୍ଜର ଗଣନା କରିବ କିଏ ?

ମୁଁ କାବ୍ୟ-କବିତାରେ ପଢ଼ିଥିଲି ନାୟିକାର ସୌନ୍ଦର୍ଯ୍ୟ-ବର୍ଣ୍ଣନା; ତା'ରି ଫଳରେ ମୋ ମନରେ ନାରୀ ପ୍ରତି ଜାଗିଥିଲା ଆକର୍ଷଣ; ସେହି ଆକର୍ଷଣ ଫଳରେ କି ଆନନ୍ଦ ଜାତ ହୁଏ, ସେ ସମ୍ବନ୍ଧରେ ମଧ୍ୟ କିଛି କିଛି ଧାରଣା ମୋ ମନରେ ଉଦ୍ରେକ ହୋଇଥିଲା। ଅବଶ୍ୟ ସେ ଆନନ୍ଦ ଥିଲା ଶିଶୁର ହାତମୁଠାରେ ଚନ୍ଦ୍ରମାକୁ ପାଇବାପରି ଏକ ଅଳୀକ ଆନନ୍ଦ। କିନ୍ତୁ ସେଦିନ ରାତିରେ ମୁଁ ପ୍ରକୃତରେ ଅନୁଭବ କଲି, ସୁନ୍ଦରୀ ସ୍ତ୍ରୀର ଉପଭୋଗ ବାସ୍ତବିକ କେଡ଼େ ମଧୁମୟ, କେଡ଼େ ଉନ୍ମାଦକର। ତା'ର ପ୍ରତ୍ୟେକ ଲୋମକୂପରୁ କିପରି ପ୍ରତ୍ୟେକ କ୍ଷଣ ଆନନ୍ଦର ଉତ୍ସ ଉଠୁଥିଲା, ସ୍ୱର୍ଗୀୟ ଆନନ୍ଦମୟ ଲହରୀ ଛୁଟୁଥିଲା; ତାହା ଅନୁଭବ କଲାମାତ୍ରେ ମୁଁ ଉନ୍ମାଦନାରେ ଆତ୍ମବିସ୍ମୃତ ହୋଇଗଲି।

ସେହି ବିଭୋରତାରେ ଭାସିଯାଇ ମୁଁ କେଉଁ ଆଲୌକିକ ରାଜ୍ୟରେ ଉପନୀତ ହୋଇଗଲି। ପରଦିନ ପକ୍ଷୀମାନଙ୍କ କୋଳାହଳ ପରେ ମୋର ନିଦ୍ରାଭଙ୍ଗ ହେଲା। ଆଖି ଖୋଲି ଦେଖିଲି ଝରକାର ଫାଙ୍କଦେଇ ପ୍ରବେଶ କରୁଛି ପ୍ରଭାତକାଳୀନ ସୂର୍ଯ୍ୟଙ୍କର ସୁନେଲି କିରଣ। ମୁଁ ପଲଙ୍କ ଉପରେ ଉଠି ବସିଲି। କାଲି ରାତିରେ କେଡ଼େ ବ୍ୟାକୁଳ ମନସ୍ଥିତି ନେଇ ମୁଁ ଶରୀରଟିକୁ ଲୋଟାଇଦେଇଥିଲି; କିନ୍ତୁ ସେହି ମହଲ, ସେହି କକ୍ଷ, ସେହି ବାତାୟନ, ବାତାୟନ ପାଖରେ ଝୁଲିପଡ଼ିଥିବା ସେହି କୋମଳ ଲତିକା, ସେହି ଶଯ୍ୟା; କିନ୍ତୁ ରାତିକ ମଧ୍ୟରେ ସତେ ଅବା ସମସ୍ତେ ବଦଳିଯାଇଛନ୍ତି ! ଏବେ ପ୍ରତ୍ୟେକଟି ଅଙ୍ଗପ୍ରତ୍ୟଙ୍ଗକୁ ଅପାର ଆନନ୍ଦ ଦେଉଛି। ମୋତେ ଜଣାପଡ଼ିଲା– ବୃକ୍ଷଗୁଡ଼ିକ ପୂର୍ବାପେକ୍ଷା ଅଧିକ ସଘନ ତଥା ସବୁଜିମାରେ ପୂର୍ଣ୍ଣ, ପକ୍ଷୀମାନଙ୍କ କଳକୂଜନରେ ଅଧିକ ମାଧୁରୀ ପୂରିଉଠିଛି। କକ୍ଷର ଦୁଇଟିଯାକ ଦ୍ୱାର ହଠାତ୍ ଏହି ରହସ୍ୟାବୃତ ଆନନ୍ଦର ଅବଲୋକନ ଲାଗି ପରସ୍ପରକୁ ବିସ୍ଫାରିତ ଚକ୍ଷୁରେ ଚାହିଁରହିଛନ୍ତି।

ମୁଁ ଶୋଇଛି କି ଉଠିଲିଣି, ଦେଖିବାଲାଗି ଦ୍ୱାର ଖୋଲି ମୁକୁଳିକା ଭିତରକୁ ପଶିଆସିଲା। ପାଖକୁ ଆସି ପଚାରିଲା– "ରାତିରେ ଭଲ ନିଦ ହେଲା ତ ?" ମୁଁ ଭାବୁଥିଲି– ମୋ' ଆଗକୁ ଆସିବାମାତ୍ରେ ସେ ଲାଜରେ ଝାଉଁଳି ପଡ଼ିବ; ଆଖିରେ ଆଖି ମିଶିବାମାତ୍ରେ ପଲକ ନୁଆଁଇନେଇ ଅନ୍ୟମନସ୍କ ହୋଇଉଠିବ; କିନ୍ତୁ ସେ ଏତେ ଧୀର ଓ ଶାନ୍ତ ଭାବରେ ବ୍ୟବହାର କଲା ଯେ, ସତେଯେପରି କାଲି ରାତିରେ କିଛି ଘଟିନାହିଁ। ଯାହା ବି ଘଟିଥିଲା, ସବୁକିଛି ଥିଲା– ଏକ ନିଛକ ସ୍ୱପ୍ନ। ତେଣୁ ଜାଗ୍ରତ ଅବସ୍ଥାରେ ସ୍ୱପ୍ନର ଅସ୍ତିତ୍ୱ କେଉଁଠି ?

ମୁକୁଳିକା ଥିଲା ଏକ କୁଶଳୀ ଅଭିନେତ୍ରୀ। ରାତିରେ ଯେତିକି ଦକ୍ଷତାର ସହିତ ସେ ପ୍ରେୟସୀର ଭୂମିକାରେ ଅଭିନୟ କରିଥିଲା, ଠିକ୍ ସେହିପରି ପୂର୍ଣ୍ଣ ବିଚକ୍ଷଣତାର ସହିତ ଏବେ ସେ ଦାସୀର ଭୂମିକାରେ ଦଣ୍ଡାୟମାନ। ମୁଁ ଆଦୌ ବୁଝିପାରିଲିନି ଯେ, ତା' ପ୍ରଶ୍ନର ଉତ୍ତର ମୁଁ କ'ଣ ଦେବି ? ସେ ଧୀରେ ଓଠଫାଙ୍କରେ ହାସ୍ୟରେଖା ଫୁଟାଇ, ଭୂରୁଯୁଗଳକୁ ମଧୁର ଭଙ୍ଗିମାରେ ନଚାଇ ମୋ ଆଡ଼କୁ ଚାହିଁଲା; ତା'ପରେ ମୁହଁ ହାତ ଧୋଇବାଲାଗି ସମସ୍ତ ସାଜସରଞ୍ଜାମ ଆଣିବାକୁ ବାହାରକୁ ଚାଲିଗଲା। ତା'ର ପୃଷ୍ଠଦେଶକୁ ଚାହିଁବାମାତ୍ରେ ଗତରାତ୍ରିର ସମସ୍ତ ସ୍ମୃତି ମୋ ମନରେ ଠୁଳହୋଇଗଲା ଏବଂ ଅଜ୍ଞାତସାରରେ

ମୋ ମୁହଁରୁ ବାହାରିଗଲା – "ମୁକୁଳିକା" ! ସେ ଛିଡ଼ାହୋଇଗଲା। ଟିକିଏ ଲୀଳାୟିତ ଗତିରେ ମୋ ଆଡ଼କୁ ଫେରି ଚାହିଁଲା ଏବଂ ତା'ପରେ ଦ୍ରୁତଗତିରେ ଆସି ମୋ ପଲଙ୍କ ପାଖରେ ଛିଡ଼ାହୋଇ କହିଲା – "ଯୁବରାଜ, ମୋତେ ଡାକିଲେ କି ?"

ମୁଁ ଡାକିଥିଲି ସତ; କିନ୍ତୁ କାହିଁକି ମୁଁ ନିଜେ ମଧ୍ୟ ଜାଣିନପାରି ବିସ୍ମିତହୋଇଗଲି। ତେଣୁ ମୁଁ କିଛି ନକହି ନୀରବ ରହିଲି। ମୋତେ ନୀରବ ରହିବାର ଦେଖି, ସେ ହାତ ଯୋଡ଼ି ଅତି ବିନୀତ ଭାବରେ କହିଲା – "ମୁଁ କ'ଣ ଭୁଲ୍ କରିଦେଲି କି ?"

'ତୁମେ ଭୁଲ୍ କରିନାହଁ, ବରଂ ମୁଁ କରିଛି। ତୁମେ ଭିତରକୁ ଆସିବାକ୍ଷଣି ଜୋର୍ କରି ଭିଡ଼ିଆଣି ପାଖରେ ବସାଇବା ଉଚିତ ଥିଲା; କିନ୍ତୁ ତା' ବଦଳରେ ମୁଁ ପୁଣି ତୁମକୁ ଦାସୀପରି ମୋର ସେବାଲାଗି ପଠାଇଦେଲି . . .।' ମୁଁ ଏହି କଥା କହିବାଲାଗି ମନେମନେ ଭାବିଲି ସତ, କିନ୍ତୁ ମୋ ଭାବନା ସେହି ଭାବନାରେ ରହିଗଲା; ମୁଁ ମୁହଁ ଖୋଲି କିଛିହେଲେ କହିପାରିଲିନାହିଁ। ମୁଁ ପୁଣି ନୀରବ ରହିଯିବାରୁ ମୁକୁଳିକା ପକ୍ଷରେ ତାହା ଏକ ରହସ୍ୟ ହୋଇଉଠିଲା। ସେ ଟିକିଏ ଡ଼ରିଗଲାପରି କାତର ସ୍ୱରରେ କହିଲା – "ଯୁବରାଜ, ଏ ଛାର ଦାସୀଟା ଉପରେ ରାଗିଲେ ?"

"ନା, ତ . . ." ବାସ୍ ଏଇ ଗୋଟିଏ ମାତ୍ର ଶବ୍ଦ ମୋ ମୁହଁରୁ ବାହାରିଲା। ଭାବୁଥିଲି କହିବିବୋଲି – 'ପାଗଳୀଟା . . .।' ଏହି ସମୟରେ ହଠାତ୍ ଆଉ ଗୋଟିଏ ଦାସୀ ଆସି ଆମାତ୍ୟଙ୍କଦ୍ୱାରା ପ୍ରେରିତ ଖଣ୍ଡିଏ ପତ୍ର ମୁକୁଳିକା ହାତରେ ଦେଇ ଚାଲିଗଲା। ଦାସୀଟି ଆସିବା ଫଳରେ ମୋ କଳିଜା ଥରିଉଠିଲା। ସତେ, ମୁଁ କେଡ଼େ ସ୍ୱାର୍ଥପର, କେଡ଼େ ଲମ୍ପଟ ! ଉଠିବା ପରେ, ଥରେ ହେଲେ ସୁଦ୍ଧା ମୃତ୍ୟୁଶଯ୍ୟାରେ ପଡ଼ି ଛଟପଟ ହେଉଥିବା ପିତାଙ୍କ କଥା ଚିନ୍ତାକଲିନାହିଁ। ନିଜର କୃତଘ୍ନତା ପ୍ରତି ମୋ ମନରେ ଗଭୀର ଦୁଃଖ ଜାତହେଲା।

ଦାସୀ ହାତରେ ଆସିଥିବା ପତ୍ରଟି ଥିଲା – ଆଚାର୍ଯ୍ୟ କଚ୍ଚଙ୍କର। ଜଣେ ଋଷିକୁମାର ଗତ ମଧ୍ୟରାତ୍ରିରେ ପତ୍ରଟି ଘେନି ହସ୍ତିନାପୁର ଆସିଥିଲେ। ପତ୍ରଟି ଖୋଲି ପାଠକଲି – "ଯୁବରାଜ, ଆପଣଙ୍କ ପଛେ ପଛେ ମୋତେ ମଧ୍ୟ ଆଶ୍ରମ ଛାଡ଼ି ଯିବାକୁ ପଡୁଛି। ଆମେ ସମସ୍ତେ ମିଳିମିଶି ଶାନ୍ତିଯଜ୍ଞ ସମ୍ପନ୍ନ କରିଥାଉଁ; କିନ୍ତୁ ସେହି ପବିତ୍ର ଯଜ୍ଞକୁଣ୍ଡରେ ବିଧିବିଧାନପୂର୍ବକ ପୂର୍ଣ୍ଣାହୁତି ଦିଆଯିବା ପୂର୍ବରୁ ଦେବ-ଦାନବଙ୍କ ମଧ୍ୟରେ ଯୁଦ୍ଧର ଦାବାନଳ ଲେଲିହାନ ଶିଖା ମେଲି ପ୍ରଜ୍ୱଳିତ ହୋଇଉଠିଲା। ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ସଂଜୀବନୀ ବିଦ୍ୟାର ଅଧିକାରୀ ହୋଇଥିବା ସମ୍ବାଦ ଆମେ ଏଇଠି ଥିବାବେଳେ ଶୁଣିଥିଲେ। ସେହି ବିଦ୍ୟାବଳରେ ଯୁଦ୍ଧରେ ନିହତ ଅସୁରମାନଙ୍କୁ ସେ ବଞ୍ଚାଇପାରିଲେ। ତେଣୁ 'ନିଶ୍ଚିତ ପରାଜୟ' ବୋଲି ଜାଣି ଦେବତାମାନେ ନିରାଶ ହୋଇଯାଇଛନ୍ତି। ଏବେ କ'ଣ ଉପାୟ ସ୍ଥିର କରାଯିବ, କେହି ଚିନ୍ତା କରିପାରୁନାହାନ୍ତି।

"ମୁଁ ସବୁବେଳେ ଯୁଦ୍ଧକୁ ନିତାନ୍ତ ଘୃଣା ଚକ୍ଷୁରେ ଦେଖେ; ସେ ଯୁଦ୍ଧ ହୁଏତ ଦୁଇ ବ୍ୟକ୍ତି, ଦୁଇ ଦଳ, ଦୁଇ ଜାତି କିମ୍ବା ଦୁଇଟି ଶକ୍ତି ମଧ୍ୟରେ ହୋଇପାରେ। ଆଦିଶକ୍ତି ଦ୍ୱାରା ସୃଷ୍ଟ ଏହି ସମୃଦ୍ଧ ତଥା ସୁନ୍ଦର ସୃଷ୍ଟିରେ ସମସ୍ତେ କ'ଣ ସୁଖରେ ରହିପାରବେ ନାହିଁ? ମୋ ପରି ଗୋଟିଏ ଯାଯାବରର ଏହାହିଁ ହେଉଛି ପ୍ରଶ୍ନ।

ମୁଁ ଜାଣେନା, ମୋର ଏ ସ୍ୱପ୍ନ ସତେ କ'ଣ କେବେ ସତ୍ୟରେ ପରିଣତ ହେବ? ଅବଶ୍ୟ ଆଜି ଏ ଧରଣର ଚିନ୍ତା, ପ୍ରକୃତରେ ପବନକୁ ଲୁଗାପାତି ଧରିବାରେ ପରିଣତ ହୋଇଛି।

"ଏହା ଅବଶ୍ୟ ସତ୍ୟ ଯେ, ଏଥର ଯୁଦ୍ଧରେ ଦେବତାମାନେ ନିଶ୍ଚିତ ଭାବରେ ପରାଜୟ ବରଣକରିବେ। ଆତ୍ମୀୟ-ସ୍ୱଜନମାନଙ୍କ ପରାଜୟ ନିଜ ଆଖିରେ ଦେଖିବା ପ୍ରକୃତରେ କଷ୍ଟଦାୟକ ନୁହେଁ କି? ଏ ପରାଜୟକୁ କୌଣସିମତେ ଟାଳିଦେବା ନିଜର କର୍ତ୍ତବ୍ୟ ବୋଲି ଭାବିଲି। ସାରା ରାତି ଏଇ ପତ୍ରକୁଡ଼ିଆ ଦ୍ୱାରରେ ଆକାଶରେ ଦୀପ୍ତ ନକ୍ଷତ୍ରମାନଙ୍କୁ ଚାହିଁଚାହିଁ କଟାଇଦେଲି, ତଥାପି ମୋ ମନର ଅନ୍ଧକାର ଦୂରହେଲାନାହିଁ। ମନର ଏପରି ଅସ୍ଥିରତା ସମୟରେ, କ'ଣ କହିବି, ତୁମ କଥା ତୁହାଇ ତୁହାଇ ମନେପଡ଼ିଲା। ଶେଷରେ ସିନ୍ଦୂରାଫାଟିଲାବେଳକୁ ମୋ ମନରେ ଏକ କଳ୍ପନା ଜାଗିଉଠିଲା... ନା, ନା... କଳ୍ପନା ଠିକ୍ ନୁହେଁ ବିଧିବଦ୍ଧ ଧାରଣା ପ୍ରସ୍ଫୁରିତ ହେଲା। ପ୍ରକୃତରେ ମୁଁ ସେହିଦିନ ଅନୁଭବ କଲି କବିର କାବ୍ୟସୃଷ୍ଟି କିପରି ହୁଏ।

"ଦେବତାମାନେ ଦୈତ୍ୟଙ୍କ ପରି ସଂଜୀବନୀ ବିଦ୍ୟା ପାଇଗଲେ ଏ ତୀବ୍ର ପରାଜୟରୁ କୌଣସିମତେ ରକ୍ଷାମିଳିବ; କିନ୍ତୁ ଏହି ତ୍ରିଲୋକ ମଧ୍ୟରେ ଏହି ବିଦ୍ୟାର ଏକମାତ୍ର ଅଧିକାରୀ ହେଉଛନ୍ତି ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ। କେହି ଜଣେ ଶିଷ୍ୟ ହୋଇ କେବଳ ତାଙ୍କଠାରୁ ବିଦ୍ୟା ହାସଲ କରିପାରେ। ଦେବତାମାନଙ୍କ ମଧ୍ୟରେ ଏପରି ସାହସ କରିବାଭଳି ବୋଧହୁଏ କେହି ନାହାନ୍ତି; ଏଣୁ ବୃଷପର୍ବାଙ୍କ ରାଜ୍ୟରେ ରହି ଦୈତ୍ୟଗୁରୁଙ୍କଠାରୁ ବିଦ୍ୟାଶିକ୍ଷା କରିବାକୁ ମୁଁ ମନେମନେ ନିଶ୍ଚୟ କରିନେଲି। ଅବଶ୍ୟ ସେଠାରେ କ'ଣ ଘଟିବ ମୁଁ ଏବେ କହିପାରିବି ନାହିଁ; କିନ୍ତୁ ମୋର ବିଶ୍ୱାସ, ଉଦ୍ଦେଶ୍ୟ ମୋର ସିଦ୍ଧ ହେବ। ହୋଇପାରେ, ମୋର ଉଦ୍ଦେଶ୍ୟ ପୂରଣଲାଗି ମୋତେ ଆତ୍ମବଳି ଦେବାକୁ ପଡ଼ିବା ଅସମ୍ଭବ ନୁହେଁ।

"ମହର୍ଷି ଅଙ୍ଗିରସ ମୋ ବିଚାର ସହିତ ଏକମତ ହୋଇ ମୋତେ ଆଶୀର୍ବାଦ ପ୍ରଦାନ କରିଛନ୍ତି। ତୁମର ମନେଥିବ, ମୁଁ କହିଛି ମହର୍ଷି ଆମ କୁଳର ଆଚାର୍ଯ୍ୟ। ଆଶିଷ ଦେବା ସମୟରେ ସେ କହିଲେ – 'ଜନ୍ମତଃ ତୁମେ ବ୍ରାହ୍ମଣ; ଅଧ୍ୟୟନ, ଅଧ୍ୟାପନ, ପଠନ-ପାଠନ, ଯାଗ-ଯଜ୍ଞ ତୁମର ଧର୍ମ। ତୁମେ ବିଦ୍ୟାଧ୍ୟୟନ କରିବାକୁ ଯାଉଛ, ଏହା ତୁମର କର୍ତ୍ତବ୍ୟ; କିନ୍ତୁ ତୁମେ ଯେଉଁ ସାହସ ବାନ୍ଧି ଏହି ଅସାଧ୍ୟ ସାଧନ ପଥରେ ବ୍ରତୀ ହୋଇଛ, ଏହା ନିଶ୍ଚିତ ଭାବରେ କୌଣସି କ୍ଷତ୍ରିୟ ପକ୍ଷରେ ଶୋଭାପାଇଥା'ନ୍ତା।' ମୁଁ ସଙ୍ଗେସଙ୍ଗେ ଉତ୍ତର ଦେଇ କହିଲି, 'ଆଜି ଯୁବରାଜ ଯଯାତି ଏଠାରେ ଥିଲେ ମୁଁ ତାଙ୍କୁ ସଙ୍ଗରେ ନେଇ ରାକ୍ଷସ-ରାଜ୍ୟକୁ ଯାଇଥାନ୍ତି; ବିଦ୍ୟାଲାଭର ଦାୟିତ୍ୱ ନିଜ ମୁଣ୍ଡରେ ବହନକରି, ସୁରକ୍ଷାର ଭାର ତାଙ୍କ ବୀରତ୍ୱ ଉପରେ ଅର୍ପଣ କରିଦେଇଥା'ନ୍ତି।

"ଅଙ୍ଗିରସଙ୍କ ସମ୍ମୁଖରେ ଅବଶ୍ୟ କହିନାହିଁ; କିନ୍ତୁ ତାଙ୍କ ଉକ୍ତିରୁ ମୋ ମନରେ ସ୍ପଷ୍ଟ ଧାରଣା ହେଲା, ପ୍ରତ୍ୟେକ ବର୍ଣ୍ଣ ବା ଜାତି ଅନ୍ୟ ଜାତି ବା ବର୍ଣ୍ଣର ଗୁଣ ହାସଲ କରିନେବାରେ କ୍ଷତି କ'ଣ? ବହୁ ନଦୀର ଜଳ ଏକତ୍ରିତ କରି ଆମେ

ଇଷ୍ଟଦେବଙ୍କର ଅଭିଷେକ ସମ୍ପନ୍ନ କରୁ ନଥାଇଁକି? ଯୁବରାଜ, ଶାନ୍ତିଯଜ୍ଞ ଅବସରରେ ଆମେ ପରସ୍ପର ମିଳିତହେଲେ ଏବଂ ସମବୟସର ହୋଇଥିବାରୁ ଦୁହିଁଙ୍କର ମିତ୍ରତା ସମ୍ଭବ ହେଲା। ଆପଣଙ୍କର ସ୍ନେହମୟୀ ସ୍ମୃତି ମୋ ମନରେ ସଦାସର୍ବଦା ଜାଗ୍ରତ ରହିଥିବ। ସଂଜୀବନୀବିଦ୍ୟା ଲାଭକରି କୁଶଳରେ ଯଦି ମୁଁ ଫେରିଆସେ, ତା'ହେଲେ କୌଣସି ନା କୌଣସିଠାରେ ଆମର ସାକ୍ଷାତ୍ ନିଶ୍ଚିତ ଭାବରେ ହେବ।

''ଗ୍ରହର ବ୍ୟୁତ୍ପାତ୍ ବେଳେବେଳେ ଶୀଘ୍ର ଅପସରିଯାଏ, ଆଉ କେବେ କେବେ ଅନେକଦିନ ଲାଗେ। ଆମେ ପୁଣି କେବେ ମିଶିପାରିବା, ମୁଁ ଅବଶ୍ୟ ଆଜି କହିପାରୁନି; କିନ୍ତୁ ଆମର ପୁନର୍ମିଳନ ନିଶ୍ଚିତଭାବେ ହେବ। ସେତେବେଳେ ଧର୍ମ, ନ୍ୟାୟ ଦୁନିଆର ମଙ୍ଗଳକାରୀ ଏବଂ ପ୍ରଜାମାନଙ୍କର ରକ୍ଷକ ରାଜାଙ୍କୁ ମିତ୍ରରୂପେ ପାଇ ମୁଁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିନେବି। ଆଜି କିନ୍ତୁ ମୁଁ ସୁଖ-ସ୍ୱପ୍ନର ଉନ୍ମାଦନାରେ ମତ୍ତ ହୋଇଉଠିଛି। ଆଉ କ'ଣ ଲେଖିବି ବନ୍ଧୁ, ହୃଦୟର ଭାବନା ଖୋଳିବସିଲେ ବେଦ ମଧ୍ୟ ଅଣ୍ଟିବନାହିଁ। ଆଚାର୍ଯ୍ୟ ମହୋଦୟ ତୁମକୁ ଅନେକ ଶୁଭାଶିଷ ପଠାଇଛନ୍ତି। ଭଗବାନ୍ ଭବାନୀପତିଙ୍କଠାରେ ଏକାନ୍ତ ପ୍ରାର୍ଥନା; ମହାରାଜ ନହୁଷ ଶୀଘ୍ର ଆରୋଗ୍ୟ ଲାଭ କରନ୍ତୁ। ହଁ, ଆଉ ଗୋଟିଏ କଥା ଲେଖିବାକୁ ଭୁଲିଯାଉଛି। ସେହି ଛୋଟ ଝିଅଟି, ଯେ ଆମ ଦୁହିଁଙ୍କ ମଧ୍ୟରୁ ଫୁଲଟି କାହାକୁ ଦେବ ବୋଲି ଅପ୍ରତିଭ ହୋଇଉଠିଥିଲା; ମୁଁ ଆସିବା ଦିନ ସେ ଭୋ' ଭୋ' କରି କାନ୍ଦିପକାଇଲା। ତା' ଲତାରେ ଏବେ ଫୁଲ ଲଦିହୋଇଯାଇଛି। ସେ ବିଚାରୀ ବିଶେଷ ଦୁଃଖିନୀ; ତାକୁ ଆଉ ପ୍ରଶଂସା କରିବ କିଏ? ମୁଁ ତାକୁ ବୁଝାଇଦେଇଛି; ଯୁବରାଜ ଯଯାତି ତୋ'ରି ପାଇଁ ଆଶ୍ରମକୁ ଆସିବେ; ସେ କେବଳ ଫୁଲକୁ ଦେଖି ତୋତେ ପ୍ରଶଂସା କରିବେନାହିଁ, ତୋ' ଫୁଲକୁ ଆଦରରେ ନେଇ ଶୁଙ୍ଘିବେ।''

କଚ୍‌ଦେବଙ୍କ ପତ୍ର ପାଠକରି ମୁଁ ସ୍ତବ୍ଧ ହୋଇ ବସିପଡ଼ିଲି। ସେ ଆତ୍ମପକ୍ଷ ସମ୍ପର୍ଥନରେ କଠୋର ବ୍ରତୀ ହୋଇପାରୁଛନ୍ତି; ଅଥଚ ପିତାଙ୍କୁ ମୃତ୍ୟୁଶଯ୍ୟାରେ ଦେଖି ସୁଦ୍ଧା ମୁଁ ସାରା ରାତି ସୁଖର ସନ୍ଧାନ...!

ପୁଷ୍ପର ସୃଷ୍ଟି କେବଳ ନୟନତୃପ୍ତି ପାଇଁ ନୁହେଁ। ସୁବାସିତ ପୁଷ୍ପକୁ ଦେଖି ଶୁଙ୍ଘିବାରେ ପୁଣି ପାପ କେଉଁଠି? ମୁକୁଳିକା ପରମ ସୁନ୍ଦରୀ, ତା'ର...।

ସତେ ମୁଁ କ'ଣ କିଛି ପାପ କରିପକାଇଲି? ପାପର କଳ୍ପନାରେ ମନ ଛଟପଟ ହେବାକୁ ଲାଗିଲା। ମହୁଫେଣାରୁ ମହୁ ନେବାବେଳେ ମାଛିମାନଙ୍କ ଆକ୍ରମଣରେ ବିବ୍ରତ ହେବାପରି, ମୁଁ ମନେ ମନେ ଅତ୍ୟନ୍ତ ଚିଡ଼ିଯାଇ କହିଲି, ''ମୁକୁଳିକା, ରଥ ପ୍ରସ୍ତୁତ କରିବା ଲାଗି କହିଦିଅ।''

—''ଆପଣ କ'ଣ ଏମିତି ଚାଲିଯିବେ? କୁଆଡ଼େ?''

—''ହଁ, ମୁଁ ନଗରକୁ ଯିବି। ପିତାମାତାଙ୍କ ଚରଣ ଦର୍ଶନ କରି, ତାଙ୍କ ପାଦଧୂଳି ମୁଣ୍ଡରେ ଲଗାଇ ଆସିବି।''

—''କିଛି ଟିକିଏ ଜଳଖିଆ ଖାଇ...।''

—''ମୋ କଥା ମଝିରେ କଥା କହିବାକୁ ତୁମକୁ କିଏ କହିଲା? ଦାସୀଠାରୁ

ଉପଦେଶ ଶୁଣିବା ଅଭ୍ୟାସ ଆମର ନାହିଁ। ଆଉ ଦେଖ, ସନ୍ଧ୍ୟାବେଳକୁ ମୁଁ ଏଠାକୁ ଫେରିବିନାହିଁ; ରାଜପ୍ରାସାଦରେ ରହିବି।''

—''କିନ୍ତୁ . . .''

—''କିନ୍ତୁ କ'ଣ ?''

—''ଯୁବରାଜ ସବୁବେଳେ ଏଇ ଆଶୋକବନରେ ରହି ପୂର୍ଣ୍ଣ ବିଶ୍ରାମ ନେବାଲାଗି ଅମାତ୍ୟ ଆମମାନଙ୍କୁ ସତର୍କ କରାଇଦେଇଛନ୍ତି। ଆପଣଙ୍କର ଯେପରି କୌଣସି ଅସୁବିଧା ନହୁଏ, ସେଥିଲାଗି ଆମକୁ କଠୋର ଭାବରେ କର୍ତ୍ତବ୍ୟ ପାଳନ ଲାଗି ଆଦେଶ ଦିଆଯାଇଛି। ତେଣୁ ଆପଣଙ୍କ ମନ ପ୍ରସନ୍ନ . . .।''

—''ଆଉ . . . ସବୁ ଶୁଣିଲି।''

—''ତା'ହେଲେ . . . ସନ୍ଧ୍ୟାବେଳକୁ ବିଶ୍ରାମ ଲାଗି . . .।''

—''ମୁଁ ଆସିବି ନାହିଁ।''

× × × × × ×

ପିତାଙ୍କ ସ୍ୱାସ୍ଥ୍ୟର ତିଳେମାତ୍ର ଉନ୍ନତି ହେଲାନାହିଁ। ସେ ଦିନସାରା ଅଚେତ ହୋଇ ପଡ଼ିରହୁଥିଲେ। ରାତି ହେବାମାତ୍ରକେ ବାତର ପ୍ରକୋପରୁ ଏଣୁତେଣୁ ବକାବକି କରୁଥିଲେ। କେବେ କେବେ ଅବଶ୍ୟ ପ୍ରାସଙ୍ଗିକ କଥା କହୁଥିଲେ; କିନ୍ତୁ ଅଧିକାଂଶ ସମୟରେ ଏଣୁତେଣୁ ଗପିହେଉଥିଲେ। ମୁଁ ତାଙ୍କ କକ୍ଷରେ ପ୍ରବେଶ କରି ଚରଣ ସ୍ପର୍ଶ କରିବାପରେ ମାଆଙ୍କ ମହଲକୁ ଗଲି। ମାଆ ଦେବାଳୟର ସ୍ୱର୍ଣ୍ଣମୂର୍ତ୍ତି ଆଗରେ ବସି ପ୍ରାର୍ଥନା କରୁଥିଲେ। ଯା' ମଧ୍ୟରେ ମାଆ ଖୁବ୍ ଦୁର୍ବଳ ହୋଇଯାଇଥିଲେ। ତାଙ୍କର ଅବସ୍ଥା ଦେଖି ମୁଁ ଧୈର୍ଯ୍ୟ ଧରିପାରିଲିନାହିଁ। ମୁଁ ଉଦାସ ମନରେ ତାଙ୍କ ପାଖରେ ବସିପଡ଼ିଲି। ମାଆ ଧୀରେ ମୋ ପିଠିରେ ହାତ ବୁଲାଇବାକୁ ଲାଗିଲେ। ଆହା . . . କି ସୁଖଦ ସେ ବାତ୍ସଲ୍ୟମମତାପୂର୍ଣ୍ଣ ସ୍ପର୍ଶ !

ଦେବାଳୟର ବିଗ୍ରହ ଓ ମାଆଙ୍କ କରୁଣାମୟୀ ମୂର୍ତ୍ତି ଦେଖିବାମାତ୍ରେ ମୋ ମନର ଆକୁଳତା ଆହୁରି ବଢ଼ିଗଲା। ଅଜାଣତରେ ମୋ ଆଖି ଆଗରେ ଭାସିଉଠିଲା ଗତ ରାତ୍ରିର ସ୍ମୃତି। ମୋ' ଦୃଷ୍ଟିରେ ତାହା ଥିଲା ପାପ। ଯଦି ପାପ ତା'ହେଲେ ମାଆ ଓ ପରମାତ୍ମାଙ୍କ ଆଗରେ ପ୍ରକାଶ କରିଦେଲେ ନିଶ୍ଚୟ ମୋ ମନକୁ ଶାନ୍ତି ମିଳିବ। ମାଆଙ୍କ ଆଡ଼କୁ ପଲକ ଉଠାଇ ଚାହିଁବାଲାଗି ମୋର ସାହସ ହେଲାନାହିଁ। ମୋ ମୁହଁ ତାଙ୍କ ଆଡ଼କୁ ବୁଲାଇନେଇ ସେ ପଚାରିଲେ— ''ଯଯୁ, ତୁ ମୋତେ କ'ଣ ଲୁଚାଉଛୁ ନିଶ୍ଚୟ।''

ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଗଲି। ମାଆଙ୍କୁ କ'ଣ କହିବି ? କିପରି କହିବି ? ମୁଁ ମୁହଁ ଖୋଲି କିଛି କହିବାକୁ ପ୍ରସ୍ତୁତ ହେଲାମାତ୍ରେ ସେ କହିଉଠିଲେ— ''ବାପା ଓ ମୋ ଚିନ୍ତାରେ ତୁ ଆଶୋକବନରେ ସାରାରାତି ନିଶ୍ଚୟ ବ୍ୟାକୁଳ ହୋଇଛୁ। ଏତେ ଚିନ୍ତାକଲେ ଚଳିବ ବାପା ! ପ୍ରତ୍ୟେକ ବିଷୟରେ ତୁ ଚିନ୍ତାକଲେ କିପରି ହେବ ? ଚିନ୍ତା କରିବାଲାଗି ବଡ଼ମାନେ ଅଛନ୍ତି। ଆରେ ପାଗଳା, ଚିନ୍ତା କାହାକୁ

ଛାଡ଼ିଛି କହିଲୁ ? କାଲି ପୁରାଣରେ ଶୁଣିଛି— ଭଗବାନ ଶଙ୍କର ହଳାହଳ ପାନ କରିବା ସମୟରେ ମାଆ ଗୌରୀ ମଧ୍ୟ କଇଁକଇଁ ହୋଇ କାନ୍ଦିଉଠିଥିଲେ।''

''କିନ୍ତୁ... ମା' ...''

''ମୁଁ ତୋର କିନ୍ତୁ-ଫିନ୍ତୁ କିଛି ଶୁଣିବି ନାହିଁ। ତୁ ପାଗଳଙ୍କ ପରି କାମ କରିବା ଛାଡ଼ିଦେ। ସାରାଦିନ ନୃତ୍ୟ ସଙ୍ଗୀତ କାବ୍ୟଚର୍ଚ୍ଚାରେ ମନକୁ ଭୁଲାଇ ରଖ; ଏପରି ହେଲେ ଚଳିବ ନାହିଁ।''

ସେହି ସମୟରେ ଅମାତ୍ୟ ଆସି ପହଞ୍ଚିବାରୁ ମାଆ କହିଲେ, ''ବୋଧହୁଏ ଆଶୋକବନରେ ବ୍ୟବସ୍ଥା ସେତେ କିଛି...'' ଅମାତ୍ୟ ମାଆଙ୍କ କଥା ମଝିରୁ କହିଲେ, ''ମହାରାଣି ! ମୁଁ ଅଶୋକବନରେ ଏତେ ସୁନ୍ଦର ବ୍ୟବସ୍ଥା ଖଞ୍ଜିଦେଇଛି ଯେ, କୌଣସି ପ୍ରକାର ଅସୁବିଧା ଅନୁଭୂତ ହେବନାହିଁ। ମୁକୁଳିକା ନାମ୍ନୀ ଯେଉଁ ନୂଆ ଦାସୀଟି ସେଠାରେ ଅଛି ସେ ଖୁବ୍ ବୁଦ୍ଧିମତୀ; ତା ଦାୟିତ୍ୱରେ ମୁଁ ଯୁବରାଜଙ୍କର ସବୁ ଭାର...।''

ମୁଁ ମନ୍ତ୍ରୀଙ୍କ କଥାରେ ସ୍ତମ୍ଭିତ ହୋଇଗଲି। ଭାବିଲି— 'କାଲି ରାତିରେ ଯାହା ସବୁ ଘଟିଥିଲା ସେଥିରେ କ'ଣ ଅମାତ୍ୟଙ୍କର ପରାମର୍ଶ ରହିଛି ? ମୋ ମନର ପରିବର୍ତ୍ତନ ଆଣିବାଲାଗି ତା' କ'ଣ ଅପରିହାର୍ଯ୍ୟ ? ତା'ହେଲେ ପାପ ରହିଲା କେଉଁଠି ? ପ୍ରକୃତରେ ଯଦି ଏପରି ପରାମର୍ଶ ସେ ପାଇନଥା'ନ୍ତା, ତେବେ ମୁକୁଳିକା ଗୋଟିଏ ସାମାନ୍ୟ ଦାସୀ, ଏତେ ସାହସ କରିଥା'ନ୍ତା କିପରି ?'

ମାଆ ସନ୍ତୋଷ ପ୍ରକାଶ କରି କହିଲେ— ''ଆପଣ ନିଶ୍ଚୟ ସେଠାରେ ଭଲ ବ୍ୟବସ୍ଥା କରିଥିବେ; କିନ୍ତୁ ଯଯୁର ମନ ସେଥିରେ ବୁଝିଲେ ତ !'' ଟିକିଏ ହସିଦେଇ ପୁଣି ମାଆ କହିଲେ— ''ଆପଣଙ୍କୁ କ'ଣ ପୁଣି ଥରେ ସ୍ମରଣ କରାଇଦେବାକୁ ପଡ଼ିବ ଯେ, ଏ ଘରର ଲୋକଙ୍କୁ ଇନ୍ଦ୍ରଭୁବନରେ ମଧ୍ୟ ସୁଖପାଇବାରେ ତର ସହିଲାନି। ମୁଁ ଭାବୁଛି— ଦିନବେଳେ ସଙ୍ଗୀତ, ସାହିତ୍ୟ ଆଦି ଆଲୋଚନାର ବ୍ୟବସ୍ଥା କରାଇଦେଲେ ଭଲହୁଅନ୍ତା !''

''ଆମ ରାଜକବିଙ୍କ ଦ୍ୱିତୀୟ ପୁତ୍ର ମାଧବ ବଡ଼ ରସିକ ଏବଂ ମଜାଳିଆ ପିଲାଟେ। ସେ ସାରାଦିନ ଯୁବରାଜଙ୍କ ସେବାରେ ରହିବାଲାଗି ମୁଁ ଡକାଇଦେଉଛି।''

ମୁହଁରେ ଟିକିଏ ହସ ଖେଳାଇ ମୁଁ କହିଲି, ''ଆପଣ ପ୍ରଥମେ ମାଧବକୁ କହନ୍ତୁ, ସେ ମୋତେ କୌଣସି ଜଣେ ବିଦ୍ୱାନ୍‌ଙ୍କ ପାଖକୁ ନେଇଚାଲୁ। ଜନ୍ମ ମୃତ୍ୟୁ ସମ୍ବନ୍ଧରେ ମୋ ମନରେ ଉଠୁଥିବା କେତେକ ଗୂଢ଼ ପ୍ରଶ୍ନର ଉତ୍ତର ମୁଁ ପାଇବାକୁ ଚାହେଁ।''

× × × × ×

ମାଧବ ମୋତେ ଜଣେ ପଣ୍ଡିତଙ୍କ ଘରକୁ ନେଇଗଲା। ବାଟରେ ତାଙ୍କ ସମ୍ବନ୍ଧରେ ପ୍ରଚଳିତ ଅନେକ ଶୁଣାକଥା ମୋତେ କହି କହି ଚାଲିଲା— ''ଅମାବାସ୍ୟା ଓ ପୂର୍ଣ୍ଣିମା ଦିନ କେବଳ ପଣ୍ଡିତ ମହାଶୟ ତାଙ୍କ ପରିବାରର ସମସ୍ତଙ୍କ ସହିତ ବସି ଭୋଜନକରନ୍ତି; କିନ୍ତୁ ଅନ୍ୟଦିନେ ସେ ତାଙ୍କ ଅଧ୍ୟୟନ ଗୃହରେ ଏକ ଧ୍ୟାନରେ

ବସି ପୋଥିପତ୍ର ଖେଳାଉଥାଆନ୍ତି; ଖାଇଛନ୍ତି କି ନାହିଁ, କିମ୍ବା କେଉଁ ଦିନର ଖାଦ୍ୟ ସେ ଖାଉଛନ୍ତି, ସେ ଧାରଣା ତାଙ୍କର ଆଦୌ ରହେନାହିଁ। ତାଙ୍କୁ ଦେଖିଲେ ଜଣାପଡ଼ିବ, ସତେଯେପରି ଗୁହାବାସୀ କୌଣସି ଏକ ମହାତ୍ମା।

''ଥରେ ରାଜସଭାକୁ ଜଣେ ଜଟିଳ ସନ୍ନ୍ୟାସୀ ଆସିଥିଲେ। ପଣ୍ଡିତଜୀ ସେଠାରେ ମଧ୍ୟ ଉପସ୍ଥିତ ରହି ଆଗନ୍ତୁକମାନଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ। ସେ ସନ୍ନ୍ୟାସୀ ପରମାତ୍ମାଙ୍କ ସମ୍ବନ୍ଧରେ ପ୍ରଶ୍ନ କଲାରୁ, ପଣ୍ଡିତଜୀ କହିଲେ– 'ଆପଣ ଏ ଦାଢ଼ିନିଶ ଓ ଜଟା କେବେ କାଟିବେ କହିଲେ?' ସାଧୁ ଆଶ୍ଚର୍ଯ୍ୟ ହୋଇ କାରଣ ପଚାରନ୍ତେ, ସେ କହିଲେ– 'ଆପଣ ଏତିକି ବୁଝିପାରୁନାହାନ୍ତି? ଆପଣଙ୍କ ମୁଣ୍ଡର ଜଟାଜୁଟ ଭେଦକରି ଗୂଢ଼ ରହସ୍ୟ ମସ୍ତିଷ୍କରେ ପହଞ୍ଚି ପାରୁନାହିଁ; ମଝିରେ କେଉଁଠି ଜଟାସନ୍ଧିରେ ଅଟକିଯାଉଛି।'

''ପଶ୍ଚିମାଞ୍ଚଳରୁ ଆସିଥିବା ଅନ୍ୟ ଜଣେ ବିଦ୍ୱାନ୍ ପଣ୍ଡିତଜୀଙ୍କୁ ତାଙ୍କର ପିଲା କେତୋଟି ବୋଲି ପଚାରନ୍ତେ, ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ– 'ମୋତେ ଜଣାନାହିଁ, ମୋ ସ୍ତ୍ରୀଙ୍କୁ ପଚାରନ୍ତୁ। ଏସବୁ ବୃଥା କଥା ବୁଝିବାଲାଗି ମୋର ସମୟ ନାହିଁ।' କିନ୍ତୁ ପିଲାପିଲିଙ୍କ ନାମକରଣ ସମୟରେ ସ୍ତ୍ରୀଙ୍କ ସହିତ ପଣ୍ଡିତଜୀଙ୍କର ଖୁବ୍ ଚର୍ଚ୍ଚା ଚାଲେ; କାରଣ ସେ ତାଙ୍କ କନ୍ୟାମାନଙ୍କ ନାମ ମାୟା, ମୁକ୍ତି, ପ୍ରକୃତି, ତିତିକ୍ଷା ରଖିଛନ୍ତି ଏବଂ ଗୋଟିଏ ମାତ୍ର ପୁଅର ନାମ ଯମ ଦେଲାବେଳେ ତାଙ୍କ ପତ୍ନୀ ଆପତ୍ତି କଲାରୁ, ସେ କହିଲେ– 'ଯମ ମୃତ୍ୟୁର ଦେବତା ନୁହେଁ, ଯମ ଅର୍ଥାତ୍ ନିୟମ।' ପିଲାଟି ପାଞ୍ଚ ଛଅ ବର୍ଷର ହେବା ପରେ ସାଙ୍ଗପିଲାମାନେ ତାକୁ ଚିଡ଼ାଇ କହନ୍ତି– 'ଏ ଯମ, ତୋ' ମହିଷ କାହିଁ?' ସେ ପିଲାଟି ଥରେ ପଣ୍ଡିତଙ୍କ ଗୋଡ଼ତଳେ ପଡ଼ି କାନ୍ଦ କାନ୍ଦ ହୋଇ ତା' ନାଁ ବଦଳାଇଦେବାକୁ କହିଥିଲା।''

ମାଧବ ବନେଇ-ଚୂନେଇ ବେଶ୍ ଢଙ୍ଗରେ କଥା କହି ଜାଣିଥିଲେ। ତେଣୁ ତା' କଥା ଶୁଣି ମୁଁ ନହସି ରହିପାରିଲିନାହିଁ। ସାଧାରଣତଃ ବିଦ୍ୱାନ୍‌ମାନେ ବ୍ୟାବହାରିକ ଜ୍ଞାନରେ ସେତେ ଦକ୍ଷ ହୋଇନଥା'ନ୍ତି। ତେଣୁ ସେମାନଙ୍କ ବିଷୟରେ ଅତିରଞ୍ଜିତ କରି ଅନେକ କଥା କୁହାଯାଏ। ସେହିପରି ଏ ପଣ୍ଡିତଙ୍କ ସମ୍ବନ୍ଧରେ ଯେତେକଥା ମାଧବ ମୋତେ ଶୁଣାଇଥିଲା, ସେସବୁର ମୂଳରେ ସେଇ ଅତିରଞ୍ଜିତ କିମ୍ବଦନ୍ତୀ ନିଶ୍ଚୟ ଥିବ। ପଣ୍ଡିତଙ୍କ ସମ୍ବନ୍ଧୀୟ କାହାଣୀରେ ସତ୍ୟତା ଥାଉ ବା ନ ଥାଉ, ମାଧବର କହିବା ଭଙ୍ଗୀରେ ମୋତେ ବେଶ୍ ଆନନ୍ଦ ବୋଧହେଲା ଏବଂ ମୋର ଭାରାକ୍ରାନ୍ତ ମନ ଟିକିଏ ହାଲୁକା ହୋଇଗଲା।

ପଣ୍ଡିତଜୀଙ୍କ ଅଧ୍ୟୟନ ଗୃହ, ପୋଥିପତ୍ରର ଭଣ୍ଡାର ଦେଖିବାମାତ୍ରେ ମୋ' ମନରେ ଜଙ୍ଗଲରେ ଦେଖିଥିବା ଯତିର ଗୁମ୍ଫା ମନେପଡ଼ିଗଲା। ତାଙ୍କ ଘର ଦେଖି ମୁଁ ବେଶ୍ ବୁଝିପାରିଲି ଯେ, ତାହାହିଁ ଥିଲା ତାଙ୍କର ଦୁନିଆ। ସେ ସେହିଠାରେ ମୋତେ ସ୍ୱାଗତ ଜଣାଇଲେ। କୌଣସି ଖଣ୍ଡିଏ ଦୁର୍ଲଭ ପୋଥି ବାହାରକରି ମୋତେ ଦେଖାଇବା ସମୟରେ ସେ ବ୍ରହ୍ମାନନ୍ଦ ଅନୁଭବ କଲାପରି ତଲ୍ଲୀନ ହୋଇଯାଉଥିଲେ। ତାଙ୍କ ପାଣ୍ଡିତ୍ୟ ଆଗରେ ପ୍ରତ୍ୟେକ ବ୍ୟକ୍ତିର ମୁଣ୍ଡ ଲଇଁଯିବା ସ୍ୱାଭାବିକ। ସେ ପ୍ରଶ୍ନର

ଉତ୍ତର ଦେବାଲାଗି ଅନେକ ଦୃଷ୍ଟାନ୍ତପୂର୍ଣ୍ଣ ଶ୍ଳୋକ ପଢ଼ି ଶୁଣାଇଥିଲେହେଁ ମୁଁ ସେଥିରେ ସନ୍ତୁଷ୍ଟ ହୋଇପାରିଲିନାହିଁ। ମୃତ୍ୟୁ ସମ୍ବନ୍ଧରେ ମୋ ଜିଜ୍ଞାସା ଶୁଣି ସେ କହିଲେ– "ମୃତ୍ୟୁଠାରୁ କିଏ ରକ୍ଷା କରିପାରିବ? ପିନ୍ଧିବା ବସ୍ତ୍ରଟି ପୁରୁଣା ହୋଇଗଲେ ଲୋକେ ତାଙ୍କୁ ଫିଙ୍ଗି ନୂଆ ବସ୍ତ୍ର ଧାରଣ କରନ୍ତିନାହିଁ କି? ଠିକ୍ ସେହିପରି ଆତ୍ମା କିଛିଦିନପରେ ଗୋଟିଏ ଶରୀର ତ୍ୟାଗକରି ଆଉ ଗୋଟିଏ ଶରୀରରେ ଆଶ୍ରୟ ନେଉଛି।"

ମୁଁ କଥା ମଝିରେ କହିଲି, "ଯଦି ସମସ୍ତେ ବୃଦ୍ଧାବସ୍ଥାରେ ମୃତ୍ୟୁବରଣ କରୁଥାଆନ୍ତେ, ତାହାହେଲେ ଆପଣଙ୍କ ଯୁକ୍ତି ମୁଁ ମାନିନିଅନ୍ତି। ଆମେ ଦେଖୁଛୁ ବୃଦ୍ଧ ପିତାଙ୍କ ଆଖି ଆଗରେ ତରୁଣ ପୁତ୍ରର ମୃତ୍ୟୁ ଘଟୁଛି, ଏହାର କାରଣ କ'ଣ?"

ମୋତେ ସମର୍ଥନ କରି ମାଧବ ମଧ କହିଲା– "ସୁନ୍ଦରୀ ସ୍ୱାସ୍ଥ୍ୟବତୀ ତଥା କୋଡ଼ିଏ ବର୍ଷ ବୟସର ତରୁଣୀ ମୋ ଭାଉଜ ତିନିମାସର ଝିଅଟିଏ ଛାଡ଼ି ଚାଲିଗଲା। ଭଗବାନ୍‌ଙ୍କ ଦରବାରରେ ଏ' କି ନ୍ୟାୟ?"

ପଣ୍ଡିତ ମହାଶୟ ଟିକିଏ ତୀବ୍ର ଦୃଷ୍ଟିରେ ମାଧବଆଡ଼କୁ ଚାହିଁଲେ ଏବଂ ତା'ପରେ ମୋତେ ଲକ୍ଷ୍ୟକରି କହିଲେ, "ଯୁବରାଜ, ଆପଣ ଗୋଟିଏ କଥା ମନରେ ଧାରଣକରନ୍ତୁ, ସବୁ ପ୍ରଶ୍ନ ସମାଧାନ ହୋଇଯିବ।"

–"କ'ଣ କୁହନ୍ତୁ।"

–"ଏ ସବୁ କିଛି ମାୟା।"

–"ମାନେ . . . ?"

–"ଏ ସଂସାରରେ କେବଳ ଗୋଟିଏମାତ୍ର ସତ୍ୟ ରହିଛି।"

–"ସେ କ'ଣ?"

–"ସେ ହେଉଛି ବ୍ରହ୍ମ– ଏହି ବିଶ୍ୱର ମୂଳ ସ୍ଥିତି ଓ ଶକ୍ତି– ତଦ୍‌ବ୍ୟତୀତ ଅନ୍ୟ ସବୁକିଛି ମିଥ୍ୟା। ମାଧବ, ପଣ୍ଡିତ ଯୁବରାଜ– ଏସବୁ କେବଳ ମାତ୍ର ଆଭାସ; ପୋଥିପତ୍ର, ଘରଦ୍ୱାର ଏପରିକି ମୃତ୍ୟୁଭୟ; ସବୁ କିଛି ମିଥ୍ୟା।"

ତା'ହେଲେ କ'ଣ ମୋ ମନରେ ଜାତହୋଇଥିବା ମୃତ୍ୟୁର ଭୟ ମିଥ୍ୟା? ମୋ ମନରେ ଜାତହୋଇଥିବା ବଞ୍ଚିବାର ଆନନ୍ଦ ମଧ ମିଥ୍ୟା? ଆଉ ମଧ ଆଜି ସକାଳେ ମୋ' ମନରେ ପାପର ଯେଉଁ ଉଗ୍ରରୂପ ଜାତ ହୋଇଛି ତା' ବି ମିଥ୍ୟା? ଦେବ-ଦାନବ ସବୁ କିଛି ମିଥ୍ୟା? ତା'ହେଲେ ମହର୍ଷି ଅଙ୍ଗିରସ ଯେଉଁ ଶାନ୍ତିଯଜ୍ଞ ଆରମ୍ଭ କରିଥିଲେ, ତା' ଉଦ୍ଦେଶ୍ୟ କ'ଣ? କଚ ଦେବପକ୍ଷର ବିଜୟଲାଗି ଯେଉଁ ଦୁଃସାହସ କଲେ, ତା'ର ମହତ୍ତ୍ୱ କେଉଁଠି? ଆଖି ଆଗରେ ଦେଖାଯାଉଥିବା ଏ ଚରାଚର ସଂସାର ଏବଂ ମନରେ ଜାତହେଉଥିବା ସୁଖ ଦୁଃଖ ସବୁ ଯଦି ମାୟା, ସବୁ କିଛି ଯଦି କ୍ଷଣିକ ଆଭାସ, ତା'ହେଲେ ମହାରାଜା ନହୁଷଙ୍କୁ ମୃତ୍ୟୁଶଯ୍ୟାରେ ଦେଖି ମୋ ମନରେ ବ୍ୟାକୁଳତା ଜାତ ହେଉଛି କାହିଁକି? ଶରୀର ନଶ୍ୱରଶୀଳ, ଏହା ତ କେବେହେଲେ ମିଛ ନୁହେଁ। ସୁଖ-ଦୁଃଖର ଉତ୍କଟ ପ୍ରକାଶରେ ମିଥ୍ୟା କେଉଁଠି? ନା . . . ନା . . . ଏହା ଅସତ୍ୟ ନୁହେଁ; ମନର କ୍ଷୁଧା ଆଦୌ ଅସତ୍ୟ ନୁହେଁ। ମନ ମଧରେ ଜାତହେଉଥିବା ଦୁଃଖ ମଧ ମିଥ୍ୟା ନୁହେଁ। ନାନାପ୍ରକାର

ସୁମିଷ୍ଟ ଖାଦ୍ୟ ମଧ ମିଥ୍ୟା ହୋଇନପାରେ।

ପଣ୍ଡିତ ମହାଶୟ ଅନେକ ଶ୍ଳୋକ ଶୁଣାଇ ନିଜ କଥାର ସତ୍ୟତା ପ୍ରତିପାଦନ କରୁଥିଲେ; କିନ୍ତୁ ମନରେ ଜାତହୋଇଥିବା ପ୍ରବଳ ଜିଜ୍ଞାସା ଆଗରେ ସେଗୁଡ଼ିକ ନିତାନ୍ତ ଶୁଷ୍କ ପରି ଜଣାଗଲା। ପାପ, ପୁଣ୍ୟ, ପ୍ରେମବାସନା ଆଦି କେତେ କ'ଣ ପ୍ରଶ୍ନର ସମାଧାନ ଲାଗି ମୁଁ ତାଙ୍କ ପାଖକୁ ଯାଇଥିଲି; କିନ୍ତୁ ତାଙ୍କର ଉତ୍ତର ସବୁ କିଛି ମୋତେ ଅସାର ବୋଲି ମନେହେଲା।

ମାଧବ ମୋତେ ଅନେକ ଅନୁରୋଧ କଲା; ତେଣୁ ବାଧହୋଇ ତାଙ୍କ ସହିତ ଦ୍ୱିପ୍ରହର-ଭୋଜନ କରିବାକୁ ରାଜିହେଲି। ଭୋଜନ ପୂର୍ବରୁ ତଥା ପରେ ନାନାପ୍ରକାର ଗପସପ ହୋଇ ରାଜପ୍ରାସାଦକୁ ଫେରିବାଲାଗି ସ୍ଥିର କଲି। ମାଧବଙ୍କ ବଡ଼ଭାଇ ଗଳ୍ପ କବିତା ଆଦି ରଚନା କରିବାରେ ଖୁବ୍ ସୁନାମ ଅର୍ଜନ କରିଥିଲେ; ମୁଁ ମଧ ପିଲାଦିନେ ତାଙ୍କ ସୁନାମ ଶୁଣିଥିଲି। କଥା ପ୍ରସଙ୍ଗରେ ମୁଁ ତାଙ୍କ ସମ୍ବନ୍ଧରେ ପଚାରିଲି। ସେ ପତ୍ନୀଙ୍କର ବିୟୋଗ ପରେ ବିରକ୍ତ ହୋଇ ତୀର୍ଥଯାତ୍ରାରେ ଭ୍ରମଣ କରୁଛନ୍ତି ବୋଲି ମାଧବ ମୋତେ କହିଲା। ଏହା ଶୁଣିବାପରେ ମୋର ଧାରଣା ହେଲା— ଏବେ ପଣ୍ଡିତ ମହୋଦୟ ଯେଉଁସବୁ ଦାର୍ଶନିକ ତଥ୍ୟ ଆମକୁ ଶୁଣାଇଥିଲେ ତାହା ବାସ୍ତବ ଜଗତଠାରୁ ବହୁ ଦୂରରେ।

ଘରକୁ ଫେରିବା ବାଟରେ ମାଧବ ତା' ବଡ଼ଭାଇଙ୍କ ବିଷୟରେ କେତେ କଥା ଶୁଣାଇଲା; ସେଥିରୁ ଗୋଟିଏ ହେଲା— ସେ କିପରି ଏକାଦିନକେ କବିପାଲଟିଗଲେ। ତାହା ଅତ୍ୟନ୍ତ ଉପଭୋଗ୍ୟ ଥିଲା। ଥରେ ରାଜଧାନୀରେ କବି-ସମ୍ମେଳନ ହୋଇଥିଲା। ଦୂରଦୂରାନ୍ତରୁ ଅନେକ କବି କୋବିଦ ସେଥିରେ ଅଂଶ ଗ୍ରହଣ କରିଥିଲେ। ସେମାନଙ୍କ ମଧରେ ମାଧବର ଭାଇ ଥିଲେ ନିତାନ୍ତ ଅନାମଧେୟ। 'ଚନ୍ଦ୍ରମାରେ-କଳଙ୍କ' ସମ୍ବନ୍ଧରେ ନିଜନିଜର କବିତା ଶୁଣାଇବାଲାଗି ସମସ୍ତଙ୍କୁ କୁହାଗଲା। କବିମାନେ ନିଜନିଜର କବିତା ଶୁଣାଇ, ଚନ୍ଦ୍ରର କଳଙ୍କକୁ କମଳ ଉପରେ ବସିଥିବା ଭ୍ରମର, ହିମାଳୟର ଶୁଭ୍ର ଶିଖର ଉପରେ କୃଷ୍ଣବର୍ଣ୍ଣ ପାଷାଣଖଣ୍ଡ ଆଦି ବହୁ ପ୍ରକାରେ ତୁଳନା କଲେ। ପଞ୍ଚନଦରୁ ଆସିଥିବା ଜଣେ ରସିକ କବି ଚନ୍ଦ୍ରମାକୁ ସୁନ୍ଦରୀ ଯୁବତୀର ସ୍ତନମଣ୍ଡଳ ଓ କଳଙ୍କକୁ ବକ୍ଷୋଜର କୃଷ୍ଣବର୍ଣ୍ଣ 'ଚୁଚୁକ' ବୋଲି ତୁଳନା କରି କବିତା ପାଠକଲାରୁ ଶ୍ରୋତାଗଣ ତାଙ୍କ ଉପମାକୁ ଶ୍ରେଷ୍ଠ ବୋଲି ମତ ବ୍ୟକ୍ତକଲେ। ତେଣୁ ସମସ୍ତଙ୍କର ଧାରଣା ହେଲା— ସେହି ଶୃଙ୍ଗାରୀ କବିଙ୍କୁ ନିଶ୍ଚୟ ଶ୍ରେଷ୍ଠତ୍ୱର ପୁରସ୍କାର ମିଳିବ।

ଶେଷକୁ ମାଧବର ଭାଇ ଉଠିଲେ। ସେ ଚନ୍ଦ୍ରମା ଓ ତାର କଳଙ୍କକୁ ଏକ ନୂତନ ଛଟାରେ ଶ୍ରୋତାମାନଙ୍କ ସମ୍ମୁଖରେ ଉପସ୍ଥାପନ କଲେ। ତାଙ୍କ କବିତାରେ ସେ ବର୍ଣ୍ଣନା କଲେ— 'ପ୍ରକୃତିମାତା ଚନ୍ଦ୍ରରୂପକ ନିଜର ସ୍ନେହପାଳିତ ଶିଶୁର କପାଳରେ କଳଙ୍କରୂପକ ଗୋଟିଏ କସ୍ତୁରୀତିଳକ ଲଗାଇଦେଇଛନ୍ତି; ନୋହିଲେ ଜନସମାଜର କ୍ରୂରଦୃଷ୍ଟି ତାଙ୍କ ସୁନ୍ଦର ଶିଶୁଟିକୁ ରୁଗ୍ଣ କରିଦେବ।'

ତାଙ୍କ କବିତାଟିକୁ ସମସ୍ତେ ସାଦରେ ଗ୍ରହଣକଲେ। ଶୃଙ୍ଗାରରସ ଉପରେ ବାତ୍ସଲ୍ୟରସର ବିଜୟ ବେଶ୍ କୌତୂହଳ ସୃଷ୍ଟିକରିଥିଲା।

ମାଧବଙ୍କ ଘରର ଦ୍ୱାରପାଖରେ ତାଙ୍କର ପିତୃମାତୃହୀନ ଝିଅାରୀଟି ଛିଡ଼ାହୋଇ କକାଙ୍କୁ ଅପେକ୍ଷା କରିଥିଲା। ଗୋଟିଏ ସଖୀକଣ୍ଢେଇପରି ଗୋଲଗାଲ ପିଲାଟି। ପବନରେ ମୁଣ୍ଡର କେଶ୍ ଫୁରୁଫୁରୁ ହୋଇ ଉଡୁଥିଲା। ହୀରାପରି ଚକ୍ ଚକ୍ ଆଖି, କୋମଳ ଲାଲଟୁକୁଟୁକୁ ଓଠ, ସୁନ୍ଦର ଚିବୁକ, ବେଶ୍ ଆଡ଼ମ୍ବରରେ ଛିଡ଼ାହେବାର ଠାଣି, ସବୁ ମିଶି ବେଶ୍ ସୁନ୍ଦର ପ୍ରଜାପତିଟିଏ ପରି ଦେଖାଯାଉଥିଲା ପିଲାଟି। ମାଧବକୁ ଆସିବାର ଦେଖି ପ୍ରଜାପତି ଫୁର୍‌କରି ଉଡ଼ିଆସି ରଥ ପାଖରେ ଛିଡ଼ାହୋଇଗଲା। ସେ ମାଧବର ବେକରେ ଝୁଲିପଡ଼ି ଗେହ୍ଲେଇ ହୋଇ ମୋ ଆଡ଼କୁ ଚାହିଁ କହିଲା – ''ଏ କିଏ କକା ?''

–''ପ୍ରଥମେ ଏହାଙ୍କୁ ପ୍ରଣାମ କର, ତାରକା।''

–''ପନାମ କାଇଁକି କଲିବି, ଏ କନ ଭଗବାନ୍ ?''

–''ମାଆରେ, ଏ ପରା ଆମ ଯୁବରାଜ।''

–''ଯୁବଲାଜ କଅନ କକା ?''

ମାଧବ ବଡ଼ ଅଡୁଆରେ ପଡ଼ିଗଲା। ଯୁବରାଜଙ୍କୁ ବୁଝିବା ଭଳି କିଛି ଶବ୍ଦ କହିବାକୁ ପଡ଼ିବ। ଟିକିଏ ଭାବି ସେ କହିଲା – ''ଏ ରଥ, ଏଇ ଘୋଡ଼ା ସବୁ ୟା'ଙ୍କର। ଏଇଥିଲାଗି ଏହାଙ୍କୁ ଯୁବରାଜ କହନ୍ତି।''

ମୋ ଆଡ଼କୁ ଏକଲୟରେ ଚାହିଁ, କୁନି କୁନି ହାତ ଦୁଇଟି ଯୋଡ଼ି କହିଲା ତାରକା – ''ପନାମ ଯୁବରାଜ।''

ହାୟ, ମୁଁ ଭଲା ଚିତ୍ରକର ହୋଇଥାନ୍ତି – ଏ ପିଲାଟିର ସୁନ୍ଦର ଅକପଟ ମୂର୍ତ୍ତି, ସୁଢ଼ଳ ଚେହେରା, ସବୁକିଛି ଅବିକଳ ଅଙ୍କନ କରିନିଅନ୍ତି। ମୁଁ 'ନମସ୍ତେ' କହି ରଥରୁ ଓହ୍ଲାଇଆସି ତାରକାକୁ ଉଠାଇନେଲି କୋଳକୁ। ମୋ'ପରେ ମାଆଙ୍କର ଆଉ ସନ୍ତାନ ହୋଇ ନଥିଲା; ସେଥିପାଇଁ ଛୋଟ ପିଲାଙ୍କ ପ୍ରତି ମୋ ମନରେ ଅତୃପ୍ତ ବାସନା ରହିଥିଲା; ତେଣୁ ସେଇ ଅବସର ଆଜି ମିଳିଗଲା। କିନ୍ତୁ ମାଧବ ତାରକାକୁ ଓହ୍ଲାଇପଡ଼ିବାଲାଗି ବାରମ୍ବାର ଇସାରା ଦେଉଥିଲା; କିନ୍ତୁ ସେଆଡ଼କୁ ତା'ର ଦୃଷ୍ଟି ନଥିଲା। ସେ ମୋ ମୁହଁକୁ ଚାହିଁ କହୁଥିଲା – ''ଯୁବଲାଜ, ଆପନ ମତେ ଘୋଡ଼ା ଦେବେ ?''

–''କାହିଁକି ଭଲା କୁହ।''

–''ମୁଁ . . . ନା . . . ତା' ଉପରେ ବସି ବଉତ ଦୂଲ ଯିବି।''

–''କୁଆଡ଼େ ଯିବୁ ?''

–''ବୁଲିବାକୁ . . .''

–''ବୁଲିବାକୁ ଗଲେ ଘୋଡ଼ା କ'ଣ ଦରକାର ? ଗୋଟିଏ ଚଢ଼େଇ ଉପରେ ଗଲେ ଭଲ . . . ନା . . .!''

ଆମେ କଥାବର୍ତ୍ତା କରି କରି ବୈଠକଘରକୁ ଆସିଲୁ। ତାରକା ମୋ ପାଖରେ ସୁନାକଣ୍ଢେଇ ପରି ଲାଖିରହିଥିଲା। ମୁଁ ବସିଯିବାମାତ୍ରେ ସେ ମୋ ବେଶ ପୋଷାକ ତଥା ଅଳଙ୍କାରରେ ଖେଳୁ ଖେଳୁ କହିଲା – ''ଆପନଙ୍କ ଘୋଡ଼ାରେ ବସି ମୁଁ ଭଗବାନ୍‌ଙ୍କ ଘରକୁ ଯିବି।''

—"ଆରେ, ତୁ ଭଗବାନ୍‌ଙ୍କ ଘରକୁ ଯିବୁ କାହିଁକି ?"

—"ମୋ ମା' ଯାଇଛି ଯେ, କେତେ ଦିନ ହେଲାନି। ଆସୁନି, ମୁଁ ଯାଇ ଘିନିଆସିବି।"

ମୁଁ ମାଧବ ଆଡ଼କୁ ଚାହିଁଲି। ସେ ମଧ୍ୟ ଅସୁବିଧାରେ ପଡ଼ିଗଲା। ତାରକାର କଥାର ଧାରା କିପରି ବଦଳାଇଦିଆଯିବ କେହି ବୁଝିପାରିଲୁନାହିଁ। ତାରକା ମୋ କୋଳ ଉପରେ ମୁହଁ ଘଷି ଘଷି କହିଲା– "ମୁଁ ଆଜି ଆପନଙ୍କ ଘୋଡ଼ା ଛାଡ଼ିବିନି।"

—"କାହିଁକି ?"

—"ଆଜି ପରା ବାଆଗର।"

—"କାହା ବାହାଘର ଝିଅ ? ତୋ'ର ?"

—"ନାଁ . . . ନାଆଁ . . . ମୋ କନେଇ ବାଆଗର।"

—"କେବେ ?"

—"ପଥର ଦିନ।"

—"ବର କାହିଁ ?"

—"ବର . . . ?" ଦି'ହାତ ହଲେଇ, ମୁହଁଭଙ୍ଗିକରି କହିଲା ତାରକା– "ନାଇଁ . . . ନାଇଁ . . .।" ତା'ର ଏଇ ନାହିଁ କରିବା ଭଙ୍ଗିମା ବେଶ୍ ଲୋଭାଣିଆ ଥିଲା। ସତେ ଯେପରି, ଗୋଟିଏ ସୁନ୍ଦର ଚଢ଼େଇ ନିଜର ଡେଣା ମେଲାଇ ଦେହରୁ ବୁନ୍ଦା ବୁନ୍ଦା ପାଣି ଝାଡ଼ିଦେଉଛି।

ତାରକାର କଣ୍ଢେଇ ବାହାଘର ସ୍ଥିର ହୋଇଯାଇଥିଲେହେଁ ବର ଠିକଣା ହୋଇନଥିଲା; ଏହା ବାସ୍ତବିକ ଥିଲା ଏକ ମଜାର କଥା। ତାକୁ ଥଟ୍ଟା କରିବା ଛଳରେ ମୁଁ କହିଲି– "ମୁଁ ମୋ ଘୋଡ଼ା ତୋତେ ଦେଇଦେଉଛି, କିନ୍ତୁ ତୁ ବର ଯୋଗାଡ଼ କରିବୁ କେମିତି କହ ?" "ଆପଣ ସତକହୁଛନ୍ତି ବର ମୁଁ କୁଆଡୁ ଆଣିବି ?" ଏହା କହି ଚିନ୍ତା କରିବା ଭଙ୍ଗୀରେ ତାରକା ପାପୁଲି ଉପରେ ମୁହଁଟିକୁ ରଖି ମନେ ମନେ ଭାବିବାକୁ ଲାଗିଲା।

ମାଧବ ଭୋଜନର ବ୍ୟବସ୍ଥାଲାଗି ଭିତରକୁ ଯାଇଥିଲା। ଏହି ସମୟ ଭିତରେ ତାରକା ମନ ଖୋଲି ମୋ ସହିତ ଗପସପରେ ଲାଗିଗଲା। ତା'ର ଚିନ୍ତାପୂର୍ଣ୍ଣ ମୁଦ୍ରା ମୋତେ ଖୁବ୍ ଭଲଲାଗିଲା। ମୋର ମନହେଉଥିଲା– ମୁଁ ତାକୁ କୋଳକୁ ଉଠାଇନେଇ ମନଖୁସିରେ ତା' କପୋଳରେ କେତୋଟି ସରୁ ଚୁମା ଆଙ୍କିଦିଅନ୍ତି। କିନ୍ତୁ ତା'ର ଚିନ୍ତାପୂର୍ଣ୍ଣ ମୁଦ୍ରା ଭାଙ୍ଗିଦେବାଲାଗି ମୋର ଆଦୌ ମନ ବଳିଲା ନାହିଁ। କିଛି ସମୟ ପରେ ସେ ମୁହଁ ଉଠାଇ କହିଲା– "ଏ . . . ଯୁବରାଜ, ମୋ କଣ୍ଢେଇ ଲାଗି ଆପଣ ବର ହେବେ ?"

ସେହି ସମୟରେ ମାଧବ ଫେରିଆସିଲା। ମୁଁ ସେଠାରେ ନଥିଲେ ହୁଏତ ବାଳିକାର ଅଦ୍ଭୁତ ପ୍ରଶ୍ନଲାଗି ତାକୁ ଖୁବ୍ ମାଡ଼ ଖାଇବାକୁ ପଡ଼ିଥାନ୍ତା। ମୋ ଆଗରେ ସେ କିଛି କହିନପାରି ହାତ ମଳି ମଳି ରହିଗଲା। ସେ ହୁଏତ ମନେ ମନେ ଭାବିଥିବ– 'ହସ୍ତିନାପୁରର ଯୁବରାଜ; ଆଉ ସେ ହେବେ ତାରକାର ଟିକି କଣ୍ଢେଇ

ଲାଗି ବଗ।’ ମୁଁ ମଧ ମନେ ମନେ ସେହି ବିବାହର କଳ୍ପନା କରି ଆନନ୍ଦରେ ଅଧୀର ହୋଇପଡ଼ିଲି। କାହିଁ ସେ ଟିକି କଣ୍ଢେଇ, ଆଉ କେଉଁଠି ହସ୍ତିନାପୁରର ହୃଷ୍ଟପୁଷ୍ଟ ଯୁବରାଜ ! ମଝିରେ ଛିଡ଼ାହୋଇଛି ସାଧାରଣ ପରିଧେୟର ମାଧବ।

ତାରକା ସହିତ ହସଖୁସିରେ ମୋର ସମୟତକ କିପରି ଅନାୟାସରେ ବିତିଗଲା, ମୁଁ ଅଦୌ ଜାଣିପାରିଲିନାହିଁ। ଭୋଜନ ଶେଷକରି ମୁଁ ସାରଥିକୁ କହିଲି, ‘‘ମୁଁ ଏବେ ଏଇଠାରେ ଟିକିଏ ବିଶ୍ରାମ କରୁଛି, ଛାଇଲେଉଟାଣି ବେଳକୁ ତୁମେ ରଥନେଇ ଆସିବ। ମୁଁ ଆଜି ରାଜମହଲରେ ରାତ୍ରି କଟାଇବି। ଏବେ ତୁମେ ଯାଅ।’’

ବେଳ ତିନିପହରବେଳକୁ ମାଧବ ତା’ ଭାଇଙ୍କର କେତେଗୁଡ଼ିଏ କବିତା ପଢ଼ିବାକୁ ଦେଲା। ‘ସାଗରଦର୍ଶନ’ ନାମକ କବିତାଟି ମୁଁ ପଢ଼ିଲି ଆମୂଳଚୂଳ। ସେ କବିତାର ସାରାଂଶ ତଥା ଭାବଧାରା ମୋତେ ଖୁବ୍ ଆକୃଷ୍ଟ କଲା। ସାଗରର ଉତ୍ତୁଙ୍ଗ ଲହରୀ ରୂପକ ସହସ୍ର ଘୋଡ଼ାଯୁକ୍ତ ରଥରେ ବସି ବରୁଣଦେବତା ପୃଥିବୀ ଜୟ କରିବା ଲାଗି ଆସିଥିବାର କଳ୍ପନା ମୋତେ କମ୍ ଆନନ୍ଦ ଦେଲାନାହିଁ। ବିଶେଷତଃ ଫେନିଳ ଲହରୀର ତୀବ୍ର ଗତିକୁ ତୀବ୍ରବେଗରେ ଉଡୁଥିବା ଘୋଡ଼ାର ଆସବାବ ସହିତ ତୁଳନା କମ୍ କବିତ୍ୱଶକ୍ତିର ପରିଚାୟକ ନଥିଲା ? ସେହି କବିତାର ଗୋଟିଏ ପଦର ସାରାଂଶ ହେଉଛି– ‘ଏ ସମୁଦ୍ର, ତୁ ବୃଥାରେ ଗରଜି ମରୁଛୁ କାହିଁକି ? ବର୍ତ୍ତମାନ ଭାଗ୍ୟ ତୋର ଅନୁକୂଳ; ତେଣୁ ତୁ ପଦେ ପଦେ ଅଭିମାନରେ ପୂର୍ଣ୍ଣ ହୋଇ ପୃଥିବୀକୁ ପଦାକ୍ରାନ୍ତ କରି ଆଗେଇ ଚାଲିଛୁ। କିଛି ସମୟ ଅପେକ୍ଷା କର, ସେହି ଭାଗ୍ୟର ପ୍ରତିକ୍ରିୟା ତୁ ନିଜେ ଅନୁଭବ କରିବୁ। କେବଳ ସେତିକି ନୁହେଁ, ତୁ ବିଜୟ ଗର୍ବରେ ମତ୍ତହୋଇ ପୃଥିବୀର ଯେତିକି ଅଂଶ ଆକ୍ରାନ୍ତ କରି ଆଗେଇ ଯାଇଛୁ, ସେତିକି ହରାଇଦେଇ ମୁଣ୍ଡ ତଳକୁ କରି ଭଗ୍ନ-ହୃଦୟରେ ଫେରିବାକୁ ତୋତେ ଡର ସହିବ ନାହିଁ। ସତ୍‌ପୁରୁଷମାନେ ଭାଗ୍ୟର ଉଦୟରେ କେବେହେଲେ ଉନ୍ମତ୍ତ ହୁଅନ୍ତି ନାହିଁ କିମ୍ବା ବିପତ୍ତିରେ ଧୈର୍ଯ୍ୟ ହରାଇ ବସନ୍ତି ନାହିଁ; କାରଣ ସେମାନେ ଜାଣନ୍ତି ଭାଗ୍ୟର ବିଡ଼ମ୍ବନା ବଡ଼ ବିଚିତ୍ର।’’

ଭାଗ୍ୟର ଗତି ସମ୍ବନ୍ଧରେ କଳ୍ପନା କରିବା ସମୟରେ କବି କ’ଣ କେବେହେଲେ ନିଜର ପତ୍ନୀ-ବିୟୋଗର ପରବର୍ତ୍ତୀ ଅବସ୍ଥା ବିଷୟରେ ଚିନ୍ତା କରିଥିବେ ? ବର୍ତ୍ତମାନ ସେ କେଉଁଠି ଥିବେ ? କେଉଁ ଧର୍ମଶାଳା କିମ୍ବା ଗଙ୍ଗାକୂଳର କେଉଁ ମନ୍ଦିର ଦୁଆରେ ଆଶ୍ରୟ ନେଇଥିବେ। ତାଙ୍କ ମନରେ ଏବେ କି ପ୍ରକାର ବିଚାରଧାରା ଉଦିତ ହେଉଥିବ ? ସନ୍ଧ୍ୟାକାଳୀନ ପୃଥିବୀର ଛାୟାପଟଳ ଦେଖି ତାଙ୍କ ମନରେ ତାରକାର ଟିକି ଗୁଲୁଗୁଲିଆ ମୁହଁଟି ଭାସିଉଠୁନଥିବ କି ? ଘରର ଦୁଆର ମୁହଁରେ ଓଢ଼ଣା ଟାଣି ତୁଳସୀଚଉରା ମୂଳରେ ସଞ୍ଜବତି ଦେଉଥିବା ନାରୀ, ଦିନଯାକର କାମ ଶେଷକରି ଘର ଲେଉଟାଣି ପୁରୁଷମାନଙ୍କୁ ଦେଖି ତାଙ୍କ ମନରେ କ’ଣ ଭାବାନ୍ତର ଜାତ ହେଉନଥିଲା ?

ରାଜପ୍ରାସାଦରୁ ବାହାରିବା ପରଠାରୁ ମୋ ମନରେ ମୁକୁଳିକାର ଭାବନା ଜାତହୋଇନଥିଲା। ତା’ର କମନୀୟ କାନ୍ତି ହଠାତ୍ ମୋ ଆଖି ଆଗରେ ନାଚିଉଠିଲା। ମୋ ମନରୁ ମୁକୁଳିକାର ରମଣୀୟ ଛବି ପୋଛିଦେବାଲାଗି ମୁଁ କବିତାର ପାଣ୍ଡୁଲିପିଟିକୁ ପୃଷ୍ଠା ପରେ ପୃଷ୍ଠା ଲେଉଟାଇଚାଲିଲି। ଗୋଟିଏ ପୃଷ୍ଠାରେ ଲେଖାଥିଲା– ‘‘କେତେ

ଉନ୍ନତ ଏ କୈଳାସ ଶିଖର। ସର୍ବଦା ଆକାଶଚୁମ୍ବୀ ଏ ଶିଖରଦେଶରେ ଶିବଙ୍କ ଲଲାଟର ଭସ୍ମରାଶିପରି ଶୁଭ୍ର ହିମ ଆସ୍ତରଣ ଜମାଟ ବାନ୍ଧି ରହିଛି। କେଡ଼େ ଭୀମକାନ୍ତ ସ୍ଥଳୀ ନୁହେଁ ଏ ଶିଖରଦେଶ। ତଥାପି କିପରି ଏ ସ୍ଥାନକୁ ଦେବୀ ପାର୍ବତୀ ନିଜର ନିବାସ ସ୍ଥାନରୂପେ ବାଛିଲେ ? ନିଚ୍ଛେ ଭୋଳାଶଙ୍କର ମଧ ନିର୍ଦ୍ଧନ ଦିଗମ୍ବର; ଏଠାରେ ଫଳମୂଳ କିମ୍ବା ଅନ୍ୟ କୌଣସି ଖାଦ୍ୟ ମଧ୍ଯ ସହଜରେ ମିଳିବନାହିଁ; ତଥାପି ଶିବ-ଶିବା ଦାମ୍ପତ୍ୟ ଜୀବନ ବିତାଇବାଲାଗି ଅନ୍ୟ କୌଣସି ସ୍ଥାନ ବାଛିଲେ ନାହିଁ କାହିଁକି ?

ପ୍ରକୃତରେ ଉମା ଓ ମହେଶ ନିଜନିଜର ପ୍ରଣୟପୂର୍ତ୍ତି ଲାଗି ଯଥାର୍ଥରେ ଗୋଟିଏ ଏକାନ୍ତ ସ୍ଥାନ ଖୋଜୁଥିଲେ। ନିତାନ୍ତ ନିର୍ଜନ ସ୍ଥାନ ଖୋଜିବାର କାରଣ ହେଲା, ସେଠାକୁ କେହି ଆସିପାରିବେନାହିଁ। ସେ ଉମାଙ୍କ ସହିତ ମନପୂରାଇ ପଶାଖେଳରେ ମାତିଯିବେ, ଖେଳରେ ହାରିଯାଇ ସେ ଆସନ କମଣ୍ଡଳୁ ଆଦି ଉଠାଇ କ୍ରୋଧରେ ଏଣେତେଣେ ଫିଙ୍ଗିଦେବେ। ଏହା ଦେଖି ଦେବୀ ଉମା ପ୍ରଣୟ ଅଭିମାନରେ ରାଗିଯାଇ କହିବେ– 'ତୁମର କେତେବେଳେ ହେଲେ ଏ ଅଭ୍ୟାସ ଗଲାନାହିଁ। ନିଜ ମନୋମତ କାମ ହୋଇନପାରିଲେ ତୁମେ କାହିଁକି କ୍ରୋଧରେ ଅଗ୍ନିଶର୍ମା ହୋଇଯାଅ କହିଲ ?' ଛଳକୋପରେ ଅଭିମାନିନୀ ଉମାଙ୍କୁ ଶିବ ଭୁଜପାଶରେ ଭିଡ଼ିନେଇ...। ସେଥିପାଇଁ ସେ କୈଳାସ ପରି ଏକ ନିର୍ଜନ ତଥା ଏକାନ୍ତ ସ୍ଥାନକୁ ନିଜର ପ୍ରଣୟଲାଗି ବାଛିଥିଲେ।

"ଯଦି ଏହା ତୁମ ମନକୁ ପାଉନାହିଁ, ତେବେ ଶେଷଶାୟୀ ବିଷ୍ଣୁଙ୍କୁ ଯାଇ ପଚାର– ସେ କାହିଁକି ଅତଳ ସମୁଦ୍ରଗର୍ଭରେ ଶେଷନାଗ ଉପରେ ଶୟନ କରିଛନ୍ତି ? ତା'ର ଏକମାତ୍ର କାରଣ ହେଉଛି; ତାଙ୍କର ଏକାନ୍ତ ସୁଖରେ ଆଦୌ ବାଧା ସୃଷ୍ଟି ନହେଉ।" ଏ କବିତାଟି ପାଠ କରିସାରିବା ମାତ୍ରେ ମୁକୁଳିକାର ଭବ୍ୟ ତଥା ଆକର୍ଷକ ମୂର୍ତ୍ତି ପୂର୍ବାପେକ୍ଷା ଆହୁରି କମନୀୟ ଭଙ୍ଗୀରେ ମୋ ମାନସପଟଳରେ ଭାସିଉଠିଲା। ଅଶୋକବନ ଆଡ଼କୁ ମୋ ମନ ଖୁବ୍ ବେଗରେ ଓଟାରିହୋଇଗଲା। ସକାଳେ ବିଚାରୀ ମୁକୁଳିକା ଉପରେ ମୁଁ ମିଛଟାରେ ରାଗିଲି। ଯାହା କିଛି ଘଟିଥିଲା, ସେଥିରେ ତା'ର ଦୋଷ କେଉଁଠି ଥିଲା ? ସେ କ'ଣ ମୋ ଶେଯ ଉପରେ ଆପଣାଛାଏଁ...।

ନା... ମୁକୁଳିକା ବିଷୟରେ ସବୁବେଳେ ଏପରି ଭାବିବା ଠିକ୍ ନୁହେଁ। କାଲି ଯାହା ଘଟିଗଲା ତା' ପାପ ହୋଇନପାରେ; କିନ୍ତୁ ତା'ର ପୁନରାବୃତ୍ତି ଆଜି କେବଳ କାହିଁକି, କେବେହେଲେ ହେବା ଉଚିତ୍ ନୁହେଁ। ମୁଁ ପୁଣି କାବ୍ୟର ପାଣ୍ଡୁଲିପି ପଢ଼ିବାରେ ମନ ଲଗାଇଲି। ତା'ପରେ ଲେଖାଥିଲା– "ସ୍ତ୍ରୀ ପରି ବିଲକ୍ଷଣ ଦେବୀ ଆଉ କ'ଣ ସଂସାରରେ କେହି ମିଳିବେ ? ଯାହାଙ୍କର ଆଲିଙ୍ଗନ-ସୁଖ ପାଇଥିବା ଲୋକେ ସଂସାରରେ ପରାକ୍ରମଶାଳୀ ରୂପେ ଗଣ୍ୟ ହୁଅନ୍ତି, ସଂସାରର ବଡ଼ ବଡ଼ ବୀର ଓ କବିମାନଙ୍କ ଜୀବନୀ ଲକ୍ଷ୍ୟ କଲେ ଏହା ସ୍ପଷ୍ଟ ହୋଇଥାଏ; କିନ୍ତୁ ବିପରୀତ ଚିନ୍ତାରେ ମଧ କୁହାଯାଏ ଯେ, ସ୍ତ୍ରୀର ଭୁଜବନ୍ଧନକୁ ଏଡ଼ି ଜୀବନ ଶକ୍ତିଶୂନ୍ୟ ହୋଇଥାଏ। ଅବଶ୍ୟ ସାଧୁ ସନ୍ନ୍ୟାସୀ ଯୋଗୀ ମହାତ୍ମାଙ୍କ ସଂଖ୍ୟା ଏ ଦୁନିଆରେ କମ୍ ନୁହେଁ।"

ତା'ର ପରବର୍ତ୍ତୀ ପୃଷ୍ଠାଗୁଡ଼ିକ ପଢ଼ି ମୁଁ ଅତ୍ୟନ୍ତ ବିବ୍ରତ ହୋଇଗଲି– "ଏ ନାରୀ, ତୁମର ସଖୀ ଓ ଆତ୍ମୀୟସ୍ୱଜନମାନେ ଅନୁଭବ କରନ୍ତି ଯେ, ତୁମ ପ୍ରିୟତମ

ଅନେକ ଦିନ ପରେ ଘରକୁ ଫେରିଛନ୍ତି। ତେଣୁ ତାଙ୍କୁ ଦେଖିବାମାତ୍ରେ ତୁମେ ଲଜ୍ଜାରେ ଝାଉଁଳିପଡ଼ିଲ, ତୁମ ଗଣ୍ଡରେ ଲାଲିମା ଛାଇହୋଇଗଲା। କିନ୍ତୁ ଏ ଅରସିକ ଲୋକଗୁଡ଼ାକ ପ୍ରକୃତ କଥା କ'ଣ ଜାଣିବେ? ପ୍ରକୃତରେ ବହୁଦିନଧରି ତୁମେ ପ୍ରିୟତମଙ୍କ ଆଗମନକୁ ଅପେକ୍ଷା କରୁଥିଲ। ତାଙ୍କର ଆସିବା ବାଟକୁ ଏକଲୟରେ ଚାହିଁବସିଥିଲ। ରାତି ରାତି ଅନିଦ୍ରା ହୋଇ ତୁମେ ବିରହିଣୀ ସାଜିଥିଲ। ପବନର ପ୍ରବାହରେ ଦ୍ୱାର ଖଡ୍ ଖଡ୍ ହେଲେ ପ୍ରିୟତମ ଆସିଗଲେ ବୋଲି ଭାବି ତୁମେ ଧାଇଁଯାଉଥିଲ ଦୁଆରମୁହଁକୁ ଦେଖିବାପାଇଁ। ତା'ପରେ ତୁମେ ନିରାଶାରେ ଦୀର୍ଘ ନିଃଶ୍ୱାସ ତ୍ୟାଗକରି ବିଛଣାରେ ଲୋଟିପଡୁଥିଲ।

''ଶ୍ରାବଣର ମୂଷଳଧାରା ବର୍ଷା ସମୟରେ ତୁମେ ଭାବୁଥିଲ– 'ମୋ ପ୍ରିୟତମ ଏ ଦୁର୍ଦ୍ଦିନରେ ଥିବେ କେଉଁଠି? ଏଇ ବର୍ଷା ସମୟରେ ଯଦି ସେ କେଉଁଠି ବାଟଘାଟରେ ଥିବେ। ତେବେ ସେ ସମ୍ପୂର୍ଣ୍ଣ ଭିଜିଯାଇଥିବେ। ଏପରି ବିପଦ ସମୟରେ ମୁଁ ଯଦି ତାଙ୍କ ପାଖରେ ଥାଆନ୍ତି, ତେବେ ତାଙ୍କ ଆର୍ଦ୍ର ଦେହରେ ଜଡ଼ିଯାଇ ତାଙ୍କୁ ଆନନ୍ଦ ଦିଅନ୍ତି; ତାଙ୍କ ଶରୀରକୁ ଗରମ କରିଦିଅନ୍ତି। କିନ୍ତୁ ସେ ଏବେ ମୋ'ଠାରୁ ବହୁଦୂରରେ; ମୁଁ ତାଙ୍କୁ କିପରି ସାହାଯ୍ୟ କରିପାରିବି?'

''ହେ ବିରହିଣୀ ନାରୀ, ଏପରିଭାବରେ କେତେ ଉନ୍ନିଦ୍ର ରଜନୀ ତୁମେ ବିତାଇଛ; ସେଥିପାଇଁ ତୁମର ଆଖି ଲାଲ୍ ହୋଇଯାଇଛି। ଆଜି ପ୍ରିୟତମଙ୍କ ମିଳନରେ ଆଖିର ସେଇ ଲାଲିମା ଅଶ୍ରୁ ରୂପରେ ବହିଯାଇ ତୁମର ଗଣ୍ଡଦେଶକୁ ପ୍ଲାବିତ କରିଛି। ତୁମ ଆଖପାଖର ଲୋକେ ଅରସିକ, ପାଗଳ! ତେଣୁ ସେମାନେ ଅନ୍ୟପ୍ରକାର ଭାବୁଛନ୍ତି। ତୁମେ କ'ଣ ନବବଧୂ ହୋଇଛ ଯେ, ଲଜ୍ଜାରେ ତୁମର ଗଣ୍ଡଦେଶ ଅରୁଣାଭ ହୋଇଯାଇଛି?''

ଏହାର ପରପୃଷ୍ଠାଗୁଡ଼ିକରେ ଗୋଟିଏ 'ରଜନୀସ୍ତୋତ୍ର' ଲେଖାଥିଲା। ଏତେଗୁଡ଼ିଏ ବିଷୟ ପାଠକରିଥିଲେ ସୁଦ୍ଧା ସେଇଟି ନପଢ଼ି ମୁଁ ରହିପାରିଲିନାହିଁ– ''ମୁନିଋଷିମାନେ ପ୍ରାତଃକାଳୀନ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦାନକରି, ସେମାନଙ୍କ ବୁଦ୍ଧିକୁ ଆଲୋକିତ କରିବାଲାଗି ପ୍ରାର୍ଥନା କରନ୍ତି– ''ହେ ରଜନି! ତୁମକୁ କେହି ଅର୍ଘ୍ୟଦାନ କରେନାହିଁ। ଏଥିପାଇଁ ତୁମେ ଦୁଃଖରେ ମ୍ରିୟମାଣ ହୋଇଯାଉଛ। କିନ୍ତୁ ମୁଁ କହେ, ତୁମେ ପାଗଳିନୀ! ତୁମେ ଘରେ ଘରେ ଯାଇ ଲକ୍ଷ୍ୟ କର, ସୂର୍ଯ୍ୟଙ୍କ ଅପେକ୍ଷା ତୁମ ଭକ୍ତମାନଙ୍କ ସଂଖ୍ୟା ଅଧିକ। ତୁମର ଆଗମନରେ ପ୍ରଣୟୀ-ପ୍ରଣୟିନୀଙ୍କ ହୃଦୟକମଳ ବିକଶିଉଠୁଛି। ପ୍ରତ୍ୟେକକ୍ଷଣ ସେମାନଙ୍କୁ ଯୁଗ ଯୁଗ ପରି ବୋଧହେଉଛି। ତୁମେ ନିଜେ ଶୀତଳ ହୋଇଥିଲେହେଁ, ସେମାନଙ୍କ ହୃଦୟ ସନ୍ତାପିତ କରିଛ। ତୁମେ ଭାବୁଛ, ତୁମ ଆଗମନରେ ପୁଷ୍ପ ବିକଶିତ ହେଉନାହିଁ; କିନ୍ତୁ ତୁମେ ଲକ୍ଷ୍ୟ କରିଛ କି, ତୁମରି ଆଗମନରେ ତରୁଣ-ତରୁଣୀଙ୍କ ହୃଦୟବନାନୀରେ ଆଶାର ଶତଦଳ ବିକଶି ଉଠୁଛି? କୁହ ଭଲା, ତୁମର ଏ ସୌଭାଗ୍ୟ ଆଉ କିଏ ଲାଭକରିପାରିଛି?

''ସୂର୍ଯ୍ୟ କର୍ତ୍ତବ୍ୟର ସନ୍ଦେଶ ଶୁଣାଉଛନ୍ତି; ତୁମେ ଶୁଣାଉଛ ପ୍ରୀତିର ସଙ୍ଗୀତ। ସୂର୍ଯ୍ୟ ମଣିଷର ବୁଦ୍ଧିକୁ ଅଲୋକିତ କରୁଛି; କିନ୍ତୁ ତୁମେ ସେମାନଙ୍କ ହୃଦୟରେ

ମଧୁଚନ୍ଦ୍ରିକାର ଶୀତଳ କିରଣ ଭରିଦେଇଛ। ହେ ରଜନି! ତୁମେ ଜଗନ୍ମାତା! ତୁମେ ନଥିଲେ ମଣିଷ ହୃଦୟର କୋମଳତା ସୂର୍ଯ୍ୟତାପରେ ଦଗ୍ଧ ହୋଇଯାଆନ୍ତା; ସେଥିରୁ ରକ୍ଷା ପାଇବା ଲାଗି ଆତ୍ମହତ୍ୟା ବ୍ୟତୀତ ଅନ୍ୟ ପନ୍ଥା ନଥା'ନ୍ତା।''

ମାଧବଠାରୁ ବିଦାୟ ନେଇ ମୁଁ ଯାଇ ରଥରେ ବସିଲି। ସେତେବେଳେ ମୋର ମନ ଓ ଚିନ୍ତାରେ ଛାଇରହିଥିଲା କବିତାର ମାଦକତା; ଶରୀରର ପ୍ରତ୍ୟେକ କୋଣରେ ଜାଗିଥିଲା ଅତୃପ୍ତ ପିପାସା। ପବନରେ ଭାସିଆସୁଥିବା ସୁଗନ୍ଧ ପରି ରଜନୀର ସ୍ମୃତି ମୋତେ ଅସ୍ଥିର କରିଦେଉଥିଲା। ସାରଥି ରାଜପ୍ରାସାଦ ଆଡ଼କୁ ରଥ ମୁହାଁଇଲା ବେଳକୁ ମୁଁ ପାଟିକରି କହିଲି– ''ରଥ ବନ୍ଦକର ସାରଥି!!''

–''କ'ଣ ହେଲା ଯୁବରାଜ?'' –ବିସ୍ମିତ ହୋଇ ପଚାରିଲା ସାରଥି।

–''କୁଆଡ଼େ ଚାଲିଛ?''

–''ରାଜପ୍ରାସାଦ . . .''

–''କିଏ କହିଲା ତୁମକୁ ରଥ ସେଆଡ଼େ ନେବାଲାଗି . . .?''

–''ଆପଣ ନିଜେ ଦି'ପହରେ କହିଥିଲେ ଆଜ୍ଞା।''

–''ଓ . . .'' ସେତେବେଳକୁ ଯାଇ ମୋର ମନେପଡ଼ିଲା ମଧ୍ୟାହ୍ନର ସଂକଳ୍ପ। ମୁଁ ଅପେକ୍ଷାକୃତ ନରମ ସ୍ୱରରେ କହିଲି. ''ଅଶୋକବନକୁ ରଥ ନେଇଚାଲ। ଆଜି ମୁଣ୍ଡରେ ଖୁବ୍ ଯନ୍ତ୍ରଣା ହେଉଛି।''

ଆଶୋକବନର ପ୍ରାସାଦରେ ପହଞ୍ଚି ମୋର ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ। ମୋ ଥିବାବେଳେ ଯେପରି ସାଜସଜ୍ଜା ପୂରିରହିଥାଏ, ଠିକ୍ ସେହିପରି ଅଳଙ୍କରଣରେ ମୋ କକ୍ଷ ବିଭୂଷିତ ହୋଇଥିଲା। ମୁଁ ଯିବାବେଳେ ମୁକୁଳିକାକୁ କହିଯାଇଥିଲି– 'ଆଜି ଫେରିବି ନାହିଁ. . ତଥାପି ଏ ସାଜସଜ୍ଜା କିପରି?'

ମୋ ପଛେ ପଛେ ମୁକୁଳିକା କକ୍ଷ ମଧ୍ୟରେ ପ୍ରବେଶକଲା। ତା' ହାତରେ ଶୋଭାପାଉଥିଲା ସ୍ୱର୍ଣ୍ଣଜଡ଼ିତ ଗୋଟିଏ ସୁରାପାତ୍ର। ମୁଁ ଗମ୍ଭୀର ହୋଇଥିବାର ଛଳନା କରି ପଚାରିଲି, ''ଏଠାରେ ମଦିରା ନ ରଖିବାଲାଗି ମହାରାଣୀଙ୍କର ଆଦେଶ ଥିଲା ନା . . .!'' ସେ ତା'ର ଗୋଲାପୀ ଅଧରରେ ମୃଦୁ ସ୍ମିତରେଖା ଝରାଇ କହିଲା, ''ମୁଁ ଆପଣଙ୍କ ଦାସୀ. ଆପଣଙ୍କ ଇଚ୍ଛା . . .'' ଏତିକି କହି ସେ ଚଷକରେ ସୁରା ପୂର୍ଣ୍ଣକରି ମୋ ଆଡ଼କୁ ବଢ଼ାଇଦେଲା। ମୁଁ ଚଷକକୁ ଧୀରେ ଗୋଟିଏ ଢୋକ ପିଇଦେଇ, ତା'ରି ଆଡ଼କୁ ମୁଗ୍ଧ ନୟନରେ ଚାହିଁ ପଚାରିଲି, ''ମୁଁ ଯିବାବେଳେ ଆଜି ନ ଆସିବାଲାଗି କହିଯାଇଥିଲି ନା . . . ତଥାପି ତୁମେ ଏ ସାଜସଜ୍ଜା କିପରି କଲ?''

–''କାହିଁ . . ., ନା . . . ଆ . . . ତ'' ଭ୍ରୂରୁ ନଚାଇ, ଆଖିରେ ପ୍ରୀତିଭରା ଚାହାଣି ଖେଳାଇ କହିଲା ମୁକୁଳିକା।

–''କ'ଣ ତୁମେ କହୁଛ ଯେ . . .?''

–''ଆପଣ ଯିବାବେଳେ ବରଂ କହିଥିଲେ– ମୁଁ ସନ୍ଧ୍ୟାବେଳକୁ ନିଶ୍ଚୟ ଆସିବି!''

–''କେଡ଼େ ମିଛକଥା ବକିଯାଉଛ ତୁମେ?'' ଚଷକରୁ ଆଉ ଗୋଟିଏ ଢୋକ ଶୋଷିନେଇ ପଚାରିଲି ମୁଁ।

—''ସତ କହିବି?'' ବାଁହାତର କାଣିଆଙ୍ଗୁଠିଟିକୁ ମୁକ୍ତାବିନିନ୍ଦିତ ଦନ୍ତପଂକ୍ତିରେ ଲଗାଇ ଆଖିକୋଣରେ ଲୋଭନୀୟ ଅପାଙ୍ଗଛଟା ଖେଳାଇଦେଇ କହିଲା ମୁକୁଳିକା— ''ନାରୀମାନେ ପୁରୁଷର କଥା ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ; ସେମାନେ ପୁରୁଷର ଦୃଷ୍ଟିରୁ ସବୁକିଛି ଇଙ୍ଗିତ ପାଇପାରନ୍ତି।''

× × × × ×

ପ୍ରତିଦିନ ସୂର୍ଯ୍ୟ ଉଦୟ ହୁଅନ୍ତି, ଅସ୍ତ ହୁଅନ୍ତି। ମୁଁ ସୂର୍ଯ୍ୟୋଦୟ ପରେ ସ୍ନାନାଦି ନିତ୍ୟକର୍ମ ଶେଷକରି ପ୍ରାସାଦକୁ ଯାଉଥିଲି; ପିତାମାତାଙ୍କ ଚରଣ ବନ୍ଦନାକରି ପୁଣି ମାଧବ ଘରକୁ ଯାଉଥିଲି। ତାଙ୍କ ସହିତ ମିଳିତହୋଇ କାବ୍ୟ, ସଙ୍ଗୀତ, ନୃତ୍ୟବିଳାସରେ ସମୟ ଅତିବାହିତ କରିବାପରେ, ପୁଣି ଅଶୋକବନକୁ ଫେରିଆସୁଥିଲି। ବେଳେବେଳେ ମୋର ମନେହେଉଥିଲା— ମୋ ଜୀବନଧାରା ଗୋଟିଏ ଅବୋଧ ଶିଶୁପରି ବିତିଯାଉଛି; ଅର୍ଥାତ୍ ଖାଇବା, ପିଇବା ଓ କେବଳ ଶୋଇବାରେ ଦିନଗୁଡ଼ିକ ଅତିବାହିତ ହେଉଥିଲା। ସେଥିପାଇଁ ବୋଧହୁଏ ଚିନ୍ତା, ଦୁଃଖ, ଶୋକ ଆଦିର ଚିନ୍ତନୀୟ ପ୍ରଭାବ ମୁଁ କିଛି ଅନୁଭବ କରିପାରୁନଥିଲି। ଅବଶ୍ୟ ଏସବୁ କିଛି ମୋତେ ଜଣାପଡୁନଥିଲା, ଏ କଥା କହିବା କେବଳ ଆତ୍ମପ୍ରବଞ୍ଚନା ମାତ୍ର। ଆସକ୍ତିର ପ୍ରଥମକ୍ଷଣ ହେଉଛି ପାପର ପ୍ରଥମ ସୋପାନ। ମୁଁ ସେହି ସୋପାନ ଦେଇ ତଳକୁ ତଳକୁ ଓହ୍ଲାଇଯାଉଥିଲି। ଅବଶ୍ୟ ସେ ସୋପାନ ଥିଲା ରତ୍ନଜଡ଼ିତ; ତାହା ଯେତେ ରତ୍ନଜଡ଼ିତ, ଯେତେ ମନୋରଞ୍ଜକ ହେଲେ ମଧ ନିଶ୍ଚୟ ଯେ ଅଧଃପତନର ଗର୍ତ୍ତ ଏଥିରେ ସନ୍ଦେହ ନଥିଲା। ଏହି ସୋପାନ ମୋର ଜୀବନଧାରାକୁ କୁଆଡ଼େ ନେଇଯାଉଛି; ଭୟଙ୍କର ସୁଗଭୀର୍ ଗର୍ତ୍ତ ଆଡ଼କୁ? ବିପଦପୂର୍ଣ୍ଣ ସ୍ରୋତସ୍ୱିନୀ ଆଡ଼କୁ? କିମ୍ବା ସପ୍ତ ପାତାଳ ଆଡ଼କୁ?

ମନ ମଧରେ ଚାଲିଥିବା ଏହି ଦ୍ୱନ୍ଦ୍ୱ କେବେ କେବେ ଭୟାନକ ରୂପ ଧାରଣ କରୁଥିଲା। ମନର ଅବସ୍ଥା ବାସ୍ତବିକ ଗୋଟିଏ ଅବୋଧ ଶିଶୁର ଆଗ୍ରହ ପରି ଭୟଙ୍କର ରୂପ ନେଉଥିଲା; ଯେପରି ଦୁଇଟି ପ୍ରମତ୍ତ ହସ୍ତୀ ପରସ୍ପର ମଧରେ ଭୀଷଣ ଲଢ଼େଇ ଆରମ୍ଭ କରି ଦେଇଥିଲେ। ଯୁଦ୍ଧରେ ଗୋଟିଏ ହାତୀ ଲହୁଲୁହାଣ ହୋଇ ଭୟଙ୍କର ଦେଖାଯାଉଥିଲା। ସେ ପ୍ରତିଶୋଧ ନେବାପାଇଁ ଭୟାନକ ଗଦା ପରି ନିଜର ଶୁଣ୍ଢ ଉଠାଇ ପ୍ରବଳ ବେଗରେ ଅନ୍ୟ ହାତୀକୁ ଆକ୍ରମଣ କରିବାଲାଗି ମାଡ଼ିଆସୁଥିଲା ଏବଂ ଶେଷରେ ଆଘାତର ତୀବ୍ର ପୀଡ଼ାରେ ମର୍ମନ୍ତୁଦ ଯନ୍ତ୍ରଣାରେ ବେହୋଶ ହୋଇ ତଳେ ପଡ଼ିଯାଇଥିଲା। କିନ୍ତୁ ମନ ମଧରେ ଏପରି ଭୀଷଣ ଚିନ୍ତାର ମୁହୂର୍ତ୍ତ ଖୁବ୍ କମ୍ ଆସୁଥିଲା। ଦିନେ ସନ୍ଧ୍ୟା ସମୟରେ ଗୋଟିଏ ବିଳାସମୟ ନଗ୍ନ ନୃତ୍ୟ ଦେଖି ମୁଁ ଫେରିଆସିଲି। ମାଧବକୁ ତାଙ୍କ ଘରେ ଛାଡ଼ିଦେଇ, ମୁଁ ଅଶୋକବନରେ ଆସି ରଥରୁ ଓହ୍ଲାଇପଡ଼ିଲି। ଠିକ୍ ଏହି ସମୟରେ ପ୍ରାସାଦରୁ ଖବର ଆସିଲା— ପିତା ଚେତନା ପାଇ ମୋତେ ବାରମ୍ବାର ଖୋଜୁଛନ୍ତି।

ତୀବ୍ର ବେଗରେ ମୁଁ ରାଜପ୍ରାସାଦରେ ପ୍ରବେଶକରି ଦେଖିଲି; ପିତାଙ୍କ ଚେହେରା ଉପରାଗଗ୍ରସ୍ତ ସୂର୍ଯ୍ୟପରି ନିତାନ୍ତ ନିସ୍ତେଜ ଦେଖାଉଛି। ତାହା ଦେଖି ମୁଁ ନିତାନ୍ତ

ବ୍ୟସ୍ତ ହୋଇଉଠିଲି। ବହୁ କଷ୍ଟରେ ହାତ ଉଠାଇ ପିତା ମୋତେ ପାଖକୁ ଡାକିଲେ। ତାହା ଲକ୍ଷ୍ୟକରି ମୋର ହୃଦୟ କାନ୍ଦିଉଠିଲା। ଯେଉଁ ହସ୍ତଛାୟାରେ ମୁଁ ଲାଳିତପାଳିତ, ସେହି ବୀରର ଭୁଜଦଣ୍ଡ ଆଜି ନିସ୍ତେଜ। ମୋର ଆଖିପତା ଲୁହରେ ଆର୍ଦ୍ର ହୋଇଗଲା। ପିତା ଇସାରାରେ ମୋ ବ୍ୟତୀତ ସମସ୍ତଙ୍କୁ ଚାଲିଯିବା ଲାଗି ନିର୍ଦ୍ଦେଶ ଦେଲେ। ବୋଧହୁଏ ସେ ମୋତେ ଏକାନ୍ତରେ କିଛି କହିବାକୁ ଚାହୁଁଥିଲେ। ତାଙ୍କ ପାଖରେ ଅନେକ ଚୂର୍ଣ୍ଣ, ମୋଦକ, ଲେହ, ଭସ୍ମ ଆଦି ରଖାଯାଇଥିଲା। ଖୁବ୍ କଷ୍ଟରେ ସେ ସୁରାପୂର୍ଣ୍ଣ ପାତ୍ର ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ''ମୋତେ ଟିକିଏ ଆସବ ଦେ।''

ମୁଁ ଭୟ କରି ଚଷକରେ ଅଳ୍ପ ଟିକିଏ ମାତ୍ର ସୁରା ଢାଳିଲି। ସେ ଚଷକ ଆଡ଼କୁ ମୁହଁ ବୁଲାଇ କହିଲେ, ''ପାତ୍ର ପୂର୍ଣ୍ଣ କରିଦେ . . .।''

''କିନ୍ତୁ ପିତା . . . ଆପଣଙ୍କ . . .''

ସେ ଖୁବ୍ ବିଷଣ୍ଣ ହୋଇ କହିଲେ, ''ତୋ' ସହିତ ଅନେକ କଥାବାର୍ତ୍ତା କରିବାର ଅଛି, ସେଥି . . . ଲାଗି . . . ଶକ୍ତି ଆ . . . ବ . . . ଶ୍ୟ . . . କ। ଚଷକ . . . ଭରି . . . ଦେ . . . ପୂ . . . ର୍ଣ୍ଣ . . .''

ମୁଁ ଚଷକ ପୂର୍ଣ୍ଣ କରି ତାଙ୍କ ଓଠରେ ଲଗାଇଦେଲି। ସେ ଧୀରେ ଧୀରେ ଶୋଷି ପାତ୍ର ଶୂନ୍ୟ କରିଦେଲେ। ତା'ପରେ ସେ ଆଖି ବୁଜି କିଛି ସମୟ ପଡ଼ିରହିବା ପରେ ଆଖି ଖୋଲିଲେ। ସେତେବେଳେ ଅବଶ୍ୟ ସେ ଟିକିଏ ସୁସ୍ଥ ହେଲାପରି ମନେ ହେଉଥିଲା। ସେ ମୋର ଗୋଟିଏ ହାତ ନିଜ ହାତରେ ରଖି କହିଲେ, ''ଯଯୁ, ଏବେ ମଧ ବଞ୍ଚିରହିବାକୁ ପ୍ରବଳ ଇଚ୍ଛା ରହିଛି ମୋ' ମନରେ। ମୋତେ ଯଦି କେହି ଦୀର୍ଘଜୀବନ ଦାନ କରିପାରନ୍ତା, ମୁଁ ସମଗ୍ର ରାଜ୍ୟ ତା' ହସ୍ତରେ ଅର୍ପଣ କରିଦିଅନ୍ତି। କିନ୍ତୁ . . .''

ଗୋଟିଏ ଦୀର୍ଘନିଃଶ୍ୱାସ ନେଇ ସେ ଅତ୍ୟନ୍ତ କରୁଣ ଦୃଷ୍ଟିରେ ମୋ ଆଡ଼କୁ ଚାହିଁ ରହିଲେ। ପୁରୁଷସିଂହରୂପେ ପିତାଙ୍କର ଯଶ ତ୍ରିଭୁବନରେ ବ୍ୟାପ୍ତ ହୋଇଥିଲା। କିନ୍ତୁ ବର୍ତ୍ତମାନର ଚାହାଣିରୁ ମନେହେଲା– ଏକ ଭୟଭୀତ ହରିଣ, ମର୍ମାହତ ଶଶକର ଦୃଷ୍ଟି। ସେ ଧୀରେ ଧୀରେ କହିବାକୁ ଲାଗିଲେ– ''ଯଯୁ, ଗୋଟିଏ ସମୃଦ୍ଧ ବିଶାଳ ସାମ୍ରାଜ୍ୟ ମୁଁ ତୋ ହସ୍ତରେ ଅର୍ପଣ କରି ଯାଉଛି। ଯଦି ତୁ ସାରା ଜୀବନ କେବଳ ଭୋଗବିଳାସରେ କଟାଇ ଦେଉ, ତଥାପି ସାମ୍ରାଜ୍ୟର କୌଣସି କ୍ଷତି ହେବନାହିଁ। ମୁଁ ସିଂହାସନ ଅଧିକାର କରିବା ସମୟରେ ରାଜ୍ୟ ଭୀଷଣ ଉପଦ୍ରବଗ୍ରସ୍ତ ହୋଇଥିଲା। ସାମ୍ରାଜ୍ୟର ଚାରିଆଡ଼େ ଆତଙ୍କ ଛାଇହୋଇ ରହିଥିଲା। ପ୍ରଜାମାନେ ସମସ୍ତ ପ୍ରକାର ସୁଖ-ସୁବିଧାରୁ ବଞ୍ଚିତ ଥିଲେ। ରାଜ୍ୟର ଶାସନବ୍ୟବସ୍ଥା ମଧ . . . ଓଃ . . . ଛାଡ଼ ସେସବୁ– ଗୋଟିଏ ସୁସମ୍ପନ୍ନ ସମୃଦ୍ଧ ରାଜ୍ୟର ଉତ୍ତରାଧିକାରୀ . . . ତୁ। ମୁଁ . . .''

''ବାପା, ମୁଁ ଆପଣଙ୍କ କର୍ତ୍ତୃତ୍ୱ ଓ ପରାକ୍ରମ ସମ୍ବନ୍ଧରେ ଖୁବ୍ ଭଲ ଭାବରେ ଜାଣିଛି। ମୋର ଅହୋଭାଗ୍ୟ, ମୁଁ ଆପଣଙ୍କ ପରି ପିତାର ପୁତ୍ର . . .।''

''ଆଉ . . . ଦୁ . . . ର୍ଭା . . . ଗ୍ୟ . . . ମ . . . ଧ।''

ପିତାଙ୍କର ଉତ୍ତର ଶୁଣି ମୁଁ ଚମକିପଡ଼ିଲି। କ'ଣ ଉତ୍ତର ଦେବି କିଛି ବୁଝିପାରିଲିନାହିଁ।

ତା' ହେଲେ କ'ଣ ଅଭିଶାପ ବିଷୟ ସେ ସ୍ମରଣ କରୁଛନ୍ତି? ନା... ଯତିର ବିଚ୍ଛେଦ ତାଙ୍କୁ ଶେଷ ଅବସ୍ଥାରେ ବିବ୍ରତ କରୁଥିଲା! କିଛିକ୍ଷଣ ନିରବ ରହିବା ପରେ ପିତା ଖୁବ୍ ଧୀରେ ଧୀରେ କହିଲେ, ''ଯଯୁ, ତୁ ପିଲାଦିନେ ଅନେକଥର ଶୁଣିଥିବୁ ଯେ, ମୋ ବାପା ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରେ ରାଜା ହୋଇଥିଲେ। କିନ୍ତୁ ତୁ ଶୁଣିନୁ... ମୋତେ କାହିଁକି ଇନ୍ଦ୍ରପଦ ତ୍ୟାଗ କରିବାକୁ ପଡ଼ିଲା।''

''ନା, ମୋତେ କେହି କେବେ ସେ କାହାଣୀ କହିନାହାଁନ୍ତି।''

ଏକ ବୁକୁଫଟା ହସ ହସି କହିଲେ ପିତା, ''ରାଜାଙ୍କ ଦୁର୍ଗୁଣର ଚର୍ଚ୍ଚା ମୃତ୍ୟୁପରେ ଲୋକମାନେ କରିଥାନ୍ତି। ହଁ... ମୁଁ... ତୋତେ କ'ଣ କହିବାକୁ ଯାଉଥିଲି? ବେଶ୍... ମନେପଡ଼ିଲା। ଇନ୍ଦ୍ରପଦ ପାଇବା ପରେ ମୋର ପ୍ରବୃତ୍ତି ବଦଳିଗଲା। ମୁଁ... ଗର୍ବରେ ପ୍ରମତ୍ତ ହୋଇଗଲି। ତ୍ରିଭୁବନରେ ମୋ ପରି ବୀର କେହି ଜଣେହେଲେ ନାହିଁ, ଏହା ମନେକରି ମୁଁ ମଦୋନ୍ମତ୍ତ ହୋଇଉଠିଲି। ଯଯୁ, ଗୋଟିଏ କଥା ମନେରଖିବୁ, ପରାକ୍ରମଲାଗି ଗର୍ବ କରିବା ଅଲଗା ବିଷୟ; କିନ୍ତୁ ପରାକ୍ରମଲାଗି ମଦୋଦ୍ଧତ ହୋଇଉଠିବା ବିନାଶର ମୂଳ କାରଣ। ମୁଁ ଏତେଦୂର ଉନ୍ମତ୍ତ ହୋଇଉଠିଲି ଯେ, ଇନ୍ଦ୍ରାଣୀଙ୍କ ସହିତ ଭୋଗବିଳାସ ଲାଗି ଉଚ୍ଛନ୍ନ ହୋଇଉଠିଲି। ମୋ ପ୍ରସ୍ତାବ ଶୁଣି ଇନ୍ଦ୍ରାଣି ଗୋଟିଏ ସର୍ତ୍ତ ଆରୋପକଲେ। ମହର୍ଷିମାନଙ୍କ କାନ୍ଧରେ ବାହିତ ସବାରିରେ ମୁଁ ବସି ତାଙ୍କ ରଙ୍ଗମହଲକୁ ଗଲେ, ସେ ମୋର ପରାକ୍ରମ ଆଗରେ ଦାସୀ ହୋଇଯିବେ। ପ୍ରଥମରୁ ମୁଁ ପରାକ୍ରମ ଲାଗି ଅନ୍ଧ ହୋଇଯାଇଥିଲି; ଦ୍ୱିତୀୟରେ ମୋର ନିଛକ କାମୁକତା ମୋତେ ଆହୁରି ଅଧଃପତନ ଆଡ଼କୁ ଓଟାରିନେଲା। ମୁଁ ମହର୍ଷିମାନଙ୍କୁ ଡାକି ଇନ୍ଦ୍ରପୁରର ରତ୍ନଜଡ଼ିତ ସବାରି କାନ୍ଧେଇ ଚାଲିବାଲାଗି ଆଦେଶ ଦେଇଦେଲି। ମୁଁ... ଏତେଦୂର କାମାତୁର ହୋଇଉଠିଥିଲି ଯେ, ଋଷିମାନଙ୍କ ଚାଲି ମୋତେ ନିତାନ୍ତ ମନ୍ଥର ବୋଲି ଜଣାପଡ଼ିଲା। ତେଣୁ ମୁଁ ସେମାନଙ୍କ ଉପରେ ଖୁବ୍ ରାଗିଗଲି। ସେମାନଙ୍କ ମଧ୍ୟରୁ ଅଗସ୍ତି ଋଷିଙ୍କ ମୁଣ୍ଡରେ ପାଦପ୍ରହାର କରି ମୁଁ 'ସର୍ପ' 'ସର୍ପ' ବୋଲି କହିଲି। ସେ ତତ୍କ୍ଷଣାତ୍ ମୋତେ ଅଭିଶାପ...।''

ପିତା ଆଉ କିଛି କହିପାରିଲେ ନାହିଁ, କେବଳ ଦୀର୍ଘଶ୍ୱାସ ତ୍ୟାଗ କରିବାରେ ଲାଗିଲେ। ତାଙ୍କ ଚେହେରା ନିତାନ୍ତ ଦୟନୀୟ ହୋଇଉଠିଲା ଏବଂ ତାଙ୍କରି ନିର୍ଦ୍ଦେଶରେ ନିଜର ଅନିଚ୍ଛା ସତ୍ତ୍ୱେ ମୁଁ ମଦ୍ୟପୂର୍ଣ୍ଣ ଚଷକ ତାଙ୍କ ମୁହଁରେ ଲଗାଇଦେଲି। ମଦ୍ୟପାନ ପରେ ସେ ଟିକିଏ ସୁସ୍ଥ ହୋଇଉଠିଲେ। ପୁଣି କିଛି କହିବାଲାଗି ତାଙ୍କ ଓଠ ଥରିଉଠିଲା। ତା' ଦେଖି ମୁଁ କହିଲି, ''ବାପା, ଆପଣ ଟିକିଏ ଶୋଇପଡ଼ନ୍ତୁ, କାଲି ପୁଣି ଆମେ କଥାବାର୍ତ୍ତା କରିବା।''

''କା... ଲି... ?'' ଏହି ଗୋଟିଏ ଶବ୍ଦ କହିବାବେଳେ ମନେହେଲା ସତେଯେପରି, ସେ ଅଶେଷ କଷ୍ଟ ଅନୁଭବ କରୁଛନ୍ତି ଏବଂ ତାଙ୍କ ହୃଦୟ ନିତାନ୍ତ କରୁଣାପୂର୍ଣ୍ଣ ହୋଇଉଠିଛି। କ୍ଷଣକାଳଲାଗି ସେ ଚୁପ୍ ହୋଇଗଲେ; ପୁଣି ଶାନ୍ତ ସ୍ୱରରେ କହିଲେ— ''ସେ ଅଭିଶାପ ହେଉଛି... 'ଏ ନହୁଷ ଓ ଯା'ର ପୁତ୍ରମାନେ କେବେହେଲେ ସୁଖୀ ହୋଇପାରିବେ ନାହିଁ। ବାପା-ମାଆଙ୍କର କୁକର୍ମ ଓ ସୁକର୍ମର ଫଳ ଉତ୍ତରାଧିକାରସୂତ୍ରେ

ପୁତ୍ରମାନଙ୍କୁ ମିଳିଥାଏ; ଏହିହିଁ ପ୍ରାକୃତିକ ନିୟମ ! କିନ୍ତୁ... ମୁଁ ଭାବୁଥିଲି, ମୋ' ସନ୍ତାନମାନଙ୍କୁ ଏ' ଅଭିଶାପ ଫଳିବା ଉଚିତ ନୁହେଁ। ଯଯୁ, ତୋର ଏ ଅଧମ ପିତା ଅପରାଧୀ, ମୋତେ କ୍ଷମା କରିଦେବୁ ବାପା ! ଗୋଟିଏ କଥା ଜୀବନରେ ମନେରଖିବୁ, ଜୀବନର ମର୍ଯ୍ୟାଦାକୁ କେବେହେଲେ ଭୁଲିଯିବୁ ନାହିଁ। ମୁଁ ଭୁଲିଯାଇ ଯେଉଁ...।''

ହତାଶ ହୋଇ ପିତା ଆଖି ବୁଜି ମନେ ମନେ କ'ଣ ବିଡ଼୍‌ବିଡ଼୍ ହେବାକୁ ଲାଗିଲେ। ମୁଁ ତାଙ୍କ ମୁହଁ ପାଖକୁ କାନ ନେଇ ଶୁଣିଲି– ''ଯଯୁ... ଯତି... ଅଭିଶାପ... ମୃତ୍ୟୁ।'' ମୁଁ ଆଉ ନିଜକୁ ସମ୍ଭାଳିନପାରି କହିଲି, ''ବାପା, ଯତି ଜୀବନରେ ଅଛି।''

ପ୍ରବଳ ପବନର ଆଘାତରେ ଘରର ଦ୍ୱାର ଯେପରି ଖୁବ୍ ଜୋର୍‌ରେ ଖୋଲିଯାଏ, ସେହିପରି ଚମକିପଡ଼ି ସେ ଅତ୍ୟନ୍ତ ବାଷ୍ପରୁଦ୍ଧ କଣ୍ଠରେ କହିଲେ, ''କେଉଁଠି ଅଛି ଯତି ?''

–''ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳରେ।''

–''ପ୍ରମାଣ କ'ଣ ?''

–''ମୋ ସହିତ ସାକ୍ଷାତ ହୋଇଥିଲା।''

–''କେବେ ?''

–''ଅଶ୍ୱମେଧ ସମୟରେ।''

ଏହା ଶୁଣି ପିତା ଥରଥର ହୋଇ କମ୍ପିବାକୁ ଲାଗିଲେ; କ୍ରୋଧରେ ତାଙ୍କର ଚେହେରା ତମତମ ହୋଇଉଠିଲା। ସେ କ୍ରୋଧୋନ୍ମତ୍ତ ସ୍ୱରରେ କହିଲେ, ''ଏତେ ଦିନ ଯାଏଁ ତୁ ସେ ଖବର ତୋ' ପାଖରେ ଲୁଚାଇ ରଖିଛୁ ? ସ୍ୱାର୍ଥପର, ନୀଚ୍, ଦୁଷ୍ଟ... ମୁଁ ତାକୁ କୌଣସିମତେ ଫେରାଇ ଆଣିଥା'ନ୍ତି। ମୋ ପରେ ସେ ହସ୍ତିନାପୁରର ସିଂହାସନ ଆରୋହଣ କରିଥା'ନ୍ତା; ଏଇ ଭୟରେ ତୁ ଏ ସମ୍ବାଦ...'' ଆହୁରି କେତେ କ'ଣ ସେ କହିବାକୁ ଚାହିଁଥିଲେ; କିନ୍ତୁ କିଛି କହିପାରିଲେ ନାହିଁ, କେବଳ ମୋ'ରି ଆଡ଼କୁ ଏକ ଭୟଙ୍କର ଦୃଷ୍ଟିରେ ଚାହିଁରହିଲେ। ତାଙ୍କର ସେ ଚାହାଁଣି ଦେଖି ମୁଁ ଭୟଭୀତ ହୋଇ ଚିତ୍କାରକଲି, ''ମାଆ...!''

ମାଆ, ଅମାତ୍ୟ, ରାଜବୈଦ୍ୟ ଓ ଦାସୀମାନେ ମୋ ଡାକରା ଶୁଣି କକ୍ଷ ମଧ୍ୟକୁ ପଶିଆସିଲେ। ରାଜବୈଦ୍ୟ ତତ୍‌କ୍ଷଣାତ୍ କିଛି ଅବଲେହ ଚଟାଇଦେଲେ। କିଛି ସମୟ ପରେ ତାଙ୍କୁ ଟିକିଏ ଭଲ ଲାଗିଲା ପରି ଜଣାପଡ଼ିଲା। ସେ ଅମାତ୍ୟଙ୍କୁ ଧୀରେ କହିଲେ– ''ମନ୍ତ୍ରୀ, ମୋର ଦିନ ଶେଷ ହୋଇଆସିଲା। ଇନ୍ଦ୍ରଙ୍କୁ ପରାଜିତ କରିବା ପରେ ମୁଁ ଯେଉଁ ସୁବର୍ଣ୍ଣ ମୁଦ୍ରା ପ୍ରଚଳନ କରାଇଥିଲି ଘେନିଆସିଲ, ମୁଁ ଥରେ ଦେଖେ। ମଣିଷ ନିଜର ବିଜୟ ଉନ୍ମାଦନା ମଧ୍ୟରେ ହିଁ ମୃତ୍ୟୁ ବରଣ କରିବା ଉଚିତ।''

ପିତାଙ୍କର କଥା ଶୁଣି ମାଆଙ୍କ ଆଖିରୁ ଝରଝର ହୋଇ ଲୁହ ଝରିପଡ଼ିଲା। ମୁଁ କିପରି ମାଆଙ୍କୁ ସାନ୍ତ୍ୱନା ଦେବି ଆଦୌ ବୁଝିପାରିଲି ନାହିଁ। ଅମାତ୍ୟ ସୁବର୍ଣ୍ଣ ମୁଦ୍ରା ଘେନି ଆସିବାମାତ୍ରେ ପିତା କହିଲେ, ''ଆଣନ୍ତୁ, ମୋ ହାତକୁ ଦିଅନ୍ତୁ।''

ମୁଦ୍ରାଟିକୁ ହାତରେ ଥରେ ଦୁଇଥର ଲେଉଟାଇ କହିଲେ– "ଏଥିରେ ମୋର ପରାକ୍ରମର ଚିହ୍ନ ଧନୁର୍ବାଣ କାହିଁ ?"

ଅମାତ୍ୟ ମୁଦ୍ରାର ଗୋଟିଏ କୋଣ ଦେଖାଇ କହିଲେ– "ଏଇ ପାଖରେ ଅଙ୍କିତ ହୋଇଛି, ମହାରାଜ !"

–"କାହିଁ? କେଉଁଠି ? ଏ ସେ ସୁବର୍ଣ୍ଣ ମୁଦ୍ରା ନୁହେଁ। ଆପଣମାନେ ମୋତେ ଠକାଉଛନ୍ତି।"

–"ନା . . . ମହାରାଜ ! ଏଇ ପାଖରେ ସେ ଚିତ୍ର ଅଙ୍କିତ ହୋଇଛି।"

–"ତା'ହେଲେ ମୋତେ ଦେଖାଯାଉନାହିଁ କାହିଁକି ? ଆରପଟ ଦେଖାଇଲେ . . ।"

ଅମାତ୍ୟ ମୁଦ୍ରାଟି ଓଲଟାଇ ଧରାଇଦେଲେ। ସେ କିଛି ସମୟ ନିରୀକ୍ଷଣ କରିବା ପରେ ଡାକିଲେ, "[illegible] . . . ଏ ମୁଦ୍ରା ଉପରେ କିଛି ଅକ୍ଷର ଲେଖାଅଛି ?"

–"ହଁ . . . ବାପା . . . ।"

–"ପଢ଼ିଦେ . . . ମୁଁ ଶୁଣିବି।"

–"ଜୟତୁ . . . ଜୟତୁ . . . ନହୁଷଃ"।

–"ତେବେ ମୋତେ ଏ ଅକ୍ଷର ଦେଖାଯାଉନାହିଁ କାହିଁକି ? ସେ ମଧ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କଲାଣି।"

ପିତାଙ୍କ ଆଦେଶରେ ମୁଁ ମୁଦ୍ରାଟିକୁ ଦୁଇ ତିନି ଥର ଏପଟ ସେପଟ ଓଲଟାଇଲି; କିନ୍ତୁ ସେ କିଛି ହେଲେ ଦେଖିପାରିଲେ ନାହିଁ। ତାଙ୍କ ଆଖିରୁ ଅଶ୍ରୁର ଧାରା ଗଡ଼ିଆସିଲା। ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ମୋତେ କିଛି ଦେଖାଯାଉନାହିଁ। 'ଜୟ ତୁ, ଜୟ ତୁ, ନହୁଷଃ'– ସବୁ ମିଥ୍ୟା ! ସବୁ ମିଥ୍ୟା !! ଆଜି ସେହି ନହୁଷର ପରାଜୟ ହୋଇଛି। ମୃତ୍ୟୁ ତାକୁ ପରାଜିତ କରୁଛି। ମୃତ୍ୟୁ . . . ମୃତ୍ୟୁ . . . ମୃତ୍ୟୁ . . . ମୃତ୍ୟୁ . . ." ଏହା କହି କହି ସେ ପୁଣି ଅଚେତ ହୋଇଗଲେ। ମାଆଙ୍କର ରୋଦନର ବେଗ ବଢ଼ିଗଲା। ରାଜବୈଦ୍ୟ ତାଙ୍କୁ କିଛି ଔଷଧ ପିଆଇବାକୁ ଚେଷ୍ଟାକଲେ।

ମୃତ୍ୟୁ ରାଜପ୍ରାସାଦ ମଧରେ ଗୋପନରେ ପ୍ରବେଶ କରିସାରିଥିଲା। ତା'ର ସ୍ୱରୂପ କେହି ଦେଖିପାରୁନଥିଲେହେଁ ସମସ୍ତଙ୍କ ମୁହଁରେ ମୃତ୍ୟୁର ଛାୟା ଝଲସିଉଠୁଥିଲା। ମୁଁ ଆଉ ସେଠାରେ ରହିପାରିଲି ନାହିଁ; ମୁହଁରେ ଦୁଇ ହାତ ଢାଙ୍କି ସେ କକ୍ଷରୁ ବାହାରି ଆସିଲି। ମନ ମଧରେ କ୍ରନ୍ଦନର ତୀବ୍ର ରୋଳ ଉଠୁଥିଲେହେଁ ଆଖିରୁ ଲୁହଧାର ଗଡ଼ିଲାନାହିଁ।

କିଛି ସମୟ ପରେ ଅମାତ୍ୟ ଓ ରାଜବୈଦ୍ୟ ଆସି ମୋ କାନ୍ଧରେ ହାତପକାଇ କହିଲେ, "ଯୁବରାଜ, ଏବେ ଯେଉଁ ଔଷଧ ଦିଆଯାଇଛି ମହାରାଜ ବେଶ୍ ଆରାମରେ ଶୋଇପଡ଼ିବେ। ଏବେ ଅବଶ୍ୟ ଚିନ୍ତାର କାରଣ କିଛି ନାହିଁ, କିନ୍ତୁ କେତେବେଳେ କ'ଣ ହେବ କୁହାଯାଇପାରିବନାହିଁ। ଏଣିକି କେବଳ ଈଶ୍ୱର ଭରସା। ଆପଣ ଅଶୋକବନକୁ ଫେରିଯାଆନ୍ତୁ, ବିଶେଷ କିଛି ଲକ୍ଷଣ ଦେଖାଗଲେ ଶୀଘ୍ର ଖବର ଦିଆଯିବ।"

ଅମାତ୍ୟ ମୁଣ୍ଡ ହଲାଇ ରାଜବୈଦ୍ୟଙ୍କ କଥାରେ ସମ୍ମତି ଜଣାଇଲେ। ମୁଁ ରହିଲେ କ'ଣ ବା ଅଧିକ ହେବ ? ତେଣୁ ରାଜପଥରେ ରଥ ଛୁଟାଇ ଅଶୋକବନକୁ ଫେରିଆସିଲି।

ରାଜମାର୍ଗରେ ଲୋକମାନେ ପ୍ରଫୁଲ୍ଲମନରେ ବୁଲୁଥିବା ଦେଖି ମୋ ମନରେ ଖୁବ୍ ଦୁଃଖ ଜାତହେଲା ।

ଆଶୋକବନରେ ପାଦ ଦେଲାକ୍ଷଣି ଦେଖିଲି, ମୁକୁଳିକା ସମସ୍ତ ପ୍ରକାର ସାଜସଜ୍ଜା ପ୍ରସ୍ତୁତକରି, ନିଜେ ମଧ୍ୟ ବେଶଭୂଷଣରେ ସଜ୍ଜିତା ହୋଇ ଦ୍ୱାରଦେଶରେ ମୋର ଆଗମନକୁ ଅପେକ୍ଷା କରି ଛିଡ଼ାହୋଇଛି । ତା' ସହିତ ପଦେହେଲେ କଥା ନକହି ମୁଁ ଭିତରକୁ ଚାଲିଗଲି । ମୋର ପୋଷାକ-ପରିଚ୍ଛଦ ଓହ୍ଲାଇବାଲାଗି ସେ ମଧ୍ୟ ମୋ ପଛେ ପଛେ ଭିତରକୁ ପଶିଆସିଲା । ମୁଁ ହାତର ଇସାରାରେ ତାକୁ ବାରଣକଲାରୁ, ସେ ଚମକିପଡ଼ି ସେଇଠି ତଳକୁ ମୁହଁକରି ଛିଡ଼ାହୋଇରହିଲା ।

ତାର ରଙ୍ଗଢ଼ଙ୍ଗ ଦେଖି ମୋ ମନରେ ଖୁବ୍ ବିରକ୍ତି ଜାତହେଲା । ଭାବିଲି, ଦାସୀଟା ନିଜକୁ ରମ୍ଭା, ଉର୍ବଶୀ ନା ମେନକା ମନେକରିଛି ! ତେଣେ ମହାରାଜ ମୃତ୍ୟୁଶଯ୍ୟାରେ ! ଏଠାରେ ଏ ସାଜଶିଙ୍ଗାର ହୋଇ ମୋତେ ପାଲରେ ପକାଇବାକୁ ନବରଙ୍ଗ ଲଗାଇଛି । ମନେ ମନେ ଏ ଭାବିଛି; ଆଜି ସିନା ମୁଁ ଯୁବରାଜ, କାଲି ପୁଣି ତ ମହାରାଜା ହୋଇଯିବି । ଆଜିଠାରୁ ବେଶପୋଷାକରେ ନିଜକୁ ସଜେଇ, ନୂଆବୋହୂ ପରି ମୋ ମନକୁ ଆକୃଷ୍ଟ କରି ମୋତେ ହାତମୁଠାରେ ରଖିପାରିଲେ ତା'ର ଫାଇଦା ଅଛି । ତେଣୁ ସେ ଖୁବ୍ ସାବଧାନତାର ସହିତ ଆକର୍ଷଣର ଜାଲ ବିଛାଇଚାଲିଛି । ମୋ ପରି ଗୋଟିଏ ଅନଭିଜ୍ଞ, ପାପ-ପୁଣ୍ୟ ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଯୁବକକୁ ଅଧୋଗତି ଆଡ଼କୁ ଟାଣିନେବାରେ ଆଉ କ'ଣ ବା ଉଦ୍ଦେଶ୍ୟ ଥାଇପାରେ ?

ତା'ପରେ ଡରି ଡରି ମୁକୁଳିକା ପଚାରିଲା – "ଖାଇବେ ଉଠନ୍ତୁ ।"

–"ନା . . . ମୁଁ ଆଜି କିଛି ଖାଇବିନାହିଁ ।"

–"କାହିଁକି ?"

–"ମୋ ଇଚ୍ଛା !"

–"କିନ୍ତୁ ମୁଁ ଆଜି ଆପଣଙ୍କଲାଗି ବିଶେଷ ଧରଣର ଖାଦ୍ୟ . . . ।"

"ତୋର ସବୁ ନାଟକ ମୁଁ ବେଶ୍ ବୁଝିଲିଣି । କାଲି ସକାଳୁ ଉଠି ମହଲକୁ ଚାଲିଯା . . . ମୁଁ ତୋ' ମୁହଁ ଦେଖିବାକୁ ଚାହେଁନା । ତୁ . . . ତୁ . . . ଯାଉଛୁ ନା ନାହିଁ ମୋ ଆଗରୁ . . ., ମନେରଖ, ମୁଁ ନ ଡାକିବା ପର୍ଯ୍ୟନ୍ତ ଏ ଘରେ ତୁ ପାଦ ଯେପରି ନ ଦେଉ ।"

ମୁଁ ଖୁବ୍ ବିରକ୍ତ ହୋଇଉଠିଲି, ଖୁବ୍ ଅସନ୍ତୁଷ୍ଟ ହୋଇଗଲି; କେବଳ ମୁକୁଳିକା ଉପରେ ନୁହେଁ, ନିଜ ଉପରେ, ଦୁନିଆ ଉପରେ; ଏପରିକି ମୃତ୍ୟୁ ଉପରେ । ମୁଁ ନିଜେ ମଧ୍ୟ ଜାଣିପାରୁନଥିଲି ଯେ ମୁଁ କ'ଣ ଗୁଡ଼ାଏ ବକିଚାଲିଛି । ମୁକୁଳିକା ଡରିଯାଇ ଝାଉଁଳିପଡ଼ି କକ୍ଷରୁ ବାହାରିଗଲା । ତା'ର ଭୟଭୀତ ଚେହେରା ଦେଖି ମୋତେ ବେଶ୍ ଭଲଲାଗିଲା । ପୋଷାକ-ପରିଚ୍ଛଦ ନ ଉତାରି ମୁଁ ସେମିତି ପଲଙ୍କ ଉପରେ ଶୋଇପଡ଼ିଲି । ପିତାଙ୍କର ସମସ୍ତ ଅବସ୍ଥା ମୋ ଆଖି ଆଗରେ ଝଲସିଉଠିଲା । ସ୍ୱର୍ଣ୍ଣମୁଦ୍ରା ଉପରେ ତାଙ୍କର ବିଜୟ ଗୌରବ ଦେଖିବାଲାଗି ସେ କିପରି ଛଟପଟ ହେଉଥିଲେ, ମହାବୀର ନହୁଷ କିପରି ଶକ୍ତିସାମର୍ଥ୍ୟହୀନ ହୋଇ ଶେଯରେ ପଡ଼ିରହିଥିଲେ,

ସବୁ ମୋ ଆଖି ଆଗରେ ନାଚିଗଲା। ହୁଏତ, ଆଉ କେଇ ମୁହୂର୍ତ୍ତ ପରେ ତାଙ୍କର ସେହି ଅନବଦ୍ୟ ଶରୀର କାଷ୍ଠପୁତ୍ତଳିକା ପରି ଅଚଳ ହୋଇ ପଡ଼ିରହିବ। ମୃତ୍ୟୁର କରାଳ ସ୍ୱରୂପ ମୋ ମନ ମଧ୍ୟରେ ଛାଇଗଲା। ଭୟରେ ପିଲାମାନେ ଆଖି ବୁଜି ଶୋଇପଡ଼ିଲାପରି, ମୁଁ ଆଖି ବନ୍ଦକରି ପଲଙ୍କରେ ପଡ଼ିରହିଲି ଏବଂ ଧୀରେ ଧୀରେ ନିଦ୍ରାଦେବୀ ମୋର ସମଗ୍ର ଚେତନାକୁ ଆବୋରିବସିଲେ।

କେତେ ସମୟ ଧରି ମୁଁ ଶୋଇଛି ଜାଣେନା; ତା'ରି ମଧ୍ୟରେ ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖିଲି, ମହାରାଜ ନହୁଷଙ୍କ ବଦଳରେ ମୁଁ ମୃତ୍ୟୁଶଯ୍ୟାରେ ଶୋଇଛି। ଆଖିକୁ କିଛି ଦିଶୁନାହିଁ, ହାତଗୋଡ଼ ଥଣ୍ଡା ହୋଇଯାଉଛି, ମୁହଁରୁ ଭାଷା ବାହାରୁନାହିଁ, ଯେତେ ଚେଷ୍ଟା କଲେ ମଧ୍ୟ ଟିକିଏ ହସିପାରୁନାହିଁ କିମ୍ବା କାନ୍ଦିପାରୁନାହିଁ।

ପାଗଳଙ୍କ ପରି ମୁଁ ମୋର ଶରୀରକୁ ଅଣ୍ଡାଳିପକାଇଲି; ଅବୟବଗୁଡ଼ିକ ଠିକ୍ ଅଛି କି ନାହିଁ ଭଲକରି ଦେଖିନେଲି। ଦେହ ନଥିଲେ ମଧୁର ସଙ୍ଗୀତ, ଚନ୍ଦ୍ରୋଦୟର ମଧୁ ଜ୍ୟୋତ୍ସ୍ନା, ସ୍ୱାଦିଷ୍ଟ ଭୋଜନ, ସୁଗନ୍ଧିତ ପୁଷ୍ପ ତଥା କୋମଳ ସ୍ପର୍ଶ ସବୁ ବ୍ୟର୍ଥ। ଜନ୍ମହେବା ପରଠାରୁ ମୁଁ ଯେଉଁସବୁ ସୁଖ ଉପଭୋଗ କରିଆସିଛି, ପ୍ରତ୍ୟେକଟି ସହିତ ଏ ଦେହର ଘନିଷ୍ଠ ସମ୍ପର୍କ ରହିଛି। ମୋର ମମତ୍ୱଠାରୁ ଏସବୁ ଆଦୌ ଭିନ୍ନ ନୁହନ୍ତି। କିନ୍ତୁ ମୁଁ ଆଦୌ କିଛି ବୁଝିପାରୁନାହିଁ ଯେ, କାହିଁକି ମୋ ମନ ଏଡ଼େ ବ୍ୟାକୁଳ ହେଉଛି। ଦେହ ଭିନ୍ନ, ଆତ୍ମା ଭିନ୍ନ; ଏସବୁ ଶିକ୍ଷା ମୁଁ ପିଲାଟିଦିନରୁ ପାଇଆସୁଛି। କିନ୍ତୁ ଅଗ୍ନିଶିଖା ପରି ମୋ ମନରେ ଗୋଟିଏ ପ୍ରଶ୍ନ ଉହଡହ ହୋଇ ଜଳିଉଠୁଛି, ଦେହ ବିନା ଆତ୍ମା କିପରି ସୁଖୀ ହୋଇ ପାରିବ ?

ମୁଁ ମୁକୁଳିକା ଉପରେ ବୃଥାଟାରେ ରାଗିଲି ବୋଲି ଏଥର ବେଶ୍ ଅନୁଭବକଲି। ରାଜପ୍ରାସାଦର ପ୍ରାଚୀରଘେରା ଅବରୋଧ ମଧ୍ୟରେ ତା'ର ଆବାସ; ବାହାର ଦୁନିଆ ସହିତ ତା'ର ସମ୍ପର୍କ ନାହିଁ। ତା' ମନରେ କଷ୍ଟ ଦେଇ ମୋତେ ବା କ'ଣ ମିଳିଲା ? ତା' ମନରେ ଗୋଟିଏ ମାତ୍ର ଧାରଣା; ଯୁବରାଜ ତା'ର ମାଲିକ; ତେଣୁ ସେ ତା'ର ମାଲିକକୁ ଏକମନରେ ସୁଖୀ କରିବାକୁ ଚାହୁଁଛି, ଏଥିରେ ତା'ର ଦୋଷ କେଉଁଠି ? ଏହି ନିଷ୍ପାର ପ୍ରତିବଦଳରେ . . . ମୁଁ ଧୀରେ ଡାକିଲି, "ମୁକୁଳିକା . . .!"

ଜାଣେନା, ସେ ସେଇଠି କେଉଁଠି କାନଡେରି ରହିଥିଲା କି କଅଣ, ମୋ ଡାକ ଶୁଣିବାମାତ୍ରେ ଧୀରେ ଦରଜାଟି ଖୋଲି ଭିତରକୁ ଆସି, ପୁଣି ଧୀରେ ଭିତରୁ ବନ୍ଦକରିଦେଇ ଧୀରେ ଧୀରେ ପହଣ୍ଡ ପକାଇ ମୋ ଆଡ଼କୁ ଚାଲିଆସିଲା। ପଲଙ୍କ ପାଖକୁ ଆସି ମୁଣ୍ଡ ନୁଆଁଇ ଛିଡ଼ାହୋଇରହିଲା। ତାକୁ ପାଖରେ ଦେଖି ମୁଁ କହିଲି, "ଏପରି ଡରିମରି ଛିଡ଼ାହୋଇଛ କାହିଁକି ? ମୁଁ ଏବେ ଗାଳିମନ୍ଦ କଲି ବୋଲି ନା ଆଉ କ'ଣ ?"

ସେ ଓଠଫାଙ୍କରେ ଟିକିଏ ସରୁ ହସ ବିଞ୍ଚିଦେଇ, ପୁଣି ସେଇପରି ମୁଣ୍ଡ ତଳକୁ କରି ଛିଡ଼ାହୋଇରହିଲା। ମୁଁ ପୁଣି କହିଲି, "ଟିକିଏ ହେଲେ ଥଟ୍ଟା ସହିପାରିବନି ? ଦେଖ ଏଥର ଯଦି ମୁହଁ ଉପରକୁ ନ ଉଠାଇବ ତା'ହେଲେ ଚାବୁକରେ ଯେମିତି ପ୍ରହାର କରନ୍ତି, ସେପରି କରିବାକୁ ବେଶି ସମୟ ଲାଗିବନାହିଁ।"

ସେ ମୁଖମଣ୍ଡଳରେ ମଧୁର ହାସ୍ୟର ଛଟା ମେଲିଦେଇ ମୋ ଆଡ଼କୁ ଚାହିଁଲା । ତା'ର ମୁହଁରୁ ଜଣାଗଲା, ସେତିକିବେଳୁ ଦୁଆରମୁହଁରେ ଛିଡ଼ାହୋଇ ସେ କାନ୍ଦୁଥିଲା । ତେଣୁ ବର୍ଷା ପରେ ପ୍ରାକୃତିକ ନିର୍ମଳ ଛଟାପରି, ତା ମୁହଁଟି ବେଶ୍ ସୁନ୍ଦର ଦେଖାଯାଉଥିଲା । ମୁଁ ଉଠିପଡ଼ି ତା' କାନ୍ଧରେ ହାତ ରଖିବାକୁ ଯାଉଛି, ଏହି ସମୟରେ ଶୁଭିଲା– "ଯୁବରାଜ !" ପଚ଼ାରିଲି– "ତୁମେ ମୋତେ ଡାକିଲ ?" ସେ ମୁଣ୍ଡ ହଲାଇ ମନାକରିଦେଲା । ବୋଧହୁଏ ସେ ମଧ ସେହି ଡାକ ଶୁଣିଥିଲା । ସେ ସଙ୍ଗେ ସଙ୍ଗେ ପଲଙ୍କ ପାଖରୁ ଦୂରକୁ ଘୁଞ୍ଚିଯାଇ ଆକୁଳ ତଥା ଚକିତ ନେତ୍ରରେ ଚାରିଆଡ଼କୁ ଚାହିଁରହିଲା ।

"ଯୁବରାଜ !" ପୁଣି ସେହି ଶବ୍ଦ ଶୁଣାଗଲା । ପଲଙ୍କର ଠିକ୍ ସାମନା କାନ୍ଥ ପାଖରୁ ସେ ଶବ୍ଦ ଶୁଣାଯାଉଥିଲା । ଆଶ୍ରମରୁ ଫେରିବା ପରେ ଅମାତ୍ୟଙ୍କ କଥା ମୋର ମନେପଡ଼ିଗଲା । ରାଜମହଲରୁ ଅଶୋକବନ ପର୍ଯ୍ୟନ୍ତ ଗୋଟିଏ ସୁଡ଼ଙ୍ଗ ମାର୍ଗ ଥିଲା– ବୋଧହୁଏ ସେହି ମାର୍ଗ ଦେଇ କେହି ଜଣେ ଆସିଛି । ମୁଁ ଯାଇ ସୁଡ଼ଙ୍ଗ କଳଟିକୁ ମୋଡ଼ିଦେଲି । ମୋତେ ଦେଖିବାମାତ୍ରେ ଅମାତ୍ୟଙ୍କ ବିଶ୍ୱସ୍ତ ଭୃତ୍ୟ ହାତଯୋଡ଼ି କହିଲା– "ଶୀଘ୍ର ଚାଲନ୍ତୁ ଯୁବରାଜ ! ମହାରାଜ ଶେଷ ନିଃଶ୍ୱାସ ନେଉଛନ୍ତି ।"

ମୁକୁଳିକା ଆଡ଼କୁ ଥରେହେଲେ ନଚାହିଁ ମୁଁ ସୁଡ଼ଙ୍ଗ ପଥରେ ଆଗେଇଗଲି ରାଜପ୍ରାସାଦ ଆଡ଼କୁ । ମନ୍ଦାର ଆଗେ ଆଗେ ଚାଲୁଥାଏ; ମୁଁ କେବଳ କାଠପିତୁଳାଟିଏ ପରି ତାକୁ ଅନୁସରଣ କରି ଚାଲିଥାଏ ।

× × × × ×

ଦୁନିଆ ଚକ୍ଷୁରେ ଯଯାତି ଏକ ଐଶ୍ୱର୍ଯ୍ୟଶାଳୀ ରାଜ୍ୟର ରାଜା ହୋଇଗଲା; ମାତ୍ର ମୁଁ ଯେ ଅନାଥ, ଅସହାୟ ହୋଇଗଲି, ମୋ ବ୍ୟତୀତ ଆଉ କେହି ସେ ଦୁଃଖ ଅନୁଭବ କଲେନାହିଁ । କେବେ କେବେ ପିତାଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ମ୍ରିୟମାଣ ହୋଇପଡୁଥିଲି । ମୋର ବିମର୍ଷ ଅବସ୍ଥା ଦେଖି ରାଜଗୁରୁ ମହୋଦୟ ମୋତେ ବୁଝାଇ କହୁଥିଲେ, "ମହାରାଜ ନହୁଷଙ୍କ ଆତ୍ମା ମୁକ୍ତ ହୋଇଯାଇଛି । ସେ ଅନ୍ତରୀକ୍ଷ ପରିଭ୍ରମଣକରି ଚାଲିଯାଉଛନ୍ତି । ପ୍ରଥମେ 'ପୁଷା' ତାଙ୍କୁ ନୂତନ ମାର୍ଗ ପ୍ରଦର୍ଶନ କରୁଛନ୍ତି, ତା'ପରେ 'ସବିତା' ତାଙ୍କ ସ୍ଥାନ ଗ୍ରହଣ କରିବେ । ସେ ଆତ୍ମା ଏକ ବିଶାଳ ପ୍ରବହମାନ ମାର୍ଗଦେଇ ମୁକ୍ତିପଥରେ ଅଗ୍ରସର ହେଉଛି । ତା'ପରେ ସେ ବିକୃତକାୟ ଯମଦୂତମାନଙ୍କୁ ଏଡ଼େଇଦେଇ ପବିତ୍ର ଆତ୍ମାର ନିବାସସ୍ଥଳ ଆଡ଼କୁ କ୍ଷିପ୍ରଗତିରେ ଆଗେଇ ଚାଲିବ । ସେ ସ୍ଥାନ ଏକ ଅଲୌକିକ ସ୍ଥାନ । ସେଠାକାର ଜ୍ୟୋତି କେବେହେଲେ କ୍ଷୀଣ ହୁଏନାହିଁ, ଜଳସ୍ରୋତ କେବେହେଲେ ଶୁଷ୍କ ହୁଏନାହିଁ; ସେଠାରେ କେବଳ ସୁଖ ହିଁ ସୁଖ । ଆପଣ ପିତୃଦେବଙ୍କ ସମ୍ବନ୍ଧରେ ବୃଥା ଶୋକ ତ୍ୟାଗକରନ୍ତୁ । ମହାରାଜାଙ୍କ ଆତ୍ମା ନଶ୍ୱର ବାସନାକୁ ତ୍ୟାଗକରି ଖୁବ୍ ଶୀଘ୍ର ଆତ୍ମାନନ୍ଦସାଗରରେ ମିଶିଯିବ । ତେଣୁ ତାଙ୍କ ସମ୍ବନ୍ଧରେ କୌଣସି ପ୍ରକାର ଶୋକ ବା ଦୁଃଖ କରିବା ଉଚିତ ହେବନାହିଁ ।"

ବିଚରା ରାଜଗୁରୁ ଆଉ କରନ୍ତେ ବା କ'ଣ ? ସେ ସେହି ବିଷୟରେ ବୁଝାଇବାକୁ ଯାଇ ବେଦବେଦାନ୍ତରୁ ଅନେକ ଦୃଷ୍ଟାନ୍ତ ଶ୍ଳୋକ ମୋତେ ଶୁଣାଇଦିଅନ୍ତି। ଘଣ୍ଟାଘଣ୍ଟାଧରି ସେ ସବୁର ଅର୍ଥ ବୁଝାଇବସନ୍ତି। ଚୁପ୍‌ଚାପ୍ ବସି ମୁଁ ରାଜଗୁରୁଙ୍କ ଭାଷଣ ଶୁଣିଯାଏ, କିନ୍ତୁ ମୋ ମନ ସେଥିରେ ତିଳେମାତ୍ର ବୋଧହୁଏନାହିଁ। ମୁଁ ଚିନ୍ତାକରେ; କେଉଁଠି ରହୁଛି ମଣିଷର ଏ ଆତ୍ମା ? ତାର ସ୍ୱରୂପ କ'ଣ ? କାର୍ଯ୍ୟ କ'ଣ ? ଦେହଠାରୁ ଭିନ୍ନହୋଇ ଆତ୍ମାର ସ୍ଥିତି କେଉଁଠି ?

ରାଜଗୁରୁ ମୋତେ ବୁଝାଇଦେଲେ; ପିତାଙ୍କର ଆତ୍ମା ବ୍ରହ୍ମାନନ୍ଦ ଧାମରେ ଲୀନହୋଇଯାଇଛି। ତା'ହେଲେ ତାଙ୍କର ମୃତ ଶରୀରକୁ ଦାହକରିବାବେଳେ ଅଗ୍ନିଙ୍କୁ ପ୍ରାର୍ଥନା କରାଗଲା କାହିଁକି– 'ହେ ଅଗ୍ନିଦେବତା, ଯେଉଁ ମୃତ ଶରୀର ଆମେ ତୁମ୍ଭଙ୍କୁ ସମର୍ପଣ କରୁଛୁ, ତାକୁ ତୁମେ ପିତୃମାନଙ୍କ ଉଦ୍ଧାର ଲାଗି ପୁଣି ଜନ୍ମ ଦିଅ। ଏ ଶରୀର ପୁଣି ଜୀବନଧାରଣ କରି ସଂସାରରେ ଜାତହେଉ।' ଏ ପ୍ରକାର ପ୍ରାର୍ଥନାର ମୂଲ୍ୟ କ'ଣ ?

ଏହି ପ୍ରାର୍ଥନାରେ ନିହିତ କଳ୍ପନାରେ ମୋ ମନ ବୁଡ଼ିଗହେ। ସେହି ଚିନ୍ତାରେ ମୁଁ ପୁଣି ଭାସିଯାଇ ଭାବେ, ପିତା ପୁଣି କି ରୂପରେ ଜନ୍ମଗ୍ରହଣକରିବେ ? ମୁଁ ପୁଣି ତାଙ୍କୁ କ'ଣ ଚିହ୍ନିପାରିବି ? ସେ ମୋର ମିତ୍ର ବା ଶତ୍ରୁ ହୋଇ ଜନ୍ମହେବେ ? ମୁଁ କ'ଣ ପିତାଙ୍କର ଶତ୍ରୁ ହୋଇପାରିବି ? ଅସମ୍ଭବ ! ଅସମ୍ଭବ !! ସେ ମୋର ପୁତ୍ର ହୋଇ ଜନ୍ମହେଲେ ବାସ୍ତବରେ କେଡ଼େ ଆନନ୍ଦ ହୁଅନ୍ତାନାହିଁ ? ମାଆ ତାଙ୍କୁ କ'ଣ ଚିହ୍ନିପାରିବେ ? ନାଃ... ପୁନର୍ଜନ୍ମ କେବଳମାତ୍ର କବିର କଳ୍ପନା।

ଏହିପରି କେତେ କ'ଣ କଳ୍ପନା କରି କରି ମୁଁ ବ୍ୟସ୍ତ ହୋଇପଡ଼େ। କେବେ କେବେ ଏହିପରି କଳ୍ପନାରେ ବିବ୍ରତ ହୋଇ ମୁଁ ପଲଙ୍କରେ ଶୋଇପଡ଼େ। ଶୋଇ ଶୋଇ ବିରକ୍ତି ବୋଧହେଲେ ମୁଁ ଉଦ୍ୟାନ ଆଡ଼କୁ ଚାହିଁରହେ। ସେତିକିବେଳେ ମୋର ପିଲାଦିନର ସ୍ମୃତି ଗୋଟି ଗୋଟି ହୋଇ ମନେପଡ଼େ। ପିଲାଦିନେ ଉଦ୍ୟାନର ଫୁଲଗୁଡ଼ିକ ଥିଲେ ମୋର ପ୍ରିୟ ସାଥୀ। ସେ ସମୟରେ ସେମାନଙ୍କ ସହିତ ହସିବା ବା ଖେଳିବାରେ, ବାସ୍ତବରେ କେଡ଼େ ଆନନ୍ଦ ଅନୁଭବ କରୁନଥିଲି ? ଏବେ ସେହି ଫୁଲଗୁଡ଼ିକ ମୋ ଆଗରେ କେବଳ ମାତ୍ର ଫୁଲ। ତା'ର ରୂପ, ରଙ୍ଗ, ଗନ୍ଧ ଏ ସଂସାରରେ କେଡ଼େ ନଶ୍ୱର ବସ୍ତୁ ! ଏବେ ମୁଁ ସେଗୁଡ଼ିକ ସମ୍ବନ୍ଧରେ ଯେତେ ଗଭୀର ଭାବରେ ଚିନ୍ତା କଲେ ମଧ ମୋତେ ସେମାନେ ସ୍ୱପ୍ନଲୋକକୁ ନେଇଯାଇ ପାରନ୍ତିନାହିଁ।

ସେତିକିବେଳେ ମୁଁ ବିରକ୍ତ ହୋଇଯାଏ ମୋର ତାରୁଣ୍ୟ ଉପରେ। ମୁଁ ଭାବେ, ବୃଥାଟାରେ ମୁଁ କାହିଁକି ଯୌବନରେ ପଦାର୍ପଣ କଲି ? ଲାଭ ବା କଅଣ ? ମୁଁ କାହିଁକି ରାଜା ହେଲି ? ସେ ଯଯାତିର ଆତ୍ମା କୁଆଡ଼େ ଉଭେଇଗଲା ? ଯେଉଁ ସମୟରେ ଉଦ୍ୟାନର ପୁଷ୍ପସମ୍ଭାର ଓ ଯଜ୍ଞଶାଳାର ଧୂମ ସହିତ ଉଠୁଥିବା ଅଗ୍ନିକଣିକା ମୋ ପକ୍ଷରେ ଥିଲା ସମାନ ପ୍ରିୟ; ପିଲାଦିନର ସେହି ନିର୍ଭୀକତା, ସେଇ ଅବୋଧତା କୁଆଡ଼େ ଉଭେଇଗଲା ? ଆଜି ମୁଁ କେବେହେଲେ ଅଗ୍ନିକଣିକାକୁ ଧରିବାଲାଗି ଦୌଡ଼ିଯିବିନାହିଁ। ଏବେ ଅଗ୍ନିର ଦାହକତା ସମ୍ବନ୍ଧରେ ମୋର ବେଶ୍ ଧାରଣା ହୋଇସାରିଛି।

ଆଜି କୌଣସି କଳିକା ଆଗରେ ମୁଁ ମୋର ଗୁପ୍ତ ସନ୍ଦେଶ ଶୁଣାଇବିନାହିଁ। ଏବେ ମୋର ବେଶ୍ ଧାରଣା ଜାତହୋଇଛି; ଯେଉଁ କଳିକା ଆଜି ବିକଶିତ ହୋଇଛି ସେ କାଲି ବା ପରଦିନ ନିଶ୍ଚୟ ମଉଳିଯିବ।

ମଣିଷର ଏ ଜ୍ଞାନ କ'ଣ ବରଦାନ ନା ଅଭିଶାପ? ପ୍ରତ୍ୟେକ ଲୋକଙ୍କୁ ମିଳିଥିବା ତାରୁଣ୍ୟ ତା' ଲାଗି ଅଭିଶାପ ନା ବରଦାନ? ତା'ହେଲେ ଯୌବନ ବୃଦ୍ଧାବସ୍ଥାର ପ୍ରାଥମିକ ସୋପାନ ହେଲେ, ମୃତ୍ୟୁ ତାର ଅନ୍ତିମ ସୋପାନ ନୁହେଁ କି? ନାଃ... ନା, ଜୀବନକୁ ବୃଦ୍ଧାବସ୍ଥା ଆଡ଼କୁ ଭୁଲାଇ ନେବାରେ ଯୌବନ ନିଶ୍ଚୟ ଗୋଟିଏ ଚାଲାକି ଖେଳୁଛି। ସେପରି ଅବସ୍ଥାରେ ଯୌବନକୁ ଜୀବନର ବରଦାନ ବୋଲି କିଏସେ କାହିଁକି ସ୍ୱୀକାର କରିବ? ଏହା ପ୍ରକୃତରେ ଏକ ଭୟଙ୍କର ଅଭିଶାପ।

ଏହି ଅଭିଶାପ ଶବ୍ଦ ମନରେ ଉଦିତ ହେବାମାତ୍ରେ ମୋର ମନ ବଳାତ୍କାରରେ ଟାଣି ଓଟାରି ହୋଇଯାଏ ପିତାଙ୍କୁ ମିଳିଥିବା ଅଭିଶାପ ଆଡ଼କୁ। ମୋତେ ଜଣାପଡ଼େ; ଅନ୍ତରୀକ୍ଷରେ କେହି ଜଣେ ଜ୍ୱାଳାମୟ ଅଗ୍ନିପିଣ୍ଡରେ ଲେଖିଦେଉଛି 'ଏ ନହୁଷ ଓ ତାର ସନ୍ତାନମାନେ କେବେହେଲେ ସୁଖୀ ହୋଇପାରିବେ ନାହିଁ।' ଏହି ତୀବ୍ର ଅଭିଶାପର ପ୍ରାୟ ଅର୍ଦ୍ଧଭାଗ ସତ୍ୟରେ ପରିଣତ ହୋଇଗଲାଣି। ପିତୃଦେବ ସୁଖୀ ହୋଇପାରିଲେ ନାହିଁ। ଅନ୍ତିମକାଳରେ ତାଙ୍କର ଆକୁଳତା, ବଞ୍ଚିରହିବାର ଅଭିଳାଷ, ଜୀବନର ଅତୃପ୍ତି ସେ ପଦେ ପଦେ ଅନୁଭବ କରିଗଲେ। ଏପରିକି, ଶେଷ ସମୟରେ ସେ ନିଜର ବିଜୟର 'ସ୍ମାରକ-ଚିହ୍ନ' ସ୍ୱର୍ଣ୍ଣମୁଦ୍ରାଟିକୁ ସୁଦ୍ଧା ଦେଖିବାକୁ ସମର୍ଥ ହୋଇପାରିଲେନାହିଁ।

ପିତୃଦେବ ଉନ୍ମତ୍ତ ହୋଇ ଅଗସ୍ତି ଋଷିଙ୍କୁ ପାଦପ୍ରହାର କରିଥିବାରୁ, ତାଙ୍କୁ ଅଭିଶାପ ଦେବା ସମୁଚିତ ହୋଇଛି; କିନ୍ତୁ ଆମେମାନେ ତାଙ୍କର କି ଦୋଷ କରିଥିଲୁ? ସେ ସମୟରେ ମୁଁ ଆଦୌ ଜନ୍ମଗ୍ରହଣ କରିନଥିଲି, ତଥାପି ସେ ଅଭିଶାପର ଅଦୃଶ୍ୟ ଶକ୍ତି ଭୂତପରି ମୋ ପଛେ ପଛେ କାହିଁକି ଗୋଡ଼ାଇବ?

ବେଳେବେଳେ ମନେହୁଏ; ଏଇକ୍ଷଣି ଯାଉଛି ଅଗସ୍ତି ଋଷିଙ୍କ ପାଖକୁ; ତାଙ୍କ ତପସ୍ୟା କ୍ଷେତ୍ର କୈଳାସ ପର୍ବତରେ ପହଞ୍ଚିଯିବି। ସେଇଠାରେ, ତାଙ୍କରି ଆଗରେ ଛିଡ଼ାହୋଇ ପଚାରିବି, 'ଆମପରି ନିରୀହ ବଂଶଧରଙ୍କୁ ଆପଣ କାହିଁକି ଅଭିଶାପ ଦେଲେ? ଏ ପୁଣି କିଭଳି ନ୍ୟାୟ? ବାପା-ମାଆ ଦୋଷକଲେ ତାଙ୍କ ପୁତ୍ରମାନେ ସେ ଦଣ୍ଡ ଭୋଗ କରିବେ କାହିଁକି? ତା'ହେଲେ କ'ଣ ଦେବଗଣଙ୍କ ନ୍ୟାୟାଳୟରେ ବିଚାର କିମ୍ବା ନ୍ୟାୟ ବୋଲି କିଛି ନାହିଁ?' ମୁଁ ଯତିର ଜୀବନଯାପନ ରୀତି ନିଜ ଆଖିରେ ଦେଖିଆସିଛି। ସେ ଏହି ଅଭିଶାପ ଫଳରେ ଘରୁ ପଳାଇଯାଇ ଦୁଃଖ ଭୋଗ କରୁନାହିଁ ତ? ତା'ହେଲେ ମୁଁ ମଧ୍ୟ କ'ଣ... ସେ ମୁକୁଳିକା... ନା... ନାଃ, ସେ ଥିଲା କେବଳ ମାତ୍ର ରାତିକର ସ୍ୱପ୍ନ!

ପିତାଙ୍କ ମୃତ୍ୟୁପରେ ମୁଁ ରାଜା ହୋଇଯାଇଥିଲି ଏବଂ ମୋର ଅଭିଷେକ ଲାଗି ମାଆ ଅମାତ୍ୟଙ୍କ ସହିତ ଘନ ଘନ ମନ୍ତ୍ରଣା ଚଳାଇଥିଲେ। ମାଆଙ୍କର ମନ ଅନୁସାରେ ଗୋଟିଏ ଶୁଭଲଗ୍ନ ସହଜରେ ମିଳୁନଥିଲା।

ସିଂହାସନରେ ଅଭିଷିକ୍ତ ହେବାପରେ ମୁଁ କ'ଣ ସୁଖୀ ହୋଇପାରିବିନାହିଁ? ଏହା

କିପରି ସମ୍ଭବ ହେବ? ହେ ଭଗବାନ! ମୁଁ ଜାଣେନା, ତୁମେ ମୋ ଭାଗ୍ୟରେ କ'ଣ ବିଧାନ କରିଛ! ଏହିପରି କେତେ କ'ଣ ଦୁର୍ଭାବନା ଫଳରେ ମୁଁ ଏକାବେଳକେ ଅବସନ୍ନ ହୋଇପଡ଼ିଲି। ମୋର ମନେହେଉଥାଏ; ଖାଇବା ପିଇବା ଛାଡ଼ିଦେଇ କେବଳ ନୀରବରେ ପଡ଼ିରହିବି। ମୋର ଏ ଦଶା ଦେଖି ଦିନେ ମାଆ ମୋତେ କହିଲେ, ''ଯଯୁ, ତୋ' ଦେହ କ'ଣ ଭଲନାହିଁ? କାଲି ଅଶୋକବନରୁ ମୁକୁଳିକା ଆସିଥିଲା, ତୁ ଶୋଇପଡ଼ିଥିଲୁ। ତେଣୁ ସେ ଦେଖା କରିନପାରି ଫେରିଗଲା। ବିଚାରୀ ଖୁବ୍ ସୁନ୍ଦରୀ ଓ ଚାଲାକ ମଧ। ଭାବୁଛି– ତାକୁ ଏଠାକୁ ନେଇଆସି ତୋ'ରି ସେବାରେ ଲଗାଇଦେବି। ପ୍ରକୃତରେ ସେ ତୋ' ଖବର ବେଶ୍ ବୁଝୁଥିଲା, ନୁହେ ନା? କହୁଥିଲା କ'ଣ ଜାଣୁ, ଆମ ମହାରାଜ ବଡ଼ ଲାଜକୁଳା; ତାଙ୍କର କ'ଣ କ'ଣ ଦରକାର ସେ କେବେହେଲେ ମୁହଁ ଖୋଲି କହିବେନାହିଁ। ତାଙ୍କ ଆଖିରୁ କେବଳ ଭାଷା ବୁଝି ତାଙ୍କପାଇଁ ସବୁକିଛି ଯୋଗାଡ଼ କରି ରଖିବାକୁ ପଡ଼େ। କ'ଣ କହୁଛୁ– ତାକୁ ଏଠାକୁ ଡକାଇଆଣିବି?''

''ମାଆ, ମୋତେ ବ୍ୟସ୍ତ କରନାହିଁ। ସେ ମୁକୁଳିକା ଯେପରି ପାଗଳୀ, ତୁମେ ମଧ ତାଠାରୁ ବଳି ଦଶଗୁଣ ପାଗଳୀ। ଆଜିକାଲି ମୋ ମନ କାହିଁରେ ଲାଗୁନି। ମନହେଉଛି; ଏ ସବୁ ଧନ ସମ୍ପତ୍ତି ଓ ରାଜସିଂହାସନ ତ୍ୟାଗକରି କୁଆଡ଼େ ...।''

ମୋ କଥା ଶୁଣି ମାଆଙ୍କ ଦେହରୁ ରକ୍ତ ଶୁଖିଗଲା। ସେ ପାଗଳୀଙ୍କ ପରି ମୋ ହାତ ଧରିପକାଇ କହିଲେ, ''ଯଯୁ, ମନେଅଛି ତୋର ପିଲାଦିନେ ତୁ ମୋ ଆଗରେ କ'ଣ ପ୍ରତିଜ୍ଞା କରିଥିଲୁ?'' ମୁଁ ସଙ୍ଗେ ସଙ୍ଗେ ନରମ ସ୍ୱରରେ କହିଲି, ''ପିଲାଦିନେ ମୁଁ ପ୍ରତିଦିନ ତୁମ ଆଗରେ ଗୋଟିଏ ଦୁଇଟି ପ୍ରତିଜ୍ଞା କରି କରି ସେଗୁଡ଼ିକ ଏବେ ମୋ ମନରେ ଜମାଟ ବାନ୍ଧି ରହିଛି। ତୁମେ କେଉଁ ପ୍ରତିଜ୍ଞା କଥା କହୁଛ ମୁଁ ଆଦୌ ମନେପକାଇ ପାରୁନାହିଁ।''

''ପିଲାଳିଆ ଦୁଷ୍ଟାମି ଏବେ ବି ଛାଡ଼ିବୁନି? ନିଜ ଉପରକୁ କଥା ଆସିବ ବୋଲି କେଡ଼େ ମଜାରେ ଭୁଲେଇ ଦେଉଛି ଦେଖ ...!''

ସେହି ମୁହୂର୍ତ୍ତରେ ମୋର ଧାରଣା ହେଲା, ଯତି ସମ୍ବନ୍ଧରେ ମାଆଙ୍କ ଆଗରେ ସବୁ କଥା ଖୋଲି କହିଦେଇ ଅନୁରୋଧ କରିବି– ''ମାଆ, ତୁମେ ଯାଇ ଯତିକୁ ସ୍ନେହ ମମତାର କୋମଳ ଡୋରରେ ବାନ୍ଧିଦେଇ ଘେନି ଆସ। ସେ ବଡ଼ପୁଅ, ତାକୁ ହିଁ ସିଂହାସନରେ ବସାଇ ଅଭିଷେକ କରାଇଦିଅ। ମୋର କିଛି ଲୋଡ଼ାନାହିଁ, ଏପରି କି ରାଜ୍ୟ, ସିଂହାସନ, ରାଜପ୍ରାସାଦ କିଛି ହେଲେ ଦରକାର ନାହିଁ।''

ଓଃ... ରକ୍ଷା, କହିଲି ନାହିଁ। ସେ ଦିନ ଗୋଟିଏ ଆବେଗରେ ଆସି ପିତାଙ୍କ ଆଗରେ କହିଦେଇ ଲାଭ ପାଇଲି କ'ଣ? ବରଂ ତା' ଫଳରେ ପିତାଙ୍କ ମନ କିଛିକାଳ ଲାଗି ଦୁଃଖରେ ସଢ଼ିଗଲା। ଯତି ଜୀବନରେ ବଞ୍ଚିରହିଛି ବୋଲି ଶୁଣିଲେ ମାଆଙ୍କୁ ଅବା କେଉଁ ସୁଖ ମିଳିଯିବ? ସେ ତାକୁ ଖୋଜିବାଲାଗି ଯାଇପାରନ୍ତି; କିନ୍ତୁ ମା'ର ମମତାଭରା ଆଖିର ଲୁହ ଦେଖିଲେ ଯତିର ହୃଦୟ କ'ଣ ତରଳିଯିବ? ସିଂହ ବ୍ୟାଘ୍ର ପରି ହିଂସ୍ର ଜନ୍ତୁଙ୍କୁ ପୋଷା ମନାଇଦେବା ସହଜ; କିନ୍ତୁ ଯତିପରି

ଗୋଟିଏ ହଠଯୋଗୀ... ଯତିର ଜୀବନରେ ଆଉ ହେବ ବା କଅଣ? ଏପରି ଏକ କଠୋର ଯାତନାମୟ ମାର୍ଗରେ ଗତି କରି ସେ କ'ଣ ଈଶ୍ୱରଙ୍କର ସାନ୍ନିଧ ଲାଭ କରିପାରିବ? ଅବଶ୍ୟ ସେ ଯଦି ଏହିପରି ଏକ କଠୋର କାର୍ଯ୍ୟରେ ସଫଳକାମ ହୁଏ, ତେବେ ସମଗ୍ର ସଂସାରରେ ତା'ର ଖ୍ୟାତି ବ୍ୟାପିଯିବ। ବୈରାଗ୍ୟର ସେହି ତୁଷାରମୟ ମସୃଣ ସୋପାନରେ ଆରୋହଣ କରୁ କରୁ ପଥ ମଧ୍ୟରେ ତା'ର ଯଦି ପାଦ ଖସିଯାଏ ଏବଂ ସେହି ଶୁଭ୍ର ତୁଷାର ପର୍ବତ ତା' ଉପରେ ଯଦି ଅଜାଡ଼ି ହୋଇ ପଡ଼େ ତେବେ?

ମୋତେ ବରାବର ନୀରବ ରହୁଥିବାର ଲକ୍ଷ୍ୟକରି ଦିନେ ମାଆ କହିଲେ, "ଅନେକ ଦିନ ଅପେକ୍ଷା କଲିଣି, ଭାବୁଥିଲି ଦିନ କେଇଟା ମଧ୍ୟରେ ତୋ'ର ମନ ବାଟକୁ ଆସିଯିବ; କିନ୍ତୁ ଦେଖୁଛି ତୁ ଦିନକୁ ଦିନ ଖୁବ୍ ଜିଦ୍‌ଖୋର ହୋଇଉଠିଲୁଣି। ତୁ କ'ଣ କରିବୁ? ତୋ' ବଂଶର ପୂର୍ବପୁରୁଷମାନେ ସେଇଆ...। ତୋର ପିଲାଳିଆ ଜିଦ୍ ସହିତ ଏବେ ରାଜାରାଜୁଡ଼ା ଜିଦ୍ ମିଶିଯାଇଛି ନା! ତୁ ଯେପରି ରାଜାଭାବରେ ତୋର ଜିଦ୍ ଜାହିର୍ କରିବାକୁ ବସିଛୁ, ମୁଁ ମଧ୍ୟ ରାଜମାତା ହିସାବରେ ମୋ ଅଧିକାର ଚଳାଇବା ବେଶ୍ ଜାଣିଛି। କହିବି, ତୁ କାହିଁକି ଏପରି ଉଦାସୀନ ଭାବରେ କାଳ କାଟୁଛୁ?"

ଯାହା କିଛି ହେଉନା କାହିଁକି, ମାଆର ହୃଦୟ ଅନ୍ୟ ଉପାଦାନରେ ଗଢ଼ା। ସନ୍ତାନର ସାମାନ୍ୟ ଅସୁବିଧାରେ ମାଆ ଖୁବ୍ ବିବ୍ରତ ହେବା ଆଦୌ ଅସ୍ୱାଭାବିକ ନୁହେଁ। ମୁଁ ନିଜେ ମଧ୍ୟ ଭଲଭାବରେ ବୁଝି ପାରୁ ନଥିଲି ଯେ, ମୋର କ'ଣ ହୋଇଛି। ମୁଁ କଥାର ଧାରା ବଦଳାଇଦେବା ଉଦ୍ଦେଶ୍ୟରେ କହିଲି– "ମାଆ! ତୁମେ ପ୍ରକୃତରେ ମମତାମୟୀ; ଏହା ମୁଁ ଭଲଭାବରେ ଜାଣିଛି। କିନ୍ତୁ ଯା' ମଧ୍ୟରେ ତୁମେ ଯେ ଅନ୍ତର୍ଯ୍ୟାମୀ ପାଲଟିଯାଇଛ ଯା' ମୁଁ...।"

–"ଏ ମୋର ବୃଦ୍ଧାବସ୍ଥାର ଆତ୍ମଜ୍ଞାନ ପରା ବାପା!"

–"ମାନେ?"

ହସି ହସି ସେ କହିଲେ– "ଆରେ ପାଗଳା! ମୁଁ ତ ଦିନେ ପୁଣି ତୋ'ରି ବୟସର ଥିଲି।"

–"ହେଲେ କ'ଣ ହେଲା?"

–"ମୋର ତ କିଛି ହେଲେ ସେ କଥା ମନେଥିବ... ସେତେବେଳେ ମୁଁ କ'ଣ କ'ଣ ଚିନ୍ତା କରୁଥିଲି...?"

"ଦେଖ, ମାଆ! ତୁମ ସ୍ତ୍ରୀଲୋକମାନଙ୍କର ରହସ୍ୟ ଓ ମୁହଁର ଭାଷା ବୁଝିବା ମୋ ପକ୍ଷରେ ସହଜ ନୁହେଁ। ସିଧା ମନ ଖୋଲି କହିଦିଅ ତୁମେ କଅଣ ଚାହୁଁଛ?"

–"ବେଶ୍ ଏତିକି ଯେ, ତୁ ବିବାହ କରିପକାଇଲେ ତୋ' ବୁଦ୍ଧି ଠିକଣାକୁ ଆସିଯିବ।"

–"ଏ କଥା ତୁମେ ନିଜ ଅନୁଭୂତିରୁ କହୁଛ ତ?"

–"ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି? ମୋର ଯେତେବେଳେ ବିବାହ

ହେଲା, ମୁଁ ତୋ'ଠାରୁ ଖୁବ୍ ସାନ ଥିଲି। ମାଆଙ୍କୁ ଛାଡ଼ି ଯେତେବେଳେ ଶାଶୂଘରକୁ ଆସିଲି, ଭାବିଥିଲି ଭଗବାନ ମୋତେ ରକ୍ଷାକରିବେ ସିନା, ନୋହିଲେ ଶାଶୂଘରେ ମୋ ଦିନ ସୁଖରେ ଯିବନାହିଁ।''

—''ତା'ପରେ କ'ଣ ହେଲା ?''

—''ଯାହା ହେବାର କଥା, ସବୁ ଝିଅମାନେ ଯେପରି ହୁଅନ୍ତି ଏବଂ ସଂସାରରେ ପ୍ରତ୍ୟେକ ଘରେ ଯାହା ହୁଏ ସେଇଆ ହେଲା। ଚାହୁଁ ଚାହୁଁ ମୁଁ ଘର ଗୃହାସ୍ଥାଶ୍ରମ ବେଶ୍ ସୁଚାରୁରୂପେ ସମ୍ଭାଳିନେଲି। ଆଉ ଦିନେ ହେଲେ ବାପଘର କଥା ମନେ ପଡ଼ିଲାନି। ସେଇଥିପାଇଁ କହୁଛି, ତୋ' ଅଭିଷେକ ଉତ୍ସବ ଶୀଘ୍ର ଶେଷକରାଇଦେବି। ତା'ପରେ ତୋ' ମନଲାଖି ରାଜକନ୍ୟାଟିଏ ତୋତେ ବିବାହ କରାଇଦେଲେ ତୁ ତୋର . . .।''

ତା' ପରେ ଅଭିଷେକ ଲାଗି ଲଗ୍ନ ଠିକ୍‌କରିବାରେ ମାଆ ଖୁବ୍ ଲାଗିପଡ଼ିଲେ। ମୁଁ ମଧ୍ୟ ମାଆଙ୍କର ଶେଷ କଥାପଦକ ମନେ ମନେ ଭାବି କଳ୍ପନାର ଆନନ୍ଦସାଗରରେ ଉବେଇ ଟୁବେଇ ହେବାକୁ ଲାଗିଲି। ମୁଁ ବିଧିବଦ୍ଧ ଭାବରେ ହସ୍ତିନାର ରାଜା ହୋଇଗଲି। ସ୍ୱର୍ଗପୁରର ଅପ୍‌ସରାଙ୍କ ପରି ଗୋଟିଏ ରାଜକନ୍ୟା ସହିତ ମୋର ବିବାହ ହୋଇଯିବାର କଥା। କିଏ ସେ ରାଜକନ୍ୟା ଯେ କି ଜୀବନ-ଯାତ୍ରାପଥରେ ମୋର ସହଯାତ୍ରିଣୀ ହେବ! କିପରି ଆମର ବିବାହ ସମ୍ପନ୍ନ ହେବ? ଏହିପରି ଅନେକ ଯୌବନସୁଲଭ ପରିକଳ୍ପନା ମୋ ମନରେ ଉଙ୍କିମାରିବାକୁ ଲାଗିଲା।

ମୁଁ ପ୍ରଥମେ ଭାବୁଥିଲି— ପିତାଙ୍କ ବିୟୋଗ ପରେ ମାଆଙ୍କର ଅବସ୍ଥା ମଧ୍ୟ ଆହୁରି ଦୟନୀୟ ହୋଇଉଠିବ, ସେ ପିତାଙ୍କ ବିୟୋଗ-ଦୁଃଖରେ ମ୍ରିୟମାଣ ହୋଇ ଦିନେ ତାଙ୍କରିପରି ମୋତେ ଅନାଥ କରିଦେଇ ତାଙ୍କ ବାଟ ଧରିବେ। କିନ୍ତୁ ମୋ କଳ୍ପନା କଳ୍ପନାରେ ହିଁ ରହିଗଲା। ପ୍ରଥମେ କେତେଦିନ ସେ ଅବଶ୍ୟ ଦୁଃଖରେ ଭାଙ୍ଗିପଡ଼ିଲେ; କିନ୍ତୁ ପରେ ରାଜମାତା ହିସାବରେ ନିଜ ଦାୟିତ୍ୱ ତୁଲାଇ ଘର ବାହାରର ସବୁକିଛି ବୋଝ ମୁଣ୍ଡାଇନେଲେ। ପ୍ରତ୍ୟେକ କଥାରେ ସେ ଆନନ୍ଦର ସହିତ ଉତ୍ସାହ ଦେଖାଇଲେ। ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଦୀର୍ଘ ଅନୁଭବର ସୂଚନା ମିଳୁଥିଲା। ସେ ନିଜର ବୃଦ୍ଧାବସ୍ଥାର ଚରମ ପରିଣତି ବିଷୟରେ ତିଳେହେଲେ ଧ୍ୟାନ ନଦେଇ, ଦ୍ୱିଗୁଣ ଉତ୍ସାହରେ କାମରେ ଲାଗିଯାଇଥିଲେ। ମନେହେଲା, ସତେଯେପରି ସେ ଜୀବନର ସ୍ୱାଦ ନୂତନ ଭାବରେ ଆସ୍ୱାଦନ କରିବାରେ ଲାଗିପଡ଼ିଛନ୍ତି। ମୋର ଉଦାସୀନତା ତୁଳନାରେ ତାଙ୍କ ମନରେ ଖୁବ୍ ଉତ୍ସାହ ଦେଖାଦେଇଥିଲା; ସତେ ଅବା ଗର୍ଜି ଘୁମୁରି ଘୋଟିଆସୁଥିବା କଳା ବଉଦ ଭିତରେ ବିଜୁଳିର ଶୁଭ୍ର ରେଖା ଆଖି ଝଲସାଇଦେଉଛି।

ହାୟ... ବିଧିର କି ବିଡ଼ମ୍ବନା! ଉନ୍ନତ ଯୌବନର ପ୍ରଥମ ସୋପାନରେ ଛିଡ଼ାହୋଇଥିବା ଯଯାତିର ମନରେ ବାର୍ଦ୍ଧକ୍ୟସୁଲଭ ଉଦାସୀନତା ଆଉ ବୃଦ୍ଧାବସ୍ଥାର ଶେଷ ସୋପାନରେ ଛିଡ଼ାହୋଇ ମାଆ କିପରି ଯୌବନସୁଲଭ ଉନ୍ମାଦନାରେ କାମରେ ଆଗେଇ ଚାଲିଛନ୍ତି। ମୁଁ ଭାବିଥିଲି କଅଣ, ଆଉ ହେଲା କଅଣ? ସଂସାରରେ ପ୍ରତ୍ୟେକ ବ୍ୟକ୍ତି କେବଳ ଯେ ନିଜପାଇଁ ବଞ୍ଚିରହେ, ଏହାହିଁ ପ୍ରକୃତ ସତ୍ୟ। ବୃକ୍ଷଲତାର

ଚେର ଯେପରି ଆର୍ଦ୍ରଭୂମି ଆଡ଼କୁ ଆପଣାଛାଏଁ ମାଡ଼ିଯାଏ ଠିକ୍ ସେହିପରି ମନୁଷ୍ୟ ନିଜର ସୁଖ ପାଇଁ ଅନ୍ୟର ଆଶ୍ରୟ ଲୋଡ଼ିଥାଏ। ଏହି ଚିରନ୍ତନ ସତ୍ୟ, ଏହି ଐକାନ୍ତିକ ସୁଖର କାମନାକୁ ଦୁନିଆ ପ୍ରେମ ଓ ମୈତ୍ରୀ ନାମରେ ନାମିତ କରିଥାଏ। କିନ୍ତୁ ପ୍ରକୃତରେ ଏହାହିଁ ଆତ୍ମପ୍ରେମ। ଗୋଟିଏ ପଟର ଆର୍ଦ୍ରତା ଶୁଷ୍କ ହୋଇଗଲେ ବୃକ୍ଷଲତା କେବେହେଲେ ଶୁଖିଯାଆନ୍ତି ନାହିଁ, ସେମାନେ ଆଉ ଗୋଟିଏ ପଟକୁ ସଙ୍ଗେସଙ୍ଗେ ଚେର ମେଲାଇ ଦିଅନ୍ତି। ଦୂରରେ ଥାଉ କିମ୍ବା ନିକଟରେ ଥାଉ, ସେହି ଆର୍ଦ୍ରତାକୁ ଖୋଜି ସେ ପୁଣି ଲହଲହକା ହୋଇଉଠେ।

ମାଆଙ୍କର ମନ ଭିତରେ ଜାଗିଉଠିଥିବା ଏହି ନୂତନ ଉଦ୍ଦୀପନା ମୂଳରେ ଏହାହିଁ ଥିଲା ପ୍ରକୃତ ରହସ୍ୟ। ଏଇ ସେଦିନ ପର୍ଯ୍ୟନ୍ତ ସେ ମହାରାଣୀର ଆସନରେ ଆସୀନା ଥିଲେ ମଧ୍ୟ ତାଙ୍କର ନଥିଲା ସ୍ୱାତନ୍ତ୍ର୍ୟ; ସେ କେବଳ ନିଜର ନାରୀସୁଲଭ ଗୁଣରେ ସ୍ୱାମୀଙ୍କୁ ବଶକରି ସାମ୍ରାଜ୍ଞୀର ସ୍ତରରେ ଛିଡ଼ାହୋଇ ଅଧିକାର ସାବ୍ୟସ୍ତ କରୁଥିଲେ। ସେଇଥିରେ ତାଙ୍କର ବଡ଼ପଣ ପ୍ରକଟିଉଠୁଥିଲା। ପିତୃଦେବ ଯେତେବେଳେ ଇନ୍ଦ୍ରାଣୀଙ୍କ ଅପରୂପ ସୌନ୍ଦର୍ଯ୍ୟରେ ମୋହିତ ହୋଇଥିଲେ, ସେସମୟରେ ମାଆ କେତେ ନିର୍ଯ୍ୟାତନା ସହ୍ୟ କରିନଥିବେ? ମନେ ମନେ କେତେ କ୍ରନ୍ଦନ କରିନଥିବେ? ରାତି ରାତି ଉଜାଗର ରହି ଆଖିର ଅବିରଳ ଅଶ୍ରୁଧାରାରେ କେତେ ଯେ ଉପାଧାନ ସିକ୍ତ କରିଥିବେ ତା' କିଏ କହିପାରିବ? ତା'ପରେ ପୁଣି ତାଙ୍କ ଆଖିର ତପ୍ତ ଲୁହଧାର ପୋଛିବାପାଇଁ କାହାରି ଦରଦଭରା ହସ୍ତର ଭରସା ନପାଇ, ସେତେବେଳେ ସେ କେଡ଼େ ଅସହାୟ ମନେକରିନଥିବେ ନିଜକୁ?

ପିଲାଦିନେ ମାଆ ହିସାବରେ ସେ ମୋତେ ସ୍ତନ୍ୟପାନ କରାଇନଥିଲେ; ତା'ର ମୂଳ କାରଣ ଥିଲା– ସେ ନିଜର ସୌନ୍ଦର୍ଯ୍ୟ ରକ୍ଷା କରି ଜଣେ ମହାନ୍ ବ୍ୟକ୍ତିର ପତ୍ନୀ ହେବାରେ ଗର୍ବ ଅନୁଭବ କରୁଥିଲେ। ବାତ୍ସଲ୍ୟମମତା ଅପେକ୍ଷା ସୌନ୍ଦର୍ଯ୍ୟରକ୍ଷା ପ୍ରତି ସେ ଅଧିକ ଦୃଷ୍ଟି ଦେଇଥିଲେ। ତାଙ୍କର ଧାରଣା ଥିଲା, ପତି ହିଁ ସର୍ବସ୍ୱ। କିନ୍ତୁ ପରିଶେଷରେ ସେ ସ୍ୱାମୀଙ୍କର ଆଦରଣୀୟା ହୋଇପାରିଥିଲେ କି? ସେ ସ୍ୱାମୀଙ୍କ ଉପରେ କର୍ତ୍ତୃତ୍ୱ ଜାହିର୍ କରିପାରିନଥିଲେ। ସ୍ୱାମୀଙ୍କ ଅନୁରାଗ ପୂର୍ଣ୍ଣମାତ୍ରାରେ ପାଇ ପାରୁ ନଥିଲେହେଁ ତା' ବିରୁଦ୍ଧରେ ମୁହଁ ଖୋଲିବାର ତାଙ୍କର ଉପାୟ ନଥିଲା। କିନ୍ତୁ ଆଜି ଆଉ ସେ ଡର ନଥିଲା; ସେପ୍ରକାର ଦୁଶ୍ଚିନ୍ତା ତାଙ୍କୁ ବିବ୍ରତ କରୁନଥିଲା। ଆଜି ସେ ଥିଲେ ରାଜମାତା। ପୁତ୍ର ଉପରେ ମାତାର ଅଧିକାର ବଳରେ ସେ କର୍ତ୍ତୃତ୍ୱ ବିସ୍ତାର କରିପାରୁଥିଲେ। ତାଙ୍କର ଚାଲିଚଳନ, କଥାବାର୍ତ୍ତା ସବୁଥିରେ ତାଙ୍କର ବୈଶିଷ୍ଟ୍ୟ ତଥା ସ୍ୱାଭିମାନ ଫୁଟିଉଠୁଥିଲା।

ମୋ ମନରେ ମାଆଙ୍କ ସମ୍ବନ୍ଧରେ ଏ ଧାରଣା ହୋଇଥିବାବେଳେ ମାଧବ ଆସି ପହଞ୍ଚିଗଲା। ସେ ଆଜି ଏକୁଟିଆ ଆସିନଥିଲା, ସାଥିରେ ଥିଲା ତାର ଛୋଟ ଝିଆରୀ ତାରକା। ସେ ଚଗଲୀ ଝିଅଟିକୁ ଦେଖିବାମାତ୍ରେ ମୋ ମନ ଆନନ୍ଦରେ ନାଚିଉଠିଲା। ମୁଁ ତାକୁ ପାଖକୁ ଡାକି ପଚାରିଲି– ''କି ତାରକା! ତୋ କଣ୍ଢେଇ ପାଇଁ ବର ମିଳିଲା ନାହିଁ?'' ସେ ମୁଣ୍ଡ ଟୁଙ୍ଗାରି 'ହଁ' କହି, ରାଜପ୍ରାସାଦର

ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା ଆଡ଼କୁ ଏକଲୟରେ ଚାହିଁ ଦେଖିବାକୁ ଲାଗିଲା। ମୁଁ ପୁଣି ପଚାରିଲି– "ବର କେମିତିକା ? ଦେଖିବାକୁ ଭଲ ତ?" ସେ ପୁଣି ମୁଣ୍ଡ ହଲାଇ ନାହିଁକରିଦେଲା; ମାତ୍ର ପଦେହେଲେ କଥା ମୁହଁରୁ ବାହାର କଲା ନାହିଁ। ସେ କାହିଁକି ଏପରି ମୌନବ୍ରତ ଧାରଣ କରିଛି ମୁଁ ଆଦୌ ବୁଝିପାରିଲିନାହିଁ। ମୁଁ ହସି ହସି ପଚାରିଲି, "ଭଲନୁହେଁ, ଯା' ଅର୍ଥ କ'ଣ ? ତୋ' କଣ୍ଢେଇ ପରି ହୋଇଛି କି ନାହିଁ?"

ନାକ ଛିଞ୍ଚାଡ଼ି, ମୁହଁ ବିର୍‌ବିର୍ କରି କହିଲା ତାରକା– "ବରର ନାକଟା ଚେପ୍‌ଟା।"

"ଏଥିରେ ବଡ଼ କଥାଟେ କ'ଣ ହୋଇଗଲା ? ହାତୀ ତା' ନାକରେ ଗୋଡ଼ ମାଡ଼ିଦେଇଥିବ। ଦୁନିଆରେ ନାକ-ଚେପ୍‌ଟା ଲୋକ ଅନେକ ଅଛନ୍ତି; ସ୍ତ୍ରୀମାନଙ୍କର ନାକ ମଧ୍ୟ ଚେପ୍‌ଟା ଅଛି।"

–"ଛେ କନେଇ କନେଇ କହୁଛି।"

ମୁଁ ଆଦୌ ବୁଝିପାରିଲିନି, ତାରକାର କଣ୍ଢେଇଟା କିପରି ଖନେଇ କରି କଥା କହୁଛି। ମୁଁ ମାଧବକୁ ଚାହିଁ ପଚାରିଲି– "ଏ କି ଆଶ୍ଚର୍ଯ୍ୟ କଥା ? ମୁଁ ଶୁଣିଛି ପଣ୍ଡିତମାନଙ୍କ ଘରେ ପଶୁପକ୍ଷୀମାନେ ବେଦାନ୍ତ-ଶାସ୍ତ୍ର ଚର୍ଚ୍ଚା କରନ୍ତି; କିନ୍ତୁ ଏ ଘଟଣା ତ ଆହୁରି ଆଶ୍ଚର୍ଯ୍ୟଜନକ।"

ମାଧବ ହସି ହସି କହିଲା– "ସେ ସ୍ୱପ୍ନରେ ତା' କଣ୍ଢେଇ ଖନାକଥା ଶୁଣିଛି ବୋଲି କହୁଛି।" ଏ କଥା ଶୁଣି ମୁଁ ବେଶ୍ ମନଖୋଲି ହସି ହସି ବେଦମ୍ ହୋଇଗଲି। ତଥାପି ଚଗଲୀ ତାରକା କିଛି ନକହି ଚୁପ୍‌ଚାପ୍ ବସିଥିଲା। ମାଧବ ପୁଣି କହିଲା, "ଆଜି ସେ ଜିଦ୍ ଧରି ମହାରାଜାଙ୍କ ପାଖକୁ ଆସିଛି।"

–"କିରେ ତାରକା, କଥା କ'ଣ ? ତୋ' ନାକ ଚେପ୍‌ଟା କଣ୍ଢେଇର ନାକଟିକୁ ଉଚ୍ଚା କରିଦେବା ? ତା'ହେଲେ ରାଜବୈଦ୍ୟଙ୍କୁ ଡାକିବା ନା ବଢ଼େଇକୁ ଡାକି ତା' ନାକ ଠିକ୍ କରିଦେବା ?"

–"ଉଁ... ହୁଁ..." ଏଥର ମୁହଁ ଖୋଲି ଉତ୍ତରଦେଲା ତାରକା।

–"ତୁ କ'ଣ ଚାହୁଁଛୁ କହ ?

ତଳକୁ ମୁହଁ ପୋତି, ଥରେ ମୋ ଆଡ଼କୁ ଚାହିଁବାଲାଗି ଚେଷ୍ଟାକରି କହିଲା ତାରକା– "ଏବେ ତୁମେ ମାହାଲାଜ ହୋଇଗଲ ନା ?"

–"ହଁ..."

–"ତା'ହେଲେ ତୁମେ ଥିଙ୍ଗ ଉପରେ ବଥିବ ?"

–"ସିଂହ ଉପରେ ?"

–"ହଁ... ଥିଙ୍ଗ ଉପରେ..."

ମୁଁ ଏଥର ତା' କଥା ବେଶ୍ ବୁଝିପାରି କହିଲି– "ରାଜା ହେଲେ ସିଂହାସନ ଉପରେ ବସିବାକୁ ପଡ଼ିବ, ନଇଲେ ରାଜା ବୋଲି କେହି ମାନିବେ ନାହିଁ।"

–"ଥିଙ୍ଗ କାମୁଡ଼ିବ ଯେ...!"

ମୁଁ ଟିକିଏ ଗମ୍ଭୀର ହୋଇଯାଇ ଉତ୍ତର ଦେଲି, ''ନା... ନା... ସେ ସିଂହଟା ବୁଢ଼ାହୋଇଯାଇଛି। ସବୁଯାକ ଦାନ୍ତ ତା'ର ଉପାଡ଼ିଦିଆଯାଇଛି।''

—''ସେ ମତେ କାମୁଡ଼ିବ ନାହିଁ?''

—''ନା...!''

—''ତୁମେ ମତେ ଲାନୀ କଲିବ?''

ଓଃ, ତା'ହେଲେ ତାରକା ମନରେ ଏଇ ଧାରଣା ଥିଲା? ତେଣୁ ସେ ମୋର ରାଣୀ ହେବା ଆଶାରେ ଏଠାକୁ ଆସିଛି। ସ୍ୱୟଂବର ପ୍ରଥାର ଏ ଅଦ୍ଭୁତ ଢଙ୍ଗ ସମ୍ବନ୍ଧରେ ଚିନ୍ତା କରି ହସି ହସି ମୋର ପେଟ ବଥା କଲା। କାଳେ ପିଲାଟା ମନରେ ଦୁଃଖ ଜାତହେବ, ତେଣୁ ମୁଁ ଆଉ ନ ହସି ଗମ୍ଭୀର ହୋଇଯାଇ ପଚାରିଲି— ''ତୁ ରାଣୀ ହୋଇଗଲେ କ'ଣ କରିବୁ?''

ଅତି ସୁନ୍ଦର ପିଲାଳିଆ ଢଙ୍ଗରେ ଆଖି ନଚାଇ, ହାତ ହଲାଇ କହିଲା ତାରକା— ''ମୁଁ ଲାନୀ ହେଲେ ବୁଲୀମା' ଆଉ ଉଥେଇବନି ଛକାଲୁ। ମଲ୍ ବୌତୁ ଗନା ହୋଇଯିବ। ମୋ କନ୍ଧେଇ ନାଗି ବୌତୁ କନା ମିଳିବ। ଆଉ... ମୁଁ ଲାନୀ ବନିଗଲେ...।''

ମୁଁ ପିଲାଟିର ପିଲାଳିଆ ଚିନ୍ତା, ତା'ର କହିବାର ଢଙ୍ଗ ଦେଖି ମନେ ମନେ ଖୁସି ହେବା ସଙ୍ଗେ ସଙ୍ଗେ ତା'ର ବାଳଚପଳତା ପ୍ରତି ମୋ ମନରେ ଈର୍ଷ୍ୟା ଜାତହେଲା। ତା'ପରେ ତା'ର ମନରକ୍ଷା କରିବା ଲାଗି କହିଲି, ''ଏବେ ତୁ ଖୁବ୍ ଛୋଟ ହୋଇଛୁ, ବଡ଼ ହୋଇଗଲେ ମୁଁ ତତେ ରାଣୀ କରିବି, ବୁଝିଲୁ?'' ଏହା କହି ମୁଁ ତାରକା ହାତରେ ମିଠାଇ ଦେଇ ତାକୁ ବିଦାୟକଲି।

ସନ୍ଧ୍ୟାବେଳକୁ ମହର୍ଷି ଅଙ୍ଗିରସଙ୍କ ଅଶ୍ରମରୁ ଦୁଇଗଣ ଶିଷ୍ୟ ମୋ ପାଇଁ ଖଣ୍ଡିଏ ପତ୍ର ଘେନି ଆସି ପହଞ୍ଚିଲେ। ସେହି ପତ୍ରଟିକୁ ପାଠକରି ମୁଁ ବାଳସୁଲଭ ଚପଳତାପୂର୍ଣ୍ଣ ଜୀବନରୁ ବାସ୍ତବ ଜୀବନକ୍ଷେତ୍ରକୁ ଓହ୍ଲାଇ ଆସିଲି। ମହର୍ଷି ଖଣ୍ଡିଏ ଦୀର୍ଘପତ୍ରରେ ଲେଖିଥିଲେ— ''ମହାରାଜ ପୁଣ୍ୟଶ୍ଲୋକ ନହୁଷଙ୍କ ଦେହାବସାନର କିଛି ଦିନ ପରେ ମୁଁ ତୁମକୁ ଏ ପତ୍ରଟି ଲେଖୁଛି। ଯା' ମଧ୍ୟରେ ମୁଁ ଆଶ୍ରମରେ ନଥିଲି; ତେଣୁ ଠିକ୍ ସମୟରେ ପତ୍ର ଲେଖି ପାରିଲିନାହିଁ।

''ତୁମେ ଆଶ୍ରମରୁ ଯିବାର କିଛି ଦିନ ପରେ କଚ ସଞ୍ଜୀବନୀବିଦ୍ୟା ଲାଭକରିବା ଉଦ୍ଦେଶ୍ୟରେ ବୃଷପର୍ବାଙ୍କ ରାଜ୍ୟରେ ପ୍ରବେଶକଲା। ଆମର ଶାନ୍ତିଯଜ୍ଞ ଅବଶ୍ୟ ନିର୍ବିଘ୍ନରେ ଶେଷହୋଇଥିଲା; କିନ୍ତୁ ତତ୍‌ପରବର୍ତ୍ତୀ ଅବସ୍ଥାରୁ ସ୍ପଷ୍ଟ ହୋଇଗଲା ଯେ, ଆମ ଯଜ୍ଞର କୌଣସି ପ୍ରଭାବ ଯୁଦ୍ଧ-ନିରୋଧ ଉପରେ ପଡ଼ିଲା ନାହିଁ। ଆଖି ଆଗରେ କୌଣସି ଅମଙ୍ଗଳ କାର୍ଯ୍ୟ ଦେଖାଗଲେ ନିଷ୍କ୍ରିୟ ହୋଇ ବସିରହିବା ଆଦୌ ପୁରୁଷାର୍ଥ କାର୍ଯ୍ୟ ନୁହେଁ; ତେଣୁ ଶିବତୀର୍ଥକୁ ଯାଇ ଗୋଟିଏ ମନ୍ତ୍ର ପୁରଶ୍ଚରଣ କରିବାଲାଗି ମନ ବଳାଇ ଆଶ୍ରମ ତ୍ୟାଗକଲି। ମୋର ସଙ୍କଳ୍ପ ଶେଷକରି ଫେରିବା ବାଟରେ ମହାରାଜ ନହୁଷଙ୍କର ଦେହାବସାନ ସମ୍ବାଦ ଶୁଣିବାକୁ ପାଇଲି। ଆଜି ଆଶ୍ରମକୁ ଫେରିଆସି ତୁମକୁ ପତ୍ର ଲେଖୁଛି। ଯଯାତି, ଜୀବଜଗତ ଲାଗି ମୃତ୍ୟୁ ଯେତିକି ଭୀଷଣ, ସେତିକି

ଅପରିହାର୍ଯ୍ୟ ମଧ୍ୟ। ଜନ୍ମ ପରି ସେ ମଧ୍ୟ ସୃଷ୍ଟିଚକ୍ରର ଗୋଟିଏ ଅଙ୍ଗ। ବସନ୍ତର ଆଗମନ ସହିତ ପ୍ରତି ବୃକ୍ଷରେ ଯେପରି ସୁନ୍ଦର ନବକିଶଳୟର ଆଗମନ ଶୋଭାଦାୟକ ହୋଇଥାଏ ଏବଂ ତାହା ଯେପରି ସୃଷ୍ଟିକାରିଣୀ ଶକ୍ତିଙ୍କର ସୃଷ୍ଟିଲୀଳା, ସେହିପରି ଶିଶିରର ଆଗମନରେ ପକ୍ୱପତ୍ର ଝଡ଼ିବା ତାଙ୍କ ସୃଷ୍ଟିକ୍ରିୟା ବୋଲି ମନେକରିବାକୁ ହେବ। ଉଦୟ ଅସ୍ତ, ଗ୍ରୀଷ୍ମ ବର୍ଷା, ଆଲୋକ ଅନ୍ଧକାର, ଦିନ ରାତି, ସ୍ତ୍ରୀ ପୁରୁଷ, ସୁଖ, ଦୁଃଖ, ଶରୀର, ଆତ୍ମା, ଜନ୍ମ ଓ ମୃତ୍ୟୁ ସୃଷ୍ଟିତତ୍ତ୍ୱର ଅପରିହାର୍ଯ୍ୟ ଅଙ୍ଗ। ଏହାହିଁ ହେଉଛି ଜୀବନର ଦ୍ୱନ୍ଦ୍ୱାତ୍ମକ ପରିପ୍ରକାଶ। ଏହିପରି ଭାବରେ ଆଦିଶକ୍ତିଙ୍କ ବିଳାସ ଓ ବିକାଶର ପରିପ୍ରକାଶ ଜୀବଜଗତ୍‌ରେ ଦେଖାଦେଇଥାଏ।

"ମହାରାଜ ନହୁଷ ଅତ୍ୟନ୍ତ ପରାକ୍ରମଶାଳୀ ଥିଲେ। ତାଙ୍କର ସେହି ପରାକ୍ରମରୁ ତୁମକୁ ପ୍ରେରଣା ମିଳୁ। ପ୍ରଜାମାନେ ରାଜାଙ୍କ ଲାଗି କାମଧେନୁ ସ୍ୱରୂପ ଅଟନ୍ତି। ସେମାନଙ୍କ ସେବାରେ ତୁମର ସମୟ ଅତିବାହିତ ହେଉ। ଧର୍ମ ସହିତ ନିର୍ବିରୋଧ ଭାବରେ ତୁମର ଅର୍ଥ ଓ କାମପିପାସା ଘନିଷ୍ଠତା ସ୍ଥାପନକରୁ; ଏହାହିଁ ଆଦିଶକ୍ତିଙ୍କଠାରେ ମୋର ତୁମ ଲାଗି ପ୍ରାର୍ଥନା।

"ପତ୍ର ଶେଷ କରୁଥିଲି; ମାତ୍ର ଅନୁଭବ କରୁଛି, ଅମଙ୍ଗଳ ସମାଚାର କେବେହେଲେ ଏକାକୀ ଆସେନାହିଁ। ରାକ୍ଷସଙ୍କ ରାଜ୍ୟ-ସୀମାରୁ ଆସିଥିବା ଜଣେ ଋଷିକୁମାର କହନ୍ତି— କଚ୍ ସେହି ରାଜ୍ୟରେ ନିର୍ବିରୋଧ ପ୍ରବେଶ କରିବାର ସୁଯୋଗ ପାଇଲେ ଏବଂ ଶୁକ୍ରମହର୍ଷି ମଧ୍ୟ ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିନେଲେ। କଚ୍‌ଙ୍କ ମନରେ ସଂପୂର୍ଣ୍ଣ ଆତ୍ମବିଶ୍ୱାସ ଜାତହେଲା ଯେ, ସେ ଅଖଣ୍ଡ ଗୁରୁସେବା ଓ ନିଷ୍ଠା ଫଳରେ ଶୀଘ୍ର ନ ହେଲେ ମଧ୍ୟ ବିଳମ୍ବରେ ସଂଜୀବନୀବିଦ୍ୟା ଲାଭକରିବେ। ରାକ୍ଷସମାନଙ୍କର ଧାରଣା ଥିଲା; ଏହି ସଂଜୀବନୀବିଦ୍ୟା ସାହାଯ୍ୟରେ ସେମାନେ ଦେବତାଙ୍କୁ ପଦାନତ କରି ସ୍ୱର୍ଗରାଜ୍ୟରେ ଅଧିକାର ସାବ୍ୟସ୍ତ କରିପାରିବେ। ଏଣୁ ସେମାନେ କଚ୍‌ଙ୍କ ସହିତ ଶତ୍ରୁତା ଆରମ୍ଭ କରିଦେଲେ। ପ୍ରତିଦିନର ସେବା ମଧ୍ୟରେ କଚ୍ ଗୁରୁଙ୍କର ଗାଈଗୁଡ଼ିକୁ ନେଇ ବନକୁ ଚରାଇବାକୁ ଯାଉଥିଲେ। ଦିନେ ରାକ୍ଷସମାନେ ତାଙ୍କୁ ଧରିନେଇ ନିର୍ମମ ଭାବରେ ହତ୍ୟା କରିବା ସଙ୍ଗେସଙ୍ଗେ ତା' ମାଂସକୁ ଖଣ୍ଡ ଖଣ୍ଡ କରି ଶ୍ୱାନ ଶୃଗାଳ ଆଗରେ ପକାଇଦେଲେ।

"ଫେରିଆସିଥିବା ଏହି ଋଷିକୁମାରଟିକୁ ଅତି କଷ୍ଟରେ ଏହି ସମ୍ବାଦ ମିଳିଥିଲା। ରାକ୍ଷସଙ୍କ ରାଜ୍ୟରେ ପ୍ରବେଶ କରି ସେଠାରୁ କୁଶଳରେ ଫେରିଆସିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର। ସୀମା ପ୍ରାନ୍ତରେ ଅନେକ ଋଷିକୁମାର ନିଜ ନିଜ ଜୀବନକୁ ପାଣିଛଡ଼ାଇ ସମ୍ବାଦ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଥିଲେ। କଚ୍‌ଙ୍କର ନିର୍ମମ ମୃତ୍ୟୁ ପରେ ସେମାନଙ୍କ ପକ୍ଷରେ ଆଉ କିଛି କାର୍ଯ୍ୟ ରହିଲା ନାହିଁ। ଯଯାତି! ଏହି ତିନି ଚାରିଟା ଧାଡ଼ିର ଅକ୍ଷରଗୁଡ଼ିକ ତୁମ ପକ୍ଷରେ ଅତ୍ୟନ୍ତ ଅସ୍ପଷ୍ଟ ହୋଇଯିବ। କାରଣ, ଏହି ଧାଡ଼ିଗୁଡ଼ିକ ଉପରେ ମୋର ଅଜ୍ଞାତସାରରେ ଅଶ୍ରୁଧାର ପଡ଼ିଯାଉଛି। ଏହି ଅଶ୍ରୁଧାର ରୋକିବା ଲାଗି ମୁଁ ଅନେକ ଯତ୍ନ କରିଛି। ମୁଁ ଜଣେ ନିଷ୍ଠାପର ଋଷି ହୋଇଥିଲେ ମଧ୍ୟ ଜଣେ ରକ୍ତମାଂସଧାରୀ ପ୍ରାଣୀ ତ?

"କଚ୍‌ର ସଦ୍‌ଗୁଣଗୁଡ଼ିକ ମନେପକାଇ ମୁଁ ବିବ୍ରତ ହୋଇଉଠିଛି। ସଂସାରରେ ଜାତହୋଇଥିବା ପ୍ରତ୍ୟେକ ମନୁଷ୍ୟ, ଅମଙ୍ଗଳ ହେଉ_ବା ମଙ୍ଗଳଜନକ ହେଉ, କୌଣସି ଗୋଟିଏ ପ୍ରବୃତ୍ତି ନେଇ ଜନ୍ମ ଗ୍ରହଣ କରେ। କିନ୍ତୁ ମଙ୍ଗଳଜନକ ପ୍ରବୃତ୍ତି ବୋଧହୁଏ ଖୁବ୍ କମ୍ ଲୋକଙ୍କଠାରେ ଅତ୍ୟନ୍ତ ଅଧିକ ମାତ୍ରାରେ ପ୍ରକଟିତ ହୋଇଥାଏ। ଗଗନଚୁମ୍ବୀ ପର୍ବତର ଶିଖରଦେଶ ସଦୃଶ ସେମାନେ ଅତ୍ୟନ୍ତ ଉଚ୍ଚାଭିଳାଷୀ ହୋଇଥାଆନ୍ତି। ସେମାନେ ଉଦାତ୍ତ କାର୍ଯ୍ୟ ପ୍ରତି ଅତ୍ୟନ୍ତ ଆଗ୍ରହ ଦେଖାଇଥାନ୍ତି। କଚ୍‌ର ସ୍ୱଭାବ ମଧ୍ୟରେ ଏହି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ। ମୋ ଦୃଷ୍ଟିରେ ଏହା ଅତ୍ୟନ୍ତ ମୂଲ୍ୟବାନ୍।

"ମୁଁ ଆଶା କରିଥିଲି, ଦେବ-ଦାନବଙ୍କ ମଧ୍ୟରେ ଉପୁଜିଥିବା କନ୍ଦଳର ନିରାକରଣ କଚ୍‌ଙ୍କଦ୍ୱାରା ସମ୍ପନ୍ନ ହୋଇପାରିବ। କିନ୍ତୁ... ଆଶା କରିବା ମନୁଷ୍ୟର ସାଧ୍ୟ, ପରନ୍ତୁ...।"

"ମୁଁ ତୁମକୁ ଏଇ କେତେ ଧାଡ଼ି ପୂର୍ବରୁ ଲେଖିସାରିଛି ଯେ, ଜନ୍ମ ଓ ମୃତ୍ୟୁ ଜୀବନଚ଼କ୍ରର ଅବିଚ୍ଛେଦ୍ୟ ଅଙ୍ଗ। ଏଣୁ ମୋ ମନରେ ଜାତହୋଇଥିବା କଚ୍ ସମ୍ବନ୍ଧୀୟ ଧାରଣା ଜାଣି ତୁମେ ନିଶ୍ଚୟ ମୋ ବିଚ଼ାର ବା ସିଦ୍ଧାନ୍ତ ପ୍ରତି ଉପହାସ କରିବ। ତୁମ ମନରେ ଧାରଣା ହୋଇପାରେ ଯେ, ଦାର୍ଶନିକ ବିଚ଼ାରଧାରା କେବଳ ଅନ୍ୟକୁ ଉପଦେଶ ଦେବାଲାଗି ଉଦ୍ଦିଷ୍ଟ। କିନ୍ତୁ ମୋ ପରି ଜଣେ ଅନୁଭୂତିସମ୍ପନ୍ନ ବୃଦ୍ଧର କଥା ତୁମେ ମନେରଖିବ ଯେ, ଦ୍ୱନ୍ଦ୍ୱାତ୍ମକ ଜୀବନରେ ଦାର୍ଶନିକ ସିଦ୍ଧାନ୍ତ କେବଳ ମାତ୍ର ଅନ୍ତିମ ଆଶ୍ରୟ।

"ରାଜମାତାଙ୍କର ଦୁଃଖ ମୁଁ ନିଜେ ଅନୁଭବ କରିପାରୁଛି। ଆଦିମାତାଙ୍କଠାରେ ମୋର ଏତିକି ମାତ୍ର ବିନମ୍ର ପ୍ରାର୍ଥନା, ତୁମର ସତ୍‌କର୍ମ ଫଳରେ ସେ ଶୀଘ୍ର ରାଜମାତାଙ୍କ ମନରୁ ଦୁଃଖର ଭାର ଲାଘବ କରିଦିଅନ୍ତୁ। ଏବେ ତୁମେ ରାଜା ହୋଇଯାଇଛ। ତେଣୁ ପତ୍ର ଲେଖିବା ସମୟରେ ମୋ ମନରେ ଧାରଣା ହେଲା, ତୁମକୁ 'ଆପଣ' ବୋଲି ସମ୍ବୋଧନ କରେ। କିନ୍ତୁ 'ଆପଣ' ଅପେକ୍ଷା 'ତୁମେ' ଶବ୍ଦରେ ଆତ୍ମୀୟତା ଅଧିକ ରହିଛି ବୋଲି ମୋର ଧାରଣା ହେଲା; ସତ ନୁହେଁ କି?"

ମହର୍ଷି ଅଙ୍ଗିରସଙ୍କ ପତ୍ର ମଧ୍ୟରୁ କେବଳ ଗୋଟିଏ ଅଂଶ ମୋର ହୃଦୟକୁ ସ୍ପର୍ଶ କରିପାରିଲା; ତାହା ହେଉଛି, କଚ୍‌ଦେବଙ୍କ ମୃତ୍ୟୁ ଏବଂ ତାଙ୍କ ଆଖିରୁ ଝରିଥିବା ଲୁହଧାର ଫଳରେ ଅସ୍ପଷ୍ଟ ହୋଇଥିବା କେତୋଟି ଧାଡ଼ି ପାଠ। ପତ୍ରର ଅନ୍ୟାନ୍ୟ ବିଷୟଗୁଡ଼ିକ ଥିଲା ଶୁଷ୍କ ଦାର୍ଶନିକ ତତ୍ତ୍ୱ ବା ଗତାନୁଗତିକତା।

ତା'ହେଲେ କ'ଣ ମନୁଷ୍ୟ କେବଳ ଦର୍ଶନ ଉପରେ ବଞ୍ଚିରହିଛି? ନା... ସେ କେବଳ 'ଆଶା' ଉପରେ ଭରସା କରି ବଞ୍ଚିରହିଛି? ପ୍ରେମ, ସ୍ନେହ, ମମତା ଲାଗି ବଞ୍ଚିରହିଛି? ଐଶ୍ୱର୍ଯ୍ୟ ଓ ପରାକ୍ରମ ଉପରେ ନିର୍ଭର କରି ବଞ୍ଚିରହିଛି? ମଣିଷ କେବେହେଲେ ଦର୍ଶନର ଶୁଷ୍କ ସିଦ୍ଧାନ୍ତ ଉପରେ ବଞ୍ଚିନପାରେ। ମୁନି-ଋଷିମାନେ ପ୍ରତ୍ୟେକ କଥାରେ ଯେଉଁ ଦାର୍ଶନିକ ବିଚ଼ାରଧାରାକୁ ବଳପୂର୍ବକ ଲଦି ଦିଅନ୍ତି, ତାହା କେବଳ ସେମାନଙ୍କର ଗୋଟିଏ ବିଳାସ ମାତ୍ର।

ଯା'ହେଉ ପଛକେ, ଏହି ପତ୍ରରେ କଚ୍‌ଦେବଙ୍କର ତ୍ୟାଗମୟ ବୀରତ୍ୱର ବର୍ଣ୍ଣନା ଯେପରି ଭାବରେ କରାଯାଇଥିଲା, ସେଥିରେ ମୁଁ ମୁଗ୍ଧ ହୋଇଗଲି। ରାଜା ହେବ ତ ଏହିପରି ହେବା ଉଚିତ। ସେନାପତି ହେଲେ ଏହିପରି ଏକ ନିର୍ଭୀକ ସେନାପତି ହେବା ଆବଶ୍ୟକ। କଚ୍‌ଦେବଙ୍କୁ ବୃହସ୍ପତିଙ୍କ ଗୃହରେ ଜନ୍ମଦେବା ସୃଷ୍ଟିକର୍ତ୍ତାଙ୍କର ଅନ୍ୟାୟ। ତଥାପି ସେ ଅସ୍ତ୍ରଶସ୍ତ୍ରବିହୀନ ହୋଇ ଯେପରି ଭାବରେ ନିର୍ଭୀକତା ଦେଖାଇ ପାରିଛନ୍ତି, ବାସ୍ତବିକ ସେ ସ୍ତୁତ୍ୟ। ତାଙ୍କୁ ବଧ କରାଯାଉଥିବା ସମୟରେ, ତାଙ୍କର ମୁଖମୁଦ୍ରା ବିଦ୍ୟୁତ୍ ପରି ଝଟକିଉଠିଥିବ। ତାଙ୍କ ଗଳାରେ ପଡ଼ିଥିବା ରୁଦ୍ରାକ୍ଷମାଳାକୁ ସେ ଧରି ସଗର୍ବରେ କହିଥିବେ– "ଏ... ରାକ୍ଷସଗଣ, ତୁମେ ମୋର ନଶ୍ୱଶୀଳ ଦେହଟିକୁ କାଟି ଖଣ୍ଡ ଖଣ୍ଡ କରିଦେଇପାର; କିନ୍ତୁ ମୋର ଆତ୍ମାକୁ ସ୍ପର୍ଶ କରିପାରିବନାହିଁ। ସେ ଅଜର, ସେ ଅମର।"

କଚ୍‌ଦେବଙ୍କ ପରି ସାହସ ଦେଖାଇବା ପରିବର୍ତ୍ତେ ମୁଁ ରାଜପ୍ରାସାଦର ବିଳାସବ୍ୟସନ ମଧ୍ୟରେ ନିଷ୍କ୍ରିୟହୋଇ ବସିରହିଥିଲି। ତେଣୁ ମୁଁ ମୋ ନିଜ ଉପରେ ଖୁବ୍ ବିରକ୍ତ ହୋଇଉଠିଲି। ଭାବିଲି– 'ଏହି ସମୟରେ ରାଜ୍ୟ ମଧ୍ୟରେ ଦସ୍ୟୁମାନଙ୍କ ଆକ୍ରମଣ ହୁଅନ୍ତା କି, ମୋର ପ୍ରକୃତ ପରାକ୍ରମ, ପ୍ରଜାପାଳନ ପ୍ରତି ନିଷ୍ଠା ପ୍ରଦର୍ଶନରେ ମୁଁ କୃତକାର୍ଯ୍ୟ ହୋଇପାରନ୍ତି। ଯଜ୍ଞକୁଣ୍ଡର ପାଉଁଶ ଆଡ଼େଇ ଦେଲେ ଯେପରି ତା ମଧ୍ୟରେ ଅଗ୍ନିର ଜ୍ୱାଳା ଫୁଟିଉଠେ, ଠିକ୍ ସେହିପରି ମୋର ଏଇ ନିଷ୍କ୍ରିୟତା ମଧ୍ୟରୁ ବୀରତ୍ୱର ତୀବ୍ରଜ୍ୟୋତି ପ୍ରକଟିତ ହୋଇଉଠନ୍ତା। ମଣିଷର ଯୁଦ୍ଧଖୋର ମନ ଠିକ୍ ଗୋଟିଏ ଲୁହାର ଅସ୍ତ୍ର ପରି। ତାକୁ ବ୍ୟବହାରରେ ନଲଗାଇଲେ ସେଥିରେ କଳଙ୍କି ଲାଗିଯାଏ।

ପିତାଙ୍କ ମୃତ୍ୟୁ ପରେ ରାଜ୍ୟର କୌଣସି ସ୍ଥାନରେ କୌଣସି ପ୍ରକାର ବିଦ୍ରୋହ ଆଦି ହେଲାନାହିଁ। ରାଜ୍ୟରେ ସର୍ବତ୍ର ଶାନ୍ତି ସ୍ଥାପିତ ହୋଇଥିଲା ଏବଂ ଶାସନବ୍ୟବସ୍ଥା ସୁଚାରୁରୂପେ ପରିଚାଳିତ ହୋଇଥିଲା; ତେଣୁ ମୁଁ ନିଷ୍କ୍ରିୟ ଭାବରେ ରତ୍ନଖଚିତ ପିଞ୍ଜରାରେ ଆବଦ୍ଧ ହୋଇ ରହିଥିଲି।

କଚ୍‌ଦେବ ଗରୁଡ଼ଙ୍କ ପରି ଦୂରଗଗନରେ ସ୍ୱଚ୍ଛନ୍ଦରେ ପରିକ୍ରମା କରିଯାଇଥିଲେ। ମୁଁ ଭାବୁଥିଲି– 'ତାଙ୍କରି ପରି ଯାଉଛି କୁଆଡ଼େ ଚାଲିଯାଇ କୌଣସି ଏକ ଅଦ୍ଭୁତ ସାହସିକତାର ପରିଚୟ ଦେବି।' ଏହି ଚିନ୍ତାରେ ମୁଁ ସାରା ରାତି ଶୋଇପାରିଲି ନାହିଁ। ରାତ୍ରିର ଶେଷଭାଗରେ ଏକ ଭୟଙ୍କର ସ୍ୱପ୍ନ ଦେଖିଲି। ସ୍ୱପ୍ନରେ ଯତି ଆସି ମୋତେ କହୁଛି, "ନୀଚ୍, ସ୍ୱାର୍ଥପର, ଦୁଷ୍ଟ କେଉଁଠିକାର; ଏ ରାଜ୍ୟରେ ତୋର କି ଅଧିକାର ଅଛି? ତୁ ଜାଣିଛୁ ମୁଁ ବଞ୍ଚିଛି। ତଥାପି ତୁ ମାଆଙ୍କୁ ଏ କଥା କହିଲୁନାହିଁ କାହିଁକି? ତୁ ଜାଣିଶୁଣି ଏ କଥା ଗୋପନ ରଖିଛୁ। ଯା... ଉଠିଯା, ଏ ସିଂହାସନ ତୋ'ର ନୁହେଁ। ନୋହିଲେ ଏଇ ମୁହୂର୍ତ୍ତରେ ତୋତେ ଅଭିଶାପ ଦେଇ ଭସ୍ମ କରିଦେବି।"

ସ୍ୱପ୍ନ ଦେଖିବାମାତ୍ରେ ଭୟଭୀତ ହୋଇ ଉଠିବସିଲି। ପରମୁହୂର୍ତ୍ତରେ ମାଆଙ୍କ ପାଖକୁ ଯାଇ ଯତି ସହିତ ସାକ୍ଷାତ୍ ସମ୍ବନ୍ଧରେ ଗୋଟିଗୋଟି କରି ସବୁକଥା ଶୁଣାଇଦେଲି। ମୋ କଥା ଶୁଣିବାମାତ୍ରେ ସେ ପ୍ରଥମେ କ'ଣ କରିବେ, କିଛି ବିଚାର କରି ପାରିଲେ

ନାହିଁ। ତା'ପରେ ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲେ– ''ଯଯୁ, ତୁ ଯାହାସବୁ କହିଲୁ ସତ ତ?''

''ବାପାଙ୍କ ରାଣ ପକାଇ କହୁଛି... ମା'...!''

ସେ ଟିକିଏ ବିରକ୍ତିମିଶା ସ୍ୱରରେ କହିଲେ, ''ତୁ ଆଉ କାହାରି ରାଣ ଖୋଜି ପାଇଲୁ ନାହିଁ? ତୋ' ପିତା ପରାକ୍ରମଶାଳୀ ବୀର ଥିଲେ। ଇନ୍ଦ୍ରଙ୍କୁ ପରାସ୍ତ କରି ପ୍ରଖ୍ୟାତ ହୋଇଥିଲେ ସତ; କିନ୍ତୁ ମୋ ଆଗରେ ସେ ଯେତେ ରାଣ ନିୟମ ତଥା ପ୍ରତିଜ୍ଞା କରିଛନ୍ତି, ସେଥିରୁ ଗୋଟିଏ ହେଲେ ପାଳନ କରିନାହାନ୍ତି। ଜୀବନରେ ମୋର ସେ ଦୁଃଖ ...।''

ପିତୃଦେବଙ୍କ ସମ୍ବନ୍ଧରେ ଏ ପ୍ରକାର ନିନ୍ଦା ବା ଅପମାନଜନକ କଥା ପ୍ରଥମଥରଲାଗି ମୁଁ ମାଆଙ୍କ ମୁହଁରୁ ଶୁଣିଲି। ସେ ଦୁହେଁ ପରସ୍ପରକୁ ଖୁବ୍ ପ୍ରେମ କରୁଥିବାର ମୋର ଧାରଣା ଥିଲା; କିନ୍ତୁ ଏବେ ମୁଁ ଜାଣିଲି ତାହା କେବଳ ଗୋଟିଏ ଅଭିନୟ ମାତ୍ର ଥିଲା। ସେହି ଅଭିନୟରେ ମାଆ ଜଣେ ସଫଳ ଅଭିନେତ୍ରୀର ଭୂମିକା ସମ୍ପନ୍ନ କରିଚାଲିଥିଲେ। ଏ ପ୍ରକାର ଅନୁଭୂତି ମୋ ମନରେ ଜାତ ହେବାରୁ ତୀବ୍ର ଆଘାତ ଲାଗିଲା।

ମାଆ ସ୍ନେହରେ ମୋ' ପିଠିରେ ହାତ ବୁଲାଇ କହିଲେ– ''ବାପା, ତୁ ପୁରୁଷ, ତୁ କେବେହେଲେ ନାରୀମାନଙ୍କର ହୃଦୟବେଦନା ବୁଝିପାରିବୁନାହିଁ। କୌଣସି ବ୍ୟକ୍ତି ଯେତେ ପ୍ରିୟ ହେଲେ ମଧ୍ୟ ସାରା ଜୀବନ ଆଜ୍ଞାକାରିଣୀ ଭାବରେ ଜୀବନ ବିତାଇବା ଅତ୍ୟନ୍ତ କଠିନ।'' ସେ ଟିକିଏ ନୀରବ ରହି ବାଷ୍ପରୁଦ୍ଧ କଣ୍ଠରେ ପୁଣି କହିଲେ– ''ମୁଁ ଜୀବନରେ ମହାରାଣୀ ନଥିଲି; ଥିଲି ଗୋଟିଏ ମହାଦାସୀ। ତାଙ୍କ ନିର୍ଦ୍ଦେଶରେ ସାରା ଜୀବନ ନୃତ୍ୟ କରୁଥିଲି। ଏବେ ମୁଁ ଆଉ ସେ ପ୍ରକାର ଅନୁଗାମିନୀ ହୋଇପାରିବିନାହିଁ। ସ୍ୱାମୀ ଅପେକ୍ଷା ପୁତ୍ର ଉପରେ ନାରୀର ଅଧିକାର ଯଥେଷ୍ଟ ବେଶି; କାରଣ ପୁତ୍ର ହେଉଛି ତା'ର ଗର୍ଭର ସନ୍ତାନ।''

ମାଆ ଯାହା ଯାହା କହିଲେ ତାହା ନିତାନ୍ତ କଠୋର ସତ୍ୟ; କିନ୍ତୁ ମୋତେ ଏହି ଅପ୍ରିୟ ସତ୍ୟ ଶୁଣିବାକୁ ଭଲଲାଗିଲାନାହିଁ। ତଥାପି ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ମୁଁ କହିଲି, ''ତୁମ ମନରେ ଦୁଃଖ ଜାତ ହେବାଭଳି କୌଣସି କାର୍ଯ୍ୟ ମୁଁ ଜୀବନରେ କରିବିନାହିଁ।'' ଏତିକି କହି ମୁଁ ତାଙ୍କ ପାଦ ସ୍ପର୍ଶ କଲି। ମୋ ବ୍ୟବହାର ତଥା ସାନ୍ତ୍ୱନାପୂର୍ଣ୍ଣ ବାକ୍ୟରେ ସେ ଆଶ୍ୱସ୍ତ ହେଲେ ଏବଂ ଦୁଇ ହାତରେ ମୋର ମୁହଁଟିକୁ ଟେକିଧରି ଅଶ୍ରୁଭରା ଚକ୍ଷୁରେ ମୋ ଆଡ଼କୁ ଚାହିଁରହିଲେ।

ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳକୁ ଯାଇ ଯତିକୁ ଖୋଜିଆଣିବା ଲାଗି ମୁଁ ପ୍ରସ୍ତାବ ଦେଲି। କିନ୍ତୁ ପ୍ରଥମେ ମାଆ ରାଜିହେଲେନାହିଁ; ପରେ ମୁଁ ବହୁତ ବୁଝାବୁଝି କରିବା ଫଳରେ ସେ କୌଣସି ମତେ ସମ୍ମତି ଜଣାଇଲେ। କିନ୍ତୁ ମୋର ଏ ଯାତ୍ରାର ଉଦ୍ଦେଶ୍ୟ ଗୋପନ ରଖାଯିବାଲାଗି ସେ ପ୍ରସ୍ତାବ ଦେବା ସଙ୍ଗେସଙ୍ଗେ କେତେଜଣ ଅତି ବିଶ୍ୱସ୍ତ ଲୋକ ମୋ ସହିତ ଯିବାଲାଗି ବିଶେଷ ପ୍ରଭାବ ପକାଇଲେ। ଆହୁରି ମଧ୍ୟ ସେ କହିଲେ– ''ଯଦି ଯତିର ସନ୍ଧାନ ଶୀଘ୍ର ନମିଳେ, ତା'ହେଲେ ତୁ ଅନ୍ୟ କୁଆଡ଼େ ନଯାଇ ଶୀଘ୍ର ହସ୍ତିନାକୁ ଫେରିଆସିବୁ।''

ମୁଁ ତାଙ୍କର ସମସ୍ତ ସର୍ତ୍ତ ମାନିନେଲି। ସେ ମଧ୍ୟ ଏହି ଯାତ୍ରାରେ ଯିବାକୁ ଚାହୁଁଥିଲେ, କିନ୍ତୁ ଦୀର୍ଘ ପଥ ଅତିକ୍ରମ କରିବା ଏବଂ ରାଜମାତା ଓ ଯୁବରାଜଙ୍କର ରାଜ୍ୟରୁ ଏକକାଳୀନ ଅନୁପସ୍ଥିତିକୁ ସେ ସମର୍ଥନ କରିନପାରି, ମୋ ସହିତ ତାଙ୍କର ଯିବା ପ୍ରସ୍ତାବ ନିଜେ ହିଁ ସ୍ଥଗିତ ରଖିଲେ। ଆପାତତଃ ଅଭିଷେକର ଆୟୋଜନ ସ୍ଥଗିତ ରଖି, ମୋ ଯାତ୍ରାର ଆୟୋଜନରେ ସେ ଲାଗିପଡ଼ିଲେ। ଅମାତ୍ୟଙ୍କ ସେବକ ମନ୍ଦାରକୁ ସେ ମୋ ସହିତ ଅଙ୍ଗରକ୍ଷକ ଭାବରେ ପଠାଇଲେ ଏବଂ ମୋର ସେବାକାର୍ଯ୍ୟ ଲାଗି ଦୁଇଜଣ ଦାସୀଙ୍କୁ ମଧ୍ୟ ଆମ ସହିତ ପଠାଇବାକୁ ସ୍ଥିର କଲେ। ସେ ଦିନେ ମୋତେ ପଚାରିଲେ, ''ମୁକୁଳିକାକୁ ଏ ଯାତ୍ରାରେ ତୋ' ସାଥିରେ ପଠାଇଲେ କିପରି ହୁଅନ୍ତା ? ସେ ଖୁବ୍ ଭଲ ଝିଅ ଏବଂ ତୋ' ସେବାରେ ସେ ମଧ୍ୟ କିଛିଦିନ ଥିଲା।''

ମୁଁ ମନକୁ ଖୁବ୍ ଦୃଢ଼ କରି କହିଲି, ''ତା' ଅପେକ୍ଷା କଳିକା ବେଶ୍ ଭଲ। କାରଣ ସେ ଆମ ଘରର ପୁରୁଣା ଦାସୀ ତଥା ମୋ ଉପରେ ତା'ର ସ୍ନେହ ଓ ମମତା ମଧ୍ୟ ରହିଛି।''

—''କିନ୍ତୁ କଳିକା ଏଠାରେ କାହିଁ ?''

ପ୍ରକୃତରେ ଅନେକଦିନରୁ କଳିକାକୁ ମୁଁ ଦେଖିନଥିଲି; ତେଣୁ ପଚାରିଲି – ''ସେ ଗଲା କୁଆଡ଼େ ?''

—''ସେ ତା'ର ଦେଶକୁ ଚାଲିଯାଇଛି। ତା' ଘର ବହୁତ ଦୂର; ହିମାଳୟର ପାଦଦେଶରେ ଥିବା କୌଣସି ଗୋଟିଏ ଗ୍ରାମରେ।''

—''କାହିଁକି ସେ ଯାଇଛି ?''

—''ଏ କ'ଣ ଗୋଟେ ପଚାରିବା କଥା ? ସେ ତା'ର ଘରଦ୍ୱାର ଓ ତା ଝିଅର ଘରସଂସାର କିପରି ଚାଲିଛି ଦେଖିବାକୁ ଯାଇଛି।''

—''ମାନେ . . . ଅଳକାର ବିବାହ କେବେ ହେଲା ?''

—''ଅନେକ ଦିନ ହେଲାଣି, ତୁ ଯେବେ ଅଙ୍ଗିରସଙ୍କ ଆଶ୍ରମରେ ଥିଲୁ।''

—''ମୋତେ କିଛି ଜଣାନାହିଁ।''

—''ସେଥିରେ ତୋତେ ଜଣାଇବାର କ'ଣ ଥିଲା ? ଗୋଟିଏ ଦାସୀ ଝିଅର ବିବାହ ଓ କଣ୍ଢେଇ ବାହାଘର ଆମ ପକ୍ଷରେ ସମାନ।''

ମାଆଙ୍କ ମନ୍ତବ୍ୟ ଉପରେ କିଛି ଉତ୍ତର ନଦେଇ ମୁଁ ନୀରବ ରହିଲି। ମାଆ ନିଜର ଭବିଷ୍ୟତ ଯୋଜନା ସମ୍ପର୍କରେ ମୋତେ ଉତ୍ସାହର ସହିତ ସୂଚନା ଦେଇ କହିଲେ, ''ତୁ ଏ ଯାତ୍ରାରୁ ଫେରିଆସିବା ବେଳକୁ ମୁଁ ଦୁଇଟି ସୁନ୍ଦରୀ ରାଜକନ୍ୟା ଯୋଗାଡ଼ କରିସାରିଥିବି।''

ମୁଁ ହସି ହସି ପଚାରିଲି– ''ମାନେ . . . ? ତୁମେ କ'ଣ ମୋତେ ଦୁଇଟି କନ୍ୟା ବିବାହ କରାଇବ କି ?''

—''ଆରେ . . . ତା' ନୁହେଁ; ଗୋଟିଏ ତୋର ରାଣୀ ହେବ, ଆଉ ଯଦି . . .'' ଟିକିଏ ରହିଯାଇ ଅସୁବିଧାରେ ପଡ଼ିଲାପରି ଥଙ୍ଗେଇ ହୋଇ କହିଲେ, ''ଯତି ଯଦି ଆସିଯାଏ ତାକୁ ବିବାହ କରାଇବାକୁ ତ ପଡ଼ିବ।''

ମାଆଙ୍କ ମନର ଭାବ ମୁଁ ଆଦୌ ବୁଝିପାରିଲିନାହିଁ। ପ୍ରକୃତରେ ଜଣେ ଲୋକ ଅନ୍ୟର ମନୋଭାବ ବୁଝିବା ଆଦୌ ସହଜ ନୁହେଁ। ଏ ମୋର ମାଆ। ଆକାଶର ସୀମା ଜାଣିବା ସହଜ; କିନ୍ତୁ ତାଙ୍କର ମନୋଭାବ ଜାଣିବା ମୋ' ପକ୍ଷରେ ଆଦୌ ସହଜ ହେଲାନାହିଁ।

× × × × ×

ଯେଉଁ ମାର୍ଗ ଦେଇ ମୁଁ ଯାତ୍ରା ଆରମ୍ଭ କରୁଥିଲି, ମହର୍ଷି ଅଙ୍ଗିରସଙ୍କ ଆଶ୍ରମ ସେଠାରୁ ବେଶି ଦୂରରେ ଅବଶ୍ୟ ଥିଲା। ତଥାପି ମୁଁ ତାଙ୍କ ଶ୍ରୀଚରଣଦର୍ଶନ ଲାଗି ଆଶ୍ରମରେ ଯାଇ ପହଞ୍ଚିଲି। ମହର୍ଷି ଆଗ୍ରହରେ ମୋତେ ସ୍ୱାଗତ ଜଣାଇ କହିଲେ– "ଯଯାତି, ତୁମର ଆଗମନ ଅତ୍ୟନ୍ତ ଆନନ୍ଦର ବିଷୟ। ଠିକ୍ ତୁମ ଆସିବାର ଦୁଇଘଡ଼ି ପୂର୍ବରୁ ଗୋଟିଏ ଶୁଭଖବର ମିଳିଲା। ରାକ୍ଷସମାନେ କଚ୍‌କୁ ଚିକିଟିକି କରି ଶିଆଳ କୁକୁର ଆଗରେ ପକାଇଥିବା ଘଟଣା ସତ୍ୟ; କିନ୍ତୁ ଶୁକ୍ରାଚାର୍ଯ୍ୟ ଶିଷ୍ୟପ୍ରେମରେ ବଶୀଭୂତ ହୋଇ ପୁଣି ତାକୁ ଜୀବିତ କରିଦେଲେ। ଏଥିରୁ ଜଣାଯାଏ, ଦେବପକ୍ଷକୁ ସଂଜୀବନୀ ମିଳିଯିବାର ଆଶା ଖୁବ୍ ଉଜ୍ଜ୍ୱଳ।"

ଏ ଖବର ଶୁଣି ମୁଁ ଆନନ୍ଦିତ ହେଲି, କିନ୍ତୁ ଏହି ସମୟରେ ଅତି ତରତରରେ ଗୋଟିଏ ଋଷିକୁମାର ଭିତରକୁ ପଶିଆସିଲେ। ତାଙ୍କ ପାଦ ଦୁଇଟି ଧୂଳି ସରସର ଏବଂ ଦେହରୁ ଗମ୍‌ଗମ୍ ହୋଇ ଝାଳ ବୋହିପଡୁଥିଲା। ଦୀର୍ଘ ପ୍ରବାସ ହେତୁ ତାଙ୍କ ମୁଖ ମଳିନ ଦିଶୁଥିଲା କିମ୍ବା କୌଣସି... ସେ ଅତ୍ୟନ୍ତ ଦୁଃଖଭରା ସ୍ୱରରେ କହିଲେ, "ରାକ୍ଷସରାଜ୍ୟରେ ଅତି ଆଡ଼ମ୍ବର ସହକାରେ ଆନନ୍ଦୋତ୍ସବ ପାଳିତ ହେଉଛି ଗୁରୁଦେବ! ମଦିରା ତାଙ୍କର ବହୁ ଉପକାର କରିଛି; ତେଣୁ ସେମାନେ 'ମଦିରୋତ୍ସବ ପାଳନ କରୁଛନ୍ତି।"

ମୁଁ ହଠାତ୍ କଥା ମଝିରୁ କହିଉଠିଲି– "ମଦିରା ଏପରି କି ଉପକାର କରିଦେଲା ଯେ...?"

ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ରାକ୍ଷସମାନେ ଏପରି ଏକ ଅଭିନବ ଉପାୟ ବାହାରକଲେ ଯେ, ଏଥର ଶୁକ୍ରାଚାର୍ଯ୍ୟ ଆଉ କଚ୍‌କୁ ରକ୍ଷା କରିପାରିଲେ ନାହିଁ।"

–"କି ଉପାୟ...?" ଆତଙ୍କିତ ହେବାପରି କଣ୍ଠରେ ପଚାରିଲେ ମହର୍ଷି ଅଙ୍ଗିରସ।

–"ସେମାନେ କଚ୍‌କୁ ମାରି ଜଳାଇଦେଲେ। ସେହି ପାଉଁଶକୁ ମଦ୍ୟ ସହିତ ମିଶାଇ, ମଦ୍ୟପ୍ରିୟ ଶୁକ୍ରାଚାର୍ଯ୍ୟଙ୍କୁ ତାହା ପିଆଇଦେଲେ। ଏଥର କଚ୍ ବଞ୍ଚିଉଠିବା...।"

ଋଷିକୁମାରଙ୍କର କଣ୍ଠରୋଧ ହୋଇଗଲା। ସେ ଆଉ କିଛି କହିପାରିଲେନାହିଁ। ଏ ଦୁଃସମ୍ବାଦ ଶୁଣିବାମାତ୍ରେ ଆଶ୍ରମରେ ଶୋକର ଛାୟା ଖେଳିଗଲା।

ମହର୍ଷିଙ୍କଠାରୁ ବିଦାୟ ନେଇ ଆସିବା ସମୟରେ ମୋ ମନରେ ଉଦାସ ଭାବ ଛାଇଯାଇଥିଲା; କିନ୍ତୁ କିଛି ଦୂର ଅତିକ୍ରମ କରିବାପରେ ଜଙ୍ଗଲର ପ୍ରାକୃତିକ ଶୋଭାସମ୍ପଦ ଦେଖି ମୋ ମନର ଅବସାଦ ଧୀରେ-ଧୀରେ ଦୂରହୋଇଗଲା। ଉତ୍ତୁଙ୍ଗ ପର୍ବତ, ସୁଗଭୀର ଗହ୍ୱର, ବିଶାଳ ଇନ୍ଦ୍ରଧନୁ, ଛୋଟ ଛୋଟ ରଙ୍ଗ-ବିରଙ୍ଗୀ ପ୍ରଜାପତି, ତାଳତମାଳ

ବୃକ୍ଷଶ୍ରେଣୀ, ନାନାଧରଣର ପକ୍ଷୀ, ସୁନ୍ଦର ନଗର, ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ଗ୍ରାମ, ବିଭିନ୍ନ ବେଶ ପୋଷାକ ପରିହିତ ସ୍ତ୍ରୀ-ପୁରୁଷ ତଥା ନୃତ୍ୟ ଗୀତ ଉତ୍ସବ ମୋ ମନକୁ ବିଶେଷଭାବରେ ଆକର୍ଷିତ କଲା। ମନେହେଲା, ଯତିର ଅନୁସନ୍ଧାନ ଲାଗି ହେଉ ପଛକେ, ମୁଁ ରାଜପ୍ରାସାଦର ଅବରୁଦ୍ଧ କାରାଗୃହରୁ ବାହାରକୁ ଆସିପାରିଛି। ଏହି ଅନନ୍ତ ବିଶ୍ୱ ମଧ୍ୟରେ ଜଣେ ମାତ୍ର କଚ, ଯତି କିମ୍ବା ଯଯାତି କ'ଣ ଅବା କରିପାରିବେ? ସୃଷ୍ଟିର ବିବିଧତା ତଥା ବିଶାଳତା ମଧ୍ୟରେ ମାନବ ଗୋଟିଏ କ୍ଷୁଦ୍ରଜୀବ। ଏମାନଙ୍କ ଅସ୍ତିତ୍ୱର କି ମହତ୍ତ୍ୱ ରହିଛି? ମଣିଷର ସୁଖ ଦୁଃଖ ବିଶ୍ୱର ଅନନ୍ତ ଶକ୍ତି ଆଗରେ କି'ବା ଛାର! ସାଗରର ବିଶାଳ ଲହରୀରେ ଭାସିଯାଉଥିବା ସାମାନ୍ୟ କୁଟାକାଠିଖଣ୍ଡକୁ ପଚାରେ ବା କିଏ?

ଆମେ ଶୀଘ୍ର ଯାଇ ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳରେ ପହଞ୍ଚିବାଲାଗି ଖୁବ୍ ଚେଷ୍ଟା କରୁଥିଲେ ମଧ୍ୟ, ସେବକ ତଥା ଅନୁଚରମାନେ ମୋ ସୁଖ-ସୁବିଧା ପ୍ରତି ଖୁବ୍ ଯତ୍ନ ନେଉଥିଲେ। ଇଚ୍ଛା ନ ଥିଲେ ମଧ୍ୟ, ମନ୍ଦାର ବାଧହୋଇ ସବୁବେଳେ ଛାଇଭଳି ଏପରିକି ଶୋଇବା ପରେ ମଧ୍ୟ ମୋ ପ୍ରତି ସଜାଗ ଦୃଷ୍ଟି ରଖିଥିଲା। ଦିନେ ଦିନେ ରାତିରେ ମୋତେ ନିଦ ହୁଏନି। ମୁଁ ରାତିଅଧରେ ଆକାଶକୁ ଚାହିଁ ବସିରହିଥାଏ। ସେ ସମୟରେ ମଧ୍ୟ ମନ୍ଦାର ଆସି ମୋ ଶିବିର ପାଖରେ ଉଙ୍କିମାରି ଚାଲିଯାଏ।

ମୁଁ ଯେଉଁ ଉଦ୍ଦେଶ୍ୟରେ ଏଥର ଯାତ୍ରା ଆରମ୍ଭ କରିଥିଲି, ତାହା ସଫଳ ହେବା ମୋ ଭାଗ୍ୟରେ ନଥିଲା। ମୁଁ ଯତିର ଗୁମ୍ଫା ତଥା ଆଖପାଖର ଗ୍ରାମଗୁଡ଼ିକୁ ଯାଇ ଖୋଳିତାଡ଼ି ତା' ବିଷୟରେ ପଚାରିଲି। ସେମାନେ ଅବଶ୍ୟ ଯତି ବିଷୟରେ କେତେକ ଖବର ଦେଲେ; ନିଆଁ ଓ ପାଣି ଉପରେ ତଥା ଶୂନ୍ୟରେ ଚାଲିବା ଏବଂ ଆହୁରି କେତେକ ଚମତ୍କାରିତା ବିଷୟରେ ସୂଚନା ଦେଲେ। ଆର୍ଯ୍ୟାବର୍ତ୍ତର ପୂର୍ବାଞ୍ଚଳ ହଠଯୋଗ ତଥା ତାନ୍ତ୍ରିକ ସିଦ୍ଧିଲାଗି ଖୁବ୍ ପ୍ରସିଦ୍ଧି ଅର୍ଜନ କରିଥିଲା; କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକ ଗୁଣିଆ ଯତିର ହଠଯୋଗ ଆଗରେ ମୁଣ୍ଡ ନୁଆଁଇ ଦେଇଥିଲେ। ଶୁଣିଲି, ସ୍ତ୍ରୀମାନଙ୍କୁ ପୁରୁଷରେ ପରିଣତ କରିବାଲାଗି ଯତିର ମୁଣ୍ଡରେ ଗୋଟିଏ ଝୁଙ୍କ ପଶିଥିଲା; ତେଣୁ ସେ ସେହି ବିଦ୍ୟାର ସିଦ୍ଧିଲାଗି ରାତିଦିନ ଅକଥନୀୟ କଷ୍ଟ ସହ୍ୟକରି ସାଧନା କରୁଥିଲା। ପରିଶେଷରେ ତାକୁ ସିଦ୍ଧି ମିଳିଲା ନାହିଁ; ତେଣୁ ସେ ଶୁକ୍ରାଚାର୍ଯ୍ୟଙ୍କ ସଞ୍ଜୀବନୀବିଦ୍ୟା ବିଷୟରେ ଖବର ପାଇ କିଛିଦିନ ତଳେ ରାକ୍ଷସ-ରାଜ୍ୟକୁ ଚାଲିଯାଇଥିଲା।

ଏସବୁ ଶୁଣାଶୁଣି କଥାରେ କେତେଦୂର ସତ୍ୟତା ଥିଲା ମୁଁ ଜାଣେନି; ହୁଏତ ଯତି ସଞ୍ଜୀବନୀବିଦ୍ୟା ଲୋଭରେ ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଯାଇଥାଇପାରେ। କିନ୍ତୁ ସେ ତା'ର ପୂର୍ବ ଗୁମ୍ଫା ଯେ ଚିରଦିନଲାଗି ଛାଡ଼ିଯାଇଥିଲା, ଏଥିରେ ମୋର ତିଳେହେଲେ ସନ୍ଦେହ ରହିଲାନାହିଁ। ଯତିର ଅନୁସନ୍ଧାନ କରିବା ପବନକୁ ଫାନ୍ଦରେ ବାନ୍ଧିବା ପରି ଅସମ୍ଭବ କାର୍ଯ୍ୟ ବୋଲି ଜଣାଗଲା। ଯତିର ସନ୍ଧାନ ନପାଇଲେ ଶୀଘ୍ର ହସ୍ତିନାପୁରକୁ ଫେରିଯିବାଲାଗି ମୁଁ ମା'ଙ୍କୁ ପ୍ରତିଶ୍ରୁତି ଦେଇ ଆସିଥିଲି। ମନ୍ଦାର ମୋର କୁଶଳବାର୍ତ୍ତା ବରାବର ରାଜଧାନୀକୁ ପଠାଉଥିଲା। ମୁଁ ଶୀଘ୍ର ଯାଇ ହସ୍ତିନାରେ ନ ପହଞ୍ଚିଲେ

ମାଆଙ୍କ ମନରେ ଯେ ବିଶେଷ କଷ୍ଟ ହେବ ଏହା ବେଶ୍ ଚିନ୍ତା କରିପାରିଥିଲି।

ଆମେମାନେ ସିଧାସଳଖ ରାସ୍ତା ଦେଇ ଫେରିବାକୁ ଲାଗିଲୁ। ତିନି ଚାରିଦିନ ଚାଲିବାପରେ ପ୍ରଧାନ ରାସ୍ତାଠାରୁ କିଛିଦୂର ଭିତରକୁ ଗୋଟିଏ ରମଣୀୟ ସ୍ଥାନ ଥିବାର ଜାଣିଲୁ। ପାହାଡ଼, ବନ, ନଦୀ ତଥା ଗହ୍ୱର ଆଦିର ଗୋଟିଏ ଚମତ୍କାର ସଙ୍ଗମସ୍ଥଳ ଥିଲା ସେ ସ୍ଥାନଟି। ପାହାଡ଼ର ଉଚ୍ଚତା ଖୁବ୍ ବେଶି ନଥିଲା। ନଦୀଟି ଝରଣାପରି ବହିଯାଇ, ମଝିରେ ମଝିରେ ଗୋଟିଏ ଲେଖାଏଁ ହ୍ରଦ ସୃଷ୍ଟି କରିଥିଲା। ସେହିପରି ଘନଘୋର ଅରଣ୍ୟ ମଧ୍ୟରେ ଗୋଟିଏ ଗୋଟିଏ ସ୍ଥାନ ସୁରମ୍ୟ କୁଞ୍ଜରେ ପରିଣତ ହୋଇଥିଲା। ସେ ସ୍ଥାନଟିକୁ ଦେଖିବାମାତ୍ରେ, ମୋ ମନରେ ଧାରଣା ହେଲା, ସୃଷ୍ଟିକର୍ତ୍ତା ସୃଷ୍ଟିର ଆରମ୍ଭରେ ଏହି ସ୍ଥାନଟିକୁ ବାଳକ୍ରୀଡ଼ାଲାଗି ନିଶ୍ଚୟ ନିର୍ମାଣ କରିଥିବେ। ସେହି ସୁରମ୍ୟ ସ୍ଥାନର ଚତୁଃପାର୍ଶ୍ୱରେ ପ୍ରାୟ ଦୁଇକୋଶ ମଧ୍ୟରେ କୌଣସି ଜନପଦ କିମ୍ବା ଗ୍ରାମ ନଥିଲା; ତେଣୁ ଏ ଧରଣର ଗୋଟିଏ ନିର୍ଜନ ସ୍ଥାନରେ ଯେପରି ଭୟ ସଞ୍ଚାର ହେବାର କଥା, ସେ ସ୍ଥାନରେ ସେପରି କୌଣସି ଭୟ ମୋ ମନରେ ଜାତ ହେଲାନାହିଁ। ମୋର ମନହେଲା; କଳକୂଜନରତ ପକ୍ଷୀମାନେ ନିଜନିଜ ମଧ୍ୟରେ କେତେ କଥା କୁହାକୁହି ହେଉଛନ୍ତି। କଳକଳନାଦିନୀ ନଦୀଟି ଏକ ମୁଗ୍ଧ ବାଳିକା ପରି ନାଚି ଗାଇ ଡେଇଁ କୁଦି ଆଗେଇ ଆଗେଇ ଚାଲିଛି। ମନ ମଧ୍ୟରେ ଏକାନ୍ତତାର ଭୟ ଜାତ ହେଉନାହିଁ କିମ୍ବା ଅତ୍ୟନ୍ତ ରମଣୀୟତାର ଭାରରେ ଆଖି ଝଲସିଉଠୁନାହିଁ। ଭୀମକାନ୍ତ ରୂପର ଅପୂର୍ବ ସମାବେଶ ସେହି ସ୍ଥାନଟି ମୋ ମନ ମଧ୍ୟରେ ଲାଖିରହିଲା। ସେଠାରେ ମୁଁ କେବଳ ଅନୁଭବ କଲି, ସୌମ୍ୟ ତଥା ରମ୍ୟ, ସୌନ୍ଦର୍ଯ୍ୟ ଏବଂ ମୁଗ୍ଧ ଜୀବନର ଅପାର ତଥା ଅପରିସୀମ ଆନନ୍ଦ।

ମୁଁ ବେଶ୍ ଜାଣିଥିଲି, ମୋ ଫେରିବା ବାଟକୁ ମାଆ ଅପଲକ ଦୃଷ୍ଟି ତଥା ଆକୁଳ ଅନ୍ତରରେ ଚାହିଁ ବସିଥିବେ। ତଥାପି ସେ ସ୍ଥାନର ମାଦକଭରା ମୋହ ତୁଟାଇଦେଇ ପହଣ୍ଡଟିଏ ସୁଦ୍ଧା ଆଗେଇ ପାରିଲିନାହିଁ; ସତେଯେପରି, ସେହି କମନୀୟ ତଥା ରମଣୀୟ ସୌନ୍ଦର୍ଯ୍ୟ ମୋତେ ମନ୍ତ୍ରମୁଗ୍ଧ କରିଦେଇଛି। ଘଣ୍ଟା ଘଣ୍ଟା ଧରି ନିର୍ନିମେଷ ନେତ୍ରରେ ପ୍ରକୃତିର ସେହି ଅପାସୋରା ସମ୍ପଦ ଆଡ଼କୁ ଚାହିଁରହିଲେ ସୁଦ୍ଧା ମନର ତୃଷ୍ଣା, ଆଖିର ପିପାସା ଆଦୌ ତୃପ୍ତ ହେଉନାହିଁ। ପ୍ରଭାତୀର ଜୟଗାନରେ ଆଖି ଖୋଲିଯାଇଥିଲେ ମଧ୍ୟ ଅତୃପ୍ତ ନିଦ୍ରାର ଆଳସ୍ୟ ଯୋଗୁ ଯେପରି ଶଯ୍ୟା ତ୍ୟାଗ କରିବା ସମ୍ଭବ ହୁଏନାହିଁ, ଠିକ୍ ସେହି ଦଶା ମୋର ହୋଇଥିଲା। ଥରେ ଥରେ ହ୍ରଦକୂଳରେ ଥିବା ବୃକ୍ଷ ଉପରେ ଚଢ଼ି ମୁଁ ସେଠାକାର ଶୋଭା ସକାଳ ସଞ୍ଜେ ଉପଭୋଗ କରେ। ବେଳେବେଳେ ମୋ ମନରେ ଯତିର ସେହି କଠୋର ତପୋମୟ ଜୀବନ ତଥା କୃଚ୍ଛ୍ର ସାଧନାମୟ ଜୀବନ ଉଙ୍କିମାରି ଉଠେ। ମୁଁ ଭାବେ; ସେ ତ ଏପରି ଅନେକ ରମଣୀୟ ସ୍ଥାନ ଦେଖିଥିବ, ତଥାପି କାହିଁକି ସେ ଏପରି ସ୍ଥାନର ସୌନ୍ଦର୍ଯ୍ୟକୁ ମନ ପୂରାଇ ଉପଭୋଗ ନକରି କୃଚ୍ଛ୍ର ହଠଯୋଗ ସାଧନାରେ ଜୀବନକୁ ନୀରସ କରି ଗଢ଼ିବାକୁ ମନ କଲା ? ଏବେ ହୁଏତ ସେ ଶୁକ୍ରାଚାର୍ଯ୍ୟଙ୍କ ସେବାଫଳରେ ସଂସାରର ସମସ୍ତ ସ୍ତ୍ରୀଙ୍କୁ ପୁରୁଷରେ ପରିଣତ କରିବାଲାଗି ମାତିଉଠିଥିବ।

ନାରୀ, ନାରୀର କାନ୍ତ କମନୀୟ ସୌନ୍ଦର୍ଯ୍ୟକୁ ସେ ଘୃଣା କରୁଛି କାହିଁକି? କେଡ଼େ ପାଗଳ ସେ? କି ଦୁରାକାଂକ୍ଷା ତାର? ସେ ଯଦି ଏହି ସୁରମ୍ୟ ସ୍ଥାନଟିକୁ ଦେଖିଥାନ୍ତା; ହୁଏତ ଏହାକୁ ମରୁଭୂମିରେ ପରିଣତ କରିବାଲାଗି ତା' ମୁଣ୍ଡରେ ଭୂତ ଲାଗିଯାଇଥାନ୍ତା। ତା'ହେଲେ ମଣିଷ-ଜୀବନର ଶେଷ ଲକ୍ଷ୍ୟ କ'ଣ? –'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' ନୁହେଁ କି? ଏଭଳି କମନୀୟ ତଥା ଭବ୍ୟ ସୌନ୍ଦର୍ଯ୍ୟର ଅବଲୋକନରେ ଜୀବନକୁ ରସାଣିତ କରିବା ଜୀବନର କାମ୍ୟ ନା ଏହାର ଧ୍ୱଂସ!

ଦୁଇ ତିନିଦିନ ବିତିଗଲା, ତଥାପି ମୁଁ ସେ ସ୍ଥାନ ଛାଡ଼ି ଆଗେଇବାକୁ ଚାହିଁଲିନାହିଁ। ମନ୍ଦାର ମନେ ମନେ ଖୁବ୍ ଚିଡ଼ିଯାଇଥିଲେ ମଧ୍ୟ ମୋତେ କିଛି କହିପାରୁନଥିଲା ଏବଂ କେତେଥର ସନ୍ଦେହ କରି ମୋ ପଛରେ ଲୁଚିଛପି କେତେ ଦୂର ଯାଇ ପୁଣି ଫେରଆସିଲା। ମୁଁ ମଧ୍ୟ ସେ ସ୍ଥାନର ବୈଶିଷ୍ଟ୍ୟ ଏବଂ ପ୍ରକୃତିରାଣୀଙ୍କ ଯାଦୁକରୀ ପେଡ଼ିର ସେହି ଝିଲିମିଲି ଶାଢ଼ୀଟି ବିଷୟରେ ତାକୁ ବୁଝାଇପାରିଲିନାହିଁ।

'ଆଉ ସତେ କ'ଣ ସେ ସ୍ଥାନଟିକୁ ଜୀବନରେ ଦେଖିବାକୁ ପାଇବି? ଏ ଦୁନିଆର ରୀତି ଅଦ୍ଭୁତ, ଭାଗ୍ୟର ଲିପି ବିଚିତ୍ର ତଥା କୁଟୀଳ। କିଏ ଜାଣେ, ଜୀବନରେ ଯେଉଁ ସୁଖ ଥରେ ମାତ୍ର ହାତପାହାନ୍ତାକୁ ଆସିପାରିଛି, ଆଉ ଥରେ ଆସିବ କି ନାହିଁ।' ଏ ପ୍ରକାର କେତେ କ'ଣ ଭାବନାର ଖିଅ ମୋ ମନକୁ ଆଚ୍ଛନ୍ନ କରି ରଖିଥିଲା; ତେଣୁ ମୁଁ ସେ ସ୍ଥାନ ଛାଡ଼ି ରାଜଧାନୀ ଅଭିମୁଖେ ଯାତ୍ରା କରିବାଲାଗି ଆଦୌ ମନ ବଳାଇଲିନାହିଁ। ଦିନକୁଦିନ ମନ୍ଦାରର ମୁଖମଣ୍ଡଳ ଭାରାକ୍ରାନ୍ତ ହୋଇ ଭ୍ରୂକୁଟିର କୁଟୀଳତା ବୃଦ୍ଧି ପାଇବାରେ ଲାଗିଲା। ଶେଷରେ ସେ ପଞ୍ଚମ ଦିନ ସାହସ କରି ମୋତେ କହିଲା – ''କାଲି ମୁହଁଅନ୍ଧାରୁ ଆମର ଏଠାରୁ ଚାଲିଯିବା ଉଚିତ ହେବ ବୋଲି ମୁଁ ଭାବୁଛି!'' ସେ ଜାଣିଶୁଣି ଚାଲିଯିବା ଉପରେ ଗୁରୁତ୍ୱ ଦେଇ କହିଥିଲା। ମୁଁ ହସ୍ତିନାପୁରର ରାଜା; ମନ୍ଦାର ଥିଲା ମୋର ତୁଚ୍ଛ ସେବକଟାଏ। ତଥାପି ସେଠାରେ ଆଉ କିଛିଦିନ ରହିବାଲାଗି କୌଣସି ଯୁକ୍ତିଯୁକ୍ତ କାରଣ ମୁଁ ତାକୁ କହିପାରିଲି ନାହିଁ। ଶେଷକୁ ମୁଁ ବାଧହୋଇ ସେହିଦିନ ସନ୍ଧ୍ୟା ସମୟରେ, ସେ ସ୍ଥାନରୁ ବିଦାୟ ନେବାପୂର୍ବରୁ ଶେଷଥରଲାଗି ହ୍ରଦକୂଳରେ ଯାଇ ପହଞ୍ଚିଲି। ପ୍ରକୃତରେ ନିଜର ପ୍ରିୟ ବ୍ୟକ୍ତିଠାରୁ ବିଦାୟ ନେଇ ଚାଲିଯିବା କେଡ଼େ ଦୁଃଖଦାୟକ ନୁହେଁ ସତେ?

ସନ୍ଧ୍ୟା ସମୟର ପାହାଡ଼-ପର୍ବତ, ବୃକ୍ଷଲତା ତଥା ଉପତ୍ୟକାର ଲମ୍ବ ଲମ୍ବ ଛାଇ ହ୍ରଦ ଉପରେ ଛାଇଗଲା। ମୁଁ ପୂର୍ବପରି ଗୋଟିଏ ବୃକ୍ଷ ଉପରେ ଚଢ଼ି, ସେହି ମନୋରମ ଦୃଶ୍ୟ ଦେଖିବାକୁ ଲାଗିଲି। କିଛି ସମୟ ପରେ ମୋତେ ସେଠାରୁ ବିଦାୟ ନେବାକୁ ହେବ, ଏହା ଭାବି ମୁଁ ବ୍ୟାକୁଳ ହୋଇଉଠିଲି। ସେତିକିବେଳେ ହ୍ରଦର ଅପର ପାର୍ଶ୍ୱରେ ଦୁଇଟି ବଡ଼ ବଡ଼ ଚକ୍ଷୁ ମୋର ଦୃଷ୍ଟିଗୋଚର ହେଲା। ଭାବିଲି; ବୋଧହୁଏ କୌଣସି ଗୋଟିଏ ହରିଣୀ ପାଣି ପିଇବାକୁ ଆସି ହ୍ରଦକୂଳରେ ସ୍ଥିର ହୋଇ ଛିଡ଼ାହୋଇଛି। ଆଉ ମଧ୍ୟ ମନେହେଲା, ସତେ ଅବା କୌଣସି ଶିଳ୍ପୀ

ତା'ର ମୂର୍ତ୍ତି ଆଙ୍କିବାଲାଗି ତୂଳିକା ଧରି ଛିଡ଼ାହୋଇଛି; କାଳେ ମୂର୍ତ୍ତିଗଠନରେ କୌଣସି ଅସୁବିଧା ହେବ, ସେଥିଲାଗି ସେ ନୀରବ ନିଶ୍ଚଳ ଭାବରେ ଛିଡ଼ାହୋଇରହିଛି। ମୋର ଦକ୍ଷିଣ ହସ୍ତ ଅନାୟାସରେ ତୀର ବାହାର କରିବାଲାଗି କାନ୍ଧ ଉପରକୁ ଉଠିଗଲା; କାରଣ ମୋ ମନ ମଧ୍ୟରେ ଲୁଚିରହିଥିବା ଶିକାରୀ ସ୍ୱଭାବ ଜାଗିଉଠିଲା। କିନ୍ତୁ ପରକ୍ଷଣରେ ହଠାତ୍ ମୋ ମନ ମଧ୍ୟରେ ଭାବନା ଜାଗିଉଠିଲା – 'ଶିକାର ମହାପାପ।' ଅବଶ୍ୟ ଜଣେ କ୍ଷତ୍ରିୟର ମନରେ ଏପରି ଭାବନା ଜାଗିବା ଉଚିତ ନୁହେଁ; ତଥାପି ସେହି ହରିଣୀଟି ଆଡ଼କୁ ଚାହିଁବା ମାତ୍ରକେ, କାହିଁକି କେଜାଣି ଏପରି ଭାବନା ମୋ ମନରେ ଜାତହେଲା। ହରିଣୀଟି ଠିକ୍ ସେହିପରି ନିଶ୍ଚଳ ଭାବରେ ଛିଡ଼ାହୋଇ ରହିଥିଲା। ମୁଁ ଟିକିଏ ମୁହଁ ବୁଲାଇ ନଦୀର ଅନ୍ୟଆଡ଼କୁ ଚାହିଁଲି। ସେଠାରେ ମଧ୍ୟ ଆଉ ଗୋଟିଏ ହରିଣୀ... ନା... ନା... ବୋଧହୁଏ କୌଣସି ଗୋଟିଏ ଯୁବତୀ ଛିଡ଼ାହୋଇଛି। ସେ ମୋ ଆଡ଼କୁ ପିଠିକରି ଛିଡ଼ାହୋଇଥିଲା। ଭାବିଲି, 'ଏପରି ଏକ ନିର୍ଜନ ସ୍ଥାନକୁ ସେ ଆସିଲା କାହିଁକି?'

ଯୁବତୀଟି କିଛିକ୍ଷଣ ଆକାଶ ଆଡ଼କୁ ଚାହିଁରହିଲା; ତା'ପରେ ହାତଯୋଡ଼ି ହ୍ରଦ ଭିତରକୁ କୁଦିପଡ଼ିଲା। ମୁଁ କ୍ଷଣେମାତ୍ର ବିଳମ୍ବ ନକରି ଯୁବତୀଟିକୁ ରକ୍ଷାକରିବାଲାଗି କରୁଣାର୍ଦ୍ର ହୃଦୟରେ ହ୍ରଦ ଭିତରକୁ ଡେଇଁପଡ଼ିଲି। ତାକୁ ଉପରକୁ ଉଠାଇଆଣି ତାର ଚେତନା ଫେରାଇ୍ ଆଣିବା ଅଭିଳାଷରେ, ମୋ କୋଳ ଉପରେ ତା'ର ମୁଣ୍ଡ ରଖି ଶୁଆଇଦେଲି। ମୋ ହୃଦୟରେ ହଠାତ୍ କରୁଣ ଭାବ ବଦଳରେ ଜାତହେଲା ଆଶ୍ଚର୍ଯ୍ୟ, ଭୟ ଓ ଆନନ୍ଦ। ସେ ଯୁବତୀଟି ଥିଲା ଅଳକା। ଅଳକାର ମୁହଁ ଓ କାନରେ ବେଶି ପାଣି ପଶିନଥିଲା; ତେଣୁ ସଙ୍ଗେ ସଙ୍ଗେ ଆଖି ଖୋଲି ଚାହିଁଦେଇ ଓଠ ଫାଙ୍କରେ ଟିକିଏ ହସ ଖେଳାଇଦେଇ ପୁଣି ଆଖି ବୁଜିଦେଲା। ପର ମୁହୂର୍ତ୍ତରେ ସେ ଚମକିପଡ଼ି କ୍ଷୀଣ ସ୍ୱରରେ କହିଲା – "ଆଲୋ ମା' ଲୋ ! ଯୁବରାଜ କେତେବେଳେ ଆସିଲେ ?" ତା' କଥାରୁ ସ୍ପଷ୍ଟ ଜଣାପଡୁଥିଲା ଯେ, ସେ ପୂର୍ଣ୍ଣଭାବରେ ଚେତନା ଲାଭକରିନାହିଁ। ମୁଁ ହସିହସି କହିଲି, "ଅଳକା, ମୁଁ ଆଉ ଯୁବରାଜ ନାହିଁ; ଏବେ ମହାରାଜ ହୋଇଗଲିଣି।" ସେ ଆଖି ଖୋଲି ମୋ ମୁହଁକୁ ଚାହିଁ କହିଲା – "ସତେ ! ମୋର ଭୁଲ୍ ହୋଇଗଲା ମହାରାଜ !" ସେ ଏତିକି କହି ମୁଗ୍ଧ ଚାହାଣିରେ ନିର୍ମଳ ହାସ୍ୟରେଖା ମୁଖମଣ୍ଡଳରେ ଆଙ୍କିଦେଲା। ମୋର ମନେପଡ଼ିଗଲା; ସେଦିନ ରାତିଅଧରେ ଅଳକାର ମଧୁର ହାସ୍ୟଛଟା ଏବଂ ସେଦିନର ସେହି ଚୁମ୍ବନ ମୋ ଦେହରେ ପୁଲକ ଜଗାଇ ମୋତେ କମ୍ପାଇଦେଲା। ଛୋଟ ପିଲାଟିଏ ମିଞ୍ଜି ମିଞ୍ଜି ଜଳୁଥିବା ଦୀପ ଆଲୋକକୁ ନିର୍ନିମେଷ ଚକ୍ଷୁରେ ଚାହିଁରହିଥିଲା ପରି, ଅଳକା ମୋତେ ଅପଲକ ଦୃଷ୍ଟିରେ ଚାହିଁରହିଲା; ବୋଧହୁଏ ଠିକ୍ ଜାଣିପାରୁନଥିଲା ଯେ ସେ ସ୍ୱପ୍ନ ଦେଖୁଛି ନା ପ୍ରକୃତରେ ଚାହିଁଛି। ଅଳକାର ସେହି ଚିନ୍ତାବିଜଡ଼ିତ ମୁଖମଣ୍ଡଳଟି ମୋତେ ପ୍ରଲୁବ୍ଧ କରିଦେଲା। ତାର ଗୋଲାପୀ ଅଧରରେ ଅଧର ମିଶାଇ ଦେବାଲାଗି ମୁଁ ତଳକୁ ଲଇଁପଡ଼ିଲି। ମୋର ଅଭିଳାଷ ଜାଣିପାରି ସେ ଥରିଉଠି କହିଲା – "ଉଁ... ହୁଁ..."

ତା'ର କଣ୍ଠରୋଧ ହେଲାପରି ଜଣାପଡୁଥିଲା । ମୁଁ ତା'ର ଅସମ୍ମତି ବୁଝିପାରି ମୁହଁ ସଳଖକରି ବସିପଡ଼ିଲି । ସେ ଲୁହଭରା ଆଖିରେ ମୋ ଆଡ଼କୁ କରୁଣ ଭାବରେ ଚାହିଁ, ମୋ ହାତଟିକୁ ଖୁବ୍ ଜୋର୍‌ରେ ଜାବୁଡ଼ିଧରି କହିଲା, "ମହାରାଜ, ମୁଁ ପରଘରୀ ହୋଇସାରିଛି ।" ତାର ହାତ ଥରୁଥିଲା ଏବଂ ମୁହଁରୁ ଭୟର ସ୍ପଷ୍ଟ ଭାବ ଫୁଟିଉଠୁଥିଲା । ସେ ଓଦା ଲୁଗା, ପାଣି ଜୁଡୁବୁଡୁ କେଶଗୁଚ୍ଛ ପ୍ରତି ଆଦୌ ଦୃଷ୍ଟି ନଦେଇ, ମୁଁ ଯେତେ ମନାକଲେ ମଧ୍ୟ, ଧକେଇ ହୋଇ ସେ ନିଜର କରୁଣ କାହାଣୀ କହିବସିଲା ।

ତା'ର ଜୀବନଗାଥାରୁ ଜଣାଗଲା— ତା' ମାଉସୀର ବ୍ୟବସ୍ଥା ଅନୁସାରେ କଳିକା ତାକୁ ଗୋଟିଏ ସୁନ୍ଦର, ସ୍ୱାସ୍ଥ୍ୟବାନ୍ ତଥା ଧନୀ କୃଷକ ଯୁବକ ସହିତ ବିବାହ କରାଇଦେଲା; କିନ୍ତୁ ସ୍ୱାମୀ ତାର ଥିଲା ଜୁଆଡ଼ି । ସେ ଲୋକଟି ଜୁଆ ନିଶାରେ ମାତିଯାଇ ଅନ୍ୟ କୌଣସି କାମଧନ୍ଦା ପ୍ରତି ମନ ବଳାଇଲାନାହିଁ; ଏପରିକି ଘର, କ୍ଷେତ, ମାଆ ତଥା ବିବାହିତା ସୁନ୍ଦରୀ ପତ୍ନୀ ଆଡ଼କୁ ସୁଦ୍ଧା ସେ ଆଡ଼ଆଖିରେ ଚାହିଁଲାନାହିଁ । ଯାଦୁମନ୍ତ୍ର, ଗୁଣିଗାରେଡ଼ି ଜାଣିଥିବା ଗୋଟିଏ ଲୋକ ଥିଲା ତା'ର ପରମ ବନ୍ଧୁ ।

ଦିନେ ଅଳକାକୁ ଧରି ତା'ର ସ୍ୱାମୀ ଗୋଟିଏ ଯାତ୍ରା ଦେଖିବାକୁ ଗଲା । ସାଥିରେ ଯାଇଥିଲା ତା'ର ସେହି ଯାଦୁକର ଗୁଣିଆ ବନ୍ଧୁଟି । ଯାତ୍ରାରେ ଜୁଆଆଡ୍‌ଡ଼ା ଦେଖି, ସେ ସେଇଠି ମାତିଯାଇ ପଇସା-କଉଡ଼ି ଯାହା ନିଜ ପାଖରେ ଥିଲା ସବୁ ହରାଇ ଅଳକାକୁ ଘେନି ପଳାଇଆସିଲା । କିନ୍ତୁ ତା' ମନ ମଧ୍ୟରେ ଗୋଟିଏ ଦମ୍ଭ ରହିଥାଏ; ଦିନେ ନା ଦିନେ ସେହି ଗୁଣିଆ ବନ୍ଧୁ ସାହାଯ୍ୟରେ ସେ 'କର୍ଣ୍ଣପିଶାଚୀ' ସାଧନ କରି ଜୁଆଖେଳରୁ ପ୍ରଚୁର ଧନ ରୋଜଗାର କରିପାରିବ । ତା'ର ଗୁଣିଆ ବନ୍ଧୁଟି ଦିନରାତି ସବୁବେଳେ ମନ୍ତ୍ରଯନ୍ତ୍ରରେ ମାତିରହିଥାଏ । ମଣିଷକୁ ଗଧରେ ପରିଣତ କରିବା ବିଦ୍ୟା ହାସଲ ଲାଗି ସେ ସାଧନାରେ ରତ ଥାଏ; କିନ୍ତୁ ମଣିଷକୁ କୁକୁର କିମ୍ବା ଛେଳିରେ ପରିଣତ କରିପାରିବାଭଳି ମନ୍ତ୍ରସାଧନ ତାର ହୋଇସାରିଛି ବୋଲି ସେ ଚାରିଆଡ଼େ କହିବୁଲୁଥାଏ ।

ସେ ଦୁହିଁଙ୍କ ସାଥିରେ ବୁଲିବୁଲି ଅଳକା ଘରଠାରୁ ଅନେକ ଦୂରକୁ ଚାଲିଗଲା । ସେ ଥରେ ସାହସ କରି ସ୍ୱାମୀକୁ କେତେକ ଉପଦେଶ ଦିଅନ୍ତେ, ତା ସ୍ୱାମୀ ରାଗରେ ତମତମ ହୋଇ କହିଲା ତା'ର ବନ୍ଧୁକୁ— 'ଏଇଟାକୁ ମନ୍ତ୍ରବଳରେ ଶୀଘ୍ର କୁକୁର କିମ୍ବା ଛେଳି କରିଦିଅ । ତା'ପରେ ତା'ର ବକ୍‌ବକ୍ ବନ୍ଦ ହୋଇଯିବ ଏବଂ ଆମ ପଛେ ପଛେ ଚୁପ୍‌ଚାପ୍ ଗୋଡ଼େଇଥିବ ।' ତା କଥା ଶୁଣିବାମାତ୍ରେ ଗୁଣିଆଟା ଧୁନି ଲଗାଇ ଏଣ୍ଡୁତେଣ୍ଡୁ ମନ୍ତ୍ର ବଡ଼୍‌ବଡ଼୍ ହୋଇ ପଢ଼େ ଏବଂ ଧୁନି ଭିତରକୁ ବିରି ଓ ସୋରିଷ ଫିଙ୍ଗିବାରେ ଲାଗିଥାଏ । ଏହା ଦେଖି ଅଳକା ସେ ଦୁହିଁଙ୍କ ଗୋଡ଼ହାତ ଧରି, ଆଉ କେବେ କିଛି ନକହିବାଲାଗି ପ୍ରତିଜ୍ଞା କରେ; ତାପରେ ଯାଇ ଗୁଣିଆର ମନ୍ତ୍ରପାଠ ବନ୍ଦ ହୁଏ ।

ସେତିକିରେ ଅଳକାର ଦୁର୍ଭାଗ୍ୟ ଦୂରହେଲାନାହିଁ । ଦିନେ ତାର ଜୁଆଡ଼ି ସ୍ୱାମୀ ତାକୁ ଜୁଆଦାନରେ ଲଗାଇ ହାରିଗଲା । ଜିତିଥିବା ଲୋକଟା ଅଳକା ଆଡ଼କୁ ଫଟାରସିକ

ପରି ଆଖିମାରି ତାକୁ ହାତକରିବାକୁ ଚେଷ୍ଟାକଲା । କୌଣସି ପ୍ରକାର ଛଳନା କରି ଅଳକା ସେହି ଅନ୍ଧାର ରାତିରେ ପ୍ରାଣବିକଳରେ ଲକ୍ଷ୍ୟହୀନ ଭାବରେ ଧାଇଁବାରେ ଲାଗିଲା । ଏହିପରି ଧାଇଁ ଧାଇଁ ସେ ଅନେକ ବାଟ ଚାଲିଯାଇ ଗାଁଗହଳରେ ଭିକ୍ଷାମାଗି ପେଟ ପୋଷିବାପରେ ଶେଷକୁ ଆତ୍ମହତ୍ୟା କରିବାଲାଗି ହ୍ରଦକୁ ଡେଇଁପଡ଼ିଥିଲା ।

ଅଳକାର କାହାଣୀ ଶୁଣି ମୋ ମନରେ ଆଘାତ ଲାଗିଲା ଏବଂ ମୁଁ ଭାବିଲି, ଭାଗ୍ୟର କି ନିର୍ମମ ପରିହାସ ? ମାରିଦେବା ପୂର୍ବରୁ କିପରି ଦହଗଞ୍ଜ କରି ସେ ଖେଳ ଦେଖୁଥାଏ ।

ସୂର୍ଯ୍ୟ ଅସ୍ତାଚଳର ଚୂଡ଼ାରେ ପହଞ୍ଚିସାରିଥିଲେ; କିନ୍ତୁ ଅଳକାର ମନଆକାଶରେ ଆଶାର ନବୀନ ଚାନ୍ଦ ଉଇଁଆସିଲା । ତାର ଆଲୁଳାୟିତ କେଶପାଶରେ ମୁଁ ଅଙ୍ଗୁଳିଚାଳନା କରି ମମତାଭରା ସ୍ୱରରେ କହିଲି– 'ତୁ ଆଉ ଆଦୌ ଭୟକରନା, ତୁ ମୋର . . . ।' ସେ ମୋ କୋଳରୁ ହଠାତ୍ ଉଠିପଡ଼ି, ଟିକିଏ ବିବ୍ରତ ହେଲାପରି କହିଲା– 'ନା ନା, ମୁଁ ଆପଣଙ୍କର ନୁହେଁ ମହାରାଜ । ମୁଁ . . . ମୁଁ . . . ଅନ୍ୟର ସମ୍ପତ୍ତି . . . ।' ସ୍ନେହରେ ତାର ମୁଣ୍ଡକୁ ଆଉଁଷିଦେଇ ମୁଁ କହିଲି– ''ପାଗଳୀଟା, ତୁ ପରା ମୋ ଭଉଣୀ । ମନେନାହିଁ, ମୁଁ ପରା ତୋ ମାଆଠାରୁ କ୍ଷୀର ଖାଇଛି ।''

ବାସ୍ତବିକ ମମତାଭରା . ଗୋଟିଏ ଶବ୍ଦର କି ଅଦ୍ଭୁତ ଶକ୍ତି ! ଅଳକାର ମୁହଁରୁ ବିରକ୍ତିରଭାବ କୁଆଡ଼େ ଉଭେଇଯାଇ ହସ ଉକୁଟି ଉଠିଲା । ସତେ ଅବା ଲିଭିଯାଇଥିବା ଦୀପରେ ପୁଣି କିଏ ତେଲ ଭରିଦେଲା ।

ସେହି ନିର୍ଜନ ସ୍ଥାନରେ ସନ୍ଧ୍ୟାପରେ ରହିବା ଉଚିତ ମନେନକରି, ମୁଁ ତା'ର ହାତଧରି ନଈକୂଳକୁ ନେଇଗଲି । ସେଠାରେ ସେ ନିର୍ମଳ ପାଣିରୁ ପେଟେ ପିଇସାରିବା ପରେ ସୁସ୍ଥ ହୋଇଉଠିଲା । ସେ ପାଣି ପିଉଥିବାବେଳେ, ମୋର ଦୃଷ୍ଟି ପଡ଼ିଗଲା ତା କେଶପାଶର ସ୍ୱର୍ଣ୍ଣିମ ଛଟା ଉପରେ । ଏତେଦିନ ଧରି ମୁଁ ତାକୁ ଦେଖିଆସୁଥିଲେହେଁ ତା କେଶପାଶର ଏପରି ମନୋମୁଗ୍ଧକର ସୁନେଲି ଛବି କେବେହେଲେ ମୋ ଆଖିରେ ପଡ଼ିନଥିଲା । ଆଜି ପ୍ରଥମ ଥର ଦେଖି ମୁଁ ହସି ହସି କହିଲି– ''ତୋ କେଶ ତ ବେଶ୍ ସୁନେଲି ରଙ୍ଗ ଦେଖାଯାଉଛି ?''

–''ହଁ . . . ।''

–''ହଁ . . . ନହେବ ବା କାହିଁକି ?''

–''କାରଣ . . . ?''

''ବଡ଼ଲୋକଙ୍କର ସବୁଯାକ ଭଲ ।'' ଟିକିଏ ହସିଦେଇ ଉତ୍ତର ଦେଲି ମୁଁ । ସେ ମନଖୋଲା ହସ ଚେନାଏ ବିଞ୍ଚିଦେଇ ମୋ ଆଡ଼କୁ କରୁଣାପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲା– ''ମୁଁ ଅନେକ ବଡ଼ । ମୋ'ଠାରୁ ଆଉ ଭାଗ୍ୟଶାଳିନୀ ସଂସାରରେ କିଏ ଅଛି ? ଆପଣ ଜାଣନ୍ତି ମୁଁ କିଏ ?''

–''ନା . . . ତ ।''

–''ହସ୍ତିନାପୁରର ସମ୍ରାଟ୍ ଯଯାତିଙ୍କର ଭଉଣୀ ।''

ସେ ରାତିରେ ଅନେକ ସମୟ ପର୍ଯ୍ୟନ୍ତ ମୋ ଆଖିକୁ ନିଦ ଆସିଲାନାହିଁ । ମୁଁ

ଶେଯରେ ପଡ଼ିଥାଏ; ମୋ ଆଖି ଆଗରେ ନାଚ଼ିଉଠୁଥାଏ, ସୁନେଲି କେଶବତୀ ଅଳକା, ନଦୀର ଶୁଭ୍ରଧାରା ମଝିରେ ଛିଡ଼ାହୋଇ କହୁଥାଏ – "ଜାଣିଛନ୍ତି, ମୁଁ କିଏସେ ? ମୁଁ ହେଉଛି ହସ୍ତିନାପୁରର ମହାରାଜା ଯଯାତିଙ୍କର ଭଉଣୀ ।" ମୁଁ ତାର ସେହି ପବିତ୍ରସ୍ମୃତିକୁ ଧାରଣ କରି କରି କେତେବେଳେ ମୋ ଆଖିକୁ ନିଦ ଆସିଗଲା ଶୋଇଗଲି ।

ରାତିଅଧରେ ମୋତେ ଜଣାଗଲା; କେହି ଜଣେ ଆସି ମୋ ପାଦଉପରେ ହାତ ରଖିଛି । ଚମକିପଡ଼ି ମୁଁ ଉଠିବସିଲି । ଶିବିରର ଗୋଟିଏ କୋଣରେ ଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । ତଥାପି ମୁଁ ସ୍ପଷ୍ଟ ଜାଣିପାରିଲି; ମୋ ଗୋଡ଼ ପାଖରେ ଅଳକା ଛିଡ଼ାହୋଇ ଥର ଥର କମ୍ପୁଛି । ମୁଁ ତା' ହାତଧରି ବିଛଣାରେ ବସାଇଲି; ଝାଳରେ ସେ ଜୁଡୁବୁଡୁ ହୋଇଯାଇଥିଲା । ମୁଁ ତାକୁ ବିଛଣାରେ ବସାଇ ତା ପିଠିରେ ହାତ ବୁଲାଇ ତାକୁ ଆଶ୍ୱସ୍ତ କଲି । ଏତିକିବେଳେ ଜଣାଗଲା, କାହାର ଗୋଟିଏ ଛାୟା ମୋ ଶିବିର ପାଖରେ ଭିତରକୁ ଉଙ୍କିମାରୁଛି । ମୁଁ ହଠାତ୍ ଉଠିଯାଇ ଦେଖିଲି, ବାହାରେ କେହି ନାହିଁ ।

ଭୟରେ କମ୍ପୁଥିବା ଅଳକାଠାରୁ ମୁଁ ଜାଣିପାରିଲି, ସେ ଯାଦୁ ଓ ଗୁଣିବିଦ୍ୟାକୁ ଖୁବ୍ ଭୟ କରୁଛି । ଆଜି ପ୍ରଥମ ସ୍ୱପ୍ନରେ ଦେଖିଥିଲା, ତାକୁ ସେ ଗୁଣିଆଟା ଛେଳିକରିଦେଇଛି । ଦ୍ୱିତୀୟ ସ୍ୱପରେ ଦେଖିଲା, ତାକୁ କୁକୁର କରିଦେଇଛି । ତୃତୀୟ ସ୍ୱପ୍ନ ହେଉଛି– ତା'ର ସେହି ଜୁଆଡ଼ି ସ୍ୱାମୀ ତାକୁ ପର୍ବତ ଉପରୁ ତଳକୁ ପେଲିଦେଉଛି । ସେତେବେଳେ ସେ ଜୋର୍‌ରେ ପାଟିକରି ଭୟରେ ମୋ ପାଖକୁ ଚାଲିଆସିଲା । ମୁଁ ତାର ଭୟପୂର୍ଣ୍ଣ କାହାଣୀ ଶୁଣୁଥିବା ସମୟରେ ହଠାତ୍ ମିଞ୍ଜିମିଞ୍ଜି ଜଳୁଥିବା ଦୀପଟି ଲିଭିଗଲା । କହୁ କହୁ ହଠାତ୍ ସେ ନୀରବ ହୋଇଗଲା । ସେତିକିବେଳେ ଶିବିର ବାହାରେ କାହାର ପାଦଶବ୍ଦ ଶୁଣାଗଲା । ମୁଁ ଭାବିଲି, ସେ ପ୍ରହରୀ ହୋଇପାରେ ।

ମୁଁ ଅଳକାକୁ ବୁଝାଇଶୁଝାଇ ଶୋଇବାଲାଗି ପଠାଇଦେଲି । ମୁଁ ବେଶ୍ ଅନୁଭବକଲି, ସେ ତାର ସ୍ୱାମୀ ଓ ସେହି ଗୁଣିଆଠାରୁ ଖୁବ୍ ଭୟପାଇଛି ଏବଂ ଆଉ ପରଦିନ ରାତିରେ ମୋ ଶିବିର ଭିତରକୁ ଆସିବନାହିଁ । କିନ୍ତୁ ପୂର୍ବ ରାତି ପରି ପରଦିନ ରାତିରେ ସେ ପୁଣି ଆସିଲା । ରାତିଟି ତା'ର ଶତ୍ରୁ ହୋଇଉଠିଥିଲା । ସେଦିନ ରାତିରେ ସେ କହିଲା, ମନ୍ଦାର ଆକୃତିର ଗୋଟିଏ ଭୂତ ଆସି ତାକୁ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ତାକୁ ଚୁମ୍ବନ ଦେବାଲାଗି ଚେଷ୍ଟାକଲା । ସେ ଟିକିଏ ହଲଚ଼ଲ ହେବାରୁ ଭୂତ ପଳାଇଗଲା ।

ତୃତୀୟ ଦିନ ତାକୁ ମୋ ତମ୍ବୁ ଭିତରେ ଶୋଇବାଲାଗି ଦାସୀ ଦୁହିଁଙ୍କୁ ଆଦେଶଦେଲି । ମୋ ଶିବିରର ଦ୍ୱାର ସାରା ରାତି ଖୋଲାରହେ ଏବଂ ପ୍ରହରୀମାନେ ଚାରିପଟେ ପହରାରେ ନିଯୁକ୍ତ ଥାଆନ୍ତି । ତେଣୁ ସେ ଯଦି ମୋ ତମ୍ବୁରେ ଶୁଏ ତେବେ କାହାରି କିଛି ସନ୍ଦେହ କରିବାର ଅବକାଶ ନଥିଲା ।

ମୋ ପ୍ରତି ତା ମନରେ ଅଗାଧ ବିଶ୍ୱାସ ଥିବାରୁ ସେ ରାତିରେ ବେଶ୍ ଆରାମରେ ଶୋଇପାରିଲା । ମଝିରେ ମଝିରେ ସେ ଚମକିପଡ଼ି 'ମହାରାଜ' ବୋଲି ବିଳିବିଳି ହୋଇଉଠୁଥିଲା । ସେତିକିବେଳେ ମୁଁ ତାକୁ ଆଶ୍ୱାସନା ବାଣୀ ଶୁଣାଇ,

ତା' ମନରେ ଧୈର୍ଯ୍ୟ ଦେଉଥିଲି । ତା'ପରେ ସେ ଶାନ୍ତିରେ ତା' ବିଛଣାରେ ଶୋଇପଡୁଥିଲା ।

ସେ ରାତିରେ କେବଳ ଥରେମାତ୍ର ମୋ ବିଛଣା ଉପରକୁ ଆସିଥିଲା; କିନ୍ତୁ ମୋ ମନ ମଧ୍ୟରେ ତାକୁ ଉପଭୋଗ କରିବାର ବାସନା ଜାତହେଲାନାହିଁ । ତା'ର ସୌନ୍ଦର୍ଯ୍ୟ ଅପେକ୍ଷା ମୋ ପ୍ରତି ତା' ମନର ଅଗାଧ ବିଶ୍ୱାସ ମୋ ପକ୍ଷରେ ଆକର୍ଷକ ହୋଇଉଠିଥିଲା । ତାକୁ ଚୁମ୍ବନ ଦେଇ ଆନନ୍ଦ ଅନୁଭବ କରିବା ବଦଳରେ ତାର ସେହି ସୁନେଲି କେଶଭରା ମୁଣ୍ଡଟିକୁ କୋଳରେ ରଖିବାକୁ ମୁଁ ଖୁବ୍ ଭଲପାଉଥିଲି ।

ପ୍ରବାସର ସେହି ଦିନଗୁଡ଼ିକ କେତେ ଚଞ୍ଚଳ ବିତିଗଲା । କିନ୍ତୁ ଆଜିସୁଦ୍ଧା ସେ ସ୍ମୃତି ମୋ ମନରେ ସବୁଜ ହୋଇ ରହିଛି । ସେ ସାରାଦିନ ମୋ'ରି ଆଖପାଖରେ ଘୂରିବୁଲୁଥିଲା, କେବେ କେବେ ଗୁଣୁଗୁଣୁ କରି ଗୀତ ଗାଇ କେଶପାଶ ବାନ୍ଧୁଥିଲା । କେବେ କେବେ ମୋ ଶିବିରରେ ଝାଡୁ ଦେଇ ପରିଷ୍କାର କରୁଥିଲା । କେବେ ବନଫୁଲରେ ଗଜରା ଗୁନ୍ଥିବାରେ ଲାଗିଥିଲା । କୌଣସି ନଗରରେ ଆମର ଶିବିର ସ୍ଥାପିତ ହେଲେ କେତେପ୍ରକାର ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରି ମୋତେ ଆନନ୍ଦରେ ପରଷୁଥିଲା । ମୁଁ ଖାଉଥିବା ସମୟରେ ହାତରେ ପଙ୍ଖା ଧରି ମୋତେ ଧୀରେ ଧୀରେ ବିଞ୍ଚିଦେଇ ଜୋର୍‌କରି ମୋତେ କେତେ ଜିନିଷ ଖୁଆଉଥିଲା । ମୁଁ ଥରେ ତାକୁ କହିଲି– "ବୁଝିଲୁ ଅଳକା, ହସ୍ତିନାରେ ପହଞ୍ଚିବାବେଳକୁ ମୋତେ ନିଶ୍ଚୟ ଅଜୀର୍ଣ୍ଣ ରୋଗ ହୋଇଥିବ । ରାଜବୈଦ୍ୟ ମୋତେ ପିତା ଔଷଧ ଖାଇବାକୁ ଦେଲେ ମୁଁ କହିବି– ବୈଦ୍ୟମହାରାଜ, ଆପଣ ଅଳକାକୁ ଏ'ସବୁ ଖୁଆନ୍ତୁ, କାରଣ ପ୍ରବାସରେ ମୋତେ ସେ ଜୋର୍‌କରି ଅନେକ ଜିନିଷ ଖୁଆଇଛି । ତେଣୁ ମୋ ଅଜୀର୍ଣ୍ଣର କାରଣ ସେ ।"

ମୁଁ ବେଳେବେଳେ ଚିନ୍ତା କରେ– ବିଧାତା ନାରୀ ସୃଷ୍ଟି କଲା ସମୟରେ ନିଶ୍ଚୟ ମଧୁରରସରେ ଆତ୍ମବିଭୋର ହୋଇଉଠିଥିବେ । ସେ ଯା'ହେଉ, ସେହି ପ୍ରବାସ କାଳରେ ମୋତେ ଅଳକାର ସାନ୍ନିଧ ଖୁବ୍ ସୁଖକର ବୋଧ ହେଉଥିଲା । ମନେହେଉଥିଲା – ଗୋଟିଏ ମଧୁର ତଥା ରମ୍ୟ ରଚନାରେ ମୁଁ ବୁଡ଼ବୁଡୁ ହୋଇଯାଇଛି । ସେ ରଚନା ମଧ୍ୟରେ ନଥିଲା ଆଦିରସର ଛଟା; କିନ୍ତୁ ବାତ୍ସଲ୍ୟ, କରୁଣ ତଥା ହାସ୍ୟରସରେ ସେ ରଚନା ରସାଣିତ ହୋଇଉଠିଥିଲା ।

ମୁଁ କେଇଥର ଲକ୍ଷ୍ୟ କରିଛି– ମନ୍ଦାର ଅଳକାଆଡ଼କୁ ରୋଷପୂର୍ଣ୍ଣ ଚାହାଣିରେ ଚାହୁଁଥିଲା । ବୋଧହୁଏ ସେ ଗୋଟିଏ ଦାସୀର ସନ୍ତାନ ହୋଇ ମହାରାଜାଙ୍କ ସହିତ ସମାନ ହୋଇଉଠିଥିବାରୁ, ତା' ମନରେ ଈର୍ଷା ଜାତହୋଇଥିଲା । କିନ୍ତୁ ସେ ପାଗଳ କାହୁଁ ଜାଣିବ, ଦୁନିଆର ଦୃଷ୍ଟିକୋଣରେ ମୁଁ ମହାରାଜା; କିନ୍ତୁ ଅଳକାର ଦୃଷ୍ଟିରେ ମୁଁ ତାର ଭାଇ, ମୋ ଦୃଷ୍ଟିରେ ସେ ଥିଲା ମୋର ଭଉଣୀ ।

ନିଶ୍ଛଳ ଆତ୍ମୀୟତା, ନିଷ୍କପଟ ବ୍ୟବହାର, ମନଖୋଲା କଥାବାର୍ତ୍ତାରେ ସେହି ପ୍ରବାସକାଳୀନ ଦିନଗୁଡ଼ିକ ଚାହୁଁ ଚାହୁଁ ବିତିଗଲା । ହସ୍ତିନାପୁରଠାରୁ ମାତ୍ର ଦଶକୋଶ ଦୂରରେ ଆମେ ପହଞ୍ଚିବା ପରେ ମନ୍ଦାର ମୋତେ କହିଲା– "ମହାରାଜ, ମୁଁ ପ୍ରଥମେ ରାଜଧାନୀ ଚାଲିଯାଉଛି, ଅନ୍ୟଥା ମହାରାଣୀ ଆପଣଙ୍କ ସ୍ୱାଗତ ସମ୍ବର୍ଦ୍ଧନା ଲାଗି ସମୟ ନ ପାଇଲେ ମୋ ଉପରେ ବିରକ୍ତ ହେବେ ।"

ଯିବାଲାଗି ମୁଁ ତାକୁ ଅନୁମତି ଦେଲି; କିନ୍ତୁ ମୋ ମନରେ ଗୋଟିଏ ଭାବନା ଉଙ୍କିମାରୁଥିଲା, ମାଆଙ୍କ ଚକ୍ଷୁରେ ବାତ୍ସଲ୍ୟର ଅମୀୟ ଝର ଓ ଅଳକାର ଦୃଷ୍ଟିରେ ମମତାର ନିର୍ମଳ ପ୍ରବାହ ଯେତେବେଳେ ମୋତେ ସ୍ୱାଗତ ଜଣାଇବାଲାଗି ରହିଛି, ସେତେବେଳେ ଆଉ ସ୍ୱତନ୍ତ୍ର ଭାବରେ ସ୍ୱାଗତ ସମ୍ବର୍ଦ୍ଧନାର ବା ଆବଶ୍ୟକତା କ'ଣ ?

× × × × ×

ଅନେକ ରାତିରେ ଆମେ ଯାଇ ହସ୍ତିନାପୁରରେ ପହଞ୍ଚିଲୁ। ମାଆଙ୍କୁ ମୁଁ ଅଳକାର ସନ୍ଧାନ ତଥା ତାର ମନୋଭାବ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦେଇ ତାଙ୍କ ପାଖରେ ଛାଡ଼ିଦେଲି ଏବଂ ରାତ୍ରିଭୋଜନ କରିସାରି ଶୋଇପଡ଼ିଲି। ମୁଁ ଭାବିଥିଲି, ମାଆ ନିଶ୍ଚୟ ଯତି ବିଷୟରେ କେତେକଥା ପଚାରିବେ; କିନ୍ତୁ ସେ ଆଦୌ କିଛି ପଚାରିଲେନାହିଁ। ମୁଁ ଯତିକୁ ନଆଣି ଫେରିଆସିଥିବାରୁ ମାଆଙ୍କ ମନରେ ଅଶେଷ ଦୁଃଖ ଜାତହୋଇଥିବ। ମୁଁ କାହିଁକି ବୃଥାଟାରେ ଯତି ସମ୍ବନ୍ଧରେ ମାଆଙ୍କ ଆଗରେ ପ୍ରସଙ୍ଗ ଉଠାଇଲି କେଜାଣି ? ଆଶା ବିଫଳ ହେବାଠାରୁ ଦୁନିଆରେ ଅଧିକ ମର୍ମନ୍ତୁଦ ଦୁଃଖ ଆଉ କିଛି ନାହିଁ।

ପରଦିନ ଖୁବ୍ ବ୍ୟସ୍ତତାରେ ଦିନଟି କଟିଲା। ଅମାତ୍ୟ ତଥା ଅନ୍ୟାନ୍ୟ ଉଚ୍ଚ ପଦପଦବୀର ଅଧିକାରୀମାନେ ଆସି ଅଭିଷେକ ସମ୍ବନ୍ଧରେ ଅନେକ ପ୍ରକାର ଆଲୋଚନା କଲେ। ଏହା ମଧ୍ୟରେ ମାଧବ ତାରକାକୁ ସଙ୍ଗରେ ଧରି ଆସି ପହଞ୍ଚିଲା। ମୁଁ ତାରକାକୁ ମିଠାଇ ଦେବାଲାଗି ଅଳକାକୁ ଡାକିଲି; କିନ୍ତୁ ମିଠାଇ ଧରି ଅନ୍ୟ ଜଣେ ଦାସୀ ଆସି ପହଞ୍ଚିଲା। ମୁଁ ସାରାଦିନ କାର୍ଯ୍ୟରେ ବ୍ୟସ୍ତ ରହିଲି ଏବଂ ଅନ୍ୟ କେତେକ କାମରେ ଅଳକାକୁ ଡକାଇଲି; ତଥାପି ଥରେହେଲେ ସୁଦ୍ଧା ସେ ମୋ ଆଗକୁ ଆସିଲାନାହିଁ। ରାତିରେ ଖାଇବା ସମୟରେ ମୁଁ ମାଆଙ୍କୁ ପଚାରିଲି– ''ଅଳକା ତ କେଉଁଠି କାହିଁ ଦେଖାଯାଉନି ?''

ମାଆ ନିର୍ବିକାର ଭାବରେ, ସତେଯେପରି ସେ ମୋ କଥା ଆଦୌ ଶୁଣିନାହାନ୍ତି, ଉତ୍ତରଦେଲେ– ''ଯଯୁ, ତୁ ଏବେ ହସ୍ତିନାପୁରର ରାଜା, ରାଜାମାନଙ୍କ ଦୃଷ୍ଟି ରାଜକନ୍ୟା ଉପରେ ପଡ଼ିବା ଉଚିତ; ଗୋଟିଏ ଦାସୀ ଉପରେ ତୋର ଏତେଦୂର ମମତା ଆଦୌ ସୁନ୍ଦର ନୁହେଁ।''

ମାଆ ଏପରି ନିର୍ବିକାର ଭାବରେ ଉତ୍ତରଟି ଦେଇଥିଲେ ଯେ, ମୁଁ ଆଦୌ ଚିନ୍ତା କରିପାରିଲିନି କ'ଣ ସେ କହିଚାଲିଛନ୍ତି କିମ୍ବା ସେପରି କହିବାର ଉଦ୍ଦେଶ୍ୟ କ'ଣ? ସେ ମୋ ସହିତ ଥଟ୍ଟା କରୁନାହାନ୍ତି ତ? ନା .. ମାଆ ମୋ ପ୍ରଶ୍ନର ଉତ୍ତରରେ ବିରକ୍ତ ହୋଇ ଏପରି କହୁଛନ୍ତି? ମୁଁ ଆଉ କିଛି ଉତ୍ତର ନଦେଇ ଥାଳିରେ ପରଷାଯାଇଥିବା ସୁମିଷ୍ଟ ଖାଦ୍ୟତକ ଛାଡ଼ିଦେଇ ଉଠିଗଲି।

ତା'ପରେ ମାଆ ମୋତେ ନିଜ ମହଲକୁ ଡକାଇନେଲେ। ସେ ନିଜ କକ୍ଷରେ ଦ୍ୱାର ବନ୍ଦ କରିଦେଇ ଗୋଟିଏ ସିଂହର ମୂର୍ତ୍ତିଆଡ଼କୁ ଚାହିଁ କହିଲେ– ''ବର୍ତ୍ତମାନ ଅଳକା ନିଜ ଜୀବନର ଶେଷ କେତୋଟି ମୁହୂର୍ତ୍ତ ଗଣିବାରେ ଲାଗିଛି।''

ମୁଁ ଚାହିଁଛି ନା ସ୍ୱପ୍ନ ଦେଖୁଛି, ଆଦୌ ବିଶ୍ୱାସ କରିପାରିଲି ନାହିଁ। ଅତି

କଷ୍ଟରେ ମୋ ମୁହଁରୁ ବାହାରିଲା – "ଯା . . . ଅର୍ଥ . . . ?"

"ଏ ସଂସାରରେ ଜନ୍ମହେବାର ମାର୍ଗ ଗୋଟିଏ, ମାତ୍ର ମୃତ୍ୟୁର ପନ୍ଥା ଅନେକ ରହିଛି।"

"କିନ୍ତୁ . . . ତା'ର ଏ ଅବସ୍ଥା ସମ୍ବନ୍ଧରେ ତୁମେ ମୋତେ କିଛି ଜଣାଇଲନାହିଁ କାହିଁକି ? ମୁଁ ରାଜବୈଦ୍ୟ . . ."

"ଏଥିରେ ରାଜବୈଦ୍ୟଙ୍କର କିଛି କାମନାହିଁ। ଏହା ରାଜବଂଶ ତଥା ରାଜମାତାଙ୍କ ଆଭିଜାତ୍ୟ ଉପରେ ନିର୍ଭର କରୁଛି। ତୁ ଏଥର ପ୍ରବାସ ଯାତ୍ରାରେ ଯେପରି ନାଟତାମସା . . .।"

ସେ ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଆଖିରୁ ଅଗ୍ନିବୃଷ୍ଟି କଲାପରି କହିଲେ – "ତୋତେ ଯେଉଁ ଭୟଙ୍କର ରୋଗ ଗ୍ରାସ କଲାଣି ତାର ଔଷଧ ବ୍ୟବସ୍ଥା ପାଇଁ . . .।"

"କି . . . ରୋଗ . . . ? ମୁକୁଳିକାଟାକୁ ମୁଁ ଅଶୋକବନରୁ ବାହାର କରିଦେଇ, ଆଉ ଯେପରି ରାଜଧାନୀରେ ପାଦ ନ ପକାଏ ସେଥିଲାଗି କଠୋର ଆଦେଶ ଦେଇଛି। ସେ ଆଜି ଏଠାରେ ଥିଲେ, ତୋ' ରୋଗର . . ."

ଏହା ଶୁଣିବାମାତ୍ରେ ମୁଁ ମୁଣ୍ଡ ତଳକୁ କରିଦେଲି। ମୁକୁଳିକା ଉପରେ ମୁଁ ପ୍ରକୃତରେ ଅତ୍ୟାଚାର କରିଥିଲି। ଅବଶ୍ୟ ଏ ଘଟଣାପାଇଁ ଦାୟୀ ମୁଁ . . . ଏବଂ କେତେଦିନ ପର୍ଯ୍ୟନ୍ତ ମୁଁ ଏଥିପାଇଁ ଅନୁତାପ କରିଥିଲି। କିନ୍ତୁ ଅଶୋକବନରେ ଘଟିଥିବା ସେସବୁ ଘଟଣା ମାଆଙ୍କୁ କହିଲା କିଏ ? ସେ କ'ଣ ନିଜେ ଆସି ସବୁ ଘଟଣା କହିଛି ? ଶରୀରର ସୁଖଦାନକରି ସେ ଯୁବରାଜଙ୍କର କୃପାପାତ୍ରୀ ହେବାକୁ ଚାହୁଁଥିବା ଗୋଟେ ସାମାନ୍ୟ ଦାସୀ – ସେ ଅବା କାହିଁକି . . .?

ସେହିପରି ଚଢ଼ାଗଳାରେ ମାଆ କହିଲେ – "ଏଣେ ତୋର ପିତା ମୃତ୍ୟୁଶଯ୍ୟାରେ ପଡ଼ିଥିଲେ, ତେଣେ ତୁ ଅଶୋକବନରେ ଗୋଟିଏ ତୁଚ୍ଛ ଦାସୀ ସହିତ ପଲଙ୍କରେ . . .!"

ସେଦିନ ଅମାତ୍ୟ ସୁଡ଼ଙ୍ଗମାର୍ଗରେ ନିଜର ବିଶ୍ୱସ୍ତ ଭୃତ୍ୟ ମନ୍ଦାରକୁ ପଠାଇ ମୋତେ ଡକାଇ ଆଣିଥିଲେ। ସେତେବେଳେ ମୁକୁଳିକା ମୋ ପଲଙ୍କ ପାଖରେ ଛିଡ଼ାହୋଇଥିଲା। ତାକୁ ସେଠାରୁ ବିଦାକରିଦେଇ ମନ୍ଦାରକୁ ଦ୍ୱାର ଖୋଲିଦେବାଲାଗି ମୋର ଆଦୌ ଖିଆଲ ନଥିଲା। ମନ୍ଦାର କ'ଣ ଏଡ଼େ ନୀଚ ? ଏସବୁ ମାଆଙ୍କୁ କହିଦେଇ ତାକୁ କ'ଣ ବା ଲାଭ ମିଳିଥିବ ?

ମୁଁ ଭାବିଲି – ଅଶୋକବନରେ ଯାହା ଯାହା ସବୁ ଘଟିଥିଲା; ସବୁ ଘଟଣା କ'ଣ ମାଆଙ୍କ ଆଗରେ କହିଦେବି ? କିନ୍ତୁ ମୋତେ ଲାଜମାଡ଼ିଲା; ମୁଁ କିଛି ନକହି ନୀରବ ରହିଲି। ମୁଁ ଯେତେ ସଫେଇ ଦେଇ କହିଲେ ମଧ ମାଆଙ୍କର ମନୋଭାବ ଯେପରି, ସେ ମୋ କଥା ଆଦୌ ବିଶ୍ୱାସକରିବେନାହିଁ। ତା'ପରେ ପରେ ମୋ କଲିଜା ଜଳାଇ ମାଆ କହିଲେ – "ଏଥିରେ ତୋର ଦୋଷ କ'ଣ ? ତୁମ ବଂଶର ରକ୍ତରେ ଏ ଦୋଷ ଅଛି। ଗୋଟିଏ ସୁନ୍ଦରୀ ସ୍ତ୍ରୀ ଦେଖିବାମାତ୍ରେ . . .।"

ମାଆ ନିଶ୍ଚୟ ପିତାଙ୍କର ଇନ୍ଦ୍ରାଣୀଙ୍କ ପ୍ରତି ମୋହ ସମ୍ବନ୍ଧରେ ଏପରି ତୀବ୍ର ବାକ୍ୟବାଣ ଚଳାଇ ମୋତେ ବିବ୍ରତ କରିଥିଲେ। ସେ ପୁଣି କହିଲେ – "ତୋ

ଦେହରେ ସେହି ରକ୍ତ ରହିଛି; ବେଳକାଳ ଦେଖି ସେ ମୁଣ୍ଡକୁ ଉଠୁଛି। ପତ୍ନୀ ହିସାବରେ ମୁଁ ଅନେକ ଦୁଃଖ ସହିଛି। ଏବେ ମାଆ ଭାବରେ ଆଉ ସେ ଦୁଃଖ ସହିବାଲାଗି ମୁଁ ପ୍ରସ୍ତୁତ ନୁହେଁ। କିନ୍ତୁ . . .।''

ହଠାତ୍ ମାଆ ନୀରବ ରହିଯାଇ ମୋତେ ଇଶାରାରେ ତାଙ୍କ ପଛେ ପଛେ ଯିବାକୁ ଡାକିଲେ। ମୁଁ ତାଙ୍କ ପଛେ ପଛେ ସୁଡ଼ଙ୍ଗ ମାର୍ଗ ଅତିକ୍ରମ କରି ଚାଲିଲି; କିନ୍ତୁ ମୁଁ କୁଆଡ଼େ ଯାଉଛି ବୋଲି ପଚାରିବାକୁ ମୋର ସାହସ ହେଲାନାହିଁ। କେତେବାଟ ଗଲାପରେ ଗୋଟିଏ ଅନ୍ଧକାର ଗୃହର ଦ୍ୱାରରେ ଜଣେ ଭୟଙ୍କର ଆକୃତିର ପ୍ରହରୀ ଆମକୁ ପ୍ରଣାମ ଜଣାଇଲା। ମାଆ ଦ୍ୱାର ଖୋଲି ମୋତେ ଭିତରକୁ ଡାକି କହିଲେ – ''ଭିତରକୁ ଯାଆ . . ., କିନ୍ତୁ ମନେରଖ ତୋତେ ଘଡ଼ିଏ ଦି'ଘଡ଼ି ସମୟ ଦିଆଗଲା। ମୃତ ବ୍ୟକ୍ତିର ଇଚ୍ଛା ପୂରଣ ହେବା ଉଚିତ। ଏଥିପାଇଁ ଅଳକା ପ୍ରତି ମୁଁ ଦୟା ଦେଖାଇଛି। ନୋହିଲେ . . . ଯୁବରାଜ . . .।''

ମାଆ ମୋତେ ଯଯୁ ବଦଳରେ 'ଯୁବରାଜ' ବୋଲି ଡାକି କହିଲେ, ''ଯୁବରାଜ ! ମନେରଖ, ତୁ କାଲି ମହାରାଜା ହେବାକୁ ଯାଉଛୁ। ମହାରାଜା କେବେହେଲେ କୌଣସି ଭୁଲ କରନ୍ତିନାହିଁ . . . ଏହା ମଧ୍ୟ ତୋର ବୁଝିରଖିବା ଉଚିତ। ଆଉ ତୁ ମଧ୍ୟ ଚାହିଁଲେ, ଅପ୍‌ସରାଠାରୁ ଆହୁରି ସୁନ୍ଦରୀ ଦାସୀ କାଲି ପୁଣି ତୋ ପାଦରେ ଶହ ଶହ ଲୋଟିପଡ଼ିବେ।''

ଏତିକି କହି ମାଆ ମୁହଁ ଫେରାଇନେଇ ଛିଡ଼ା ହୋଇଗଲେ। ମୁଁ ନିତାନ୍ତ କ୍ଷୁଣ୍ଣ ମନରେ ଭିତରକୁ ପାଦ ପକାଇ ଆଗେଇ ଚାଲିଛି। ଭିତରେ ମିଞ୍ଜି ମିଞ୍ଜି ହୋଇ ଦୀପଟିଏ ଜଳୁଥିଲା। ହଠାତ୍ ମୋତେ କିଛି ଦେଖାଗଲାନାହିଁ। କିଛି ସମୟ ନିରୀକ୍ଷଣ କଲାପରେ ଦେଖିଲି, ଅନ୍ଧକାର କୋଠରୀର ଠିକ୍ ମଝାମଝିରେ ଆଣ୍ଠୁ ଉପରେ ମୁଣ୍ଡ ରଖି ଅଳକା ବସିଛି। ମୁଁ ଧୀରେ ଧୀରେ ତା ପାଖକୁ ଯାଇ ତା'ର କାନ୍ଧ ଉପରେ ହାତ ରଖିଲି। ସେ ମୋ ଆସିବାର ଶବ୍ଦ ଜାଣିପାରିନଥିଲା, ହଠାତ୍ ମୁହଁ ଉପରକୁ ଟେକି ଚାହିଁଲା। ସେ ଅନେକ ସମୟ ପର୍ଯ୍ୟନ୍ତ ମୋ ମୁହଁକୁ ଏକଦୃଷ୍ଟିରେ ଅନାଇରହିଲା। ତାର ଦେହ ଗୋଟିପଣେ କଳାକାଠ ପଡ଼ିଯାଇଥିଲା ଏବଂ ଆଖି ସ୍ଥିର ହୋଇଯାଇଥିଲା। ସ୍ତମ୍ଭିତହୋଇ ମୋ ଆଡ଼କୁ ଚାହିଁ ପଚାରିଲା – ''କିଏ . . . ?''

ମୁଁ ତା' ପାଖରେ ବସିପଡ଼ି ଗୋଟିଏ ଛୋଟ ବାଳକ ପରି ତା' ମୁଣ୍ଡଟିକୁ ଟିକିଏ ହଲାଇଦେଇ ଚିତ୍କାର କଲାପରି ଡାକିଲି – ''ଅଳକା . . . !'' ସେ ବୋଧହୁଏ ମୋ ପାଟି ବାରିପାରିଲା। ତା' ଓଠଫାଙ୍କରୁ ଟିକେ ହସ ଝରିପଡ଼ିଲା। ବାଷ୍ପରୁଦ୍ଧ କଣ୍ଠରେ ଅତ୍ୟନ୍ତ ସୁମିଷ୍ଟ ସ୍ୱରରେ କହିଲା – ''କି . . . ଏ . . . ମହା . . . ରାଜ . . . !''

ମୁଁ ସେହିପରି ଛୋଟ ପିଲାଟିଏ ପରି ତା'ର ମଥାଟିକୁ ମୋ କାନ୍ଧ ଉପରେ ରଖି ଆଉଁଷିଦେଇ କହିଲି – ''ଏ . . . କ'ଣ କଲୁ ତୁ ଅଳକା . . .।'' ତା ପାଖରେ ଗୋଟିଏ ଖାଲି ପାତ୍ର ପଡ଼ିଥିଲା। ସେ ବହୁ କଷ୍ଟରେ ତା ଆଡ଼କୁ ଆଙ୍ଗୁଳି ଦେଖାଇ କହିଲା – ''ସେ . . . ସେ . . . ଇ . . . ପା . . . ତ୍ର . . . ରେ . . . ପ୍ରେମ . . . ସ୍ନେ . . .

ହ... ମ... ମ... ତା... ଥି... ଲା... ମୁଁ... ଛା... ତା... କୁ... ପି... ଇ... ଦେ... ଇ... ଛି...!'' ସେ ଆଉ କିଛି କହିପାରିଲା ନାହିଁ। ତା ଆଖିରୁ ଅବିରଳ ଅଶ୍ରୁର ଝର ଝରିଝରି ମୋ କାନ୍ଧ ଭିଜାଇଦେଲା। ତା'ପରେ ସେ ଛଟପଟ ହୋଇ ଅନେକ କଷ୍ଟରେ କହିଲା– 'ସେ... ସେ... ମନ୍ଦାର... ସେ ତାକୁ... ମୁଁ...।'

ତା'ପରେ ପାଟି ଖନିମାରିଗଲା। ମୁଁ ଉନ୍ମତ୍ତ ପରି ତା ମୁଣ୍ଡକୁ ଆଉଁଷିବାରେ ଲାଗିଲି। ତାର ମୁହଁଟିକୁ ଆଉଁଷି ଦେବାମାତ୍ରେ ସେ ବହୁ କଷ୍ଟରେ ମୁହଁ ବୁଲାଇନେଲା। ବିଷଜ୍ଵାଳାରେ ତା ଶରୀର ଅସ୍ଥିର ହେଉଥିଲା ଏବଂ ଦେହ ଧୀରେ ଧୀରେ ଥଣ୍ଡା ହୋଇଆସୁଥିଲା। ମୋ କାନ୍ଧ ଉପରେ ଥିବା ତାର ମୁଣ୍ଡଟି ଖୁବ୍ ଓଜନିଆ ଜଣାପଡ଼ିଲା। କ'ଣ କରିବି ବୋଲି ମୋତେ କିଛି ବୁଦ୍ଧି ଦେଖାଗଲା ନାହିଁ।

ଗୋଟିଏ ହିକ୍କା ମାରି ସେ ବହୁ କଷ୍ଟରେ କହିଲା– 'ମୋ... ତେ... ଭୁ... ଲି... ଯି... ବ... ନି...। ମୋ... ର... ଗୋ... ଟେ... ସୁ... ନେ... ଲି... କେଶ... ପା... ଖ... ରେ... ମା... ଆ... ଲୋ...'' ସେ ତା' ମୁଣ୍ଡରୁ ଗୋଟିଏ ସୁନେଲି କେଶ ବହୁ କଷ୍ଟରେ ଉପାଡ଼ି ଆଣିଲା। ମୁଁ ବେଶ୍ ଜାଣିପାରିଲି, ଅଳକା ଆଉ ମାତ୍ର କେଇ ଘଡ଼ିର ଅତିଥି। ମୃତ୍ୟୁର କେଉଁ ଅଜ୍ଞାତ ଗହ୍ଵରରେ ଚିରଦିନଲାଗି ଲୁଚିଯିବ 'ମୋର ପ୍ରାଣର ପ୍ରିୟା ଅଳକା'। ଅଭାଗିନୀ ଅଳକା! ଭାବିଲି, ଏହି ଶେଷ ମୁହୂର୍ତ୍ତରେ ଗୋଟିଏ ସ୍ମୃତି ମୁଁ ତାକୁ ଦେଏ। ମୃତ୍ୟୁର ଦ୍ଵାରରେ ଜଣେ ରାଜା ଗୋଟିଏ ଭିକାରି ହୋଇ ଅଳକା ପାଖରେ ଛିଡ଼ାହୋଇଛି; ଆଉ କ'ଣ ବା ଦେଇପାରିବ?

ମୋ ମୁଣ୍ଡ ତଳକୁ ଲଇଁଗଲା। ମୁଁ ଅଳକାର ଓଠରେ ଓଠ ଲଗାଇଦେବାକୁ ଯିବାମାତ୍ରେ ସେ ଅତି କଷ୍ଟରେ ମୁହଁ ବୁଲାଇନେବାକୁ ଚେଷ୍ଟାକରି କହିଲା– ''ନା... ନା... ନା... ବିଷ... ବି...ଷ।'' ସେ ମୁହଁ ବୁଲାଇ ନେଇପାରିଲାନାହିଁ। ମୁଁ ପାଗଳଙ୍କ ପରି ତା' ଓଠରେ ଗୋଟିଏ ପ୍ରାଣଭରା ଚୁମ୍ବନ ଆଙ୍କିଦେଲି। ବହୁଦିନ ତଳେ ଗଭୀର ନିଶୀଥରେ ଅଳକାର ଓଠରେ ଆଙ୍କିଦେଇଥିଲି ପ୍ରଥମ ଚୁମ୍ବନ... ଆଉ ସେଦିନ... ଅଳକାର ମୃତ୍ୟୁଶଯ୍ୟାରେ ଦେଇଥିଲି... ଶେଷ ଚୁମ୍ବନ। ଜୀବନ କେଡ଼େ ଭୟଙ୍କର ଏକ ନାଟକ! ମୁହଁ ବୁଲାଇନେବାକୁ ଚେଷ୍ଟାକରି ଅଳକାର ମୁଣ୍ଡଟି ଧଡ଼କରି ତଳକୁ ଖସିପଡ଼ିଲା। ମୁଁ ତାକୁ ଜୋର୍‌ରେ ହଲାଇ ଯେତେ ଡାକିଲି ସେ ଆଉ ଥରେହେଲେ ଚାହିଁଲାନାହିଁ। ପିଞ୍ଜରାରୁ ମୁକ୍ତହୋଇ ପକ୍ଷୀଟି ଚିରଦିନ ଲାଗି ଉଡ଼ିଗଲା... ହାୟ...! ତା'ର ନିର୍ଜୀବ ପିଣ୍ଡଟି ମୋରି ଆଗରେ ପଡ଼ିରହିଥିଲା; ମାତ୍ର ଆତ୍ମା ତାର କୁଆଡ଼େ ଚାଲିଗଲା, କେଉଁ ଅନନ୍ତ ଗଗନରେ ମିଳାଇଗଲା!

ଏହି ସମୟରେ ବାହାରୁ ମାଆ ଡାକିଲେ– ''ଯୁବରାଜ!'' ମୁଁ ମହଲକୁ ଫେରିଆସିବାମାତ୍ରେ ଦେଖିଲି; ଅମାତ୍ୟ ମୋତେ ଅପେକ୍ଷାକରି ବସିଛନ୍ତି। ବୋଧହୁଏ, ସେ ଜାଣିଶୁଣି ସେହି ସମୟରେ ଆସିଥିଲେ। ମୋତେ ଦେଖିବାମାତ୍ରେ ସେ ହସି ହସି କହିଲେ– ''ବଡ଼ ଆନନ୍ଦର ଖବର ଆସି ପହଞ୍ଚିଛି।''

ମୁଁ ସ୍ତବ୍ଧ ହୋଇଯାଇ ଭାବିଲି; 'ଦୁନିଆରେ ସତେ କ'ଣ ଆନନ୍ଦ ଅଛି !' ସେ ପୁଣି କହିଲେ – ''ଦେବ-ଦାନବଙ୍କ ଯୁଦ୍ଧ ବନ୍ଦହୋଇଗଲା । କଚ୍‌ଦେବ ସଞ୍ଜୀବନୀବିଦ୍ୟା ଲାଭକରି ଫେରିଆସିଛନ୍ତି । ସଞ୍ଜୀବନୀ ଫଳରେ ଦେବବଳ ପ୍ରବଳ ହୋଇଉଠିବାରୁ, ରାକ୍ଷସମାନେ ନିଜ ପକ୍ଷରୁ ଯୁଦ୍ଧବିରତି ଘୋଷଣାକଲେ । ଯା'ହେଉ, ଭଲହୋଇଛି । ଏ ଯୁଦ୍ଧରେ ଦାନବ ପକ୍ଷର ଜୟ ହୋଇଥିଲେ ସେମାନେ ଆମ ରାଜ୍ୟ ଉପରେ ଆକ୍ରମଣ କରିଦେଇଥାଆନ୍ତେ ।''

କଚ୍‌ଦେବଙ୍କୁ ସଞ୍ଜୀବନୀ ପ୍ରାପ୍ତହେଲା, ଦେବ-ଦାନବଙ୍କ ଯୁଦ୍ଧ ବନ୍ଦହୋଇଗଲା; ଏସବୁ ମୋତେ ନିତାନ୍ତ ତୁଚ୍ଛ ପରି ଜଣାଗଲା । ମୋ ମନ ଅତ୍ୟନ୍ତ ଆକୁଳ ହୋଇ ଖୋଜୁଥିଲା – ''ଅଳକା କାହିଁ ? ମୋ ପ୍ରାଣର ଅଳକା କାହିଁ ? ପ୍ରେମ-ଭିକାରି ଏ ଭାଇଟିର ଏକମାତ୍ର ଭଉଣୀ ଅଳକା କାହିଁ ?

# ଦେବଯାନୀ

ବାହାରେ ବସନ୍ତର ବାସନ୍ତୀ ପବନ ବହିଚାଲିଛି, ଅଥଚ ମୁଁ ଥରିଥରି ଝାଳରେ ଜୁଡୁବୁଡୁ ହୋଇଯାଇଛି। ଚାରିଆଡ଼େ ଛାଇଯାଇଛି ବିସ୍ତୃତ ଶୁଭ୍ର ଚତୁର୍ଦ୍ଦଶୀର ଚାନ୍ଦିନୀ; କିନ୍ତୁ ମନମଧ୍ୟରେ ମୋର ଅଭିଳାଷର କୁସୁମ ଝାଉଁଳିପଡ଼ିଛି। କୋଇଲିର କୁହୁତାନରେ ଉଦ୍ୟାନ ମୁଖରିତ; କିନ୍ତୁ ମୋ ମନର ତନ୍ତ୍ରୀ ବେସୁରା ରାଗିଣୀର ଝଙ୍କାର ତୋଳି ମୋତେ ବିବ୍ରତ କରୁଛି। ସତେ କ'ଣ 'ଏ ମନ ଭାବୁଥାଇ ଯାହା...' ସତ୍ୟରେ ପରିଣତ ହେବ? ନାଃ...

ଓଃ... କି ଭୟଙ୍କର ସ୍ୱପ୍ନ... ଉଠିବା ପରଠାରୁ ବାତ୍ୟାରେ ବିକ୍ଷୁବ୍ଧ ଲତାପରି ମୁଁ ଥରଥର କମ୍ପିଉଠୁଥିଲି। ଶୀତରାତିର କାକରରେ ଲତାଗୁଡ଼ିକ ଜୁଡୁବୁଡୁ ହୋଇଗଲା ପରି, ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ମୁଁ ଝାଳରେ ଗୋଟିପଣେ ଭିଜିଗଲି।

ମୁଁ କ'ଣ କଚ ଉପରେ ରାଗିଥିଲି? କାହିଁକି ବା ରାଗିବି? ନା... ନିଶ୍ଚୟ ରାଗିବି, ତା' ଉପରେ ଖୁବ୍ ରାଗିବି। ମୋର ଆନ୍ତରିକ ପ୍ରେମକୁ ଯେ ପାଦରେ ଠେଲିଦେଇ ଚାଲିଯାଇପାରେ ତା' ଉପରେ ରାଗିବିନି? ମୋ ହୃଦୟର ପ୍ରଣୟ-କୁସୁମକୁ ଦଳିଚକଟିଦେଇ ସେ ଚାଲିଯିବାବେଳେ ମୁଁ ତାକୁ ଅଭିଶାପ ଦେଇଥିଲି– "ତୁମେ ଯେଉଁ ବିଦ୍ୟା ଅଧ୍ୟୟନ କରି ଏଠାରୁ ଯାଉଛ, ସେ ବିଦ୍ୟା ତୁମର କାର୍ଯ୍ୟକାରୀ ନହେଉ।" ନା... ନାଃ... ସବୁ ସ୍ୱପ୍ନ! ଦେବଯାନୀ ତ ଦାନବଗୁରୁଙ୍କ କନ୍ୟା; ନିଜେ ଦାନବୀ ନୁହେଁ। ସେ ଏହା କଦାପି କରିପାରିବନାହିଁ। ପ୍ରାୟ ଘଣ୍ଟାଏ ବିତିଗଲାଣି; ଏବେ ସୁଦ୍ଧା ସେ ସ୍ୱପ୍ନର ଦୃଶ୍ୟ ମନେପଡ଼ିଗଲେ ମୋ ରୋମ ଟାଙ୍କୁରି ଉଠୁଛି।

କଚ ଚାଲିଯିବାପରେ କେତେଦିନଯାଏ ଆଖିରୁ ଲୁହଧାର ଗଡ଼ାଇଲି! ଅନ୍ନ ଜଳ ପିତା ଲାଗିଲା। ଦିନେ ପିତାଙ୍କ ଆଗରେ କହିପକାଇଲି, "ସଞ୍ଜୀବନୀବିଦ୍ୟା ହାତଛଡ଼ା ହେଲେ ହେଲା, ସେଥିପାଇଁ ଚିନ୍ତା କ'ଣ? ଆପଣ ପୁଣି ଥରେ କଠୋର ତପସ୍ୟାରେ ନିମଗ୍ନ ହୁଅନ୍ତୁ। ଆପଣ ପୁଣି ଶିବଙ୍କଠାରୁ ନୂତନବର ଲାଭକରି, ସେ ନିର୍ଦ୍ଦୟ, କପଟୀ ଓ କୃତଘ୍ନ କଚକୁ ଉପଯୁକ୍ତ ଶିକ୍ଷାଦେଇ ମୋ ଆଗରେ ଆଣି ପହଞ୍ଚାଇଦିଅନ୍ତୁ।"

କଚ ସାରା ଜୀବନ ମନେରଖିବାଭଳି ଦଣ୍ଡ ତାକୁ ଦେବାଲାଗି ମୁଁ ଚାହୁଁଥିଲି; ଆଜି ମଧ୍ୟ ଚାହୁଁଛି। ମୋର ପ୍ରେମକୁ ତୁଚ୍ଛ ମନେକରି, ମୋ ହୃଦୟରେ ପାଦ ପ୍ରହାରକରି ସେ ଚାଲିଗଲା! ଯିବାବେଳେ ପୁଣି ମୋତେ ଅଭିଶାପ ଦେଇଯାଇଛି– "କୌଣସି ଋଷିକୁମାର ତୁମର ପାଣିଗ୍ରହଣ କରିବେନାହିଁ।" ନିର୍ଲଜ୍ଜ! ମୁଁ ତାକୁ ଉପଯୁକ୍ତ ଶିକ୍ଷାଦେବାକୁ ଚାହୁଁଛି, ପ୍ରତିଶୋଧ ନେବାକୁ ଚାହୁଁଛି। କିନ୍ତୁ... ହାୟ...

ସ୍ୱପ୍ନ ଅନୁସାରେ ମୁଁ ସତେ କ'ଣ ପ୍ରତିଶୋଧ ନେଇପାରିବି ? ନା... ନା... ନା... ଏବେ ମଧ୍ୟ ସେ ସ୍ୱପ୍ନ ମନେପଡ଼ିଗଲେ ହୃଦୟ କମ୍ପିଉଠେ, ରୋମମୂଳ ଟାଙ୍କୁରିଉଠେ ।

ସେ ଭୀଷଣ ସ୍ୱପ୍ନ ଏବେ ସୁଦ୍ଧା ଅବିକଳ ମୋ ଆଖି ଆଗରେ ନାଚିଉଠୁଛି; ଲୌହ ଶିକୁଳିରେ ଆବଦ୍ଧ ହୋଇ ରାଜା ବୃଷପର୍ବାଙ୍କ ସଭାରେ କଚ ଛିଡ଼ାହୋଇଛି । ଆଖିରୁ ତା'ର ଅଗ୍ନିକଣିକା ବାହାରିଆସୁଛି ଏବଂ ସେ କ୍ରୋଧୋନ୍ମତ୍ତ ଚକ୍ଷୁରେ ଚାରିଆଡ଼େ ଚାହୁଁଛି । ଏହି ସମୟରେ ମହାରାଜ ବୃଷପର୍ବା ମୋ ଆଡ଼କୁ ଚାହିଁ କହିଲେ – 'ଗୁରୁକନ୍ୟେ, ଆମ ଜାତିର ଉଦ୍ଧାର ଲାଗି କଠୋର ତପସ୍ୟା କରିଥିବା ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ତୁମେ ଅଲିଅଳ ଦୁଲାଳୀ । ନିଜେ ଗୁରୁଦେବଙ୍କ ଭାଷାରେ ତୁମେ ତାଙ୍କର ଷଷ୍ଠ ପ୍ରାଣ । ତୁମକୁ ସନ୍ତୁଷ୍ଟ ରଖିବାଲାଗି ମୁଁ ସମସ୍ତ ଶକ୍ତି ବିନିଯୋଗ କରିବାକୁ ପ୍ରସ୍ତୁତ ଅଛି । ଆମେ ଜାଣିଛୁ, କଚ ତୁମ ମନରେ ଅନେକ କଷ୍ଟ ଦେଇଛି; ତେଣୁ ବହୁ ପରିଶ୍ରମ କରି ଆମେ ତାକୁ ଦେବପୁରରୁ କୌଶଳରେ ବନ୍ଦୀ କରି ଆଣିପାରିଛୁ । ସେ ଆଜି ତୁମରି ସମ୍ମୁଖରେ ଦଣ୍ଡାୟମାନ; କୁହ, ତୁମେ ତାକୁ କି ଦଣ୍ଡ ଦେବାକୁ ଚାହୁଁଛ ? ତୁମରି ଆଜ୍ଞା ଆମ ପକ୍ଷରେ ଶିରୋଧାର୍ଯ୍ୟ ।'

ପ୍ରକୃତ-ପ୍ରେମିକା କ'ଣ ତା'ର ଶଠ ପ୍ରିୟତମକୁ ଦଣ୍ଡ ଦେଇପାରେ ? ଚିରଦିନଲାଗି ନିଜର ବାହୁପାଶରେ ରଖିବାର ମୋହ ତା' ହୃଦୟରେ ଜାଗିଉଠି ତା'ର ସମସ୍ତ କ୍ରୋଧ ଓ ଅଭିମାନକୁ ଧୂଳିସାତ୍ କରିଦିଏ ନାହିଁ କି ? ଯା'ହେଉ, କଚକୁ ମୁଁ କୌଣସି ଦଣ୍ଡ ଦେଲିନାହିଁ । ମୋର ଦଣ୍ଡ... ଅବଶ୍ୟ ମୋ ଭାଷାରେ ଦଣ୍ଡ... ଥିଲା ଅତି ସାଧାରଣ । ମୁଁ ସେ ନିର୍ଲଜ୍ଜକୁ ମିନତି କରିଥିଲି, ଥରେ ମାତ୍ର ମୋତେ ଚୁମ୍ବନ ଦେବାଲାଗି; କେବଳ ଥରେମାତ୍ର । ଏହା ମଧ୍ୟ ଶୁଣାଇଦେଇଥିଲି, ମୋତେ ଗୋଟିଏ ମାତ୍ର ଚୁମ୍ବନ ଦେବା ପରେ ତୁମକୁ ମୁକ୍ତ କରିଦିଆଯିବ ।

କିନ୍ତୁ... ମୃତ୍ୟୁର ଦ୍ୱାରଦେଶରେ ଛିଡ଼ାହୋଇ ମଧ୍ୟ ସେ ନିଜର ଉନ୍ମତ୍ତତାରୁ ତିଳେହେଲେ ଟଳିଲାନାହିଁ । ସେ ମୋତେ ତା'ର ଚିର ହସହସ ମୁହଁରେ କହିଲା – 'ଦେବଯାନୀ ! ତୁମେ ମୋର ଭଗିନୀ, ମୁଁ ତୁମର ଭ୍ରାତା । ରାକ୍ଷସମାନଙ୍କ ଅପଚେଷ୍ଟା ଫଳରେ ମୁଁ ଗୁରୁଦେବଙ୍କ ଗର୍ଭଗତ ହୋଇଥିଲି । ଯେଉଁ ଗର୍ଭରୁ ତୁମର ଜନ୍ମ, ସେହି ଗର୍ଭରେ ମୁଁ ପ୍ରବେଶ କରି ସଂସାରର ସର୍ବୋତ୍ତମ ତଥା ଅଜ୍ଞାତ ବିଦ୍ୟା ସଞ୍ଜୀବନୀ ମନ୍ତ୍ର ଆତ୍ମସାତ୍ କରିଛି, ସେହି ଦୃଷ୍ଟିରୁ ତୁମେ ମୋର ଭଉଣୀ, ମୁଁ ତୁମର ଭାଇ ।'

ମୁଁ କଚର ଯୁକ୍ତିରେ ବିରକ୍ତ ହୋଇଉଠି କହିଲି – 'ତୁମେ ଦେବଯାନୀକୁ କ'ଣ ଗୋଟିଏ ପାଗଳୀ ବା ଅବୋଧ ବାଳିକା ବୋଲି ମନେକରିଛ ନା କ'ଣ ? ପିଲାମାନେ ମାଆ ଗର୍ଭରୁ ଜାତହୁଅନ୍ତି – ବାପାଙ୍କ ଗର୍ଭରୁ ନୁହେଁ । ତୁମପରି ବୁଦ୍ଧିମାନ୍ ଲୋକଙ୍କୁ ଏହା ବୁଝାଇବାକୁ ପଡ଼ିବନାହିଁ । ତୁମେ ମୋର ଭାଇ ନୁହଁ, କିମ୍ୱା ମୁଁ ତୁମର ଭଉଣୀ ନୁହେଁ । ମୁଁ ତୁମର ପ୍ରଣୟିନୀ, ପ୍ରେୟସୀ । ମୁଁ ତୁମକୁ ଆଉ କିଛି ମାଗୁନାହିଁ; କେବଳ ମୋର ଗୋଟିଏ ମାଗୁଣି, ତୁମେ ଥରଟିଏ ମାତ୍ର ମୋ ଗଣ୍ଡରେ ଚୁମ୍ବନଟିଏ ଆଙ୍କିଦିଅ । ପରମୁହୂର୍ତ୍ତରେ ତୁମକୁ ମୁକ୍ତ କରିଦେବାଲାଗି ମୁଁ ଆଦେଶ ଦେଉଛି ।'

କିନ୍ତୁ ସେ କେଡ଼େ ଜିଦ୍‌ଖୋର୍, କେଡ଼େ ଉନ୍ମତ୍ତ, କେଡ଼େ ଦୁରାଗ୍ରହୀ; ମୋ ଆଗ୍ରହ ପ୍ରତି ଟିକିଏହେଲେ କର୍ଣ୍ଣପାତ କଲାନାହିଁ। ପୁଣି ମହାରାଜ ବୃଷପର୍ବା ପଚାରିଲେ– 'କୁହ ଗୁରୁକନ୍ୟେ, ଦୋଷୀ ପ୍ରତି କି ଦଣ୍ଡବିଧାନ ହେବ, ଶୀଘ୍ର କୁହ ?'

ଏହି କଚ ମଦ୍ୟ ସହିତ ପିତାଙ୍କର ପେଟ ଭିତରକୁ ଚାଲିଯାଇ ଚିରଦିନଲାଗି ସତ୍ତା ହରାଇଥିଲା; କିନ୍ତୁ ମୁଁ ବହୁ ଅନୁନୟ କରି ଏହାକୁ ପ୍ରାଣଦାନ ଦେଇଥିଲି। ଆଜି ସେହି କଚକୁ ମୁଁ ଦଣ୍ଡ ଦେଇପାରିବି? ମାଆ କେବେହେଲେ କ'ଣ ତା'ର ସନ୍ତାନକୁ ଦଣ୍ଡ ଦେଇପାରେ? ମୁଁ ସେହିପରି ତା'ର ପ୍ରେୟସୀ; ଦଣ୍ଡ କ'ଣ...? ନା... କଚକୁ କଠୋରତମ ଦଣ୍ଡଦେବା ଉଚିତ ହୋଇଥାନ୍ତା। ମୋର ଅନୁନୟକୁ ପ୍ରତ୍ୟାଖ୍ୟାନ କରିବା ସମୟରେ ସେ ତିଳେହେଲେ ଦ୍ୱିଧାବୋଧ କରିନାହିଁ। ମୁଁ ଅନ୍ତରର ସ୍ନିଗ୍ଧ ସ୍ନେହରୂପକ ଘୃତରେ ଦୀପ ସଜାଡ଼ି ତା'ର ବନ୍ଦନାଲାଗି ଆଳତି କରିବା ସମୟରେ, ସେ... ସେ ନିଜ ହାତରେ ମୋ ମନର ଥାଳିଟିକୁ ଫିଙ୍ଗିଦେବାଲାଗି ତିଳେହେଲେ କୁଣ୍ଠା ବୋଧକଲାନାହିଁ। ବେଶ୍... ମୁଁ ମଧ ପ୍ରତିଶୋଧ ନେବି।

ମୁଁ ମହାରାଜ ବୃଷପର୍ବାଙ୍କୁ କହିଲି– 'କଚର ଶିରଚ୍ଛେଦନ କରି ଗୋଟିଏ ଥାଳିରେ ଥୋଇ ମୋରି ଆଗରେ ରଖ। ଆଜି ମୁଁ ମୋର ନୃତ୍ୟ-କଳାରେ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରାଇଦେବି।'

ପ୍ରତିହାରୀ କଚର କଟାମୁଣ୍ଡ ଗୋଟିଏ ଥାଳିରେ ଆଣି ମୋ ଆଗରେ ଥୋଇଦେଲା। ସେଇ ଥାଳିଟିକୁ ରାଜସଭାର ମଧ୍ୟଭାଗରେ ଥୋଇ ମୁଁ ନୃତ୍ୟ କରିବାକୁ ଲାଗିଲି। ପ୍ରେମ... ସ୍ନେହ... ମମତା... କେତେବେଳେ ସୁକୋମଳ ବଲ୍ଲରୀ ସୁଗନ୍ଧିତ କୁସୁମର ଆମୋଦରେ ଦୋଳାୟମାନ ହେଉଥାଏ, ଆଉ କେତେବେଳେ ହୁଏତ ପ୍ରଜ୍ୱଳିତ ଅଗ୍ନିର ଲେଲିହାନ ଶିଖାପରି ଦାହିକାଶକ୍ତିରେ ପରିଣତ ହୁଏ। ବେଳେବେଳେ ସେ ଜ୍ୟୋତ୍ସ୍ନାର ଶୀତଳରଶ୍ମି ପରି ଜଗତରେ ବ୍ୟାପିଯାଏ; ଅନ୍ୟ କେତେବେଳେ ହୁଏତ ଘନଘୋର ମେଘର ସଂଘର୍ଷଣରେ ଜାତ ବିଦ୍ୟୁତ୍ ପରି ଆଖି ଝଲସାଇଦିଏ। କେବେ ହରିଣୀ ପରି ନାଚିକୁଦି ମନ ମୁଗ୍ଧ କରାଏ ଏବଂ କେବେ ନାଗୁଣୀ ପରି ତୀବ୍ର ବିଷଜ୍ୱାଳା ଉଦ୍‌ଗୀର୍ଣ୍ଣ କରେ। ପ୍ରେମ ଜୀବନକୁ ସରସ ତଥା ସୁଖଦ କରିବା ସଙ୍ଗେସଙ୍ଗେ ପ୍ରାଣଘାତକ ମଧ ହୋଇପାରେ। ଏହି ସମସ୍ତ ପ୍ରକ୍ରିୟାକୁ ମୁଁ ନୃତ୍ୟମାଧ୍ୟମରେ ଫୁଟାଇ ଦର୍ଶକମାନଙ୍କ ମନରେ ଚମକ ସୃଷ୍ଟି କରିଦେଲି।

ଜାଣେନି, ମୁଁ କେତେ ସମୟ ଧରି ନାଚିଛି; ସତେ ଅବା ନୃତ୍ୟର ମାଦକତାରେ ବିଭୋର ହୋଇଉଠିଛି। କଚର ଛିନ୍ନ ମସ୍ତକ ବ୍ୟତୀତ ମୋତେ ଆଉ କିଛି ଦେଖାଯାଉନାହିଁ। ତା'ର ମସ୍ତକରୁ ଟପ୍ ଟପ୍ ହୋଇ ଲହୂଧାର ନିଗିଡ଼ି ପଡୁଥିଲା; କିନ୍ତୁ ମୁଁ ଭାବୁଥିଲି– ମୋ ପ୍ରିୟତମଙ୍କ ମସ୍ତକରେ ମଙ୍ଗଳ କୁଙ୍କୁମ ଓ ସିନ୍ଦୂରରାଗ ଉଦ୍‌ଭାସିତ ହେଉଛି ଏବଂ ମୁଁ ଅଭିସାରିକା ସାଜି ତା' ସହିତ ମିଳନ ଲାଗି ଆଗେଇଚାଲିଛି। କଚର ଶିର ଛିନ୍ନ ହୋଇଥିଲେ ମଧ ମୋର ସେ ଧାରଣା ରହିଲାନାହିଁ; ମୁଁ ନାଚିନାଚି, ନୃତ୍ୟରସରେ ରସାଣିତ ହୋଇ, କଚର କଟା ମୁଣ୍ଡ ପାଖରେ ଲଥକରି ବସିପଡ଼ିଲି ଏବଂ ପ୍ରଣୟିନୀର ହୃଦୟ, ଅଭିସାରିକାର ବ୍ୟଗ୍ରତା, ପ୍ରେୟସୀର ମମତା ନେଇ

ମୁଁ ସେହି ନିଷ୍ପ୍ରାଣ ମସ୍ତକରେ ଆଙ୍କିଦେଲି ଗୋଟିଏ ଚୁମ୍ବନ। ମୋର ଅଭିଳାଷ ପୂର୍ଣ୍ଣ କରିସାରି, ମୁଁ ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିରେ କଚ୍‌ର ମସ୍ତକକୁ ଚାହିଁ କହିଲି, 'ତୁମେ ସିନା ମୋର ଅନୁନୟ ରକ୍ଷା କରି ଗୋଟିଏ ଚୁମ୍ବନ ଦେଇନାହିଁ; କିନ୍ତୁ ମୁଁ ମୋର ଅଭିଳାଷ ପୂର୍ଣ୍ଣ କରାଇନେଲି, ଦେଖିଲ ତ ?'

ହଠାତ୍ ମୋର ନିଦ ଭାଙ୍ଗିଗଲା। ସ୍ୱପ୍ନରେ ହେଉ ପଛକେ, ମୁଁ କଚ୍‌ର ଛିନ୍ନମସ୍ତକରେ ଚୁମ୍ବନଟିଏ ଆଙ୍କିଦେଇଛି। ନା . . . ନା . . . ନା . . . ସ୍ୱପ୍ନର ଶେଷାଂଶ ଆଦୌ ସତ୍ୟ ନୁହେଁ। ପିଲାଦିନେ କୌଣସି ଅସୁରଠାରୁ ମୁଁ ଠିକ୍ ଏହିପରି ଗୋଟିଏ କାହାଣୀ ଶୁଣିଥିଲି। ବୋଧହୁଏ ଏହା ତା'ର ପ୍ରତିକ୍ରିୟା।

× × × × ×

ମୁଁ ଅଦ୍ୟାପି କଚ୍‌କୁ ପ୍ରାଣର ସହିତ ପ୍ରେମ କରୁଛି। ତେଣୁ ମୁଁ କିପରି ତା'ପ୍ରତି ଏତେ କ୍ରୁର ହୋଇପାରିଥା'ନ୍ତି ? ସ୍ୱପ୍ନ . . . ସ୍ୱପ୍ନ କଅଣ ? ମାନବ ମନର ପ୍ରତିକ୍ରିୟା ନୁହେଁ କି ? ଆଚ୍ଛା ବୁଝିଲି। ସ୍ୱପ୍ନ ହେଉଛି ମନକୁସୁମରେ ଗୁନ୍ଥା ଗୋଟିଏ ଆଶ୍ଚର୍ଯ୍ୟକର ରେଶମୀ ମାଳା। ମୋ ମନରେ ଏ ସ୍ୱପ୍ନ କିପରି . . .

କଚ୍ ବରାବର ମୋତେ କହୁଥିଲା – ବିଦ୍ୟାର୍ଥୀ ସର୍ବଦା ବ୍ରତଚାରୀ ହେବା ଉଚିତ। ବଣକୁ ଯାଇ ସେ ସେଠାରୁ ମୋ'ର ଆଗ୍ରହ ଅନୁଯାୟୀ ଫୁଲ ତୋଳିଆଣୁଥିଲା; କିନ୍ତୁ ଥରେହେଲେ ସେ ଗୋଟିଏ ଫୁଲ ମୋ ଗଭାରେ ଖୋଷିଦେଇନାହିଁ। ମୋର ଅଙ୍ଗ ସ୍ପର୍ଶ ତା' ପକ୍ଷରେ ଅତ୍ୟନ୍ତ ଆନନ୍ଦର ବିଷୟ ଥିଲା। ଭୁଲରେ କେବେ ଯଦି ସେ ମୋତେ ସ୍ପର୍ଶ କରିଦିଏ, ତେବେ ତା'ର ମୁଖମୁଦ୍ରା ଅତ୍ୟନ୍ତ ପ୍ରସନ୍ନ ଦେଖାଯାଉଥିଲା। କିନ୍ତୁ ମୋ'ଠାରୁ ସବୁବେଳେ ସେ ଦୂରେଇ ରହିବାଲାଗି ଖୁବ୍ ଚେଷ୍ଟା କରୁଥିଲା। ଏହା ଫଳରେ ମୁଁ ବେଳେବେଳେ ତା' ଉପରେ ରାଗିଯାଉଥିଲି। ଆଉ କେବେ ମଧ୍ୟ ଆଗାମୀ ମିଳନର ଆନନ୍ଦରେ ମୁଁ ଅନୁରାଗିଣୀ ହୋଇଉଠୁଥିଲି। ଏହି କ୍ରୋଧ ଓ ଅନୁରାଗର ସମ୍ମିଶ୍ରିତ ସ୍ୱପ୍ନ ମୋ ମନରେ ଏକ ରେଶମୀ ମାଳା ଗୁନ୍ଥିବାରେ ଲାଗିଥିଲା। ସତରେ କ'ଣ ମୋର ପାଗଳ ମନ ଏବେ ମଧ୍ୟ ତାକୁ ଭଲପାଉଛି ? କିନ୍ତୁ ମୋ ବିବେକ ତାକୁ ଘୃଣା କରୁଛି ! ଏହି ପ୍ରେମ ଓ ଘୃଣାର ସମ୍ମିଶ୍ରଣ ଠିକ୍ ନିଆଁ ଓ ପାଣିର ମିଶ୍ରଣ ପରି ମୋ ମନରେ ପ୍ରତିକ୍ରିୟା ସୃଷ୍ଟି କରୁଛି।

ମୁଁ ଜାଣିପାରୁନି କେବେ ମୋ ମନରୁ ଏହି ଦ୍ୱନ୍ଦ୍ୱ ମିଳାଇଯିବ ? କିନ୍ତୁ ସତରେ କ'ଣ ମୁଁ ଏହି ଦ୍ୱନ୍ଦ୍ୱରୁ ରକ୍ଷାପାଇପାରିବି ? ବାସ୍ତବରେ ନାରୀର ମନ କେଡ଼େ ପାଗଳ ! କେଡ଼େ କୋମଳ !! କେଡ଼େ ଅନ୍ଧ !!! ଏଠାରୁ ଚାଲିଯିବାପରେ ଦିନେହେଲେ କଚ୍ ମୋ ସମ୍ବନ୍ଧରେ କାହାରିକୁ ପଚାରିନାହିଁ। କିନ୍ତୁ ମୁଁ ଦୃଢ଼ତାର ସହିତ କହିବି; ସେ କେବଳ ମୋ'ରି ପ୍ରେମବଳରେ, ମୋ ପିତାଙ୍କଠାରୁ ସଂଜୀବନୀବିଦ୍ୟା ଲାଭକରିବାରେ ସକ୍ଷମ ହୋଇଥିଲା। ବିଦ୍ୟାଲାଭ ପରେ ସେ ସ୍ୱର୍ଗପୁରକୁ ଫେରିଗଲା। ସେଠାରେ ସମସ୍ତେ ତା'ର ଜୟଗାନ କଲେ ଏବଂ ସେ ଜଣେ ଆଦର୍ଶ ସାଧକ, ମହାନ୍ ତପସ୍ୱୀ ତଥା ଅଦ୍ଭୁତ ପରାକ୍ରମଶାଳୀ ବୀର ରୂପେ ଚିତ୍ରିତ ହେଲା। ତା'ରି ପାଇଁ

ଦେବତାମାନେ ଆଶୁ ସଙ୍କଟରୁ ତ୍ରାହିପାଇପାରିଲେ ।

ଏବେ ଇନ୍ଦ୍ର ତା'ର ସେବାଲାଗି ସ୍ୱର୍ଗର ସର୍ବଶ୍ରେଷ୍ଠ ସୁନ୍ଦରୀ ଅପ୍ସରାଙ୍କୁ ନିଯୁକ୍ତ କରିବାପାଇଁ ଆଗ୍ରହ ପ୍ରକାଶ କରିବେ। ସେ କାହିଁକି ଏ ଦେବଯାନୀକୁ ସ୍ମରଣ କରିବ? ପୁରୁଷମାନେ ସମସ୍ତେ ଠିକ୍ ଏହିପରି ଶଠ, ସେମାନଙ୍କ ହୃଦୟ ପାଷାଣ ପରି କଠୋର। ସମସ୍ତେ ଛଳନାପୂର୍ଣ୍ଣ ଭାଷାରେ ନାରୀର ସର୍ବସ୍ୱ ଅପହରଣ କରନ୍ତି। ନିଜର ଉଦ୍ଦେଶ୍ୟ ସାଧନ ପରେ, ସେମାନେ ଫୁର୍‌କରି ଉଡ଼ିଯାଆନ୍ତି; କିନ୍ତୁ ନାରୀମାନେ ସେମାନଙ୍କ ପ୍ରେମକୁ ଗଣ୍ଠିଧନ କରି ସେଇମାନଙ୍କ ପ୍ରୀତିପାଶରେ ପଡ଼ି ଆଖିରୁ ଲୁହଧାର ଗଡ଼ାଉଥାନ୍ତି।

ବୃନ୍ତରୁ ଫୁଲ ପାଖୁଡ଼ା ଖସିପଡ଼େ; କେବଳ ରହିଯାଏ କଣ୍ଟକ। ପ୍ରେମର ପରିଣତି କ'ଣ ଏଇଆ? ସେହି ଫୁଲର ସୁଗନ୍ଧକୁ ଝୁରି ଝୁରି ନାରୀ କଣ୍ଟା ହୋଇ ଦିନ ବିତାଏ। କିନ୍ତୁ ସେହି କଣ୍ଟା ବାଜି ରକ୍ତ ଝରଝର ହୋଇ ବହିବାର . . .।

ନା . . . ନାଃ. . . ମୁଁ ସାଧାରଣ ନାରୀଙ୍କ ପରି ଝୁରିଝୁରି କାନ୍ଦି ଦିନ ବିତାଇବି ନାହିଁ। ମୁଁ ଅନ୍ୟ ନାରୀଙ୍କଠାରୁ ଭିନ୍ନ, ଅସାଧାରଣ, ଅସାମାନ୍ୟ। ଈଶ୍ୱର ମୋତେ ସୌନ୍ଦର୍ଯ୍ୟ ଦେଇଛନ୍ତି; ପିତା ମୋତେ ଜ୍ଞାନ ଓ ବୁଦ୍ଧି ଦାନ କରିଛନ୍ତି। ପିତାଙ୍କର ପ୍ରଥମ ତପସ୍ୟାର ଫଳ ବ୍ୟର୍ଥହୋଇଗଲା। ସେ ପୁଣି ନୂତନ ତପସ୍ୟା କରିବାଲାଗି ଆୟୋଜନ କରୁଛନ୍ତି। ମୁଁ ସେହି ପିତାଙ୍କର ଏକମାତ୍ର ଅଳିଅଳ କନ୍ୟା; ବିଶ୍ୱକୁ ତୃଣ ପରି ମନେକରୁଥିବା ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପୁତ୍ରୀ। ମୁଁ ମୋର ମନରୁ କଚ୍‌ର ସ୍ମୃତି ପାସୋରିପକାଇବି। ତା' ପ୍ରତି ମୋ ମନରେ ଥିବା ସମସ୍ତ ଆକାଂକ୍ଷା ଓ ପ୍ରେମକୁ ମୁଁ ନିଶ୍ଚୟ ଭୁଲିଯିବି। ସେ ମୋତେ ଅଭିଶାପ ଦେଇ ଚାଲିଯାଇଛି। ପ୍ରକୃତ ପ୍ରେମୀ କେବେହେଲେ କ'ଣ ଅଭିଶାପ ଦେଇପାରେ? ବାଃ . . . ବେଶ୍ ବାହାଦୂରିର ସହିତ କହିଗଲା – 'କୌଣସି ଋଷିକୁମାର ତୁମର ପାଣିଗ୍ରହଣ କରିବେନାହିଁ।' ନ ହେଲା ନାଇଁ . . . କା'ର ଦୁଃଖ ଯାଉଛି – ଗୋଟିଏ ଋଷିକୁମାରର ବେକରେ ବନ୍ଧାହୋଇ ପତ୍ରକୁଡ଼ିଆରେ କାଳ ବିତାଇବ? କଚ୍ ପାଗଳ! ଏତେଦିନ ଧରି ମୋର ସାନ୍ନିଧ୍ୟ ଲାଭକରି ମଧ୍ୟ ମୋତେ ଚିହ୍ନିପାରିଲାନାହିଁ। କେବଳ କ'ଣ ପୁଷ୍ପଭୂଷଣରେ ଅଳଙ୍କୃତା ହୋଇ ବଞ୍ଚିରହିବାଲାଗି ଆଦିଶକ୍ତି ମୋତେ ଜନ୍ମ ଦେଇ, ମୋ ଦେହରେ ଏତେ ସୌନ୍ଦର୍ଯ୍ୟ ମଣ୍ଡିଦେଇଛନ୍ତି? ଶର୍ମିଷ୍ଠା ପରି ରାଜଜେମା ମଧ୍ୟ ଦିନରାତି ମୋ ସୌନ୍ଦର୍ଯ୍ୟ ଦେଖି ଜଳିପୋଡ଼ିହୋଇ ମରୁଛି। କାଲିଠାରୁ ବସନ୍ତୋତ୍ସବ ଆରମ୍ଭ ହେବାକୁ ଯାଉଛି; ଆଜି ରାତିରେ ତାକୁ ନିଦ ନଥିବ। ଏ ଉତ୍ସବରେ ସେ କେଉଁସବୁ ବସ୍ତ୍ର ପିନ୍ଧିବ, କେଉଁ ଆଭୂଷଣରେ ବିଭୂଷିତା ହେବ, ନହେଲେ ମୋ'ଠାରୁ ରୂପରେ ଅଧିକ ଆକର୍ଷିତା ହେବ କିପରି – ଏହି ଚିନ୍ତାରେ ମଝିରେ ମଝିରେ ତାର ନିଦ ଭାଙ୍ଗିଯାଉଥିବ। ବେଶ୍, ତାକୁ ନିଦ ହେଉ ବା ନହେଉ, ସେ ଯେତେ ଇଚ୍ଛା ସେତେ ଜଳିପୋଡ଼ି ମରୁ, ମୋର କ'ଣ ଯାଏ ଆସେ? କାଲି ଉତ୍ସବର ପ୍ରଥମ ଦିନ; ତେଣୁ ରାଜଜେମା ଓ ସଖୀମାନେ ସକାଳୁ ସକାଳୁ ବନବିହାର ଲାଗି ବାହାରିପଡ଼ିବେ। ଜଳକ୍ରୀଡ଼ା ମଧ୍ୟ ଚାଲିବ। ବାପାଙ୍କ ମନରକ୍ଷା କରିବାଲାଗି ମୁଁ ମଧ୍ୟ ସେମାନଙ୍କ ସହିତ ଯିବି। କଚ୍ ମୋ ଲାଗି ସ୍ୱର୍ଗପୁରରୁ ଯେଉଁ ସୁନ୍ଦର ବସ୍ତ୍ରଟି ଆଣିଥିଲା ତାକୁଇ ପିନ୍ଧିବି। ଏଇ

ପର୍ବଲାଗି ମୁଁ ସେ ବସ୍ତ୍ରଟିକୁ ସାଇତି ରଖିଛି। ଶର୍ମିଷ୍ଠା ସେ ବସ୍ତ୍ର ବିଷୟରେ ଆଦୌ କଳ୍ପନା ମଧ୍ୟ କରିନଥିବ। ସେଇ ଉତ୍ସବରେ ଏ ବସ୍ତ୍ର ପିନ୍ଧିଥିବା ଦେବଯାନୀକୁ ଦେଖିଲେ . . .!

କିନ୍ତୁ . . . ସେ ବସ୍ତ୍ରଟା କଚ୍ ଆଣିଥିଲା। ସେ ପିତାଙ୍କ ନିକଟରୁ ବିଦ୍ୟାଶିକ୍ଷା ଲାଗି ଯେଉଁଦିନ ଆସିଥିଲା, ସେଇଦିନ ଉପହାର ସ୍ୱରୂପ ସେଇଟି ଦେଇଥିଲା। ସେତେବେଳେ ନିଜର ସ୍ୱାର୍ଥସାଧନ ଲାଗି ହେଉ ପଛକେ; ମୋତେ ସେ ଖୁବ୍ ଭଲପାଉଥିଲା। କିନ୍ତୁ ମୁଁ ତା'ର ରୂପଗୁଣରେ ବିମୁଗ୍ଧ ହୋଇଯାଇଥିଲି। ସେ ସମୟରେ ମୁଁ ବସ୍ତ୍ରଟି ପିନ୍ଧିଥିଲେ ପ୍ରକୃତରେ ଖୁବ୍ ଭଲହୋଇଥାନ୍ତା। କିନ୍ତୁ ଏବେ . . . ଆମର ପରସ୍ପରର ପ୍ରେମବନ୍ଧନ ଛିନ୍ନ ହୋଇଯାଇଛି, ପ୍ରଣୟୀ ପ୍ରଣୟିନୀ ପରସ୍ପରକୁ ଅଭିଶାପ ଦେଇସାରିଛନ୍ତି, ତା'ପରେ . . . ଆଉ ତାର ପ୍ରେମୋପହାରକୁ ଆଦର କରିବା ଠିକ୍ ହେବ କି? ଆଜି ମୁଁ ସେଇ ଲୁଗାଟି ପିନ୍ଧିଲେ ମୋ ମନରେ ଜଳିପୋଡ଼ି ପାଉଁଶ ହୋଇଯାଇଥିବା ମୋର ପ୍ରେମାନୁରାଗ ପୁଣି ପଲ୍ଲବି ଉଠିବ। ପୁଣି ସେଇ ସ୍ମୃତି ମୋ ମନଗହନରେ ଉଙ୍କିମାରି ମୋତେ ଦହଗଞ୍ଜ କରିବ। ମୋର ପ୍ରିୟ ପୁଷ୍ପ ତୋଳିଆଣିବାଲାଗି କଚ୍ ଗଛର ଖୁବ୍ ଉପରକୁ ଉଠିଯାଏ, ଏପରି କି ନିହାତି ସରୁ ଡାଳରେ ଚଢ଼ି ଫୁଲ ତୋଳିଆଣେ . . . ମୋର ବର୍ଷାନୃତ୍ୟ ଦେଖି ସେ ମନ୍ତ୍ରମୁଗ୍ଧ ନାଗସାପ ପରି ମୋହିତ ହୋଇଯାଏ। କାଳେ ସକାଳୁ ସକାଳୁ ମୋ ନିଦ ଭାଙ୍ଗିଯିବ, ସେଥିଲାଗି ସେ ଉଦ୍ୟାନର ଗୋଟିଏ କୋଣକୁ ଚାଲିଯାଇ ସେଠାରେ ଖୁବ୍ ଧୀରେ ଧୀରେ ପ୍ରାତଃକାଳୀନ ମନ୍ତ୍ର ପାଠକରେ। ବେଳେବେଳେ ମୋତେ ମୁଗ୍ଧ କରି କହିଥାଏ– 'ତମେ ତ ସ୍ୱର୍ଗର ଅପ୍‌ସରାମାନଙ୍କଠାରୁ ବହୁଗୁଣରେ ଅଧିକ ସୁନ୍ଦରୀ।' ଏହାର ଉତ୍ତରରେ ମୁଁ କହେ– 'ଯାଃ . . . ତୁମେ ଚାଟୁ ଆରମ୍ଭ କରୁଛ ନା . . .?' ସେ ହସି ହସି କହେ– 'ତୁମେ ମାନ ବା ନମାନ, ସୌନ୍ଦର୍ଯ୍ୟର ଉପାସନା ଜଗତରେ ସମସ୍ତେ କରନ୍ତି।' ତା'ରି ଲୁଗାଟି ପିନ୍ଧିବାମାତ୍ରେ ଏ ସମସ୍ତ ସ୍ମୃତି ମୋ ମନରେ ଜାଗିଉଠିବ।

ନାଃ . . . ଏବେ ଆଉ ସେସବୁ ମନେ ପକାଇ ଲାଭ ନାହିଁ। ପ୍ରତ୍ୟେକଟି ସ୍ମୃତି ଡହଡହ ନିଆଁ ପରି ଦାରୁଣ ଭାବରେ ମୋ ମନକୁ ଜାଳିପୋଡ଼ି ପକାଉଛି। ତେଣୁ କଚ୍‌ର ସ୍ମୃତିକୁ ସମ୍ପୂର୍ଣ୍ଣଭାବେ ମନରୁ ପୋଛି ଦେବାଲାଗି ମୁଁ ନିଶ୍ଚୟ କରିଛି। ତେଣୁ ତା'ର ଉପହାର ଏଇ ଲୁଗାଟି କିପରି ପିନ୍ଧିପାରିବି? ଏହା ଖୁବ୍ ସୁନ୍ଦର ବସ୍ତ୍ରଟିଏ; ଇନ୍ଦ୍ରାଣୀଙ୍କୁ ମଧ୍ୟ ଏପରି ବସ୍ତ୍ର ମିଳୁନଥିବ। ତା' ହେଲେ ବି ମୁଁ କାହିଁକି ଏ ଲୁଗାଟା ପିନ୍ଧିବି? ଉଚିତ ହେଉଛି, ଏଇ ଲୁଗାଟାକୁ ଚିକି ଚିକି କରି ଚିରି ଫିଙ୍ଗିଦେବି, ଏହାକୁ ଛିଣ୍ଡାକନାରେ ପରିଣତ କରି ଘରଅଗଣା ଲିପାପୋଛା କରିବି। ସେ ନିର୍ଦ୍ଦୟ, ଶଠ ଓ ହୃଦୟହୀନ ଲାଗି ଏହାହିଁ ହେବ ଉପଯୁକ୍ତ ଶାସ୍ତି!

ମୁଁ ଧୀରେ ଧୀରେ ଉଠି ଜଳକ୍ରୀଡ଼ା ଲାଗି ସାଇତାହୋଇ ରଖାଯାଇଥିବା ଲୁଗାଟିକୁ ଧରି ବାହାରକୁ ଆସିଲି। ବସ୍ତ୍ରଟିର ଲାଲ୍ ଟହଟହ ରଙ୍ଗ ମୋ ମନକୁ ଭିଡ଼ିଧରିଲା; ତଥାପି ମୁଁ ତାକୁ ଫାଡ଼ିଦେବାଲାଗି ଦୁଇ ହାତରେ ଉଠାଇ ଧରିଲି। କିନ୍ତୁ . . . ସେ ଲୁଗାଟିକୁ . . . ମୋର ଆଦରର ଲୁଗାଟିକୁ ମୁଁ ଚିରିପାରିଲି ନାହିଁ। କଚ୍ ହୋଇଥିଲେ ଅତି ସହଜରେ ଲୁଗାଟିକୁ ଚିକିଟିକି କରି ଉଡ଼ାଇ ଦେଇଥାନ୍ତା। କିନ୍ତୁ ମୁଁ ନାରୀ;

ସୌନ୍ଦର୍ଯ୍ୟର ଉପାସନା ନାରୀର ଧର୍ମ। କୋମଳହୃଦୟା ନାରୀ କେବେହେଲେ କୌଣସି ମନୋରମ ଜିନିଷକୁ ଧ୍ୱଂସ କରିନପାରେ। ମୋତେ ଜଣାଗଲା – ଚନ୍ଦ୍ରମା ଏଇ ଲୁଗାଟିକୁ ଦେଖି ଲୋଭରେ ଏକଲୟରେ ତା'ରି ଆଡ଼କୁ ଚାହିଁରହିଛି। ସେ ଆନନ୍ଦରେ ଉଚ୍ଛ୍ୱସିତ କଣ୍ଠରେ ହସିଦେବ ନିଶ୍ଚୟ। କାଲିର ପୂର୍ଣ୍ଣିମା ଉତ୍ସବ ଆଜି ସମାହିତ ହୋଇଯିବ। କାଲି ଜଳକ୍ରୀଡ଼ା ପରେ ମୁଁ ଯେତେବେଳେ ଏଇ ଲୁଗାଖଣ୍ଡିକ ପିନ୍ଧିବି, ମୋର ରୂପଯୌବନ ଏପରି ବିକଶି ଉଠିବ... ଶର୍ମିଷ୍ଠାର ଖୁବ୍ ଗର୍ବ ଯେ ସେ ରାଜକୁମାରୀ। ନା, ଯାହା ହେଉପଛକେ, କାଲି ତା'ର ଗର୍ବ ଚୂର୍ଣ୍ଣ କରିବାକୁ ପଡ଼ିବ। କେବଳ ଶର୍ମିଷ୍ଠାକୁ କାହିଁକି, କଚ୍‌କୁ ମଧ୍ୟ ଉଚିତ ଶିକ୍ଷା ଦେବି। ତା'ର ଲୁଗାଟିକୁ ମୁଁ କେବେହେଲେ ଚିରିବି ନାହିଁ। ତା'ର ସ୍ମୃତି ମନେପଡ଼ି ମୋତେ ଦହଗଞ୍ଜ କରିବ, କରୁ; ଦେଖାଯିବ।

ହଠାତ୍ ମୋର ଦୃଷ୍ଟି ପଡ଼ିଲା ଉଦ୍ୟାନର ଗୋଟିଏ କୋଣରେ ଥିବା ସେହି ଛୋଟ ଲତାକୁଞ୍ଜଟି ଉପରେ। ସେ ସ୍ଥାନଟି ଥିଲା କଚ୍‌ର ପ୍ରିୟସ୍ଥଳୀ, ନା... ସେଠାରୁ ସେ କୁଞ୍ଜ ଓ ଲତାଗୁଡ଼ିକ ଉପାଡ଼ି ଫିଙ୍ଗି ଦେବାକୁହିଁ ହେବ। ଓଃ... ସେ କୁଞ୍ଜଟା ବାପାଙ୍କର ମଧ୍ୟ ପ୍ରିୟସ୍ଥଳୀ; କାଲି ସକାଳେ ସେ ଯଦି କିଛି ପଚାରନ୍ତି? ହଃ... ଦେଖାଯିବ, କ'ଣ ନାଇଁ କ'ଣ ଗୋଟେ କହିଦେଲେ କ'ଣ ଚଳିବନାହିଁ? ନଇଲେ କହିଦେବି, ଗୋଶାଳାର ସେଇ କପିଳା ଧେନୁଟା ଆଜିକାଲି ପଘା ଛିଡ଼ାଇ ଯୁଆଡ଼େ ପାରି ସେଆଡ଼େ ପଳାଇଯାଉଛି; ଡେଇଁ, କୁଦି, ଦୌଡ଼ି, ଶିଙ୍ଗ ପତାଇ ମାରିବାକୁ ଗୋଡ଼ାଉଛି। ସେଇ ଗାଈଟା ନିଶ୍ଚୟ ରାତିରେ ପଘା ଛିଡ଼ାଇ ଏ କୁଞ୍ଜକୁ ନଷ୍ଟ କରିଦେଇଛି; ଏଇଆ କହିଦେବି।

ମୁଁ କୁଞ୍ଜଟାକୁ ଉପାଡ଼ି ଫିଙ୍ଗିଦେବାଲାଗି ସେ ଆଡ଼କୁ ଯିବା ସମୟରେ ପଛରୁ କାହାର ଡାକ ଶୁଭିଲା – 'ଦେବି।' ଏ ଡାକ ମୋତେ ଖୁବ୍ ଭଲଶୁଣାଗଲା; ଯା'ହେଉ, ବାପାଙ୍କ ଅଭ୍ୟାସ ଯା' ମଧ୍ୟରେ ବଦଳିଗଲାଣି। ବରାବର ମୋତେ ଡାକନ୍ତି 'ଦେବ' –ସତେ ଅବା ମୁଁ ତାଙ୍କର ପୁଅ। କଚ୍ ଆଗରେ ମୋତେ 'ଦେବ' ବୋଲି ଡାକିଲେ ମୁଁ ଲାଜରେ ସଢ଼ିଯାଏ। ଅନେକ ଥର ମୁଁ ମୁହଁ ଫୁଲେଇ ପ୍ରତିବାଦ କରିଛି; କିନ୍ତୁ ପୁଣି ସେ ସେଇ ଭୁଲକରିବସନ୍ତି। ଦିନେ ମୁଁ ନିହାତି ଜିଦ୍‌କରି କହିବାରୁ ସେ କହିଲେ– ''ଆଚ୍ଛା ଠିକ୍ ଅଛି, ଏଣିକି ମୁଁ ଆଉ 'ଦେବ' ବୋଲି ଡାକିବିନାହିଁ। କିନ୍ତୁ ଦେବ ବୋଲି ଡାକିଦେଲେ କ'ଣ ତୁ ଦେବ ହୋଇଯିବୁ କି?'' ଏ କଥା ଶୁଣି କ'ଣ ବା ତାଙ୍କୁ କହିଥାନ୍ତି? ତାଙ୍କପରି ଜଣେ ପ୍ରସିଦ୍ଧ ତପସ୍ୱୀ କୁଆଡୁ ବା ବୁଝିବେ ଯେ, ନାରୀ ଲାଜକୁଳୀ ଲତାପରି ଟିକିଏ ଛୁଇଁଦେଲା ମାତ୍ରେ ଲାଜରେ ଝାଉଁଳିପଡ଼େ। ଏମାନେ କେଉଁ ଅଦ୍ଭୁତ ଦୁନିଆରେ ବିଚରଣ କରନ୍ତି କେଜାଣି?

ବାପାଙ୍କର ଡାକ ଶୁଣି ମୁଁ ଅଟକିଯାଇ ପଛକୁ ଫେରି ଚାହିଁଲି। ସେ ଧୀରେ ଧୀରେ ମୋ ପାଖକୁ ଆସି, ମୋର ଚିବୁକ ଧରି ମୁହଁଟିକୁ ଉପରକୁ ଉଠାଇ, ମୋ ଆଖିକୁ ନିରୀକ୍ଷଣ କରି ଚାହିଁବା ପରେ କହିଲେ– ''ମାଆ, ଏପର୍ଯ୍ୟନ୍ତ ତୁ ଚାହିଁଛୁ?''

—"ନିଦ ଆସୁନି ବାପା ! ସେଥିପାଇଁ ଭାବିଲି ଟିକିଏ ବଗିଚାରେ ବୁଲିଆସିବି।"

ସେ ଲୁଗାଟିକୁ କିପରି ବାପାଙ୍କ ଦୃଷ୍ଟିରୁ ଲୁଚାଇ ରଖିବି, ସେଇ ଚିନ୍ତାରେ ମନକୁ ଯାହା ଆସିଲା କହିଦେଲି। ମୋ ପିଠି ଆଉଁଷିଦେଇ ସେ କହିଲେ– "ମାଆ, ମୁଁ ବୁଝୁଛି ତୋର ଦୁଃଖ। ତୋ ମନରେ ଗଭୀର ଦୁଃଖ ଜାତ ହୋଇଛି; ତୋ ହୃଦୟ ଭାଙ୍ଗିପଡ଼ିଛି।"

କଚ ସମ୍ବନ୍ଧରେ ବାପାଙ୍କ ଇଙ୍ଗିତ ମୋତେ ବିଷପରି ବୋଧହେଲା। ମୁଁ ପ୍ରସଙ୍ଗ ବଦଳାଇ ଦେବାଲାଗି କହିଲି– "ଆପଣ କ'ଣ ମୋ ଶବଦରେ ଉଠିପଡ଼ିଲେ ?" ସେ ମୁଣ୍ଡ ହଲାଇ ମନାକରି ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ମାଆ, ପରାଜିତ ତଥା ପରାଭବର ଦୁଃଖ ମୋତେ ମଧ୍ୟ ବାଧୁଛି। ମୁଁ ପୁଣି ମନେ ମନେ ନିଶ୍ଚୟ କରୁଛି, ନୂଆ କରି ଆଉ ଥରେ ତପସ୍ୟାରେ ବସିଯାଇ ଏପରି ଏକ ବିଦ୍ୟା ହାସଲ କରିବି ଯେ, ଯାହାକୁ ଦେଖି ବିଶ୍ୱବାସୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଯିବେ।"

"ତା'ହେଲେ ଶୀଘ୍ର ଆରମ୍ଭ କରିଦିଅନ୍ତୁ। ସଂଜୀବନୀ ଲାଗି ଆପଣ ତପସ୍ୟା କରୁଥିବା ସମୟରେ ମୁଁ ନିତାନ୍ତ ଛୋଟ ପିଲା ଥିଲି; ତେଣୁ ବିଶ୍ୱରେ ଆପଣଙ୍କ ମହତ୍ତ୍ୱ ଓ ପ୍ରତିଷ୍ଠା ସମ୍ବନ୍ଧରେ ମୋର ଆଦୌ ଧାରଣା ନଥିଲା। କିନ୍ତୁ ଏଥର ଆପଣ ତପସ୍ୟାରେ ମଗ୍ନ ହେବାମାତ୍ରେ, ମୁଁ ଆପଣଙ୍କ ସେବାରେ ଲାଗିପଡ଼ି, ଆପଣଙ୍କ କଷ୍ଟ ଲାଘବ କରିଦେବି ଏବଂ . . .।"

"ଅସମ୍ଭବ . . ." ହସି ହସି କହିଲେ ବାପା। ତାଙ୍କ କଥା ଶୁଣି ମୁଁ ମନେ ମନେ ଖୁବ୍ ରାଗିଗଲି। ପିଲାଦିନରୁ ମାଆ ମୋତେ ଛାଡ଼ି ଚାଲିଯାଇଥିଲେ। ସେହି ଦିନଠାରୁ ବାପା ମୋତେ ପାଳି-ପୋଷି ବଡ଼ କରିଛନ୍ତି। ଏହାର ଅର୍ଥ ନୁହେଁ ଯେ, ଦେବଯାନୀ ଚିରଦିନ ଗୋଟିଏ ରଙ୍ଗିନ୍ ପ୍ରଜାପତି ପରି ଉଡ଼ିବୁଲୁଥିବ ଏବଂ ତପସ୍ୟାରେ ମଗ୍ନ ନିଜ ପିତାଙ୍କ ସେବାଲାଗି ସମ୍ପୂର୍ଣ୍ଣ ଅଯୋଗ୍ୟା ବୋଲି ପ୍ରମାଣିତ ହେବ। ମୋ ସମ୍ବନ୍ଧରେ ଏପରି ଭ୍ରମଧାରଣା କରିବାରେ ତାଙ୍କର କି ଅଧିକାର ରହିଛି ?

ମୋ ହାତରେ ଥିବା ଲୁଗାଟି ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲେ ସେ ଆହୁରି ଦୁଃଖିତ ହେବେ ଏବଂ ତାଙ୍କ ମନରେ କୁହୁଳୁଥିବା ଦୁଃଖାଗ୍ନି ହଠାତ୍ ଧୁ . . . ଧୁ . . . ହୋଇ ଜଳିଉଠିବ; ଏଇ ଭୟ ମୋ ମନରେ ଜାତହେଲା। କିନ୍ତୁ . . . ନା, ସେ ତାଙ୍କର ବିଚାରରେ ମଗ୍ନ ହୋଇଗଲେ। ଚାରିଆଡ଼େ ଛାଇଯାଇଥିବା କ୍ଷୀରଧାରା ପରି ଚାନ୍ଦିନୀ ଆଡ଼କୁ ଚାହିଁ ସେ ପୁଣି ଡାକିଲେ– "ଦେବ . . . !"

—"ଉଁ . . . ହୁଁ . . . ଦେବୀ ?"

"ଆରେ . . . ମୁଁ ତ ସବୁବେଳେ ସେଇ ଭୁଲ କରୁଛି।" ହସି ହସି ସେ କହିଲେ– "ତପସ୍ୟାର ଉନ୍ମାଦନା ପରି ମଦ୍ୟର ନିଶା ମୋତେ ସମାନ ଭାବରେ ଘାରିଦେଉଛି; କିନ୍ତୁ ଦରକାର ପଡ଼ିଲେ ମୁଁ ଗୋଟିଏ ମୁହୂର୍ତ୍ତରେ ମଦ୍ୟ ତ୍ୟାଗ କରିଦେଇପାରେ। କିନ୍ତୁ ଜନ୍ମଦିନରୁ ତୋ ପାଟିକୁ ଯାହା ସୁଆଦିଆ ଲାଗିଛି, ତା ତୋ ନାଆଁରୁ . . ." କହୁ କହୁ ସେ ଚୁପ୍ ହୋଇଗଲେ। ତା'ପରେ ସେ ବିଷାଦଭରା କଣ୍ଠରେ କହିଲେ– "ଦିନେ ଶୁକ୍ରାଚାର୍ଯ୍ୟ ଥିଲା ସଂଜୀବନୀର ଏକମାତ୍ର ଅଧିକାରୀ।

ତା'ର ନାମ ଶୁଣିବାମାତ୍ରେ ତ୍ରିଭୁବନର ଲୋକେ ଆତଙ୍କିତ ହୋଇଉଠୁଥିଲେ। କିନ୍ତୁ ସେହି ଶୁକ୍ରାଚାର୍ଯ୍ୟ ଆଜି ଦୁନିଆର ହଜାର ହଜାର ଯୋଗୀ ତପସ୍ୱୀଙ୍କ ମଧ୍ୟରେ ଜଣେ। ନା... ଝିଅ, ଏ ଅପମାନ ମୋ ଦ୍ୱାରା ସହ୍ୟ ହେବନାହିଁ। ଦନ୍ତ ଓ ନଖ ଖସିପଡ଼ିବା ପରେ ସିଂହ ଆଉ କାହିଁକି ବଞ୍ଚିରହିବ ?''

ସଂଜୀବନୀ ଅପହରଣ କରିନେଇ ଚଣ୍ଡାଳ କଚ୍ ପିତାଙ୍କ ମନରେ କେଡ଼େବଡ଼ ଆଘାତ ନଦେଇଛି ? ଏତେ ଦିନ ବିତିଯାଇଥିଲେ ମଧ୍ୟ ଆଜି ସୁଦ୍ଧା ବାପାଙ୍କ ମନରୁ ସେ ଘାଆ ଶୁଖିନାହିଁ। ବାପାଙ୍କ ମନରେ ଧୈର୍ଯ୍ୟ ଦେବାକୁ ଯାଇ ମୁଁ କହିଲି– ''ବାପା, ଆପଣ ପୁଣି ଥରେ ତପସ୍ୟାରେ ମଗ୍ନ ହୋଇ ଅନ୍ୟ ଗୋଟିଏ ବିଦ୍ୟା ହାସଲ କରିବାଲାଗି ଯତ୍ନ କରନ୍ତୁ; ଏହା ଆପଣଙ୍କ ପକ୍ଷରେ ସହଜ।''

''କରିବି, ନିଶ୍ଚୟ କରିବି। ଗୋଟିଏ ନୁହେଁ, ଦଶ ଦଶଟି ବିଦ୍ୟା ହାସଲ କରିବି। କିନ୍ତୁ ସେଥିଲାଗି ମୋତେ ଉଗ୍ର ତପସ୍ୟା କରିବାକୁ ପଡ଼ିବ। କିନ୍ତୁ ତା' ପୂର୍ବରୁ ମୋତେ ସମସ୍ତ ବନ୍ଧନ ଓ ଚିନ୍ତାରୁ ମୁକ୍ତ ହେବାକୁ ପଡ଼ିବ। ପୂର୍ବ ତପସ୍ୟା ସମୟରେ ତୁ ଛୋଟ ପିଲାଟିଏ ହୋଇଥିଲୁ, ଏବେ ତୁ ବିବାହଯୋଗ୍ୟା ହୋଇଯାଇଛୁ। ତପସ୍ୟାରେ ସଫଳକାମ ହେବାଲାଗି କେତେ ଯେ ଦିନ ଲାଗିବ, କିଏ କହିପାରିବ ? ଭଗବାନ୍ ଶଙ୍କର ଭୋଳାନାଥ କି ନା !''

–''କିନ୍ତୁ... ବାପା...!''

ମୋତେ କଥା କହିବାକୁ ସୁବିଧା ନଦେଇ ସେ ପୁଣି କହିଚାଲିଲେ– ''ତୁ ଏଇଆ କହିବାକୁ ଚାହୁଁଛୁ ତ ଯେ, ମୋ ଚିନ୍ତା ଆପଣ ଛାଡ଼ିଦିଅନ୍ତୁ ? ମାଆରେ, ବାପା-ମାଆଙ୍କ ହୃଦୟ ବୁଝିବାକୁ ହେଲେ ବାପା-ମାଆ ହେବାକୁ ପଡ଼ିବ। ତୁ ଗୁରୁଣ୍ଡି ଗୁରୁଣ୍ଡି ଚାଲିବା ପୂର୍ବରୁ ତୋ ମାଆ ଚାଲିଗଲେ। ସେହିଦିନଠାରୁ ମୁଁ ହିଁ ତୋର ମାଆ, ମୁଁ ହିଁ ତୋର ବାପା। ତୋ'ରି ଖେଳକୁଦ, ଆନନ୍ଦ-ଉଲ୍ଲାସ ମଧ୍ୟରେ ମୁଁ ନିଜକୁ ହଜାଇଦେଇ ବ୍ରହ୍ମାନନ୍ଦ ଅନୁଭବ କରେ। ତପସ୍ୟା, ଜ୍ଞାନାର୍ଜନ ଓ ମଦ୍ୟପାନ ତଥା ତୋର ଉଲ୍ଲାସମୟ ଜୀବନ ବ୍ୟତୀତ ମୋ ଜୀବନ ଆଉ ଅନ୍ୟ କୌଣସି ପ୍ରକାର ଆନନ୍ଦ ସହିତ ପରିଚିତ ନୁହେଁ। ମୋ ଆୟତ୍ତରେ ସଂଜୀବନୀ ଥିବା ପର୍ଯ୍ୟନ୍ତ ଯେକୌଣସି ଋଷି, ଦେବତା ଓ ରାଜା ମୋର ଜାମାତା ହେବାଲାଗି ନିଜର ସୌଭାଗ୍ୟ ବୋଲି ମନେକରିଥା'ନ୍ତେ। କିନ୍ତୁ ଦାନବକୁଳର ସଂରକ୍ଷଣଲାଗି ମୋ ମନରେ ଯେଉଁ ଉନ୍ମାଦନା ସୃଷ୍ଟି ହୋଇଥିଲା, ମୁଁ ସେଥିରେ ଭାସିଯାଇ, ଏ ଆଡ଼କୁ ଆଦୌ ଦୃଷ୍ଟି ଦେଇନାହିଁ। କିନ୍ତୁ... ମାଆରେ ! ତପସ୍ୱୀଙ୍କ ମଉଡ଼ମଣି ତୋ'ର ଏ ବାପା ଆଜି ପଥର ଭିକାରି ପାଲଟି ଯାଇଛି। 'ଦୟାକରି ମୋ ଝିଅଟିକୁ ଗ୍ରହଣ କରନ୍ତୁ' ବୋଲି କହି ହାତଯୋଡ଼ି ଅନୁନୟ ବିନୟ ହେବାର ଦିନ ଆସିଯାଇଛି।''

ବାପାଙ୍କ କଥା ଶୁଣି ମୁଁ ତାଙ୍କ ଉପରେ ମନେ ମନେ ଖୁବ୍ ରାଗିଗଲି। ତାଙ୍କ ପାଖରେ ଅମୋଘ ଅସ୍ତ୍ର ଥିଲା– ସଂଜୀବନୀ; ସେ ଆଜି ହାତଛଡ଼ା ହୋଇଯାଇଛି। ଗଲେ ଯାଉ; କଅଣ ସେଥିରେ ଯାଏଆସେ ? ଦେବଯାନୀର ଅପରୂପ ସୌନ୍ଦର୍ଯ୍ୟ କୁଆଡ଼େ ମିଳାଯାଇ ନାହିଁ ତ ? ମୁଁ ନିଜର ସୌନ୍ଦର୍ଯ୍ୟବଳରେ...।

ବାପା-ମାଆଙ୍କର ସନ୍ତାନ ଉପରେ ଅସୀମ ମମତା ଥାଏ ଏବଂ ସେ ମମତା ଅନ୍ଧ। ତାହା ଫଳରେ ସେମାନେ ସନ୍ତାନର ଦୋଷ ଗୁଣ ଆଦୌ କିଛି ଜାଣିପାରନ୍ତି ନାହିଁ; ବିଶେଷତଃ ସେମାନେ ସନ୍ତାନର ଗୁଣ ପ୍ରତି ଆଦୌ ସଚେତନ ହୋଇପାରନ୍ତି ନାହିଁ। ନୋହିଲେ ବାପା କ'ଣ ଜାଣିପାରନ୍ତେ ନାହିଁ ଯେ, ଦେବଯାନୀର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଯେକୌଣସି ଦେବ, ନାଗ, ଗନ୍ଧର୍ବ ତଥା ମାନବ ତା'ର ଚରଣ ଚୁମ୍ବନ ଲାଗି ଧାଇଁଆସିବେ। କିନ୍ତୁ ଏ ଧାରଣା ମୁଁ ପିତାଙ୍କ ମନରେ କିପରି ଦେଇପାରିବି? ଆଉ କିଏ ଅବା ତାଙ୍କୁ ଏ ଧାରଣା ଦେବ?

ମୁଁ କୁଟୀର ଭିତରକୁ ତାଙ୍କୁ ନେଇଗଲି। ଗୋଟିଏ ଛୋଟ ପିଲାକୁ ଶୁଆଇଲାପରି, ତାଙ୍କୁ ଶେଯରେ ଶୁଆଇଦେଲି। ଅନେକ ସମୟ ପର୍ଯ୍ୟନ୍ତ ତାଙ୍କ ଗୋଡ଼ ପାଖରେ ବସି ପାଦସେବା କଲି। ଏତିକିବେଳେ ମୋର ବାମଚକ୍ଷୁରେ ସ୍ଫୁରଣ ହେଲା। କହନ୍ତି– ନାରୀମାନଙ୍କ ବାମଚକ୍ଷୁ ସ୍ଫୁରିଲେ ଶୁଭଫଳ ମିଳେ। ମନେ ମନେ ମୁଁ ନିଜ ଆଖିକୁ ପଚାରିଲି– 'କ'ଣ କି? ମୋ ଜୀବନରେ କି ଆନନ୍ଦ ଆସିବାର ଅଛି?' ଆଖିଟା ଭଲା କି ଉତ୍ତର ଦିଅନ୍ତା? ସେ କେବଳ ସ୍ଫୁରିବାରେ ଲାଗିଲା।

× × × × ×

ଆମେ ସବୁ ସାଙ୍ଗମାନେ ମିଶି ଉପବନର ବିଶାଳ ପୁଷ୍କରିଣୀ ତଟରେ ଉପସ୍ଥିତ ହେଲୁ। ଅନ୍ୟ ସାଙ୍ଗମାନେ ନିଜନିଜର ଲୁଗା ବଦଳାଇ ଦାସୀ ପାଖରେ ରଖିଦେଇ ଗାଧୁଆ ତୁଠକୁ ଓହ୍ଲାଇପଡ଼ିଲେ। ଶର୍ମିଷ୍ଠା ଓ ମୋ ଲୁଗା ଧରିବାପାଇଁ ଆଉ ଗୋଟିଏ ଦାସୀ ଆଗେଇ ଆସିଲା। ସେ ଦାସୀଟା ଥିଲା ନିପଟ ଓଲୁ, ନିହାତି ହୁଣ୍ଡୀ। ତା' ଚାଲିଚଳଣ ଲକ୍ଷ୍ୟକରି ଶର୍ମିଷ୍ଠାକୁ ପଚାରିଲି, "ଯା'କୁ କେଉଁ ଗନ୍ତାଘରୁ ବାହାରି କରି ଆଣିଛ କି ରାଜଜେମା?"

ସେ ହସି ହସି ଉତ୍ତର ଦେଲା, "ଯେଉଁ ବିଧାତା ତୋତେ ମୋତେ ଆଉ ସମସ୍ତଙ୍କୁ ଗଢ଼ିଛନ୍ତି, ତାଙ୍କରି ଗନ୍ତାଘରୁ ମୁଁ ଯା'କୁ ପାଇଛି।"

ତା'ର ଏ ପ୍ରକାର ଉତ୍ତର ମୋତେ ଆଦୌ ସୁଖ ଲାଗିଲାନାହିଁ। ସେ ହୁଏତ ନିଜକୁ ତା' ସହିତ ତୁଳନା କରିପାରେ; କିନ୍ତୁ ମୋତେ ସେ ହୁଣ୍ଡୀଟା ସହିତ ତୁଳନା କରିବାର କି ଅଧିକାର ତା'ର ଅଛି? ନା... ନାଃ... କେବଳ ଈର୍ଷ୍ୟା– କେବଳ ମୋ ପ୍ରତି ତା' ମନର ଈର୍ଷ୍ୟା– ଯା' ବ୍ୟତୀତ ଆଉ କିଛିହେଲେ କାରଣ ଥାଇନପାରେ।

"ଶର୍ମିଷ୍ଠା ଲୁଗା ଓ ମୋ ଲୁଗା ଅଲଗା ଅଲଗା ରଖିବୁ, ବୁଝିଲୁ?" ସେ ଓଲୀଟାକୁ ଏହି କଥା କାନେ କାନେ ଚେତାଇଦେଇ ମୁଁ ପାଣିକୁ ଓହ୍ଲାଇପଡ଼ିଲି। ମୋ ପରେ ଦାସୀକୁ କ'ଣ କେଜାଣି କହି, ଶର୍ମିଷ୍ଠା ମଧ୍ୟ ଗାଧୁଆ ତୁଠରେ ପାଣି ଭିତରକୁ ପଶିଆସିଲା।

ପୋଖରୀ ଉପରେ ଦୂର ଗଗନର ନୀଳିମା ଜଳକ୍ରୀଡ଼ା ଲାଗି ଛାଇଯାଇଥିଲା ଏବଂ ଚଉଦିଗର ସବୁଜ ବନାନୀ ଚାମର ହୋଇ ତା'ଉପରେ ଖେଳିଯାଇଥିଲେ। ଅନ୍ୟ ସଖୀମାନେ ପାଣିରେ ଟିକିଏ ଆଗେଇଯାଇ ପରସ୍ପରକୁ ପାଣି ଛଟାଛଟି ହେଉଥିଲେ।

କିନ୍ତୁ ଗଭୀର ଜଳ ଭିତରକୁ ଆଗେଇଯିବାଲାଗି କାହାରି ମନରେ ସାହସ ନଥିଲା । ମୁଁ ହସି ହସି କହିଲି ଶର୍ମିଷ୍ଠାକୁ– "କଳସୀରେ ପାଣି ମୁନ୍ଦିଏ ଆଣି ଟିକ୍ଷୁ ଟିକ୍ଷୁ କହି ମାର୍ଜନ ହୋଇଗଲେ, ଜଳକ୍ରୀଡ଼ା ହୁଏନାହିଁ । ଆ... ଆମେ ପହଁରି ପହଁରି କିଛି ଦୂର ଆଗେଇଯିବା । ଆମକୁ ଦେଖିଲେ ଏ ଡରୁକୁଳୀଗୁଡ଼ାକ ମନରେ ଟିକିଏ ସାହସ ଆସିବ । ହେଇ ଦେଖ, ଆଗରେ ପଦ୍ମ ସହିତ କିପରି ଯୋଡ଼ିଏ ହଂସ ଖେଳୁଛନ୍ତି । ଦେଖିଲୁ ତ, ସେ ଯୋଡ଼ିକ କିପରି ଛୋଟ ଛୋଟ ଧଳା ବଉଦ ପରି ପରସ୍ପର ଆନନ୍ଦରେ ଯୁଗଳମିଳନରେ ମାତିଛନ୍ତି । ଚାଲ, ପହଁରି ପହଁରି ସେଇ ପର୍ଯ୍ୟନ୍ତ ଯାଇ ଆମେ କୂଳକୁ ଲେଉଟି ଆସିବା । ଦେଖିବା, କିଏ ସେଠାକୁ ଯାଇ ଆଗେ କୂଳକୁ ଫେରିଆସିପାରିବ ! ରହିଲା ବାଜି...!"

ଶର୍ମିଷ୍ଠା କିଛି ଉତ୍ତର ନଦେଇ କେବଳ ମୁରୁକି ମୁରୁକି ହସିଦେଇ ମୋ ନିମନ୍ତ୍ରଣ ସ୍ୱୀକାର କରିନେଲା । ଆମେ ଦୁହେଁ ପହଁରିବାରେ ଲାଗିଲୁ; ମୁଁ ହାତଗୋଡ଼ ଖୁବ୍ ଜୋର୍‌ରେ ହଲାଇ, ଶୀଘ୍ର ଶୀଘ୍ର ପାଣି କାଟି, ଶର୍ମିଷ୍ଠାକୁ ଅନେକ ପଛରେ ପକାଇଦେଇ ଆଗେଇଗଲି । ପଛକୁ ଚାହିଁ ଦେଖିଲି, ଧୀରେ ଧୀରେ କଚ୍ଛପଗତିରେ ଶର୍ମିଷ୍ଠା ଆଗେଇ ଆସୁଛି । ଯା'ହେଉ, ତାକୁ ଆଜି ହରାଇଦେଇ ସଖୀମାନଙ୍କ ମେଳରେ ଲଜ୍ଜିତା କରାଇବି, ଏହି ଆନନ୍ଦରେ ମୁଁ ମାତିଉଠିଲି । ଆଜିର ବାଜି ସେ ନିଶ୍ଚୟ ହାରିଯିବ । ଲାଜରେ ମୁହଁ ତଳକୁ କରି ଯେତେବେଳେ ସେ କୂଳକୁ ଉଠିଆସିବ, ମୋ ନାଲି ଶାଢ଼ିଟି ଦେଖିପକାଇ ନିଶ୍ଚୟ ମନେ ମନେ ଜଳିଯିବ ।

ମୁଁ ଯେତେ ଶୀଘ୍ର ସମ୍ଭବ ଆଗେଇ ଯାଇ ହଂସ ଯୋଡ଼ିକ ପାଖରେ ଥିବା ପଦ୍ମ ପାଖରେ ପହଞ୍ଚିଗଲି । ଶର୍ମିଷ୍ଠା ସେ ପର୍ଯ୍ୟନ୍ତ ଅନେକ ପଛରେ ପଡ଼ିଥିଲା । ହଠାତ୍ ମୁଁ ଥକିପଡ଼ିଲାପରି ମୋତେ ଲାଗିଲା । ଭାବିଲି; ବୃଥାଟାରେ ଏତେ ପରିଶ୍ରମ କଲି । କିଛି ସମୟ ବିଶ୍ରାମ ନେବାଲାଗି ମୁଁ ପାଣିରେ ଭାସିବାରେ ଲାଗିଲି । ପରମୁହୂର୍ତ୍ତରେ ଦେଖିଲି; ଶର୍ମିଷ୍ଠା ଆସି ମୋ ପାଖରେ ପହଞ୍ଚିଯାଇ ସାରିଲାଣି । ମୁଁ ଏଥର ଯାଇ କୂଳରେ ପହଞ୍ଚିବାଲାଗି ଫେରିପଡ଼ିଲି ଏବଂ ଖୁବ୍ ଜୋର୍ ଲଗାଇ, ହାତଗୋଡ଼ ହଲାଇ ଆଗେଇ ଚାଲିଲି । ଫେରିବାବେଳେ ପଦ୍ମପାଖକୁ ଆଗଉଥିବା ଶର୍ମିଷ୍ଠାର ମୁହଁକୁ ବେଶ୍ କେଇଥର ଗେହ୍ଲାରେ ପାଣି ଛାଟିଦେଲି ।

ମୁଁ ଖୁବ୍ ଜୋର୍ ଲଗାଇ ଆଗେଇବାକୁ ଚେଷ୍ଟା କରୁଥିଲି ସତ; କିନ୍ତୁ ଯେଉଁ ବେଗରେ ମୁଁ ମାଡ଼ିଆସିଥିଲି, ଯେତେ ଚେଷ୍ଟା କଲେ ମଧ ସେଇ ବେଗରେ ଫେରିପାରିଲି ନାହିଁ । ଆସିବାବେଳେ ଜଣାପଡୁଥିଲା; ସତେଯେପରି ପୋଖରୀଟି ଛୋଟ ପିଲାଙ୍କ ପରି ନାଚ୍-କୁଦରେ ମାତିଯାଇଛି; କିନ୍ତୁ ଫେରିଲାବେଳେ ମନେହେଲା, ପୋଖରୀଟା ମୋର ନିସ୍ତେଜ ଭାବ ଲକ୍ଷ୍ୟକରି କିରିକିରି ହୋଇ ହସିଉଠୁଛି । କି ଆଶ୍ଚର୍ଯ୍ୟ ! ଘଡ଼ିକ ଭିତରେ କି ପରିବର୍ତ୍ତନ ? କିଛି ବୁଝିପାରିଲି ନାହିଁ । ଆଗକୁ ଚାହିଁ ଦେଖିଲି, ଘନ ଜଙ୍ଗଲଆଡୁ ଜୋର୍‌ରେ ପବନ ମାଡ଼ିଆସୁଛି; ପବନର ବେଗରେ ଆକାଶ ଧୂଳିଧୂସର ଦେଖାଯାଉଛି ଏବଂ ବୃକ୍ଷଲତାଗୁଡ଼ିକ ପରସ୍ପର ସହ ବାଡ଼େଇହୋଇ ନିଜର ଅସ୍ଥିରତା ସୂଚାଇଦେଉଛନ୍ତି ।

ଏହି ସମୟରେ ଶର୍ମିଷ୍ଠା ଦ୍ରୁତବେଗରେ ପାଣି କାଟି କାଟି ମୋ ପାଖଦେଇ ଆଗେଇଗଲା । ମୁଁ ତାକୁ ଡାକିଲି; କିନ୍ତୁ ସେ କିଛି ଉତ୍ତର ନ ଦେଇ ଚାଲିଗଲା । ଶର୍ମିଷ୍ଠା ମୋ ଆଗରୁ ଯାଇ କୂଳରେ ପହଞ୍ଚିଗଲା । ମୁଁ ମଲି ବା ବଞ୍ଚିଛି ଟିକିଏହେଲେ ପଛକୁ ଚାହିଁ ଦେଖିଲାନାହିଁ । ସେ କୂଳକୁ ଉଠିବା ସଙ୍ଗେ ସଙ୍ଗେ ପାଞ୍ଚ ସାତଜଣ ସାଙ୍ଗସଖୀ ତାକୁ ଘେରିଗଲେ । ସେମାନଙ୍କ ସହିତ ମନଖୁସିରେ ଗପ କରି କରି ସେ ଲୁଗା ଧରିଥିବା ଦାସୀ ପାଖରେ ପହଞ୍ଚିଗଲା ଏବଂ ତା'ଠାରୁ ଲୁଗା ନେଇ ଗୋଟିଏ ଗଛ ଉହାଡ଼ରେ ଲୁଚିଗଲା ।

ମୁଁ ମୁହଁ ତଳକୁ ପୋତି କୂଳରେ ପହଞ୍ଚିବାକ୍ଷଣି, ସଖୀମାନେ ମୋତେ ଘେରିଯାଇ ଛିଗୁଲେଇ ବିଗୁଲେଇ ହେଲାପରି ପଚାରିଲେ – ''ଏ କ'ଣ ହେଲା ? ଶର୍ମିଷ୍ଠା ଜିତିଗଲା ତ ?'' ସେମାନଙ୍କ ଉପରେ ମୁଁ ମନେ ମନେ ଖୁବ୍ ଚିଡ଼ିଯାଇ, ଜଣେ ଦି'ଜଣଙ୍କୁ ଠେଲିଦେଇ ସେ ଦାସୀଟା ପାଖରେ ଯାଇ ପହଞ୍ଚିଗଲି । ସେ ମୋ ହାତକୁ ଲୁଗା ବଢ଼ାଇଦେଲା । ସେ ଲୁଗାଟାକୁ ଚାହିଁଦେଇ ମୋ ମୁଣ୍ଡକୁ ପିତ୍ତ ଉଠିଗଲା; କାରଣ ସେ ଲୁଗା ମୋର ନଥିଲା । କଡ଼ ଦେଇଥିବା ସେହି ସୁନ୍ଦର ଲାଲ୍ ଲୁଗାଟିକୁ କେଉଁ ଦିନରୁ ସାଇତି ରଖିଥିଲି ଆଜିପରା ଦିନରେ ପିନ୍ଧିବାଲାଗି; କିନ୍ତୁ ସେ ହାଉଡ଼ୀ ଦାସୀଟା ସେଇ ଲୁଗାଟି ଶର୍ମିଷ୍ଠାକୁ ଦେଇଦେଇଥିଲା । ମୁଁ ରାଗରେ ତମତମ ହୋଇ . . . ''ବୋକୀ କେଉଁଠିକାର !'' ବୋଲି କହି, ତା' ଗାଲରେ ଗୋଟିଏ ଚାପୁଡ଼ା ବସାଇଦେଲି ଓ ସେଇ ରାଗରେ ଗର୍‌ଗର୍ ହୋଇ ଶର୍ମିଷ୍ଠା ପାଖରେ ପହଞ୍ଚିଗଲି । ସେତେବେଳକୁ ମୋ ଆଦରର ଲୁଗାଟିକୁ ସେ ପିନ୍ଧିସାରିଥିଲା । ମୁଁ ତା' ଦେଖି ଆଉ ନିଜକୁ ସମ୍ଭାଳି ନପାରି, ଲୁଗାଟିର ଗୋଟିଏ କାନି ଧରି ଜୋର୍‌ରେ ଭିଡ଼ିବାକୁ ଲାଗିଲି ।

ଶର୍ମିଷ୍ଠା ରାଗରେ ମୋ ଆଡ଼କୁ ଚାହିଁ କହିଲା, ''ଏ କି ନୀତି ତୋ'ର ଦେବଯାନୀ ! ଔଷଧ-ରାଗରେ ତାଟିଆ କାମୁଡୁଛୁ କାହିଁକି ? ନିଜେ ବାଜି ମାରି ହାରିଗଲୁ ବୋଲି, ସେଇ ରାଗ ଶୁଝାଉଛୁ ନା କ'ଣ ? ନିଜେ ଛୋଟୀଟା ତ, ଆଉ କରିବୁ କ'ଣ ?''

ମୁଁ ରୋକ୍‌ଠୋକ୍ ଉତ୍ତର ଦେଇ କହିଲି– ''ମୁଁ ଛୋଟୀ ହୁଏ ବା ବୁଢ଼ୀ ହୁଏ, ସେ କଥା ପରେ ବିଚାର ହେବ; ଆଗେ ତୋ' କାଣୀ ଆଖିରେ ଔଷଧ ଲଗା । ଦେଖିଲୁ, କାହା ଲୁଗା ତୁ ପିନ୍ଧିଛୁ ?''

–''ହଁ . . . ଏ ମୋ ଲୁଗା ।''

–''ତୋ ଆଖି ଫୁଟିଯାଇଛି କି ? ଏ ଲୁଗା ମୋର ।''

–''ଯୁଦ୍ଧ ଶେଷ ହୋଇଯିବା ପରେ ନିଜେ ଇନ୍ଦ୍ରାଣୀ ଶଚୀଦେବୀ ମାଆଙ୍କ ଲାଗି ଏଇ ଲୁଗାଟି ଉପହାରରେ ପଠାଇଥିଲେ । କାଲି ରାତିରେ ମାଆ ମୋ ପାଇଁ ଲୁଗାଟି କାଢ଼ି ରଖିଥିଲା ।''

–''ତୋ ମାଆକୁ ଇନ୍ଦ୍ରାଣୀ ଉପହାର ଦେଉ ବା କେଉଁ ଡାହାଣୀ ଉପହାର ଦେଉ, ମୋର ସେଥିରେ ଯାଏ ଆସେ କେତେ ? ଏଣେ ଫୁଟାଣିରେ ପାଟିରେ ବାଟୁଳି ବାଜୁନି, ତେଣେ ମୋ ଲୁଗାଟି ନେଇ ଜେଡ଼େ ଚାଳାଖିରେ ପିନ୍ଧିଦେଇଛୁ

ମ ? କାଢ଼ ମୋ ଲୁଗା . . . ।''

—''ନା . . . ଦେବିନି, ଯାଃ. . . ମୋର କ'ଣ କରିବୁ କର।''

ଲୁଗାଟିକୁ ଆହୁରି ଜୋର୍‌ରେ ଟାଣି ମୁଁ କହିଲି– ''ଦେଖିବୁ, କଣ କରିବି ? ଜାଣିଛୁ, ମୁଁ କିଏ ସେ ?''

—''ହଁ. . . ହଁ. . . ଜାଣିଛି; ଭଲ ଭାବରେ ଜାଣିଛି। ମହାରାଜ ବୃଷପର୍ବାଙ୍କ ଅନ୍ନରେ ପାଳିତ ଗୋଟିଏ ଭିକ୍ଷୁକର ଝିଅ ତୁ।''

ମୋ ବାପାଙ୍କୁ ଭିକ୍ଷୁକ ବୋଲି କହି ଶର୍ମିଷ୍ଠା ମୋତେ ତୀବ୍ର ଅପମାନ ଦେଲାରୁ, ମୁଁ କ'ଣ କରିବି ବା ନକରିବି କିଛି ଭାବିପାରିଲିନାହିଁ। କିପରି ଶର୍ମିଷ୍ଠା ଉପରେ ପ୍ରତିଶୋଧ ନେବି ? କ'ଣ କହି ତା' ମୁହଁରେ ଚୂନକାଳି ଲେପିବି, ସେହି ଚିନ୍ତାରେ ମୁଁ ମନେ ମନେ ବ୍ୟସ୍ତ ହୋଇପଡ଼ିଲି; ମୋ ମୁହଁରୁ ରାଗରେ ପଦେହେଲେ କଥା ବାହାରିଲା ନାହିଁ।

ମୋତେ ଚୁପ୍ ହୋଇଥିବାର ଦେଖି ସେ ଆହୁରି ରାଗିଉଠି କହିଲା, ''ଭିକାରୁଣୀଟା, କେତେ ରାଗୁଛୁ ରାଗ। ଜଳିପୋଡ଼ି ମରିଯା। ହାତଗୋଡ଼ ଛାଟିପିଟି ହୋଇ କେତେ କୋଡ଼ିକଚାଡ଼ି ହେଉଛୁ ହେଉଥା। ସେଥିରେ ଯଦି ମନ ନ ମାନୁଛି, ତେବେ ଧୂଳିରେ ଗଡ଼ି ଲୋଟପାଟ୍ ହୋଇ ମୋ ଉପରେ ଅଭିମାନ ଶୁଝେଇ ନେ। ଅସହଣୀଟା ମୋ ଉପରେ ଈର୍ଷା କରି କରି କ'ଣ ପାଇବୁ ପା . . .। ତୋ' ଫଟା ରାଗକୁ କିଏ ଖାତିର କରିଛି ମ ? ଯା' ହେଲେ ବି ମୁଁ ରଜାଝିଅ; ତୋ'ରି ପରି ମାଗିଖିଆର ଝିଅ ନୁହେଁ। ମୋ ବାପା ଉଦାରତାର ସହିତ ତୋ' ବାପାକୁ ଗୁରୁଦେବ ବୋଲି କହୁଛନ୍ତି; ଯା ତୋ ବାପର ବଡ଼ ଭାଗ୍ୟ ବୋଲି ଜାଣ। ରାଜସଭାରେ ମୋ ବାପା ସ୍ୱର୍ଣ୍ଣସିଂହାସନ ଉପରେ ବସୁଥିବାବେଳେ ତୋ ବାପ ତଳେ ମୃଗଛାଲଟେ ପକାଇ ବସିଥାଏ। ସେଇଥିରୁ ବୁଝିଯାଆ ତୋର ଭାଉ କେଡ଼େ, ଆଉ ମୋ ସମ୍ମାନ କଅଣ ?''

ଇଚ୍ଛା ହେଉଥିଲା– ତା ଚୁଟି ଧରି ଘୋଷାରି ଘୋଷାରି ନେଇ ଜଙ୍ଗଲର କେଉଁ କୂଅରେ ତାକୁ ପକାଇ ଦିଅନ୍ତି। କିନ୍ତୁ କ୍ରୋଧରେ ମୋ ହାତଗୋଡ଼ ଥରଥର ହୋଇ କମ୍ପୁଥିଲା ଏବଂ ମୋତେ ଜଣାଗଲା ମୁଁ ବେହୋସ ହୋଇ ପଡ଼ିଯିବି।

ଆମ ଦୁହିଁଙ୍କ ମଧ୍ୟରେ ଝଗଡ଼ା ଆରମ୍ଭ ହୋଇଯିବାରୁ ସାଙ୍ଗ ସଖୀମାନେ ଆସି ଘେରିଗଲେ। ମୋ ତମତମ ଚେହେରା, ଢଳଢ଼ଳ ଆଖି, ଥରଥର ଦେହ ଦେଖି ସେମାନେ ମୋ ଦେହ ଜଳେଇ ତାଳିମାରି ହସିବାକୁ ଲାଗିଲେ। ଏହା ଦେଖି ମୋର ରୋମେ ରୋମେ ନିଆଁ ଲାଗିଗଲା। ସେମାନଙ୍କ ସହିତ ତାଳ ଦେଇ ଶର୍ମିଷ୍ଠା ଠୋ' ଠୋ' ହୋଇ ମୋତେ ଉପହାସ କରି ହସିବାକୁ ଲାଗିଲା। ମୋ ମନରେ ଅପମାନର ନିଆଁ ହୁତୁହୁତୁ ହୋଇ ଜଳିଉଠିଲା। ମୁଁ ଭାବିଲି ଏଇ ଓଦାଲୁଗା ପିନ୍ଧି ନଗରକୁ ଦୌଡ଼ିଯାଇ ବାପାଙ୍କ ଆଗରେ ସବୁକଥା ଜଣାଇ କହିବି; ''ମୁଁ ଆଉ ଏଠାରେ ପାଣି ମୁନ୍ଦିଏ ସୁଦ୍ଧା ଢୋକିବାକୁ ରାଜି ନୁହେଁ। ଏହା ଭାବିବାକ୍ଷଣି ଏକାଦମ୍‌ରେ ଦୌଡ଼ିବାକୁ ଲାଗିଲି। ପଛରେ ଶର୍ମିଷ୍ଠା ଦୌଡୁଥିଲା ଏବଂ ଜୋର୍‌ରେ ମୋ ନାଁ ଧରି ଡାକୁଥିଲା– ''ଦେବଯାନୀ, ଦେବଯାନୀ ରହିଯା . . . . ଛିଡ଼ାହଅ . . . ଶୁଣ୍ ଭଲା।''

ମୁଁ ମନେ ମନେ ବଡବଡ ହେଉଥାଏ, "ନୀଚ୍, ଦୁଷ୍ଟ, ବର୍ବର।" ମୁଁ ଥରେ ହେଲେ ବି ପଛକୁ ଫେରି ଚାହିଁଲିନାହିଁ। ବାଣ ବାଜି ଘାଉଲା ହୋଇଥିବା ହରିଣୀ ପରି ଯୁଆଡ଼େ ପାରିଲି ଖାଲ ଢିପ, କଣ୍ଟା ଖୁଣ୍ଟା, କିଛି ନମାନି ଏକା ନିଃଶ୍ୱାସକେ ଦୌଡ଼ିଲି। ଶର୍ମିଷ୍ଠା ମୋ ପଛେପଛେ ଦୌଡୁଥିଲା। ବୋଧହୁଏ, ତା' ସଖୀମାନେ ମଧ୍ୟ ପଛେ ପଛେ ଦୌଡ଼ି ଦୌଡ଼ି ଆସୁଥିଲେ। ମୁଁ ସ୍ପଷ୍ଟଭାବରେ ସେମାନଙ୍କ ପାଦଶବ୍ଦ ଶୁଣିପାରୁଥିଲି। କିନ୍ତୁ ମୁଁ ମନେ ମନେ ନିଶ୍ଚୟ କରିଥିଲି; ଆତ୍ମଗର୍ବୀ ଶର୍ମିଷ୍ଠା ମୋ ଆଗରେ ଶହେଥର ଭୂମିରେ ନାକ ରଗଡ଼ିଲେ ବି, ମୁଁ ତାର ଫୁଟାଣିଆ ଦିହଜଳା କଥାଲାଗି କ୍ଷମା ଦେବିନାହିଁ! ଦେବିନାହିଁ!! ଦେବିନାହିଁ!!!

କିନ୍ତୁ ଅଳ୍ପ ସମୟ ପରେ ମୋର ବେଗ କମିଆସିଲା ଏବଂ ମୋର ଧାରଣା ହୋଇଗଲା ଯେ ଶର୍ମିଷ୍ଠା ମୋତେ ଧରିପକାଇବ। କିଛି ସମୟ ପୂର୍ବରୁ ସେ ମୋତେ ପହଁରିବାରେ ହରାଇ ଦେଇଥିଲା; ଏଥର ପୁଣି ଦୌଡ଼ିବାରେ ପରାସ୍ତ କରିଦେବ! ନା... ପ୍ରାଣ ଚାଲିଯାଉ ପଛକେ, କେବେହେଲେ ତା' ହାତରେ ଧରାଦେବିନାହିଁ; କିନ୍ତୁ କିପରି ତା' ସମ୍ଭବ ହେବ?

ମୁଁ ପଛକୁ ଫେରି ଦେଖିଲି; ଶର୍ମିଷ୍ଠା ଆସି ଖୁବ୍ ନିକଟରେ ପହଞ୍ଚିଗଲାଣି। ଆଉ ଦୌଡ଼ିଲେ ବିଶେଷ ଲାଭ ହେବନାହିଁ। ମୁଁ ଏଣେତେଣେ ଚାହିଁ ଦେଖିଲି, ନିକଟରେ ଲତାପତ୍ରରେ ଆଚ୍ଛନ୍ନ ଗୋଟିଏ ପ୍ରଶସ୍ତ କୂଅ ଥିଲା। ସେଥିରେ ପାଣି କେତେ ଥିଲା କେଜାଣି, ମୁଁ କିଛି ନ ଜାଣି ଯାଇ ତା ପାଖରେ ଛିଡ଼ା ହୋଇଗଲି। ଶର୍ମିଷ୍ଠା ମୋ ପାଖକୁ ଆସି ଅନେକ କାକୁତି-ମିନତି କଲା; ଅନୁନୟ-ବିନୟ ହୋଇ ମୋ ହାତ ଧରିପକାଇଲା। ମୁଁ ତା' ହାତକୁ ଛାଟିଦେଇ କହିଲି– "ତୁ ରାଜଜେମା, ମୁଁ ଭିକ୍ଷୁକର ଝିଅ। ମୋର ତୁମ ଦୁଆରକୁ ଭିଖ ମାଗିବାଲାଗି ଯିବା ଉଚିତ ନୁହେଁ କି? ଆଉ ପୁଣି ଏ ସୁଆଙ୍ଗ କାହିଁକି?"

ସେ ପୂର୍ବପରି ନରମ ଗଳାରେ କହିଲା– "ଦେବଯାନୀ! ମୁଁ... ମୁଁ..."

ମୁଁ ହରିଣୀପରି ଦୌଡ଼ି ପଳାଇ ଆସିଥିଲି; କିନ୍ତୁ ଶର୍ମିଷ୍ଠାର ମୁହଁରେ ବିନୟଭାବ ଦେଖି ସିଂହୀପରି ଗର୍ଜିଉଠିଲି। ମୁଁ ଆବେଗ ଓ କ୍ରୋଧରେ ଜରଜର ହୋଇ ରହିଥିଲି। ସେ ପିନ୍ଧିଥିବା ମୋ'ରି ଲୁଗାଟିକୁ ପୁଣି ଥରେ ଅଞ୍ଚଳ ଧରି ଘୋଷାରି ପକାଇ କହିଲି– "ଛାଡ଼, ମୋ ଲୁଗା ଦେ...। ମୋ'ରି ଲୁଗା ପିନ୍ଧି ମୋତେ ଅପମାନିତ କରୁଛୁ? ମୋ ବାପାଙ୍କ ମନ୍ତ୍ରଶକ୍ତିବଳରେ ତିଷ୍ଠିରହି ତାଙ୍କୁ ଭିକ୍ଷୁକ ବୋଲି କହୁଛୁ? ଦେ... ପାଲଟି ଦେ... ମୋ ଲୁଗା...।"

"ଆରେ... ରହ... କିନ୍ତୁ...।" ସେ ଡରିଯାଇ ଏଣୁତେଣୁ କ'ଣ ବଡ଼୍‌ବଡ଼୍ ହୋଇ ପିନ୍ଧିଲା ଶାଢ଼ିଟିକୁ ହାତରେ ଭିଡ଼ିଧରିଲା। ମୁଁ ଆହୁରି ଜୋର୍‌ରେ ଶାଢ଼ିଟିକୁ ଟାଣି କହିଲି, ଦେ... ପାଲଟି ଦେ, ଶାଢ଼ୀ। ଦେଉଛୁ ନା ନାହିଁ?"

ସେହି ମୁହୂର୍ତ୍ତରେ ମୁଁ କ'ଣ କ'ଣ କହିଲି ଏବଂ ଶର୍ମିଷ୍ଠା କ'ଣ କହିଲା ମୋର ମନେପଡୁନାହିଁ। ହଠାତ୍ "ଓ... ମା'... ଆ" ଶର୍ମିଷ୍ଠାର ପାଟି ଶୁଣାଗଲା। ମୁଁ କ'ଣ ତାକୁ କୂଅ ଭିତରକୁ ଠେଲିଦେଲି କି? ନା... ନା... ମୋର ପାଟିରୁ

ଏ ଶବ୍ଦ ବାହାରିଥିଲା। ସେ ଚଣ୍ଡାଳୁଣୀ ମୋତେ କୂଅଭିତରକୁ ଠେଲିଦେଲା। ଘାସ, ଲତା ଓ ପତ୍ର ପୂର୍ଣ୍ଣଥିବା କୂଅଭିତରେ ମୁଁ ପଡ଼ିଗଲି। କୂଅଟା ଖୁବ୍ ଗଭୀର ହୋଇଥିଲେ ମଧ୍ୟ ସେଥିରେ ବେଶି ପାଣି ନଥିଲା। ମୋ ଅଣ୍ଟା ପର୍ଯ୍ୟନ୍ତ ପାଣିରେ ବୁଡ଼ିଗଲା। କୂଅମୁହଁରେ ଲତାପତ୍ର ଗହଳିଆ ହୋଇ ରହିଥିବାରୁ ଉପରୁ କିଛି ଦେଖାଯାଉନଥିଲା। ଘନଜଙ୍ଗଲ ମଧ୍ୟରେ କୂଅଟା ଥିବାରୁ ତା' ମଧ୍ୟରେ ବିଷଧର ସର୍ପ ଥିବା ଅସମ୍ଭବ ନୁହେଁ। ମନରେ ଏ ଧାରଣା ଜାତ ହେବାମାତ୍ରେ ମୋ ରୋମ ଟାଙ୍କୁରି ଉଠିଲା। ହଠାତ୍ କୂଅ ଭିତରକୁ କିଏ ଗୋଟିଏ ଡେଇଁ ପଡ଼ିବାର ଶୁଣାଗଲା। ସେତେବେଳେ ମୋ ଅବସ୍ଥା ଯାହା, କହିଲେ ନ ସରେ; କାଟିଲେ ମଧ୍ୟ ଦେହରୁ ରକ୍ତ ବାହାରିବ ନାହିଁ। ଯେଉଁଆଡୁ ସେ ଶବ୍ଦ ଶୁଣାଗଲା ସେ ଆଡ଼କୁ ଚାହିଁ ଦେଖିଲି, ଗୋଟିଏ ବେଙ୍ଗ କୂଅଭିତରକୁ ଡେଇଁପଡ଼ିଛି।

ମୁଁ ଡରିଯାଇ ଜୋର୍‌ରେ ପାଟିକରିଉଠିଲି– "କିଏ କୁଆଡ଼େ ଅଛ, ମୋତେ ଏ କୂଅଭିତରୁ ରକ୍ଷା କର।" ଥରେ, ଦି'ଥର, ତିନିଥର ଜୋର୍‌ରେ ପାଟିକଲି। କିଛି ସମୟ ନୀରବ ରହିବା ପରେ ପୁଣି ପାଟିକରି ଡାକିଲି– "ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ କୂଅରେ ପଡ଼ିଯାଇଛି।" ବହୁ ଆଶାକରି ଉପରକୁ ଚାହିଁଲି, କାଳେ କେହି ଆସି ମୋତେ ଉଦ୍ଧାର କରିବ; ମାତ୍ର କୂଅ ଉପରେ କାହାରିକୁ ଦେଖିଲିନାହିଁ। ଶର୍ମିଷ୍ଠା କେଡ଼େ ନିର୍ଲଜ୍ଜ, ସାଙ୍ଗ ସଖୀଟାକୁ କୂଅଭିତରକୁ ଠେଲିଦେଇ ନଗରକୁ ପଳାଇଗଲା। ତା' ସଙ୍ଗୀମାନେ କ'ଣ ସେଇଆ? ଟିକିଏ ଚିନ୍ତା କଲେନି ଯେ, କୂଅଭିତରେ ମୋର ଅବସ୍ଥା କ'ଣ ହୋଇଥିବ? ମଲି କି ଗଲି, ଥରେହେଲେ ଖୋଜ୍‌ଖବର ନେବା କ'ଣ ତାଙ୍କର ଉଚିତ ନୁହେଁ।

ମୋ ମନ ରାଗରେ ଜଳିଉଠିଲା। ସେ କୂଅଟାରୁ କେହି କେବେହେଲେ ପାଣି ବ୍ୟବହାର କରନ୍ତିନାହିଁ, ତେଣୁ ପାଣି ଭୀଷଣ ଥଣ୍ଡା। କେତେ ସମୟ ପର୍ଯ୍ୟନ୍ତ ଛିଡ଼ାହେବା ଫଳରେ ମୋ ଦେହ ଥରିବାକୁ ଲାଗିଲା। ଗୋଟିଏ ଆଡ଼େ ଭୟ ଓ ଅନ୍ୟ ଦିଗରେ ପ୍ରତିଶୋଧ ନେବାଲାଗି ମନ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଲା। ମୁଁ ଭୟ ଓ ବିକଳରେ ବାରମ୍ବାର ଚିତ୍କାର କଲି; କିନ୍ତୁ ସେ ଘୋର ଜଙ୍ଗଲ ମଧ୍ୟରେ ମୋ ଗୁହାରି କେହିହେଲେ ଶୁଣିଲେନାହିଁ। ମୁଁ ଭାବିଲି– 'ବୋଧହୁଏ ମୁଁ ଏହିପରି ପାଣିଭିତରେ ରହି ଥରିଥରି ଅଚେତ ହୋଇଯିବି ଏବଂ କିଛି ସମୟ ପରେ ପାଣିରେ ବୁଡ଼ି ମରିବି।' ମୋ ମନରେ ଏପରି ଧାରଣା ହେବାକ୍ଷଣି ମୁଁ ଛୋଟ ପିଲାଙ୍କ ପରି କଇଁକଇଁ ହୋଇ କାନ୍ଦିବାକୁ ଲାଗିଲି।

ହଠାତ୍ ମୋତେ ଶୁଣାଗଲା, କିଏ ଜଣେ କହୁଛି– "ଭିତରେ କିଏ?" ଭାବିଲି– 'ସେହି ଶର୍ମିଷ୍ଠା ବୋଧହୁଏ ବେହିୟା ମୁହଁରେ ଦୟାବତୀ ସାଜି ଆସିଛି!' ତେଣୁ ମୁଁ କାନ୍ଦିବା ବନ୍ଦ କରିଦେଇ କିଛି ଉତ୍ତର ନଦେଇ ଚୁପ୍ ରହିଲି।

କୂଅମୁହଁରେ ମାଡ଼ିଥିବା ଲତାଗୁଡ଼ିକୁ ହାତରେ ଆଡ଼େଇଦେଇ କେହି ଜଣେ ଭିତରକୁ ନିରୀକ୍ଷଣ କରି ପୁଣି ପଚାରିଲା– "ଭିତରେ କିଏ?"

ଜଣେ ପୁରୁଷର କଣ୍ଠସ୍ୱର ଶୁଣାଗଲା। ଭାବିଲି– ବାପା ଆସିଲେ କି? ନା...

ତ! ମହାରାଜ ବୃଷପର୍ବା ? ଉଁ... ହୁଁ... ଏ ନିଶ୍ଚୟ କୌଣସି ଅନ୍ୟ ଲୋକର କଣ୍ଠସ୍ୱର। କିନ୍ତୁ ମୁଁ ସେ ସ୍ୱର ବାରିନପାରି ପଚାରିଲି– "କିଏ ପଚାରୁଛନ୍ତି ?"

–"ଯଯାତି..."

ମୋତେ ଜଣାଗଲା– ସତେ ଯେପରି ମୁଁ ସ୍ୱପ୍ନ ଦେଖୁଛି! ଅତ୍ୟନ୍ତ କୌତୂହଳର ସହିତ ପଚାରିଲି– "ହସ୍ତିନାପୁରର ମହାରାଜ ଯଯାତି ?"

"ହଁ... ମୁଁ ହସ୍ତିନାପୁରର ମହାରାଜା ଯଯାତି। ଶିକାର ପାଇଁ ବହୁଦୂର ଚାଲିଆସି ଏ ଘୋର ଜଙ୍ଗଲରେ ପହଞ୍ଚିଗଲି। ଖୁବ୍ ଶୋଷଲାଗିବାରୁ, ଏଇ ନିକଟରେ ରଥ ରଖାଇ ମୁଁ ପାଣିର ସନ୍ଧାନରେ ଆସିଛି। ମୋ ସାରଥି ଅନ୍ୟଆଡ଼େ ଯାଇଛି। ଏଠାରେ ଗୋଟିଏ କୂଅ ଥିବାପରି ମୋତେ ଦୂରରୁ ଜଣାଗଲା; ତେଣୁ ଏଠାକୁ ଚାଲିଆସିଛି। ଆଚ୍ଛା, ସେ କଥା ଛାଡ଼ନ୍ତୁ; ଆପଣ କିଏସେ ?"

–"ଆପଣ ନୁହେଁ... ତୁମେ କହନ୍ତୁ।"

–"ଉଦ୍ଦେଶ୍ୟ...?"

–"ଉଦ୍ଦେଶ୍ୟ... ମୁଁ ପରେ କହିବି। ପ୍ରଥମେ ମୋତେ କୂଅଭିତରୁ ବାହାରକରି ନିଅନ୍ତୁ ମହାରାଜ! ଏ ଥଣ୍ଡା ପାଣିରେ ମୋ ଦେହ କମ୍ପିଉଠୁଛି। କିନ୍ତୁ... କିନ୍ତୁ... କିନ୍ତୁ... ଆପଣ ଏ କୂଅ ଭିତରକୁ ପ୍ରବେଶ କରିବେ କିପରି ?"

ଉପରୁ ହସର ଶବ୍ଦ ଶୁଣାଗଲା। ତା'ପରେ ସେ ସୁମିଷ୍ଟ ସ୍ୱରରେ କହିଲେ– "ଯଯାତି ପିଲାଦିନରୁ ଧନୁର୍ବିଦ୍ୟା ଶିକ୍ଷା କରିଛି ଏବଂ ସେଥିରେ ଚମତ୍କାରିତା ମଧ୍ୟ ଦେଖାଇଜାଣେ।"

ବେଦମନ୍ତ୍ର ଉଚ୍ଚାରଣ କଲାପରି ଉପରୁ ଶୁଣାଗଲା। ତା'ପରେ ପରେ ଜଣାଗଲା ଉପରୁ କ'ଣ ଆସି ପାଣିରେ ପଡୁଛି। ସଙ୍ଗେ ସଙ୍ଗେ ମଧ୍ୟ ପାଣିରେ ତରଙ୍ଗ ସୃଷ୍ଟି ହେଲା। ପରକ୍ଷଣରେ ମୁଁ ଅନୁଭବ କଲି; ସତେଯେପରି ମୁଁ ଗୋଟିଏ ପଦ୍ମଫୁଲ ଉପରେ ଛିଡ଼ାହୋଇଛି। ଏହା ତ ସଂଜୀବନୀବିଦ୍ୟାପରି ଅଦ୍ଭୁତ ବିଦ୍ୟା। ଉପରକୁ ଉଠି ଆସୁ ଆସୁ ମୁଁ ଦେଖିଲି, ବାଣଗୁଡ଼ିକରେ ପଦ୍ମଫୁଲ ପରି ଗୋଟିଏ ଝୁଲା ତିଆରି ହୋଇଛି ଏବଂ ମୁଁ ସେଥିରେ ଛିଡ଼ାହୋଇ ଧୀରେ ଧୀରେ ଉପରକୁ ଉଠିଆସୁଛି। ସେହି ଶରରେ ପ୍ରସ୍ତୁତ ପଦ୍ମଟି ଆସି କୂଅମୁହଁରେ ରହିଗଲା; ଆଗରେ ଛିଡ଼ାହୋଇଥିବା ମହାରାଜ ଯଯାତିଙ୍କ ଆଡ଼କୁ ମୁଁ ଏକଲୟରେ ଚାହିଁରହିଲି। କଚ୍ ବ୍ୟତୀତ ଏତେ ସୁନ୍ଦର ଯୁବକ ମୁଁ ଆଉ ଦେଖିନଥିଲି। ତାଙ୍କର ସୁଗଠିତ ବଳିଷ୍ଠ ଶରୀରରେ ରାଜବସ୍ତ୍ର ଝଟକି ଉଠୁଥିଲା। ତାଙ୍କ ସୌନ୍ଦର୍ଯ୍ୟକୁ ମୁଁ ଆକଣ୍ଠ ପାନ କରି ଭାବିଲି, ପୁରୁଷଙ୍କ ଗଳାରେ ରୁଦ୍ରାକ୍ଷମାଳା ଅପେକ୍ଷା ରତ୍ନହାର ଅଧିକ ସୁନ୍ଦର ଦେଖାଯାଏ।

ମହାରାଜ ମୋ ଆଡ଼କୁ ଏକଦୃଷ୍ଟିରେ ନିରୀକ୍ଷଣ କରି ଚାହିଁଥିବାର ଲକ୍ଷ୍ୟକରି, ମୁଁ ଲାଜରେ ସଢ଼ିଯାଇ ତଳକୁ ମୁହଁ ପୋତି ରହିଲି। ଶରୀରରେ ମୋର ଓଦା ଲୁଗା ଚିପିହୋଇ ମୋ ଦେହର ସୌନ୍ଦର୍ଯ୍ୟକୁ ଆହୁରି ବଢ଼ାଇଦେଇଥିଲା। ଅନୁଭବ କଲି, ଶର୍ମିଷ୍ଠା ମୋତେ କୂଅକୁ ଠେଲିଦେଇ ମୋର କେଡ଼େ ଉପକାର ନ କରିଛି! ମୁଁ ଯଦି ସଦ୍ୟସ୍ନାତା ହୋଇନଥା'ନ୍ତି, ତେବେ କ'ଣ ଏଡ଼େବଡ଼ ବଳିଷ୍ଠ ମହାରାଜାଙ୍କ

ସହିତ ଆଖି ମିଳାଇ ତାଙ୍କ ଆଖିରେ ଲାଖିପାରିଥାନ୍ତି! ମୁଁ ଏହି ଭାବନାରେ ବିଭୋର ହୋଇ ତଳକୁ ମୁହଁ ପୋତି ରହିବାର ଦେଖି ମହାରାଜ ହସି ହସି ପଚାରିଲେ– "ମୁଁ ଏଇ ଅପ୍ସରାଙ୍କ ନାମ ଜାଣିପାରେକି?"

–"ମହାରାଜ, ମୁଁ ଅପ୍ସରା ନୁହେଁ।"

–"ତା'ହେଲେ ... ଏ ଧରାଧାମରେ ଏଭଳି ସୁନ୍ଦରୀ ...?"

ବାସ୍ତବିକ୍ ମୋର ଏ ସୌନ୍ଦର୍ଯ୍ୟ ମହାରାଜାଙ୍କ ମନକୁ ତରଳାଇ ଦେଇଥିଲା। ସେହି ସୌନ୍ଦର୍ଯ୍ୟ ସାଥିରେ ଆଉ ଟିକିଏ ଉତ୍ତେଜନା ଭରିଦେବା ଇଚ୍ଛାରେ, ମୁଁ ଧୀରେ ଧୀରେ ଉପରକୁ ମୁହଁ ଉଠାଇ ମହାରାଜାଙ୍କୁ ଟିକିଏ କଟାକ୍ଷ ଚାହାଣିରେ ଚାହିଁ, ପୁଣି ମୁହଁ ତଳକୁ କରି ଉତ୍ତରଦେଲି, "ମୁଁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ।"

–"ଶୁକ୍ରାଚାର୍ଯ୍ୟ? ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ...?"

–"ହଁ ... ଆଜ୍ଞା।"

–"ମୁଁ ଆଜି ... ଆପଣଙ୍କ ...।"

–"ଉଁ ... ହୁଁ; ଆପଣ ନୁହେଁ ... ତୁମର ...।"

ମହାରାଜ ଟିକିଏ ହସିଦେଇ କହିଲେ– "ଯା' ହେଉ, ମୁଁ ଆଜି ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ସେବାରେ ଲାଗିପାରିଛି। ମୋର ମୃଗୟାର ଶ୍ରମ ସାର୍ଥକ ହୋଇଗଲା।"

–"କିନ୍ତୁ, ମୁଁ ଆପଣଙ୍କୁ ଆଉ ଟିକିଏ କଷ୍ଟ ଦେବାକୁ ଚାହୁଁଛି।"

–"ସୌଭାଗ୍ୟର ବିଷୟ ... କହନ୍ତୁ?"

–"ମୁଁ ଏ କୂଅଭିତରୁ ବାହାରକୁ ଯିବି କିପରି?"

–"ମାନେ ...?"

–"ମୋତେ ଭାରି ଡରଲାଗୁଛି ... ଟିକିଏ ଗୋଡ଼ ଖସିଗଲେ ପୁଣି ଯଦି କୂଅରେ ଗଳିପଡ଼େ ...?"

–"ଚିନ୍ତା କଅଣ ...? ମୁଁ ପୁଣି ଉଠାଇଆଣିବି।"

–"ମୁଁ ପୁଣି ପଡ଼ିଯିବି।"

–"ମୁଁ ତୁମକୁ ପୁଣି ଉଠାଇଆଣିବି।"

ଆମେ ଦୁହେଁ ଏକସଙ୍ଗରେ ହସିଉଠିଲୁ। ସେହି ହସହସ ମୁହଁରେ ମୁଁ ମୁହଁ ଟେକି ଦେଖିଲି; ମୋ ଶରୀରରେ ଓଦାଲୁଗାଟା ଚିପିହୋଇଯାଇଛି ଏବଂ ମହାରାଜ ଯଯାତି ଅପଲକ ତଥା ମୁଗ୍ଧ ଦୃଷ୍ଟିରେ ମୋତେ ଚାହିଁ ରହିଛନ୍ତି। ମୁଁ ଧୀରେ ଧୀରେ ଡାହାଣ ହାତିକୁ ବଢ଼ାଇଦେଲି ଏବଂ ମହାରାଜ ତାଙ୍କ ଡାହାଣ ହାତରେ ମୋ ହାତ ଧରିନେଲେ। ମୁଁ ଉପରକୁ ଉଠିଆସିବା ମାତ୍ରେ ସେ ମୋ ହାତ ଛାଡ଼ିଦେଲେ। ମୁଁ ତଳକୁ ମୁହଁପୋତି, ପାଦନଖରେ ଭୂଇଁ ଉପରେ ଗାର କାଟୁ କାଟୁ କହିଲି, "ଏପରି ଭାବରେ ଆପଣ ହାତ ଛଡ଼ାଇନେଇ ପାରିବେନାହିଁ ମହାରାଜ! ଆପଣ ମୋର ପାଣି ଗ୍ରହଣ କରିସାରିଲେଣି।"

ସେ ଚମକିଉଠି କହିଲେ– "ଏହା କିପରି ସମ୍ଭବ ହେବ? ତୁମେ ବ୍ରାହ୍ମଣ କନ୍ୟା ମୁଁ କ୍ଷତ୍ରିୟ କୁମାର; ଏଭଳି ଅସବର୍ଣ୍ଣ ବିବାହ ..."

—"ଏଭଳି ଅନେକ ବିବାହ ହୋଇଛି; ବିଶେଷତଃ ଲୋପାମୁଦ୍ରାଙ୍କ ଉଦାହରଣ . . ."
—"ନା . . . ଆ . . ."

ମୁଁ ହସି ହସି କହିଲି– "ବିଧାତାଙ୍କର ଏହାହିଁ ଇଚ୍ଛା ମହାରାଜ! ନଇଲେ ଆପଣ କାହିଁକି ଏ ଜଙ୍ଗଲକୁ ଆସିଥାଆନ୍ତେ? ତା'ପରେ ପୁଣି ଏଇ କୂଅପାଖକୁ କାହିଁକି ଆସିଥାନ୍ତେ? ପୂର୍ବଜନ୍ମର ସମ୍ବନ୍ଧ ଏପରି ଯୋଗାଯୋଗ ବିନା ଘଟେନାହିଁ।"

—"କିନ୍ତୁ ସୁନ୍ଦରି . . . !"

—"ଆଉ କିନ୍ତୁ . . . ପରନ୍ତୁ କହିଲେ କିଛି ଲାଭନାହିଁ ମହାରାଜ! ଆପଣଙ୍କୁ ଦର୍ଶନ କରିବାମାତ୍ରେ ମୁଁ ମୋର ହୃଦୟ ଆପଣଙ୍କ ପାଦତଳେ ଅର୍ପଣ କରିଦେଇସାରିଛି; ଆପଣ ତାକୁ ଗ୍ରହଣ କରନ୍ତୁ ବା ପ୍ରତ୍ୟାଖ୍ୟାନ କରନ୍ତୁ, ଆପଣଙ୍କ ଇଚ୍ଛା! ଆପଣ ମୋତେ ସ୍ୱୀକାର ନକଲେ, ମୁଁ ହିମାଳୟର କୌଣସି ଏକ ଗୁହାରେ ବସି ଆପଣଙ୍କ ନାମରେ ମାଳାଜପି ଶେଷ ଜୀବନ ବିତାଇଦେବି। ଯେ ସ୍ୱପ୍ନରେ ପରପୁରୁଷକୁ ସ୍ପର୍ଶ କରିନାହିଁ, ସେ ମୁହୂର୍ତ୍ତକ ପାଇଁ ହେଉ ପଛକେ, ପରପୁରୁଷର କରସ୍ପର୍ଶ କରିବ ବା କାହିଁକି?"

—"କିନ୍ତୁ . . . ଦେବଯାନି, ତୁମର ବାପା ତ୍ରିଭୁବନରେ ପରମ ପୂଜ୍ୟ ମହର୍ଷି। ସେ ଯଦି ଏହା ପସନ୍ଦ ନ କରନ୍ତି, ତେବେ . . ."

—"ଆପଣ ସେ ଚିନ୍ତା . . ." ହଠାତ୍ ମୋର ମନେପଡ଼ିଗଲା, ମହାରାଜ ଜଳପାନ କରିବାକୁ ଚାହୁଁଥିଲେ; ତେଣୁ ମୁଁ କହିଲି– "ଆରେ . . . ମୁଁ କ'ଣ ପାଗଳୀଙ୍କ ପରି ବକିଚାଲିଛି। ଆପଣଙ୍କୁ ଶୋଷ ଲାଗୁଥିଲା ପରା; ଦେଖେ, ଏଇଠି କେଉଁଠି ପିଇବା ପାଣି . . ."

ମୋ ପାଟିରୁ କଥା ଛଡ଼ାଇ ନେଇ କହିଲେ ମହାରାଜ– "ତୁମର ଅପରୂପ ସୌନ୍ଦର୍ଯ୍ୟ ଆଡ଼କୁ ଚାହିଁବା ପରଠାରୁ ମୁଁ କ୍ଷୁଧାତୃଷା ସବୁ କିଛି ଭୁଲିଯାଇଛି। ମୁଁ ଆଜି ବାହାରିଥିଲି ଗୋଟିଏ ସୁନ୍ଦରୀ ମୃଗୁଣୀର ଶିକାରରେ; କିନ୍ତୁ ଦେଖୁଛି ସବୁ ଓଲଟପାଲଟ ହୋଇଗଲା। ମୁଁ ନିଜେ ଗୋଟିଏ ତ୍ରୈଲୋକ୍ୟମୋହିନୀ ହରିଣାକ୍ଷୀଦ୍ୱାରା ଶିକାର ହୋଇଗଲି।"

ମୁଁ ହସିଦେଇ ଲାଜକୁଳୀ ଲତା ପରି ଲାଜ-ସରମରେ ଝାଉଁଳି ପଡ଼ିଲି। ମୁଁ ତଳକୁ ଚାହିଁ ମନେମନେ ଭାବିଲି– ପିଲାଙ୍କପରି ମହର୍ଷିମାନଙ୍କର ଏକାନ୍ତ କର୍ତ୍ତବ୍ୟ ହେଉଛି, କେବଳ ତପସ୍ୟାରେ ହିଁ କାଳ ଅତିବାହିତ କରିବା। ଦୁନିଆଁର କ୍ଷଣ-କ୍ଷଣକେ ପରିବର୍ତ୍ତିତ ରଙ୍ଗ ସହିତ ସେମାନେ ଆଦୌ ଖାପ ଖୁଆଇ ଚାଲିପାରିବେ ନାହିଁ। କାଲି ରାତିରେ ସେ ମୋ ବିବାହ ଲାଗି ଚିନ୍ତିତ ହୋଇ କେତେକ'ଣ ଭାବୁଥିଲେ; ଆଜି ମୁଁ ହସ୍ତିନାପୁରର ମହାରାଣୀ ଭାବରେ ଯାଇ ତାଙ୍କ ପାଦସ୍ପର୍ଶ କଲେ, ତାଙ୍କର ମୁଖଭଙ୍ଗୀ ବାସ୍ତବିକ୍ ଦର୍ଶନୀୟ ହୋଇଉଠିବ।

'ଓଃ . . . ସେ ନିର୍ଦ୍ଦୟ ଶଠ କଚ୍ ଆଜି ଏଠାରେ ଉପସ୍ଥିତ ଥାଆନ୍ତା କି; ସେ ଠିକ୍ ବୁଝିପାରନ୍ତା, ମୁଁ କିପରି ତୀବ୍ର ପ୍ରତିଶୋଧ ନେଇପାରେ। ମୋତେ ରାଜରାଣୀ ବେଶରେ ଦେଖି, ସେ ମନେ ମନେ ଜଳିପୋଡ଼ି ପାଉଁଶ ହୋଇଯାଆନ୍ତା। ବାସ୍ତବିକ୍, ପ୍ରତିଶୋଧର ପରିଣାମ କେତେ ମଧୁମୟ!'

ମହାରାଜ ପ୍ରସ୍ତାବ ଦେଇ କହିଲେ– "ଚାଲ, ରଥରେ ବସ, ମହର୍ଷିଙ୍କ ପାଦତଳେ ପ୍ରଣାମ କରି ତାଙ୍କୁ ସବୁକଥା ଜଣାଇଦେବା।" କିନ୍ତୁ ମୁଁ ସେ ଅହଂକାରମୟ ପୁରୀକୁ ପ୍ରବେଶ କରିବାଲାଗି ଆଦୌ ଚାହୁଁ ନଥିଲି। ଶର୍ମିଷ୍ଠା ସେଠାରେ ମତ୍ତଗର୍ବିଣୀ ରାଜକନ୍ୟା ହୋଇ ମୁଣ୍ଡଟେକି ମୋତେ ଚାହିଁବ, ମୁଁ ତାହା କେବେହେଲେ ସହ୍ୟ କରିପାରିବିନାହିଁ। ସେ ମୋ ନିକଟରେ ଅକ୍ଷମଣୀୟ ଅପରାଧ କରିଛି; ମୋ ପିତାଙ୍କୁ, ମହର୍ଷି ଶୁକ୍ରାଚାର୍ଯ୍ୟଙ୍କୁ ଭିକ୍ଷୁକ ବ୍ରାହ୍ମଣ ବୋଲି କହି ଅସହ୍ୟ ଅପମାନପୂର୍ଣ୍ଣ ବାଣୀ ମୋତେ ଶୁଣାଇଛି। କିନ୍ତୁ ମୁଁ ଏବେ ସଦର୍ପରେ କହିବାକୁ ଚାହୁଁଛି, ମୁଁ ଭିକ୍ଷୁକର କନ୍ୟା ନୁହେଁ; ହସ୍ତିନାପୁରର ମହାରାଣୀ। କେବଳ ଏତିକିମାତ୍ର କହିଦେଲେ ଯେ ମୋର ପ୍ରତିଶୋଧ ସମ୍ପୂର୍ଣ୍ଣ ହୋଇଯିବ ତା ନୁହେଁ; ତା'ର ଅପରାଧକୁ ଚାହିଁ ଦଣ୍ଡଦେବାକୁ ହିଁ ପଡ଼ିବ। ଅପରାଧ ତୁଳନାରେ ଦଣ୍ଡ। ସାରା ଜୀବନ ମନେରଖିଲା ଭଳି ଦଣ୍ଡ ନ ଦେଇ, ମୁଁ ନଗରରେ ପାଦ ଦେବିନାହିଁ। ମହାରାଜାଙ୍କ ସାରଥିଦ୍ୱାରା ପିତାଙ୍କ ନିକଟକୁ ସଂଦେଶ ପଠାଇଦେଲେ କ୍ଷତି କ'ଣ?

କିନ୍ତୁ ସାରଥିକୁ ପଠାଇବା ଆବଶ୍ୟକ ହେଲାନାହିଁ; ସଙ୍ଗେ ସଙ୍ଗେ ଆମଠାରୁ ଟିକିଏ ଦୂରେ ଆସି ଗୋଟିଏ ରଥ ଛିଡ଼ାହୋଇଗଲା। ରଥରୁ ଓହ୍ଲାଇ ଆସିଲେ ପିତୃଦେବ ଓ ମହାରାଜ ବୃଷପର୍ବା। ବହୁଦିନ ପରେ ମାଆକୁ ଦେଖି ବାଳକ ଯେପରି ତୀବ୍ରବେଗରେ ଧାଇଁଯାଏ ତା' ଆଡ଼କୁ, ଠିକ୍ ସେହିପରି ବାପା ତୀରବେଗରେ ଛୁଟିଆସି ମୋତେ କୁଣ୍ଢାଇପକାଇ ମୋ ମୁଣ୍ଡକୁ ଆଉଁଷିବାରେ ଲାଗିଲେ। ମୁଁ ଅଭିମାନ ତଥା ଆନନ୍ଦରେ ଆଖିବୁଜି ତାଙ୍କ ବକ୍ଷରେ ମୁଣ୍ଡରଖି ଛିଡ଼ାହୋଇରହିଲି। ମୋତେ ଜଣାଗଲା ବାପାଙ୍କ ଆଖିରୁ ଲୁହଧାର ଗଡ଼ି ମୋର ଗଣ୍ଡଦେଶ ସିକ୍ତ କରୁଛି। ନିଜର ଏକମାତ୍ର ଅଲିଅଳୀ କନ୍ୟାକୁ ସୁରକ୍ଷିତ ଅବସ୍ଥାରେ ଦେଖି ମହର୍ଷି ଶୁକ୍ରାଚାର୍ଯ୍ୟ ନିଜର ଗାମ୍ଭୀର୍ଯ୍ୟ ତଥା ମହତ୍ତ୍ୱ ପାସୋରି ଦେଇଥିଲେ। ମହାରାଜ ଯଯାତି ମୁଗ୍ଧ ଦୃଷ୍ଟିରେ ସେ ଦୃଶ୍ୟ ଦେଖି ଭାବବିହ୍ୱଳ ହୋଇଉଠିଥିଲେ।

ବହୁ କଷ୍ଟରେ ସେ ନିଜର ଉଚ୍ଛ୍ୱାସ ରୋକିନେଇ ଡାକିଲେ– "ଦେବ . . . "

–"ଉଁ . . . ହୁଁ . . . ଦେବୀ।"

ପିତାଙ୍କର ବିଷାଦଭରା ମୁଖମଣ୍ଡଳରେ ହାସ୍ୟରେଖା ଉକୁଟି ଉଠିଲା– "ଆଚ୍ଛା . . . ଆଚ୍ଛା . . . ଦେବୀ . . . !"

ମୁଁ ତାଙ୍କଠାରୁ ଟିକିଏ ଦୂରେଇଯାଇ କହିଲି– "ଦେବୀ ଆଉ ଆପଣଙ୍କର ନୁହେଁ ବାପା।"

–"ମାନେ . . . ?"

ମୁଁ ମହାରାଜ ଯଯାତିଙ୍କ ଆଡ଼କୁ ଲଜ୍ଜାପୂର୍ଣ୍ଣ ଦୃଷ୍ଟିରେ ଚାହିଁ, ତଳକୁ ମୁହଁ ପୋତିଦେଲି। ମହାରାଜ ଆଗେଇଯାଇ ପିତାଙ୍କୁ ଅଭିବାଦନ ଜଣାଇଲେ। ମୁଁ ଓ ମହାରାଜା ଉଭୟେ ଗୋଟି ଗୋଟି କରି ସମସ୍ତ ବୃତ୍ତାନ୍ତ ପିତାଙ୍କୁ ଜଣାଇଦେଲୁ। ଆମଠାରୁ ସବୁ କଥା ଶୁଣିସାରି ବାପା ଖୁବ୍ ଆନନ୍ଦିତ ହେଲେ। ଆମ ଦୁହିଁଙ୍କୁ ହର୍ଷୋତ୍‌ଫୁଲ୍ଲ ମନରେ ଆଶୀର୍ବାଦ ଦେଇ, ମହାରାଜ ବୃଷପର୍ବାଙ୍କ ଆଡ଼କୁ ଚାହିଁ

କହିଲେ– ''ବେଳେବେଳେ ସୌଭାଗ୍ୟ ଏପରି ବିପଦର ମୁଖା ପିନ୍ଧି ଆସିଥାଏ; ଆଜିର ଏ ମଙ୍ଗଳମୟ ସମାଚ଼ାର ଠିକ୍ ସେହିପରି। ରାଜା, ତୁମେ ଶୀଘ୍ର ବିବାହର ଆୟୋଜନ କର। ସମଗ୍ର ନଗରକୁ ସଜାଇ ଖୁବ୍ ଆଡ଼ମ୍ବର ସହକାରେ ବିବାହବିଧି ସମ୍ପନ୍ନ କରାଅ। ଦାନବମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ଆନନ୍ଦର ଦିନ। ଝିଅକୁ ଶାଶୂଘରକୁ ବିଦାୟ ଦେଇ ପୁଣି ମୁଁ ନୂତନ ତପସ୍ୟାରେ, ତୁମରିମାନଙ୍କ ମଙ୍ଗଳଲାଗି, ପ୍ରସ୍ତୁତ ହୋଇଯିବି। ଜଣାପଡୁଛି; ମଝିରେ କେତେଦିନ ଆମର ଦୁର୍ବିପାକ ଆସିଯାଇଥିଲା, ଏବେ ପୁଣି ସୌଭାଗ୍ୟର ଦିନ ଆସିଗଲା। ଚାଲନ୍ତୁ ମହାରାଜ ଯଯାତି... ଏହି ରଥରେ ବସି ନଗରରେ ପ୍ରବେଶ କରନ୍ତୁ। ଦେବି, ତୁ ମଧ୍ୟ ଆଗରେ ଚାଲ।''

ମୁଁ ପିତାଙ୍କ କଥା ଶୁଣି ପାଦେ ହେଲେ ସେଠାରୁ ଘୁଞ୍ଚିଲିନାହିଁ। ମହାରାଜ ବୃଷପର୍ବା ଟିକିଏ ଆଗେଇଆସି କହିଲେ– ''ଗଲା କଥା ଭୁଲିଯାଅ...''

ମୁଁ ନାଗୁଣୀପରି ଗର୍ଜିଉଠି କହିଲି– ''ଆଘାତ ଦେବାଲୋକ ସହଜରେ ଗତକଥାକୁ ଭୁଲିଯାଇପାରେ; ମାତ୍ର ଯେ ଆଘାତ ପାଇ କ୍ଷତବିକ୍ଷତ ହୋଇଛି, ସେ କେବେହେଲେ ଭୁଲିପାରିବନାହିଁ। ପ୍ରାଣାନ୍ତକ ବେଦନାରେ ସେ ଛଟପଟ ହେଉଥାଏ। ଆଜି ଆପଣଙ୍କ ଝିଅ କୂଅଭିତରକୁ ଠେଲି ଦେଇ ମୋତେ ଜୀବନରେ ମାରିଦେବାକୁ ବସିଥିଲା। ଏ ଘଟଣା ହୁଏତ ମୁଁ ସହ୍ୟ କରିନେଇଥାଆନ୍ତି; ମାତ୍ର ମୋ ପିତାଙ୍କ ବିରୁଦ୍ଧରେ ସେ ଯାହା ବିଷୋଦ୍‌ଗାର କରିଛି, ମୋ ଛାତିରେ କରତ ଚାଲିଗଲା ପରି ମୋତେ ବୋଧହେଉଛି।''

ପିତା ଟିକିଏ କର୍କଶ ସ୍ୱରରେ ପଚ଼ାରିଲେ– ''କ'ଣ କହିଛି ଶର୍ମିଷ୍ଠା ?''

''ବାପା, ସେ କଥାଗୁଡ଼ାକ ମୁଁ କେଉଁ ମୁହଁରେ ଆପଣଙ୍କୁ କହିବି? ସେ ମୋତେ ଉପହାସ କରି କହିଛି– ତୋ ବାପା ଗୋଟେ ଭିକ୍ଷୁକ। ମୁଁ ରାଜକନ୍ୟା; ତୋ' ବାପ ମୋ ପିତାଙ୍କ ରାଜସଭାରେ ଗୋଟିଏ ଭାଟ ସାଜି ବସିଛି; ସେ ଯାଚ଼କ ଭାବରେ ଆମରି ଅନ୍ନରେ ପ୍ରତିପାଳିତ। ଖୋସାମଦ ନକଲେ ତୁମର ଗତିନାହିଁ। ମୋ ବାପାଙ୍କ ଆଗରେ ହାତଯୋଡ଼ି ଛିଡ଼ା ନହେଲେ ତାକୁ ଦକ୍ଷିଣା ମିଳିବ ନାହିଁ...।''

ମହାରାଜ ବୃଷପର୍ବା ଆହୁରି ଟିକିଏ ଆଗେଇ ଆସି ଅତ୍ୟନ୍ତ ନମ୍ରଭାବରେ କହିଲେ– ''ଗୁରୁକନ୍ୟେ, ଶର୍ମିଷ୍ଠା ମଧ୍ୟ ତୁମରି ପରି ପିଲା! ଖଣ୍ଡିଏ ଲୁଗାପାଇଁ ତୁମେଦୁହେଁ ଆଜି ଯେପରି କଳି ଲାଗିଲ, ସେ ସବୁକଥା ମୋତେ କହିଛି। ପିଲାମାନେ ସବୁକଥାର ଗୁରୁତ୍ୱ ବୁଝନ୍ତିନାହିଁ; ପ୍ରତ୍ୟେକ ଘଟଣାର ମହତ୍ତ୍ୱ ଉପଲବ୍‌ଧି କରିପାରନ୍ତିନାହିଁ। ଛୋଟ ଛୋଟ କଥାରୁ କଥା ବଢ଼ି ଗୁରୁତର ଆକାର ଧାରଣ କରେ...।''

–''ସେ ମୋତେ କୂଅଭିତରକୁ ଠେଲିଦେଲା; ଏଥିରେ ତା'ର କିଛି ହେଲେ ଅପରାଧ ନାହିଁ...?''

–''ଏ କଥା କିଏ କହୁଛି? କିନ୍ତୁ କ୍ରୋଧ ମଣିଷକୁ ଅନ୍ଧ କରିଦିଏ। ଶର୍ମିଷ୍ଠାର ଅପରାଧ ଲାଗି ମୁଁ ହାତଯୋଡ଼ି ତୁମଠାରୁ କ୍ଷମା ଭିକ୍ଷା କରୁଛି।''

–''କ୍ଷମା... ମହାରାଜଙ୍କ ମୁହଁରେ ଶୋଭାପାଏନାହିଁ; ମୋର ଭିକ୍ଷୁକ ପିତା କ୍ଷମା ମାଗିବାର ଯୋଗ୍ୟ। ପିତାଙ୍କର ଗରଜ ଥିଲେ ସେ ନଗରକୁ ଯାଇପାରନ୍ତି,

କିନ୍ତୁ ଯେଉଁଠି ତାଙ୍କର ଓ ମୋର ମାନସମ୍ମାନକୁ ଧୂଳିରେ ଦଳି ଦିଆଯାଇଛି, ସେଠାରେ ମୁଁ ଭୁଲ୍‌ରେ ସୁଦ୍ଧା ପାଦ ପକାଇବିନାହିଁ।'' ମୁଁ ମହାରାଜ ଯଯାତିଙ୍କ ଆଡ଼କୁ ମୁହଁ ଫେରାଇ କହିଲି– ''ଚାଲନ୍ତୁ ମହାରାଜ, ଏଠାରେ ଆଉ କ୍ଷଣେମାତ୍ର ରହିବାଲାଗି ମୁଁ ଚାହୁଁନାହିଁ। ପିଲାଦିନେ ମୁଁ ଶୁଣିଛି, ଝିଅମାନେ ଶାଶୁଘରକୁ ଯିବାବେଳେ ବା ଘର ଛାଡ଼ିବା ଦୁଃଖରେ ଅଶ୍ରୁର ବନ୍ୟା ବୁହାଇଦିଅନ୍ତି; କିନ୍ତୁ ଆଜି ବାପଘର ଛାଡ଼ିବା ମୁହୂର୍ତ୍ତରେ ମୋ ମନ ଆନନ୍ଦରେ ନାଚିଉଠୁଛି। ଯେଉଁ ସ୍ଥାନରେ ମୋତେ ଜୀବନରୁ ମାରିଦେବାଲାଗି ଚେଷ୍ଟା କରାଯାଇଥିଲା, ଯେଉଁ ଘରର ଗୋଟେ ସାମାନ୍ୟ ଝିଅ ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ ତ୍ରିଭୁବନର ପ୍ରଖ୍ୟାତ ତପସ୍ୱୀ ମୋର ପିତାଙ୍କୁ ଭିକ୍ଷୁକ ବୋଲି ଅପମାନିତ କରିପାରେ; ସେଠାରେ ଟୋପାଏ ପାଣି ପିଇବାଲାଗି ମୁଁ ପ୍ରସ୍ତୁତ ନୁହେଁ।''

–''ରାଜା . . . ମୁଁ . . . ମଧ . . . !'' ଏ ପର୍ଯ୍ୟନ୍ତ ସ୍ତବ୍ଧ ହୋଇ ଛିଡ଼ାହୋଇଥିବା ପିତା ଗୁରୁଗମ୍ଭୀର ସ୍ୱରରେ କହିଲେ– ''ତପସ୍ୟା ଲାଗି ପ୍ରସ୍ତୁତ ଥିବା ଲୋକପାଇଁ ହିମାଳୟର ଶହ ଶହ ଗୁମ୍ଫା ପଡ଼ିରହିଛି। ସେ ଭଳି ବ୍ୟକ୍ତି ତୁମ ରାଜ୍ୟଲୋଭରେ ଏଠାରେ କାହିଁକି ପଡ଼ିରହିବ? ଯାହାର ତପୋବଳ ଯୋଗୁଁ ଆଜିସୁଦ୍ଧା ଦାନବମାନଙ୍କର ଅସ୍ତିତ୍ୱ ରହିଛି ଏବଂ ଭବିଷ୍ୟତରେ ଦୈତ୍ୟଶକ୍ତି ଉନ୍ନତ ହେବାର ଆଶା ପୋଷଣ କରିଛି, ତାକୁ ଅପମାନିତ କରିବା ଓ ତା'ର ଏକମାତ୍ର କନ୍ୟାର ପ୍ରାଣନେବା . . .''

''ଗୁରୁଦେବ! ଦେବଯାନୀଙ୍କ ମନରେ ଖୁବ୍ ସମ୍ଭବତଃ ଭ୍ରମଧାରଣା ସୃଷ୍ଟି ହୋଇଛି।'' ବାଷ୍ପରୁଦ୍ଧ କଣ୍ଠରେ କହିଲେ ବୃଷପର୍ବା। ପିତା ଆଉ ନିଜକୁ ସମ୍ଭାଳି ପାରିଲେନାହିଁ। ସେ ଗର୍ଜିଉଠି କହିଲେ– ''ନ୍ୟାୟ ଅନ୍ୟାୟର ବିଚାରଲାଗି ମୋ ନିକଟରେ ସମୟ ନାହିଁ; ଏ . . . ଇ . . . ମୁଁ ମଧ ଚାଲିଲି।''

ମହାରାଜା ବୃଷପର୍ବା ତଳେ ଆଣ୍ଠୁମାଡ଼ି ବସି ପିତାଙ୍କର ଗୋଡ଼ ଧରି କାନ୍ଦି କାନ୍ଦି କହିଲେ– ''ଗୁରୁଦେବ, ଯଦି ଏ ସମୟରେ ଆମକୁ ତ୍ୟାଗକରି ଚାଲିଯିବେ ତେବେ ମଝିସମୁଦ୍ରରେ ବୁଡ଼ିମରିବା ବ୍ୟତୀତ ଦୈତ୍ୟକୁଳର ଆଉ କିଛି ଉପାୟ ନାହିଁ। ଶର୍ମିଷ୍ଠାର ଭୟଙ୍କର ଅପରାଧ ଲାଗି ଗୁରୁଦେବ! ତାକୁ ଉପଯୁକ୍ତ ଶାସ୍ତି ଦିଅନ୍ତୁ। ମୁଁ ଏଇ ମୁହୂର୍ତ୍ତରେ ତାକୁ ଡକାଇ ଆଣୁଛି। ସେ ଶତ ସହସ୍ରବାର ଆପଣ ଓ ଦେବଯାନୀଠାରେ ହାତଯୋଡ଼ି କ୍ଷମା ପ୍ରାର୍ଥନା କରିବ। ତାହା ଯଦି ପର୍ଯ୍ୟାପ୍ତ ଦଣ୍ଡ ବୋଲି ଆପଣ ଗ୍ରହଣ ନ କରନ୍ତି, ଏହି ମୁହୂର୍ତ୍ତରେ ମୁଁ ତାକୁ ଦାନବ ରାଜ୍ୟରୁ ବାହାରକରିଦେବାକୁ ପ୍ରସ୍ତୁତ ଅଛି।''

''ଶର୍ମିଷ୍ଠା ଦେବଯାନୀ ପ୍ରତି ଅକ୍ଷମ୍ୟ ଅପରାଧ କରିଛି। ସେ ଯେଉଁ ପ୍ରକାର ଶାସ୍ତିବିଧାନ କରିବ, ତାହା ଯଦି ସ୍ୱୀକାର କରିବାକୁ ଶର୍ମିଷ୍ଠା ପ୍ରସ୍ତୁତ ଥାଏ, ତେବେ ମୁଁ ନଗରକୁ ଯିବି।''

ବୃଷପର୍ବା ମୋ ଆଡ଼କୁ ମୁହଁ ବୁଲାଇ କହିଲେ– ''ଗୁରୁକନ୍ୟେ, କ'ଣ ଶାସ୍ତିବିଧାନ କରିବ . . . କର।''

–''ମହାରାଜ, ଆପଣ ସତ୍ୟ କରନ୍ତୁ, ମୁଁ ଯାହା କହିବି ତାହା ଆପଣ ପାଳନ କରିବେ। ଅନ୍ୟଥା . . .''

—"ଯାହାବି ହେଉ, ତୁମେ ଶର୍ମିଷ୍ଠାର ବାଲ୍ୟସଙ୍ଗିନୀ। ପିଲାଟିଦିନରୁ ତୁମେ ଦୁହେଁ ଏକ ସଙ୍ଗରେ ହସିଖେଳି ବଢ଼ିଛ। ତୁମେ ନିଜ ସଖୀକୁ କ'ଣ ବା କଠୋର ଦଣ୍ଡ ଦେବ? ତଥାପି ମୁଁ ଗୁରୁଦେବଙ୍କ ଶ୍ରୀଚରଣର ନିୟମ କରି କହୁଛି, ତୁମେ ଶର୍ମିଷ୍ଠାକୁ ଯାହା ଶାସ୍ତିବିଧାନ କରିବ, ମୁଁ ଆନନ୍ଦର ସହିତ..."

ଶର୍ମିଷ୍ଠାର ସେହି ଉଦ୍ଧତ ଭର୍ତ୍ସନା! 'ମୁଁ ରାଜକନ୍ୟା, ତୁ ଗୋଟେ ଭିକ୍ଷୁକର ଝିଅ...' ମୋର ମର୍ମେ ମର୍ମେ ପ୍ରତିଧ୍ୱନିତ ହେଉଥିଲା। ମନ ମଧ୍ୟରେ ସ୍ଥିର ନିଶ୍ଚୟ କରିନେଲି, ଏ ମଦଗର୍ବିଣୀକୁ ଉପଯୁକ୍ତ ଶାସ୍ତି ଦେବି। ରାଜଜେମା ବୋଲି ତା'ର ଯେଉଁ ଗରିମା ବଢ଼ିଯାଇଛି, ତାକୁ...। ଐଶ୍ୱର୍ଯ୍ୟମଦରେ ସେ ନିଜର କୁଳଗୁରୁଙ୍କୁ ଭିକ୍ଷୁକ କହି ଯେଉଁ ଉପହାସ କରିଛି ନା...? ଠିକ୍ ଅଛି! ତା'ର ସମସ୍ତ ଗର୍ବ, ଗରିମା, ଔଦ୍ଧତ୍ୟ କ୍ଷଣକରେ ଧୂଳିସାତ୍ ହେବାଭଳି ଶାସ୍ତି ତାକୁ ଦେବି।'

ମୋ ମୁହଁରୁ ବାହାରିପଡ଼ିଲା— "ସାରା ଜୀବନ ଶର୍ମିଷ୍ଠା ମୋର ଦାସୀ ହୋଇ ରହିବ।"

"କ... ଅ... ଣ? କ'ଣ... କହିଲ... ଦାସୀ...?" କଳାକାଠ ପଡ଼ିଗଲେ ମହାରାଜ ବୃଷପର୍ବା। ବହୁ କଷ୍ଟରେ ସେ ଏତକ କହି ମୁହଁ ତଳକୁ କରିଦେଲେ।

ମୁଁ ଜିତିଗଲି। ତେଣୁ ବିଜୟିନୀର ଗର୍ବରେ ମୁଣ୍ଡ ଉଠାଇ ମୁଁ କହିଲି— "ହଁ... ଶର୍ମିଷ୍ଠା ମୋର ଦାସୀ ହେବ; ହସ୍ତିନାପୁରର ମହାରାଣୀଙ୍କ ଦାସୀ ହେବାକୁ ପଡ଼ିବ। ଆଜୀବନ ମୋର ସେବା କରିବାଲାଗି ଏଇ ମୁହୂର୍ତ୍ତରେ ମୋ ସହିତ ତାକୁ ହସ୍ତିନାପୁର ଯିବାକୁ ପଡ଼ିବ।"

# ଶର୍ମିଷ୍ଠା

ଏଇ ସମୟସୂଚକ ଘଣ୍ଟା ବାଜିଲା। ଦୁଇଘଡ଼ି ମଧ୍ୟରୁ ଘଡ଼ିଏ ବିତିଗଲାଣି, ଆଉ ମାତ୍ର ଘଡ଼ିଏ ସମୟ; ଏଇ ଘଡ଼ିକ ମଧ୍ୟରେ, ଓଃ . . . ଏତେ କମ୍ ସମୟ ମଧ୍ୟରେ ମୋତେ ଜୀବନର ଶେଷନିଷ୍ପତ୍ତି ନେବାକୁ ପଡ଼ିବ; ଦେବଯାନୀର ଦାସୀ ହେବି, ନା . . .। ପିତାଙ୍କର ପତ୍ର ଆଗରେ ପଡ଼ିଛି; ସେ ନିଜର ସ୍ନେହମୟୀ କନ୍ୟାକୁ ପ୍ରଥମଥର ଲାଗି ପତ୍ର ଲେଖିଛନ୍ତି; ଆଜିଯାଏ ତାଙ୍କର ଅଲିଅଳ 'ଶମା' ତାଙ୍କୁ ଛାଡ଼ି କୁଆଡ଼େ ଦୂରକୁ ଯାଇ ନାହିଁ; ତା'ହେଲେ . . . ପତ୍ର ଦେବା ଭଳି ଅବସର ତାଙ୍କୁ ମିଳିଲା କେଉଁଠି ? ନା . . . ଆଜି ତାଙ୍କୁ ଅବସର ମିଳିଛି, ଅତି ଅଦ୍ଭୁତ ଭାବରେ। ରାଜମହଲର ସେ ପଟରେ ପିତା ଅଛନ୍ତି, ଆଉ ମୁଁ ଅଛି ଏ' ପଟେ। ଆମେ ପରସ୍ପର ଏତେ ନିକଟରେ ଥିଲେ ମଧ୍ୟ ସେ ବାଧ୍ୟହୋଇ ପତ୍ର ଲେଖିଛନ୍ତି। ମନେହୁଏ, ପୂର୍ବଜନ୍ମ-ପାପର ଫଳ ଭୋଗିବା ଲାଗି ଆଜି ଏ ପ୍ରସଙ୍ଗ ଆସି ଉପସ୍ଥିତ ହୋଇଛି।

ଆଜି ବସନ୍ତୋତ୍ସବର ପ୍ରଥମଦିନ . . . ଆଜିର ସୂର୍ଯ୍ୟୋଦୟ ସବୁଦିନ ପରି ଗବାକ୍ଷମାର୍ଗ ଦେଇ ମୋ ଉପରେ କେଶର ବିଞ୍ଚିଦେଇ ମୋତେ ଉଠାଇଦେଇଛି। ଶେଯରେ ଶୋଇ ଶୋଇ ବାଳସୂର୍ଯ୍ୟର ସ୍ୱର୍ଣ୍ଣିମ ଛଟା ମନପୂରାଇ ଦେଖୁ ଦେଖୁ ମୁଁ ଲାଜରେ ଝାଉଁଳିପଡ଼ିଛି। ମନେହେଲା, ଏଇ ଅରୁଣ ହେଉଛି ବିବାହମଣ୍ଡପ ହୋମକୁଣ୍ଡର ପ୍ରଥମ ସ୍ଫୁଲିଙ୍ଗ ! ତା'ପରେ ପୁଣି ରାତିରେ ଶୋଇବାକୁ ଗଲାବେଳେ ମାଆର ମଧୁର ପରିହାସ . . . ନା . . . ନା . . . ନା . . . ପରିହାସ ନୁହେଁ, ଅନ୍ତରର କାମନା ମନେପଡ଼ିଗଲା। ସ୍ନେହରେ ମୋ ପିଠି ଆଉଁଷୁଥିବାବେଳେ କହିଲେ– ''ମାଆ ଯା'ହେଉ ଏ ଯୁଦ୍ଧ ବନ୍ଦହୋଇଯାଇ ଖୁବ୍ ଭଲହୋଇଛି। ଏଥର ଆର୍ଯ୍ୟାବର୍ତ୍ତର କୌଣସି ଗୁଣବାନ୍ ରାଜାଙ୍କ ହାତରେ . . . ଶୁଣିଛି ହସ୍ତିନାପୁରର ରାଜା ଯଯାତି ଅତ୍ୟନ୍ତ ବୀର, ଗୁଣବାନ୍ ତଥା ସୁନ୍ଦର। ପିଲାଦିନେ ସେ ଅଶ୍ୱମେଧ ଘୋଡ଼ା ନେଇ ଦିଗ୍‌ବିଜୟରେ ବାହାରିଥିଲେ। ମୋ ଲହୁଣୀପିତୁଳା ଲାଗି ସେ ଉପଯୁକ୍ତ ବର।''

ମା'ଙ୍କର କଥା ଶୁଣି ମୁଁ ଲାଜରେ ସଢ଼ିଯାଇ, ମୁହଁ ଢାଙ୍କିଦେଇ ଶୋଇପଡୁପଡୁ କହିଲି, ''ଯା . . . ଆ . . . ମାଆ . . . ତୋର କ'ଣ ଆଉ କିଛି କାମ ନାହିଁ?'' କିନ୍ତୁ ରାତିସାରା ସେହି ମଧୁର ସ୍ୱପ୍ନର ଦୋଳିରେ ମନମଉଜରେ ଝୁଲୁଥିଲି। ଝୁଲୁଝୁଲୁ ମୁଁ ଏକାବେଳେ ଯାଇ ପହଞ୍ଚିଗଲି ହସ୍ତିନାପୁରରେ ମହାରାଜ ଯଯାତିଙ୍କର ପାଟରାଣୀ ହୋଇ।

ଠିକ୍ ଅରୁଣୋଦୟ ସମୟରେ ମୋ ନିଦ ଭାଜିଗଲା; କିନ୍ତୁ ରାତ୍ରିର ସେଇ ମନମତାଣିଆ ସ୍ୱପ୍ନର ମାଦକତା ମୋତେ କେଇ ମୁହୂର୍ତ୍ତକ ଆନନ୍ଦରେ ବିଭୋର କରିଦେଲା। ଓଃ . . . ଜୀବନ କେଡ଼େ ଭୀଷଣ ! ପରସ୍ପର କେତେ ବିରୋଧପୂର୍ଣ୍ଣ !

ସ୍ୱପ୍ନ ତୁଳନାରେ ସତ୍ୟ କେଡ଼େ କଠୋର ! କେଡ଼େ ନିର୍ଦ୍ଦୟ ! ଆଜିର ସୂର୍ଯ୍ୟ ପ୍ରାଚୀଗଗନରୁ ବାହାରି ପ୍ରତୀଚୀ ଆଡ଼କୁ ଖୁବ୍ ବେଶି ଝୁଙ୍କିପଡ଼ିନାହାନ୍ତି; ଅଥଚ ମୋତେ ହସ୍ତିନାପୁର ଯିବା ଲାଗି ପ୍ରସ୍ତୁତ ହେବାକୁ ପଡ଼ିଛି, ସେଇ ମହାରାଜା ଯଯାତିଙ୍କ ରାଜପ୍ରାସାଦକୁ– କିନ୍ତୁ ମହରାଣୀ ଭାବରେ ନୁହେଁ; ପାଟରାଣୀଙ୍କର ପଦସେବିକା ଦାସୀ ରୂପେ !

ସକାଳେ ଜଳକ୍ରୀଡ଼ାବେଳେ ମୋ ମୁହଁରୁ କି ଅପଶବ୍ଦ ବାହାରିଗଲା ! ବାସ୍ତବିକ ସେପରି ଶବ୍ଦ ବାହାରିବା ଉଚିତ୍ ନୁହେଁ। ଦେବଯାନୀର ମନରେ ଅଶେଷ ଦୁଃଖ ହେଲାପରି ମୁଁ କହିଛି; କିନ୍ତୁ ମୁଁ କ'ଣ କରିବି ? ମନ, ଜିଭ, ବୁଦ୍ଧି ଏସବୁ କିଛି ମୋର ଆୟତ୍ତରେ ନଥିଲେ। ମୁଁ ପିଲାଦିନରୁ ବରାବର ଦେଖିଆସୁଛି, ଦେବଯାନୀ ମୋତେ ପଦେ ପଦେ ଅପମାନ ଦେବାଲାଗି ଚେଷ୍ଟା କରିଆସିଛି। ସେ ମୋ ପରି ରାଜଜେମା ନ ହୋଇ ଋଷିକନ୍ୟା ଭାବରେ ଜନ୍ମହେବାରେ ମୋର କ'ଣ ଦୋଷ ? କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ସେ ମୋଠାରୁ ଶ୍ରେଷ୍ଠ ବୋଲି ପ୍ରମାଣିତ କରିବାକୁ ଜିଦ୍ ଧରିଛି।

ଆମେ ଦୁହେଁ ଆଠ ବର୍ଷ ବୟସର ହୋଇଥାଉଁ; ବସନ୍ତୋତ୍ସବରେ ଅଭିନୟ ଲାଗି ଗୁରୁଦେବ ଆମକୁ ଦୁଇଟି ଭୂମିକା ଦେଇଥିଲେ। ସେ ଭୂମିକାରେ ମୋତେ ପ୍ରକୃତି ରାଣୀ ଓ ଦେବଯାନୀକୁ ଫୁଲରାଣୀ ଅଭିନୟ କରିବାକୁ ବଛାଗଲା। ଦେବଯାନୀ ଦେଖିବାକୁ ମୋ ତୁଳନାରେ ସୁନ୍ଦର ଏବଂ ସେ ମଧ ଭଲ ନାଚିପାରୁଥିଲା; ତେଣୁ ତାକୁ ଫୁଲରାଣୀର ଭୂମିକା ଦିଆଯାଇଥିଲା। ସେ ଅଭିନୟରେ ଥିଲା, ପ୍ରଥମେ କଳିକା ନୃତ୍ୟ, ତା'ପରେ ଅର୍ଦ୍ଧବିକସିତ ପୁଷ୍ପର ନୃତ୍ୟ ଏବଂ ଶେଷରେ ପୂର୍ଣ୍ଣବିକସିତ ପୁଷ୍ପର ନୃତ୍ୟ। ବନରାଣୀ ଭୂମିକାରେ କୌଣସି ନୃତ୍ୟ ନଥିଲା ଏବଂ ଭୂମିକାରେ ଫୁଲରାଣୀ ଅପେକ୍ଷା ପ୍ରକୃତିରାଣୀର ବେଶ-ପୋଷାକ ଓ ସମ୍ମାନ ଆଦି ଟିକିଏ ଅଧିକ ଥିଲା। ସେଥିପାଇଁ ଦେବଯାନୀ ପ୍ରକୃତିରାଣୀ ଭୂମିକାରେ ଅଭିନୟ କରିବାକୁ ଖୁବ୍ ଜିଦ୍ ଧରି ବସିଲା। ଶେଷକୁ ଗୁରୁଦେବ ପ୍ରକୃତିରାଣୀ ଭୂମିକାରେ ନୃତ୍ୟର ବ୍ୟବସ୍ଥା କଲେ। ଫୁଲରାଣୀ ଭୂମିକାରେ ମୁଁ ଆଦୌ ନୃତ୍ୟ କରି ପାରିଲି ନାହିଁ; ତେଣୁ ସମୁଦାୟ ଅଭିନୟଟି ଫସରଫାଟିଗଲା।

ପନ୍ଦର ଷୋହଳ ବର୍ଷ ବେଳର କଥା; ସେଥର ସମ୍ଭ୍ରାନ୍ତ ବଂଶର କନ୍ୟାମାନଙ୍କ ଲାଗି ବିଶେଷ ପୁରସ୍କାରର ଆୟୋଜନ କରାଯାଇଥିଲା। ନୃତ୍ୟ, ଗୀତ, ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ଦେବଯାନୀ ପ୍ରଥମ ପୁରସ୍କାର ପାଇଲା; କେବଳ କାବ୍ୟ ଆବୃତ୍ତିରେ ମୁଁ ପ୍ରଥମ ହେଲି। ତା'ପରେ ଆଉ ଦେବଯାନୀକୁ ସମ୍ଭାଳେ କିଏ ? ରାଗି, ରୁଷି, କାନ୍ଦି ଉଚ୍ଛନ୍ନ ହୋଇ କହିଲା– "ମୋ ପିତା ତ୍ରିଭୁବନରେ ଶ୍ରେଷ୍ଠ ମହର୍ଷି ଓ କବିରୂପେ ପ୍ରଖ୍ୟାତ। ମୋ କାବ୍ୟ-ଆବୃତ୍ତି ନିଶ୍ଚୟ ଭଲହେବ। ସେ ରାଜକୁମାରୀ ବୋଲି ପରୀକ୍ଷକମାନେ ତାକୁ ଜାଣିଶୁଣି ପ୍ରଥମ କରିଛନ୍ତି। ଶେଷକୁ ସେହି ପୁରସ୍କାରଟିକୁ ଆମ ଦୁହିଁଙ୍କ ମଧ୍ୟରେ ବାଣ୍ଟିଦିଆଯିବାରୁ, ଦେବଯାନୀର କ୍ରୋଧ ଶାନ୍ତହେଲା। ମୋତେ କେବଳ ଚିତ୍ରକଳାରେ ପ୍ରଥମ ପୁରସ୍କାର ମିଳିଥିଲା; କାରଣ ଦେବଯାନୀକୁ ଆଦୌ ତୂଳୀ ଧରି ଆସୁନଥିଲା।

ତା'ର ବାପା ଦାନବକୁଳର କଲ୍ୟାଣ ଲାଗି ତପସ୍ୟା କରି ସଞ୍ଜୀବନୀ ବିଦ୍ୟା ଲାଭକରିଥିବାରୁ, ମୋ ପିତା ତାଙ୍କୁ ଖୁବ୍ ସମ୍ମାନ କରୁଥିଲେ। ସେହି ହେତୁରୁ ସେ ଦେବଯାନୀକୁ ଅସନ୍ତୁଷ୍ଟ କରିବାକୁ ଆଦୌ ଚାହୁଁ ନଥିଲେ; ତେଣୁ ମୋତେ ପିତାଙ୍କ ନୀତି ଅନୁସାରେ ଚଳିବାକୁ ପଡୁଥିଲା।

ଏପରି ଦୁଇ ଚାରିଟି ଘଟଣା ନୁହେଁ; ତା' ଅହଂକାରପୂର୍ଣ୍ଣ ମନୋଭାବର ବହୁ ଘଟଣା ମୋର ମନେଅଛି। ତା'ଫଳରେ ମୁଁ ବହୁ ମନସ୍ତାପ ଭୋଗିଛି। ସକାଳେ ସେ ମୋ ପିନ୍ଧିଲା ଲୁଗାଟାକୁ ଟାଣି ଝିଙ୍କି ମୋତେ ପ୍ରାୟ ଉଲଗ୍ନ କରିବାକୁ ବସିଥିଲା; ତେଣୁ ଅତୀତର ସବୁଯାକ ମନସ୍ତାପ ପୁଞ୍ଜୀଭୂତ ହୋଇ ଏକାଥରକେ ବାହାରିପଡ଼ିଲା। କିନ୍ତୁ ଆଜି ସେ ଦୁଃଖର କାହାଣୀ କାହା ଆଗରେ ବଖାଣିବି? କାହାକୁ ବୁଝାଇବି ମୋ ମନର ବେଦନା?

ମୋ ମୁହଁରୁ ଦୁଇ-ଚାରିଟା ମର୍ମଜଳା କଥା ନିଶ୍ଚୟ ବାହାରିଯାଇଛି। ମାଆ କହୁଥିଲା– ସେ ଲୁଗାଟି ପ୍ରକୃତରେ ଦେବଯାନୀର। ସେଇଥିଲାଗି ସାରା ଜୀବନ ଦୁଃଖରେ ଜଳିପୋଡ଼ି ମରିବାଲାଗି ମୁଁ ପ୍ରସ୍ତୁତ ହେଉଛି। ଗୋଟିଏ ମାତ୍ର ଅପରାଧ ଲାଗି ଅଲିଅଳ ରାଜଜେମା ଦାସୀ ହେବାକୁ ଯାଉଛି। ମୁଁ ଦାସୀ ହୋଇ ଯିବି? ଶର୍ମିଷ୍ଠା ଦାସୀ ହୋଇ ଯିବ? ଦିନରାତି ପୂଜାପାଠରେ ବସିରହୁଥିବା ଗୋଟିଏ ପାଷାଣ ମୂର୍ତ୍ତିର ଦାସୀ ହୋଇ ରହିବି? ନା . . . ଯା' କେବେହେଲେ ସମ୍ଭବ ନୁହେଁ।

ସେ ଶାଢ଼ୀଟି କଚ ତାକୁ ଉପହାର ଦେଇଥିଲା। ମୁଁ ତାକୁ ପିନ୍ଧି ଭୁଲ୍ କରିଛି। ଏପର୍ଯ୍ୟନ୍ତ ମୁଁ ସେଇ ଶାଢ଼ିଟିକୁ ପିନ୍ଧିଛି। ଯେଉଁ କଚ ଦେବଦାନବଙ୍କ ମଧ୍ୟରେ ଯୁଦ୍ଧ ବନ୍ଦକରିବାଲାଗି ନିଜ ଜୀବନକୁ ବିପଦାପନ୍ନ କରିଥିଲା, ତା'ରି ପ୍ରଦତ୍ତ ଉପହାର ଲାଗି ଏଡ଼େବଡ଼ ଦ୍ୱନ୍ଦ କାହିଁକି? ମାଆ କାହିଁକି ରାତିରେ ମୋ ଲୁଗାଟିକୁ ମୋତେ ଭଲକରି ଦେଖାଇ ରଖିଲେ ନାହିଁ? ମୋତେ କ'ଣ ଜଣାଥିଲା ଯେ ସେ ଲୁଗାଟି ମୋର ନୁହେଁ। ଓଃ . . . ରାଜଜେମା ହୋଇ ଜନ୍ମହେବା ହିଁ ମୋର ଭୁଲ। ସେଇଥିପାଇଁ ପ୍ରତ୍ୟେକ କାମ ଦାସୀମାନଙ୍କ ହାତରେ ଛାଡ଼ିଦେବାର ବଦ ଅଭ୍ୟାସ ପଡ଼ିଯାଇଥିଲା। ତାରି ଫଳ ଆଜି ମୁଁ ଭୋଗକରିବାକୁ ଯାଉଛି। ଦେବଯାନୀର ଏକାନ୍ତ ଜିଦ୍; ଶର୍ମିଷ୍ଠା ସାରା ଜୀବନ ତା'ର ଦାସୀ ହୋଇ ରହିବ।

କୁହାଯାଉଛି– ମୁଁ ତାକୁ କୂଅ ଭିତରକୁ ଠେଲିଦେଇଛି। ସେ ଜଙ୍ଗଲ ମଧ୍ୟରେ କଣ୍ଟାଖୁଣ୍ଟ କିଛି ନମାନି ପାଗଳୀଙ୍କ ପରି ଦୌଡ଼ିଲା; ତା' ଦେଖି ମୁଁ ଭାବିଲି– ଏ ଜିଦ୍‌ଖୋର ଝିଅଟା ହୁଏତ ଜୀବନକୁ ସଙ୍କଟରେ ପକାଇବା ଅସମ୍ଭବ ନୁହେଁ। ସେଥିପାଇଁ ତାକୁ ଧରିପକାଇ ବିପଦରୁ ରକ୍ଷାକରିବାଲାଗି, ମୁଁ ତା' ପଛେ ପଛେ ଦୌଡ଼ିଲି। କିନ୍ତୁ କୁହାଯାଉଛି ଯେ, ମୁଁ ତାକୁ ଜୀବନରୁ ମାରିଦେବାଲାଗି ଚାହୁଁଥିଲି। ମୁଁ କ'ଣ ତାକୁ କୂଅ ଉପରକୁ ଘୋଷାରି ଘୋଷାରି ନେଇଥିଲି? ନା . . . ସେ ନିଜେ ଯାଇ କୂଅ ଫନ୍ଦରେ ଛିଡ଼ାହୋଇଥିଲା। ଆମ ଦୁହିଁଙ୍କ ଟଣାଓଟରା ମଧ୍ୟରେ ସେ ନିଜକୁ ସମ୍ଭାଳି ନପାରି କୂଅ ଭିତରେ ପଡ଼ିଗଲା– ଏବେ ସୁଦ୍ଧା ଠିକ୍ ଭାବରେ ମୋର ଏଇଆ ମନେପଡୁଛି। ଯା' ହୁଏତ ହୋଇପାରେ; ଆଜି ସୁଦ୍ଧା ମୋ ମନରେ

ଜମାଟ ବାନ୍ଧି ରହିଥିବା ଅସନ୍ତୋଷ ଫଳରେ ମୁଁ ତାକୁ କୂଅ ଭିତରକୁ ଠେଲିଦେଇଥିବି। କ୍ରୋଧର ବଶବର୍ତ୍ତୀ ହେଲେ ମଣିଷ ନିଜତ୍ୱ ହରାଇ କ୍ରୂର ହୋଇଉଠେ, ପଶୁ ହୋଇଯାଏ।

ସତରେ କ'ଣ ମୁଁ ନିଜତ୍ୱ ହରାଇ ବସିଥିଲି ? ମୋର କିଛି ହେଲେ ମନେପଡୁନାହିଁ। କଚ୍ କହୁଥିଲେ; ଦୁନିଆର ଭଲ-ମନ୍ଦ, ସତ୍ୟ-ଅସତ୍ୟ, ପାପ-ପୁଣ୍ୟର ସାକ୍ଷୀ ହେଉଛନ୍ତି ଦୁଇଜଣ– ଆତ୍ମା ଓ ପରମାତ୍ମା। ଆଜି ସକାଳେ ମୋର ଆତ୍ମା କ୍ରୋଧରେ ଅନ୍ଧ ହୋଇଯାଇଥିଲେ; କିନ୍ତୁ ପରମାତ୍ମା ? ଜାଣୁଛି, ସେ ସର୍ବାନ୍ତର୍ଯ୍ୟାମୀ। ତଥାପି ସେ କ'ଣ ନିରପରାଧ ଲାଗି ସାକ୍ଷୀ ଦେବାକୁ ଆସିବେ ? ସେ କେବେହେଲେ ଆସିବେ ନାହିଁ। ଯଦି ଆସନ୍ତେ; ତା'ହେଲେ ମୁଁ ତାଙ୍କୁ ପଚାରନ୍ତି, ଆଜି ଦେବଯାନୀ ଯେଉଁ ଜିଦ୍ ଧରିଛି ତା' ଆଗରେ ମୁଁ ମୁଣ୍ଡ ନୁଆଁଇବି ନା ନାହିଁ?

ବାପାଙ୍କ ଚିଠିଟି ଆଗରେ ପଡ଼ିଛି; ସେ ଲେଖିଛନ୍ତି– ''ମାଆରେ! ବାପ ହିସାବରେ ତୁ ଯଦି ମୋତେ ପ୍ରଶ୍ନ କରୁ, ମୁଁ କେବେହେଲେ ତୋତେ ଦାସୀ ହେବାଲାଗି ସ୍ୱୀକାର କରିବି ନାହିଁ। କିନ୍ତୁ ଏ ସଂସାରରେ ମଣିଷକୁ ଅନେକ ଦାୟିତ୍ୱ ତୁଲାଇବାକୁ ପଡ଼େ। ମୁଁ କେବଳ ତୋ ବାପା ନୁହେଁ, ଦାନବମାନଙ୍କର ରକ୍ଷକ, ରାଜା ମଧ। କଚ୍ ସଞ୍ଜୀବନୀ ବିଦ୍ୟା ଅପହରଣ କରିନେଇ ଆମର ସର୍ବସ୍ୱ ଲୁଟିନେଇଛି। ଏହି ପ୍ରତିକୂଳ ଅବସ୍ଥାରୁ ଉଦ୍ଧାର ପାଇବାପରେ ଦାନବକୁଳ ପୁଣି ଥରେ ମୁଣ୍ଡ ଟେକିବାକୁ ଚାହୁଁଛି; ତେଣୁ ଶୁକ୍ରାଚାର୍ଯ୍ୟଙ୍କୁ ଗୁରୁରୂପେ ବରଣ କରି ରଖିବା ଆମ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ। ସେ ଦେବଯାନୀକୁ ପ୍ରାଣରୁ ଅଧିକ ଭଲପାଆନ୍ତି; ତେଣୁ ସେ ଯେଉଁ ସର୍ତ୍ତ ଦେଇଛି ତାହା ପୂରଣ ନ ହେଲେ, ଗୁରୁଦେବ ନଗରରେ ପଦାର୍ପଣ କରିବେ ନାହିଁ। ତାଙ୍କ ବିନା ଦାନବକୂଳର ମାନମର୍ଯ୍ୟାଦା ସବୁକିଛି ଅଚିରେ ଧୂଳିରେ ମିଳାଇଯିବ। ଅନନ୍ତ ଆକାଶରେ ସ୍ୱଚ୍ଛନ୍ଦତାର ସହିତ ସଗର୍ବରେ ବିହାର କରିବାକୁ ଇଚ୍ଛା କରୁଥିବା ଦାନବମାନେ ଭୂଲୁଣ୍ଠିତ ହୋଇ କଦର୍ଯ୍ୟ ତୁଚ୍ଛ ଜୀବନ ଯାପନ କରିବେ।

''ଶମା, ତୁ ଦାସୀ ହୋଇ ଦେବଯାନୀ ସହିତ ଗଲେ ତୋର ଜୀବନ ଦୁଃଖମୟ ହୋଇଯିବ। ଓଃ... ବିଧାତାର କି କ୍ରୂର ପରିହାସ ? ମୋ ଶମା, ମୋ ପ୍ରାଣର ପିତୁଳା ଶମା... ଅନ୍ୟର ଦାସୀ ହୋଇ ଯିବ!! ନା... ନା... ମା' ଦାସୀ ବେଶରେ ତୋତେ ମୁଁ ଦେଖିବି ? ନା... ନା... ନା! ତୋତେ ଦାସୀରୂପେ ଦେଖିବା ତ ଦୂରର କଥା, ସେ ପ୍ରକାର କଳ୍ପନା ମଧ ଅସହ୍ୟ। ତା' ଅପେକ୍ଷା ବରଂ ମୁଁ ମୋର ନିଜ ହାତରେ ଆଖି ଫୁଟାଇଦେବା ଭଲ।

''ଶମା, ତୁ ଯଦି ଦେବଯାନୀର ସର୍ତ୍ତ ଅସ୍ୱୀକାର କରୁ, ମୁଁ କେବେହେଲେ ତୋ ଉପରେ ଅସନ୍ତୁଷ୍ଟ ହେବିନାହିଁ। ଈଶ୍ୱର ଶତ୍ରୁକୁ ମଧ୍ୟ ଏ ପ୍ରକାର ଦୁଶ୍ଚିନ୍ତାରେ ନ ପକାନ୍ତୁ; କିନ୍ତୁ ଝିଅରେ, ତୋର ଏ ହତଭାଗ୍ୟ ପିତାକୁ ଆଜି ସେହି ଦୁଶ୍ଚିନ୍ତା ବିବ୍ରତ କରୁଛି। ମୁଁ ତୋ'ରି ଆଗରେ ସବୁକଥା କହିପାରିଥାଆନ୍ତି; କିନ୍ତୁ... କିପରି... କେଉଁ ମୁହଁରେ... ନିଜେ ବାପ ହୋଇ...। ତୋ' ଆଗକୁ ଚାଲିଯାଇଥିଲେ ବି, ମୋ ମୁହଁରୁ ପଦଟିଏ ହେଲେ କିଛି ବାହାରିନଥା'ନ୍ତା। ଅପତ୍ୟ-ସ୍ନେହ ଆଗରେ କର୍ତ୍ତବ୍ୟ ନିଶ୍ଚୟ ପରାସ୍ତ ହୋଇଥା'ନ୍ତା।

''ଶମା, ମୋର ସ୍ନେହର ଅଲିଅଳ ଝିମା ଶମା ! ଭଗବାନ ଶଙ୍କର ତୋତେ ସଦ୍‌ବୁଦ୍ଧି ଦିଅନ୍ତୁ। ତୁ ନିଜର ମଙ୍ଗଳ ତଥା ତୋ' ଭବିଷ୍ୟତ ଜୀବନ ପ୍ରତି ଦୃଷ୍ଟିଦେଇ ଚିରଦିନ ସୁଖରେ ରହିବା ପାଇଁ ଯାହା ଭଲମନେକରୁଛୁ ସେହିପରି ଗୋଟିଏ ନିଷ୍ପତ୍ତି ଗ୍ରହଣକର।''

''ସମୟ ହୋଇଗଲା''– ଓଃ... ଏ କେଡ଼େ ମଧୁର ଶବ୍ଦ। ପିଲାଦିନରୁ ଶୁଣିଆସିଛି, ବିବାହମଣ୍ଡପରୁ ଉଠିବା ପରେ ପରେ ଏ କାବ୍ୟମୟ ସୁନ୍ଦର ଶବ୍ଦ କନ୍ୟାକୁ ଶାଶୂଘର ଉଦ୍ଦେଶ୍ୟରେ ଯିବାଲାଗି ଶୁଣିବାକୁ ପଡ଼େ। ପ୍ରଣୟୀ-ପ୍ରଣୟିନୀଙ୍କର ମିଳନ ମୁହୂର୍ତ୍ତ ମଙ୍ଗଳଲଗ୍ନ ଆସିଗଲା। କି ମଧୁର ସେ ଶବ୍ଦ! ଦାସ ପରିବାରୀମାନେ ସୂଚନା ଦିଅନ୍ତି, ମନ-ମୟୂର ଆନନ୍ଦରେ ନାଚିଉଠେ ଏ ପ୍ରୀତିଭରା ଶବ୍ଦ ଶୁଣିବାକୁ; କିନ୍ତୁ ଆଜି ଏ ଶବ୍ଦ ଶୁଣିବା ପୂର୍ବରୁ ମୋ ମନରେ ତୀବ୍ର ଯନ୍ତ୍ରଣା ଜାତହେଉଛି।

ଆଜି ଏ ଶବ୍ଦ ମୋ ପକ୍ଷରେ କର୍ଣ୍ଣକଟୁ ହୋଇଯାଇଛି। ମୁଁ ମନେ ମନେ ଭାବୁଛି, କାଳପୁରୁଷ ସମୟର ତୋଟି ଚିପିଧରନ୍ତା କି? ମୋ ଜୀବନରେ ଏ ଶବ୍ଦ ଶୁଣିବାଲାଗି ସମୟ ନ ଆସନ୍ତା କି? ଏଇ ଟିକିଏ ସମୟ ପରେ ମାଆ ଆସି ଆଖିର ଲୁହ ପୋଛି ମୋ ଆଗରେ ନୀରବରେ ଛିଡ଼ା ହୋଇ ରହିବ। ବାପା ମୋ'ଠାରୁ ଗୋଟିଏ ନିଶ୍ଚିତ ଉତ୍ତର ଶୁଣିବାକୁ ଅପେକ୍ଷା କରିଥିବେ। ହେ ଈଶ୍ୱର ! କି ଉତ୍ତର ଦେବି? ଆନନ୍ଦର ସହିତ ଦାସୀ ହେବାକୁ ରାଜିହୋଇଯିବି? ସେଇ ଦୁଷ୍ଟା ଦେବଯାନୀଟାର ଦାସୀ ହେବି? କିପରି ଏହା ମୋ ଜୀବନରେ ସମ୍ଭବ ହେବ? ଆଜିଯାଏ ଯେ ଅନ୍ୟ ହାତରେ ନିଜର ପାଦ ଧୁଆଉଥିଲା, ସେ କ'ଣ ଆଜି ଅନ୍ୟର ପାଦ ଧୋଇବାଲାଗି ପ୍ରସ୍ତୁତ ହୋଇପାରିବ? ହୀରା, ମୋତି, ମାଣିକ୍ୟର ଅଳଙ୍କାର ଓହ୍ଲାଇ ଦେଇ ଭିକାରିଣୀ ପରି ରହିବ? ସଦାସର୍ବଦା ଦାସଦାସୀଙ୍କୁ ଆଦେଶ ଦେବାରେ ଅଭ୍ୟସ୍ତ ରାଜକନ୍ୟା ମୁଁ– ଆଜି ଅନ୍ୟର ଆଦେଶ ମୁଣ୍ଡପାତି ସହ୍ୟ କରିନେବି? ଅନ୍ୟର ଭର୍ତ୍ସନାପୂର୍ଣ୍ଣ ବାକ୍ୟ ନୀରବରେ ସହିନେବି? ସ୍ୱାମିନୀ ଯାହା ନିଜ ଇଚ୍ଛାରେ ଅନୁକମ୍ପା ଦୟାକରିବେ, ତା'ରି ଉପରେ ଜୀବନ ନିର୍ବାହ କରିବି? ପ୍ରେମ, ସ୍ନେହ, ସ୍ୱାମୀସୁଖ, ବାତ୍ସଲ୍ୟମମତା ସବୁକିଛି ଛାଡ଼ି ଜୀବନକୁ ଶୁଷ୍କ ମରୁଭୂମିରେ ପରିଣତ କରିପାରିବି?

ନା... ନା... ମୁଁ ପିତାଙ୍କୁ କହିଦେବି... ଦେବଯାନୀର ଦାସୀ ହେବା ଅପେକ୍ଷା ମୁଁ ଯୋଗିନୀ, ସନ୍ନ୍ୟାସିନୀ ହୋଇ ଆଜୀବନ ଭିକ୍ଷା ମାଗି ଜୀବନ ନିର୍ବାହ କରିବି। ଦେବଯାନୀ ପ୍ରତିଶୋଧ ନେବାକୁ ଚାହୁଁଛି ତ; ଠିକ୍ ଅଛି। ଆପଣ ତାକୁ ଏଇଠାକୁ ଡକାଇପଠାନ୍ତୁ। ସେ ଆସିଯିବା ମାତ୍ରେ, ଆପଣ ଖଡ୍‌ଗ ଧରି ଗୋଟିଏ ଚୋଟରେ ଶର୍ମିଷ୍ଠାର ଗଣ୍ଡିରୁ ମୁଣ୍ଡ ଅଲଗା କରିଦିଅନ୍ତୁ। କିନ୍ତୁ ମନେରଖିବେ, ଯେପରି ମୋ କଟା ମୁଣ୍ଡଟି ମଧ୍ୟ ଦେବଯାନୀର ପାଦ ପାଖରେ ନପଡ଼େ। ପ୍ରାଣ ବାହାରିଗଲେ ମଧ୍ୟ ମୁଁ ଦାସୀଜୀବନ ବିତାଇ ପାରିବି ନାହିଁ। ସ୍ୱପ୍ନରେ ସୁଦ୍ଧା ଦେବଯାନୀର ଦାସୀ ହୋଇପାରିବି ନାହିଁ।

ମୁଁ ଚମକିଉଠିଲି... ଏ କି ଶବ୍ଦ... ଏ କ'ଣ ସେଇ ସମୟସୂଚକ ଶବ୍ଦ?

ଘଣ୍ଟା ପୁଣି ବାଜିଉଠିଲା । ମୁଁ ଦ୍ୱାର ଆଡ଼କୁ ଭୟରେ ଚାହିଁଲି । ନା ... ଦ୍ୱାର ଖୋଲିଲା ନାହିଁ କିମ୍ବା ମାଆ ଭିତରକୁ ଆସିଲେ ନାହିଁ । ଯା'ହେଉ, ଟିକିଏ ଆଶ୍ୱସ୍ତ ହେଲି । ପୁଣି ମୁହଁ ତଳକୁ କରି ଚିନ୍ତାକରିବସିଲି । ଚିନ୍ତା ... ଚିନ୍ତା ... କେବଳ ଗୋଟିଏ ମାତ୍ର ଚିନ୍ତା । କଳିଜାରେ ମୁଗୁରର ପାହାର ବାଜିଲା ପରି ବ୍ୟଥା, ମୁଣ୍ଡରେ କି ଦାରୁଣ ଯନ୍ତ୍ରଣା ! ଓଃ ... ଈଶ୍ୱର ଏସବୁ କାହିଁକି ...? ମୁଁ ଭୁଲରେ ଦେବଯାନୀର ଲୁଗାଖଣ୍ଡିକ ପିନ୍ଧିଦେଇଥିଲି; ସେଇଥିପାଇଁ ତ ? କଚ୍‌ର ଉପହାର ବସ୍ତ୍ର, ସେଇ ସୁନ୍ଦର ରେଶମୀ ବସ୍ତ୍ର ! ଭୁଲରେ – ବାପାଙ୍କ ରାଣ ପକାଇ କହୁଛି ଭୁଲରେ ପିନ୍ଧିଦେଇଥିଲି ।

ତା'ହେଲେ କ'ଣ ଏଇ ବିଲକ୍ଷଣ ଦୁର୍ଯ୍ୟୋଗ ଲାଗି ପରମାତ୍ମାଙ୍କ ସଙ୍କେତ ରହିଛି ? ସଞ୍ଜୀବନୀ ବିଦ୍ୟାର ଅପହରଣ ଲାଗି କଚ୍ ଏଠାକୁ ଆସିଥିଲା । ସେ ଥିଲା ଆମ କୁଳର ଶତ୍ରୁ ତଥାପି ତା'ର ଆଚରଣ, ଶ୍ରଦ୍ଧା, ତ୍ୟାଗ, ବିଦ୍ୟା, ବୁଦ୍ଧି ସବୁ କିଛି ଦେଖିବା ପରେ, ମୁଁ ତାକୁ ମନେ ମନେ ପୂଜାକରୁଥିଲି । ଅନେକ ଥର ମନରେ ଭାବନା ଜାଗିଛି; ଏଭଳି ଗୋଟିଏ ବଡ଼ଭାଇ ମୋର ଥାଆନ୍ତା କି – ତା'ହେଲେ ମୁଁ କେଡ଼େ ଭାଗ୍ୟଶାଳିନୀ ହୋଇନଥାନ୍ତି ? ମୋର ସ୍ୱଭାବ ଚରିତ୍ର କେତେ ପରିବର୍ତ୍ତନ ହୋଇଯାଇନଥାନ୍ତା ?

ଦେବଯାନୀ ମୋତେ ଗୋଡ଼େ ଗୋଡ଼େ ଜଗିଥାଏ; କେତେବେଳେ ହେଲେ ପଦେ ମନ ଖୋଲି କଥା କହିବାର ସୁଯୋଗ ଦିଏନାହିଁ କିମ୍ବା ତା' ଡରରେ ମୁଁ କେବେହେଲେ ତା' ସହିତ ଭଲ ବ୍ୟବହାର ବି କରିବାର ସୁଯୋଗ ପାଇନି । ମୁଁ ଜାଣେନି; ସେ କାହିଁକି ମୋ ଉପରେ ହାଡ଼େ ହାଡ଼େ ଜଳିଯାଉଥିଲା । କିନ୍ତୁ କଚ୍ ଆଡ଼କୁ ଥରେ ମାତ୍ର ଚାହିଁଦେଲେ, ମୋ ଆତ୍ମା ପରିତୃପ୍ତ ହୋଇଉଠୁଥିଲା । ସେ ମୋ ଆଡ଼କୁ ଚାହିଁ ଓଠଫାଙ୍କରେ ମୃଦୁ ହସଟିଏ ଆଙ୍କିଦେଲେ, ମୋ ହୃଦୟକାନନ ପଲ୍ଲବି ଉଠୁଥିଲା । ଆମ ମଧ୍ୟରେ ଯେତେବେଳେ କିଛି ଆଲୋଚ୍‌ନା ହେଉଥିଲା, ମୁଁ ଅନେକ ଦିନ ପର୍ଯ୍ୟନ୍ତ ସେହି କଥା ବରାବର ମନେ ମନେ ଭାବୁଥିଲି ।

ରାକ୍ଷସମାନେ ତାକୁ ଘୋର ଯନ୍ତ୍ରଣା ଦେଇ କେତେଥର ହତ୍ୟା କରିଛନ୍ତି । ପ୍ରତ୍ୟେକଥର ଜୀବନ ପାଇବା ପରେ ସେ ହସି ହସି ମୋ ଆଗରେ ଆସି କହିଛି – "ରାଜଜେମା, କୌଣସି ବସ୍ତୁ ଦୂରରୁ ଯେତେ ଭୟଙ୍କର ଦିଶେ, ପ୍ରକୃତରେ ତାହା ସେତେ ଭୟାବହ ନୁହେଁ । ମୃତ୍ୟୁ ମଧ୍ୟ ଠିକ୍ ସେଇଆ । ମୁଁ ଏହା ମୋ ନିଜ ଅନୁଭୂତିରୁ କହୁଛି ।" ଏତିକି କହିସାରି ସେ ହୃଦୟ ଖୋଲି ହସିଦେଇ ଏଡ଼େ ବଡ଼ ଭୟଙ୍କର ପରିସ୍ଥିତିକୁ ହସରେ ଉଡ଼ାଇଦିଏ ।

ତା'ର ଏ ଭବିଷ୍ୟତ-ବାଣୀର ଉଦ୍ଦେଶ୍ୟ କ'ଣ ଥିଲା ? ସେ କ'ଣ ମୋର ଭବିଷ୍ୟତ ଜାଣିଥିଲା ? ମୋ ପକ୍ଷରେ ଦାସୀ ହେବା ମୃତ୍ୟୁ ନୁହେଁ ତ ଆଉ କ'ଣ ? ମଣିଷର ଅଭିମାନର ମୃତ୍ୟୁ ... ତା'ର ବଡ଼ପଣିଆର ମୃତ୍ୟୁ । ରାଜବଂଶରେ ଜନ୍ମ ହୋଇଥିବାରୁ ଦାସୀ ହେବାକୁ ମୁଁ ଭୟକରୁଛି । କୌଣସି ଗୋଟିଏ ଦାସୀର କୋଳରେ ଜନ୍ମହୋଇଥିଲେ, ମୁଁ ଆନନ୍ଦରେ ଦାସୀ ଜୀବନ ବିତାଇ ନ ଥା'ନ୍ତି କି ? ସେଇ କାମରେ ଆନନ୍ଦ ପାଇପାରୁନଥା'ନ୍ତି କି ? ସଂସାରରେ କ'ଣ ସବୁ

ଝିଅ ରାଜକନ୍ୟା ଭାବରେ ସୁଖଭୋଗ କରୁଛନ୍ତି? ଜାତି ଉପରେ ଦୋଷ-ଗୁଣର ପ୍ରଭାବ ପଡ଼େନାହିଁ। କଚ ବ୍ରାହ୍ମଣ ଏବଂ ଦେବଯାନୀ ମଧ୍ୟ ବ୍ରାହ୍ମଣ ଜାତିର କନ୍ୟା; କଚର ଗୋଟିଏ ହେଲେ ଗୁଣ କ'ଣ ଦେବଯାନୀ ପାଖରେ ଅଛି? ନା...। କୁଳ, ଗୋତ୍ର, ବଂଶ ସହିତ ସ୍ୱଭାବର କିଛି ହେଲେ ସମ୍ପର୍କ ନାହିଁ। ଗୋଟିଏ ରାଜକନ୍ୟା ଦୁଷ୍ଟା ଏବଂ ଦାସୀର ପୁତ୍ରୀ ସରଳା ହୋଇପାରେ।

ବ୍ରାହ୍ମଣକୁମାର କଚ ସଞ୍ଜୀବନୀ ବିଦ୍ୟା ଲାଗି ଦାନବପୁରୀକୁ ଆସିବା ସମୟରେ କି ବୀରତ୍ୱ ପ୍ରଦର୍ଶନ କରି ନଥିଲା? ସେ ନିଜର ସାହସଦ୍ୱାରା ସମସ୍ତ କ୍ଷତ୍ରିୟ ସମାଜକୁ ପରାଭୂତ କରିପାରିଥିଲା। ଦାନବମାନେ ତାକୁ ବାରମ୍ବାର ହତ୍ୟା କରିଛନ୍ତି, ତା' ଉପରେ ନିର୍ମମ ଅତ୍ୟାଚାର କରିଛନ୍ତି; କିନ୍ତୁ ସେ ନିର୍ଭୀକ, ସେ ଟିକିଏ ହେଲେ ସଙ୍କୋଚ ସୁଦ୍ଧା କରିନାହିଁ। ସଞ୍ଜୀବନୀ ବିଦ୍ୟା ଲାଭକରିବା ପର୍ଯ୍ୟନ୍ତ ସେ ନିର୍ଭୟରେ ଏଠାରେ ରହିଥିଲା। ଏ ଲୁଗା ଖଣ୍ଡିକ... ବୋଧହୁଏ ମୋତେ ଉପହାର ଦେବା ପରିବର୍ତ୍ତେ ଭୁଲରେ ଦେବଯାନୀକୁ ଦେଇଯାଇଛି। ତା'ର ଏଇ ଉପହାରକୁ ସାରା ଜୀବନ ସାଇତି ରଖିବାକୁ ହେବ। କଚର ସ୍ମୃତି ମୋତେ ଏଇ ବିପଦରୁ ନିଶ୍ଚୟ ଉଦ୍ଧାର କରିବ।

ଆଜି ସୁଦ୍ଧା ବିପଦ କାହା ଉପରେ ପଡ଼ିନାହିଁ? ଦେଖିବାକୁଗଲେ ସାଧୁସନ୍ଥମାନେ ହିଁ ବିପଦର ସମ୍ମୁଖୀନ ହୋଇଥା'ନ୍ତି। କଚ କେଡ଼େ ସଜ୍ଜନ, ନିଃସ୍ୱାର୍ଥପର, ବୁଦ୍ଧିମାନ୍ ନଥିଲା– ତଥାପି ତାକୁ କ'ଣ କମ୍ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା? କିନ୍ତୁ ଦେବଯାନୀଠାରୁ ଅଭିଶାପ ପାଇସାରିବା ପରେ ମଧ୍ୟ, ସେ ହସ ହସ ମୁହଁରେ ମୋ ପାଖକୁ ବିଦାୟ ନେବାପାଇଁ ଆସିଥିଲା। ତା' ମନରେ ଟିକିଏ ହେଲେ ଦୁଃଖ ନଥିଲା। ପ୍ରଣୟିନୀଠାରୁ ତିରସ୍କୃତ ହୋଇଥିଲେ ଧ୍ରୁବା ତା' ମୁଖମଣ୍ଡଳରେ ସେଇ ସ୍ୱଭାବସୁଲଭ ହସ ଛାଇରହିଥିଲା।

ମୁଁ ଆଉ ନିଜକୁ ସମ୍ଭାଳି ନ ପାରି କହିଲି– "ବିବାହ କରି ତୁମେ ଦୁହେଁ ଦେବଲୋକ ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ, ମୁଁ ତୁମକୁ ଆନନ୍ଦରେ ବିଦାୟ ଦେଇଥା'ନ୍ତି। କିନ୍ତୁ..."

ସେ ପ୍ରଶାନ୍ତ ମୁଖମଣ୍ଡଳରେ ହାସ୍ୟରେଖା ଖେଳାଇ ଶାନ୍ତସ୍ୱରରେ କହିଲା– "ରାଜଜେମା, ଜୀବନ କେବେହେଲେ ପରିପୂର୍ଣ୍ଣ ନୁହେଁ। ସେହି ଅପୂର୍ଣ୍ଣତାରେ ହିଁ ତା'ର ଆକର୍ଷଣ ରହିଛି।"

ଦାର୍ଶନିକତାର ଦୃଷ୍ଟିକୋଣରୁ ବିଚାରକଲେ ବୋଧହୁଏ ତା'ର କଥନ ସତ୍ୟ; କିନ୍ତୁ ଅନେକ କାବ୍ୟରେ ପଢ଼ିଛି; ପ୍ରଣୟଭଙ୍ଗଠାରୁ ଅଧିକ ଦୁଃସହ ଦୁଃଖ ଆଉ କିଛି ନାହିଁ। ସେହି କାବ୍ୟଗୁଡ଼ିକ ପଢ଼ିବା ସମୟରେ ମୁଁ କେତେ ନ କାନ୍ଦିଛି? ଶେଷକୁ ମୁଁ କହିଲି, "ଏପରି ପ୍ରଣୟ-ଭଙ୍ଗ ହେବାଠାରୁ ବରଂ କାହାରି ପ୍ରେମରେ ନ ପଡ଼ିବା ହିଁ ଭଲ। କ'ଣ ତୁମେ କହୁଛ କଚଦେବ?"

ସେ ହସି ହସି ଉତ୍ତରଦେଲେ, "ନା... ପ୍ରେମ ମନୁଷ୍ୟକୁ ଏକ ଦିବ୍ୟାଲୋକକୁ ଘେନିଯାଏ; ତା' ଫଳରେ ଦୃଷ୍ଟିକୋଣ ଭିନ୍ନ ହୋଇଥାଏ। ମଣିଷ ପ୍ରତି ହେଉ

କିମ୍ବା ଯେକୌଣସି ବସ୍ତୁ ପ୍ରତି ହେଉ, ପ୍ରେମରେ ଆନ୍ତରିକତା ରହିବା ଏକାନ୍ତ ଆବଶ୍ୟକ। ତାହା ହୃଦୟର ଗଭୀରତମ ପ୍ରଦେଶରୁ ଜାତହେବା ଉଚିତ। ସେ ପ୍ରେମ ମଧ୍ୟରେ ନଥାଏ; ଛନ୍ଦ, କପଟ, ଲୋଭ କିମ୍ବା ସ୍ୱାର୍ଥପରତା। ରାଜଜେମା, ପ୍ରକୃତ ପ୍ରେମ ନିଃସ୍ୱାର୍ଥପରତା ଏବଂ ନିରପେକ୍ଷତା ଉପରେ ପ୍ରତିଷ୍ଠିତ। ସେପ୍ରକାର ପ୍ରେମ ଗୋଟିଏ ଫୁଲ ପ୍ରତି, ପ୍ରଣୟୀ କିମ୍ବା ପ୍ରଣୟିନୀ ପ୍ରତି ହେଉ ଅଥବା ବଂଶ, ଜାତି, ରାଷ୍ଟ୍ର ପ୍ରତି ହେଉ; ନିଃସ୍ୱାର୍ଥ, ନିରହଙ୍କାର ଏବଂ ନିରପେକ୍ଷ ପ୍ରେମ ବିକଶିତ ଆତ୍ମାର ପ୍ରଥମ ସୋପାନ। ଏ ପ୍ରକାର ପ୍ରେମ କେବଳ ମନୁଷ୍ୟ ପକ୍ଷରେ ହିଁ ସମ୍ଭବ।''

ସେ ସମୟରେ କଚ୍‌ଦେବଙ୍କ କଥାଗୁଡ଼ିକ ମୁଁ ଭଲଭାବରେ ହୃଦୟଙ୍ଗମ କରିପାରିନଥିଲି; କିନ୍ତୁ ସେ ଯେପରି ଆତ୍ମୀୟତାର ସହିତ କଥାଗୁଡ଼ିକ କହିଥିଲେ, ତା' ମୋତେ ଖୁବ୍ ଆନନ୍ଦ ଦେଇଥିଲା। ମୁଁ ସେଗୁଡ଼ିକୁ ମୋର ହୃଦୟପଟରେ ଲେଖିରଖିଥିଲି। ଅନେକଥର ନିରୋଳାରେ ବସି ମୁଁ ସେଗୁଡ଼ିକୁ ଆବୃତ୍ତି କରିଛି। କିନ୍ତୁ ଏବେ ମୁଁ ତା'ର ଅର୍ଥ ବୁଝୁଛି।

ସେଦିନ ଅବଶ୍ୟ କଚ୍ ଯିବାଲାଗି ଖୁବ୍ ବ୍ୟସ୍ତ ଥିଲେ। ସେହି ବ୍ୟସ୍ତତା ମଧ୍ୟରେ ସେ ମୋତେ କହିଲେ, ''ଶର୍ମିଷ୍ଠା, ଦେବଯାନୀ ଓ ମୋ ମଧ୍ୟରେ ପ୍ରେମ ସଫଳ ହେଲାନାହିଁ; ଏଥିଲାଗି ତୁମେ ଦୁଃଖକରନାହିଁ। ମୁଁ ସଫଳ ପ୍ରେମିକ ହୋଇପାରିନଥିଲେ ମଧ୍ୟ ପ୍ରେମ କ'ଣ, ତା' ବେଶ୍ ଅନୁଭବ କରିପାରିଲି ତ ! ସେହି ସ୍ମୃତିକୁ ମୁଁ ସାରା ଜୀବନ ହୃଦୟର ନିଭୃତ କୋଣରେ ସାଇତି ରଖିପାରିବି। ଦେବଯାନୀ ତୁମର ସଖୀ; କିନ୍ତୁ ସେ ଅତ୍ୟନ୍ତ ଜିଦ୍‌ଖୋର, କ୍ରୋଧଶୀଳା ଓ ଅହଂକାରିଣୀ। ତା'ର ପ୍ରତ୍ୟେକଟି ଦୋଷକୁ ମୁଁ ଭଲଭାବରେ ଜାଣିଛି। ମୁଁ କେବଳ ତା'ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଅନ୍ଧଭାବରେ ତାକୁ ଭଲପାଉନଥିଲି। ପ୍ରିୟ ବ୍ୟକ୍ତିର ଦୋଷଗୁଡ଼ିକ ସହ୍ୟ କରିବା ଲାଗି ପ୍ରେମିକ ବା ପ୍ରେମିକାର ଅସାଧାରଣ ଶକ୍ତି ରହିବା ଆବଶ୍ୟକ। ମୁଁ ତାକୁ ସେହି ଦୃଷ୍ଟିରେ ଭଲପାଇବାକୁ ଚେଷ୍ଟାକରିଛି; କିନ୍ତୁ ବହୁଜନସ୍ୱାର୍ଥ ଲାଗି ମୁଁ ଦେବଯାନୀର ହୃଦୟରେ ଅଶେଷ ଦୁଃଖ ଦେଇଛି। ମୁଁ ବା କ'ଣ କରନ୍ତି? ପ୍ରେମ ଜୀବନର ଏକ ଉଚ୍ଚ ଭାବନା; କିନ୍ତୁ କର୍ତ୍ତବ୍ୟ ମଧ୍ୟ ତା' ଅପେକ୍ଷା ଉଚ୍ଚତର। କର୍ତ୍ତବ୍ୟର ମାର୍ଗ ଅତି କଠୋର; ତେଣୁ କର୍ତ୍ତବ୍ୟଶୀଳ ପ୍ରାଣୀ କଠୋର ହୋଇଉଠେ। କର୍ତ୍ତବ୍ୟ ହେଉଛି ଧର୍ମର ମୁଖ୍ୟ ଆଧାର। ଯଦି କେବେ ଘଟଣାକ୍ରମେ ଦେବଯାନୀ ତୁମ ଆଗରେ ହୃଦୟ ଖୋଲି କିଛି କହେ, ତେବେ ତାକୁ ଏତିକି କହିବ– 'କଚ୍‌ର ହୃଦୟକୁ କର୍ତ୍ତବ୍ୟର ଗୁରୁଭାର ଆବୋରି ରହିଛି। ତଥାପି ସେହି ହୃଦୟର ଗୋଟିଏ ନିଭୃତ କୋଣରେ ଦେବଯାନୀର ପ୍ରେମ ଆଦରର ସହିତ ସାଇତାହୋଇଛି। ତାହା ସବୁଦିନ ଲାଗି ଅକ୍ଷୁଣ୍ଣ ରହିଥିବ।'

ଏତେ ସମୟ ପର୍ଯ୍ୟନ୍ତ କଚ୍ ସହିତ ଅନ୍ତିମ ବିଦାୟ ଅବସରର ସ୍ମୃତିକୁ ମୁଁ କିପରି ପାସୋରିଦେଇଛି, ବୁଝିପାରୁନାହିଁ। ବୋଧହୁଏ ମୁଁ ଦୁଃଖଭାରରେ ଅବିଚଳିତ ହୋଇପଡ଼ିଛି। ଅନ୍ଧକାରରେ ପଡ଼ି ମୁଁ କେବଳ ଇପ୍‌ସିତ ବସ୍ତୁକୁ ଅଣ୍ଡାଳିବାରେ ଲାଗିଛି। ଆଲୋକର କୌଣସି ସଙ୍କେତ ମୁଁ ପାଇପାରୁନାହିଁ। ନା... ଏଥର ତା'ର ସନ୍ଧାନ

ପାଇଛି, ଜଡ଼ ସେହି ମାର୍ଗ ପ୍ରଦର୍ଶନ କରିଥିଲେ। ହଠାତ୍ ମୁଁ ଦ୍ୱାର ପାଖକୁ ଦୌଡ଼ିଆସିଲି। ସେତିକିବେଳେ ବିଦାୟ ମୁହୂର୍ତ୍ତର ସଙ୍କେତ ବାଜିଉଠିଲା। ମୁଁ ଭିତରର କିଳିଣି ଖୋଲିବାକୁ ଯିବାମାତ୍ରେ, ମାଆ ଆସି କବାଟରେ ହାତମାରିଲେ। ମୁଁ ହସି ହସି ମାଆଙ୍କ ବେକରେ ଝୁଲିପଡ଼ି କହିଲି– "ମା, ବାପାଙ୍କୁ କୁହ, ସେ ମୋ ଯିବାଲାଗି ବ୍ୟବସ୍ଥା କରନ୍ତୁ।"

–"କି ବ୍ୟବସ୍ଥା କରିବେ ?"

–"ହସ୍ତିନାପୁର ଯିବାଲାଗି। ଦେବଯାନୀ ସହିତ ତାର ଦାସୀ ହୋଇ ଯିବାଲାଗି ଶର୍ମିଷ୍ଠା ପ୍ରସ୍ତୁତ ଅଛି।"

ପାଷାଣର ଏକ ନିର୍ବାକ୍ ପ୍ରତିମାପରି ମାଆ ଚୁପ୍‌ଚାପ୍ ଛିଡ଼ାହୋଇ ମୋ ମୁହଁକୁ କେତେ ସମୟ ଚାହିଁରହିଲେ। ତା'ପରେ ହଠାତ୍ ଧକେଇ ହୋଇ କାନ୍ଦିଉଠି ମୋ'ରି କାନ୍ଧ ଉପରେ ନିଜର ମଥା ଥୋଇଦେଲେ। ଅଜାଣତରେ ମୁଁ ମାଆଙ୍କର ମଥା ଆଉଁଷିବାକୁ ଲାଗିଲି। ସେତେବେଳେ ମୋତେ ଜଣାଗଲା; ମୁଁ ମାଆଙ୍କର ମାଆ ହୋଇଯାଇଛି।

× × × × ×

ହସ୍ତିନାପୁରର ରାଜପ୍ରାସାଦରେ ପାଦ ଦେଲାକ୍ଷଣି ମୋର ଆତୁରତା ବହୁପରିମାଣରେ ବଢ଼ିଗଲା; କିନ୍ତୁ ହଠାତ୍ ମୁଁ ନିଜକୁ ସମ୍ଭାଳିନେଇ, ଠିକ୍ ଗୋଟିଏ ଦାସୀପରି ସବୁ କିଛି କାର୍ଯ୍ୟ ଆରମ୍ଭକରିଦେଲି। ଦେବଯାନୀ ରାଜମାତାଙ୍କ ଦର୍ଶନ ଲାଗି ଯିବାବେଳେ ମୁଁ ତା'ର ପଛେ ପଛେ ଚାଲିଲି। ସେ ମୋର ପ୍ରଣାମ ସ୍ୱୀକାର କରି କହିଲେ, "ଆସ ମାଆ, ଏଇଠିକି ଆସ।"

ମୁଁ ଟିକିଏ ଆଗେଇଯାଇ ଚୁପ୍‌ଚାପ୍ ମୁହଁ ପୋତି ଛିଡ଼ାହୋଇରହିଲି। ସେ ମୋର ଚିବୁକ ଧରି ମୁହଁଟିକୁ ଉଠାଇ କହିଲେ– "ବୋହୂ, ତୁମର ଏ ସାଙ୍ଗଟି ଠିକ୍ ତୁମରି ପରି ସୁନ୍ଦରୀ।"

ଦେବଯାନୀ ହଠାତ୍ କହିଲା– "ସେ ମୋ ସାଙ୍ଗ ନୁହେଁ।"

–"ତା'ହେଲେ . . . ?" ବିସ୍ମୟସୂଚକ ଚାହାଣିରେ ଚାହିଁ ପଚାରିଲେ ରାଜମାତା।

–"ସେ ମୋ ଦାସୀ।" ଦେବଯାନୀର କଣ୍ଠସ୍ୱରରେ ଥିଲା ଦାମ୍ଭିକତାର ମୂର୍ଚ୍ଛନା, ଚାହାଣିରେ ଥିଲା ସ୍ୱାମିନୀର ଅହଙ୍କାର।

"କିନ୍ତୁ ମହାରାଜଙ୍କ ଦୂତ ଆସି ଖବରଦେଇଥିଲା ଯେ, ରାଜଜେମା ଶର୍ମିଷ୍ଠା ମଧ୍ୟ ନବବଧୂ ସହିତ ଆସୁଛନ୍ତି। ତହୁଁ ମୁଁ ଭାବିଲି ପିଲାଦିନର ସାଙ୍ଗ ସହିତ ରାଜଜେମା ପିଲାଦିନର ସ୍ନେହ ଏଡ଼ାଇନପାରି ଖୁସିବାସିରେ ଆସୁଛନ୍ତି। ଏ ତୁମ ସହିତ ଭିତରକୁ ଆସିବାର ଦେଖି ମୁଁ ଭାବିଥିଲି, ଇଏ ହେଉଛି ରାଜଜେମା ଶର୍ମିଷ୍ଠା।"

ଦେବଯାନୀ ଅଭିମାନର ସହିତ ଉତ୍ତରଦେଲା– "ମାଆ, ଇଏ ସେହି ରାଜକୁମାରୀ ଶର୍ମିଷ୍ଠା। ଯା'କୁ ମୁଁ ପିଲାଦିନର ସାଙ୍ଗସଖୀଭାବରେ ସଙ୍ଗରେ ଆଣିନାହିଁ। ଏ ଗୋଟେ ଦାସୀ . . . ମୋ'ରି ଦାସୀ।"

–"ତୁମ କଥାର ଅର୍ଥ ମୁଁ ଆଦୌ ବୁଝିପାରୁନି . . ."

—''ଆପଣ ମହାରାଜଙ୍କୁ ପଚାରିଲେ ସବୁ କିଛି ବୁଝିପାରିବେ। ସେତେବେଳେ ଜାଣିପାରିବେ, ମୋ ବାପା କେଡ଼େ ମହାନ୍ ତପସ୍ୱୀ।''

—''ତୁମ ଶ୍ୱଶୁର ମହାରାଜ ନହୁଷ ମଧ୍ୟ ପରାକ୍ରମଶାଳୀ ବୀରପୁରୁଷ ଥିଲେ। ତାଙ୍କରି ପ୍ରାସାଦରେ ଗୋଟିଏ କ୍ଷତ୍ରିୟ କନ୍ୟା ଦାସୀ ହୋଇ ରହିବ, ଯା' ମୋତେ ଆଦୌ ସୁଖ ଲାଗିବ ନାହିଁ।''

—''ଏହା ଆପଣଙ୍କ ଦାୟିତ୍ୱ ନୁହେଁ, ମୋର...।'' ଏତିକି କହି ଦେବଯାନୀ ନିଜ ମହଲକୁ ଚାଲିଗଲା।

ଏହିପରି ଭାବରେ ମୋ'ରି ପାଇଁ ଶାଶୂବହୂଙ୍କ ମଧ୍ୟରେ ଅଜ୍ଞାତସାରରେ ମନୋମାଳିନ୍ୟ ସୃଷ୍ଟି ହେବାକୁ ଲାଗିଲା। ମୁଁ ଅବଶ୍ୟ ଏଥିଲାଗି ଦୁଃଖିତ; କିନ୍ତୁ ପର ମୁହୂର୍ତ୍ତରେ ଭାବିଲି— 'ଯା'ହେଉ ପଛକେ, ଏ ଧରଣର ମାନୋମାଳିନ୍ୟ ଭବିଷ୍ୟତରେ ବରାବର ଲାଗିରହିବ।'

ଦେବଯାନୀ ପିଲାଦିନରୁ ଖୁବ୍ ଗେଲବସରରେ ବଢ଼ିଥିଲା। ମାଆଙ୍କର ଉପଦେଶ ଫଳରେ ଝିଅମାନଙ୍କର ଢଙ୍ଗଢାଙ୍ଗରେ ଯେପରି ପରିବର୍ତ୍ତନ ଘଟିଥାଏ, ତା' ଦେବଯାନୀର ଭାଗ୍ୟରେ ଘଟିନଥିଲା। ଏବେ ସେ ଆଡ଼ମ୍ବର ସହକାରେ ହସ୍ତିନାପୁରର ମହାରାଣୀ ହୋଇ ଆସିଥିବାରୁ, ସେ ନିଜର କର୍ତ୍ତବ୍ୟ, ଶ୍ରଦ୍ଧା ତଥା ଆଦରଦ୍ୱାରା ରାଜମାତାଙ୍କୁ ଆୟତ୍ତ କରି ନେବା ଉଚିତ ମନେକଲାନାହିଁ। ବୋଧହୁଏ ରାଜମାତାଙ୍କ ସ୍ୱଭାବ ମଧ୍ୟ ଦେବଯାନୀର ସ୍ୱଭାବ ପରି ଥିଲା। ଆକାଶରେ ଦୁଇଟି ବିଦ୍ୟୁତ୍‌ଶକ୍ତି ପରସ୍ପର ମଧ୍ୟରେ ସଂଘାତ ସୃଷ୍ଟି କଲାପରି, ଦୁର୍ଭାଗ୍ୟ ଏ ଦୁହିଁଙ୍କୁ ଏକତ୍ର କରିଥିଲା।

ଏ ଘଟଣାକୁ କେନ୍ଦ୍ରକରି ମହାରାଜ ଓ ରାଜମାତାଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଥିବାର ମୁଁ ଆଦୌ ଜାଣିପାରିଲିନାହିଁ; କିନ୍ତୁ ଦୁହିଁଙ୍କ ମଧ୍ୟରେ ମନଖୋଲା କଥାବାର୍ତ୍ତା ହେଉଥିବାର ମୁଁ ଆଦୌ ଶୁଣିନଥିଲି। ନିଜର ଗର୍ଭଜାତ ପୁଅ ସହିତ ଯେତେବେଳେ ଏପରି ବ୍ୟବହାର, ବହୂ ସହିତ ବା କ'ଣ ହୋଇନଥିବ? ରାଜମାତାଙ୍କ ମନରେ କ୍ଷତ୍ରିୟ ଜାତି ପ୍ରତି ଖୁବ୍ ଅଭିମାନ ରହିଥିଲା ଏବଂ ଦେବଯାନୀ ନିଜେ ବ୍ରାହ୍ମଣକନ୍ୟା ହୋଇଥିବାରୁ ତା ମନରେ ନିଜ ଜାତି, ବିଶେଷତଃ ନିଜ ପିତାଙ୍କୁ ନେଇ ବିଶେଷ ଅହଂକାର ରହିଥିଲା। ଦୁହିଁଙ୍କ କଥାବାର୍ତ୍ତା ତଥା ଆଲୋଚନା ମଧ୍ୟରେ ସେହି ପ୍ରସଙ୍ଗ ବରାବର ଉଠୁଥିଲା। ଶାଶୂ ବେଳେବେଳେ କହୁଥିଲେ— ''ଦେଖ, ଏ ପୋଡ଼ାମୁହାଁ ଋଷିଗୁଡ଼ାଙ୍କୁ— ତପସ୍ୟା କରୁକରୁ ଯଦି ଗୋଟିଏ ଅପ୍ସରୀ ଦେଖିପକାଇଲେ ଆଉ ତାଙ୍କୁ ସମ୍ଭାଳେ କିଏ? ତପସ୍ୟା ଛାଡ଼ି, ତା' ପଛରେ ଗୋଡ଼ାଇଲେ...।'' ଶାଶୂଙ୍କ ତୁଣ୍ଡରୁ ନିଜ ଜାତି ପ୍ରତି ଏପରି ଅପମାନଜନକ କଥା ଶୁଣିବାମାତ୍ରେ ଦେବଯାନୀ ଆରମ୍ଭ କରିଦିଏ, ଶୁକ୍ରାଚାର୍ଯ୍ୟଙ୍କ ତପସ୍ୟାର ପରାକ୍ରମ, ବୃଷପର୍ବାଙ୍କ ପରାଭବ ଏବଂ ଶେଷକୁ କିପରି ଗୋଟିଏ କ୍ଷତ୍ରିୟ ରାଜକନ୍ୟା ନାକ ରଗଡ଼ି ବ୍ରାହ୍ମଣକନ୍ୟାର ଦାସୀ ହୋଇ ଆସିବାର କାହାଣୀ। ଦେବଯାନୀର ଏଇ ପ୍ରକାର କଥା ମୋ କଲିଜାକୁ ବିଦାରି ମନକୁ ପୋଡ଼ି ଜାଳିଦେଇ ମୋତେ ବିବ୍ରତ କରିଦିଏ। ଦିନରାତି ମୁଁ ଗୋଟିଏ ମନ୍ତ୍ର ଜପୁଥାଏ— 'ମୁଁ ଦାସୀ, ଦାସୀର ହାତଗୋଡ଼ ଅଛି, କିନ୍ତୁ ମୁହଁ ଥାଇ ମଧ୍ୟ

ଖୋଲିବାର ସାହସ ନାହିଁ। ଆଉ ମନ କିମ୍ବା ଅଭିଳାଷ... ତାହା ସାରା ଜୀବନ ଲାଗି ଜଳିପୋଡ଼ି ଧ୍ୱଂସ ହୋଇଯାଇଛି।

ଶାଶୂବହୂଙ୍କର ଏପରି ମନୋମାଳିନ୍ୟ ମଧ୍ୟରେ ଦିହିଁଙ୍କ କଳିରୁ ତୃତୀୟର ଲାଭ ପରି, ମୋତେ ଟିକିଏ ଆଦର ମିଳିଯାଏ। ଦେବଯାନୀ ସହିତ ଝଗଡ଼ା ଆରମ୍ଭ ହୋଇଗଲେ, ରାଜମାତା ମୋତେ କୌଣସି କାମର ବାହାନାରେ ଡକାଇନେଇ, ମୋ ପିଠିରେ ହାତ ବୁଲାଇ କେତେ ଆଦରକରନ୍ତି। ଏହା କେବଳ ଦେବଯାନୀକୁ ଚିଡ଼ାଇବା ଲାଗି କିମ୍ବା କ୍ଷତ୍ରିୟ ଜାତି ପ୍ରତି ତାଙ୍କର ମମତା ଥିବା ଯୋଗୁଁ, ମୁଁ ଜାଣେନାହିଁ। ରାଜମାତାଙ୍କ ଆଚ଼ରଣରେ ମୋ ମନରେ ସାହସ ଆସେ; ମୁଁ ଧୈର୍ଯ୍ୟ ଧାରଣ କରି ଭାବେ; ଯା'ହେଉ, ଏତେ ଦୂରରୁ ଆସିଥିବା ଗୋଟିଏ ଅନାଥିନୀ ବାଳିକାର ଖବର ନେବା ପାଇଁ ଏ 'ବିଶାଳ ରାଜପୁରୀରେ ଜଣେହେଲେ କେହି ଅଛି ତ? ହୁଏତ ଏହା ଗୋଟିଏ ଆଭାସ ମାତ୍ର; କିନ୍ତୁ ଯେ ଦୁନିଆରେ ବଞ୍ଚିରହିବାକୁ ଚାହେଁ, ତା ପକ୍ଷରେ ଏଇ ଆଭାସ କମ୍ ମୂଲ୍ୟବାନ୍ ନୁହେଁ।

ମୋ ପ୍ରତି ରାଜମାତାଙ୍କ ମନରେ ଯେଉଁ ମମତା ଥିଲା, ତାହା ଦିନେ ଠିକ୍ ବେଳକାଳ ଉଣ୍ଡି ପ୍ରକାଶ ପାଇଲା। ଥରେ ରାଜଧାନୀକୁ ଜଣେ ଜ୍ୟୋତିର୍ବିଦ ପଣ୍ଡିତ ଆସିଥିଲେ। ଦେବଯାନୀ ତାଙ୍କୁ ରାଣୀହଂସପୁରକୁ ଡକାଇଆଣିଲା। ସେ ତା'ର ହାତ ଦେଖି ଏଇ ବର୍ଷ ମଧ୍ୟରେ ତା'ର ଗୋଟିଏ ପୁଅ ଜନ୍ମହେବାର କହିଲେ। ଏହା ଶୁଣିବା ମାତ୍ରେ ଆମେ ସମସ୍ତେ ଖୁବ୍ ଖୁସିହେଲୁ।

ମୁଁ ସେଇ ପାଖରେ ଛିଡ଼ାହୋଇଥିଲି। ରାଜାମାତା ମୋତେ ଜୋର୍‌କରି ବସାଇଦେଇ, ମୋ ହାତ ଦେଖିବାକୁ କହିଲେ। ମୁଁ ଜାଣିଶୁଣି ଯା'ର ବିରୋଧକଲି; କାରଣ ମୁଁ ଜାଣେ ଦେବଯାନୀର ସ୍ୱଭାବ; ସେ ଈର୍ଷାପୂର୍ଣ୍ଣ ଚାହାଣିରେ ମୋ'ରି ଆଡ଼କୁ ଏକଲୟରେ ଚାହିଁରହିଥିଲା; କିନ୍ତୁ ରାଜମାତାଙ୍କ ଆଗ୍ରହ ଆଗରେ ମୋର ବିରୋଧ କିମ୍ବା ଦେବଯାନୀର ଈର୍ଷା କିଛି କାଟୁକଲାନାହିଁ। ପଣ୍ଡିତ ମୋ ହାତ ରେଖାଗୁଡ଼ିକୁ ଖୁବ୍ ଭଲଭାବରେ ନିରୀକ୍ଷଣ କରି କହିଲେ– ''ଏ ଝିଅ ବଡ଼ ଅଭାଗିନୀଅଟେ...।''

–''ପଣ୍ଡିତ ମହାଶୟ, ଏ ଗୋଟେ ଦାସୀ... ରାଜଜେମା ନୁହେଁ।''

ଦେବଯାନୀର ମନ୍ତବ୍ୟରେ ପଣ୍ଡିତ ମହାଶୟ ଚମକିପଡ଼ି ପୁଣି ମୋ ହାତକୁ ଭଲଭାବରେ ନିରୀକ୍ଷଣ କରି କହିଲେ– ''ଏହାର ଭାଗ୍ୟରେ ଅନେକ କଷ୍ଟ ଭୋଗ କରିବାକୁ ରହିଛି; କିନ୍ତୁ ଏହାର ପୁତ୍ର...''

ଦେବଯାନୀ ଠୋ' ଠୋ' ହୋଇ ହସି କହିଲା– ଆରେ... ଏ'ତ ସାରା ଜୀବନ ମୋ'ରି ଦାସୀ ହୋଇ ରହିବ। ଯା'କୁ ବିବାହ କରିବ କିଏ ଯେ, ଯା'ର ପୁଅ ହେବ?''

ତାଙ୍କ ବିଦ୍ୟାର ଉପହାସ କରାଯାଉଛି ବୋଲି ଅନୁଭବ କରି କହିଲେ ପଣ୍ଡିତ– ''ମହାରାଣୀ ମହୋଦୟା, କ୍ଷମାକରିବେ। ମୁଁ ନିଜ ଜ୍ଞାନ ଓ ବିଦ୍ୟାର ପରାକାଷ୍ଠା ନିଜେ ବେଶ୍ ଜାଣେ; ଅନ୍ୟ କଥାରେ ମୋର ଯାଏ ଆସେ କେତେ? ମୁଁ ଯା'ର ହସ୍ତରେଖାରେ ଯାହା ଦେଖୁଛି; ତାହାହିଁ କହୁଛି। ଯା' ସହିତ କିଏ ବିବାହ କରିବ

ନ କରିବ ମୋର କ'ଣ ସମ୍ପର୍କ? କିନ୍ତୁ ମୋ ବିଦ୍ୟାବଳରେ ମୁଁ ଜାଣୁଛି; ଏହାରି ପୁତ୍ର ସିଂହାସନର ଅଧିକାରୀ ହେବ।''

ଦେବଯାନୀ ମନେ ମନେ କ୍ଷୁବ୍ଧ ହେଲାପରି ଜଣାଗଲା, ତଥାପି ସେ ଉପହାସମିଶା ସ୍ୱରରେ କହିଲା, ''ସିଂହାସନ! ଓ... ହୋଇପାରେ ବାଘ ସିଂହଙ୍କ ଚମଡ଼ାରେ ବସିବ। ଆଉ ଟିକିଏ ଭଲଭାବରେ ଯା' ହାତ ଦେଖିଲେ...''

ଦେବଯାନୀର ଏଇ ଗଞ୍ଜଣା ଫଳରେ ମୋ ମନ କ୍ଷତବିକ୍ଷତ ହୋଇଗଲା। ମୁଁ ପଣ୍ଡିତଙ୍କ ହାତରୁ ମୋ ହାତ ଟାଣିଆଣି, ଆଖିରୁ ଅଶ୍ରୁଧାର ବହିପଡ଼ିବା ପୂର୍ବରୁ ସେଠାରୁ ପଳାଇଗଲି। ସେଦିନ ସାରାରାତି ମୁଁ କାନ୍ଦିକାନ୍ଦି ତକିଆ ତିନ୍ତାଇଦେଇଛି। ମନକୁ ଯେତେ ବୋଧଦେଲେ ମଧ୍ୟ ମୋ ଆଖିର ଲୁହଧାର ବନ୍ଦହୋଇନାହିଁ। ଦୁନିଆରେ ଏପରି ଅଭାଗିନୀ ଝିଅ କିଏ ଅଛି; ଯେ କି ସ୍ୱାମୀର ସୁଖ ତଥା ପୁତ୍ରମୁଖ ଦେଖିବାକୁ ଚାହେଁନି? ସେଥିଲାଗି ରାତିରାତି ଚିନ୍ତାରେ ବିତାଇଦିଏନି? ଏହି କଳ୍ପନାର ମଧୁର ସ୍ୱପ୍ନରେ ଭାସିଯାଏନି?

ମୁଁ ମଧ୍ୟ ସେହିପରି ଗୋଟିଏ ଝିଅ। ଏସବୁ କଳ୍ପନାର ରଙ୍ଗିନ୍ ସ୍ୱପ୍ନକୁ ଗୋଡ଼ରେ ଦଳିଚକଟି ଦେଇ ଦାସୀଭାବରେ ହସ୍ତିନାପୁର ଚାଲିଆସିଲି। ସାରାଜୀବନ ଦେବଯାନୀର ଦାସତ୍ୱ ବରିନେଲି। ଖୁବ୍ ସମ୍ଭବତଃ ସେ ମୋତେ ବିବାହ କରାଇଦେବନାହିଁ। ଯାହାର ବିବାହ କରିବାର ସମ୍ଭାବନା ନାହିଁ, ତା' ପୁଅ ହେବ ଏବଂ ସେ ପୁଅ ପୁଣି ରାଜସିଂହାସନରେ ବସିବ... ହାୟ ବିଧାତା, ଏ ପ୍ରକାର ଆଶାର କଳିକା ମୋ ପରି ଅଭାଗିନୀ ଦାସୀର ମନରେ ଅଙ୍କୁରିତ ହେଲା କାହିଁକି? ମୁଁ ତ ଜୀବନରେ ସମସ୍ତ ଆଶା ଆକାଙ୍କ୍ଷାକୁ ଜଳାଞ୍ଜଳି ଦେଇ ଚାଲିଆସିଛି, ଆଜି ଏ ଜ୍ୟୋତିଷୀ ମୋ ମନରେ ପୁଣି ସେହି ଦୁଃଖଭରା ସ୍ୱପ୍ନର...

ହସ୍ତରେଖା ଗଣନା କ'ଣ ଠିକ୍? ପ୍ରକୃତରେ ଯଦି ସତ୍ୟ ହୋଇଥାଏ, ତା'ହେଲେ, ଆଜି ସେ ଜ୍ୟୋତିଷୀଙ୍କ ଭବିଷ୍ୟବାଣୀର ଅର୍ଥ କ'ଣ? ପରମେଶ୍ୱର ମୋ ଭାଗ୍ୟରେ କ'ଣ ବିଧାନ କରିଛନ୍ତି? ସେ ଜ୍ୟୋତିଷୀ ପାଗଳଟାଏ ନୁହେଁ ତ? ଦେବଯାନୀର ହାତ ଦେଖିବା ପରେ ତା'ରି ଭବିଷ୍ୟ ଗଣନା ମନ ମଧ୍ୟରେ ତାଙ୍କର ଖେଳୁଥିଲା ଏବଂ ମୋ ହାତ ଦେଖିବା ମାତ୍ରେ ସେହି କଥାଗୁଡ଼ାକ କହିଗଲେ। ଯା'ହେଉ, ଏ ଭବିଷ୍ୟବାଣୀ ଫଳରେ କଳା ମୁଗୁନି ପଥର ପରି ସୁଦୃଢ଼ ହୋଇ ରହିଥିବା ମୋ ମନର କେଉଁ ଗଭୀର କୋଣରେ ସୁନ୍ଦର ଚକ୍‌ଚକ୍ କୋମଳ ମଞ୍ଜରୀଟିଏ ଅଙ୍କୁରିତ ହେବାକୁ ଲାଗିଲା। ପିତାମାତାଙ୍କଠାରୁ ବିଦାୟ ନେଇ ହସ୍ତିନାପୁର ଆସିବା ସମୟରେ ଯେଉଁ ଶର୍ମିଷ୍ଠା ଆଖିରୁ ବୁନ୍ଦାଏ ହେଲେ ଲୁହ ଝରାଇନଥିଲା, ସିଏ ଆଜି ରାଜପୁରୀର ଏକାନ୍ତ କକ୍ଷରେ ବୁକୁଫଟା ରୋଦନ କରିବାରେ ଲାଗିଛି।

ପିତାଙ୍କ କଥା ମନେପଡ଼ିବାମାତ୍ରେ ମୋ ମନ ସଜାଗ ହୋଇଉଠିଲା। ତାଙ୍କଠାରୁ ବିଦାୟ ନେଇ ଆସିବାର ପ୍ରତ୍ୟେକ ମୁହୂର୍ତ୍ତ ମୋ ଆଗରେ ସ୍ପଷ୍ଟ ହୋଇଉଠିଲା। ଯେଉଁ ରାଜପ୍ରାସାଦରେ ମୁଁ ପିଲାଦିନରୁ ପ୍ରତିପାଳିତ ହୋଇଥିଲି, ତାକୁ ଚିରଦିନଲାଗି ଛାଡ଼ି ବାହାରି ଆସିଲି। କୌଣସି ରାଜା ମହାରାଜାଙ୍କର ରାଣୀ ଭାବରେ ଜୀବନ

ବିତାଇ ଥାଆନ୍ତି; କିନ୍ତୁ ଗୋଟିଏ ରାଣୀର ଦାସୀ ରୂପେ ମୁଁ ଚାଲିଆସିଲି। ମାଆ ଯେତେ ଚେଷ୍ଟା କଲେ ମଧ୍ୟ ନିଜ ଆଖିର ଲୁହ ରୋକିପାରୁନଥିଲେ। ସେ ଠିକ୍‌ଭାବରେ ମୋର ପ୍ରଣାମ ଗ୍ରହଣ କରିପାରିଲେନାହିଁ। ସେ ଥରେ ମାତ୍ର ମୋତେ ଦୃଢ଼ଭାବରେ ନିଜ ଛାତି ଉପରକୁ ଭିଡ଼ିନେଇ ତା'ପରେ ପାଗଳିନୀଙ୍କ ପରି ମୁହଁ ବୁଲାଇ ଘର ଭିତରକୁ ପଳାଇଗଲେ। ବାପା ମଧ୍ୟ ମନ୍ଦରଗିରି ପରି ଅଚଳ ହୋଇ ଛିଡ଼ା ହୋଇଥିଲେ। ଆଖିର ପଲକ ସୁଦ୍ଧା ନପକାଇ ମୁଁ ପାଖକୁ ଚାଲିଯାଇ, ତାଙ୍କ ଆଶୀର୍ବାଦ ଭିକ୍ଷାକରି ତଳକୁ ମୁହଁ ପୋତି କହିଲି– ''ବାପା, ଅନୁମତି ଦିଅନ୍ତୁ।'' କିନ୍ତୁ ପ୍ରଥମେ ସେ କିଛି ଉତ୍ତର ଦେଲେନାହିଁ; ପରେ ମୋ ହାତ ଧରି ଛିଡ଼ାକରାଇଦେଇ, ମୁଁ ତାଙ୍କୁ ଭଲଭାବରେ ଚାହିଁବା ପୂର୍ବରୁ, ସେ ମୋ ପାଦ ଉପରେ ମୁଣ୍ଡ ରଖିଦେଲେ। ମୁଁ ଜିଭ କାମୁଡ଼ିପକାଇ ପଛକୁ ଘୁଞ୍ଚିଯାଇ, ତାକୁ କୌଣସିମତେ ଛିଡ଼ାକରାଇଲି। ସେ ଉଠୁଉଠୁ କହିଲେ, ''ମା'! ତୁ ମୋର ଝିଅ ନୋହୁ, ଜନ୍ମଦାତ୍ରୀ ମାଆ। ମୋର ପ୍ରଣାମ ସ୍ୱୀକାର କରି ମୋତେ କ୍ଷମାନଦେଲେ, ମୁଁ ନର୍କରେ ବାସ କରିବି। ତୁ ଏ ଅଭାଗା ପୁତ୍ରଟାକୁ କ୍ଷମାଦେବୁ ମାଆ।''

ମୁଁ ବାପାଙ୍କ ବ୍ୟବହାରରେ ଗଦ୍‌ଗଦ ହୋଇଉଠିଲି। ମୁଁ ବେଶ୍ ବୁଝିପାରିଲି, ତାଙ୍କର ଅସହାୟତା। ତାଙ୍କୁ ପ୍ରବୋଧନା ଦେବା ପାଇଁ ମୁଁ କହିଲି, ''ବାପା, ମୁଁ ଯଦି ଝିଅଟିଏ ନହୋଇ ଆପଣଙ୍କ ପୁଅ ହୋଇଥା'ନ୍ତି; ତା'ହେଲେ ଆପଣ ନିଜ ହାତରେ ମୋତେ ସଜ୍ଜିତ କରି ଯୁଦ୍ଧକୁ ପଠାଇନଥାନ୍ତେ କି?''

''ସେତେବେଳେ..., ଏ ଅବସରରେ ମଧ୍ୟ ତୁମେ ଗର୍ବ ଅନୁଭବ କର ବାପା! ତୁମ ଶମା ଗୋଟିଏ ଅଦ୍ଭୁତ ଜୀବନଯୁଦ୍ଧ ଜୟ କରିବାକୁ ଯାଉଛି। ବିପଦରେ ଅସହାୟ ହୋଇ ସେ ଯୁଦ୍ଧରୁ ପୃଷ୍ଠଭଙ୍ଗ ଦେବାକୁ ଚାହେଁନାହିଁ। ଆପଣଙ୍କ କୁଳରେ କଳଙ୍କ ଲାଗିବା ଭଳି କୌଣସି କାର୍ଯ୍ୟ ମୁଁ କରିବାକୁ ଚାହେଁନାହିଁ। ବାପା, ଶମା ଯୁଦ୍ଧ କରିବାକୁ ଯାଉଛି; ତାକୁ ଆଶୀର୍ବାଦ ଦିଅ।'' ପିତାଙ୍କର ଏହି ବ୍ୟବହାର ମନରେ ଜାଗିଉଠିବାମାତ୍ରେ, ମୋ ମନ ଟିକିଏ ଆଶ୍ୱସ୍ତ ହେଲା ଏବଂ ଆଖିର ଲୁହ ଧୀରେ ଧୀରେ ଶୁଖିଗଲା।

ମୋ ସାଥିରେ ଆସିଥିବା ଦାସୀମାନେ ମୋତେ ରାଜକନ୍ୟା ପରି ସମ୍ମାନ ଦେଉଥିଲେ ଏବଂ ହସ୍ତିନାପୁରର ଦାସୀମାନେ ମଧ୍ୟ ସେହି ଧାରଣା କରିଥିଲେ। ସେମାନଙ୍କ ମଧ୍ୟରେ କେହି ଜଣେହେଲେ ମୋ ସହିତ ଆତ୍ମୀୟତାର ସହିତ ମିଳିମିଶି କଥାବାର୍ତ୍ତା କରୁନଥିଲେ। ଦେବଯାନୀର କିଛି କାମ ନଥିଲେ, ମୁଁ କେବଳ ବ୍ୟର୍ଥରେ ବସିରହେ; ତେଣୁ ପ୍ରତ୍ୟେକ ମୁହୂର୍ତ୍ତ ମୋ ପକ୍ଷରେ ଅସହ୍ୟ ବୋଧହୁଏ। ଏହିପରି ନିର୍ଜନ ମୁହୂର୍ତ୍ତରେ ବସିଥିବାବେଳେ ଅତୀତର ସମସ୍ତ ଘଟଣା ମୋର ମନେପଡ଼ିଯାଇ, ମୋତେ ବିବ୍ରତ କରିଦିଏ। କିନ୍ତୁ ଧୀରେ ଧୀରେ ଘଟଣାଗୁଡ଼ିକ ଦେହସୁହା ହୋଇଗଲା। ଏହି ଅବସର ସମୟରେ ମୋର ଗୋଟିଏ ଅନୁଭୂତି ହୋଇଥିଲା। ଯା' ମଧ୍ୟରେ ମୁଁ ମୋର ପୂର୍ବର ଚିତ୍ରକଳା ଅଭ୍ୟାସକୁ ବଢ଼ାଇଦେଲି।

ଯେକୌଣସି ପ୍ରକାର ଅଭ୍ୟାସ ହେଉ ପଛକେ, ତାହା ଦୁଃଖ ସମୟରେ ଅନେକ

ଆଶ୍ୱାସନା ଦେଇଥାଏ । ଅବଶ୍ୟ ମୁଁ ଜାଣେନି, ଚିତ୍ରକଳାରେ ମୁଁ କେତେଦୂର ପାରଦର୍ଶିତା ଲାଭକରିପାରିଥିଲି, କିନ୍ତୁ ସେଗୁଡ଼ିକ ପ୍ରସ୍ତୁତ କରିବାରେ ମୋର ମନ ଲାଗିଯାଉଥିଲା । ଛୋଟ ଛୋଟ ଲାଲ ଲାଲ ଆଖି ଉଠାଇ ଟିକିଏ ଟିକିଏ ଚାହୁଁଥିବା ମନୁଷ୍ୟର ପାଦ ଶବ୍ଦ ଶୁଣି, ଛୋଟ ଛୋଟ କାନ ଉପରକୁ ଉଠାଇ, ଡରେ-ମରେ ପଳାଇଯାଉଥିବା ନିଜ ସାଙ୍ଗ ଭାଇ ଭଉଣୀମାନଙ୍କ ସହିତ ଲହଲହକା କୋମଳ ଘାସ ଖାଉଥିବା, ଏଣେତେଣେ ଡିଆଁ-କୁଦା କରୁଥିବା ଠେକୁଆଗୁଡ଼ିକର ଚିତ୍ର ମୁଁ ଆଙ୍କିଦେଲି । କେବଳ ଠେକୁଆ କାହିଁକି ହରିଣ, ମୟୂର ତଥା ଆଉ କେତେଗୁଡ଼ିଏ ପଶୁପକ୍ଷୀ ମୋ ମନକୁ ବେଶ୍ ଆକର୍ଷଣ କରିଥିଲେ । ମୁଁ ସେମାନଙ୍କର ଚିତ୍ର ମନୋଯୋଗର ସହିତ ଅତି ଆତ୍ମୀୟତାରେ ପ୍ରସ୍ତୁତ କଲି । ଚିତ୍ର ଅଙ୍କନ ସମୟରେ ମୁଁ ପ୍ରକୃତରେ ତନ୍ମୟ ହୋଇଯାଉଥିଲି ।

ପ୍ରାକୃତିକ ଜଗତରେ କେତେ ପ୍ରକାର ଫୁଲ, ବୃକ୍ଷଲତା, ସଞ୍ଜ, ସକାଳ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ବସନ୍ତ ସମୟର ଚାନ୍ଦିନୀରାତି, ବର୍ଷାସମୟର ନଦୀ, ଶରତ୍‌କାଳର ଶସ୍ୟଶ୍ୟାମଳ କ୍ଷେତ, ଶିଶିରର ପତ୍ରହୀନ ବୃକ୍ଷ ଆଦି ମୋର ସହଚର ହୋଇଗଲେ । ସେଇମାନେ ମୋର ଚିତ୍ରର ବିଷୟବସ୍ତୁ ହୋଇଉଠିଲେ । ମୋର ଏଇ ନୂତନ ଅନୁଭୂତି ସମ୍ବନ୍ଧରେ ମୁଁ ଯେତିକି ଚିନ୍ତା କରିବାରେ ଲାଗିଲି, ସେଗୁଡ଼ିକର ବିବିଧତା ବିଷୟରେ ସେତିକି ମୋର ମନେହେଲା; ବିବିଧତା ହିଁ ଜୀବନ, ପରସ୍ପର ବିରୋଧୀ ରହସ୍ୟ ହିଁ ତା'ର ଆତ୍ମା, ଜୀବନର ରସ ହିଁ ତା'ର ଆନନ୍ଦ । ସେହି ଆନନ୍ଦମୟ ସ୍ୱରୂପ, ତା'ର ବିଭିନ୍ନ ରୂପସମ୍ଭାର ତଥା ତା'ର ବିରୋଧ ହିଁ ମୋର ଅଶାନ୍ତ ଆତ୍ମାରେ ଶାନ୍ତିର ପ୍ରଲେପ ବୋଳିଦେଇଛି । ଦେବଯାନୀ ଅନେକ ଥର ମୋତେ କଟୁ କଥା କହିଛି; କିନ୍ତୁ ପରବର୍ତ୍ତୀ ସମୟରେ ତା'ର ବୁକୁଜଳା କଥାଗୁଡ଼ିକ ମୋତେ ଆଉ ବିଶେଷ କଷ୍ଟ ଦେଇନାହିଁ ।

ମହାରାଜ ଯଯାତିଙ୍କ ସହିତ ମୋର ଦେଖାସାକ୍ଷାତ୍ କ୍ୱଚିତ୍ ହୋଇଥାଏ । ତାଙ୍କ ସହିତ ମୋର ଯେପରି କୌଣସି ସମ୍ପର୍କ ନରହେ, ସେଥିଲାଗି ଦେବଯାନୀ ଖୁବ୍ ସାବଧାନ ରହିଥାଏ; କିନ୍ତୁ କକ୍ଷ ମଧ୍ୟକୁ ଯିବା ଆସିବା ସମୟରେ ବେଳେବେଳେ ମହାରାଜ ମୋତେ ଦେଖିପକାନ୍ତି । ତାଙ୍କ ଚାହାଣିରେ ମୋ ପ୍ରତି ପ୍ରକୃତରେ ସହାନୁଭୂତି ଥିଲା କିମ୍ବା ମୋର ଦୁର୍ବଳ ମନ ସେପରି ଭାବୁଥିଲା, ମୁଁ ଠିକ୍ ଭାବରେ କହିପାରିବିନାହିଁ । ତାହା ମଧ୍ୟ ପିପାସୀ ଲୋକର ଆଖି ଆଗରେ ଭାସିଉଠୁଥିବା ମରୀଚିକା ହୋଇପାରେ; କିନ୍ତୁ ମୋ ଆଡ଼କୁ ତାଙ୍କର ଚାହାଣି ହିଁ ମୋତେ ବେଶ୍ ଆନନ୍ଦ ଦେଉଥିଲା ।

ସେ ମୋତେ ଦାସୀଭାବରେ କୌଣସି କାମ ବତାଇବାକୁ ଆଦୌ ପସନ୍ଦ କରୁନଥିଲେ; ବରଂ ସେଭଳି କାମଗୁଡ଼ିକୁ ସେ ଖୁବ୍ ସମ୍ଭବତଃ ଏଡ଼ାଇଦେଉଥିଲେ । କେବେକେମିତି ମୁଁ ତାଙ୍କୁ କୌଣସି ଜିନିଷ ଦେବାକୁ ଚାଲିଗଲେ, ଯଦି ସେଠାରେ ଦେବଯାନୀ ନଥାଏ, ତେବେ ସେ ଧୀରେ କହନ୍ତି– "ଆରେ ... ତୁମେ କାହିଁକି ଏତେ କଷ୍ଟ କଲ ଯେ ...?" ମୁଁ ହସିଦେଇ ଉତ୍ତର ଦିଏ, "ମୁଁ ତ ଦାସୀଟାଏ ..." । ସେ ମଧ୍ୟ ମୁହଁରେ ହସ ଫୁଟାଇ କହନ୍ତି– "ତୁମେ ଦେବଯାନୀର ଦାସୀ ହୋଇପାର, ମୋର ନୁହଁ ।"

ତାଙ୍କର ଏ ସହାନୁଭୂତିପୂର୍ଣ୍ଣ କଥାବାର୍ତ୍ତା ଲାଗି ରାଜମାତାଙ୍କ ପରି, ମୁଁ ତାଙ୍କୁ ମୋର ସାହାଯ୍ୟକାରୀ ବୋଲି ମନେକରୁଥିଲି। 'ମୁଁ ତାଙ୍କର ସବୁତକ କାମ କରି ତାଙ୍କୁ ଖୁସିରଖେ' ବୋଲି ମୋ ମନରେ ଭାବନା ଜାତ ହେଉଥିଲେହେଁ, ଦିନେହେଲେ କେବେ ତାଙ୍କ ସହିତ ଖୋଲାଖୋଲି ଭାବରେ କଥାବାର୍ତ୍ତା କରିନାହିଁ। ମୁଁ ଦେବଯାନୀର ସ୍ୱଭାବ ଭଲକରି ଜାଣେ; ତିଳକୁ ତାଳ କରି ଥୋଇବା ତା ପକ୍ଷରେ ବଡ଼ ସହଜ।

ମୁଁ ଖୁବ୍ ସାବଧାନତାର ସହିତ ଚଳୁଥିଲେହେଁ, ଦିନେ ଗୋଟିଏ ଦୁର୍ଘଟଣା ଘଟିଗଲା। ମହାରାଜ ଖୁବ୍ ପାନ ଚୋବାଉଥିଲେ। ଦେବଯାନୀ ବରାବର ତାଙ୍କୁ ପାନ ଭାଙ୍ଗି ଯୋଗାଇଦେଉଥିଲା। ଦିନକର କଥା; ଦେବଯାନୀ ତାଙ୍କୁ ପାନ ଭାଙ୍ଗି ଦେଲା; ବୋଧହୁଏ ସେ ପାନ ତାଙ୍କୁ ଭଲ ଲାଗିଲା ନାହିଁ। ତହୁଁ ସେ ହସି ହସି ତାକୁ କହିଲେ, "ମୋ ପାଟିକୁ ଚାହିଁଲ, ମୁଁ କ'ଣ ପ୍ରକୃତରେ ପାନ ଖାଇଛି?"

ଦେବଯାନୀ ପଲଙ୍କ ଉପରେ ଶୋଇଥିଲା। ମୁଁ ତାକୁ ପଙ୍ଖା ଧରି ବିଞ୍ଚୁଥିଲି। ମହାରାଜଙ୍କୁ ପାନ ଭାଙ୍ଗି ଦେବାଲାଗି ସେ ମୋତେ ଆଦେଶଦେଲା। ମୁଁ ସଙ୍ଗେ ସଙ୍ଗେ ପାନ ଭାଙ୍ଗି ଯୋଗାଇଦେଲି ଏବଂ ମହାରାଜଙ୍କୁ ସେ ପାନଖଣ୍ଡିକ ଖୁବ୍ ଭଲଲାଗିଲା। ପାନଖଣ୍ଡିକ ଚୋବାଇ ସାରିବା ପରେ ସେ ଦର୍ପଣ ଆଗରେ ଛିଡ଼ାହୋଇ ଦେବଯାନୀକୁ ଡାକିଲେ। ସେ ଆଦୌ ଉଠିବାକୁ ଚାହୁଁନଥିଲା; କିନ୍ତୁ ମହାରାଜ ବାରମ୍ବାର ଡାକୁଥିଲେ। ଶେଷକୁ ସେ ଟିକିଏ ବିରକ୍ତ ହୋଇଯାଇ କହିଲା, "ଆଚ୍ଛା ... ଆପଣଙ୍କର ଆଉ କ'ଣ ଦରକାର କହିଲେ?"

—"ମୋ ପାଟିକୁ ଟିକିଏ ଦେଖିଲ ..."

—"ଏ କି ରଙ୍ଗ ... ? ମୋତେ ଏ ସବୁ ପିଲାଳିଆ କଥା ଭଲଲାଗେନାହିଁ।"

"ମୁଁ ତ ତୁମ ସହିତ ଥଟ୍ଟା କରୁନାହିଁ। କେବଳ ଆଡ଼ ଆଖିରେ ଥରେ ମୋ ମୁହଁ ଦେଖିବାକୁ କହିବାର ଆଉ ଆବଶ୍ୟକତା କ'ଣ? ତୁମେ ସେଦିନ କ'ଣ କୂଅ ଉପରେ ଛିଡ଼ାହୋଇ ମୋ ମୁହଁ ବାହାରୁ ଦେଖିନାହଁ କି? ମୁଁ କହୁଛି, ଥରେ ଆଖି ପୂରାଇ ଅନ୍ତର୍ମନରେ ମୋ ମୁହଁକୁ ଚାହିଁଲ!"

ସେ ଗୋଟିଏ ନିହାତି ଛୋଟ ପିଲାଙ୍କ ପରି ମୁହଁ ଖୋଲି ଜିଭ ଦେଖାଇ ଦେବଯାନୀ ପାଖକୁ ଚାଲିଗଲେ। ତାଙ୍କ ଓଠ ଓ ଜିଭ ପାନରସରେ ଲାଲ୍ ଟକ୍‌ଟକ୍ ହୋଇଯାଇଥିଲା। ସେ କହିଲେ, "ଜାଣିଛ, ଆମେ ଛୋଟପିଲାବେଳେ ପାନ ଖାଇ, ପାଟି ରଙ୍ଗେଇ ପରସ୍ପରକୁ କ'ଣ କହୁଥିଲୁ?"

"ମୋ ବାପା ଜଣେ ମହାନ୍ ତପସ୍ୱୀ, ସେ ଯେତେବେଳେ ମନ ସେତେବେଳେ ଗାଈ-ଛେଳିଙ୍କ ପରି ପାନ ପାକୁଳି କରୁନଥିଲେ; ତେଣୁ ମୁଁ କୁଆଡୁ ସେ କଥା ଜାଣିବି?"

"ଆମର ଧାରଣା ଥିଲା ପାନ ତିଆରି କରିବା ଲୋକର ସ୍ନେହ ଯେତେ ବେଶି, ତାକୁ ଚୋବାଇଲେ ପାଟି ସେତିକି ଲାଲ ହୋଇଯାଏ।"

ଦେବଯାନୀ ଏ କଥା ଶୁଣିବାମାତ୍ରେ ନାଗୁଣୀ ପରି ଫଁ କରି ଉଠି କହିଲା, "ଆଚ୍ଛା ... କଥା ଯାଇ ସେଠି? ଯା' ଅର୍ଥ ... ମୋ ଅପେକ୍ଷା ଶର୍ମିଷ୍ଠା ଆପଣଙ୍କୁ

ବେଶି ପ୍ରେମ କରୁଛି। ସତ ନୁହେଁ କି? ତା'ହେଲେ ସଫା ସଫା ସେଇ କଥା ନ କହି, ପିଲାଦିନର ଧାରଣା ବୋଲି ଛଳନା କରୁଛନ୍ତି କାହିଁକି? ସେ ଯଦି ଏତେ ପ୍ରେମ କରୁଛି, ତା'ହେଲେ ତାକୁ ବିବାହ କଲେ ନାହିଁ କାହିଁକି? ଆପଣଙ୍କ ମାଆ ମଧ୍ୟ ତାକୁ ଖୁବ୍ ପସନ୍ଦ କରୁଛନ୍ତି...। ନକରିବେ କାହିଁକି? ସେ କ୍ଷତ୍ରିୟ କନ୍ୟା..."

ମହାରାଜ କାହିଁକି ବା ଏପରି ପଦେ କଥା କହିଲେ? ସେଥିଲାଗି ଦେବଯାନୀ ମଧ୍ୟ କି ଧର୍ମପତ୍ନୀ ଯେ, ଅର୍ଥକୁ ଅନର୍ଥ କରି ମହଲସାରା ହୋ-ହଲ୍ଲା ଲଗାଇଦେଲା; ତା' ଫଳରେ କେଇଦିନ ଧରି ମୁଁ ଲାଜରେ ମୁହଁ ଟେକିପାରିଲିନାହିଁ। ତା'ପରେ ଆଉ କେବେହେଲେ ମୁଁ ମହାରାଜଙ୍କୁ ପାନ ଯୋଗାଇନାହିଁ। କେବେ କେମିତି ଦେଖାହୋଇଗଲେ, ଯଦି ଦେବଯାନୀ ସେ ପାଖଆଖରେ ନଥାଏ, ହସିଦେଇ କହନ୍ତି, "ପାନ ମିଳିବ?" ମୋ ପାଖରେ ଖିଲିପାନ କୁଆଡୁ ଆସିବ? ମୁଁ ବାଧ୍ୟହୋଇ "ନାହିଁ" କହିଦିଏ। ଏପରି ଭାବରେ ପାଞ୍ଚ-ଦଶଥର ସେ ମାଗିବାରୁ, ମୁଁ ବାଧ୍ୟ ହୋଇ ଖଣ୍ଡିଏ ବଢ଼ିଆ ପାନ ତିଆରିକରି ଅଣ୍ଟାରେ ଖୋସି ରଖିଥାଏ ଏବଂ ମହାରାଜଙ୍କୁ ଏକୁଟିଆ ପାଇଲେ ତାଙ୍କ ହାତକୁ ବଢ଼ାଇଦିଏ। ତା'ପରେ ପରଦିନ ଦେବଯାନୀଙ୍କୁ କହିଲା ପରି ମୋତେ ଶୁଣାଇ ମହାରାଜ କରନ୍ତି, "ତୁମର କାଲିର ପାନ ଭାରି ଭଲଲାଗିଲା; ବୁଝିଲ...!"

× × × × ×

ମଣିଷର ସ୍ମରଣଶକ୍ତି କି ବିଚିତ୍ର! ଠିକ୍ ମନଖୁସିରେ ଉଡ଼ିବୁଲୁଥିବା ରଙ୍ଗରଙ୍ଗିଆ ପ୍ରଜାପତି ପରି କିମ୍ବା ଲୁଚକାଳି ଖେଳୁଥିବା ଟିକିଟିକି ଝିଅମାନଙ୍କ ପରି। ମନେହୁଏ ଚିତ୍ରପଟରେ ବୋଳାଯାଇଥିବା ରଙ୍ଗଗୁଡ଼ିକର ଏକତ୍ର ସମାବେଶ ପରି କିମ୍ବା ବର୍ଷଣମୁଖର ରାତ୍ରିର ଚାଉଁଚାଉଁ ଚମକିଉଠୁଥିବା ବିଜୁଳି ପରି। ସର୍ବପ୍ରଥମେ ଯେଉଁ କଥା କହିବା ଉଚିତ, ସେହିପରି ଘଟଣା ଆଜିସୁଦ୍ଧା ମୋ ସ୍ମୃତିପଟରେ ସେମିତି ଅବିକଳ ସାଇତା ହୋଇ ରହିଛି।

ହସ୍ତିନାପୁରରେ ଖୁବ୍ ଆଡ଼ମ୍ବର ସହକାରେ ବିବାହ ଉତ୍ସବ ସମ୍ପନ୍ନ କରାଗଲା। ମହାରାଜ ଓ ଦେବଯାନୀର ମିଳନକୁ ମଧୁମୟ କରିବା ଲାଗି ମଧୁଯାମିନୀର ତିଥି ନିଶ୍ଚିତ ହୋଇଗଲା। ଦେବଯାନୀର ସୌଭାଗ୍ୟ ପ୍ରତି ମୋ ମନରେ ଯେପରି କୌଣସି ଦୁର୍ଭାବନା ଜାତ ନ ହୁଏ, ସେଥିଲାଗି ମୁଁ ନିଜକୁ ପ୍ରସ୍ତୁତ କରିନେଲି। 'ଭାଗ୍ୟଂ ଫଳତି ସର୍ବତ୍ର' ନୀତିକୁ ମୁଁ ମୁଣ୍ଡପାତି ଆଦରି ନେଇଥିଲି।

କିନ୍ତୁ ମନୁଷ୍ୟର ପ୍ରକୃତ ଶତ୍ରୁ ଭାଗ୍ୟ ନୁହେଁ, ବରଂ ମଣିଷ ବୋଲି କହିବାକୁ ହେବ। ମୋତେ ଅସାଧାରଣ ଭାବରେ ଶାନ୍ତ ଓ ସଂଯତ ରହିଥିବାର ଲକ୍ଷ୍ୟକରି ଦେବଯାନୀ ମନେ ମନେ ଜଳିଗଲା। ସେ ଭାବିଥିଲା ଏହି ଆନନ୍ଦ-ଉତ୍ସବମୁଖର ଦିନଗୁଡ଼ିକରେ ମୁଁ ଆଖିରୁ ଲୁହ ଝରାଇ ଦୀର୍ଘ ନିଃଶ୍ୱାସ ତ୍ୟାଗକରିବି ଏବଂ ତା'ର ଆନନ୍ଦ ତଥା ସୁହାଗ ଦେଖି ମୁଁ ବ୍ୟାକୁଳ ହୋଇଉଠିବି। ମଧୁଯାମିନୀ ପର୍ଯ୍ୟନ୍ତ

ମୋର ଦୃଢ଼ ମନୋଭାବ ଯୋଗୁ, ଦେବଯାନୀର ଉଦ୍ଦେଶ୍ୟ ସଫଳ ହେଲାନାହିଁ; କିନ୍ତୁ ସେହିଦିନ ସେ ଯେଉଁ ନୂତନ ବ୍ରହ୍ମାସ୍ତ୍ର ପ୍ରୟୋଗକଲା, ତାହା ମୁଁ ଆଦୌ କଳ୍ପନା କରିନଥିଲି। ମହଲ ଭିତରକୁ ପଶିଯିବାବେଳେ ସେ ମୋତେ ଆଦେଶ ଦେଇ କହିଲା, "ଶର୍ମିଷ୍ଠା, ମହାରାଜାଙ୍କୁ ତୋ ପାନ ଭଲଲାଗେ; ତୁ ସେପରି କୋଡ଼ିଏ ଖିଲ ପାନ ଗୋଟିଏ ସୁବର୍ଣ୍ଣ ପାତ୍ରରେ ଧରି ଆମ କକ୍ଷର ଦ୍ୱାରଠାରୁ କିଛି ଦୂରରେ ଛିଡ଼ାହୋଇଥିବୁ; ମୁଁ ଡାକିଲେ ଯାଇ ଭିତରକୁ ଯିବୁ। ମାଲିକ ମାଲିକାଣୀଙ୍କ କଥାବାର୍ତ୍ତା ଲୁଛିଛପି ଶୁଣି ତାକୁ ପ୍ରଚାର କରିବାର ଅଭ୍ୟାସ ଦାସଦାସୀମାନଙ୍କର ରହିଛି। ସେଥିପାଇଁ ମୁଁ ତୋତେ ସାବଧାନ କରାଇଦେଉଛି। ଆଜି ବୋଧହୁଏ ଆମେ ଅଧରାତି ପର୍ଯ୍ୟନ୍ତ କଥାବାର୍ତ୍ତାରେ କଟାଇବୁ; ସେତେବେଳେ ମଝିରେ ମଝିରେ ତାଙ୍କର ପାନ ଦରକାରହେବ। ମହାରାଜ ଗାଢ଼ ନିଦ୍ରାରେ ଶୋଇଯିବା ପରେ ମୁଁ ତୋତେ ଚାଲିଯିବା ଲାଗି ଅନୁମତି ଦେବି। ତୋ ବ୍ୟତୀତ କକ୍ଷର ଦ୍ୱାରରେ ଆଉ କେହି ଦାସୀ ଯେପରି ନ ରହନ୍ତି।"

ପାନବଟାଟିକୁ କକ୍ଷମଧ୍ୟରେ ରଖିନେବା କ'ଣ ଦେବଯାନୀ ପକ୍ଷରେ ଅସୁବିଧାଜନକ ଥିଲା ? କିନ୍ତୁ... ଦେବଯାନୀ ମହାରାଜାଙ୍କ ଶୟନକକ୍ଷକୁ ଯିବାମାତ୍ରେ ମୁଁ ଶୀଘ୍ରଶୀଘ୍ର ପାନ ଭାଙ୍ଗି, ପାନବଟା ଧରି ଦ୍ୱାରଦେଶରେ ଛିଡ଼ାହୋଇ ରହିଲି। କିଛି ସମୟ ପରେ ମହାରାଜ ଆସିବାମାତ୍ରେ ମୁଁ ପାନବଟା ତାଙ୍କ ଆଡ଼କୁ ବଢ଼ାଇଦେଲି। କିନ୍ତୁ ସେ ପାନ ନ ନେଇ ଚାଲିଗଲେ। ଖୁବ୍ ସମ୍ଭବତଃ ସେ ମୋତେ ଦେଖିପାରିନଥିଲେ, ଆଉ କେହି ଦାସୀ ହୋଇଥିବ ବୋଲି ସେ ବୋଧହୁଏ ଭାବିଥିଲେ। ସ୍ୱର୍ଗଅପ୍ସରା ତିଲୋତ୍ତମାଠାରୁ ଆହୁରି ସୌନ୍ଦର୍ଯ୍ୟମୟୀ ତାଙ୍କୁ ମହଲରେ ଚାହିଁ ବସିଛି, ସେତେବେଳେ ତାଙ୍କୁ ଆଉ କାହାରି ସୌନ୍ଦର୍ଯ୍ୟ ପ୍ରଲୁବ୍ଧ କରନ୍ତା କିପରି ?

କକ୍ଷର ଦ୍ୱାର ବନ୍ଦହୋଇଗଲା। ମୁଁ ଯାଇ ଦୂରରେ ପାନବଟା ଧରି ଛିଡ଼ାହୋଇ ରହିଲି। ମୁଁ ସେଇଠି ଏକୁଟିଆ ଭୂତପରି ଛିଡ଼ାହୋଇ ରହିଲି; ଏହାହିଁ ଥିଲା ଦେବଯାନୀର ଈର୍ଷାପୂର୍ଣ୍ଣ ବ୍ୟବସ୍ଥା। ଅନେକ ସମୟ ଛିଡ଼ାହୋଇ ରହିବା ଫଳରେ ମୋ ମନର ସଂଯମ, ଦୃଢ଼ତା ସବୁ କିଛି ସୀମା ଅତିକ୍ରମ କଲା; ଧୀରେ ଧୀରେ ଗ୍ଲାନି ଓ ଦୁଃଖ ମନକୁ ଆବୋରିବସିଲା। ମୁଁ ଭାବିଲି, ସେଦିନ ଗୋଟିଏ ଛୋଟିଆ କଥାରେ ଦେବଯାନୀ ସହିତ କଳିକରି ନଥିଲେ ଆଜି କାହିଁକି ଏ ଅବସ୍ଥା ଭୋଗିବାକୁ ପଡ଼ିଥା'ନ୍ତା ! ତା'ପରେ ପରେ ପୁଣି ମୁଁ ମୋର ଅମାନିଆ ମନକୁ ବୁଝାଇଦେଲି। କିନ୍ତୁ... ମୋର ଅଜାଣତରେ ମୋ ମନରେ ପ୍ରେମ ସମ୍ପର୍କରେ ନାନା କୁତୂହଳ ଜାତହେଲା ଏବଂ ମନଗହନର ଗଭୀର କୋଣରେ ପ୍ରଣୟର ଅତୃପ୍ତ ବାସନା ଦୀପ୍ତ ହୋଇଉଠିଲା।

ସେଠାରେ ଏକୁଟିଆ ଛିଡ଼ାହେବା ଫଳରେ ଗୋଟିଏ ଗୋଟିଏ ମୁହୂର୍ତ୍ତ ଯୁଗ ଯୁଗ ପରି ବୋଧହେଲା। ହଠାତ୍ କ୍ରୁଦ୍ଧ ସ୍ୱର ଖୁବ୍ ଅସ୍ପଷ୍ଟ ଭାବରେ ଶୁଣାଗଲା। ସେ ସ୍ୱର ଥିଲା, ଦେବଯାନୀର। ମଧୁର ମିଳନର ମଧୁଯାମିନୀରେ ପ୍ରଣୟୀ-ପ୍ରଣୟିନୀଙ୍କ ହୃଦୟ ଅନୁରାଗରେ ଭରପୂର; ସେଥିରେ ପୁଣି କ୍ରୋଧର ସ୍ଥାନ...! ଶୁଣିବାକୁ ଖୁବ୍ ଆଗ୍ରହ ହେଲା; କେଇ ପହଣ୍ଡ ମୁଁ ଆଗେଇଗଲି; କିନ୍ତୁ ପୁଣି ମୋର ଦୃଢ଼ନିଶ୍ଚୟତା ମୋତେ ଦ୍ୱାରଦେଶରୁ ଫେରାଇ ଆଣିଲା।

ମୁଁ ଅନେକ କାବ୍ୟ ପାଠକରି ଜାଣିଛି; ପ୍ରେମିକ-ପ୍ରେମିକାଙ୍କ ମିଳନରେ ବ୍ରହ୍ମାନନ୍ଦର ତଲ୍ଲୀନତା ରହିଥାଏ। ଅପୂର୍ଣ୍ଣ କଳସୀ ଭରିବାବେଳେ ହୁଏତ କିଛି ଶବ୍ଦ ହୁଏ, କିନ୍ତୁ କଳସୀ ପୂର୍ଣ୍ଣ ହୋଇଗଲେ ଆଉ ଶବ୍ଦ ଆସିବ କେଉଁଠୁ? କିନ୍ତୁ କକ୍ଷ ଭିତରୁ କ୍ରୋଧପୂର୍ଣ୍ଣ ସ୍ୱର ଭାସିଆସୁଥିଲା, ଦେବଯାନୀ ହିଁ ଅଧିକ କହୁଥିଲା; ମହାରାଜ ଖୁବ୍ ନରମ ସ୍ୱରରେ କହୁଥିଲେ। ହଠାତ୍ ଜୋର୍‌ରେ ଦ୍ୱାର ଖୋଲି ଦେବଯାନୀ ଦ୍ରୁତ ପଦକ୍ଷେପରେ ନିଜ ମହଲ ଆଡ଼କୁ ଯିବାକୁ ଲାଗିଲା। ମୁଁ ପାନବଟାଟିକୁ ତା ଆଡ଼କୁ ବଢ଼ାଇ ଆଗେଇଗଲି। ସେ ମୋ ଆଡ଼କୁ କ୍ରୋଧପୂର୍ଣ୍ଣ ଚାହାଣିରେ କଟ୍‌ମଟ୍ ହୋଇ ଚାହିଁ, ପାନବଟାଟିକୁ ହାତରେ ଠେଲି ଦେଲା ଓ ତଳେ ପଡ଼ିଯାଇଥିବା ପାନଖିଲିଗୁଡ଼ିକୁ ଗୋଡ଼ରେ ଦଳି ଚକଟି ରାଗରେ ଟମଟମ ହୋଇ ଆଗେଇଗଲା।

# ଯଯାତି

ମଧୁଯାମିନୀର ଏକାନ୍ତ ମିଳନ କେଡ଼େ ଆହ୍ଲାଦକର! କେଡ଼େ ଉନ୍ମାଦକ!! ସେଭଳି କାବ୍ୟିକ ତଥା ରହସ୍ୟମୟ ପ୍ରେମପୂର୍ଣ୍ଣ ରଜନୀ ଆଉ ପତି-ପତ୍ନୀଙ୍କ ଜୀବନରେ କେବେହେଲେ ଆସେନାହିଁ। ଦୁଇଟି ସ୍ରୋତସ୍ୱିନୀର ମିଳନ, ଦୁଇଟି ଅଶାନ୍ତ ହୃଦୟର ଆଲିଙ୍ଗନ; ଧରିତ୍ରୀ ଓ ଆକାଶର ଚୁମ୍ବନ... ନା... ମିଳନ ଆକାଙ୍କ୍ଷାରେ ଆକାଙ୍କ୍ଷିତ ମନର ମିଳନ ବର୍ଣ୍ଣିବା ମହାକବିମାନଙ୍କର ସାଧାତୀତ।

ସନ୍ଧ୍ୟା ହୋଇଆସିଲା। ନଗରୀର ଦୀପୋତ୍ସବ ଦେଖିବା ଲାଗି ସମସ୍ତ ନରନାରୀ ରାଜମାର୍ଗରେ ଚଲାବୁଲା କଲେ। ସେ ଦୃଶ୍ୟ ଦେଖିବା ଲାଗି ମୁଁ ହର୍ମ୍ୟର ଶିଖରରେ ଆରୋହଣକଲି। ମୁଁ ଆକାଶର ଉନ୍ନତ ପରିସୀମା ଆଡ଼କୁ ଚାହିଁ ଦେଖିଲି, ଦପ୍‌ଦପ୍ କରି ଆକାଶ ପ୍ରାଙ୍ଗଣକୁ ସୁଶୋଭିତ କରି ଧୀର ପଦକ୍ଷେପରେ ତାରାମାନେ ଆଗମନ କଲେ; ଠିକ୍ ପର୍ଣ୍ଣକୁଟୀରର ଶାନ୍ତ ବାତାବରଣ ମଧ୍ୟରୁ କଳିକାଗୁଡ଼ିକ ଉଙ୍କି ମାରିଲାପରି।

ମୋତେ ଜଣାଗଲା, ମୁଁ ଅନେକ ସମୟରୁ ଛିଡ଼ାହୋଇରହିଛି। ସେପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅନ୍ଧକାର ଜଗତକୁ ବ୍ୟାପି ନଥାଏ। ବୋଧହୁଏ ରଜନୀର ପାନପତ୍ରରେ ତମିସ୍ରାରୂପକ ପ୍ରପାନକ ବିନ୍ଦୁବିନ୍ଦୁ କରି ଧୀରେଧୀରେ କେହି ପୂର୍ଣ୍ଣକରି ଦେଉଛି। ରଜନୀର ଶିଥିଳତା ମୋ ପକ୍ଷରେ ଅସହ୍ୟ ହୋଇଉଠିଲା। ଦେବଯାନୀ ମୋର କେତେ ନିକଟରେ! ଯେତିକି ନିକଟ ସେତିକି ଦୂର। ସେଦିନ ଓଦା ଲୁଗା ପିନ୍ଧିଥିବା ତା'ର ମନୋମୋହିନୀ ଅଙ୍ଗଶୋଭାଠାରୁ ଆରମ୍ଭ କରି, ଆଜି ହବନକୁଣ୍ଡ ନିକଟରେ ନାନାପ୍ରକାର ଅଳଙ୍କାରରେ ଭୂଷିତା ହୋଇ ମୋ ପାଖରେ ବସିଥିବା ମୂର୍ତ୍ତି ପର୍ଯ୍ୟନ୍ତ, ସବୁ ଗୋଟିଗୋଟି ହୋଇ ବିଭିନ୍ନ ବିଭାବ ସହିତ ମୋ ଆଖି ଆଗରେ ଝଲସିଉଠିଲା। ପ୍ରତ୍ୟେକ ରୂପର ଅପରୂପ ସୌନ୍ଦର୍ଯ୍ୟ ମୁଁ ଆକଣ୍ଠ ପାନ କଲାପରେ ମଧ୍ୟ ମୋର ଅତୃପ୍ତ ମନ ଓ ନେତ୍ର ଆହୁରି ପିପାସିତ ହୋଇଉଠିଲା। ଏସବୁ ବ୍ୟତୀତ ମୁଁ ଚାହୁଁଥିଲି ଦେବଯାନୀକୁ ଖୁବ୍ ନିକଟରେ, ଶୟନ ପଲଙ୍କରେ।

ଗୋଟିଏ ଗୋଟିଏ ମୁହୂର୍ତ୍ତ ମୋତେ ଯୁଗ ଯୁଗ ପରି ବୋଧହେଲା। ଆହୁରି ଗୋଟିଏ ପ୍ରହର ଏହିପରି ବ୍ୟାକୁଳତା ମଧ୍ୟରେ ବିତାଇବାକୁ ହେବ। ମୁଁ ମାଧବକୁ ଡକାଇଲି; ରଥରେ ବସି ଆମେ ନଗର ପରିକ୍ରମା କରିବାକୁ ବାହାରିପଡ଼ିଲୁ। ରାଜମାର୍ଗରେ ଅସଂଖ୍ୟ ନରନାରୀ, ବିଶେଷତଃ କିଶୋରୀ, ମୁଗ୍‌ଧା, ପ୍ରମଦା ଓ ପୁରାଙ୍ଗନା ମୋ ଦୃଷ୍ଟିରେ ପଡ଼ିଲେ। ସେମାନଙ୍କ ମଧ୍ୟରୁ କେତେକ ବିଧାତାଙ୍କ କଳାପୂର୍ଣ୍ଣ ହସ୍ତକୌଶଳର ପୂର୍ଣ୍ଣ ସୁଯୋଗ ପାଇଥିଲେ; କିନ୍ତୁ କାହାରି ସୌନ୍ଦର୍ଯ୍ୟ ମୋ ମନକୁ ପ୍ରଲୁବ୍ଧ କଲା ନାହିଁ। ମୋ ମନ ମଧ୍ୟରେ ଦେବଯାନୀର ସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ ସ୍ଥାନ ଅଧିକାର କରିନେଇଥିଲା; ସେଥିରେ ଆଉ ସ୍ଥାନ କାହିଁ ଯେ ଅନ୍ୟର ସୌନ୍ଦର୍ଯ୍ୟ ସ୍ଥାନ ପାଆନ୍ତା?

ମାଧବଙ୍କ ସାହଚର୍ଯ୍ୟରେ ମୁଁ ଚାରି-ଛଅ ଘଡ଼ି ବିତାଇ, ରାଜମହଲକୁ ଲେଉଟି ଆସିଲି; ଫଳାହାର କରିବା ଲାଗି ବସିଲି; କିନ୍ତୁ ଇଚ୍ଛା ହେଲାନାହିଁ। କେବଳ ମନ ମଧ୍ୟରେ ଛାଇରହିଲା ଦେବଯାନୀର ଆଲୌକିକ ରୂପସମ୍ଭାର, ଅପରୂପ ସୌନ୍ଦର୍ଯ୍ୟର ଛଟା। ମୁଁ ମହଲର ମଧୁଯାମିନୀ କକ୍ଷକୁ ପଶିଗଲି; ଦେଖିଲି ପଲଙ୍କ ଉପରେ ମୋ ମନର ସୌନ୍ଦର୍ଯ୍ୟ ରାଣୀ ବସିରହି ମୋ ଆଡ଼କୁ ଭାବପୂର୍ଣ୍ଣ ମୁଦ୍ରାରେ ଚାହୁଁଛି। ତା'ର ରୋମେ ରୋମେ ଲଜ୍ଜାର ପ୍ରକାଶ ଝଲ୍‌ମଲ୍ ହୋଇଉଠୁଛି। ମୁଁ ଅଧୀରତାର ସହିତ ପଲଙ୍କ ପାଖକୁ ଆଗେଇ ଯାଇ ବସିପଡ଼ିଲି। ସେ ମୋତେ ଦେଖି ଛିଡ଼ାହୋଇପଡ଼ିଲା। ମୁଁ ତା'ର ଚନ୍ଦ୍ରବିନିନ୍ଦିତ ମୁଖମଣ୍ଡଳକୁ ଚାହିଁ କହିଲି, "କୂଅ ଭିତରୁ ବାହାରିବା ପାଇଁ କାହାରି ହାତର ସାହାଯ୍ୟ ନିଆଯାଇପାରେ; କିନ୍ତୁ ପଲଙ୍କ ଉପରେ ବସିବା ପାଇଁ ନୁହେଁ।"

ଭାବିଥିଲି ଦେବଯାନୀ କିଛି ଗୋଟିଏ ରସରସିଆ ଉତ୍ତର ଦେବ; ସେ କିନ୍ତୁ ସ୍ତବ୍ଧ ହୋଇ ଛିଡ଼ାହେଲା। ତା'ର ଭ୍ରୁକୁଟି କୁଟିଳ ହୋଇଗଲା। ନାକର ଚମ୍ପାକଳୀ ସାମାନ୍ୟ କମ୍ପିଉଠିଲା। ବୁଝିପାରିଲି ନାହିଁ ସେ ପ୍ରକୃତରେ ରାଗିଛି କି ନାହିଁ। ତାକୁ ଖୁସି କରିବା ଲାଗି କହିଲି, "ମୋ ପିତା ଥରେ ସ୍ୱର୍ଗ ଅଧିକାର କରି ଇନ୍ଦ୍ରଙ୍କୁ ପରାଭବ ଦେଇଥିଲେ। ଏବେ ମୁଁ ମଧ୍ୟ ଇନ୍ଦ୍ରଙ୍କୁ ଜୟ କରିବା ଲାଗି ଆୟୋଜନ କରୁଛି।"

ମୁଁ ଆଶା କରୁଥିଲି ସେ ହଠାତ୍ କହିଉଠିବ; 'କ'ଣ ଆପଣ ଏ ସମୟରେ ଯୁଦ୍ଧକଥା କହୁଛନ୍ତି?' ନୋହିଲେ ଆଉ ମଧ୍ୟ କହିଥା'ନ୍ତା – 'ଠିକ୍ ଅଛି, ମୁଁ ସେ ସମୟରେ ଆପଣଙ୍କର ସାରଥି ହୋଇଯିବି।' କିନ୍ତୁ ସେ ତିଳେହେଲେ ହଲ୍‌ଚଲ୍ ହେଲାନାହିଁ। କିଛି ସମୟ ପୂର୍ବର ଭାବଗମ୍ଭୀର ତା'ର ମୁଖମଣ୍ଡଳ ରୁକ୍ଷ ହୋଇଉଠିଲା। ମୁଁ ଜାଣିଥିଲି ମାଆଙ୍କ ସହିତ ତା'ର ଆଦୌ ପଡୁନାହିଁ; କିନ୍ତୁ ମୁଁ ପ୍ରଥମରୁ ସ୍ଥିର କରିଥିଲି ଯେ, ଶାଶୂବୋହୂ କଳିରେ ମୁଁ ଆଦୌ ହସ୍ତକ୍ଷେପ କରିବିନାହିଁ। ଭାବିଲି, ବର୍ତ୍ତମାନ ତା'ର ଗମ୍ଭୀର ମୁଖମୁଦ୍ରାର କାରଣ ବୋଧହୁଏ ତାହାହିଁ ହୋଇପାରେ।'

ମୁଁ ତାକୁ କହିବାକୁ ଚାହୁଁଥିଲି, 'ମୁଁ ତୁମରି ସାହାଯ୍ୟରେ ଇନ୍ଦ୍ରଙ୍କୁ ଜୟ କରିବାକୁ ଚାହୁଁଛି ଦେବଯାନୀ! କିନ୍ତୁ ତୁମପରି ସୁନ୍ଦରୀ ସ୍ୱର୍ଗରେ ଅଛନ୍ତି କି...?' ଅବଶ୍ୟ ସେ ମୋତେ ଆଦୌ ସେ ସୁଯୋଗ ଦେଲାନାହିଁ। କ୍ରୋଧରେ ତମତମ ହୋଇଉଠିଲେ ସୁନ୍ଦରୀ ସ୍ତ୍ରୀର ମୁଖମଣ୍ଡଳ ଖୁବ୍ ଆକର୍ଷକ ହୋଇଉଠେ। ତା' ଆଡ଼କୁ ଚାହିଁ ଚାହିଁ ମୁଁ ଧୈର୍ଯ୍ୟ ହରାଇ ବସିଲି। ପଲଙ୍କ ଉପରେ ଲଇଁପଡ଼ି ମୁଁ ତାକୁ ମୋ ଆଡ଼କୁ ଭିଡ଼ିଆଣି, ଦୁଇ ହାତରେ ଧରି, ତା ମୁହଁକୁ ଉପରକୁ ଉଠାଇ, ତା ଗଣ୍ଡରେ ଚୁମ୍ବନଟିଏ ଆଙ୍କିଦେବାକୁ ଚେଷ୍ଟାକଲି।

ମୋ ହାତ ଦୁଇଟିକୁ ଜୋର୍‌ରେ ଛାଟିଦେଇ, କଳା ନାଗୁଣୀ ପରି ଫଅଁ-ଫଅଁ ଗର୍ଜିଉଠି ସେ ପଲଙ୍କ ପାଖରୁ ଦୂରେଇ ଯାଇ ଛିଡ଼ାହେଲା। ତା'ର ଅଦ୍ଭୁତ ଆଚରଣ ସମ୍ବନ୍ଧରେ ମୁଁ କିଛି ବୁଝି ନ ପାରି ନିର୍ବାକ୍ ହୋଇଗଲି। ଶର୍ମିଷ୍ଠାକୁ ଦାସୀ କରି ଆଣିବା ସମୟରେ ମୁଁ ତାର ଜିଦ୍‌ଖୋର ସ୍ୱଭାବ ଲକ୍ଷ୍ୟକରିଥିଲି। କିନ୍ତୁ ମୋତେ... ନିଜର ସ୍ୱାମୀ ସହିତ ସେ ଏପରି ବ୍ୟବହାର...!

ମୁଁ ନିଜକୁ ଖୁବ୍ ସଂଯତ କରିନେଇ କହିଲି– "ଦେବଯାନୀ, ତୁମକୁ କିଏ କ'ଣ କହିଛି ନା' କ'ଣ ?"

–"ମୋତେ କେହି କିଛି କହିନାହାନ୍ତି।"

–"କେହି ତୁମକୁ ଅପମାନିତ କରିନାହିଁ ତ ?"

–"ହଁ... କରିଛି...।"

–"କିଏ ସେ...?"

–"ଆପଣ...।"

–"ମୁଁ...?"

–"ହଁ... ଆପଣ..."

–"କେବେ ..?"

–"ବର୍ତ୍ତମାନ..."

–"ଏହାର ଅର୍ଥ...?"

–"କ'ଣ ଅର୍ଥ... ନିଆଁ ପାଉଁଶ... ସବୁ ଅନର୍ଥ ହିଁ ଅର୍ଥ। ଆଜି... ଏଇଠି... ଏଇ ମଙ୍ଗଳ ମୁହୂର୍ତ୍ତରେ, ମୋ ଜୀବନର ଅତ୍ୟନ୍ତ ଆନନ୍ଦଜନକ ମୁହୂର୍ତ୍ତରେ, ଆପଣ ମଦ୍ୟପାନ କରି ଏଠାକୁ ଆସିଛନ୍ତି... ଆପଣଙ୍କ ମୁହଁରୁ ଦୁର୍ଗନ୍ଧ ବାହାରୁଛି...।"

ମଦ୍ୟ...? ମୁଁ କ'ଣ ମଦ୍ୟପାନ କରି ଆସିଥିଲି ? ନା... ମାଧବ ସହିତ ତାଙ୍କ ଘରକୁ ଯାଇଥିଲି। ମୋତେ ସ୍ୱାଗତ ଜଣାଇବାକୁ ଯାଇ ସେ ଉତ୍କୃଷ୍ଟ ଧରଣର ମାଧ୍ୱୀ ପିଇବାକୁ ଦେଇଥିଲା। ମୁଁ ମଧ୍ୟ କୌତୂହଳରେ ସେଥିରୁ ଟିକିଏ ପିଇଥିଲି। ତେଣୁ ମୁଁ କହିଲି, "ଦେବଯାନୀ, ମୁଁ ମଦ୍ୟପାନ କରିନାହିଁ। ଟିକିଏ ମାଧ୍ୱୀ...।"

"ମୋତେ ଆଉ ଅଧିକ ବୁଝାଇବାକୁ ହେବନାହିଁ। ମଦ୍ୟର ସବୁତକ ନାମ ମୋର କଣ୍ଠସ୍ଥ ରହିଛି। ଅସୁରଙ୍କ ରାଜ୍ୟରେ ମଦ୍ୟର ଚଳଣି ଖୁବ୍; ଏହି ମଦିରା ଲାଗି ମୋ ବାପା ସଂଜୀବନୀ ପରି ଅମୋଘ ବିଦ୍ୟାକୁ ହରାଇବସିଲେ। ସେଥିପାଇଁ ସେ ମଦ୍ୟ ଛାଡ଼ିଲେ। ସେହି ଦିନଠାରୁ ସେ ନିୟମ ପ୍ରସ୍ତୁତ କଲେ, ଯଦି ବ୍ରାହ୍ମଣ ମଦ୍ୟପାନ କରେ, ତେବେ ତା ପାଟିରେ ତରଳ ସୀସା ଢାଳିଦିଆଯିବ।"

–"ମୋର ମହାଭାଗ୍ୟ ଯେ ମୁଁ ବ୍ରାହ୍ମଣ ନୁହେଁ।" ମୁଁ ବେଶ୍ ବିରକ୍ତିମିଶା ସ୍ୱରରେ ଉତ୍ତର ଦେଲି। ଏହି ଆନନ୍ଦ ମୁହୂର୍ତ୍ତରେ ଗୋଟିଏ ଅତି ସାମାନ୍ୟ କଥା ଆଳରେ, ସେ ଯେଉଁ ଢଙ୍ଗ ବାହାର କରିଛି, ସେଥିପାଇଁ ମୁଁ ମନେ ମନେ ଖୁବ୍ ରାଗିଗଲି। ଦେବଯାନୀ ପୂର୍ବପରି କ୍ରୋଧପୂର୍ଣ୍ଣ ସ୍ୱରରେ କହିଲା– "ଆପଣ ନ ହେଲେ କ'ଣ ହେବ; ମୁଁ ତ ବ୍ରାହ୍ମଣଘରର ଝିଅ ! ମୁଁ ବ୍ରାହ୍ମଣ ତପସ୍ୱୀ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା। ମୁଁ ଦୂରରୁ ମଧ୍ୟ ମଦ୍ୟର ଗନ୍ଧ ସହ୍ୟ କରିପାରିବିନାହିଁ।"

–"ତୁମେ ଯେପରି ନିଜ ପିତାଙ୍କର କନ୍ୟା, ସେହିପରି ମୋର ମଧ୍ୟ ଧର୍ମପତ୍ନୀ। ମୁଁ କ୍ଷତ୍ରିୟ– ମଦ୍ୟପାନ ମୋ ପକ୍ଷରେ ବାରଣ ନୁହେଁ।"

–"କିନ୍ତୁ ମୋ ବାପା ମଦ୍ୟପାନ ତ୍ୟାଗ କରିଦେଇଛନ୍ତି। ସେ... ମଧ୍ୟ ମଦ୍ୟପାୟୀଙ୍କର ଘୋର ଶତ୍ରୁ ଥିଲେ...।"

—"ସେ...? ସେ କିଏ ?" ମୋ ମୁଣ୍ଡରେ କ୍ରୋଧର ଭୂତ ସବାର ହୋଇଥିଲା ଏବଂ 'ସେ' ଶବ୍ଦ ଶୁଣିବାମାତ୍ରେ ମୋ ମନର ଭୂତ ପିଶାଚରେ ପରିଣତ ହୋଇଗଲା । ମୁଁ ଉତ୍ତେଜନାପୂର୍ଣ୍ଣ କଣ୍ଠରେ କହିଲି, "କହୁନାହଁ... 'ସେ' କିଏ ସେ ?"

ଦେବଯାନୀ ସ୍ତବ୍ଧ ହୋଇଗଲା । ଏପର୍ଯ୍ୟନ୍ତ ସେ ମୋ ଉପରେ ରାଗି ଏଣୁତେଣୁ କହିଚାଲିଥିଲା, ତା' କଥାର ବେଶ୍ ପ୍ରତିଶୋଧ ନେବାର ପାଳି ମୋ ହାତରେ ପଡ଼ିଲା । ମୁଁ ଆହୁରି ରୁକ୍ଷ କର୍କଶ ସ୍ୱରରେ ପଚାରିଲି, "କି...? ମୁହଁର ଭାଷା ବନ୍ଦହୋଇଗଲା କାହିଁକି? କହୁନାହଁ କାହିଁକି... 'ସେ' କିଏ ସେ?" କ୍ରୋଧରେ ତମତମ ହୋଇଯାଇ, ଓଠ କାମୁଡ଼ି ସେ ଉତ୍ତର ଦେଲା, "ତା'ର ନାଁ ଧରିବାରେ ମୁଁ କାହାରିକୁ ଭୟ କରେନାହିଁ। କଚ ମଧ୍ୟ ମଦ୍ୟପାନ ପସନ୍ଦ କରୁନଥିଲା ।"

ସାଧାରଣ ଭାବରେ ଈର୍ଷ୍ୟା ମୋ ମନରେ ଜାଗ୍ରତ ହେଲା । ମୁଁ ଆହୁରି ଟିକିଏ ଉତ୍ତେଜିତ ହୋଇ କହିଲି, "ମନେରଖ, ଏଇଟା ହସ୍ତିନାପୁରର ରାଜପ୍ରାସାଦ। ଏହା ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ ନୁହେଁ କିମ୍ବା କଚର ପତ୍ରକୁଡ଼ିଆ ନୁହେଁ, ବୁଝିଲ? ଯେ ମଦ୍ୟକୁ ପସନ୍ଦ ନକରେ ସେ ହୁଏତ ତା' ସ୍ପର୍ଶ କରିନପାରେ; କିନ୍ତୁ କାହାର ପସନ୍ଦ ଅପସନ୍ଦ ମୋ ଉପରେ କାହିଁକି ଲଦିଆଯାଉଛି? ମୁଁ କ'ଣ କାହାର ଚାକର କି? ମୁଁ ରାଜା... ହସ୍ତିନାପୁରର ରାଜା ଯଯାତି! ଏଠାକାର ପ୍ରଭୁ!! ଏଠାରେ କଚର କୌଣସି ଆବଶ୍ୟକତା ନାହିଁ କିମ୍ବା ଏଠାକାର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବାର ଅଧିକାର ଶୁକ୍ରାଚାର୍ଯ୍ୟଙ୍କର ନାହିଁ। ତୁମେ ମୋର ଧର୍ମପତ୍ନୀ, ମୋ ସୁଖ-ଦୁଃଖ ପ୍ରତି ଦୃଷ୍ଟି ଦେବା ତୁମର...!"

"ଆପଣ ନିଜ ସୁଖ-ସମୃଦ୍ଧି ପ୍ରତି ଦୃଷ୍ଟି ଦେଇ ସୁଖରେ...।" କହି ଅଗ୍ନିବାଣ ତୁଲ୍ୟ କ୍ରୋଧପୂର୍ଣ୍ଣ ଚାହାଣିରେ ଘଡ଼ିଏଯାଏ ମୋ ଆଡ଼କୁ ଚାହିଁରହିଲା ଦେବଯାନୀ। ତା'ପରେ ସେ ପିଶାଚଗ୍ରସ୍ତ ସ୍ତ୍ରୀଲୋକ ପରି ଖୁବ୍ ଜୋର୍‌ରେ କବାଟ ଖୋଲିଦେଇ କକ୍ଷର ବାହାରକୁ ଚାଲିଗଲା । ମୁଁ ଶେଯ ଉପରେ ଢଳିପଡ଼ିଲି। ପିତାଙ୍କୁ ଦିଆଯାଇଥିବା ଭୟଙ୍କର ଅଭିଶାପ ଠିକ୍ ଫଁଅଫଁଅ ଗର୍ଜନ କରି ଗୋଡ଼ାଇଥିବା ନାଗସାପ ପରି ମୋ ସ୍ମୃତିପଟଳକୁ ଅସ୍ଥିର କରିଦେଲା— "ନହୁଷର ଯେ ପୁତ୍ର... କେବେହେଲେ ସୁଖୀ ହେବେ ନାହିଁ।"

ଆମ ପ୍ରଣୟର ପ୍ରଥମ ମିଳନରାତ୍ରି ଏହିପରି ଭାବରେ ଜଳିପୋଡ଼ି ଛାରଖାର ହୋଇଗଲା । ସେହି ମଧୁଚନ୍ଦ୍ରିକାର ଶୁଭଲଗ୍ନରେ ମୁଁ ଅଭିଶାପର ପ୍ରଚଣ୍ଡ ଜ୍ୱାଳା ବେଶ୍ ଅନୁଭବ କରିପାରିଲି। ଏପରି ଅକାଳ ବଜ୍ରପାତର ସମ୍ଭାବନା ମୁଁ ଆଦୌ କରିନଥିଲି। ମୁଷଳଧାରା ବର୍ଷାରେ ବ୍ୟତିବ୍ୟସ୍ତ କୌଣସି ପଥିକ ଗୋଟିଏ ଗଛମୂଳରେ ଆଶ୍ରୟ ନେଇଥିବା ସମୟରେ ସେ ଗଛ ଉପରେ ବଜ୍ରପାତ ହେଲେ ସେହି ଲୋକର ଅବସ୍ଥା ଯେପରି ଶୋଚନୀୟ ହୋଇଉଠେ; ମୋର ଦଶା ଠିକ୍ ସେହିପରି ହୋଇଗଲା । ଅତୃପ୍ତ ମନ ତଥା ସନ୍ତପ୍ତ ହୃଦୟରେ ମୁଁ ସାରା ରାତି ଅକଥନୀୟ ଯାତନା ଅନୁଭବ କଲି।

କି ମହାନ୍ ଚିନ୍ତା ଓ ସୁଖଦ ଭାବନାର ସ୍ରୋତରେ ମୁଁ ଉବେଇ-ଟୁବେଇ ହୋଇ ମଧୁଯାମିନୀର ମଙ୍ଗଳମୟ କକ୍ଷ ମଧ୍ୟରେ ପ୍ରବେଶ କରିଥିଲି! ମୋ ଅନ୍ତରରେ

ଭରିରହିଥିଲା ଦେବଯାନୀର ଅନିନ୍ଦ୍ୟ ସୁନ୍ଦର ରୂପ। ମୁଁ କେବଳ ତା' ଶରୀରର ଉପଭୋଗ ଚାହୁଁନଥିଲି; ତା' ମନ ଉପରେ ଅଧିକାର କରିବା ଥିଲା ମୋ ଅନ୍ତରର କାମନା। ଅଳକାର ମୃତ୍ୟୁ ଫଳରେ ଆମ ମାଆ ପୁଅଙ୍କ ମଧ୍ୟରେ ବିଭେଦର ଗୋଟିଏ ଉନ୍ନତ ପ୍ରାଚୀର ଛିଡ଼ାହୋଇଥିଲା। ମୁକୁଳିକାର ଅଙ୍ଗସୁଖ ଲାଭକରି ମୁଁ ଅବଶ୍ୟ କିଛିଦିନ ମନେ ମନେ ଆଶ୍ୱସ୍ତ ହୋଇଥିଲି; କିନ୍ତୁ ସେ ସୁଖ ମଧ୍ୟରେ ଥିଲା କେବଳ ପାଶବିକତା। ସେ ପ୍ରକାର କ୍ଷଣିକ ସୁଖ ଅପେକ୍ଷା ଅଧିକ ଉନ୍ନତ ଧରଣର ଆନନ୍ଦ ତଥା ପ୍ରଣୟର ମହାନ୍ ସୌଧ ଗଠନର ପରିକଳ୍ପନା ନେଇ ମୁଁ ଆସିଥିଲି ମଧୁଚନ୍ଦ୍ରିକାର ଉପଭୋଗ ଲାଗି; କିନ୍ତୁ ହାୟ . . . !

× × × × ×

ଅଳକାର ମୃତ୍ୟୁର ଅବ୍ୟବହିତ ପରେ ରାଜ୍ୟାଭିଷେକ ଉତ୍ସବ ସମ୍ପନ୍ନ ହୋଇଥିଲା। ମାଆ ସେସମୟରେ ମୋତେ କୋଟି କୋଟି ଆଶୀର୍ବାଦ ଦେଇଥିଲେ। ରାଜପୋଷାକ ତଥା ରାଜବୈଭବରେ ସଜ୍ଜିତ ନିଜ ପୁତ୍ରକୁ ଦେଖି ସେ ମନେ ମନେ ଅତ୍ୟନ୍ତ ତୃପ୍ତ ହୋଇଥିଲେ। କିନ୍ତୁ ସେହି ସମୟରେ ଅଳକାର ମାଆ କଳିକା ଗୋଟିଏ ପାଖରେ ଛିଡ଼ାହୋଇ ଆଖିରୁ ଲୁହ ଗଡ଼ାଉଥିଲା। ତା' ଆଖିର ଲୁହ ଦେଖି ମୋ ଛାତି ଥରିଉଠିଲା। ଗୋଟିଏ ସ୍ଥାନରେ ଜଣେ ହତ୍ୟାକାରିଣୀ ରାଜମାତା ଐଶ୍ୱର୍ଯ୍ୟର ମତ୍ତତାରେ ଉତ୍‌ଫୁଲ୍ଲ ହୋଇଉଠୁଥିଲା ଏବଂ ଅନ୍ୟଜଣେ ନିରୀହା ମାତା ତା'ର ଏକମାତ୍ର କନ୍ୟା ପାଇଁ ଆଖିରୁ ଲୁହ ଝରାଉଥିଲା। ତା'ର ଏକମାତ୍ର କନ୍ୟା ବିଚାରୀ ନିର୍ଯ୍ୟାତିତା ଅଳକା କୁଆଡ଼େ ଗଲା, ଏ ସମ୍ବନ୍ଧରେ କେହି ତାକୁ ସମ୍ବାଦ ଦେଇନଥିଲେ। ରାଜପ୍ରାସାଦ, କେବଳ ରାଜପ୍ରାସାଦ କାହିଁକି ଅଧିକାର, କ୍ଷମତା ତଥା ବୈଭବର ପ୍ରତ୍ୟେକ କେନ୍ଦ୍ର, ଗୋଟିଏ ଗୋଟିଏ ପ୍ରଚଣ୍ଡ ଅଜଗର ସଦୃଶ। ସେ ଯେକୌଣସି ଗୁପ୍ତତଥ୍ୟକୁ ଅନାୟାସରେ ଗିଳିଦିଏ। ଯେଉଁ ରାଜମହଲରେ ପିତାଙ୍କ ଉପରେ ପଡ଼ିଥିବା ଭୟାବହ ଅଭିଶାପ, ଜ୍ୟେଷ୍ଠ ରାଜକୁମାର ଯତିର ସନ୍ନ୍ୟାସ ବ୍ରତ ଗ୍ରହଣ ପରି ଘଟଣା କୁଆଡ଼େ ଲୁଚିଛପି ରହିପାରିଲା; ସେଥିରେ ଗୋଟିଏ ସାମାନ୍ୟ ଦାସୀର ମୃତ୍ୟୁ-ସମ୍ବାଦ କିବା ଛାର? ତା'ର କନ୍ୟା ମହାମାରୀରେ ମରିଛି ବୋଲି ତାକୁ ସମ୍ବାଦ ଦିଆଗଲା। ଆଜି କିଏ କଥାକଥାକେ କହିଦେଲା ଯେ; ରାଜ୍ୟାଭିଷେକ ଉତ୍ସବରେ ଅଳକା ଥାଆନ୍ତା କି? ଏତିକି ଶୁଣିବାମାତ୍ରେ ବିଚାରୀ କଳିକାର ମାତୃହୃଦୟ ବିଦୀର୍ଣ୍ଣ ହୋଇଗଲା। ଅଭିଷେକ ପରି ଏକ ମଙ୍ଗଳ-ଉତ୍ସବ ଦିନରେ ଆଖିରୁ ଲୁହ ଗଡ଼ାଇବା ଅମଙ୍ଗଳସୂଚକ ବୋଲି ଜାଣିଥିଲେ ସୁଦ୍ଧା, ତା'ର ଅମାନିଆ ଆଖିରେ ଲୁହଧାର ସମ୍ଭଳା ପଡ଼ିଲା ନାହିଁ। ମାଆଙ୍କ ଆଖିରେ ଏ ଦୃଶ୍ୟ ପଡ଼ିବାମାତ୍ରେ ସେ ଖୁବ୍ ରାଗିଯାଇ କହିଲେ – "ଯା . . . ଅଲକ୍ଷଣି, ଶୀଘ୍ର ଏଠାରୁ ବାହାରିଯା। ଯା . . . ଯାଃ . . . ତୋ ଭଉଣୀ ଘରକୁ ପଳା . . .। ଶଙ୍ଖୁନି, ଆଜି ଏ ଶୁଭଘଡ଼ିରେ ତୁ ମୋ ପୁଅର ଅମଙ୍ଗଳ କରୁଛୁ . . .?'

ମାଆଙ୍କ କଥା ଶୁଣି ମୋ ରୋମମୂଳ ଟାଙ୍କୁରି ଉଠିଲା। ମୁଁ ମାଆଙ୍କ ଉପରେ ମନେ ମନେ ଖୁବ୍ ରାଗିଉଠିଲି। ସେହିଦିନଠାରୁ ମୁଁ ଅଳକାର ମୃତ୍ୟୁର ପ୍ରତିଶୋଧ

ନେବାଲାଗି ମନେ ମନେ ପ୍ରତିଜ୍ଞା କଲି। ତା' ପରଠାରୁ ମାଆଙ୍କ ସହିତ ମୁଁ ଏକପ୍ରକାର କଥାବାର୍ତ୍ତା ବନ୍ଦକରିଦେଲି। ମଦ୍ୟପାନ ଓ ମୃଗୟାରେ ମାତି ଅଧିକାଂଶ ସମୟ ବିତାଇଦେଲି। ମାଆ ଅନେକ ସୁନ୍ଦରୀ, ଲାବଣ୍ୟବତୀ ରାଜକନ୍ୟାଙ୍କ ଚିତ୍ରପଟ ଦେଖାଇ ମୋ ବିବାହର ଆୟୋଜନ କଲେ; କିନ୍ତୁ କୌଣସି ନା କୌଣସି ଗୋଟିଏ ଦୋଷ ଦେଖାଇ, ମୁଁ ଚିତ୍ରପଟଗୁଡ଼ିକ ପ୍ରତ୍ୟାଖ୍ୟାନ କରିଦେଲି। ଏହାଫଳରେ ଅବଶ୍ୟ ମୋତେ ଆଶ୍ୱସ୍ତି ବୋଧହେଲା; କିନ୍ତୁ ମୋର ଅତୃପ୍ତ ଆତ୍ମା ପୂର୍ବପରି ବ୍ୟାକୁଳ ହେବାକୁ ଲାଗିଲା।

ଏହି ସମୟରେ ଦିନେ ହିମାଳୟର ପାଦଦେଶରେ ଥିବା ନିଘଞ୍ଚ ଅଞ୍ଚଳରେ ମୁଁ ଶିକାର କରୁକରୁ, ଅଜ୍ଞାତସାରରେ ରାକ୍ଷସ-ରାଜ୍ୟରେ ପ୍ରବେଶକଲି ଏବଂ ଦେବଯାନୀକୁ ଧର୍ମପତ୍ନୀ ରୂପେ ଗ୍ରହଣ କରି ହସ୍ତିନାକୁ ଫେରିଆସିଲି।

ସେଦିନ ଗୋଟିଏ ଘଡ଼ି ମଧ୍ୟରେ; ଘଡ଼ିଏ ମଧ୍ୟ ନୁହେଁ; ଗୋଟିଏ ମୁହୂର୍ତ୍ତରେ ମୁଁ ଦେବଯାନୀକୁ ସ୍ୱୀକାର କରିନେଲି। ପ୍ରକୃତରେ ତାହା କେଡ଼େ ଅସ୍ୱାଭାବିକ ଓ ବିଲକ୍ଷଣ ଘଟଣା ନଥିଲା ? କିନ୍ତୁ ସେତେବେଳେ ମୋତେ ସେହି ଘଟଣାଟି ଅତ୍ୟନ୍ତ ସୁଖକର ତଥା କାବ୍ୟମୟ ବୋଧହୋଇଥିଲା। କୂଅ ମଧ୍ୟରୁ ବାହାରିଆସିଥିବା ଦେବଯାନୀ ମୋତେ ସମୁଦ୍ରମନ୍ଥନରୁ ମହାଲକ୍ଷ୍ମୀଙ୍କ ଉତ୍ପତ୍ତି ପରି ବୋଧହୋଇଥିଲା। ମୁଁ କ'ଣ କେବଳ ତା'ର ସୌନ୍ଦର୍ଯ୍ୟ ଦେଖି ତା' ଉପରେ ମୁଗ୍ଧ ହୋଇଥିଲି ? ନା... ମୁଁ ଭାବିଥିଲି ମାଆ ମୋ ପାଇଁ ଗୋଟିଏ କ୍ଷତ୍ରିୟ ରାଜକନ୍ୟା ଖୋଜୁଥିଲେ ପରା, ମୁଁ ବ୍ରାହ୍ମଣ-କନ୍ୟା ବିବାହକରିଗଲେ ସାରା ଜୀବନ ଏ ଘଟଣା ତାଙ୍କ ଆଖିରେ କଣ୍ଟାହୋଇ ରହିବ। ଗୋଟିଏ ନିରୀହା ବାଳିକାକୁ ହତ୍ୟାକରିବାର ପରିଣାମ ତାଙ୍କୁ ଜୀବନସାରା ଭୋଗକରିବାକୁ ପଡ଼ିବ। ଏଇଥିପାଇଁ ମୁଁ କେବଳ ଦେବଯାନୀକୁ ସାଦରେ ସ୍ୱୀକାର କରିନେଲି। ମାଆଙ୍କ ଉପରେ ବେଶ୍ ପ୍ରତିଶୋଧ ନିଆଯାଇପାରିଲା।

କୌଣସି ପ୍ରକାରର ଦ୍ୱିଧା ନକରି କେବଳ ଏହି ଦୁଇଟି ଉଦ୍ଦେଶ୍ୟରେ ମୁଁ ଯେ ଦେବଯାନୀକୁ ସ୍ୱୀକାର କରିଥିଲି ତା ନୁହେଁ; ଆଉ ମଧ୍ୟ ଗୋଟିଏ ଆଶାର ଆଲୋକ ମୋ ମନରେ ଉଙ୍କିମାରିଥିଲା। ଏ କନ୍ୟା ଶୁକ୍ରାଚାର୍ଯ୍ୟଙ୍କ ପୁତ୍ରୀ ବୋଲି ଜାଣିବାମାତ୍ରେ ମୋ ଆଖି ଆଗରେ ଗୋଟିଏ କମନୀୟ କଳ୍ପନା ଭାସିଉଠିଲା। ମୋ ବଂଶ ଉପରେ ଏକ ମହର୍ଷିଙ୍କର ଭୀଷଣ ଅଭିଶାପ ପଡ଼ିଛି। ସେଇ ଅଭିଶାପରୁ ଉଦ୍ଧାର ପାଇବା ଲାଗି ସେଇଭଳି ଜଣେ ପ୍ରସିଦ୍ଧ ମହର୍ଷିଙ୍କର ଆଶୀର୍ବାଦ ଆବଶ୍ୟକ। ଶୁକ୍ରାଚାର୍ଯ୍ୟ ସଂଜୀବନୀ ବିଦ୍ୟା ଲାଭ କରିବା ଭଳି ଉଗ୍ର ତପସ୍ୟା କରିଥିଲେ। ସେ ଯଦି ଜାଣିପାରିବେ ଯେ ଅଗସ୍ତି ଋଷିଙ୍କ ଅଭିଶାପ ଫଳରେ ତାଙ୍କ କନ୍ୟା ଓ ଜାମାତାଙ୍କ ସୁଖରସଂସାରରେ ବିଷଜ୍ୱାଳାର ତୀବ୍ର ଉତ୍ତାପ ଉଠୁଛି, ତା'ହେଲେ ସେ କ'ଣ ନୀରବରେ ବସିରହିବେ ? ସେ ଘୋର ତପସ୍ୟା କରି ମୋତେ ବ୍ରହ୍ମଶାପରୁ ନିଶ୍ଚୟ ଉଦ୍ଧାର କରିଦେବେ। ଏ ସଂସାରରେ ଯେକୌଣସି ଐଶ୍ୱର୍ଯ୍ୟସମ୍ପନ୍ନ ରାଜାର ଜାମାତା ହେଲେ ମଧ୍ୟ ମୁଁ ଏପ୍ରକାର ସୁବିଧା ପାଇପାରିବିନାହିଁ। କିନ୍ତୁ ଶୁକ୍ରାଚାର୍ଯ୍ୟ ଇଚ୍ଛାକଲେ...। ହଁ, କେଉଁ ଶ୍ୱଶୁର ବା ତା' ଜ୍ୱାଇଁର ମଙ୍ଗଳ କାମନା ନ କରେ ?

ଜାମାତାର ସୁଖ ଅର୍ଥ କନ୍ୟାର ସୁଖ। କେଉଁ ପିତା ନିଜ କନ୍ୟାର ମଙ୍ଗଳ କାମନା ନକରେ ? ତେଣୁ ମୁଁ ଆଉ ଭଲମନ୍ଦ, ଆଦି-ଅନ୍ତ କିଛି ବିଚାର ନକରି, କାହାରି ସହିତ ପରାମର୍ଶ ନକରି, ଦେବଯାନୀଙ୍କୁ ଅତ୍ୟନ୍ତ ଆଗ୍ରହ ସହକାରେ ପତ୍ନୀରୂପେ ଗ୍ରହଣ କରିନେଲି।

କିନ୍ତୁ ମୁଁ ଶୁକ୍ରାଚାର୍ଯ୍ୟଙ୍କୁ ଯେତିକି ଜାଣିଲି, ସେ ହେଉଛନ୍ତି ଭିନ୍ନ ପ୍ରକୃତିର ବ୍ୟକ୍ତି। ସେ ନିଜ କନ୍ୟାକୁ ଖୁବ୍ ସ୍ନେହକରୁଥିଲେ। ତଥାପି ଏଡ଼େ ବଡ଼ ରାଜାକୁ ଜାମାତା ରୂପେ ପାଇ ସେ ତିଳେହେଲେ ଆନନ୍ଦ ପ୍ରକାଶ କରିନଥିଲେ। ସତେ ଯେପରି, ଜଣେ ମହାନ୍ ଋଷି ଭାବରେ ତାଙ୍କ କନ୍ୟାର ସମ୍ପୂର୍ଣ୍ଣ ଅଧିକାର ମୋ ଉପରେ ଥିଲା। ମୋର ସୁଖ ଦୁଃଖ ବିଷୟରେ ପଚାରିବା ତ ଦୂରର କଥା, ଜଣେ ରାଜା ଭାବରେ ମୋତେ ଯଥୋଚିତ ସମ୍ବର୍ଦ୍ଧନା କରିବା ତ ତାଙ୍କ ପକ୍ଷରେ ଉଚିତ ଥିଲା ! ସେ କେବଳ ନିଜ କନ୍ୟାକୁ ବୁଝାଇବାରେ ଲାଗିଥିଲେ ଏବଂ କନ୍ୟାର ବିଚ୍ଛେଦ-ଦୁଃଖରେ ମ୍ରିୟମାଣ ହୋଇ ଦୀର୍ଘଶ୍ୱାସ ପକାଉଥିଲେ। ଶୁଣିଲି, ସେ କୁଆଡ଼େ ଘୋର ତପସ୍ୟା କରିବାଲାଗି ଚାଲିଯିବେ। ତାଙ୍କର ଏପ୍ରକାର କାର୍ଯ୍ୟକ୍ରମର ବିସ୍ତୃତ ବର୍ଣ୍ଣନା ମଧ୍ୟ ସେ ମୋତେ ଶୁଣାଇଥିଲେ। ଶୁକ୍ରାଚାର୍ଯ୍ୟଙ୍କର ବିଚାରିବାର ଥିଲା, ଯଯାତି ମଧ୍ୟ ଜଣେ ମନୁଷ୍ୟ। ସେ ଯେତେବେଳେ ନିର୍ବିଚାରରେ ତାଙ୍କ କନ୍ୟାକୁ ଗ୍ରହଣକରିଛି, ତା' ସହିତ ଆତ୍ମୀୟତା ଦେଖାଇବା କ'ଣ ଉଚିତ ହୋଇନଥାନ୍ତା ?

ଶର୍ମିଷ୍ଠା କ୍ଷଣକ ମଧ୍ୟରେ ଦେବଯାନୀର ଦାସୀ ହୋଇ ରହିବାକୁ ସ୍ୱୀକାରକରିନେଲା। କାଳେ କ୍ରୋଧର ବଶବର୍ତ୍ତୀ ହୋଇ ଶୁକ୍ରାଚାର୍ଯ୍ୟ ଦେଶ ଛାଡ଼ି ଚାଲିଯିବେ ଏବଂ ତା ଫଳରେ ରାକ୍ଷସକୁଳକୁ ବିପଦ ମାଡ଼ିଆସିବ, ଏଇଥିଲାଗି ସେ ଦେବଯାନୀର କ୍ରୋଧାଗ୍ନିରେ ନିଜକୁ ଆହୁତି ଦେଇଦେଲା। ଏହା କ'ଣ ଶର୍ମିଷ୍ଠାର କମ୍ ମହାନତା ? ଜଣେ ପ୍ରସିଦ୍ଧ ତପସ୍ୱୀ ଭାବରେ, ଜଣେ ବୃଦ୍ଧ ତଥା ଅନୁଭବୀ ବ୍ୟକ୍ତିରୂପେ ବିଶେଷତଃ ବୃଷପର୍ବାଙ୍କର ଗୁରୁଦେବ ଭାବରେ, ସେ ଶର୍ମିଷ୍ଠାକୁ ଦାସୀ ହେବାଲାଗି ଅନୁମତି ଦେଇନଥିଲେ କେତେ ଭଲହୋଇଥାନ୍ତା !

କିନ୍ତୁ ସେ ଜଣେ ମହାନ୍ ଋଷି ବୋଲି ତାଙ୍କ ମନରେ ଅହଙ୍କାର ପୂରିରହିଥିଲା; ତେଣୁ ସେ ସାଧାରଣ ଲୋକଙ୍କର ଦୁଃଖ-ସୁଖ ପ୍ରତି ଦୃଷ୍ଟି ଦେବେ କାହିଁକି ? ସେ କେବଳ ନିଜର ଜିଦ୍‌ଖୋର ଝିଅକୁ ବୁଝାଇବାରେ ତଥା ନିଜ ତପସ୍ୟା-ଚିନ୍ତାରେ ମଗ୍ନ ଥିଲେ। ମୁଁ ଅବଶ୍ୟ ଖୁବ୍ ଅଳ୍ପ ସମୟ ଲାଗି ରାକ୍ଷସଙ୍କ ରାଜଧାନୀରେ ରହିଥିଲି; ସେତିକି ସମୟ ମଧ୍ୟରେ ମୁଁ ଯାହା ଅନୁଧ୍ୟାନ କରିଛି, ଏ ବାପ-ଝିଅଙ୍କର ପ୍ରକୃତି ସ୍ୱତନ୍ତ୍ର। ଦେବଯାନୀର ଦୃଷ୍ଟିରେ ଶୁକ୍ରାଚାର୍ଯ୍ୟ ଥିଲେ ଜଗତ୍‌ର ମହାନ୍ ଋଷି। ଶୁକ୍ରାଚାର୍ଯ୍ୟ ଭାବୁଥିଲେ, ତାଙ୍କ ଝିଅ ପରି ସୁନ୍ଦରୀ ମହୀମଣ୍ଡଳରେ ଖୋଜିଲେ ମିଳିବ ନାହିଁ।

ଝିଅ ଶାଶୂଘରକୁ ଯିବାବେଳେ ପ୍ରତ୍ୟେକ ବାପର ଆଖିରୁ ଲୁହଧାର ଝରିପଡ଼େ ଏବଂ ଶୁକ୍ରାଚାର୍ଯ୍ୟ ମଧ୍ୟ ନିଜ ଆଖିରୁ ଲୁହ ଗଡ଼ାଇଥିଲେ; କିନ୍ତୁ ସଙ୍ଗେ ସଙ୍ଗେ ସେ ମୋତେ ଏକାନ୍ତ ସ୍ଥାନକୁ ଡାକିନେଇ କହିଲେ— ''ରାଜନ୍, ଦେବଯାନୀ ମୋର ଏକମାତ୍ର ଅଲିଅଳ ଝିଅ। ତା'ର ସୁଖ ହିଁ ମୋର ଆନନ୍ଦ; ଏ କଥା ତୁମେ

କେବେହେଲେ ଭୁଲିଯିବନାହିଁ। ତାକୁ ସବୁବେଳେ ସୁଖୀ କରିବା ଲାଗି ଚେଷ୍ଟାକରିବ। ମୁଁ ପୁଣି ଥରେ ତପସ୍ୟା କରି ସଂଜୀବନୀଠାରୁ ଆହୁରି ମହାନ୍ ବିଦ୍ୟା ଲାଭ କରିବାକୁ ଯାଉଛି। ମୋର ଆଶୀର୍ବାଦ ଦୁନିଆରେ ଏକ ମହାନ୍ ଶକ୍ତି ବୋଲି କେବେହେଲେ ଭୁଲିଯିବନାହିଁ। ମୁଁ ଯେତେ ବଡ଼ ତପସ୍ୱୀ, ତା'ଠାରୁ ଅଧିକ କ୍ରୋଧୀ ବ୍ରାହ୍ମଣ। ବିଚାରବନ୍ତ ଲୋକେ ଭୟଙ୍କର ବିଷଧର ସର୍ପ, ତୀକ୍ଷ୍ଣ ଅସ୍ତ୍ର ଏବଂ ଲେଲିହାନ ଶିଖା ବିସ୍ତାର କରିଥିବା ପ୍ରଜ୍ୱଳିତ ଅଗ୍ନି ଅପେକ୍ଷା ବ୍ରାହ୍ମଣର କ୍ରୋଧକୁ ବେଶି ଭୟକରନ୍ତି। ସର୍ପ କେବଳ ଜଣେ ଲୋକକୁ ଦଂଶନ କରିପାରେ, ଅସ୍ତ୍ର-ଶସ୍ତ୍ର ଏକାଧିକ ଲୋକଙ୍କୁ ଭୂତଳଶାୟୀ କରିଦିଏ, ଅଗ୍ନିର ପ୍ରଚଣ୍ଡ ଜ୍ୱାଳା ଗୋଟିଏ ଗ୍ରାମକୁ ଧ୍ୱଂସ କରିଦେଇପାରେ। ତୁମେ ଆଖି ଆଗରେ ଦେଖିଲ ତ, ବୃଷପର୍ବା କିପରି ମୋ'ରି ପାଦ ତଳେ ଅସହାୟ ଶିଶୁ ପରି ଲୋଟିପଡ଼ିଲା; ତା'ର ରାଜନନ୍ଦିନୀ ଶର୍ମିଷ୍ଠା ନାକ ରଗଡ଼ି ହୋଇ କିପରି ଦେବଯାନୀର ଦାସୀ ହୋଇ ଯାଉଛି। ତେଣୁ ଦେବଯାନୀର ମନରେ ଦୁଃଖ ଜାତହେବାଭଳି କୌଣସି କାର୍ଯ୍ୟ ଯେପରି ତୁମଦ୍ୱାରା ନହୁଏ। ତା' ମନରେ ଦୁଃଖ ଜାତ ହେବା ଅର୍ଥ, ମୁଁ ଦୁଃଖଜ୍ୱାଳାରେ ଦଗ୍ଧୀଭୂତ ହେବି ଏବଂ ତା'ର ପରିଣାମ ...।''

ମୁଁ ଭାବିଥିଲି, ମୋତେ ଯେପରି ଉପଦେଶ-ବାଣୀ ଶୁଣାଇଲେ, ଦେବଯାନୀକୁ ମଧ୍ୟ ସେହିପରି ଦି'ଚାରି ପଦ ହିତକଥା ଶୁଣାଇବେ। ମୁଁ ଶୁଣିଛି, ନବବଧୂ ସାଜି ଯିବାବେଳେ, ଘରର ପୁରୁଖା ଲୋକେ ତଥା ପିତାମାତା ଶାଶୂଘରେ ବହୂର ଆଚରଣ ସମ୍ବନ୍ଧରେ– ସ୍ୱାମୀଙ୍କ ସେବାରେ ମନଦେବୁ, ପରିବାରର ସୁଖଚିନ୍ତା କରିବୁ, ଗୁରୁଜନଙ୍କୁ ଆଦର କରିବୁ ଇତ୍ୟାଦି ଉପଦେଶ ନିଜ କନ୍ୟାକୁ ଦେଇଥାନ୍ତି। କିନ୍ତୁ ମହର୍ଷି ଶୁକ୍ରାଚାର୍ଯ୍ୟ ଭୁଲରେ ସୁଦ୍ଧା ଏପରି ଉପଦେଶ-ବାଣୀ ନିଜ କନ୍ୟାକୁ ଶୁଣାଇଲେନାହିଁ। କାରଣ ସେ ଥିଲେ ଜଣେ ମହାନ୍ ଋଷି। ଯା'ହେଉ, ବଡ଼ଲୋକଙ୍କର ବଡ଼ ଢଙ୍ଗ, ମୁଁ ଏହା ଚିନ୍ତାକରି ସେଠାରୁ ବିଦାୟ ନେଇ ଆସିଲି।

ଅଧରାତି ବିତିଗଲାଣି, ଦ୍ୱିତୀୟ ପ୍ରହରର ଘଣ୍ଟା ଜେତେବେଳୁ ମୁଁ ଶୁଣିସାରିଲିଣି। ଏହିସବୁ ପୁରୁଣା କଥା ଭାବୁ ଭାବୁ ମୁଁ କେବଳ କଡ଼ ଲେଉଟାଇବାରେ ଲାଗିଥାଏ। ପୁଣି ମନରେ ଭାବିଲି, ଦେବଯାନୀ ଆଜି ଯେଉଁ ଘଟଣା ଘଟାଇଲା ତା' ଫଳରେ ସମୁଦାୟ ରାଜମହଲରେ ଚହଲପଡ଼ିଯାଇଥିବ; ଦାସ ଦାସୀମାନେ ନିଜ ନିଜ ମଧ୍ୟରେ ଫୁସ୍‌ଫାସ୍ ହେଉଥିବେ। ଖୁବ୍ ସମ୍ଭବତଃ, ମଧୁଯାମିନୀର ଫୁଲଶେଯରୁ ଉଠି କୌଣସି ନାରୀ ନିଜ ସ୍ୱାମୀ ଉପରେ ରାଗି, ଏପରି ଉନ୍ମାଦଗ୍ରସ୍ତ ଭାବରେ ପଳାଇଥିବାର ଦୃଷ୍ଟାନ୍ତ ସେମାନେ କେବେହେଲେ ଦେଖିନଥିବେ କିମ୍ବା ଶୁଣିନଥିବେ। ବ୍ୟକ୍ତି ଯେତେ ଐଶ୍ୱର୍ଯ୍ୟଶାଳୀ ହେଲେ ମଧ୍ୟ ସଦାଚାର ନିୟମ ତା' ପାଖରେ କୋହଳ ହୋଇପାରେନାହିଁ। ଯେଉଁ ଦୁର୍ଘଟଣା ସାଧାରଣ ଦୀନହୀନ ପରିବାରରେ ଘଟେ ନାହିଁ; ତାହା ଆଜି ଗୋଟିଏ ସମୃଦ୍ଧ ରାଜପରିବାରରେ ଘଟିଗଲା। କାହିଁକି ଯା' ଘଟିଲା? କିଏ ଯା'ର କାରଣ କହିପାରିବ? କିଏ ବା ଯାଇ ଦେବଯାନୀକୁ ବୁଝାଇବ?

ମୁଁ ପୁଣି ଭାବିଲି, ଆଉ କେତେ ସମୟ ପରେ ସବୁଆଡ଼େ ନୀରବତା ଛାଇଯିବ ଏବଂ ନିଜ କକ୍ଷରେ ବସି ବିରହିଣୀ ମନେ ମନେ ଅନୁତାପ କରି, ପୁଣି ମୋ କକ୍ଷକୁ

ଫେରିଆସି, ମୋ ପାଦ ଆଉଁଷିଦେଇ ଆଖିରୁ ଦି'ଧାର ଅନୁତାପର ଲୁହ ଗଡ଼ାଇବ। ମୁଁ ସଙ୍ଗେ ସଙ୍ଗେ ତା'ର ହାତ ଦୁଇଟିକୁ ଧରିପକାଇ କହିବି– 'ଦୂର୍... ପାଗଳୀ; ଏ ହାତ କ'ଣ କଠୋର ପାଦସେବାର ଯୋଗ୍ୟ?' ସେ ସଙ୍ଗେ ସଙ୍ଗେ ମୋ କୋଳରେ ମୁହଁ ଲୁଚାଇ ଛୋଟ ପିଲାଙ୍କ ପରି ଅଳିକରି କହିବ, 'ମୋର ଭୁଲ ହୋଇଛି, ରାଗବେଳରେ କ'ଣ ଏଣୁତେଣୁ ଗୁଡ଼ାଏ କହିଦେଲି, ମୋତେ କ୍ଷମା କରି ଦିଅନ୍ତୁ; କ'ଣ କହୁଛନ୍ତି, କ୍ଷମାଦେବେ ତ?' ତା'ପରେ ମୁଁ ତା'ର କୋମଳ କେଶପାଶରେ ହାତ ବୁଲାଉ ବୁଲାଉ କହିବି– 'ମୁଁ ତୁମକୁ କ୍ଷମା ଦେବି କ'ଣ? ଆମେ ଦୁହେଁ କ'ଣ ପରସ୍ପରଠାରୁ ଭିନ୍ନ? ଆରେ ପାଗଳୀ, ଆମେ ପରସ୍ପରଠାରୁ ଭିନ୍ନ ନୁହଁନ୍ତି। ସଙ୍ଗମରେ ଲୀନହୋଇଥିବା ନଦୀ ଦୁଇଟି ପୁଣି କ'ଣ କେବେହେଲେ ଭିନ୍ନ ହୋଇପାରନ୍ତି? ତୁମକୁ କ୍ଷମାଦେବା ଅର୍ଥ ନିଜକୁ ନିଜେ କ୍ଷମାଦେବା।' ଏହା ଶୁଣିବାମାତ୍ରେ ସେ ଧୀରେ ଓଠଫାଙ୍କରେ ଚେନାଏ ହସ ବିଛାଡ଼ି ଦେଇ ନିଜେ ପୁଣି ମୋ...।

ହାୟ,..., କାହିଁକି ଯେ ଈଶ୍ୱର ମଣିଷକୁ ପବନରେ ଫାନ୍ଦ ପାତିବାଲାଗି ଗୁଡ଼ାଏ ବୁଦ୍ଧି ଦିଅନ୍ତି? ଦେବଯାନୀ 'ଏଇ ଆସୁଥିବ', 'ଏଇ ଆସିଗଲା' ହୋଇ ହୋଇ ମୁଁ କେତେ କ'ଣ ଭାବିଗଲି। ଯା'ହେଉ ସେ ଆସିଗଲେ ମୁଁ ଗତ କଥା ଭୁଲିଯାଇ ତାକୁ କହିବି– 'ତୁମେ ଗୋଟିଏ ଭିନ୍ନ ସଂସ୍କାରରେ ପ୍ରତିପାଳିତା; ଏ ବିଷୟ ମୋର ଆଗରୁ ବୁଝିବା ଉଚିତ ଥିଲା। ଆଜିର ଘଟଣା ଲାଗି ମୋତେ କ୍ଷମାକରିଦିଅ। ଆଜିଠାରୁ ଆଉ କେବେହେଲେ ମଦ୍ୟପାନ କରି ଯଯାତି ଶୟନମନ୍ଦିରକୁ ଆସିବନାହିଁ। ଯଦି ଏଥିରେ ବି ତୁମ ମନରେ ସନ୍ତୋଷ ଜାତ ନ ହୁଏ, ତେବେ ତୁମରି ରାଣ ପକାଇ ମୁଁ ଆଜିଠାରୁ ମଦିରା ତ୍ୟାଗକରିଦେଉଛି; ଆଉ ଦିନେହେଲେ ଯେକୌଣସି ପ୍ରକାର ମଦିରା ହେଉ ପଛକେ, ମୁଁ ସ୍ପର୍ଶ କରିବିନାହିଁ। ସେ ମୋ କଥା ଶୁଣି ମୋ ଗଳାରେ ବାହୁ ବେଷ୍ଟନ କରି କହିବ– 'ମୋ ପରି ଆପଣ ମଧ୍ୟ ଗୋଟିଏ ଭିନ୍ନ ଧରଣର–ସଂସ୍କାରରେ ବଢ଼ିଛନ୍ତି, ଏ କଥା ମୋର ମଧ୍ୟ ବୁଝିବା ଉଚିତ ଥିଲା। ଆପଣ ବୀର, କ୍ଷତ୍ରିୟ; ଆପଣଙ୍କୁ ରାଜ୍ୟର ଭଲମନ୍ଦ ବୁଝି ରାଜ୍ୟ ଶାସନ କରିବାକୁ ପଡୁଛି; ଯୁଦ୍ଧ କରିବାକୁ ପଡୁଛି। ମଦ୍ୟପାନ ଫଳରେ ଶରୀରରେ ଯେଉଁ ଉନ୍ମାଦନା ଜାତହୁଏ, ତାହା ଆପଣଙ୍କର ଏକାନ୍ତ ଆବଶ୍ୟକ। ଆପଣଙ୍କର ଏହି ସାଧାରଣ ସୁଖପ୍ରାପ୍ତିରେ ବାଧା ଦେବା ମୋର ଉଚିତ ନୁହେଁ। ମୁଁ କ'ଣ କରିବି? ମଦିରାର ତୀବ୍ର ମାଦକତା ଓ ଗନ୍ଧ ମୁଁ ସହ୍ୟକରିପାରେନାହିଁ। ମୋର ଆପଣଙ୍କଠାରେ ଏତିକି ଅଳି, ଆମର ଏକାନ୍ତ ମିଳନ ସମୟରେ ଆପଣ ଆଉ ମଦ୍ୟ ପାନ କରିବେନାହିଁ।

ରାତ୍ରିର ତୃତୀୟ ପ୍ରହରର ଘଣ୍ଟା ବାଜିଗଲା। ମୁଁ କଣ୍ଟକିତ ଫୁଲଶେଯରେ ପଡ଼ି ସାରା ରାତି ଛଟପଟ ହେଉଥିଲି। ମୋର କକ୍ଷ ଆଡ଼କୁ ଆସୁଥିବାର କାହାରି ପଦଶବ୍ଦ ଶୁଣାଗଲା ନାହିଁ। ଆସନ୍ତା ବା ଆଉ କିଏ? ଦେବଯାନୀର ଏ ଉଗ୍ର ବ୍ୟବହାର ଫଳରେ ମାଆଙ୍କ ମନରେ ଆଘାତ ଲାଗିଥିବ। ସେ କିନ୍ତୁ ଖୁବ୍ ବୁଦ୍ଧିମତୀ; ବହୂକୁ ବୁଝାଇବାକୁ ଯାଇ, ନିଜ ମାନହାନି କରିବାକୁ ସେ କେବେହେଲେ ପସନ୍ଦ କରିବେ

ନାହିଁ। ଶର୍ମିଷ୍ଠା ତ ଦେବଯାନୀର ଦାସୀ ହୋଇଆସିଛି– ସଖୀ ଭାବରେ ଦେବଯାନୀଙ୍କୁ କିଛି କହିବାର ଅଧିକାର ତା'ର ବା କୁଆଡ଼ୁ ଆସିଲା ? ତଥାପି ସେ ଯଦି ପୂର୍ବର ସାଙ୍ଗସୁଖ କଥା ମନେପକାଇ ତାକୁ ବୁଝାଇବାକୁଯାଏ, ଏ ବାଘୁଣୀ କ'ଣ ତାକୁ କଞ୍ଚା ନଚୋବାଇ ଛାଡ଼ିବ ? ଅନ୍ୟ ଦାସୀମାନଙ୍କ କଥା ପଚାରେ କିଏ ? କାନ ଥାଇ ସେମାନେ କାଲୁଣୀ, ଆଖି ଥାଇ ମଧ୍ୟ ଅନ୍ଧୁଣୀ ଏବଂ ଜିଭ ଥାଇ ସୁଦ୍ଧା ପଦେ କଥା କହିବାଲାଗି ତାଙ୍କର ଶକ୍ତି ନାହିଁ। ସେମାନେ ଖୁବ୍ ଧୀରେ ଧୀରେ ଏ ଘଟଣା ସମ୍ବନ୍ଧରେ କଥାବାର୍ତ୍ତା ହୋଇ ଶୋଇପଡ଼ିବେଣି।

ମନେ ମନେ ଚହଲବିକଳ ହୋଇ ମୁଁ ପଲଙ୍କରୁ ଉଠିପଡ଼ିଲି। ଅତୃପ୍ତ ମନ ତଥା ଅପମାନିତ ହୃଦୟର ପୀଡ଼ା, ଠିକ୍ ସାପବିଷ ଘାରିଲା ପରି ମର୍ମନ୍ତୁଦ ହୋଇଥାଏ। ଉପରକୁ ଆଘାତ ସାମାନ୍ୟ ବୋଲି ଜଣାପଡୁଥିଲେ ମଧ୍ୟ ସମୁଦାୟ ଶରୀରକୁ ଭିତରେ ଭିତରେ ନିସ୍ତେଜ କରିଦିଏ। କକ୍ଷର ଝରକା ଖୋଲି ମୁଁ ବାହାରକୁ ଚାହିଁଲି। ବାହାରେ ସୂଚୀଭେଦ୍ୟ ଅନ୍ଧକାର। ହଠାତ୍ ମୋର ମନେପଡ଼ିଗଲା ମୁକୁଳିକା ଓ ଅଳକାର ସ୍ମୃତି। ମୁକୁଳିକା ମୋତେ ଯାହା କିଛି ଦାନ କରିଛି ଏବଂ ଅଳକାଠାରୁ ମୁଁ ଯାହା କିଛି ପାଇଛି, ତା'ଠାରୁ ଆହୁରି ଉଦାତ୍ତ ତଥା ଉତ୍କଟ ପ୍ରେମ ପାଇବା ଲାଗି ମୁଁ ଦେବଯାନୀର ପାଣି ଗ୍ରହଣ କରିଥିଲି। ମୁଁ ସେହି ପ୍ରଣୟର ଚରିତାର୍ଥ ଲାଗି ଯେଉଁ ଫୁଲଶେଯ ସଜାଇଥିଲି, ତା'ରି ଭିତରୁ ବିଷଧର ସର୍ପ ବାହାରିପଡ଼ି ମୋତେ ଦଂଶନ କରିବାକୁ ଫଣା ଟେକି ଉଠିଛି।

ମୋ ଭିତରର ମନୁଷ୍ୟତ୍ୱ ଜାଗିଉଠିଲା, ମୋ ଅନ୍ତରର ପୌରୁଷ ମୋତେ ଧିକ୍କାର କଲା, ମୋ ହୃଦୟର ରାଜଶକ୍ତି ସଦର୍ପରେ ମୁଣ୍ଡଟେକିଉଠିଲା। ମୁଁ ମନେ ମନେ ଭାବିଲି– 'ମୁଁ ରାଜା, ମୁଁ ପରାକ୍ରମଶାଳୀ ଅସାଧାରଣ ମନୁଷ୍ୟ, ବିଭବଶାଳୀ ଚକ୍ରବର୍ତ୍ତୀ ସମ୍ରାଟ୍। ମୁଁ ଯେକୌଣସି ପ୍ରକାର ସୁଖଭୋଗ କରିପାରେ। ମୋର କିଛି ଅଭାବ ହେବନାହିଁ। ମୁଁ ଇଚ୍ଛାକଲେ ଏଇ ଅନ୍ତଃପୁରରେ ପ୍ରତିଦିନ ଗୋଟିଏ ଗୋଟିଏ ସୁନ୍ଦରୀ ଅପ୍‌ସରାଙ୍କୁ ଅଙ୍କଶାୟିନୀ କରିପାରେ।'

× × × × ×

ପରଦିନ ସକାଳେ ଉଠିବା ପର୍ଯ୍ୟନ୍ତ ମୋ ଅନ୍ତରରେ କ୍ରୋଧ ଶାନ୍ତହୋଇନଥିଲା। ମନେ ମନେ ମୁଁ ଲଜ୍ଜିତ ହୋଇଉଠିଥିଲି। ଭାବିଲି, ଯାଉଛି ମୃଗୟା ଉଦ୍ଦେଶ୍ୟରେ ବାହାରିପଡ଼ିବି। ଏହି ସମୟରେ ଶର୍ମିଷ୍ଠା ଦ୍ରୁତପଦକ୍ଷେପରେ କକ୍ଷ ଭିତରକୁ ପଶିଆସି ହାତଯୋଡ଼ି କହିଲା– "ରାତିରେ ମହାରାଣୀଙ୍କ ସ୍ୱାସ୍ଥ୍ୟ ହଠାତ୍ ଖରାପ ହୋଇଗଲା। ରାଜବୈଦ୍ୟ ବର୍ତ୍ତମାନ ତାଙ୍କୁ ଦେଖି ଔଷଧ ବ୍ୟବସ୍ଥା କରିଦେଇଗଲେ। ଚିନ୍ତାର ବିଶେଷ କାରଣ ନାହିଁ। କିନ୍ତୁ ମହାରାଜ ଯଦି ଟିକିଏ ଯାଇ ହାଲ୍‌ଚାଲ୍ ପଚାରିଦିଅନ୍ତେ, ତା'ହେଲେ ଔଷଧ ପ୍ରୟୋଗ ଅପେକ୍ଷା ତାହା ଅଧିକ ଉପକାରୀ ହୁଅନ୍ତା।"

ଏହା କହୁଥିବା ସମୟରେ ଶର୍ମିଷ୍ଠାର ମୁଖମଣ୍ଡଳରେ ଆକର୍ଷକ ହାସ୍ୟଛଟା ଖେଳିଗଲା; ମନେହେଲା ସତେଯେପରି, ନିର୍ମଳ ଗଗନରେ ଦାମିନୀର ସ୍ୱର୍ଣ୍ଣରେଖା ଆଙ୍କିହୋଇଗଲା।

ହଠାତ୍ ମୋର ମନେପଡ଼ିଗଲା, କାଲି ରାତିରେ ହାତରେ ପାନଥାଳିଆଟିଏ ଧରି ଗୋଟିଏ ଦାସୀ ଦ୍ୱାରଦେଶରେ ଛିଡ଼ାହୋଇଥିଲା; ସେ କିଏ ? ଶର୍ମିଷ୍ଠା ନୁହେଁ ତ ? ମୁଁ ମନେପକାଇବା ଲାଗି ଖୁବ୍ ଚେଷ୍ଟାକଲି; କିନ୍ତୁ ସେ ଦାସୀର ମୁହଁଟି ମୋ ମାନସପଟଳର ଧୂମିଳ ରେଖାରେ ଅନ୍ତର୍ହିତ ହୋଇଗଲା । ଶେଷକୁ ମୁଁ ପଚାରିଲି– "ତୁ... ତୁମେ କାଲି ରାତିରେ ଦ୍ୱାରପାଖରେ ଛିଡ଼ାହୋଇଥିଲ କି ?"

ସେ କେବଳ ମୁଣ୍ଡ ହଲାଇଦେଇ ସ୍ୱୀକୃତି ଜଣାଇଲା । ରାତିରେ ମୁଁ ଶର୍ମିଷ୍ଠାକୁ ଆଦୌ ଚିହ୍ନିପାରିନଥିଲି । ନା... ମୁଁ ମାଧବକୁ ମନାକରିଥିଲେ ମଧ୍ୟ, ତା'ରି ଆଗ୍ରହରେ ବୋଧହୁଏ ଟିକିଏ ଅଧିକ ମାଧ୍ୱୀ ପିଇଦେଇଛି । ମୋତେ ଅନ୍ୟମନସ୍କ ଭାବରେ ଚିନ୍ତାକରୁଥିବା ଦେଖି କହିଲା ଶର୍ମିଷ୍ଠା– "ପିଲାଟିଦିନରୁ ମୁଁ ମହାରାଣୀଙ୍କ ସାଙ୍ଗସଖୀ; ମୁଁ ଭଲଭାବରେ ଜାଣିଛି, ତାଙ୍କର ସ୍ୱଭାବ ଜିଦ୍‌ଖୋର । ବେଳେବେଳେ ସେ ଖୁବ୍ ବେଶୀ ରାଗିଯାଆନ୍ତି । ତାଙ୍କର ଏପରି ଖାମଖିଆଲ ସ୍ୱଭାବ ଲାଗି ମହାରାଜ ଅନୁତାପ କରିବା ଉଚିତ ହେବନାହିଁ ।" ଟିକିଏ ନୀରବ ରହି ସେ ପୁଣି କହିଲା– "ମୁଁ ଜାଣେ, ଦାସୀଟାଏ ହୋଇ କାବ୍ୟିକ ଆଲୋଚନା କରିବା ମୋ ପକ୍ଷରେ ଆଦୌ ଉଚିତ ନୁହେଁ । କିନ୍ତୁ ପ୍ରତ୍ୟେକ କବିଙ୍କ ବର୍ଣ୍ଣନାରୁ ଜଣାଯାଏ, କଳହ ବିନା ପ୍ରେମର ଆନ୍ତରିକତା ଜଣାପଡ଼େନାହିଁ ।" ଶେଷ କଥାପଦକ ସେ ତଳକୁ ଚାହିଁ ସଙ୍କୋଚ ଓ ଭୟର ସହିତ କହୁଥିଲା ପରି ଜଣାଗଲା । ତା'ର କଥା ଶୁଣି ମୋ ହୃଦୟ ପୁଲକିଉଠିଲା । ମୁଁ ଭାବିଲି– ଓଃ, ଶର୍ମିଷ୍ଠାର ହୃଦୟ କେଡ଼େ ବିଶାଳ ! ଯେଉଁ ଦେବଯାନୀ ତାକୁ ରାଜଜେମାର ଉନ୍ନତ ସୋପାନରୁ ତଳକୁ ଟାଣିଆଣି ରଙ୍ଗମହଲର ଦାସୀରୂପେ ଛିଡ଼ାକରାଇଛି, ତା' ହୃଦୟର ସମସ୍ତ ଆଶା-ଆକାଂକ୍ଷା ତଥା କୋମଳ ଭାବନାକୁ ଦଳି ଚକଟି ଦେଇଛି, ସେହି ଦେବଯାନୀର ଆନନ୍ଦ ଲାଗି ଆଜି ସେ ମଧ୍ୟସ୍ଥତା କରିବାକୁ ଆସିଛି ।

ଜୀବନର ଅମାନିଶିରେ ସତେ କ'ଣ ଚନ୍ଦ୍ରୋଦୟ ହେବ ? ଅନ୍ଧକାରାଚ୍ଛନ୍ନ ମୋର ମନଗହନରେ ଧୀରେ ଧୀରେ ଆଲୋକ ଛାଇଗଲା । ଅନ୍ଧାରି ହୃଦୟରେ ମୁଁ ପ୍ରଫୁଲ୍ଲ ଚାନ୍ଦିନୀ ଅନୁଭବକଲି । ମୁଁ ଟିକିଏ ପରିହାସମିଶା ସ୍ୱରରେ ପଚାରିଲି, "ଭଲପାଇବାର ଏ ଅଦ୍ଭୁତ ଗୁଣ ତୁମକୁ ଶିଖାଇଲା କିଏ ଶର୍ମିଷ୍ଠା ?" ମଞ୍ଜୁଆତି ରଙ୍ଗବୋଳା ବାମହସ୍ତର ନଖଆଡ଼କୁ ଚାହିଁ ସେ ମୋତେ ହିଁ ପଚାରିଲା, "ପ୍ରତ୍ୟେକ ବିଷୟଲାଗି କ'ଣ ଗୁରୁର ଆବଶ୍ୟକତା ପଡ଼େ ?"

–"ଏ ସଂସାରରେ ଗୁରୁଙ୍କ ସାହାଯ୍ୟ ବିନା କାହାରି ବିଦ୍ୟାଲାଭ ହୋଇଛି କି ? ପ୍ରେମ କରିବା ଏ ଦୁନିଆରେ ସର୍ବଶ୍ରେଷ୍ଠ କଳା– ଏପରି କି, ସଂଜୀବନୀ ବିଦ୍ୟାପ୍ରାପ୍ତିଠାରୁ ମଧ୍ୟ ଆହୁରି ବଡ଼ ।"

–"ଆପଣ ଜାଣିବାକୁ ଚାହୁଁଛନ୍ତି ? ତା'ହେଲେ ମୁଁ ମୋର ଗୁରୁଙ୍କ ନାମ ବତାଇ ଦେଉଛି, ଶୁଣନ୍ତୁ ।" ସେ କିଛି ସମୟ ନୀରବ ରହିବା ପରେ କହିଲା, "କଚ୍‌ଦେବ ।"

ମୁଁ ମନେ ମନେ ଭାବିଲି, କଚ ପରି କଠୋର ସନ୍ନ୍ୟାସୀର ପ୍ରେମ ସହିତ ସମ୍ପର୍କ କ'ଣ ? ଯେ ପ୍ରେମର ନାମ ଶୁଣିଲେ ତିନିଥର ସ୍ନାନ କରନ୍ତି, ସେ ପୁଣି

ଶର୍ମିଷ୍ଠାକୁ ପ୍ରେମର ତାତ୍ପର୍ଯ୍ୟ ବୁଝାଇଲା? ଆଶ୍ଚର୍ଯ୍ୟ! ତା'ହେଲେ... ଶର୍ମିଷ୍ଠା କ'ଣ କଚ୍‌କୁ ଭଲପାଉଥିଲା? ଏ ତ ଆହୁରି ଆଶ୍ଚର୍ଯ୍ୟ ବିଷୟ।

ଶର୍ମିଷ୍ଠା ସହିତ ଆଉ କିଛି ଆଲୋଚନା କରିବା ପୂର୍ବରୁ ସେ ବ୍ୟଗ୍ରତାର ସହିତ କହିଲା– "ଚାଲନ୍ତୁ ମହାରାଜ! ଯିବେ ତ?" ଛୋଟ ପିଲାମାନେ ଯେପରି ମାଆର ଆଙ୍ଗୁଳି ଧରି ତାର ପଛେ ପଛେ ଚାଲିଥାଆନ୍ତି, ମୁଁ ସେହିପରି ଶର୍ମିଷ୍ଠାର ପଛେ ପଛେ ଯାଇ ଦେବଯାନୀର କକ୍ଷରେ ପ୍ରବେଶହୋଇଗଲି। ଶର୍ମିଷ୍ଠା ସହିତ ଆଲୋଚନା ପ୍ରସଙ୍ଗରେ ମୋର ବିକ୍ଷୁବ୍ଧ ମନ ଅନେକ ପରିମାଣରେ ଶାନ୍ତହୋଇଯାଇଥିଲା। ମୋ ମନରେ କ୍ରୋଧ ସ୍ଥାନରେ କ୍ଷମା ଭାବ ଜାଗ୍ରତ ହୋଇଗଲା।

ସତରେ କ'ଣ ଦେବଯାନୀ ଅସୁସ୍ଥ? ପ୍ରକୃତରେ ତା' ଚାନ୍ଦମୁହଁଟି ଝାଉଁଳିପଡ଼ିଥିଲା। ମୁଁ ଯାଇ ତା' ପାଖରେ ବସିଲି। ଯେଉଁ କଥା ମୁହଁରେ ବ୍ୟକ୍ତ କରିହୁଏନାହିଁ, ଯାହା ପ୍ରଣୟୀ-ପ୍ରଣୟିନୀଙ୍କ ଚକ୍ଷୁର ଇସାରାରୁ ଜଣାହୁଏନାହିଁ, ଆମ ପରସ୍ପର ହାତର ମିଳନରେ ସେହି ହୃଦୟଖୋଲା ଭାଷା ବ୍ୟକ୍ତ ହୋଇଗଲା। କିଛି ସମୟ ପର୍ଯ୍ୟନ୍ତ ଆମ ଦୁହିଁଙ୍କ ହାତର ମିଳନ ଅବାଧରେ ଚାଲିଲା। ଯା' ମଧ୍ୟରେ ଦେବଯାନୀର ଆଖି ଲୁହରେ ଛଳଛଳ ହୋଇଗଲା। ମୁଁ ତାର ଅଶ୍ରୁଳ ଚକ୍ଷୁ ଆଡ଼କୁ ଆଦୌ ଚାହିଁପାରିଲିନାହିଁ। ମନ ହେଲା, ତା'ର ସେହି ପଦ୍ମଫୁଲ ପରି ସଜଳ ଆଖିରେ ଆବେଗଭରା ଚୁମ୍ବନଟିଏ ଆଙ୍କି, ତା' ଆଖିର ଲୁହ ପୋଛିଦେବି; କିନ୍ତୁ କକ୍ଷରେ ଶର୍ମିଷ୍ଠା ଥିଲା ଯେ? ମୁଁ ଟିକିଏ ପରେ ମୁହଁ ଫେରାଇ ଦେଖିଲି କକ୍ଷରେ ଶର୍ମିଷ୍ଠା ନାହିଁ। କେତେବେଳୁ ସେ ଦ୍ୱାର ଧୀରେ ବନ୍ଦ କରିଦେଇ କକ୍ଷର ବାହାରକୁ ଚାଲିଯାଇଛି, ମୁଁ ଆଦୌ ଜାଣିପାରିଲିନାହିଁ। ମୁଁ ତା'ର ଚକ୍ଷୁପ୍ରାନ୍ତରେ ଗୋଟିଏ ଚୁମ୍ବନ ଆଙ୍କିଦେବାଲାଗି ଧୀରେ ତା' ଆଡ଼କୁ ଲଇଁପଡ଼ିଲି; କିନ୍ତୁ ସେ ଶୀଘ୍ର ମୋର ହାତ ଦୁଇଟିକୁ ଧରିନେଇ ଗେହ୍ଲେଇ ହେଲା ପରି କହିଲା, "ଆଉ ସେପରି କରିବେ ନାହିଁ ତ?"

ମୁଁ ବେଶ୍ ବୁଝିପାରିଲି, ତା'ର ଇଙ୍ଗିତ ଗତ ରାତିର ମଦ୍ୟପାନ ଉଦ୍ଦେଶ୍ୟରେ ହୋଇଛି। ହଠାତ୍ ମୋର ପୌରୁଷ ପ୍ରତି ଗୋଟିଏ ତୀବ୍ର ଆଘାତ ହେଲାପରି ମୋତେ ବୋଧହେଲା। ସଙ୍ଗେ ସଙ୍ଗେ ଗୋଟେ କଟୁ ଉତ୍ତର ଦେବାଲାଗି ମୋ ମନରେ ଭାବନା ଜାତହେଲା; କିନ୍ତୁ ପରମୁହୂର୍ତ୍ତରେ ଭାବିଲି, ଏପରି ଉତ୍ତର ଦେବା ମୋ ପକ୍ଷରେ ଉଚିତ ହେବନାହିଁ, କାରଣ ଦେବଯାନୀ ଅସୁସ୍ଥ। ଦେବଯାନୀ ନିଜର କୋମଳ ହାତଟିକୁ ମୋ ପାପୁଲି ଉପରେ ଧୀରେ ଧୀରେ ଚଳାଇ କହିଲା, "ଆଉ ପିଇବେ ନାହିଁ ତ? କେବଳ ମୋ'ରି ଲାଗି..."

ତା'ର କଥାପଦକରେ, ବିଶେଷତଃ ଶେଷ କଥାପଦକ ଶୁଣି ମୋର ଦୃଢ଼ତା କୁଆଡ଼େ ମିଳାଇଗଲା। ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, "ନା, ଅନ୍ତତଃ ଶୟନକକ୍ଷରେ ତୁମେ ମୋ ମୁହଁରୁ କେବେହେଲେ ମଦ୍ୟଗନ୍ଧ ପାଇପାରିବନାହିଁ।" ସେ ହସି ହସି କହିଲା, "ମୋ ଆଗରେ ସତ୍ୟ କରନ୍ତୁ!" ଏ କଥା ଶୁଣି ମୋ ମନର ଅହଙ୍କାର ପୁଣି ଜାଗ୍ରତ ହୋଇଗଲା। ମୁଁ ଭାବିଲି, ଆରେ... ମୁଁ ଯା' ପାଇଁ ଏତେ ବଡ଼ ତ୍ୟାଗ କରିବାକୁ ପ୍ରସ୍ତୁତ, ଅଥଚ ସେ ମୋ କଥାରେ ବିଶ୍ୱାସ କରୁନାହିଁ? ତା'ହେଲେ

କ'ଣ ଏଭଳି ଲୋକ ପାଇଁ ମୁଁ ମୋର ଏଡ଼େ ବଡ଼ ସୁଖ, ଆନନ୍ଦ ତ୍ୟାଗ କରିଦେବା ଉଚିତ ହେବ ?

ପୁଣି ମୋ ମନରେ ଅହଙ୍କାର ଜାଗିଉଠିଲା; କିନ୍ତୁ କୌଣସିମତେ ମୁଁ ମୋର ଅମାନିଆ ମନକୁ ଆୟତ୍ତ କରିପାରିଲି। ମୁଖମଣ୍ଡଳରେ ବଳପୂର୍ବକ ହାସ୍ୟରେଖା ଖେଳାଇ ଦେଇ କହିଲି– ''ଏଇ କୋମଳ କରପଲ୍ଲବର ସ୍ପର୍ଶସୁଖ ଲାଗି ଥରେ କାହିଁକି, ଶହେ ଥର ସତ୍ୟ କରିବା ଲାଗି ମୁଁ ପ୍ରସ୍ତୁତ ଅଛି।''

–''ହୁଁ... ହୁଁ... ଏତେ ସହଜ କଥା ନୁହେଁ ସେ। ଆପଣଙ୍କୁ ମୋ ବାପାଙ୍କ ଚରଣର ଶପଥ ନେଇ ସତ୍ୟ କରିବାକୁ ହେବ।''

ତା' ପିତାଙ୍କ ନାମ ଶୁଣି ମୋ ମନରେ ଅତ୍ୟନ୍ତ କ୍ରୋଧ ଜାତହେଲା। ଦେବଯାନୀ ବର୍ତ୍ତମାନ ମୋର ପତ୍ନୀ। ତା' ମନରେ ନିଜ ପିତାଙ୍କ ଅପେକ୍ଷା ମୋ ପ୍ରତି ଅଧିକ ଅନୁରକ୍ତି ଓ ଅଧିକ ଶ୍ରଦ୍ଧା ଜାତ ହେବାର କଥା; କିନ୍ତୁ ତା' ମନରେ ପିତାଙ୍କ ପ୍ରତି ଅଧିକ ଆକର୍ଷଣ ରହିଛି। ଏଥର ମୋ ମନକୁ ଆୟତ୍ତ କରିବା ଲାଗି ମୋତେ ପ୍ରବଳ ଚେଷ୍ଟା କରିବାକୁ ପଡ଼ିଲା। ଯାହାହେଉ, ମୁଁ କୌଣସିମତେ ନିଜକୁ ସମ୍ଭାଳିନେଇ, ତା' କହିବା ଅନୁସାରେ ସତ୍ୟକରିଦେଲି। ତା'ପରେ ଦେବଯାନୀର ମୁଖମଣ୍ଡଳରେ ହାସ୍ୟଛଟା ଖେଳିଗଲା; କିନ୍ତୁ ସେ ହସ ନଥିଲା ପ୍ରଣୟିନୀର ହସ; ସେଥିରୁ ସ୍ପଷ୍ଟ ହେଉଥିଲା ବିଜୟିନୀ ତଥା ମାନିନୀର ବିଜୟ-ଦର୍ପ। ସେ ହସରୁ ଜଣାପଡୁଥିଲା, ନିଜର ସୌନ୍ଦର୍ଯ୍ୟବଳରେ ସେ ଗୋଟିଏ ଉଦ୍ଧତ ପୁରୁଷକୁ ପଦାନତ କରିପାରିଛି; ତେଣୁ ସେଥିରୁ ଅହଂକାରର ଆଭାସ ସ୍ପଷ୍ଟ ହୋଇଉଠୁଥିଲା।

ପ୍ରଣୟରାଜ୍ୟରେ ଉପୁଜିଥିବା କଳହରେ ମୁଁ ପ୍ରଥମେ ପରାଜୟ ବରଣ କରିଥିଲି। ମଦ୍ୟପାନ ସମ୍ବନ୍ଧରେ ମୁଁ ଦେବଯାନୀ ଆଗରେ ଯେଉଁ ସତ୍ୟ କରିଥିଲି, ତାହା ଅକ୍ଷରେ ଅକ୍ଷରେ ପାଳନକଲି। ତା'ପରେ ଆମର ଦାମ୍ପତ୍ୟ ଜୀବନ ସୁଚାରୁରୂପେ ଆରମ୍ଭ ହୋଇଥିଲା। ଏବେ ମଧ୍ୟ ସେ ଦିନଗୁଡ଼ିକର ସ୍ମୃତି ମୋ ମନରେ ସଜାଗ ହୋଇରହିଛି। ଆଃ, କେଡ଼େ ଆନନ୍ଦମୟ ଥିଲା ସେ ଦିନଗୁଡ଼ିକ। ସେହି ସମୟଗୁଡ଼ିକ ଦିନ ବୋଲି କହିବାର ଅର୍ଥ, ମଝିରେ କେଇ ଘଡ଼ି ସୂର୍ଯ୍ୟ ଉଦୟ ହେଉଥିଲେ ଏବଂ ଦେବଯାନୀ ଓ ମୋ ମଧ୍ୟରେ ବିଚ୍ଛେଦ ଘଟାଇ ପୁଣି ଅସ୍ତ ହୋଇଯାଉଥିଲେ। ଅନ୍ୟଥା, ରାତ୍ରି ଯଦି ସମ୍ପୂର୍ଣ୍ଣ ଆଠପ୍ରହର ହୋଇଥାଆନ୍ତା, ତେବେ ବି ଯଯାତି ପଦ୍ମକୋରକ ମଧ୍ୟରେ ବନ୍ଦୀ ଭ୍ରମର ପରି ଆନନ୍ଦରେ ବନ୍ଦୀ ହୋଇ, ତା'ରି ମଧ୍ୟରେ ଅଧିକ ଉନ୍ମତ୍ତ ହୋଇଉଠିଥାନ୍ତା।

ବଡ଼ିଭୋର୍‌ରୁ ଉଦ୍ୟାନର ପକ୍ଷୀମାନଙ୍କ କଳକୂଜନ ଶୁଣିଲେ ମୋତେ ଖୁବ୍ ବିରକ୍ତ ଲାଗେ। ମନେହୁଏ– ସତେଯେପରି ସେଗୁଡ଼ାକ ଅତି ଅରସିକ। ସେମାନଙ୍କ କଳରବ ଶୁଣିବାମାତ୍ରେ ଦେବଯାନୀ ତା' କକ୍ଷକୁ ଚାଲିଯିବା ଲାଗି ବ୍ୟସ୍ତହୋଇପଡ଼ିଲେ, ମୁଁ ତାକୁ କହେ... ''ରୁହ ମ, ଏ ଚଢ଼େଇଗୁଡ଼ାକ ପାଗଳ; ଶେଷ ରାତିର ଚୋପା ଚାନ୍ଦିନୀ ଦେଖି ସେମାନେ କଳରବ ଆରମ୍ଭ କରିଦେଇଛନ୍ତି। ଏବେ ଆହୁରି ଅନେକ ରାତି ଅଛି। ଟିକିଏ ଆରାମରେ ଶୋଇପଡ଼।''

କିନ୍ତୁ ସେ ମାନେନାହିଁ, ଚାଲିଯିବାଲାଗି ଉଚ୍ଛନ୍ନ ହୁଏ। ତା'ପରେ ମୁଁ କହେ– ''ହେଉ, ମୋର ହାୟ ହାୟ କରିବାର ବେଳ ଆସିଗଲା।''

–''କାହିଁକି ...''

–''ହେବନି ...? ତୁମ ବିନା ଦିନ ଚାରିପ୍ରହର କାଟିବି କିପରି?''

ସେ ଏପରିଭାବରେ କଟାକ୍ଷ ହାଣି ମୋ ଆଡ଼କୁ ଚାହିଁରହେ ଯେ, ମୁଁ ପ୍ରେମବିଭୋର ହୋଇଉଠେ। ଅନେକ ସମୟ ପର୍ଯ୍ୟନ୍ତ ମନ ଓ ପ୍ରାଣ ପ୍ରେମରେ ପୁଲକିତ ହୋଇଯାଏ। ସେ ମୋ ମନା ନମାନି ଚାଲିଯିବାକୁ ବାହାରିଲେ ମୁଁ କହିଉଠେ– ''ତୁମେ ହିଁ କୁହ, ଏ ଦୀର୍ଘ ବିରହ ମୁଁ କିପରି କଟାଇବି? ଉର୍ବଶୀ ପଳାଇଯିବାରୁ ପୁରୁରବା ପାଗଳ ହୋଇ ଘନ ଜଙ୍ଗଲରେ ବୁଲି ପଶୁପକ୍ଷୀଙ୍କୁ 'ମୋ ପ୍ରିୟା କାହିଁ'– 'ମୋ ପ୍ରିୟା କାହିଁ' ବୋଲି ପଚାରିବୁଲୁଥିଲେ। ଲତାପତ୍ରକୁ ପ୍ରିୟା ଭ୍ରମରେ ଆଲିଙ୍ଗନ କରୁଥିଲେ। ଆଜି ରାଜପ୍ରାସାଦ ମଧ୍ୟରେ ମୁଁ ଯଦି ସେହି ଭୁଲ କରି ବସେ ...?''

ସେ ମୋ କଥା ମଝିରେ କହିଉଠେ, ''ଥାଉ ସେତିକି ...। ଆପଣ ତ ବେଶ୍ ମଜା ଲଗେଇଛନ୍ତି।'' ମୁଁ ପୁଣି କହିଉଠେ, ''ତୁମେ ବିଶ୍ୱାସ କର ... ମୁଁ ଏତେ ସମୟ ତୁମ ବିରହରେ ଚଳିପାରିବି ନାହିଁ। ତୁମେ ଗୋଟିଏ ଉପାୟ କର ... କିଛି ଗୋଟିଏ ତୁମର ସ୍ମାରକ ମୋତେ ଦେଇଯାଅ; ମୁଁ ତାକୁଇ ସାଇତି ଦିନଟା କଟାଇଦେବି।''

ମୁଁ ସେତେବେଳେ ବାସ୍ତବରେ ଚାହୁଁଥିଲି ସେ ଲୀଳାୟିତ ଗତିରେ କଟାକ୍ଷ ହାଣି ମୋ ପାଖକୁ ଚାଲିଆସନ୍ତା, ମୋ ଗଣ୍ଡରେ ପ୍ରାଣର ପୁଲକଭରା ଚୁମ୍ବନ ଆଙ୍କିଦିଅନ୍ତା; କିନ୍ତୁ ମୋର ଏ ଇଚ୍ଛା ସେ କେବେହେଲେ ପୂରଣ କରିନାହିଁ। ମୁଁ କିନ୍ତୁ ନିଜର ବ୍ୟଗ୍ରତା ସହିନପାରି ତାକୁ କୋଳକୁ ଭିଡ଼ିଆଣି, ତାର କୋମଳ ଅଧର ପଲ୍ଲବରେ ଆକୁଳତାର ଝଡ଼ ସୃଷ୍ଟିକରେ। ଥରେ ନୁହେଁ, ଦି'ଥର ନୁହେଁ, ଅସଂଖ୍ୟ ଚୁମ୍ବନ ଆଙ୍କିଦିଏ; ତଥାପି ମନସାଧ ପୂରେନାହିଁ। ସେ ଧୀରେ ମୋ ବନ୍ଧନରୁ ମୁକୁଳିଯାଇ ଟିକିଏ ବିରକ୍ତିମିଶା ସ୍ୱରରେ କହେ, ''ବାସ୍, ଏତିକି ଥାଉ; ନୋହିଲେ ଅଜୀର୍ଣ୍ଣ ହୋଇଯିବ ଯେ?''

–''ନା ... ନା ଆଉ ଗୋଟିଏ ...।''

ସେ ମୁହଁରେ ଶୁଷ୍କ ହସଟିଏ ଖେଳାଇଦେଇ କହେ– ''ଉଁ ... ହୁଁ ... ସବୁଯାକ ଫୁଲ ଝରିଗଲା ଯେ ...।''

–''ମିଛ ... ବିଲ୍‌କୁଲ୍ ମିଛ ...।''

–''କିପରି ...?''

–''ତୁମେ ଜାଣିନ ..., ସଂସାର ମଧ୍ୟରେ ଏ ଗୋଟିଏ ମାତ୍ର ଲତା ଯାହାର ଫୁଲ କେବେହେଲେ ଶେଷ ହୁଏନାହିଁ। ଯେତେ ତୋଳିନେଲେ ମଧ୍ୟ ପୁଣି ଫୁଲଭାରରେ ଲଇଁଆସେ।''

–''ହେଉ ... ଆପଣ ଯେତେବେଳେ ଏତେ ଯୁକ୍ତି ବାଢ଼ିଲେଣି, ନିଅନ୍ତୁ ... କିନ୍ତୁ ଥରଟିଏ ମାତ୍ର, ବେଶି ନୁହେଁ ... ବୁଝିଲେ?''

—''ମହର୍ଷିଙ୍କ ପବିତ୍ର ଆଶ୍ରମରେ ତୁମେ ବଢ଼ିଛ; ପ୍ରେମର ଏ ଉତ୍ତାଳ ତଥା ଉଦ୍ଦାମ ଉତ୍ସ ତୁମେ ବୁଝିପାରିବନି। ଏ ଆବେଗ ଆଗରେ ଶହେ, ହଜାରେ କ'ଣ କହୁଛ, ଲକ୍ଷ ଲକ୍ଷ କୋଟି କୋଟି କିଛି ନୁହେଁ। ଆଉ ମଧ୍ୟ ଘଟଣାବଶରେ ତା'ର ଅର୍ଥ ଆହୁରି କିଛି ହୋଇଯାଏ...।'' ସେ ଟିକିଏ ହସିଦେଇ ମୋ କକ୍ଷରୁ ବାହାରିଯାଏ। ମୁଁ ଅତୃପ୍ତ ମନରେ ତା'ରି ଛନ୍ଦାୟିତ ଗତି ଓ ନିତମ୍ବର ଦୋଳନ ଆଡ଼କୁ ଚାହିଁରହେ।

ସଂସାରରେ ଅନେକ ସ୍ମୃତି ମନବଗିଚାରେ ମଉଳିଯାଏ; କିନ୍ତୁ ପ୍ରଣୟର ସ୍ମୃତି ଅମ୍ଳାନ; ସାଇତାହୋଇଥାଏ ଚିରକାଳ। ବିବାହ ପରେ କେତୋଟି ମାସ ମୋ ମନ ଆନନ୍ଦର କେଉଁ ଅତଳ ଦରିଆରେ ଉବୁଡ଼ୁ-ଚୁବୁଡ଼ୁ ହୋଇଥିଲା, ମନ ମଧ୍ୟରେ ଅପ୍ସରୀର ଅପରୂପ ଲାବଣ୍ୟମୟୀ ଆଭା ମାଦକତା ଭରିଦେଇଥିଲା। ସ୍ୱଚ୍ଛ ଚାନ୍ଦିନୀ ରୁଣୁଝୁଣୁ ଝଙ୍କାରରେ ମୋର ମନମନ୍ଦିରକୁ ନିନାଦିତ କରି ହାତରେ ମଧୁକଳସ ଘେନି ଆସେ, ପିପାସିତ ମୋର ମନ ଭାବବିଭୋର ହୋଇ ଆକଣ୍ଠ ପାନକରିଯାଏ ସେଇ ଅମୃତ। ତଥାପି ମନ ବୁଝେନାହିଁ, ବୁକୁର ଶୋଷ ମରେନାହିଁ, ମୁଁ ପିଆସୀ ରହିଯାଏ। ସେହି ମଧୁଯାମିନୀଗୁଡ଼ିକ ମୋ ପକ୍ଷରେ ସାଜିଥିଲା ସପ୍ତରଙ୍ଗ କମଳରେ ପୂର୍ଣ୍ଣ ମନୋଜ୍ଞ ପୁଷ୍କରିଣୀ; ମୁଁ ସେଥିରେ ପ୍ରେମବିଭୋର ହୋଇ ଜଳକ୍ରୀଡ଼ାରେ ମାତିଥିଲି। ହାୟ... ସେ ଦିନଗଡ଼ିକୁ ମନେପକାଇ ଆଉ ଲାଭ କ'ଣ? ଥାଉ... ସେଦିନର ରଙ୍ଗୀନ୍ ରାତି, ଦେବଯାନୀ ସହ ମୋର ବିଳାସ, ଆଉ ଦୁହିଁଙ୍କର କେଳି ତଥା ସମ୍ଭୋଗର ଆଉ ବିଶଦ ବର୍ଣ୍ଣନା କରିବି ନାହିଁ; ହୁଏତ ଶିଷ୍ଟାଚାର ଦୃଷ୍ଟିରୁ ତାହା ରୁଚିକର ହେବନାହିଁ। କିନ୍ତୁ... ବ୍ରହ୍ମାନନ୍ଦପ୍ରାପ୍ତିର ସେଇ ମଧୁର ସ୍ମୃତିଗୁଡ଼ିକୁ ମନଖୋଲି କହିବାରେ ଆପତ୍ତି କ'ଣ? ସେ ଲାଗି ଲାଜ କାହିଁକି? ପୁଣି ଗୋପନ କାହିଁକି? ପ୍ରଣୟର ସେହି ପୁଷ୍ପିତା ବଲ୍ଲରୀ ଆଜି ଝାଉଁଳିଯାଇଛି, ସେଥିରେ ନାହିଁ ଆଉ କୋମଳ କଳିକା କିମ୍ବା ସୁଚିକ୍କଣ ପତ୍ର; ଅଛି କେବଳ ଶୁଷ୍କ ଶାଖା ଓ ତୀକ୍ଷ୍ଣ କଣ୍ଟକ।

ଦେବଯାନୀ ଓ ମୋ ମଧ୍ୟରେ ଏକ ରମଣୀୟ ଉଦ୍ୟାନର ପରିକଳ୍ପନା ମୋ ମନରେ ଜାଗିଉଠିଥିଲା। ଏହି ମନୋରମ ପୁଷ୍ପବାଟିକାଟିକୁ ଅତିଶୟ ଶୋଭାମୟ କରିବା ଇଚ୍ଛାରେ ମୁଁ ଯଥାସାଧ୍ୟ ଚେଷ୍ଟା କରିଥିଲି। ମୁଁ ଏପରି ଏକ ଉଦ୍ୟାନର ପରିକଳ୍ପନା କରୁଥିଲି, ଯେଉଁଠି ରହିନଥା'ନ୍ତା ରାଜା ଯଯାତି କିମ୍ବା ରାଣୀ ଦେବଯାନୀର ସତ୍ତା। ସେଠାରେ ମୁଁ ବ୍ରହ୍ମଶାପ-ଜର୍ଜରିତ ନହୁଷଙ୍କ ପୁତ୍ର ନୁହେଁ କିମ୍ବା ଦେବଯାନୀ ସଂଜୀବନୀମନ୍ତ୍ରର ଅଧିକାରୀ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ନୁହେଁ; ଯେଉଁଠି ଆମେ ଦୁହେଁ କେବଳ ପ୍ରେମିକ ଓ ପ୍ରେମିକା, ପ୍ରଣୟୀ ଓ ପ୍ରଣୟିନୀ। ଆମ ମଧ୍ୟରେ କେବଳ ଶରୀରର ବନ୍ଧନ ନୁହେଁ, ମନର ଶୃଙ୍ଖଳା ମଧ୍ୟ ଉଭେଇଯିବ; ଆମେ ଦୁହେଁ ହେବୁ ଏକାକାର। ଆମେ ଏପରି ଏକ ଅକଳ୍ପନୀୟ ରାଜ୍ୟରେ ପହଞ୍ଚିଯିବୁ, ଯେଉଁଠି ମୃତ୍ୟୁ ଆସି ଯଯାତିକୁ ସ୍ପର୍ଶ କରିବାମାତ୍ରେ ଦେବଯାନୀ ତା'ର ତୀବ୍ର ବିରୋଧକରି ଛିଡ଼ାହୋଇଯିବ। ଯମରାଜ ଯଦି ଦେବଯାନୀର ନାମ ଧରି ଡାକପକାନ୍ତି ତା'ହେଲେ ଯଯାତି ସଙ୍ଗେ ସଙ୍ଗେ 'ଆଜ୍ଞା' କହି ସମ୍ମୁଖରେ ଛିଡ଼ାହେବ। ସେ

ଦୁନିଆରେ ନଥିବ ଆମ ଦୁହିଁଙ୍କ ମନରେ ସ୍ୱର୍ଗ ଓ ନରକର ଭେଦ। ଯଦି ଅବସ୍ଥାଚକ୍ରରେ ପଡ଼ି ଯଯାତି ନର୍କଭୋଗ ଲାଗି ପ୍ରସ୍ତୁତ ହୋଇଯାଏ, ତେବେ ଦେବଯାନୀ ମଧ୍ୟ ସ୍ୱର୍ଗର ପ୍ରଲୁବ୍ଧ ସଂପଦ ତ୍ୟାଗକରି ନରକପଥର ସହଯାତ୍ରିଣୀ ହେବା ଲାଗି ତିଳେହେଲେ ଦ୍ୱିଧା ବୋଧ କରିବ ନାହିଁ। ଦେବଯାନୀ ଯେତେ ଖରାପ ହେଲେ ମଧ୍ୟ ଯଯାତି ପ୍ରାଣ ବିନିମୟରେ ତା' ମନର ପରିବର୍ତ୍ତନ ଆଣିପାରିବ। ମୁଁ ବାସ୍ତବରେ ଏହିପରି ଏକ ପୁଷ୍ପିତ ଉଦ୍ୟାନର ପରିକଳ୍ପନା କରୁଥିଲି। କିନ୍ତୁ . . . ?

ଦିନେ ଠିକ୍ ରାତିଅଧ ସମୟରେ ଦେବଯାନୀ ରହିଥାଏ ମୋ ବାହୁପାଶରେ ବନ୍ଦିନୀ; ମୁଁ ଉନ୍ମାଦନାଭରା ସ୍ୱରରେ ପଚାରିଲି– "ତୁମେ କାହାର ପ୍ରିୟେ . . . ?" ସେ କିଛି ଉତ୍ତର ନ ଦେଇ, କେବଳ ମୋଦମୟୀ ଦୃଷ୍ଟିରେ ମୋ ଆଡ଼କୁ ଥରେ ଅନାଇଦେଇ, ମୋର ପ୍ରଶସ୍ତ ବକ୍ଷରେ ଯଦି ମୁହଁ ଲୁଚାଇଦେଇଥାଆନ୍ତା, ତେବେ ମୋତେ ମୋ ପ୍ରଶ୍ନର ଉତ୍ତର ମିଳିଯାଇଥା'ନ୍ତା; କେବଳ ସେତିକି ଭାବ-ଭଙ୍ଗିମାରେ ମୋର ହୃଦୟକଳସ ପରିପୂର୍ଣ୍ଣ ହୋଇ ଉଚ୍ଛୁଳିପଡ଼ିଥାନ୍ତା। କିନ୍ତୁ . . . ଦେବଯାନୀ, ସତେଯେପରି, ମୁଁ ଗୋଟିଏ ଗହନ ଦର୍ଶନର ଗୂଢ଼ତଥ୍ୟ ସମ୍ବନ୍ଧରେ ପ୍ରଶ୍ନ କରିଛି, ଉତ୍ତର ଦେଲା – "ମୁଁ ମୋ ପିତାଙ୍କର, ଆପଣଙ୍କର, କାଲି ପୁଣି ମୋ ଗର୍ଭରୁ ଯେଉଁ ପୁତ୍ର ଜାତହେବ ତା'ର। ଆଜି ମୁଁ ମହାରାଣୀ, କାଲି ପୁଣି ରାଜମାତା ହୋଇଯିବି। ତେଣୁ ମୁଁ କାହାର କିପରି କହିପାରିବି ? ମୋ ଉପରେ ଅନେକଙ୍କର ଅଧିକାର ରହିଛି।"

ପ୍ରତ୍ୟେକ ରଙ୍ଗର ବସ୍ତ୍ର ଦେବଯାନୀକୁ ମାନୁଥିଲା। ଯେକୌଣସି ରଙ୍ଗର ବସ୍ତ୍ର ପରିଧାନ କଲେ, ନିର୍ମଳ ଆକାଶର ରଙ୍ଗ-ବିରଙ୍ଗ ମେଘମାଳା ପରି ତାକୁ ସୁନ୍ଦର ମାନେ। ସେ ହୀରା, ମୋତି, ମାଣିକ୍ୟର ଅଳଙ୍କାର ପରିଧାନକଲେ, ତା' ସୌନ୍ଦର୍ଯ୍ୟ ଯୋଗୁଁ ସେ ଅଳଙ୍କାରଗୁଡ଼ିକର ଶୋଭା ଦ୍ୱିଗୁଣିତ ହୋଇଯାଏ। ଭିନ୍ନ ଭିନ୍ନ ପ୍ରକାର ଜୁଡ଼ା ବାନ୍ଧିବାରେ ଥିଲା ତା'ର ସଉକ; ବେଳେବେଳେ ସେ ଦି'ଚାରି ଘଡ଼ି ଲେଖାଏଁ ବିତାଇ ପ୍ରସାଧନରେ ମାତିଥାଏ। ମୁଁ ଅବଶ୍ୟ ଚାହୁଁଥିଲି ଯେ, ସେ ନାନାପ୍ରକାର କେଶ-ବିନ୍ୟାସ କରୁ; କିନ୍ତୁ ସାଜସଜ୍ଜାରେ ସୁସଜ୍ଜିତ ଦେବଯାନୀ ଦିବସରେ ମଧ୍ୟ ମୋ'ରି ପାଖରେ ବସିରହୁ, ଏହାହିଁ ଥିଲା ମୋର ଅଭିଳାଷ।

ଅବଶ୍ୟ ଏ ପ୍ରକାର କାମନା ମଧ୍ୟରେ ବାସନାର ସତ୍ତା ଥିଲା କି ନାହିଁ ମୁଁ କହିପାରିବି ନାହିଁ; କିନ୍ତୁ ତା' ମଧ୍ୟରେ ମୋ ଅନ୍ତଃକରଣର ସରଳତା, ନିରାଡ଼ମ୍ବରତା ତଥା ନିର୍ମଳ ଭାବନାର ସତ୍ତା ଯେ ଅଧିକ ମାତ୍ରାରେ ଥିଲା ଏଥିରେ ସନ୍ଦେହ ନାହିଁ। ସୂର୍ଯ୍ୟଙ୍କର ପ୍ରଚଣ୍ଡ ରୌଦ୍ରତାପରେ ଶ୍ରାନ୍ତ ପଥିକ ଯେପରି ସୁଶୀତଳ ବୃକ୍ଷଛାୟାରେ ଆଶ୍ୱସ୍ତ ହୋଇପାରେ; ଠିକ୍ ସେହିପରି କର୍ମକ୍ଳାନ୍ତ ପୁରୁଷ ନାରୀର କମନୀୟ ରୂପସମ୍ଭାର ମଧ୍ୟରେ ତା'ର ହସହସ ମୁହଁ ଦେଖି ସବୁ ଦୁଃଖ ପାସୋରିଦିଏ। ତେଣୁ ପୁରୁଷ ଚାହେଁ ଉଦ୍ୟାନର ସଜଫୁଟା କଳିକାପରି ପ୍ରେୟସୀର ହସ ହସ ମୁହଁ, ତା'ର କୋମଳସ୍ପର୍ଶ। ସେହି ସାନ୍ନିଧ୍ୟ ଫଳରେ କ୍ଳାନ୍ତ ଶ୍ରାନ୍ତ ପୁରୁଷ ଉତ୍ସାହିତ ହୋଇଉଠେ। କିନ୍ତୁ ଦେବଯାନୀ . . . ମାନବ ମନର ଏଇ ସୂକ୍ଷ୍ମ ଅଭିଳାଷ ସମ୍ବନ୍ଧରେ ଥରେମାତ୍ର ଚିନ୍ତାକରିନାହିଁ। ଖୁବ୍ ସମ୍ଭବତଃ, ତା' ବିଚାରରେ ଏସବୁ ଆଚରଣ ପୁରୁଷମାନଙ୍କର କାମୁକତାର ଲକ୍ଷଣ।

ଦେବଯାନୀ ଥିଲା ଲାବଣ୍ୟବତୀ, ସୌନ୍ଦର୍ଯ୍ୟର ପୂଜାରିଣୀ; ନିଜେ ମଧ୍ୟ ପ୍ରସାଧନ ରଚନାରେ ସିଦ୍ଧହସ୍ତା। କିନ୍ତୁ ତା' ମନର ଏଇ ଭାବନା ମଧ୍ୟରେ ମୋ ପାଇଁ ଟିକିଏ ହେଲେ ସ୍ଥାନ ନଥିଲା। ସେ କେବଳ ସାଜସଜ୍ଜାରେ ସଜ୍ଜିତା ହୋଇ ନିଜ କକ୍ଷର ଆବେଷ୍ଟନୀ ମଧ୍ୟରେ ଆତ୍ମବଡ଼ିମାର ସହିତ ଘୂରିବୁଲିବାକୁ ପସନ୍ଦକରୁଥିଲା। ବଡ଼ ବଡ଼ ଦର୍ପଣ ଆଗରେ ଛିଡ଼ାହୋଇ ନିଜ ପ୍ରସାଧନ ରଚନାରେ ମୁଗ୍ଧ ହୋଇଉଠୁଥିଲା। ଦେବଯାନୀ ପାଖରେ ଯାହା କିଛି ଗୁଣ ଥିଲା, ତାହା ସବୁ କିଛି ସେ ଆପଣାର ସ୍ୱାର୍ଥଲାଗି ବ୍ୟବହାର କରୁଥିଲା; ଅନ୍ୟ କାହାରି ପାଇଁ ନୁହେଁ; ବିଶେଷତଃ ମୋ ପାଇଁ ନୁହେଁ।

ଥରେ ଶର୍ମିଷ୍ଠା ସହିତ କଥାବାର୍ତ୍ତାରୁ ଜଣାଗଲା, ଦେବଯାନୀ ନୃତ୍ୟକଳାରେ ସୁନିପୁଣା। ମୁଁ ଥରେ ତା'ର ନୃତ୍ୟ ଦେଖିବା ଲାଗି ବହୁତ ଆଗ୍ରହ ପ୍ରକାଶକଲି; କିନ୍ତୁ 'ହସ୍ତିନା ଦରବାରରେ କ'ଣ ନର୍ତ୍ତକୀର ଅଭାବ ଅଛି' ବୋଲି କହି ସେ ମୋର ଆଗ୍ରହ ପ୍ରତ୍ୟାଖ୍ୟାନ କରିଦେଲା। ଋଷିକନ୍ୟା ଥିବାବେଳେ ସେ ନୃତ୍ୟ କରୁଥିଲା ସିନା; କିନ୍ତୁ ବର୍ତ୍ତମାନ ସେ ମହାରାଣୀ; ସ୍ୱାମୀର ମନୋରଞ୍ଜନ ଲାଗି ସେ ନୃତ୍ୟ କଲେ କାଳେ ତା' ପ୍ରତିଷ୍ଠାରେ ଆଞ୍ଚ ଆସିବ, ସେଥିପାଇଁ ସେ ଜାଣିଶୁଣି ମୋର ଆଗ୍ରହ ମେଣ୍ଟାଇ ନଥିଲା।

ସେ ନିଜ ବିଷୟରେ ଅନେକ କହୁଥିଲା, ବିଶେଷତଃ ଶୁକ୍ରାଚାର୍ଯ୍ୟଙ୍କ ବଡ଼ିମା ବିଷୟରେ କହିବାବେଳେ ସେ ଶତମୁଖ ହୋଇଉଠୁଥିଲା। ବେଳେବେଳେ ସେହି ସେହି କଥା ଶୁଣି ଶୁଣି କାନ ବଧିରା ହୋଇଯାଏ; କିନ୍ତୁ ଥରେ ହେଲେ ସୁଦ୍ଧା ସେ ମହାରାଜ ନହୁଷଙ୍କ ସ୍ୱର୍ଗବିଜୟ କିମ୍ବା ପିଲାଦିନେ ମୋର ଦିଗ୍‌ବିଜୟ ପ୍ରସଙ୍ଗ ଉଠାଇନାହିଁ କିମ୍ବା ଶୁଣିଲେ ମଧ୍ୟ ଆଗ୍ରହ ପ୍ରକାଶ କରିନାହିଁ।

କିନ୍ତୁ ସେ ନିଜର ସନ୍ଦେହୀ ସ୍ୱଭାବ ଯୋଗୁ ମୋତେ ଅନେକ ସମୟରେ ବ୍ୟତିବ୍ୟସ୍ତ କରିପକାଉଥିଲା। ଶର୍ମିଷ୍ଠାଦ୍ୱାରା ପ୍ରସ୍ତୁତ ପାନଖଣ୍ଡିକ ତା' ପାନ ଅପେକ୍ଷା ଅଧିକ ଭଲଲାଗିଲା ବୋଲି ଥରେ ମୋ ମୁହଁରୁ ପରିହାସରେ ବାହାରିଯାଇଥିବାରୁ, ସେ କେତେଦିନଧରି ବିରକ୍ତ ହେବା ସଙ୍ଗେ ସଙ୍ଗେ ମନେ ମନେ ବଗ୍‌ବଗ୍ ହେଉଥିଲା। ସେହିଦିନଠାରୁ ସେ ଶର୍ମିଷ୍ଠାକୁ ମୋ ଆଖି ଆଗରୁ ଦୂରେଇ ରଖିବା ଲାଗି ବରାବର ଚେଷ୍ଟାକଲା।

ଅଳକା ନିଜର ସ୍ମାରକ ସ୍ୱରୂପ ମୋତେ ଯେଉଁ ସୁନେଲୀ କେଶଟି ଦେଇଥିଲା, ମୁଁ ତାକୁ ଗୋଟିଏ ସୁବର୍ଣ୍ଣ ଫରୁଆରେ ପୂରାଇ ସିନ୍ଦୁକରେ ରଖିଥିଲି। ଦିନେ ହଠାତ୍ ସେହି ଫରୁଆଟି ଦେବଯାନୀର ହାତରେ ପଡ଼ିଗଲା। ସେଥିରେ କ'ଣ ଅଛି ତାକୁ ଦେଖିବାଲାଗି ସେ ଖୁବ୍ ଜିଦ୍‌ଧରି ବସିଲା। ଶେଷକୁ ମୁଁ ତାକୁ ବାଧ୍ୟହୋଇ ଦେଖାଇଲି। ତହୁଁ ସେ ସନ୍ଦେହପୂର୍ଣ୍ଣ ଚାହାଣିରେ ମୋ ଆଡ଼କୁ ଅନାଇ ପଚାରିଲା, ''ଆପଣଙ୍କର ଏ ପ୍ରେୟସୀଟି ବର୍ତ୍ତମାନ କେଉଁଠି ?''

—''ମୋର ପ୍ରେୟସୀ ନୁହେଁ, ବାଲ୍ୟ-ସଙ୍ଗିନୀ।'' ଉତ୍ତର ଦେଲି ମୁଁ।

—''ବର୍ତ୍ତମାନ ସେ ଅଛି କେଉଁଠି . . . କହୁନାହାନ୍ତି।'' ଈର୍ଷ୍ୟାନ୍ୱିତ ସ୍ୱରରେ ପଚାରିଲା ଦେବଯାନୀ।

ମୁଁ ଗମ୍ଭୀର ହୋଇ ଆକାଶ ଆଡ଼କୁ ହାତ ଦେଖାଇଦେଲି। ତହୁଁ ସେ ହସିହସି କହିଲା, ''ତା'ହେଲେ ଏ କେଶଟିକୁ ଆପଣ ସାଇଥି ରଖିଛନ୍ତି କାହିଁକି?''

—''ତା'ରି ସ୍ମୃତିଲାଗି।''

ତା'ପରେ ସେ ବ୍ୟଙ୍ଗଭରା ସ୍ୱରରେ କହିଲା– ''ମୁଁ ଯଦି କାଲି ମରିଯାଏ, ତେବେ ଆପଣ ତ ଅନାୟାସରେ ମୋତେ ପାସୋରିଦେବେ। ଆପଣ ନିଶ୍ଚୟ ତାକୁ ଅନ୍ତରର ସହିତ ପ୍ରେମକରୁଥିଲେ– ନୁହେଁ କି? ନଇଲେ. ତା' କେଶଟିକୁ ଏତେ ଯତ୍ନରେ ସାଇତି ରଖିଥାଆନ୍ତେ କାହିଁକି?'' ସେ ସେହି କେଶଟିକୁ ଫିଙ୍ଗିଦେବାକୁ ଖୁବ୍ ଚେଷ୍ଟାକଲା; ମାତ୍ର ମୋର ସ୍ପଷ୍ଟ ମନେଅଛି, ସେଇଟିକୁ ତା' ହାତରୁ ନେଇ, ପୁଣି ସେଇ ମଞ୍ଜୁଷାରେ ସାଇତି ରଖିବା ଲାଗି ମତେ ଅନେକ ଚେଷ୍ଟା କରିବାକୁ ପଡ଼ିଛି।

ଦିନେ ମୁଁ ଜାଣିପାରିଲି ଦେବଯାନୀ ନିଦରେ କେତେ କ'ଣ ବିଳିବିଳି ହେଉଛି। ଜାଣେନି, ସେ କାହା ସହିତ ନିଦରେ କଥାବାର୍ତ୍ତା କରୁଛି? ସେ କ'ଣ ନିଦରେ ମୋ ସହିତ କଥାବାର୍ତ୍ତା କରୁଛି କି? ପ୍ରକୃତରେ କ'ଣ ଦେବଯାନୀ ମୋତେ ଆନ୍ତରିକତାର ସହିତ ଭଲପାଉଛି ଯାହା ଫଳରେ ସ୍ୱପ୍ନରେ ମଧ୍ୟ ସେ ମୋ ସହିତ କଥାବାର୍ତ୍ତା କରୁଛି? ରୋମେ-ରୋମେ ମୁଁ ଆନନ୍ଦରେ ଗଦ୍‌ଗଦ ହୋଇଉଠିଲି। ମୁଁ ଖୁବ୍ ମନୋଯୋଗଦେଇ ତା' କଥା ଶୁଣିବାକୁ ଲାଗିଲି। ସେ ନିଦରେ କହୁଥିଲା– ''ଉଁ... ହୁଁ ..'' ମୁଁ ଭାବିଲି ବୋଧହୁଏ ମୋର ଚୁମ୍ବନକୁ ପ୍ରତ୍ୟାଖ୍ୟାନ କରୁଛି। ଖୁବ୍ ସମ୍ଭବତଃ ମୋତେ ସେ ପ୍ରାଣଭରି ଭଲପାଉଛି। ତା'ପରେ ସେ ପୁଣି କହିଚାଲିଲା– ''କେଡ଼େ ସୁନ୍ଦର ଏ ଫୁଲ...! କିନ୍ତୁ...'' ଟିକିଏ ରହି ପୁଣି ସେ କହିଲା– ''ନା... ନା... ମୁଁ ଏହାକୁ...'' ପୁଣି କିଛି ସମୟ ନୀରବତାରେ ବିତିଗଲା। ସେ ସେତେବେଳେ ଗାଢ଼ନିଦ୍ରାରେ ଶୋଇଥିଲା। ସତେ ଅବା ନିଦ୍ରାରେ ଗୋଟିଏ ନାଟକ ଅଭିନୀତ ହେଉଛି ଏବଂ ସେଥିରେ ସେ ଗୋଟିଏ ଭୂମିକାରେ ଅଭିନୟ କରୁଛି। ତା'ପରେ ସେ କହିଲା– ''ଅ... ହଁ... ମୋ ଜୁଡ଼ାରେ ଆପଣ ନିଜ ହାତରେ ଲଗାଇ...'' ତା'ପରେ ପୁଣି ନୀରବତା। ତା'ପରେ ପୁଣି– ''ନା... ଆପଣ ଲଗାଇଦେବେନି? ତା'ହେଲେ ମୁଁ ଏହାକୁ ମୋ ପାଦରେ ଦଳିଚକଟି ନଷ୍ଟକରିଦେବି।''

ହଠାତ୍ ତା' ମୁହଁରୁ ହାସ୍ୟରେଖା କୁଆଡ଼େ ଉଭେଇଗଲା। ତା'ପରେ ତା' କଥା ବନ୍ଦହୋଇଗଲା। ମୁଁ ତଥାପି ଭଲଭାବରେ ବୁଝିପାରିଲିନି ସେ କାହା ସହିତ କଥାବାର୍ତ୍ତା କରୁଛି। ସେ ନିଶ୍ଚୟ କୌଣସି ସଖୀ ସହିତ କଥାବାର୍ତ୍ତା କରୁନଥିଲା। କାରଣ... 'ତୁ' ଓ 'ତୁମେ' ପରିବର୍ତ୍ତେ ସେ 'ଆପଣ' କହୁଥିଲା ଏବଂ 'ପିନ୍ଧାଇଦିଅନ୍ତୁ' ବୋଲି କହୁଥିଲା।

ମୁଁ ଜାଣିବାକୁ ଚାହିଁଲି ପ୍ରକୃତରେ ସେ ଗତ ରାତ୍ରିର ଘଟଣା ମନେପକାଇପାରୁଛି କି ନାହିଁ। ମୁଁ କହିଲି, ''ଆଜି ଗୋଟିଏ ଧାର୍ମିକ ବିଧିବିଧାନ ସମ୍ପନ୍ନ କରିବାର ଅଛି। ସ୍ନାନ ଶେଷ କରିବା ପରେ ତୁମେ...।''

—''ଧାର୍ମିକ ବିଧି! ଆଜି ତ କିଛି ପର୍ବଦିନ ନୁହେଁ?''

—"ଏ ଗୋଟିଏ ନୂତନ ପର୍ବ।"
—"ପର୍ବର ନାମ କ'ଣ କହିଲ ?"
—"ତା' ନାଁ ... ଗୌରୀପୂଜା।"
—"ସେ ପୂଜା ତ ପ୍ରତିଦିନ ହେଉଛି।"
—"ଉଁ ... ହୁଁ ... ଏ ଗୌରୀପୂଜା ସ୍ୱତନ୍ତ୍ର; ସୂର୍ଯ୍ୟ, ବରୁଣ, ମରୁତ ପ୍ରଭୃତିଙ୍କଠାରୁ ସ୍ୱତନ୍ତ୍ର। ସେ ସ୍ୱର୍ଗରେ ନିବାସ କରନ୍ତି ନାହିଁ।"
—"ତାହେଲେ ... କେଉଁଠି ?"
—"ସେ ପ୍ରତି ଘରେ ଘରେ ଅଛନ୍ତି। ତାଙ୍କରି ପ୍ରସାଦରୁ ପ୍ରତ୍ୟେକ ଘର ସ୍ୱର୍ଗରେ ପରିଣତ ହୁଏ। ଏ ପୂଜାର ମୁଖ୍ୟ କାର୍ଯ୍ୟ ହେଉଛି ପତ୍ନୀପୂଜା।"
ସେ ହସି ହସି କହିଲା, "ଏ ପୂଜାର ବିଧିବିଧାନ କ'ଣ? ଦେବତା ଭକ୍ତକୁ ଭୟ କଲା ଭଳି କିଛି ବ୍ୟବସ୍ଥା ନାହିଁ ତ ?"
—"ନା ... ନା ... ବିଧିବିଧାନ ଅତ୍ୟନ୍ତ ସହଜ ଓ ସରଳ। ପତି ପତ୍ନୀଙ୍କ କୁଡ଼ାରେ ଗୋଟିଏ ସୁନ୍ଦର ଫୁଲ ଲଗାଇଦେବ।"
—"ବା ... ସ୍ ... ଏତିକି ?"
"ହଁ ... ଲଗାଇ ଦେଇ ସାରିବା ପରେ ସେ ଫୁଲଟିକୁ ପ୍ରାଣଭରି ଶୁଙ୍ଘିବ। ପ୍ରସାଦ ଗ୍ରହଣ ନକଲେ ପୂଜାବିଧି କ'ଣ କେବେ ସମ୍ପୂର୍ଣ୍ଣ ହୁଏ କି?"
ଦେବଯାନୀ ମୋ କଥା ଶୁଣି ସଙ୍ଗେ ସଙ୍ଗେ ଗମ୍ଭୀର ହୋଇଯାଇ କହିଲା, "ଦେଖନ୍ତୁ, ମୁଁ ହେଉଛି ହସ୍ତିନାପୁରର ମହାରାଣୀ; ଆପଣ ମହାରାଜା। ଆମର ପିଲାଳିଆ ଢଙ୍ଗ ଯଦି ଦାସଦାସୀଙ୍କ ଆଖିରେ ପଡ଼ିଯାଏ, ତେବେ ଆମର ପ୍ରତିଷ୍ଠା ରହିବ ତ?" ଦେବଯାନୀର ଏ 'ପ୍ରତିଷ୍ଠା' ଶବ୍ଦ ପ୍ରଥମେ ମୋର ଶ୍ରୁତିକଟୁ ହେଲା ଏବଂ ପରେ ମୋ ହୃଦୟରେ ତୀବ୍ର ଆଘାତ ଦେଲା। ମାଆ ମଧ୍ୟ ଅଳକାକୁ ପ୍ରାଣଘାତୀ ବିଷ ପିଆଇଦେବା ପରେ ଏହି 'ପ୍ରତିଷ୍ଠା' ଉପରେ ଜୋର୍ ଦେଇ ମୋତେ ଧମକଦେଇଥିଲେ— ରାଜପ୍ରାସାଦର ପ୍ରତିଷ୍ଠା, ରାଜବଂଶର ପ୍ରତିଷ୍ଠା, ମଣିଷକୁ ଜୀବିତ ସମାଧି ଦେଇ ତା ଉପରେ ସୁନ୍ଦର ହର୍ମ୍ୟ ତୋଳିବାର ପ୍ରତିଷ୍ଠା। ତା'ହେଲେ ଦେବଯାନୀ କ'ଣ ମାଆଙ୍କର ପରବର୍ତ୍ତୀ ସଂସ୍କରଣ? ସମୟ ବଦଳିଯାଉଛି, କାର୍ଯ୍ୟ ପରିବର୍ତ୍ତିତ ହୋଇଯାଉଛି; କିନ୍ତୁ ମନୁଷ୍ୟ— ସେ କ'ଣ କେବେହେଲେ ବଦଳୁନାହିଁ?

× × × × ×

ପ୍ରତ୍ୟେକ ଥର ମୁଁ ଅନୁଭବ କରିଛି, ମୁଁ ଯାହା ଯାହା କହିବାକୁ ଚାହୁଁଛି ଠିକ୍ ଭାବରେ କହିପାରୁନାହିଁ। ମଣିଷ କ'ଣ ତା'ର ହୃଦୟ ଖୋଲି ଭଲଭାବରେ କହିପାରେ ନାହିଁ? ମଣିଷର ହୃଦୟରେ ଲଜ୍ଜା, ସଙ୍କୋଚ, ଆତ୍ମଗୌରବ, ଆତ୍ମୀୟତା ଆଦି ଅନେକ ଦ୍ୱାର ରହିଛି। ସେ ସମସ୍ତ ଦ୍ୱାରଆଡ଼କୁ ଦୃଷ୍ଟିଦେଇ ଦେବଯାନୀ ସହିତ ମୋର ପ୍ରଥମବର୍ଷର ଜୀବନଧାରା ମୁଁ ବର୍ଣ୍ଣନା କରିବାକୁ ଚାହୁଁଛି। କିନ୍ତୁ ... ନା ... ଅସମ୍ଭବ। ସମ୍ପୂର୍ଣ୍ଣ ଅସମ୍ଭବ। କିନ୍ତୁ ଗୋଟିଏ କଥା ନିରାଧାର ସତ୍ୟ, ମୋ

ନିଜର ଅପୂର୍ଣ୍ଣତା ହିଁ ମୋତେ ଅଧିକ କଷ୍ଟ ଦେଉଛି। ମୁଁ ଚାହିଁଥିଲି ପୂର୍ଣ୍ଣତା। ମୋ ଶରୀର ଓ ମନ ସବୁବେଳେ ଏଇ ପୂର୍ଣ୍ଣତା ପାଇବାଲାଗି ବ୍ୟାକୁଳ ହୋଇଛି।

ଦେବଯାନୀ ଅବଶ୍ୟ ମୋତେ କେତେକ ପରିମାଣରେ ଶାରୀରିକ ସୁଖ ଦାନକରିଛି; ସେଥିଲାଗି ମୁଁ ତା'ଠାରେ ଚିରଋଣୀ। କିନ୍ତୁ ସେହି ଶାରୀରିକ ମିଳନ ସମୟରେ ମଧ୍ୟ ମୁଁ ତା'ଠାରେ ସେପରି ଉନ୍ମାଦନା କିମ୍ବା ଆନ୍ତରିକତା ଲକ୍ଷ୍ୟକରିନାହିଁ। ଅନେକ ସମୟରେ ସେ ଶୋଇବାର ଛଳନା କରି ପଲଙ୍କ ଉପରେ ପଡ଼ିରହିଥାଏ। ମୁଁ ଧୀରେ ଧୀରେ ଯାଇ ତାର ଗୋଲାପୀ ଗାଲରେ ସରୁ ଚୁମାଟିଏ ଆଙ୍କିଦିଏ; କିନ୍ତୁ ଚୁମ୍ବନ ଦେବାପରେ କେବଳ ମୋ'ରି ଦେହ ଶୀତେଇଉଠେ; ଦେବଯାନୀର ଅଙ୍ଗରେ କୌଣସି ପ୍ରତିକ୍ରିୟା ଜାତହୁଏନାହିଁ। ଏପରି ଅବସ୍ଥାରେ ମୋର ମନେପଡ଼ିଯାଏ ଜଙ୍ଗଲର ସେଇ ରତିଦେବୀଙ୍କ ମୂର୍ତ୍ତି। ମୁଁ ସେହି ପାଷାଣ ମୂର୍ତ୍ତିରେ ଚୁମ୍ବନ ଦେଇ ଯେପରି ମୋ ମନର ପ୍ରତିକ୍ରିୟା ଅନୁଭବ କରିଥିଲି, ଠିକ୍ ସେହି ପ୍ରକାର ପ୍ରତିକ୍ରିୟା ମୋ ମନରେ ଜାତହୁଏ। ମୋର ଏକାନ୍ତତା, ଅପୂର୍ଣ୍ଣତା, କେବଳ ବିକଳ ରାଗିଣୀର ସହିତ ମୋ ଅନ୍ତରରେ ଲୀନ ହୋଇଯାଉଥିଲା। ମୋର ମନେହୁଏ... ଆମେ ଦୁହେଁ ଶାରୀରିକ ସମ୍ବନ୍ଧରେ ଖୁବ୍ ପାଖାପାଖି ଥିଲେ ମଧ୍ୟ ମନର ମିଳନକ୍ଷେତ୍ରରେ ପରସ୍ପରଠାରୁ ବହୁତ ଦୂରରେ ଥିଲୁ।

ମୁଁ ମୁକୁଳିକାଠାରୁ ଶିଖିଥିଲି ଦୁଃଖ ଓ ଭୟଠାରୁ ମୁକ୍ତି ପାଇବାର ଏକମାତ୍ର ଆଧାର ପ୍ରଣୟ। କିନ୍ତୁ ତା'ର ସେ ପ୍ରଣୟ ଥିଲା କଣ୍ଟକପୂର୍ଣ୍ଣ ବନମାର୍ଗର ଅପରିଚିତ ଚଲାବାଟ ପରି। ସେ ମାର୍ଗରେ ଥିଲା ବିଷର ଜ୍ୱାଳା। କିନ୍ତୁ ମୁଁ ଭାବୁଥିଲି ଦେବଯାନୀ ସହିତ୍ ଶାରୀରିକ ମିଳନରେ ସେ ପ୍ରକାର ଭୟ ନାହିଁ; ତାହା ଶାସ୍ତ୍ରସମ୍ମତ ପବିତ୍ର ମିଳନ। ସେ ମାର୍ଗରେ ଜବାକୁସୁମର ରମଣୀୟ ପାଟଳ ବିଛୁହୋଇଥିବ। କିନ୍ତୁ ହାୟ... ଯାହା ମୁଁ କଳ୍ପନା କରିଥିଲି, ସେ ଆଶାରେ ତୁଷାରପାତହେଲା। ମୁଁ ଫୁଲର ସୁଗନ୍ଧ ପରି ପବିତ୍ର, ମନଖୋଲା ପ୍ରୀତି ଦେବଯାନୀଠାରୁ ଆଶାକରୁଥିଲି; କିନ୍ତୁ ଦିନେହେଲେ କେବେ ମୋର ଆଶା ପୂରଣ ହେଲାନାହିଁ।

ସମୁଦ୍ର ମଧ୍ୟରେ ସନ୍ତରଣ କରିବାକୁ ଇଚ୍ଛା ଥିଲେ କୂଳ ତ୍ୟାଗ କରି ଗଭୀର ଜଳ ମଧ୍ୟକୁ ଲମ୍ଫଦେବା ଆବଶ୍ୟକ। ତା'ହେଲେ ଯାଇ ସେ ଲହରୀର ସୁଖଦ ଆଲିଙ୍ଗନ ତଥା ଦୁଃଖଦ ଆଘାତ ପାଇ ସନ୍ତରଣର ଆନନ୍ଦ ପାଇପାରିବ। ପ୍ରତି ମୁହୂର୍ତ୍ତରେ ଲବଣାକ୍ତ ଜଳର ସ୍ପର୍ଶ ଆସ୍ୱାଦନ କରିବା ସଙ୍ଗେ ସଙ୍ଗେ ସୁନୀଳ ଜଳରାଶିର ଗାମ୍ଭୀର୍ଯ୍ୟ ଅନୁଭବ କରି ଦୂର ଚକ୍ରବାଳ ଆଡ଼କୁ ନିଜର ଗତି ବଢ଼ାଇନେବାରେ ସମର୍ଥ ହୋଇପାରିବ। ତା' ଫଳରେ ମୃତ୍ୟୁର ବିଭୀଷିକାକୁ ସେ ଆନନ୍ଦରେ ବରଣ କରିନେବାର ସାହସ ମନରେ ପୋଷଣ କରିପାରିବ। ଏହାହିଁ ହେଉଛି ପ୍ରୀତିର ଶାଶ୍ୱତ ରୀତି। ସେ ରାଜ୍ୟରେ ବ୍ୟକ୍ତି ନିଜର ବ୍ୟକ୍ତିତ୍ୱ ଭୁଲିଯାଇ ପ୍ରେମର ଉନ୍ମାଦନାରେ ନିଜକୁ ଉନ୍ମାଦିତ କରାଇଦିଏ। ଦେବଯାନୀ ପ୍ରଣୟ-ରାଜ୍ୟର ଏହି ଶାଶ୍ୱତ ସତ୍ୟକୁ କେବେହେଲେ ବୁଝିଲାନାହିଁ କିମ୍ବା ବୁଝିବାକୁ ଥରେହେଲେ ଭୁଲରେ ମଧ୍ୟ ଚେଷ୍ଟାକଲାନାହିଁ। ବରଂ ସେ ମୋର ଉତ୍କଟ ପ୍ରଣୟକାମନାକୁ ସବୁବେଳେ ଉପେକ୍ଷା କରିଆସିଛି।

ତା'ର ସାନ୍ନିଧ୍ୟ ଲାଭ କରି ମଧ୍ୟ ମୋ ମନର ନିର୍ଜନତା ତଥା ନିଃସଙ୍ଗତା ଆଦୌ ଦୂର ହେଲାନାହିଁ। ସେ କ'ଣ କେବେହେଲେ ମୋ ମନର ବେଦନା ବୁଝିବାକୁ ଚେଷ୍ଟା କଲା ? ନା . . . ନା।

ସେ କେବଳ ଆତ୍ମସ୍ୱାର୍ଥୀ ହୋଇ, ଯେତେବେଳେ ଯେତିକି ଅବସ୍ଥାଚକ୍ରରେ ଆବଶ୍ୟକତା ପଡ଼ିଛି ସେତିକି ଆତ୍ମପ୍ରକାଶ କରିଛି। ତା'ର ଏ ପ୍ରକାର ସ୍ୱଭାବ ଯେ କେବଳ ବାହ୍ୟିକ ଥିଲା ତା' ନୁହେଁ; ଆନ୍ତରିକତାର ସହିତ ସେ ଆତ୍ମକୈନ୍ଦ୍ରିକ ହୋଇଉଠୁଥିଲା। ତା'ର ମାନସିକ ପ୍ରବୃତ୍ତିରେ ନିଜ ପିତା ଶୁକ୍ରାଚାର୍ଯ୍ୟଙ୍କ ଭାବମୂର୍ତ୍ତି ବ୍ୟତୀତ ଆଉ କାହାରି ସ୍ୱରୂପ ପ୍ରତିଫଳିତ ହେଉନଥିଲା। ହାୟ, ତା'ର ଅନ୍ତରର ଗଭୀରତମ ପ୍ରଦେଶରେ ଥରେହେଲେ ମୋତେ ସ୍ଥାନ ଦେଇଥାଆନ୍ତା କି ! ଏ ସୁଯୋଗ ପାଇଥିଲେ, ଯଯାତିର ଶୁଷ୍କ ହଳାହଳମୟ ଜୀବନ ପଲ୍ଲବିତ ହୋଇଉଠିଥାନ୍ତା। ଦେବଯାନୀର ଆନ୍ତରିକତା ଅନୁଭବ କରିବା ମୋ ପକ୍ଷରେ ଆକାଶ-କୁସୁମ ହୋଇଉଠିଲା। ତା'ପରି ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ ପତ୍ନୀ ପାଇ ମଧ୍ୟ ମୋ ଜୀବନ ହା'ହୁତାଶରେ ପରିଣତ ହୋଇଗଲା।

ଦିନ ଦି'ପହରର କ୍ଷୁଧା, ନିଶାର୍ଦ୍ଧର ନିଦ୍ରା, ପ୍ରଚଣ୍ଡ ଗ୍ରୀଷ୍ମକାଳର ପିପାସା ତୁଳନାରେ ପ୍ରଣୟର ତୃଷା କୌଣସି ଗୁଣରେ ଊଣା ନୁହେଁ। ତାହା ଯେତିକି ସୂକ୍ଷ୍ମ, ସେତିକି ପ୍ରଖର। ପ୍ରେମଜନିତ ଶାରୀରିକ କ୍ଷୁଧାକୁ ମଣିଷ ଅନାୟାସରେ ବର୍ଣ୍ଣନା କରିପାରେ। ଯୌବନର ରଙ୍ଗିମାମୟ ରାଜ୍ୟରେ ପାଦଦେବାକ୍ଷଣି ମଣିଷ ସେ କ୍ଷୁଧାର ତୀବ୍ରଜ୍ୱାଳା ଅନୁଭବ କରେ। କିନ୍ତୁ ପ୍ରେମର ଯେଉଁ ମାନସିକ କ୍ଷୁଧା ରହିଛି, ତା'ର ଗତି ଅତ୍ୟନ୍ତ ବିଚିତ୍ର। ମୁଁ କାହିଁକି, ସଂସାରରେ କେହି ଜଣେ ସୁଦ୍ଧା ତା'ର ସ୍ୱରୂପ ବର୍ଣ୍ଣନା କରିପାରିବେନାହିଁ। ତାହା କେବଳ ଆତ୍ମିକ ଅନୁଭୂତିରୁ ହିଁ ଜଣାପଡ଼େ। ଗୋଟିଏ ପଲଙ୍କରେ ଦେବଯାନୀ, ମୋର ପରମାସୁନ୍ଦରୀ ଅଙ୍କଶାୟିନୀ ପତ୍ନୀ ଦେବଯାନୀ, ମୋ'ରି ଦେହରେ ଦେହ ଲଗାଇ ଶୋଇଥିଲେ ମଧ୍ୟ ମୁଁ ସର୍ବଦା ଅନୁଭବ କରିଛି ନିର୍ଜନତା, ନିଃସଙ୍ଗତା। ଏହା ମୋ ପକ୍ଷରେ ବେଳେବେଳେ ଅସହ୍ୟ ହୋଇଉଠିଛି; ଜୀବନକୁ ହଳାହଳମୟ କରିଦେଇଛି।

ମୋର ମନେହୁଏ, ସତେ ଅବା ମୁଁ କେଉଁ ନିର୍ଜନ ଦ୍ୱୀପକୁ ଅଜାଣତରେ ଚାଲିଆସିଛି, କେଉଁ ଆଦିମ କାଳରୁ ସେଠାରେ ଜନମାନବର ପଦଚିହ୍ନ ପଡ଼ିନାହିଁ। ସେ ପ୍ରାନ୍ତରରେ ପଶୁପକ୍ଷୀ, ବୃକ୍ଷଲତାଦିର ସତ୍ତା ନାହିଁ। କେବଳ ଶୂନ୍‌ଶାନ୍, ଜନମାନବଶୂନ୍ୟ ଏକ ବିଶାଳ ପ୍ରାନ୍ତର; ଦ୍ୱୀପର ଚତୁର୍ଦ୍ଦିଗରେ ଘେରିରହିଛି ଉତ୍ତାଳ ତରଙ୍ଗମୟ ଅଗାଧ ସାଗର। ସେଠାରେ କେବଳ ଅହରହ ପ୍ରବାହିତ ହେଉଛି ଉତପ୍ତ ପ୍ରଭଞ୍ଜନ; ସୂର୍ଯ୍ୟଙ୍କ ପ୍ରଚଣ୍ଡ ରୌଦ୍ରତାପରେ ଅସହ୍ୟ ହୋଇଉଠିଛି ସେହି ଭୟଙ୍କର ଦ୍ୱୀପ। ରାତ୍ରିର ଅନ୍ଧକାର ତଥା ନିସ୍ତବ୍‌ଧତା ମଧ୍ୟରେ ସେ ଅଞ୍ଚଳ ଆହୁରି ଅଧିକ ଭୟାବହ ହୋଇଉଠିଛି।

ଏହିପରି ଏକ ଅସହାୟ ଅବସ୍ଥାରେ ମୋତେ ଆଠପ୍ରହର ବିତାଇବାକୁ ପଡୁଥିଲା; ତେଣୁ ଅନ୍ତରର ସହିତ ମୁଁ ଜଣେ ନର୍ମସହଚରୀର ଆବଶ୍ୟକତା ଅନୁଭବ କରୁଥିଲି। ମୁଁ ଏପରି ଏକ ସହଚରୀ ଖୋଜୁଥିଲି, ଯେ'କି ମୋ ସୁଖ-ଦୁଃଖର ସମଭାଗିନୀ ହୋଇପାରିବ, ମୋ ସହିତ ହାସ-ପରିହାସ କରି ଜୀବନକୁ ରସାଣିତ କରିଦେବ।

ମୁଁ ତା'ରି କୋଳରେ ମୁଣ୍ଡ ଦେଇ ଶୋଇଥିବାବେଳେ ଶତ ସହସ୍ର ବୃଶ୍ଚିକ ଦଂଶନରେ ମଧ୍ୟ ସେ ବିବ୍ରତ ନହୋଇ ମୋତେ ସୁଖନିଦ୍ରାରେ ଶୋଇବାକୁ ଦେବ। ତା'ରି ସାହାଯ୍ୟ ଲାଭକରି ମୁଁ ନିର୍ଜନ ଦ୍ୱୀପରେ ଆନନ୍ଦରେ କାଳଯାପନ କରିବାକୁ ପ୍ରସ୍ତୁତ ଅଛି। ଖାଦ୍ୟପେୟ କିଛି ନମିଳିଲେ ମଧ୍ୟ ଆମେ ପରସ୍ପରର ଅଧରାମୃତ ପାନକରି ସୁଖରେ କ୍ଷୁଧାତୃଷାର ଜ୍ୱାଳା ଭୁଲିଯାଇପାରିବୁ। ମୃତ୍ୟୁ ମୋତେ କବଳିତ କରିବା ସମୟରେ ମୋର ପ୍ରିୟସହଚରୀ ହସି ହସି କହିବ– 'ହେ ମୃତ୍ୟୁର ନିୟାମକ! ମୁଁ ତୁମର ବିରୋଧ କରୁନାହିଁ; କିନ୍ତୁ ମୋ ପ୍ରିୟତମଙ୍କ ସହିତ ମୋତେ ମଧ୍ୟ ନେଇଯାଅ।' କିନ୍ତୁ ଦେବଯାନୀଠାରୁ ଏ ପ୍ରକାର ବ୍ୟବହାରର ଲେଶମାତ୍ର ମୁଁ ଜୀବନରେ ପାଇପାରିନାହିଁ।

ଥରେ ଦେବଯାନୀର ଅନ୍ତର ପରୀକ୍ଷା କରିବା ଅଭିପ୍ରାୟରେ ମୁଁ କହିଲି, "ମୋ ମନରେ ଗୋଟିଏ ଅଭିଳାଷ ଜାତହେଉଛି; ବୋଧହୁଏ ତାହା ଏ ଜନ୍ମରେ ପୂରଣ ହେବନାହିଁ।"

"ଏଁ... କ'ଣ କହିଲେ? ଦୁନିଆରେ କ'ଣ ଏପରି କିଛି ଅଭିଳାଷ ରହିଛି ଯାହାକି ହସ୍ତିନାପୁରର ମହାରାଜାଙ୍କ ପକ୍ଷରେ ପୂରଣ ହେବା ସମ୍ଭବ ନୁହେଁ? କ'ଣ ସେ ଅଭିଳାଷ ଟିକିଏ ଶୁଣେ।" ହସି ହସି କହିଲା ଦେବଯାନୀ।

ମୁଁ ଉତ୍ତର ଦେଇ କହିଲି, "ଦାରିଦ୍ର୍ୟ..."

–"ମାନେ...? ଆପଣ ଦରିଦ୍ର ହେବାକୁ ଚାହୁଁଛନ୍ତି?"

"ହଁ, ବେଳେବେଳେ ମୋ ମନରେ ଭାବନା ଜାଗେ, କୌଣସି ଗୋଟିଏ ବଳବାନ୍ ଶତ୍ରୁ ଆମ ରାଜ୍ୟ ଉପରେ ଆକ୍ରମଣ କରି ଆମକୁ ପଦଚ୍ୟୁତ କରିଦିଅନ୍ତା; ମୁଁ ତୁମକୁ ନେଇ କୌଣସି ଏକ ନିଘଞ୍ଚ ଜଙ୍ଗଲରେ ଆତ୍ମଗୋପନ କରି ରହନ୍ତି। ମୁଁ ଜଙ୍ଗଲରୁ ପଶୁପକ୍ଷୀ ଶିକାର କରି ଆଣି ତୁମ ଆଗରେ ଥୋଇଦିଅନ୍ତି, ତୁମେ ହସି ହସି ସେଗୁଡ଼ିକ ବେଶ୍ ରନ୍ଧାରନ୍ଧି କରି ପରଷିଦିଅନ୍ତ; ଆମେ ଦୁହେଁ ଆନନ୍ଦରେ ଖାଇପିଇ ମନମଉଜରେ ସେଇଠି ରହନ୍ତେ। ଆଉ ମଧ୍ୟ ମୁଁ ଗଛ ଉପରେ ଚଢ଼ି ସୁସ୍ୱାଦୁ ଫଳଗୁଡ଼ିଏ ତୋଳି ତଳକୁ ପକାଇଦିଅନ୍ତି। ତୁମେ ଗଛ ମୂଳରେ ରହି ସେଗୁଡ଼ିକୁ ଗୋଟାଇ ଅଣ୍ଟିରେ ରଖନ୍ତ, ମୁଁ ଗଛରୁ ଓହ୍ଲାଇ ଆସିବା ମାତ୍ରେ ସେହି ଗଛ ମୂଳରେ ବସି ଆମେ ସେଗୁଡ଼ିକ ଖାଆନ୍ତେ। ଏହି ସମୟରେ ଆମରି ପାଖଦେଇ ଗୋଟିଏ ଛୋଟିଆ ସାପ ସର୍‌ସର୍ ହୋଇ ପଳାଇଯାଆନ୍ତା; ତୁମେ ଭୟରେ ମୋତେ ଗାଢ଼ ଆଲିଙ୍ଗନ କରନ୍ତ। ମୁଁ ତୁମର ଭୟ ଅପେକ୍ଷା ତୁମଠାରୁ ପ୍ରାଣଭରା ସ୍ପର୍ଶସୁଖ ପାଇ ବିହ୍ୱଳ ହୋଇଉଠନ୍ତି। ଗଭୀର ନିଶିଥରେ ଆମେ କେଉଁ ଅନ୍ଧାରିଆ ଗୁହା ମଧ୍ୟରେ ପରସ୍ପରକୁ ନିବିଡ଼ଭାବେ ଆଲିଙ୍ଗନକରି ଶୋଇଥାଆନ୍ତେ; ସେହି ସମୟରେ ଗୋଟିଏ ଜୁଳୁଜୁଳିଆ ପୋକ ଆସି ଆମ ମୁହଁ ପାଖରେ ଦପ୍‌ଦପ୍ ଆଲୁଅ ଦେଖାଇ ଉଡ଼ିବୁଲନ୍ତା। ବନର ଅଧିଷ୍ଠାତ୍ରୀ ବନଦେବୀ ଆମ ପ୍ରଣୟର ରହସ୍ୟ ଜାଣିବା ଲାଗି ପୋକଟାକୁ ପଠାଇଛନ୍ତି ବୋଲି ମନେକରି ତୁମେ ଲାଜରେ ଝାଉଁଳି..." ମୁଁ ଆହୁରି କେତେ କ'ଣ ଗାଇଯାଇଥାଆନ୍ତି; କିନ୍ତୁ ହଠାତ୍ ଦେବଯାନୀ ମନେ ମନେ ବିରକ୍ତ ହୋଇଉଠି କହିଲା, "ମନେହେଉଛି ଆପଣ ଭୁଲରେ ମହାରାଜ ନହୁଷଙ୍କ ଘରେ ଜନ୍ମହୋଇପଡ଼ିଛନ୍ତି;

ନହେଲେ ଆପଣଙ୍କର କୌଣସି କବିଙ୍କ ଘରେ ... ।"

ମୁଁ ନହୁଷ ମହାରାଜଙ୍କର ପୁତ୍ର, ହସ୍ତିନାପୁରର ମହାରାଜ, ସେଇଥିପାଇଁ ଦେବଯାନୀ ମୋତେ ବିବାହ କରିଥିଲା । ସେ ପ୍ରକୃତରେ ଭଲପାଉଥିଲା ମୋର ରାଜବୈଭବକୁ, ପ୍ରେମ ପ୍ରଦର୍ଶନ କରୁଥିଲା ମହାରାଜା ଯଯାତିଙ୍କୁ, ମହାରାଣୀ ଭାବରେ ସେ ତା'ର ପ୍ରତିଷ୍ଠା ବୃଦ୍ଧି କରିବାକୁ ଚାହୁଁଥିଲା; କିନ୍ତୁ ଯଯାତି କେବଳ ଥିଲା ତା'ର ଅଭିଳାଷ-ପୂର୍ତ୍ତିର ସାଧନ ମାତ୍ର ।

ମୋ ମନରେ ଏ ଧାରଣା ହେବା ସଙ୍ଗେ ସଙ୍ଗେ ମୁଁ ବ୍ୟାକୁଳ ହୋଇଉଠେ; ତଥାପି ଦେବଯାନୀକୁ ସନ୍ତୁଷ୍ଟ କରିବା ଲାଗି ଯାହା କିଛି ଆବଶ୍ୟକ ମୁଁ ସାଧ୍ୟମତେ ସେସବୁ ପୂରଣ କରିବାରେ କେବେହେଲେ ଅବହେଳା କରେ ନାହିଁ । ସେ ମାଆଙ୍କୁ ବରାବର ଅପମାନିତ କରିଛି, ଶର୍ମିଷ୍ଠାକୁ ନିଜ ଇଚ୍ଛା ଓ ଜିଦ୍ ଅନୁସାରେ ରାତିଦିନ ବ୍ୟତିବ୍ୟସ୍ତ କରିପକାଇଛି; ତଥାପି ମୁଁ କେବେହେଲେ ତା'ର ବିରୋଧ କରିନାହିଁ । ଏହା ଅବଶ୍ୟ ମୋର ସାଧୁତା ନୁହେଁ; କେବଳମାତ୍ର ଦୁର୍ବଳତା । ମୁଁ କଳିତକରାଳ ଚାହୁଁନଥିଲି କିମ୍ବା ଦୁଃଖକଷ୍ଟ ପାଇବାକୁ ମୁଁ ପସନ୍ଦ କରୁନଥିଲି । ଯେତେଦୂର ସମ୍ଭବ, ମୁଁ ଆନନ୍ଦରେ କାଳ ଯାପନ କରିବା ଲାଗି ଚାହୁଁଥିଲି । ଦିନସାରା ଦେବଯାନୀର ଦୋଷଗୁଡ଼ିକ ବିଷୟରେ ମୁଁ ଅନେକ ଚିନ୍ତାକରେ; କିନ୍ତୁ ସଂଧ୍ୟା ହୋଇଯିବା ମାତ୍ରେ ରାତ୍ରିର ମିଳନ ପାଇଁ ମୁଁ ବ୍ୟାକୁଳ ହୋଇଉଠେ । ମୁଁ ଅବଶ୍ୟ ବେଶ୍ ବୁଝୁଥିଲି ଯେ, ସେ ମିଳନରେ ଆଦୌ ଆନ୍ତରିକତା ନଥିଲା; ତଥାପି ମୁଁ ଯେତିକି ସୁଖ ପାଉଥିଲି, ସେତକ ଛାଡ଼ିଦେବାକୁ ଆଦୌ ଚାହୁଁନଥିଲି । ଯା'ହେଉ, କୌଣସିମତେ ଦେବଯାନୀ ମୋତେ ତା'ର ସୌନ୍ଦର୍ଯ୍ୟଜାଲରେ ବାନ୍ଧିରଖିଥିଲା । କିନ୍ତୁ ଦିନେହେଲେ ମୁଁ ତା' ଆଗରେ ମନଖୋଲି କିଛି କହିପାରିଲିନାହିଁ ।

ଆମ ବିବାହର ଅଳ୍ପଦିନ ପରେ ବୃଦ୍ଧ ଅମାତ୍ୟଙ୍କ ଦେହାବସାନ ହୋଇଗଲା । ତା'ପରେ ପରମ୍ପରା ଅନୁସାରେ ତାଙ୍କ ଜ୍ୟେଷ୍ଠପୁତ୍ରଙ୍କୁ ଅମାତ୍ୟ ପଦରେ ନିଯୁକ୍ତ କରାଗଲା । କିନ୍ତୁ ତାଙ୍କ କାର୍ଯ୍ୟଦକ୍ଷତା ଉପରେ ମୋର ଧୀରେ ଧୀରେ ସନ୍ଦେହ ଜାତହେଲା । ରାଜ୍ୟର ସୀମାନ୍ତରେ ଦସ୍ୟୁମାନଙ୍କ ଉପଦ୍ରବ ବୃଦ୍ଧି ପାଇବାର ଶୁଣାଗଲା । ବେଳେବେଳେ ଏ ଖବର ଶୁଣି ମୁଁ ବ୍ୟତିବ୍ୟସ୍ତ ହୋଇପଡୁଥିଲି; ଅନ୍ୟ କେତେବେଳେ ସେ ଘଟଣା ଉପରେ ବିଶେଷ ଗୁରୁତ୍ୱ ଦେଉନଥିଲି । କିନ୍ତୁ ଦେବଯାନୀ ଦିନେହେଲେ ମୋତେ ସେ ସମ୍ପର୍କରେ କିଛି ପଚାରିଲାନାହିଁ କିମ୍ବା ମୋ ବ୍ୟଗ୍ରତା ସମ୍ବନ୍ଧରେ ଜାଣିବା ଲାଗି କେବେହେଲେ ଆଗ୍ରହ ପ୍ରକାଶ କଲାନାହିଁ । ଅନ୍ୟକୁ, ବିଶେଷତଃ ନିଜର ସ୍ୱାମୀକୁ ଆପଣାର କରିବାଭଳି ଯୋଗ୍ୟତା ଦେବଯାନୀର ନଥିଲା ।

ଯେଉଁମାନେ କେବଳ ନିଜ ସ୍ୱାର୍ଥଚିନ୍ତାରେ ମଗ୍ନଥାଆନ୍ତି, ଦିନରାତି କେବଳ ଆତ୍ମୋନ୍ନତିରେ ମଜ୍ଜିଥାଆନ୍ତି, ନିଜ ବ୍ୟତୀତ ଅନ୍ୟର ସୁଖ-ଦୁଃଖ ଜାଣିବାରେ କେବେହେଲେ ମନ ବଳାନ୍ତିନାହିଁ, ସେମାନଙ୍କ ଅନ୍ତରକୁ ଏ କଥା ସ୍ପର୍ଶ କରିବ କୁଆଡୁ ? ଅନ୍ଧ ଯେପରି ବାହାରର ପ୍ରାକୃତିକ ବାତାବରଣ କିଛି ଦେଖିପାରେନାହିଁ, ବଧିର ଯେପରି ବାହାରର ମଧୁର ସଙ୍ଗୀତ ଆସ୍ୱାଦନ କରିପାରେନାହିଁ, ସେହିପରି ଆତ୍ମସ୍ୱାର୍ଥୀ ବ୍ୟକ୍ତି

ଅନ୍ୟର ଅନ୍ତର ବୁଝିବାରେ ସକ୍ଷମ ହୋଇପାରେନା । ଦେବଯାନୀ ଯେକୌଣସି ବିଷୟରେ ପ୍ରଥମରୁ ନିଜର ଧାରଣା ଦୃଢ଼ କରିନେଇ ସେ ମତକୁ ବଦଳାଇବା ଲାଗି ଆଦୌ ପ୍ରସ୍ତୁତ ନଥିଲା ।

ଆମ ବିବାହର ପରବର୍ତ୍ତୀ ନଗରୋତ୍ସବର ଘଟଣା । ସେ ଉତ୍ସବଟି ଖୁବ୍ ଆଡ଼ମ୍ବର ସହକାରେ ପାଳିତ ହୋଇଥିଲା । ପ୍ରତ୍ୟେକ କ୍ଷେତ୍ରରେ ନୂତନ ମହାରାଣୀଙ୍କ ପ୍ରଶଂସାରେ ନଗର ଫାଟିପଡୁଥିଲା । ପ୍ରତ୍ୟେକ ରାତିରେ ମନୋରଞ୍ଜନ କାର୍ଯ୍ୟକ୍ରମ ହେଉଥିଲା, ଆମେ ଦୁହେଁ ସେଠାରେ ଉପସ୍ଥିତ ରହୁଥିଲୁ । ପ୍ରଥମ ଦିନ ମୋର ପ୍ରପିତାମହ ପୁରୁରବାଙ୍କ ଜୀବନଧାରା ଉପରେ ଗୋଟିଏ ନାଟକ ଅଭିନୀତ ହୋଇଥିଲା । ନାଟକର ବିଷୟବସ୍ତୁ ଆଦିରସ ତଥା କରୁଣରସାତ୍ମକ ହୋଇଥିବାରୁ ଜନସାଧାରଣ ସେଥିରେ ଆତ୍ମବିଭୋର ହୋଇଉଠିଥିଲେ । ପୁରୁରବାଙ୍କ ଭୂମିକାରେ ଅଭିନୟ କରୁଥିବା ଅଭିନେତା ଯେପରି ସୁନ୍ଦର, ସେହିପରି ସଙ୍ଗୀତନିପୁଣ ତଥା ଦକ୍ଷ କଳାକାର ଥିଲେ । ତେଣୁ ଦର୍ଶକମାନେ ପ୍ରତ୍ୟେକ ପ୍ରସଙ୍ଗରେ ପୂର୍ଣ୍ଣ ରସାସ୍ୱାଦନ କରୁଥିଲେ ।

କେତେକ ସର୍ତ୍ତରେ ସ୍ୱର୍ଗସୁନ୍ଦରୀ ଉର୍ବଶୀ ପୁରୁରବାଙ୍କ ସହିତ ରହିବାକୁ ପ୍ରସ୍ତୁତ ହୋଇଥିଲେ; କିନ୍ତୁ ଅଜ୍ଞାତସାରରେ ପୁରୁରବା ସେହି ସର୍ତ୍ତ ଭଙ୍ଗକରନ୍ତେ, ଉର୍ବଶୀ ତାଙ୍କୁ ତ୍ୟାଗ କରି ଚାଲିଗଲେ । ପ୍ରାଣପ୍ରିୟାଙ୍କ ବିୟୋଗରେ ରାଜା ପାଗଳ ହୋଇଗଲେ । ତାଙ୍କ ଅନ୍ୱେଷଣରେ ରାଜା ବଣ, ଜଙ୍ଗଲ, ପାହାଡ଼ ଆଦି ସ୍ଥାନରେ ପରିଭ୍ରମଣ କରି ଶେଷରେ ସେ ଗୋଟିଏ ପୋଖରୀ ନିକଟରେ ଯାଇ ଉପସ୍ଥିତ ହେଲେ । ସେଠାରେ ସେ ଉର୍ବଶୀଙ୍କୁ ଦେଖିପାରି ତାଙ୍କୁ ଫେରିଆସିବା ଲାଗି ଅନେକ କାକୁତି-ମିନତି କଲେ; କିନ୍ତୁ ରାଜାଙ୍କ ପ୍ରେମନିବେଦନ ଫଳରେ ଉର୍ବଶୀଙ୍କର କଠୋରତା ଦୂରହେଲାନାହିଁ । ଶେଷକୁ ନିରାଶ ହୋଇ ସେ ଆତ୍ମହତ୍ୟା କରିବା ଲାଗି ପ୍ରସ୍ତୁତ ହୋଇଯାଇ କହିଲେ – 'ଉର୍ବଶୀ ! ତୁମ ସହିତ ପ୍ରଣୟସୁଖ ଅନୁଭବ କରିଥିବା ଏ ପ୍ରେମପାଗଳ ଆଜି ଏଇଠାରେ ଆତ୍ମହତ୍ୟା କରୁଛି କିମ୍ବା ବଣ-ଜଙ୍ଗଲର ହିଂସ୍ରଜନ୍ତୁଙ୍କ ମୁହଁରେ ପଡ଼ି ଆତ୍ମାହୁତି ଦେଉଛି ।'

ଉର୍ବଶୀ ରାଜାଙ୍କୁ ଉତ୍ତର ଦେଇ କହିଛି – 'ମହାରାଜ, ଆପଣ ବୃଥାଟାରେ ଏ ପୁଷ୍କରିଣୀରେ ପଡ଼ି ଆତ୍ମହତ୍ୟା କରନ୍ତୁ ନାହିଁ କିମ୍ବା ହିଂସ୍ରଜନ୍ତୁଙ୍କ ମୁହଁରେ ପଡ଼ି ଆତ୍ମାହୁତି ଦିଅନ୍ତୁ ନାହିଁ । ରାଜନ୍, ଗୋଟିଏ କଥା ମନେରଖନ୍ତୁ, ସ୍ତ୍ରୀମାନଙ୍କ ସହିତ ସଦାସର୍ବଦା ପ୍ରେମ-ସମ୍ପର୍କ ରଖିବା ଅନୁଚିତ୍, କାରଣ ସେମାନଙ୍କ ହୃଦୟ ହିଂସ୍ରଜନ୍ତୁଙ୍କଠାରୁ ଅଧିକ କ୍ରୂର ।' ଏତିକି କହି ସେଠାରୁ ଉର୍ବଶୀ ଅଦୃଶ୍ୟ ହୋଇଗଲେ । ରାଜା ପ୍ରାଣପ୍ରିୟାଙ୍କ ବିରହ ସହ୍ୟ କରିନପାରି, ଉର୍ବଶୀ ଛିଡ଼ାହୋଇଥିବା ସ୍ଥାନକୁ ଆଲିଙ୍ଗନ କରିବାକୁ ଯାଇ, ସେଠାରେ ମୂର୍ଚ୍ଛିତ ହୋଇପଡ଼ିଲେ ।

ଏହି ଅନ୍ତିମ ଦୃଶ୍ୟ ଦେଖି ଜନତା ବ୍ୟାକୁଳ ହୋଇଉଠିଲେ; ବିଶେଷତଃ ନାରୀମାନଙ୍କ ହୃଦୟରେ ସେ ଦୃଶ୍ୟ ତୀବ୍ର ପ୍ରତିକ୍ରିୟା ସୃଷ୍ଟିକଲା । କିନ୍ତୁ ସେହି ଘଟଣାରେ ଏକମାତ୍ର ଦେବଯାନୀ ତାଳି ମାରି ଆନନ୍ଦିତ ହୋଇଥିଲା । ଦେବଯାନୀର ତାଳି ଶୁଣି କରୁଣରସରେ ମଗ୍ନ ଜନତାର ତନ୍ଦ୍ରା ଭାଙ୍ଗିଗଲା । ସେମାନେ ମୁହଁ ବୁଲାଇ ମହାରାଣୀଙ୍କ ଆଡ଼କୁ

ବିସ୍ମିତ ଦୃଷ୍ଟିରେ ଚାହିଁରହିଲେ; କିନ୍ତୁ ଦେବଯାନୀ ବିଜୟିନୀର ଦୃଷ୍ଟିରେ ମୋ ଆଡ଼କୁ ଚାହିଁରହିଲା। ସେ ସମୟର କଥା କଳ୍ପନା କଲେ ଆଜି ମଧ୍ୟ ମୋ ଶରୀରରେ ତୀବ୍ରଜ୍ୱାଳା ଜାତହୁଏ।

ଦ୍ୱିତୀୟ ଦିନ ଋଗ୍‌ବେଦବର୍ଣ୍ଣିତ ଅଗସ୍ତ୍ୟ ଓ ଲୋପାମୁଦ୍ରାଙ୍କ ଚରିତ୍ର ଅଭିନୀତ ହୋଇଥିଲା। ଅଗସ୍ତ୍ୟ ଥିଲେ ବ୍ରାହ୍ମଣ, ଲୋପାମୁଦ୍ରା ଥିଲେ କ୍ଷତ୍ରିୟ-କନ୍ୟା। ମୁଁ ଦେବଯାନୀକୁ କୂଅ ମଧ୍ୟରୁ ଉଠାଇବାବେଳେ ସେ ସେହି ପ୍ରସଙ୍ଗ ଉତ୍‌ଥାପନ କରିଥିଲା। ତେଣୁ ମୁଁ ସେଦିନ ପରିହାସରେ କହିଥିଲି– ''ଆଜି ମୁଁ ଅଗସ୍ତ୍ୟ, ଆଉ ତୁମେ ଲୋପାମୁଦ୍ରା ଭୂମିକାରେ ଅଭିନୟ କରିଥିଲେ କେଡ଼େ ମଜା ହୋଇନଥା'ନ୍ତା ?''

ଅଭିନୟ ଆରମ୍ଭ ହେଲା। ବିବାହିତ ଅଗସ୍ତ୍ୟ ଦୀର୍ଘଦିନଧରି ବ୍ରହ୍ମଚର୍ଯ୍ୟ ପାଳନ କରି ଶେଷରେ ଦିନେ ଶାରୀରିକ ସମ୍ଭୋଗ ଲାଗି ଲୋପାମୁଦ୍ରାଙ୍କଠାରେ ନିବେଦନ ଜଣାଇ କହିଲେ, ''ପ୍ରିୟେ, ପ୍ରତିଦିନ ଉଷା ଦିବସର ସନ୍ଦେଶ ଘେନି ଜଗତରେ ପଦାର୍ପଣ କରୁଛି; କିନ୍ତୁ ତୁମେ ବୁଝୁଛ କି ସେହି ଉଷା ଆମକୁ ଜରାଜୀର୍ଣ୍ଣ ଅବସ୍ଥା ଆଡ଼କୁ ପ୍ରତିଦିନ ଗୋଟିଏ ଗୋଟିଏ ପହଣ୍ଡ ଆଗେଇ ନେଉଛି। ବାର୍ଦ୍ଧକ୍ୟରେ ମନୁଷ୍ୟର ସବୁଯାକ ଇନ୍ଦ୍ରିୟ ଶିଥିଳ ହୋଇ ଶାରୀରିକ ସୌନ୍ଦର୍ଯ୍ୟ ମଉଳିଯାଏ। ପ୍ରିୟେ, ଏହି ସ୍ୱାଭାବିକ ଅପ୍ରିୟ ସତ୍ୟକୁ ଉପଲବ୍ଧି କରିବା ପରେ, ଆମେ ପରସ୍ପରଠାରୁ ପୃଥକ୍ ରହିବାର ଆବଶ୍ୟକତା କ'ଣ ? ଏଥିରୁ ଆମକୁ କେଉଁ ସୁଖ ମିଳିବ ?''

ଅଗସ୍ତ୍ୟଙ୍କ ନିବେଦନ ପରେ ଲୋପାମୁଦ୍ରା ଆହୁରି କେତେକ ପ୍ରଶ୍ନ ପଚାରିଲେ। ତାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲେ ଅଗସ୍ତ୍ୟ– 'ପତିପତ୍ନୀଙ୍କ ସମ୍ଭୋଗ ଆଦୌ ଅନୁଚିତ ନୁହେଁ। ଯଦି ଏହା ଅନୁଚିତ ସମ୍ବନ୍ଧ ହୋଇଥାନ୍ତା; ତା'ହେଲେ ଆଦିଶକ୍ତି ସ୍ତ୍ରୀ ପୁରୁଷମାନଙ୍କୁ ସ୍ୱତନ୍ତ୍ର ଭାବରେ କାହିଁକି ଜନ୍ମଦେଇଥା'ନ୍ତେ ?'

ତଥାପି ଲୋପାମୁଦ୍ରା ପ୍ରାଣପ୍ରିୟଙ୍କଠାରେ ଆତ୍ମସମର୍ପଣ କଲେନାହିଁ। ସେତେବେଳକୁ ଅଗସ୍ତ୍ୟଙ୍କ ଶରୀର କାମବାଣରେ ଜର୍ଜରିତ ହେଇଯାଇଥିଲା; ମହାନଦୀର ପ୍ରଖର ସ୍ରୋତ ଯେପରି କୂଳର ସମସ୍ତ ପ୍ରକାର ବନ୍ଧନ ଭାଙ୍ଗି ବାହାରକୁ ଉଛୁଳିପଡ଼େ, ଠିକ୍ ସେହିପରି ତାଙ୍କର ଅବସ୍ଥା ହୋଇଗଲା। ଶେଷକୁ ପ୍ରଣୟିନୀ ଲୋପାମୁଦ୍ରା ପ୍ରାଣପ୍ରିୟ ଅଗସ୍ତ୍ୟଙ୍କ କାନ୍ଧରେ ମୁହଁ ლୁଚାଇ ଲାଜରେ ସଢ଼ିଯାଇ କହିଲେ– 'ପ୍ରିୟ, ପୁରୁଷ ସବୁକିଛି ମୁହେଁ ମୁହେଁ କହିପାରନ୍ତି; କିନ୍ତୁ ନାରୀର ସେ ଶକ୍ତି ନାହିଁ। ତଥାପି ବାସନାର ଅଦମ୍ୟ ପିପାସା ତା' ମନରେ ମଧ୍ୟ କମ୍ ନୁହେଁ।'

ଏ ଦୃଶ୍ୟ ଦେଖି ଦର୍ଶକମାନେ ବେଶ୍ ଆନନ୍ଦ ଅନୁଭବ କଲେ। କିନ୍ତୁ ଦେବଯାନୀର ମନକୁ ଏହା ଆଦୌ ଘେନିଲାନାହିଁ। ସେ ମନେମନେ ବିରକ୍ତ ହୋଇ ମୋତେ କହିଲା, ''କେଡ଼େ ମୂର୍ଖଟାଏ ଏ ଲୋପାମୁଦ୍ରା ? ଏ ଜଟିଳ ସନ୍ନ୍ୟାସୀଟାକୁ ବେଶ୍ ଦି'ପଦ ଝାଡ଼ିଦେଇ ପାରିଲା ନାହିଁ? କାଲି ଠିକ୍ ଉତ୍ତର ଦେଇଥିଲେ ଉର୍ବଶୀ।''

ତୃତୀୟ ଦିନର ଅଭିନୟ ଦେବଯାନୀକୁ ବେଶ୍ ଆନନ୍ଦ ଦେଇଥିଲା। ଜଣେ ରାଜା ଶତ୍ରୁର ଗୁପ୍ତରହସ୍ୟ ଜାଣିବାଲାଗି ଗୋଟିଏ ନର୍ତ୍ତକୀବେଶରେ ଶତ୍ରୁପୁରକୁ ଯାଇ ସଫଳତାର ସହିତ ଫେରିଆସିଥିଲେ। ନର୍ତ୍ତକୀର ଅଭିନୟ ଜଣେ ଦକ୍ଷ ତଥା ନୃତ୍ୟକଳା

କୁଶଳ ଅଭିନେତ୍ରୀଦ୍ୱାରା ସମ୍ପନ୍ନ ହେଉଥିଲା । ସେ ନିଜର ନୃତ୍ୟ-ପ୍ରଦର୍ଶନରେ ସମୁଦାୟ ଦର୍ଶକଙ୍କୁ ମୁଗ୍‌ଧ କରିଦେଇଥିଲେ । କିନ୍ତୁ ହଠାତ୍ ଦେବଯାନୀ ମୋତେ କହିଲା, ‘‘ଦେଖିଲେ, ଏ ରାଜାଙ୍କୁ ନର୍ତ୍ତକୀବେଶ କେଡ଼େ ସୁନ୍ଦର ମାନୁଛି ? କେତେବେଳେ ମୁଁ ଭାବୁଛି, ଆପଣଙ୍କୁ କି ବେଶରେ ସଜ୍ଜିତ କଲେ ଭଲ ମାନିବ ।’’ ଟିକିଏ ନୀରବ ରହି ସେ ପୁଣି କହିଲା, ‘‘ହଁ... ହଁ... ବୁଝିଲି; ଆପଣଙ୍କୁ ଗୋଟିଏ ଜଟାଜୂଟମଣ୍ଡିତ ସନ୍ୟାସୀବେଶରେ ମଣ୍ଡିଦେଲେ ଖୁବ୍ ମାନିବ; ମୁଁ ମଧ୍ୟ ଆପଣଙ୍କୁ ଆଦୌ ଚିହ୍ନିପାରିବିନାହିଁ ।’’ ଏହା କହି ସେ ଠୋ’ ଠୋ’ ହୋଇ ହସିବାକୁ ଲାଗିଲା ।

ରଙ୍ଗମଞ୍ଚ ଉପରେ ନର୍ତ୍ତକୀର ଉପଭୋଗ୍ୟ ନୃତ୍ୟ ଚାଲିଥିଲା; ସେତେବେଳେ ହସିବାର କୌଣସି ପ୍ରସଙ୍ଗ ନଥିଲା । ତେଣୁ ମହାରାଣୀଙ୍କ ହାସ୍ୟର କାରଣ ବୋଧହୁଏ କୌଣସି ଦର୍ଶକ ଅନୁଭବ କରିନଥିବେ । ମୁଁ ତାକୁ ଇଶାରାରେ ଚୁପ୍ ରହିବାଲାଗି ନିର୍ଦ୍ଦେଶ ଦେଇ, ତା’ କାନ ପାଖରେ କହିଲି, ‘‘ମୁଁ ପିଲାଦିନେ ମାଆଙ୍କ ଆଗରେ ଗୋଟିଏ ସତ୍ୟ କରିଛି ।’’

—‘‘କାହିଁକି ? କ’ଣ ପାଇଁ ?’’

—‘‘ମୁଁ ଭୁଲ୍‌ରେ ସୁଦ୍ଧା ସନ୍ୟାସୀବେଶ ଧାରଣ କରିବି ନାହିଁ ।’’

—‘‘ଆଚ୍ଛା... ଦେଖିବି କେମିତି ଆପଣ ସନ୍ୟାସୀବେଶ ଧାରଣ ନ କରିବେ...।’’

—‘‘କ...ଅ...ଣ ? କ’ଣ ତୁମର ଉଦ୍ଦେଶ୍ୟ ?’’

ମୋ ଆଡ଼କୁ ଚାହିଁ ସେ ପୁଣି କର୍‌କର୍ ହୋଇ ହସିବାକୁ ଲାଗିଲା ।

× × × × ×

ଉତ୍ତର ସୀମାରେ ଦସ୍ୟୁମାନଙ୍କ ଅତ୍ୟାଚାର ବୃଦ୍ଧିପାଉଥିବାର ସମ୍ବାଦ ଆସିଲା । ପିତାଙ୍କର ପ୍ରବଳ ପରାକ୍ରମ, ବିଶେଷତଃ ସେ ଇନ୍ଦ୍ରଙ୍କୁ ପରାସ୍ତ କରିଥିବାରୁ ବଣଜଙ୍ଗଲର ଅଧିବାସୀ ଦୁର୍ଦ୍ଧର୍ଷ ଦସ୍ୟୁମାନେ ଭୟରେ ଆଦୌ ଉପଦ୍ରବ କରୁନଥିଲେ । ମୁଁ ପୁଣି ଥରେ ସେହିପରି ବୀରତ୍ୱ ପ୍ରଦର୍ଶନ କରି ସେମାନଙ୍କ ବିରୁଦ୍ଧରେ ଅଭିଯାନ ନଚଲାଇଲେ ସେମାନଙ୍କର ଆତଙ୍କ ଦୂର ହେବାର ସମ୍ଭାବନା ନଥିଲା । ଏହା ନିଶ୍ଚୟ କରି ମୁଁ ସୈନ୍ୟସାମନ୍ତଙ୍କ ଗହଣରେ ସୀମାନ୍ତକୁ ଯିବାଲାଗି ବାହାରିଲି ।

ମୋ ଯାତ୍ରାର ମୁହୂର୍ତ୍ତ ଆସିଗଲା । ମୁଁ ଭାବିଥିଲି, ମୋର ଯୁଦ୍ଧଯାତ୍ରାର କଳ୍ପନା କରି ଦେବଯାନୀ ବ୍ୟାକୁଳ ହୋଇଉଠିବ; କିନ୍ତୁ ପୂର୍ବଦିନର ରାତ୍ରିପର୍ଯ୍ୟନ୍ତ କୌଣସି ପ୍ରତିକ୍ରିୟା ତା’ଠାରେ ପରିଲକ୍ଷିତ ହେଲାନାହିଁ । ମୁଁ ଶେଷରେ ତାକୁ କହିଲି, ‘‘ତୁମକୁ ଏଠାରେ ଛାଡ଼ି ଏକୁଟିଆ ଯୁଦ୍ଧଯାତ୍ରା କରିବାକୁ ମୋର ମନ ବଳୁନାହିଁ ।’’ ସେ ହସି ହସି ବ୍ୟଙ୍ଗପୂର୍ଣ୍ଣ ସ୍ୱରରେ କହିଲା, ‘‘ଆଚ୍ଛା, ଆପଣ ଅଶ୍ୱମେଧ ଘୋଡ଼ା ନେଇ ପ୍ରକୃତରେ ଦିଗ୍‌ବିଜୟରେ ଯାଇଥିଲେ ନା ଏଇଠି କେଉଁଠି ଗାଁ-ଗହଳିରେ ଲୁଚିରହି, ମାସେ ଦି’ମାସ ପରେ ନିଜକୁ ଦିଗ୍‌ବିଜୟୀ ବୀର ରୂପେ ଘୋଷଣା କରାଇଦେଲେ ?’’

ତା’ର ଏ କଥା ଶୁଣି ମୋ ମନରେ ତୀବ୍ର ଆଘାତ ଲାଗିଲା । ହସ କଉତୁକ ଲାଗି କ’ଣ ତାକୁ ଆଉ ସମୟ ମିଳିଲା ନାହିଁ ? ଦେବଯାନୀ ତା’ ଜୀବନରେ ଯୁଦ୍ଧ ଦେଖିନଥିଲା । ଯୁଦ୍ଧର ଭୀଷଣତା ସମ୍ବନ୍ଧରେ ତା’ର ଧାରଣା ନଥିଲା । ତଥାପି

ସେ ତ ଜାଣିଥିଲା ଯେ, ମୁଁ ରାଜଧାନୀ ଛାଡ଼ି ଦୀର୍ଘ ଦିନ ଲାଗି ସୁଦୂର ଅଞ୍ଚଳକୁ ଚାଲିଯାଉଛି। ହୁଏତ ଯୁଦ୍ଧରେ ମୁଁ ଆହତ ହୋଇପାରେ; ଏହି ଚିନ୍ତାରେ ତା' ଆଖିକୋଣରେ କ'ଣ ଲୁହ ଛଳଛଳ ହୋଇନଥାନ୍ତା ? ଅବଶ୍ୟ ନିଜ ପାଇଁ ଅନ୍ୟର ଆଖିରେ ଲୁହଧାର ଦେଖିଲେ ମନରେ ଅପୂର୍ବ ପୁଲକ ଜାଗିଉଠେ। କିନ୍ତୁ ଦେବଯାନୀ ମୋ ଲାଗି ଲୁହ ଟୋପାଏ ସୁଦ୍ଧା ବୁହାଇଲା ନାହିଁ କିମ୍ୱା ଜୀବନକାଳ ମଧ୍ୟରେ ସେ କେବେହେଲେ ମୋ ଚିନ୍ତାରେ ଲୁହ ବୁହାଇନାହିଁ।

ସୂର୍ଯ୍ୟୋଦୟ ହେବାମାତ୍ରେ ମୁଁ ମାଆଙ୍କ ପାଦଧୂଳି ନେଇ ଯାତ୍ରାଲାଗି ବାହାରିପଡ଼ିଲି। ଏଥର ଦେବଯାନୀ ନିଜ ହାତରେ ମୋ କପାଳରେ କୁଙ୍କୁମ ଚନ୍ଦନ ଲଗାଇଦେଇ ଆରତି କରି ମୋତେ ବିଦାୟ ଦେବା କଥା; ହାତରେ ଅର୍ଚ୍ଚନାଥାଳି ଧରି ଶର୍ମିଷ୍ଠା ସେଠାରେ ପହଞ୍ଚି ଦେବଯାନୀ ହାତକୁ ବଢ଼ାଇଦେବାଲାଗି ଆଗେଇଗଲା; କିନ୍ତୁ ହଠାତ୍ ଗୋଟିଏ ଦାସୀ ଧାଇଁଆସି ସମ୍ୱାଦ ଦେଲା, "ମହାରାଜ ବୃଷପର୍ବାଙ୍କ ରାଜ୍ୟରୁ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପତ୍ର ଘେନି ଜଣେ ଦୂତ ଆସିଛି।"

"ବାପାଙ୍କ ପତ୍ର? ତାଙ୍କ ଦେହ ଭଲଅଛି ତ?" ଏହା କହି ଦେବଯାନୀ ପବନବେଗରେ ଛୁଟିଗଲା। ପୁରୋହିତ କହିଲେ, "ମହାରାଣୀ, ଶୁଭମୁହୂର୍ତ୍ତ ..." ସେ ପୁରୋହିତଙ୍କ କଥା ଶୁଣିପାରିଲାନାହିଁ, ଦ୍ରୁତ ଗତିରେ ରାଜପ୍ରାସାଦର ସିଂହଦ୍ୱାର ଆଡ଼କୁ ଆଗେଇଗଲା।

ଶୁଭବେଳା ଅତୀତ ହୋଇଯିବା ଉପରେ, ପୁରୋହିତ ସେହି କଥା ବାରମ୍ୱାର କହିବାରୁ ମାଆଙ୍କ ନିର୍ଦ୍ଦେଶରେ ଶର୍ମିଷ୍ଠା ମୋ ଶିରରେ କୁଙ୍କୁମ-ଚନ୍ଦନର ତିଳକ କରିଦେଲା। ଶର୍ମିଷ୍ଠାର ପ୍ରଥମ ସୁଖଦ ସ୍ପର୍ଶ ! ଓଃ ... କେତେ ଶାନ୍ତିଦାୟକ ! ସତରେ କ'ଣ ବ୍ୟକ୍ତିର ସ୍ପର୍ଶରୁ ହିଁ ତା'ର ସ୍ୱଭାବ ଜଣାପଡ଼େ ? ଶର୍ମିଷ୍ଠା ତୁଳନାରେ ଦେବଯାନୀ ଥିଲା ଅନିନ୍ଦ୍ୟ ସୁନ୍ଦରୀ। କିନ୍ତୁ ତା'ର ସ୍ପର୍ଶ ମୋତେ ପାଷାଣ-ପ୍ରତିମାର ସ୍ପର୍ଶ ପରି ବୋଧହୁଏ। ମାତ୍ର ଶର୍ମିଷ୍ଠାର ପ୍ରଥମ ସ୍ପର୍ଶ ମୋ ହୃଦୟକୁ ପୁଲକିତ କରାଇଦେଲା। ସତେ ଅବା ମୁଁ ଗୋଟିଏ ସୁକୋମଳ ପୁଷ୍ପିତ ଲତାର ସ୍ପର୍ଶ ଅନୁଭବ କରୁଛି !

ମୋତେ ବନ୍ଦାଇସାରି ମୋ ମୁଣ୍ଡରେ ଅକ୍ଷତ ପକାଇବା ସମୟରେ ଟିକିଏ ପାଖକୁ ଲାଗିଆସି ସୁକୋମଳ କଣ୍ଠର ବୀଣାଜିଣା ସ୍ୱରରେ ଅନ୍ୟକୁ ନ ଶୁଭିଲା ପରି ଶର୍ମିଷ୍ଠା ଧୀରେ କହିଲା, "ସାବଧାନ ହୋଇ ଚଳିବେ...।"

ଏହି ତିନୋଟି ଶବ୍ଦରୁ ମୋ ମନ ଶାନ୍ତ ହୋଇଗଲା। ମୁଁ ଶର୍ମିଷ୍ଠା ଆଡ଼କୁ ଚାହିଁ ଦେଖିଲି ତା' ଆଖି ଲୁହ ଛଳଛଳ ହୋଇଯାଇଛି। ମୋ ଜୀବନରେ ଦେବଯାନୀ ମୋତେ ଯାହା ଦେଇପାରିନଥିଲା, ମୁଁ ଶର୍ମିଷ୍ଠାଠାରୁ ତାହା ପାଇପାରିଥିଲି।

ଦେବଯାନୀ ତା' ବାପାଙ୍କ ଚିଠିଟି ଧରି ଛୋଟ ପିଲାଙ୍କ ପରି ନାଚିକୁଦି ଭିତରକୁ ପଶିଆସି ମୋ ମୁଣ୍ଡରେ ତିଳକ ଦେଖିପକାଇ କହିଲା, "ଆରେ ... ମୁଁ ଆଳତି ନକରି ପଳାଇଯାଇଥିଲି ?" ହଠାତ୍ ମାଆଙ୍କ ଆଡ଼କୁ ମୁହଁ ବୁଲାଇନେଇ କହିଲା, "ବୁଝିଲେ ମାଆ ! ମହାରାଜା ନିଶ୍ଚୟ ବିଜୟଲାଭକରି ଶୀଘ୍ର ଫେରିଆସିବେ; କାରଣ ଠିକ୍ ମହାରାଜଙ୍କ ଯାତ୍ରା ମୁହୂର୍ତ୍ତରେ ମୋ ବାପାଙ୍କ ପତ୍ର ଓ ଆଶୀର୍ବାଦ ପହଞ୍ଚିଛି।"

ଚିଠିଟି ପାଠକରିବା ଲାଗି ସେ ମୋ ହାତକୁ ବଢ଼ାଇଦେଲା । ସେଥିରେ ଲେଖାଥିଲା – "ତୋର ସମସ୍ତ ପ୍ରକାର କୁଶଳ ସମ୍ବାଦ ପାଇ ଖୁସିହେଲି । ଏଥର ମୁଁ ତପସ୍ୟାରେ ମଗ୍ନ ହୋଇଯିବା ଲାଗି ବେଶ୍ ସମୟ ପାଇପାରିଲି । କେତେଥର ମନରେ ଭାବନା ହୋଇଛି – ତୋ' ସନ୍ତାନର ମୁହଁ ଦେଖିବା ପରେ ତପସ୍ୟାରେ ମଗ୍ନ ହେବି କିନ୍ତୁ... 'ତୁ' ଚାଲିଯିବା ପରେ ବାସ୍ତବରେ ଆଶ୍ରମଟା ମୋତେ ଶୂନ୍‌ଶାନ୍ ବୋଧହେଲା । ତୁ ଜାଣିଛୁ ବୃଷପର୍ବା ମୋତେ କିପରି ଭଲପାଏ; ତେଣୁ ସେବା-ଶୁଶ୍ରୂଷା ଲାଗି ଆଶ୍ରମରେ ଶିଷ୍ୟ ଅଭାବ ନାହାନ୍ତି । ବାହାରୁ ଦେଖିଲେ ମୁଁ ସବୁଦିଗରୁ ସ୍ୱୟଂସଂପୂର୍ଣ୍ଣ; ମାତ୍ର ମୋ ମନର ଗଭୀର କୋଣରେ ତୋର ଅନୁପସ୍ଥିତି ସବୁବେଳେ ଅନୁଭୂତ ହେଉଛି । ଅବଶ୍ୟ ମୁଁ ଜାଣେନାହିଁ, ଶାଶୂଘରକୁ ପଠାଇଦେବା ପରେ ପ୍ରତ୍ୟେକ ଝିଅର ବାପାଙ୍କ ମନରେ ଏପରି ପ୍ରତିକ୍ରିୟା ହୁଏ କି ନାହିଁ? ତୁ ମୋର ଏକମାତ୍ର ସନ୍ତାନ ହୋଇଥିବାରୁ ହୁଏତ ମୋ ମନର ପ୍ରତିକ୍ରିୟା ଟିକିଏ ତୀବ୍ର ହୋଇପାରେ ।

"ତୁ ଯେଉଁ ଲତାକୁଞ୍ଜଟି ପ୍ରସ୍ତୁତ କରିଥିଲୁ ଏବେ ସେଥିରେ ଫୁଲ ଲଦିହୋଇଯାଇଛି । ବେଳେବେଳେ ମୁଁ ଭାବୁଛି, 'ଆଜି ଦେବଯାନୀ ଏଠାରେ ଥିଲେ କେତେ ଯତ୍ନରେ ଫୁଲଗୁଡ଼ିକ ତୋଳିଆଣି ମୋ ପୂଜାଥାଳିରେ ସଜାଇଦେଉଥା'ନ୍ତା ! ତୁ ମୋ' ପାଇଁ ଯେଉଁ ମୃଗଛାଲଟି କାଟି ଆସନ ପ୍ରସ୍ତୁତ କରିଥିଲୁ ମୁଁ ଏବେ ସେଇଥିରେ ବସି ପୂଜାପାଠ କରୁଛି । ମୋତେ ସେଇ ଆସନଟି ଖୁବ୍ ଭଲଲାଗୁଛି । ତୋ' ପାଦର ଗୋଟିଏ ପଟ ନୂପୁର ଆଶ୍ରମର ଗୋଟିଏ କୋଣରେ ପଡ଼ିଛି । କେହି ଘର ପରିଷ୍କାର କରିବା ସମୟରେ ତାକୁ ଏଠିସେଠି ରଖିଦେଉଛି । ସେତିକିବେଳେ ସେଇଟି ରୁଣୁଝୁଣୁ ହୋଇ ବାଜିଉଠିଲେ ମୋର ମନେହୁଏ, ବୋଧହୁଏ ସେ ନୂପୁରଟି ମୋତେ ପଚାରୁଛି 'ମୋ ମାଲିକାଣୀ କେବେ ଆସିବେ ?'

"ଏପରି ଅବସ୍ଥାରେ ମୋର ତପସ୍ୟାକ୍ଷେତ୍ରକୁ ଚାଲିଯିବା ଏକାନ୍ତ ଉଚିତ । ତୁ ଜାଣିଛୁ, ସଞ୍ଜୀବନୀବିଦ୍ୟାର ସୁରକ୍ଷା ମୁଁ ଠିକ୍ ଭାବରେ କରିପାରିଲିନାହିଁ । ଭଗବାନ୍ ଶଙ୍କର ସେଥିଲାଗି ନିଶ୍ଚୟ ମୋ ଉପରେ ଅସନ୍ତୁଷ୍ଟ ହୋଇଥିବେ । ତେଣୁ ଏଥର ନିଶ୍ଚୟ ପୂର୍ବ ଅପେକ୍ଷା ଅଧିକ କଠୋର ତପ କରିବାକୁ ପଡ଼ିପାରେ; କିନ୍ତୁ ମନେରଖ ଝିଅ, ଏଥର ତୋ' ବାପା କୌଣସି ଗୋଟିଏ ଅପୂର୍ବ ବିଦ୍ୟା ଲାଭନକରି କେବେହେଲେ ତପସ୍ୟା ସାଙ୍ଗକରିବ ନାହିଁ ।

"ତୁ ନିଶ୍ଚୟ କହିବୁ ଯେ, ମୋ ବାପା ଏ ବୃଦ୍ଧ ବୟସରେ ଆଉ ଶରୀରକଷ୍ଟ ନ ସହନ୍ତୁ । କିନ୍ତୁ ମାଆରେ, ତୋର ଜାଣିରଖିବା ଉଚିତ, ଏ ସଂସାର କେବଳ ଶକ୍ତି ଉପରେ ନିର୍ଭର କରୁଛି । ମୁଁ ଗୋଟିଏ ଅପୂର୍ବ ଶକ୍ତି ଲାଭକରିଥିଲି; କିନ୍ତୁ ଦୁର୍ଭାଗ୍ୟବଶତଃ କେବଳ ମଦିରାର ଆସକ୍ତି ଯୋଗୁଁ ମୁଁ ତାହା ହରାଇବସିଲି । କୌଣସି ଗୋଟିଏ ଅଲୌକିକ ଶକ୍ତିସମ୍ପନ୍ନ ହୋଇ ଦୁନିଆରେ ରହିବା ଏବଂ ସାଧାରଣ କ୍ଷୁଦ୍ରାତିକ୍ଷୁଦ୍ର ବ୍ୟକ୍ତିରୂପେ କେବଳ ଖାଇପିଇ ସଂସାରରେ ବଞ୍ଚିରହିବା ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ ରହିଛି । ସେଭଳି ବଞ୍ଚିରହିବା ମୃତ୍ୟୁ ସହିତ ସମାନ ।

"ମୃତ୍ୟୁପରେ ମୋତେ ଗ୍ରହମଣ୍ଡଳରେ ସ୍ଥାନ ଦେବା ଯଦି ଆଦିଶକ୍ତିଙ୍କର ଇଚ୍ଛା

ଥାଏ, ତେବେ ଉଜ୍ଜ୍ୱଳତମ ନକ୍ଷତ୍ରରୂପେ ଗଗନମଣ୍ଡଳରେ ବସାଇବା ଲାଗି ମୁଁ ତାଙ୍କଠାରେ ପ୍ରାର୍ଥନା କରିବି। ଯଦି ତାହା ସମ୍ଭବ ନହୁଏ, ଗୋଟିଏ କ୍ଷୁଦ୍ର ମିଞ୍ଜିମିଞ୍ଜିଆ ତାରା ରୂପେ ମୁଁ ଆକାଶରେ ସ୍ଥାନ ଗ୍ରହଣ କରିବାକୁ କେବେହେଲେ ପସନ୍ଦ କରିବି ନାହିଁ। ତା'ଅପେକ୍ଷା ବରଂ ପୃଥ୍ୱୀପୃଷ୍ଠରେ ବୃହତ୍ତମ ପାଷାଣଖଣ୍ଡ ହୋଇ ରହିବା ଭଲ।

''ଏଥର ତୁ ବେଶ୍ ବୁଝିପାରିବୁ, ମୁଁ କାହିଁକି ଏ ବୟସରେ ପୁଣି ଥରେ ତପସ୍ୟା କରିବା ଲାଗି ଇଚ୍ଛାକରୁଛି। ମୁଁ ତପସ୍ୟାରେ ବସିବା ପୂର୍ବରୁ ତୋତେ ଥରେ ଦେଖିବାକୁ ଚାହୁଁଛି, ତେଣୁ ଏ ପତ୍ର ପାଇବାମାତ୍ରେ ତୁ ଚାଲିଆସିବୁ। ପ୍ରଥମ ବର୍ଷ ପ୍ରତି ତିନିମାସରେ, ଦ୍ୱିତୀୟ ବର୍ଷ ପ୍ରତି ଛଅମାସରେ ଦିନେ ସର୍ବସାଧାରଣଙ୍କ ଦର୍ଶନ ଲାଗି ମୁଁ ଗୁହାମଧ୍ୟରୁ ବାହାରକୁ ଆସିବି। ତା'ପରେ ତପସ୍ୟା ଶେଷହେବା ପର୍ଯ୍ୟନ୍ତ ମୁଁ ମୌନ ରହି ଏକାନ୍ତବାସୀ ହେବି। ତା'ପରେ କ'ଣ ହେବ ତାହା ପରମେଶ୍ୱର ଶଙ୍କର ଜାଣନ୍ତି।

''ତୋତେ ଦେଖିବାଲାଗି ମନ ବଡ଼ ବ୍ୟାକୁଳ ହେଉଛି। ମୁଁ ତୋର ଆସିବାପଥକୁ ଚାହିଁରହିଲି। ରାଜକାର୍ଯ୍ୟରୁ ଯଦି ଅବସର ମିଳେ, ତେବେ ତୋ' ସ୍ୱାମୀ ମହାରାଜଙ୍କୁ ମଧ୍ୟ ସଙ୍ଗରେ ଆଣିବୁ। ତାଙ୍କୁ ମୋର ଶୁଭାଶିଷ ଜଣାଇବୁ।''

ପତ୍ର ପଢ଼ିସାରିବା ପରେ ମୁଁ ଲକ୍ଷ୍ୟକଲି ଶର୍ମିଷ୍ଠା ଏକଲୟରେ ମୋ ଆଡ଼କୁ ଚାହିଁରହିଛି। ପତ୍ରରେ ଶୁକ୍ରାଚାର୍ଯ୍ୟ ତା' ସମ୍ବନ୍ଧରେ କିଛି ଲେଖିଛନ୍ତି କି ନାହିଁ, ବୋଧହୁଏ ଜାଣିବା ଲାଗି ତା'ର ଆଗ୍ରହ ଥିଲା; କିନ୍ତୁ ମୁଁ କିଛି ନ କହିବାରୁ ସେ ବିଚାରୀ ନିରାଶ ହୋଇ ମୋ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁରହିଲା। ତା'ର ଚାହାଣିରୁ ମନେହେଉଥିଲା, ସେ ଯେପରି ମୋତେ କହୁଛି, 'ମୁଁ ଗୋଟିଏ ଦାସୀ, ଏହା ମୁଁ ଭଲଭାବରେ ଜାଣିଛି; ତଥାପି ମୁଁ ତ କାହାରି ଜଣକର ଝିଅ! ବାପା-ମାଆଙ୍କର ଖବର ଜାଣିବା ଲାଗି ସବୁବେଳେ ମୋ ମନରେ ଆଗ୍ରହ ରହିଛି, ଏତେ ଦିନ ବିତିଗଲାଣି, ବାବା ଦିନେ ହେଲେ ମୋର ଅବସ୍ଥା ସମ୍ବନ୍ଧରେ ଖଣ୍ଡିଏ ହେଲେ ପତ୍ର ଦେଇନାହାନ୍ତି। ଦେବଯାନୀ ପ୍ରତି ପନ୍ଦର ଦିନରେ ଥରେ ଖଣ୍ଡିଏ ଲେଖାଏ ପତ୍ର ପଠାଉଛି, ସେଥି ସହିତ ମୋର ଖଣ୍ଡିଏ ପତ୍ର ମଧ୍ୟ ପଠାଯାଇପାରନ୍ତା। ମୁଁ ବାପାଙ୍କୁ କ'ଣ ବା ଲେଖିବି? ଏଇଆ କ'ଣ ଲେଖିବି ଯେ, ତୁମ ଝିଅ ଦାସୀ ହୋଇ ଏଠାରେ ସୁଖରେ କାଳକାଟୁଛି! ନା ...।'

ଏହିପରି କେତେ କ'ଣ ଭାବି ମୁଁ ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗକଲି। ମୋ ମନୋଭାବ ଲକ୍ଷ୍ୟ କରି କହିଲା ଦେବଯାନୀ, ''ମହାରାଜ, ଆପଣ କିଛି ଖରାପ ଭାବନ୍ତୁ ନାହିଁ, ମୁଁ କେବଳ ବାପାଙ୍କୁ ସାକ୍ଷାତ୍ କରି ଶୀଘ୍ର ଫେରିଆସିବି। ନାରୀମାନେ ବାପଘରକୁ ଗଲେ ମଧ୍ୟ ସେମାନଙ୍କ ପ୍ରାଣ ଶ୍ୱଶୁରଘରେ ରହିଥାଏ।''

ମୋ ଅଭିଯାନର ଶୁଭଲଗ୍ନ ବିଳମ୍ବ ହୋଇଯାଉଥିବାରୁ ପୁରୋହିତ ବିଚରା କିଛି କହିପାରୁନଥିଲେ କିମ୍ବା ସହ୍ୟ କରିପାରୁନଥିଲେ; କେବଳ ହାତ ମଳି ମଳି ନୀରବ ରହୁଥିଲେ। ସେଆଡ଼କୁ ଟିକେ ହେଲେ ଦୃଷ୍ଟି ନଦେଇ ସେ କହିଚାଲିଲା— ''ଭାବୁଛି ବଡ଼ ବଡ଼ ମୁନିଋଷିମାନଙ୍କୁ ଆଜିକାଲି ମଧ୍ୟରେ ନିମନ୍ତ୍ରଣ ପଠାଇଦେବି!''

—"କାହିଁକି ...?" ଆଶ୍ଚର୍ଯ୍ୟ ହୋଇ ପଚାରିଲି।

—"ବାପାଙ୍କ ସହିତ ସାକ୍ଷାତ୍ କରି ଫେରିଆସିବା ମାତ୍ରେ, ତାଙ୍କର ଅଭୀଷ୍ଟ ସିଦ୍ଧି ଲାଗି ମୁଁ ଗୋଟିଏ ଯଜ୍ଞ ଆରମ୍ଭ କରିବାକୁ ଭାବୁଛି। ସେ ସମୟକୁ ଆପଣ ମଧ୍ୟ ଆସିଯିବେଣି!"

ମୁଁ ହସିଦେଇ କହିଲି, "ବାଃ... ବିଚାର ମନ୍ଦ ନୁହେଁ! କିନ୍ତୁ ସୀମାପ୍ରାନ୍ତରେ ଦସ୍ୟୁମାନଙ୍କ ଉପଦ୍ରବ ଶାନ୍ତ କରିବାଲାଗି ମୁଁ ଯାଉଛି, ସେମାନଙ୍କୁ ସମ୍ବର୍ଦ୍ଧନା କରିବା ଲାଗି ନୁହେଁ। ହୁଏତ ମାସେ ଦି'ମାସ ପରେ ମୁଁ ଫେରିପାରେ କିମ୍ବା...।"

"ସେସବୁ ବାହାନା ଚଳିବନାହିଁ। ଆପଣ ମଝିରେ ଥରେ ଆସି ଯଜ୍ଞରେ ଯୋଗ ଦେଇ ଦରକାର ପଡ଼ିଲେ ପୁଣି ଯିବେ।"

ମୁଁ ତା ଯୁକ୍ତିକୁ ଦୃଢ଼ତାର ସହିତ ବିରୋଧ କରିବାକୁ ଚାହୁଁଥିଲି; ମାତ୍ର ସେତିକିବେଳେ ତାକୁ ସମର୍ଥନ କରି ମାଆ ମଧ ଯୁକ୍ତିକଲେ। ବୋଧହୁଏ ବୃଦ୍ଧାବସ୍ଥା ଦୃଷ୍ଟିରୁ ହେଉ କିମ୍ବା ଦେବଯାନୀ ତାଙ୍କର ସମସ୍ତ ଅଧିକାର ନିଜ ହାତକୁ ନେଇଯାଇଥିବା ଯୋଗୁ ହେଉ, ମାଆ ଆଜିକାଲି ଆଧାତ୍ମିକ ଧାରଣା ଆଡ଼କୁ ଅଧିକ ଆକର୍ଷିତ ହୋଇଥିଲେ। ଯଜ୍ଞ ହେଲେ ମୁନି-ଋଷି ଆସିବେ, ବେଦ ଉପନିଷଦ୍ ଓ ପୁରାଣ ପାଠ ଶୁଣିବାକୁ ମିଳିବ, ସେହିଦୃଷ୍ଟିରୁ ସେ ଦେବଯାନୀକୁ ସମର୍ଥନ କରିଥିଲେ। ତା'ପରେ କହିଲା ଦେବଯାନୀ— "ଯଜ୍ଞଲାଗି ସବୁପ୍ରକାର ଆୟୋଜନ କରାଇଦେଇ ମୁଁ ଯିବି। ଅତି ଊଣାରେ ପ୍ରାୟ ପଚାଶ ଜଣ ବଡ଼ ବଡ଼ ମହର୍ଷିଙ୍କୁ ମୁଁ ନିମନ୍ତ୍ରଣ ଦେବାକୁ ବ୍ୟବସ୍ଥା କରିଦେଉଛି ଏବଂ କଚ୍‌ଦେବଙ୍କୁ ମଧ ନିମନ୍ତ୍ରଣ ଦେଇ...।"

କଚ୍...? ମୁଁ ଆଶ୍ଚର୍ଯ୍ୟ ହୋଇଗଲି। କଚ୍‌କୁ ସମ୍ବର୍ଦ୍ଧନା ଜଣାଇବା ଲାଗି ଦେବଯାନୀ ଏତେ ଗୁରୁତ୍ୱ କାହିଁକି ଦେଉଛି? ମିଳନର ପ୍ରଥମ ରାତ୍ରିରେ ସେ ଖୁବ୍ ଦମ୍ଭର ସହିତ କହିଥିଲା— 'କଚ୍ ମଧ ମଦ୍ୟକୁ ଘୃଣାକରେ!' ନିଜ ପିତାଙ୍କ ବାହାଦୁରୀ ବଖାଣିବାର ଉଦ୍ଦେଶ୍ୟ ତ ବେଶ୍ ବୁଝାପଡୁଛି, କିନ୍ତୁ କଚ୍‌ଦେବଙ୍କ ବିଷୟରେ ଏତେ ଗୁରୁତ୍ୱ ଆରୋପ କରୁଛି କାହିଁକି? ସଂଜୀବନୀ ଲାଭକରିବା ପାଇଁ କଚ୍ କିଛିଦିନ ଧରି ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମରେ ଥିଲେ; ସେତିକିବେଳେ ଏ ଦୁହିଁଙ୍କର ସୁଖଦ ସମ୍ପର୍କ ନିଶ୍ଚୟ ଥିବ। ଏ ଦୁହିଁଙ୍କର ହୃଦୟରେ ପ୍ରଣୟର ବୀଜ ଅଙ୍କୁରିତ ହୋଇଥିଲା ନା କେବଳ ପରିଚୟ ମାତ୍ର ଥିଲା?

ଥରେ ଦେବଯାନୀ ନିଦରେ ଫୁଲଟିଏ ବିଷୟରେ କେତେ କ'ଣ ବର୍‌ବର୍ ହେଉଥିଲା। ସେ ପ୍ରଳାପପୂର୍ଣ୍ଣ ଶବ୍ଦର ଅର୍ଥ ଏବେ ବେଶ୍ ସ୍ପଷ୍ଟ ହୋଇଉଠୁଛି। ଖୁବ୍ ସମ୍ଭବତଃ ସେ ସ୍ୱପ୍ନରେ କଚ୍‌ଙ୍କ ସହିତ କଥାବାର୍ତ୍ତା କରୁଥିଲା। ଆଶ୍ରମରେ ଥିବାବେଳେ କଚ୍ ଯା' ପାଇଁ ସୁନ୍ଦର ସୁନ୍ଦର ଫୁଲ ବାଛିବାଛି ଆଣୁଥିଲା। ଏ ଚାହୁଁଥିଲା— କଚ୍ ନିଜ ହାତରେ ଫୁଲଟିଏ ତାର ବେଣୀରେ ଖୋସିଦେଉ। ଏହା ନିଶ୍ଚୟ ପ୍ରଣୟିନୀର ଅଭିଳାଷ; ସାମାନ୍ୟ ପରିଚୟ ବା ବନ୍ଧୁତ୍ୱର ସୂଚନା ନୁହେଁ! ନାଁ... ଏ ଯଜ୍ଞୋତ୍ସବଲାଗି କୌଣସିମତେ କଚ୍‌କୁ ନିମନ୍ତ୍ରଣ କରାଯାଇପାରିବନାହିଁ।

ମୁଁ ଶର୍ମିଷ୍ଠାକୁ ଲକ୍ଷ୍ୟ କଲି। କଚ୍‌ର ନାମ ଶୁଣିବାମାତ୍ରେ ତା'ର ଶୁଖିଲା ମୁହଁରେ

ହସ ଉକୁଟିଉଠିଲା। ସେ ମଧ୍ୟ ମୋତେ ଥରେ କହିଥିଲା— କଚ ମୋତେ ପ୍ରେମର ମହତ୍ତ୍ୱ ଶିଖାଇଛି। ୟା'ର ଅର୍ଥ କ'ଣ ହୋଇପାରେ? ଯା'ହେଉ ପଛକେ କଚ ଆସି ପହଞ୍ଚିଲେ ଏ ବିଚାରୀର ବନ୍ଦିନୀଜୀବନ ଟିକିଏ ସରସ ହୋଇଉଠିବ ନିଶ୍ଚୟ। ତେଣୁ ମୁଁ କହିଲି, ''ତୁମେ ଅମାତ୍ୟଙ୍କ ସହିତ ପରାମର୍ଶ କରି ଯଜ୍ଞର ସମସ୍ତ ବ୍ୟବସ୍ଥା କରାଇ, ବଡ଼ବଡ଼ ଋଷି ମହର୍ଷିଙ୍କୁ ନିମନ୍ତ୍ରଣ ପଠାଇବ। ହଁ... ମନେରଖ; ମହର୍ଷି ଅଙ୍ଗୀରସଙ୍କୁ ଯେପରି ନିମନ୍ତ୍ରଣ ପଠାଇବାକୁ ଭୁଲିନଯାଅ।''

ଅଙ୍ଗୀରସଙ୍କ ବିଷୟରେ ହଠାତ୍ ମୋ ମନରେ ଭାବନା ଜାଗ୍ରତ ହେଲାକ୍ଷଣି ମୋ ଆଖିଆଗରେ ନାଚିଉଠିଲା— ହିମାଳୟର ସେହି ତ୍ରିଶୂଳ ପରି ସୁରମ୍ୟ ଶିଖର। ଯେତେ ଦେଖୁଥିଲେ ହେଁ ସେ ପୁଣି ନିତ୍ୟନୂତନ ରୂପରେ ପ୍ରତିଭାତ ହୁଏ। ଏ ଅଭିଯାନ ସମୟରେ ଯତି ବିଷୟରେ ମୋର ଖୁବ୍ ମନେପଡୁଥିଲା। କିନ୍ତୁ ଗତବର୍ଷ ମୁଁ ଏକାବେଳକେ ଯତିର ସ୍ମୃତି ପାସୋରି ଦେଇଥିଲି। ରାକ୍ଷସ-ରାଜ୍ୟକୁ ଯାଇ ଦେବଯାନୀ ସହିତ ବିବାହକରି ଫେରିଆସିଲି; ମାତ୍ର ଯତି ସମ୍ବନ୍ଧରେ ଶୁକ୍ରାଚାର୍ଯ୍ୟଙ୍କୁ କିଛି ପଚାରିପାରିଲିନାହିଁ। ଓଃ, ମଣିଷ କେଡ଼େ ସ୍ୱାର୍ଥାନ୍ଧ! ମନେହେଲା; ଅଭିଯାନରେ ନ ଯାଇ, ସିଧାସଳଖ ହିମାଳୟର ପାଦଦେଶରେ ପହଞ୍ଚି ଯତିର ଅନ୍ୱେଷଣରେ ଲାଗିପଡ଼ନ୍ତି। ମୋ ଅଭିଯାନ ବିଷୟରେ ଖବର ପାଇବାମାତ୍ରେ ଦସ୍ୟୁମାନେ ଜଙ୍ଗଲରେ ପଶି ଆତ୍ମଗୋପନକଲେ; ତେଣୁ ମୋତେ ଆଦୌ ଯୁଦ୍ଧ କରିବାକୁ ପଡ଼ିଲାନାହିଁ। ତା'ପରେ ମୁଁ ସେଠାକାର ସୁବ୍ୟବସ୍ଥା କରି ରାଜଧାନୀକୁ ଫେରିଆସିଲି।

× × × × ×

ମୋ ଫେରିବା ପୂର୍ବରୁ ଦେବଯାନୀ ଶୁକ୍ରାଚାର୍ଯ୍ୟଙ୍କ ଗୁହାପ୍ରବେଶ ସମାରୋହରେ ଯୋଗଦେଇ ଫେରିଆସିଥିଲା। ରାଜଧାନୀରେ ଖୁବ୍ ଆଡ଼ମ୍ବର ସହକାରେ ଯଜ୍ଞର ଆୟୋଜନ ଚାଲିଥିଲା; ତଥାପି କାହିଁକି ଦେବଯାନୀ ମୋର ସ୍ୱାଗତ-ସମ୍ବର୍ଦ୍ଧନା ସେତେ ଆନ୍ତରିକତା ସହିତ ସମ୍ପନ୍ନ କଲାନାହିଁ? ତା ମନଦୁଃଖର କାରଣ ମୁଁ ରାତିରେ ଜାଣିପାରିଲି। ପ୍ରଥମ କାରଣ ହେଉଛି... ମହର୍ଷି ଅଙ୍ଗୀରସ ନିମନ୍ତ୍ରଣର ଉତ୍ତରରେ ଖଣ୍ଡିଏ ପତ୍ର ପଠାଇଥିଲେ— ''ଏ ଯଜ୍ଞାନୁଷ୍ଠାନରେ ମୁଁ ଯୋଗଦେଇପାରିବିନାହିଁ। ମୁଁ ଶୁକ୍ରାଚାର୍ଯ୍ୟଙ୍କ ତପସ୍ୟାର ଉଦ୍ଦେଶ୍ୟ ଆଦୌ ଜାଣିନାହିଁ। ସେ ଜଗତର ମଙ୍ଗଳକାମନା ଲାଗି ଏଥର ତପସ୍ୟାରେ ମଗ୍ନ ହୋଇଥିବାର ଧାରଣା ମୋ ମନରେ ଜାତ ନହେଲେ, ମୁଁ ତାଙ୍କ ତପସ୍ୟାର ସିଦ୍ଧିଲାଭ ଉଦ୍ଦେଶ୍ୟରେ ହେଉଥିବା ଯଜ୍ଞାନୁଷ୍ଠାନରେ ଯୋଗଦେବିନାହିଁ।''

ପତ୍ରଟି ମୋ ଆଗରେ ତାଚ୍ଛଲ୍ୟ ଭାବରେ ଧରି ଦେବଯାନୀ ମୁହଁ ବିକୃତ କରି କହିଲା, ''କିଏସେ ଏ ବୁଢ଼ା ଅଙ୍ଗୀରସଟା? ଏ ନିଶ୍ଚୟ ମୋ ବାପାଙ୍କ ସଫଳତାରେ ଈର୍ଷ୍ୟା କରୁଛି!'' ମୁଁ ଜାଣିଶୁଣି ତାକୁ ଚେତାଇଦେବା ଉଦ୍ଦେଶ୍ୟରେ କହିଲି, ''ସେ ସାମାନ୍ୟ ବ୍ୟକ୍ତି ନୁହନ୍ତି; ସେ ମଧ୍ୟ କଚଦେବଙ୍କର ଗୁରୁ!'' ଏହା ଶୁଣିବାମାତ୍ରେ ସେ ଅବାକ୍ ହୋଇ କିଛି ସମୟ ରହିଗଲା। କଚ ସମ୍ବନ୍ଧରେ ସୂଚନା ଦେଇ ସେ କହିଲା, ''ହସ୍ତିନାର ଦୂତ କଚଙ୍କୁ ଦେଖାନକରି ଫେରିଆସିଲା। ସେ ତୀର୍ଥଯାତ୍ରାରେ ଯାଇଛନ୍ତି। ସେଠାରେ କିଛିଦିନ ଅପେକ୍ଷା କରିଥିଲେ ହୋଇନଥାନ୍ତା?

ଏ ହସ୍ତିନାପୁରର ଲୋକଗୁଡ଼ାଙ୍କ ମୁଣ୍ଡରେ କିଛି ନାହିଁ।''

କଚ୍ ଆସିଥିଲେ ବିଚାରୀ ଶର୍ମିଷ୍ଠା ଦିନ କେତୋଟି ଆନନ୍ଦରେ କଟାଇପାରନ୍ତା– ତାହାହିଁ ଚିନ୍ତାକରି ମୁଁ କହିଲି, ''କଚ୍‌ଦେବ ଆସିଲେ ଖୁବ୍ ଭଲହୁଅନ୍ତା; କାରଣ ସେ ମୋର ପିଲାଦିନର ବନ୍ଧୁ।''

ମୋ କଥା ଶୁଣିବାମାତ୍ରେ ଅଭିମାନମିଶା ସ୍ୱରରେ କହିଲା ଦେବଯାନୀ, ''କିନ୍ତୁ ସେ ଯଦି ଆସନ୍ତି ତା'ହେଲେ କେବଳ ମୋ'ରି ପାଇଁ ଆସିବେ; କାରଣ ତିନି ତିନି ଥର ମୁଁ ବାପାଙ୍କ ପାଦତଳେ ମୁଣ୍ଡିଆ ମାରି ତାଙ୍କୁ ଜୀବନଦାନ ଦେଇଛି।''

ମୁଁ ମନେ ମନେ ଶର୍ମିଷ୍ଠାକୁ ଖୋଜୁଥିଲି; ତାକୁ କେଉଁଠି ଦେଖିବାକୁ ନ ପାଇ ପଚାରିଲି– ଶର୍ମିଷ୍ଠା କାହିଁ ଦେଖାଯାଉନାହିଁ ତ ?

–''ମୁଁ ତାକୁ ଅଶୋକବନକୁ ପଠାଇଦେଇଛି।''

–''କାରଣ . . . ?''

–''ଅନେକ ମୁନିଋଷି ଆସି ସେହିଠାରେ ରହିବେ; ସେମାନଙ୍କର ବ୍ୟବସ୍ଥା କରିବା ତ ନିତାନ୍ତ ଆବଶ୍ୟକ।''

ଦେବଯାନୀର ଯୁକ୍ତି ମୋତେ ବେଶ୍ ପସନ୍ଦହେଲା; କିନ୍ତୁ ମୁଁ ନୀରବ ରହିବାରୁ କହିଲା ଦେବଯାନୀ– ''ଏଣିକି ସେ ବରାବର ସେଇଠି ରହିବ।''

–''ସେଇଠି ? ନା . . . ନା ! ରାଜପରିବାରର କୋଳାହଳମୟ ବାତାବରଣରେ ସେ ଜୀବନ କଟାଇଆସିଛି, ସେଠାକାର ନିର୍ଜନତା ତାକୁ ଆଦୌ ଭଲଲାଗିବନାହିଁ।''

–''ତାକୁ ଭଲଲାଗିବ ନାହିଁ କାହିଁକି ? ଆପଣ କୁହନ୍ତୁ, ତା' ବିନା ଆପଣଙ୍କୁ ରାଜପ୍ରାସାଦ ଆଦୌ ଭଲଲାଗିବନାହିଁ।''

–''କ'ଣ ଗୁଡ଼େ ବକିଚାଲିଛ . . . ?''

–''ବକିବି କାହିଁକି– ଠିକ୍ କଥା କହୁଛି ! ଆଚ୍ଛା, ଆପଣ କହନ୍ତୁ, ଆପଣ ଅଭିଯାନରେ ଯିବାବେଳେ କେଉଁ ଅଧିକାରବଳରେ ସେ ଆପଣଙ୍କ ମୁଣ୍ଡରେ ଟିକା ଲଗାଇ ବନ୍ଦାଇଥିଲା ?''

–''ଉପାୟ କ'ଣ ଥିଲା ? ତୁମେ ଶୁକ୍ରାଚାର୍ଯ୍ୟଙ୍କ ପତ୍ରର ନାଁ ଶୁଣି ଧାଇଁ ଦୌଡ଼ି ବାହାରକୁ ଚାଲିଗଲ . . .।''

–''ମାନେ . . . ଆପଣ କ'ଣ କହୁଛନ୍ତି ଯେ ବାପାଙ୍କ ପ୍ରତି ମୋ ମନରେ ସ୍ନେହମମତା କିଛି ନରହୁ ? ମୁଁ ସେ ପତ୍ର ନେଇ ହିମାଳୟ ପଳାଇଯାଇନଥିଲି ତ ?''

–''ଓଃ . . . ଥାଉ, ଥାଉ ସେ ବିଷୟ ବିଶେଷ କିଛି ଉଠାଅନାହିଁ। ମୁଁ ସେଥିପାଇଁ ଶର୍ମିଷ୍ଠାକୁ ଆଦେଶଦେଇନଥିଲି। ସେ ମାଆଙ୍କ ଆଦେଶରେ . . .।''

–''ହଁ . . . ମାଆ ଆଦେଶ ନ ଦେବେ କିପରି ? ସେ କ୍ଷତ୍ରିୟ କନ୍ୟା, ମୋ ଅପେକ୍ଷା ସେ ତାଙ୍କର ଅଧିକ ଆଦରଣୀୟା– ଗୋଟିଏ ରକ୍ତ କି ନା ? ବୋଧହୁଏ ଶାଶୂ ଶର୍ମିଷ୍ଠାକୁ ମହାରାଣୀ କରିବାକୁ ଚାହୁଁଥିବେ !''

ମୁଁ ହସି ହସି କହିଲି– ''ମାଆଙ୍କର ହୁଏତ ଏ ପ୍ରକାର ଇଚ୍ଛା ଥାଇପାରେ, କିନ୍ତୁ ତୁମେ ତାହା ପୂରଣ କରାଇଦେବ କି ?''

—"ଏଁ..., ଏଥିରେ ବଡ଼ କଥାଟେ କ'ଣ ଅଛି? ମୋତେ ବିଷ ଦେଇ ରାସ୍ତାରୁ ହଟାଇଦେବା ଶାଶୂଙ୍କ ପକ୍ଷରେ ଅସମ୍ଭବ ନୁହେଁ..."

"କି ବାଜେ କଥାଗୁଡ଼ାକ ଗପିଯାଉଛ ଯେ...?"

"ଆପଣ ପୁରୁଷ, ଆପଣ କେବେହେଲେ ଜାଣିପାରିବେନି ଭିତରେ ଭିତରେ କଅଣ ମସୁଧା ଚାଲିଛି। ଆମେ ନାରୀ... ଧୂଆଁରୁ ଗନ୍ଧ ବାରିପାରୁ। ଆପଣ ମୋତେ କ'ଣ କହୁଛନ୍ତି? ଆପଣଙ୍କର ଏଇ ରାଜମହଲ ଭିତରେ ଆପଣଙ୍କ ମାଆ-ଠାକୁରାଣୀ ଗୋଟିଏ ଦାସୀକୁ ବିଷ ଦେଇ ଶେଷକରିଦେଇଛନ୍ତି, ମୋତେ କ'ଣ ଏକଥା ଅଛପା ରହିଛି?"

ଯୁକ୍ତିତର୍କ ଅତି ଅପ୍ରିୟ ପରିସ୍ଥିତି ଆଡ଼କୁ ଆଗେଇଚାଲିଥିବାର ଲକ୍ଷ୍ୟ କରି ମୁଁ ନୀରବ ରହିଲି। ଏପରି କଟୁ ଆଲୋଚନା ପରେ, ସାରା ରାତି ଅନିଦ୍ରାରେ ରହିବା ମୋ ପକ୍ଷରେ ଅସମ୍ଭବ ନଥିଲା; କିନ୍ତୁ ମୁଁ ସେ ରାତିରେ ଯେଉଁ ସୁଖନିଦ୍ରାରେ ଶୋଇପାରିଲି ବୋଧହୁଏ ଜୀବନରେ କେବେହେଲେ ସେପରି ସୁଯୋଗ ମିଳିବନାହିଁ।

ଦେବଯାନୀ ଗୋଟିଏ ଅତ୍ୟନ୍ତ ଗୋପନୀୟ ସମ୍ବାଦ ମୋ ଆଗରେ ପ୍ରକାଶକଲା— ସେ ଗର୍ଭବତୀ ହୋଇଛି। ଦେବଯାନୀ ମାଆ ହେବାକୁ ଯାଉଛି, ଏ କଥା ଶୁଣିବାମାତ୍ରେ ମୁଁ ଆନନ୍ଦରେ କୁରୁଳିଉଠିଲି। ମୁଁ ପିତା ହେବାକୁ ଯାଉଛି; ଅବଶ୍ୟ ପୁଅ ବା ଝିଅ ହେବ କେହି କହିପାରିବେନାହିଁ; ତଥାପି ପୁତ୍ର ବା କନ୍ୟା ରୂପ ରଙ୍ଗ ବିଷୟରେ ମୁଁ ଅନେକ ସମୟ ଭାବି ଭାବି ଆନନ୍ଦରେ ନିମଗ୍ନ ହୋଇଉଠିଲି। କହନ୍ତି— ପୁଅଟି ମାଆ ଭଳି ହେଲେ ସୁଖୀ ହୁଏ! ହେ ଭଗବାନ୍, ପୁଅଟିଏ ହେଲେ ସେ ତା' ମାଆ ଭଳି ହେଉ।

ଅବଶ୍ୟ ଆନ୍ତରିକତାର ସହିତ ଆମ ଦହିଁଙ୍କ ମନ ମିଶୁନାହିଁ. ତଥାପି ସନ୍ତାନଟିଏ ହେଲେ ଆମ ମନର ବନ୍ଧନ ଆହୁରି ସୁଦୃଢ଼ ହୋଇଯିବ। ନାତିକୁ ଦେଖିଲେ ମାଆ ନିଶ୍ଚୟ ଖୁସିହେବେ। ସେ ଆଜିକାଲି ଖୁବ୍ ଉଦାସ ରହୁଛନ୍ତି। ମାଆଙ୍କ ଆଗରେ ମୌନବ୍ରତ ଧାରଣ କରିବା ମୋ ପକ୍ଷରେ ଉଚିତ ନୁହେଁ। ପୁଅଟିଏ ହେଲେ... ମୁଁ ତାଙ୍କ ହାତରେ ଟେକିଦେଇ କହିବି..., ଯାଃ... ଲାଜଲାଗିବ, କ'ଣଟେ କହିବି? ହେଉ... ସମୟ ଆସୁ... ଗୋଟେ କିଛି କହିବି ନିଶ୍ଚୟ।

ସେ ରାତିରେ ମୁଁ ଆନନ୍ଦରେ ଅଧୀର ହୋଇ ଶୋଇପଡ଼ି ନିଦ୍ରିତାବସ୍ଥାରେ ଅନେକ ମଧୁର ସ୍ୱପ୍ନ ଦେଖିବାକୁ ପାଇଲି। ଆନନ୍ଦର ମଧୁମୟ ସ୍ରୋତରେ ମୁଁ ଉବେଇଟୁବେଇ ହୋଇ ଭାସିବାକୁ ଲାଗିଲି।

ସ୍ୱପ୍ନର ଦେବତା କିଏ? ସ୍ୱପ୍ନର ଭଲମନ୍ଦ କଥା ତାଙ୍କ ଆଗରେ ଜଣାଇବାର ଉପାୟ କ'ଣ? ସେ କ'ଣ ପ୍ରକୃତରେ ସ୍ୱପ୍ନର ସତ୍ୟତା ସମ୍ବନ୍ଧରେ ସବୁକଥା କହିପାରିବେ?

× × × × ×

ଦେବଯାନୀର ଆୟୋଜିତ ଯଜ୍ଞ ବେଶ୍ ବିଧିବିଧାନପୂର୍ବକ ସମ୍ପନ୍ନ ହୋଇଗଲା। ଅବଶ୍ୟ ଅଗସ୍ତ୍ୟ, ଅଙ୍ଗୀରସ ପ୍ରଭୃତି କେତେଜଣ ପ୍ରଖ୍ୟାତ ମହର୍ଷି ଯଜ୍ଞରେ ଯୋଗ

ଦେଲେନାହିଁ; ତଥାପି ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ବେଶ୍ ସୁରୁଖୁରୁରେ ଶେଷହେଲା। ଦେବଯାନୀ କେବଳ କଚ୍‌ର ଆଗମନ ଲାଗି ବ୍ୟସ୍ତହେଉଥିଲା; କିନ୍ତୁ ଆଜି... କାଲି... ଆସିପାରେ ବୋଲି ଭାବି ଭାବି ଶେଷରେ ଯଜ୍ଞ ଶେଷହୋଇଗଲା; ମାତ୍ର କଚ୍ ଆସିଲେ ନାହିଁ କିମ୍ବା ତାଙ୍କଠାରୁ କୌଣସି ସମ୍ବାଦ ମିଳିଲା ନାହିଁ। ଯଜ୍ଞର ସମାପ୍ତି ପରେ ଯୋଗଦେବାକୁ ଆସିଥିବା ବିଶିଷ୍ଟ ଅତିଥିମାନଙ୍କ ବିଦାୟ-ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଗୋଟିଏ ସଭା ଅନୁଷ୍ଠିତ ହେଲା। ସେ ସଭାରେ ଯୋଗଦେବା ଲାଗି ମାଆ ମଧ ଉପସ୍ଥିତହେଲେ। ସେ ସିଂହାସନ ପଛରେ ଯବନିକାର ଅନ୍ତରାଳରେ ବସି ସଭାକାର୍ଯ୍ୟ ନିରୀକ୍ଷଣକଲେ।

ଶସ୍ୟଶ୍ୟାମଳା ଧରିତ୍ରୀର ଶୋଭା ପରି ଗର୍ଭବତୀ ନାରୀର ଶୋଭା ବେଶ୍ ମନୋମୁଗ୍ଧକର ହୋଇଥାଏ। ଦେବଯାନୀ ଆଡ଼କୁ ସଭାରେ ଉପସ୍ଥିତ ନାଗରିକମାନଙ୍କ ପତ୍ନୀମାନେ ଆନନ୍ଦ ଉଲ୍ଲାସର ସହିତ ଚାହୁଁଥିଲେ। ସେତିକିବେଳେ ଦେବଯାନୀର ସୌନ୍ଦର୍ଯ୍ୟ ବିଷୟରେ ମୁଁ ଉପଲବ୍ଧି କରି ନିଜକୁ ଧନ୍ୟମନେକଲି। ଦେବଯାନୀ ସହିତ ମୁନିଋଷିମାନଙ୍କୁ ଅଭିବାଦନ କରି ଫେରିଆସି ପୁଣି ସିଂହାସନରେ ବସିବା ସମୟରେ ମୋ ମନରେ ଆନନ୍ଦର ସୀମା ରହିଲା ନାହିଁ।

ଆଜି ଦେବଯାନୀ ଅଶୋକବନରୁ ଶର୍ମିଷ୍ଠାକୁ ଡକାଇଆଣିଥିଲା। ପ୍ରଥମେ ମୋର ଧାରଣା ହେଲା ଯେ, ଏ ଅନୁଷ୍ଠାନ ଦେଖିବାଲାଗି ତାକୁ ସେ ଡକାଇଆଣିଛି, କିନ୍ତୁ ଦରବାରରେ ଦେବଯାନୀର ପ୍ରକୃତ ଉଦ୍ଦେଶ୍ୟ ମୁଁ ବେଶ୍ ଜାଣିପାରିଲି। ସେ ଶର୍ମିଷ୍ଠାକୁ ନିଜ ପାଖରେ ଛିଡ଼ାକରାଇ ତା'ରି ଦ୍ୱାରା ପଙ୍ଖାକରାଉଥିଲା।

ଆମକୁ ଆଶୀର୍ବାଦ ଦେବାଲାଗି ମୁନିଋଷିମାନେ ହାତରେ ଅକ୍ଷତ ଧରି ମନ୍ତ୍ରପାଠ ଆରମ୍ଭ କରିବା ସମୟରେ ଅମାତ୍ୟ ଆସି ମୋତେ ଧୀରେ କହିଲେ, ''କଚ୍‌ଦେବ ବାହାରେ ଛିଡ଼ାହୋଇଛନ୍ତି।'' ଦେବଯାନୀ ଏହା ଶୁଣିପାରି କହିଲା, ''ଅମାତ୍ୟ, ତାଙ୍କୁ ଭିତରକୁ ଘେନିଆସି ମୁନିମାନଙ୍କ ଗହଣରେ ଉପଯୁକ୍ତ ସ୍ଥାନରେ ବସାନ୍ତୁ।''

—''ବୋଧହୁଏ ସେ ଭିତରକୁ ଆସିବାଲାଗି ଚାହୁଁନାହାନ୍ତି।''

ନାଗୁଣୀ ପରି ଗର୍ଜିଉଠି କହିଲା ଦେବଯାନୀ, ''କାହିଁକି? ତାଙ୍କୁ କ'ଣ ଅଙ୍ଗୀରସଙ୍କ ହାଉଆ ଲାଗିଯାଇଛି କି? ରାଜଧାନୀକୁ ଆସି ସେ ଆମକୁ ଅପମାନିତ କରିବାକୁ ଚାହୁଁଛନ୍ତି? ଯଦି ଏଇଆ ହୋଇଥାଏ, ତେବେ...।''

''ନା... ମହାରାଣି! ତା' ନୁହେଁ। ତାଙ୍କ ସହିତ ଆଉ ଜଣେ ତପସ୍ୱୀ ଉନ୍ମାଦାବସ୍ଥାରେ ଅଛନ୍ତି। ସେଇଥିପାଇଁ କଚ୍‌ଦେବ ବାହାରେ...।''

''ମୁଁ ସେସବୁ କିଛି ଶୁଣିବାକୁ ଚାହେଁନା। ସେ ପାଗଳା ବାବାଜୀ ସହିତ ତାଙ୍କୁ ଭିତରକୁ ଘେନିଆସ। ଆଉ ଦେଖ, ମୁଁ ତାଙ୍କର ଗୁରୁ-ଭଉଣୀ, ତାଙ୍କୁ ପ୍ରଣାମ ନ କରି ମୁଁ ସିଂହାସନରେ ବସିରହିବା ଉଚିତ ନୁହେଁ; ମୁଁ ସିଂହାସନରୁ ଓହ୍ଲାଇ ମୁନିମାନଙ୍କ ମଧ୍ୟରେ ଯାଇ ତାଙ୍କୁ ପ୍ରଣାମ କରିବା ମଧ ଭଲହେବନାହିଁ। ଆପଣ ତାଙ୍କୁ ସିଂହାସନ ପାଖକୁ ନେଇଆସିବେ; ମୁଁ ତାଙ୍କୁ ପ୍ରଣାମକରି ଆଶୀର୍ବାଦ ଗ୍ରହଣ କରିବା ପରେ ତାଙ୍କୁ ନେଇଯାଇ ଉଚିତ ସ୍ଥାନରେ ବସାଇଦେବେ।''

ମହାରାଣୀ ଓ ଅମାତ୍ୟଙ୍କ ମଧ୍ୟରେ କ'ଣ କଥାବାର୍ତ୍ତା ଏତେ ସମୟ ଧରି ଚାଲିଛି ଲୋକମାନେ ଆଦୌ ବୁଝିପାରିଲେନାହିଁ। ସାଧାରଣ ପରିବାରବର୍ଗଙ୍କ ମଧ୍ୟରେ କେବଳ ଏହା ଆଲୋଚିତ ହେଲାନାହିଁ; ଉପସ୍ଥିତ ଋଷିମାନଙ୍କ ମନରେ ଏ ଜିଜ୍ଞାସା ଫୁଟିଉଠିଲା।

ଅମାତ୍ୟ ବାହାରକୁ ଯାଇ କଚ୍‌ଦେବ ଓ ଅନ୍ୟ ଜଣେ ସନ୍ନ୍ୟାସୀଙ୍କୁ ଘେନିଆସିଲେ। ସମଗ୍ର ସଭାସଦ୍‌ଙ୍କ ଦୃଷ୍ଟି ତାଙ୍କରି ଉପରେ ଲାଖିରହିଲା। 'ଆସନ୍ତୁ କଚ୍‌ଦେବ, ସ୍ୱାଗତ କଚ୍‌ଦେବ' ଧ୍ୱନିରେ ସଭାସ୍ଥଳ ମୁଖରିତ ହୋଇଉଠିଲା। ସାଧାରଣ ସ୍ତ୍ରୀ-ପୁରୁଷମାନେ ତାଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇ ପରସ୍ପର ମଧ୍ୟରେ ଆଲୋଚନା ଆରମ୍ଭ କରିବାକୁ ଲାଗିଲେ। ଆର୍ଯ୍ୟାବର୍ତ୍ତର ପ୍ରାୟ ଆବାଳ-ବୃଦ୍ଧ-ବନିତା କଚ୍‌ଦେବଙ୍କ ଅଭୂତପୂର୍ବ କାର୍ଯ୍ୟ ସମ୍ବନ୍ଧରେ ଶୁଣିଥିଲେ; ତେଣୁ ତାଙ୍କର ଦର୍ଶନ ପାଇବାମାତ୍ରେ ସମସ୍ତଙ୍କ ମନରେ ଆନନ୍ଦର ଢ଼େଉ ଖେଳିଗଲା। କଚ୍‌ଦେବ ଟିକିଏ ଆଗେଇ ଆସିବା ମାତ୍ରେ ତାଙ୍କ ସହିତ ଆସିଥିବା ସାଧୁଙ୍କ ଉପରେ ମୋର ଦୃଷ୍ଟିପଡ଼ିଗଲା। ମୁଁ ନିଜର ଦୃଷ୍ଟିଶକ୍ତି ଉପରେ ବିଶ୍ୱାସ କରିପାରିଲିନାହିଁ। ମୁଁ ଜାଗ୍ରତ କିମ୍ବା ସୁପ୍ତାବସ୍ଥାରେ ସ୍ୱପ୍ନ ଦେଖୁଛି, କିଛି ବୁଝିପାରିଲିନାହିଁ। କାରଣ କଚ୍‌ଦେବଙ୍କ ସହିତ ଆସିଥିବା ସାଧୁ ଥିଲା ଯତି। ତା'ର ପାଗଳାମି ଦେଖି ମନେହେଲା ସେ ଆତ୍ମଜ୍ଞାନର ଅଧିକାରୀ ହୋଇଥିବାରୁ ବାହ୍ୟଜ୍ଞାନ ହରାଇବସିଛି କିମ୍ବା ବିଭିନ୍ନ ପ୍ରକାର ସାଧନାରେ ବ୍ରତୀହୋଇଥିବାରୁ ତା'ର ମୁଣ୍ଡ ବିଗିଡ଼ିଯାଇଛି।

କଚ୍ ଓ ଯତିଙ୍କୁ ସାଙ୍ଗରେ ଧରିଆସି ଅମାତ୍ୟ ସିଂହାସନ ପାଖରେ ପହଞ୍ଚିଲେ। ଦେବଯାନୀ କଚ୍‌ଙ୍କୁ ପ୍ରଣାମ କରିବାଲାଗି ଛିଡ଼ାହୋଇଗଲା। ସେ ଛିଡ଼ାହୋଇଯିବା ଫଳରେ ମୋ ପକ୍ଷରେ ବସିରହିବା ସୁନ୍ଦର ହେବନାହିଁ ବୋଲି ଭାବି ମୁଁ ଟିକିଏ ହସିଦେଇ ଛିଡ଼ାହୋଇପଡ଼ିଲି।

ଦେବଯାନୀ ତାଙ୍କୁ ପ୍ରଣାମ କରିବାର ଉପକ୍ରମ କରିବା ସମୟରେ କଚ୍‌ଦେବଙ୍କ ଦୃଷ୍ଟି ପଙ୍ଖା ଧରି ଛିଡ଼ାହୋଇଥିବା ଶର୍ମିଷ୍ଠା ଉପରେ ପଡ଼ିଲା। ସେ ଆଶ୍ଚର୍ଯ୍ୟ ହୋଇଯାଇ ପଚାରିଲେ, "ରାଜଜେମା ! ତୁମେ . . .? ଏଠାରେ . . . ଏ ଅବସ୍ଥାରେ ?"

ଦେବଯାନୀ ପ୍ରଣାମ କରିବାଲାଗି ତଳକୁ ଲଇଁପଡ଼ିଥିଲା; କିନ୍ତୁ କଚ୍‌ଦେବଙ୍କ ପ୍ରଶ୍ନ ଶୁଣି ହଠାତ୍ ମୁଣ୍ଡ ଉପରକୁ ଉଠାଇ ଅଭିମାନପୂର୍ଣ୍ଣ ସ୍ୱରରେ କହିଲା, "କଚ୍‌ଦେବ, ସେ ଆଉ ରାଜଜେମା ନୁହେଁ . . ."

—"ମାନେ . . . ?"

—"ସେ ଗୋଟେ ଦାସୀ ! ମୋ'ରି ଦାସୀ।"

—"ଦାସୀ . . . ? ପୁଣି . . . ତୁମ ଦାସୀ ?"

ଦେବଯାନୀ କିଛି ଉତ୍ତର ନ ଦେଇ କେବଳ ହସିଦେଲା। ଏ ପର୍ଯ୍ୟନ୍ତ ଯତି ସେଇଠାରେ ଛିଡ଼ାହୋଇ ଏଣେତେଣେ ଆଶ୍ଚର୍ଯ୍ୟ ହୋଇ ଚାହୁଁଥିଲା— ସତେ ଅବା ଝୁଲଣାରେ ପଡ଼ି ଦୁଧପିଆ ଶିଶୁଟିଏ ଗୋଟିଏ ଚକଚକିଆ ଜିନିଷ ଆଖିଆଗରେ ଦେଖିପକାଇଛି। ହଠାତ୍ ସେ ଶର୍ମିଷ୍ଠା ଆଡ଼କୁ ଅଙ୍ଗୁଳି ଦେଖାଇ ଦେବଯାନୀକୁ ପଚାରିଲା,

''ଏ . . . ଏ . . . ତୁମର ଏ ଦାସୀଟାକୁ ମୋତେ ଦେବ ?''

ଗୋଟେ ସାମାନ୍ୟ ସାଧୁ ଦରବାରରେ ମହାରାଣୀଙ୍କୁ 'ଏ' କହିଦେବା କମ୍ ଅପମାନଜନକ କଥା ବୋଲି ଦେବଯାନୀ ମନେକଲାନାହିଁ। ଅନ୍ୟ ସମୟ ହୋଇଥିଲେ ସେ ନିଶ୍ଚୟ ଠିକଣା ଜବାବ ଦେଇଥାନ୍ତା; କିନ୍ତୁ ପାଗଳ ବାବାଜୀଟାଏ ଉନ୍ମୁକ୍ତ ରାଜଦରବାରରେ ଶର୍ମିଷ୍ଠାକୁ ନେବାପାଇଁ ଚାହୁଁଥିବାରୁ ସେ କୌତୂହଳବଶତଃ ପଚାରିଲା, 'ୟାକୁ ନେଇ କ'ଣ କରିବେ ସ୍ୱାମିଜୀ ? ଏହାକୁ କ'ଣ ପତ୍ନୀରୂପେ ଗ୍ରହଣ କରିବେ ?'

କଚ୍ ଯତିକୁ ଆଖି ଦେଖାଇ ନୀରବ ରହିବା ଲାଗି ଚେଷ୍ଟାକରୁଥିଲେ; କିନ୍ତୁ ଯତିର ଅପଲକ ଦୃଷ୍ଟି ଲାଖିରହିଥିଲା ଶର୍ମିଷ୍ଠା ଉପରେ। ଏ ଘଟଣାର ପରିସମାପ୍ତି କେଉଁଠି କିପରି ଭାବରେ ହେବ ମୁଁ ଆଦୌ ଚିନ୍ତା କରିପାରିଲି ନାହିଁ– କେବଳ କାଠପିତୁଳାପରି ଛିଡ଼ାହୋଇରହିଲି।

ଆମେ ଦୁହେଁ ଗୋଟିଏ ପିତାମାତାଙ୍କର ଦୁଇଟି ସନ୍ତାନ, ଦୁଇଭାଇ; କିନ୍ତୁ ଦୁଇ ଭାଇଙ୍କର ମିଳନ କି ଶୋଚନୀୟ ଅବସ୍ଥାରେ ହେଉଛି, ସେ ବିଷୟରେ ଚିନ୍ତା କରିବାମାତ୍ରେ ମୋ କାନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା – 'ଏ ନହୁଷର ପୁତ୍ର କେବେହେଲେ ସୁଖୀ ହୋଇପାରିବେ ନାହିଁ।' ଏହି ସମୟରେ ଅଟ୍ଟହାସ୍ୟ କରି କହିଲା ଯତି, ''ପତ୍ନୀ . . . ? ପତ୍ନୀ ମୋର କ'ଣ ହେବ ? ମୁଁ ଏହାକୁ ପୁରୁଷରେ ପରିଣତ କରିଦେବି।''

ଯତିର କଥା ଶୁଣି ପ୍ରଥମେ ସଭାସ୍ଥଳ ହସରେ ମୁଖରିତ ହୋଇଉଠିଲା, ପରମୁହୂର୍ତ୍ତରେ ଭୟ ତଥା ଆତଙ୍କର ଛାୟା ପ୍ରତ୍ୟେକଙ୍କ ମୁଖମଣ୍ଡଳରେ ଝଲସିଉଠିଲା। ପରଦାର ଅନ୍ତରାଳରୁ ମାଆ ଖୁବ୍ ରାଗିଯାଇ କହିଲେ, ''ଅମାତ୍ୟ, ସେ ପାଗଳଟାକୁ ବାହାରକୁ ନେଇଯାଅ। ସେ ଯଦି ପୁଣି ଏମିତି ବକାବକି କରେ ଚାବୁକମାଡ଼ ଦେଇ ତାକୁ ବାହାରକରିଦିଅ।''

ଅମାତ୍ୟଙ୍କ ଇସାରାରେ ସେବକମାନେ ଯତିକୁ ଧରିବାଲାଗି ଆଗେଇଯିବାମାତ୍ରେ ମୁଁ ଚମକିଉଠିଲା ପରି ଚିତ୍କାର କରି କହିଲି, ''ଖବରଦାର ! ତାଙ୍କୁ କେହି ସ୍ପର୍ଶକରିପାରିବ ନାହିଁ। ଏହି ସିଂହାସନର ପ୍ରକୃତ ଅଧିକାରୀ ସେ . . .!''

ମୋ କଥା ଶୁଣି ଦେବଯାନୀର ଆଖି ଖୋସିହୋଇଗଲା। ମୁଁ ସତେ ଅବା ପାଗଳ ହୋଇଗଲି କି– ଏ ଧାରଣା ତା' ମନରେ ଜାତହେଲା। ମୁଁ ସଙ୍ଗେ ସଙ୍ଗେ ପ୍ରକୃତିସ୍ଥହୋଇ ଶାନ୍ତ ତଥା ସଂଯତ ସ୍ୱରରେ କହିଲି, ''ଏ ମୋର ବଡ଼ଭାଇ ଯତି।''

''ମୋ ଯତି . . .'' ପରଦା ଅନ୍ତରାଳରୁ ସମସ୍ତ ରାଜକୀୟ ଶିଷ୍ଟାଚାର ଲଙ୍ଘନ କରି 'ଯତି ! ଯତି !!' ବୋଲି ଚିତ୍କାରକରି ଧାଇଁଆସିଲେ ମାଆ। କିନ୍ତୁ ଯତିର ଭୟାବହ ଚେହେରା ଦେଖିପକାଇ ତାଙ୍କ ଆଖି ବୁଜିହୋଇଗଲା। ସେ ଦୁଇହାତ ମେଲାଇ ଯତିକୁ କୋଳକରିବାଲାଗି ପାଗଳୀଙ୍କ ପରି ଧାଇଁଯାଇ ଗଛକାଟିଲା ପରି ତଳେ ମୂର୍ଚ୍ଛିତ ହୋଇ ପଡ଼ିଗଲେ।

# ଦେବଯାନୀ

କଚ ମୋର ପୂର୍ବଜନ୍ମର ଶତ୍ରୁ ନୁହେଁ ତ? ସମୁଦାୟ ଅନୁଷ୍ଠାନଟି ବେଶ୍ ଆଡ଼ମ୍ବର ସହିତ ସମ୍ପନ୍ନ ହୋଇଗଲା; ଏପରିକି ଦେଖିବାଲୋକେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ। କିନ୍ତୁ ଶେଷ ମୁହୂର୍ତ୍ତରେ କେଉଁଠୁ ଆସି ଏ ଗ୍ରହ ପହଞ୍ଚିଗଲା? ଚାହୁଁ ଚାହୁଁ ମୋର ଅକ୍ଳାନ୍ତ ପରିଶ୍ରମ ଘଡ଼ିକ ମଧ୍ୟରେ ପଣ୍ଡହୋଇଗଲା। ମୋତେ ଅଭିଶାପ ଦେଇ କଚ ଚାଲିଯାଇଥିଲା; କିନ୍ତୁ ଏ ଯଜ୍ଞାନୁଷ୍ଠାନକୁ ମୁଁ ଜାଣିଶୁଣି ତାକୁ ନିମନ୍ତ୍ରଣ କରିଥିଲି; ସେ ଆସି ନିଜ ଆଖିରେ ଦେଖିଯାଉ; ତା' ଅଭିଶାପ ଫଳରେ ମୋର କିଛି କ୍ଷତି ହୋଇନାହିଁ; ବରଂ ମୁଁ ଐଶ୍ୱର୍ଯ୍ୟ ତଥା ଗୌରବର ମହାସାଗରରେ ସନ୍ତରଣ କରୁଛି। ମୋର ଧନସମ୍ପତ୍ତି ଦେଖି ଧନାଧିପ କୁବେରଙ୍କର ଆଖି ଝଲସିଉଠୁଛି। ଯେଉଁ ଦେବଯାନୀ ତା'ର କୁଡ଼ିଆ ଓଳାଇବା ଲାଗି ପ୍ରସ୍ତୁତ ଥିଲା, ସେ ମହାରାଣୀ ପଦରେ ସିଂହାସନରେ ବିରାଜମାନ ହୋଇଛି। ସେ ଏସବୁ ଦେଖି ମନେମନେ ଲଜ୍ଜିତ ହେବା ସଙ୍ଗେ ସଙ୍ଗେ ମୋ'ଠାରେ କ୍ଷମା ପ୍ରାର୍ଥନା କରୁ।

ମୋର ଧାରଣା ଥିଲା ନିଜ ପ୍ରେୟସୀକୁ ମହାରାଣୀ ପଦରେ ବସିଥିବାର ଦେଖି ସେ ଅନୁତାପ କରିବା ଅପେକ୍ଷା ଆଦୌ ଏଠାକୁ ଆସିବ ନାହିଁ। ଆଉ ମଧ୍ୟ ମୁଁ ଜାଣେ, କଚ ମୋତେ ପ୍ରାଣଦେଇ ଭଲପାଉଥିଲା। ମଣିଷ ଅତୀତର ପ୍ରେମକୁ ପ୍ରତ୍ୟାଖ୍ୟାନ କରିପାରେ, କିନ୍ତୁ ପ୍ରେମିକାକୁ ଜୀବନରେ ପାସୋରିଦେଇପାରେନା।

ମୋ ମନ କହୁଥିଲା– କଚ ଆସିବ, ନିଶ୍ଚୟ ଆସିବ। ଯଜ୍ଞ ଆରମ୍ଭ ହୋଇ ଶେଷହେଲା; ତଥାପି ତା'ର ଦେଖା ମିଳିଲା ନାହିଁ। ମୋ ମନ ମଧ୍ୟରେ ମହାରାଣୀର ଯେଉଁ ଅଭିମାନ ଥିଲା, ସେ କଚର ଅନୁପସ୍ଥିତିରେ ଖୁବ୍ ଖୁସିହେଲା; କିନ୍ତୁ ଦେବଯାନୀ, କଚର ପ୍ରଣୟିନୀ ଦେବଯାନୀ ମନରେ ଖୁବ୍ ଆଘାତ ଲାଗିଲା। ଶେଷ ମୁହୂର୍ତ୍ତରେ, ଦରବାର ଚାଲିଥିବା ସମୟରେ ତା'ର ଆସିବା ଖବର ଶୁଣି ମୋ ମନରେ ଆନନ୍ଦର ଢେଉ ଖେଳିଗଲା। ମୁଁ ଭାବିଲି, ଶର୍ମିଷ୍ଠା ମୋର ଲୁଗାଟି ପିନ୍ଧିବା ପରଠାରୁ ଭାଗ୍ୟ ମୋର କେଡ଼େ ଅନୁକୂଳ ନହୋଇଛି! ମହାଲକ୍ଷ୍ମୀଙ୍କୁ ଲଜ୍ଜିତା କରିବା ଭଳି ସାଜସଜ୍ଜାରେ ସଜ୍ଜିତା ହୋଇ ମୁଁ ସିଂହାସନରେ ବସିଛି। ଶତ ସହସ୍ର ଆଖି ମୋ'ରି ସୌନ୍ଦର୍ଯ୍ୟ ତଥା ପଦମର୍ଯ୍ୟାଦା ଉପରେ ଲାଖିରହିଛି। ରାଜକନ୍ୟା ଶର୍ମିଷ୍ଠା ଦାସୀ ହୋଇ ମୋତେ ପଙ୍ଖାକରୁଛି। ବଡ଼ବଡ଼ ମାନ୍ୟଗଣ୍ୟ ଋଷି ମହର୍ଷିମାନେ ଛିଡ଼ାହୋଇ ମନ୍ତ୍ରୋଚ୍ଚାରଣପୂର୍ବକ ମୋତେ ଆଶୀର୍ବାଦ କରୁଛନ୍ତି। ଏ ସମସ୍ତ ଦୃଶ୍ୟ କଚ ନିଜ ଆଖିରେ ଦେଖିବାକୁ ପାଇବ। ଦେବଯାନୀର ପ୍ରେମ ପ୍ରତ୍ୟାଖ୍ୟାନ କରି ସେ କେଡ଼େ ଭୁଲକରିଛି ଏଥର ଠିକ୍ ବୁଝିପାରିବ।

କଚ୍ ମୋତେ ମୋ ପ୍ରେମର ସଫଳତା ଭୋଗକରିବାକୁ ସୁବିଧା ଦେଲାନାହିଁ; ନ ଦେଉ; କିନ୍ତୁ ମୁଁ ପ୍ରତିଶୋଧ ନେବାକୁ ଯେଉଁ ପ୍ରତିଜ୍ଞା କରିଥିଲି ତାହା ତ ସଫଳ ହେବ! ହାୟ... ମୋରି ଅସ୍ତ୍ର ଲେଉଟି ଆସି ମୋ ଉପରେ ଆଘାତ କଲା! ପ୍ରତିଶୋଧ ତ ମୁଁ ନେଇପାରିଲିନାହିଁ; ବରଂ କଚ୍ ମନେମନେ ସନ୍ତୋଷ ଲାଭକରିଥିବ।

ଶାଶୂ ଓ ମହାରାଜ ଉଭୟ ପାଗଳଙ୍କ ପରି ଆଚ୍‌ରଣ କଲେ। ମହାରାଜଙ୍କ ମନରେ ଭ୍ରାତୃପ୍ରେମ ଓ ବନ୍ଧୁପ୍ରେମ ସେତିକିବେଳେ ଉଛୁଳିପଡ଼ିଲା। ଟିକିଏ ସମୟ ଚୁପ୍‌ଚାପ୍ ରହିଯାଇଥିଲେ କ'ଣ ଧର୍ମ ନଷ୍ଟ ହୋଇଯାଇଥାନ୍ତା? ହେଲା, ପାଗଳଟାକୁ ସେବକମାନେ ବାହାରକୁ ନେଇଯାଇ ଦି'ପାହାର କଷିଦେଇଥିଲେ କ'ଣ ବା ହୋଇଯାଇଥାନ୍ତା? ସେ ତା'ଫଳରେ ନିଜେ ଅନୁଭବ କରିପାରିଥାନ୍ତା, କେଉଁଠି କି ଅବସ୍ଥାରେ ସେ ଅଛି। ତା'ର ସେ ପ୍ରକାର ଆଚ୍‌ରଣ ଉଚିତ କି ନୁହେଁ?

ଶାଶୂଙ୍କ ମୁଣ୍ଡରେ କି ଭୂତ ସବାର ହେଲା? ତାଙ୍କର ହୃଦୟ ତ ଗଭୀର କୂଅର ଗୋଳିପାଣି ପରି। ଉପରେ ଥାଇ ଲୋକ ଆଦୌ ଜାଣିପାରିବ ନାହିଁ ସେ ଭିତରେ କ'ଣ ଅଛି। ସେ ସମୁଦାୟ ରୀତି, ନୀତି, ଶିଷ୍ଟାଚାର ଭୁଲିଯାଇ ପରଦାର ଆଢୁଆଳରୁ 'ମୋ ଯତି, ମୋ ଯତି' କହି ପାଗିଳୀଙ୍କ ପରି ଦୌଡ଼ିଆସି ହଜାର ହଜାର ଲୋକଙ୍କ ଆଗରେ ମୂର୍ଚ୍ଛିତା ହୋଇ ପଡ଼ିଗଲେ। ଛି... ଛିଃ... ରାଜମାତା ହୋଇ ଟିକିଏ ମାନସମ୍ଭ୍ରମ ପ୍ରତି ଦୃଷ୍ଟି ଦେଲେ ନାହିଁ? ଏ କ'ଣ ଭଲକଥା ହେଲା? ସେ ବେହୋସ୍ ହୋଇଯିବା ମାତ୍ରେ ସାରା ଦରବାରଟା ବିଶୃଙ୍ଖଳ ହୋଇଗଲା। ମହାରାଜା ମଧ ନିପଟ ପାଗଳଙ୍କ ପରି ବ୍ୟବହାର ଦେଖାଇଲେ। ସେ ଦରବାର ଆଗରେ ଘୋଷଣାକଲେ– 'ଏ ମୋ ବଡ଼ଭାଇ, ଏ ସିଂହାସନ ଉପରେ ତା'ର ଅଧିକାର ରହିଛି।' ଆଉ ଥାଏ କଅଣ? ମୁନିଋଷିମାନଙ୍କ ଆଶୀର୍ବାଦ ପ୍ରଭୃତି କିଛି ହୋଇପାରିଲାନାହିଁ। ଯାଃ... ଏ କଚ୍‌ଟା ଆସି ସବୁ ଅମଙ୍ଗଳର କାରଣ ହୋଇଗଲା। ପିତାଙ୍କ ତପସ୍ୟା ଲାଗି ଆୟୋଜିତ ଏ ଯଜ୍ଞରେ ବିଘ୍ନ ଘଟିଲା।

ଏ ଯତିଟା ତ ମସ୍ତପାଗଳ, ମହାରାଜ ଭଲା ଟିକିଏ ବୁଦ୍ଧିମତ୍ତାର କାର୍ଯ୍ୟ କରିଥାନ୍ତେ? ତାଙ୍କ ବ୍ୟତୀତ ଆଉ କେହି ଜାଣିନଥିଲେ ସେ ପାଗଳଟା ତାଙ୍କ ଭାଇ କି ନୁହେଁ। ତାକୁ ସଙ୍ଗରେ ଆଣିଥିବା କଚ୍ ମଧ ଏ ଭେଦ ଜାଣିନଥିଲା। କେଉଁଠି ଗୋଟେ ଗାଁରେ ଯତିକୁ ପିଲାମାନେ ଢେଲା ପଥର ମାରୁଥିଲେ; କଚ୍ ସେ ବାଟ ଦେଇ ଆସିବାବେଳେ ତାକୁ ସାଙ୍ଗରେ ଘେନିଆସିଲା। କଚ୍ କାହିଁକି, ନିଜେ ଶାଶୂ ମଧ ତାକୁ ଚିହ୍ନିପାରିନଥିଲେ। ଯାଃ... ମହାରାଜ ଟିକିଏ ଧୈର୍ଯ୍ୟ ଧରି ନୀରବ ରହିଥିଲେ ଏତେ ଅସୁବିଧା ହୋଇଥାନ୍ତା କାହିଁକି?

ଯା' ବି ହୋଇପାରେ, ସାରା ବଂଶଟାକୁ ପାଗଳାମି ଘାରିଛି। ଏ ପାଗଳଟା ଯଦି ଏଠାରେ ରହିଯାଏ, ତେବେ କେଡ଼େ ଅନର୍ଥ ନ ଘଟିବ? ହୋଇପାରେ ତା'ରି ନାଆଁରେ ସମସ୍ତ ରାଜକାର୍ଯ୍ୟ ଚାଲିପାରେ। ମୋ ଉପରେ ତ ଶାଶୂ ରକ୍ତ-ଚାଉଳ ଚୋବାଉଛନ୍ତି; ପୁଣି ପୁତ୍ରପ୍ରେମ! ମୋ ବ୍ୟବହାର ଫଳରେ ସେ ବରାବର ଅସନ୍ତୁଷ୍ଟ;

କେବେହେଲେ ମୋ ପ୍ରଭୁତ୍ୱ ସେ ବରଦାସ୍ତ କରିବେନାହିଁ। ମୁଁ ପୁଣି ଗୋଟିଏ ଋଷିକନ୍ୟା, ବ୍ରାହ୍ମଣଘରର ଝିଅ। ମୋର ପ୍ରତିଷ୍ଠା, ମୋର ପ୍ରଭୁତ୍ୱ କ୍ଷୁଣ୍ଣ କରିବାଲାଗି ଶାଶୂ ଯତିକୁ ରାଜା ନକରି ଛାଡ଼ିବେ ନାହିଁ। ସେ ପୁଣି ତାଙ୍କର ବଡ଼ପୁଅ। ସେଥିରେ ପୁଣି ମହାରାଜା ନିଜେ ରାଜସଭାରେ ଘୋଷଣା କରିଛନ୍ତି– 'ସେ ମୋର ବଡ଼ଭାଇ, ଏ ସିଂହାସନ ଉପରେ ତାର ମଧ୍ୟ ଅଧିକାର ରହିଛି।'

ଯାଃ... ସବୁ ଗଣ୍ଡଗୋଳ ହୋଇଗଲା। ଏ ବଂଶଟା ଉପରେ ପାଗଳାମିର ଅଭିଶାପ ପଡ଼ିଛି। ସାରା ବଂଶଟା କେବଳ ପାଗଳ ନୁହଁନ୍ତି, କାମୁକତାର ଭୂତ ବି ଏମାନଙ୍କ ମୁଣ୍ଡରେ ସବାରହୋଇଛି। ସ୍ତ୍ରୈଣତା ଗୋଟାଏ ବଂଶପରମ୍ପରାଗତ ରୋଗ। ମୁଁ ଶୁଣିଛି, ମୋ ଶ୍ୱଶୁର ଇନ୍ଦ୍ରଙ୍କୁ ପରାସ୍ତ କରିଥିଲେ; କରିଥିବେ। କିନ୍ତୁ ଇନ୍ଦ୍ରାଣୀଙ୍କୁ ଦେଖି ତା ରୂପଜ୍ୱାଳାରେ ପତଙ୍ଗ ପରି ଝାସଦେଲେ। ଏସବୁ ଘଟଣା ମୋତେ ଶାଶୂ ଲୁଚାଇଛନ୍ତି। ସେ ବୁଢ଼ୀ ଦାସୀଟା ପ୍ରଥମ ଦିନ ହିଁ ମୋତେ ଏସବୁ ଘଟଣା କହିଥିଲା।

ସେଇ ନହୁଷ ମହାରାଜଙ୍କ ସନ୍ତାନ ତ? ଜଟା ଦାଢ଼ି ବଢ଼ାଇ ଭଣ୍ଡ ତପସ୍ୱୀ ସାଜି ଥିଲେ କ'ଣ ହେଲା, ସେଦିନ ଦରବାରଟାରେ ସମସ୍ତଙ୍କ ଆଗରେ ଶର୍ମିଷ୍ଠାକୁ ଦେଖିପକାଇ ମୋତେ କହୁଛି– 'ଏ ସ୍ତ୍ରୀଟାକୁ ମୋତେ ଦେବ?' ତାର ଏ କଥାରୁ ବେଶ୍ ଜଣାପଡ଼ିଗଲା; ସେ କାହିଁକି ପାଗଳ ହୋଇଯାଇଛି।

ତା' କଥା ବା କ'ଣ କହିବା? ସେ ତ ପିଲାଟିଦିନରୁ ରାଜମହଲ ଛାଡ଼ି ଜଙ୍ଗଲକୁ ପଳାଇଯାଇଥିଲା; ସୁନ୍ଦରୀ ନାରୀର ମୁହଁ ସୁଦ୍ଧା ଦେଖିନଥିଲା। କିନ୍ତୁ ମହାରାଜ ଯଯାତି, ଏ କ'ଣ କମ୍ ଜଣେ କି? ରାଜା, ଦେଶର ପାଳକ ଓ ରକ୍ଷକ, ତଥାପି ଜଙ୍ଗଲର ଗୋଟିଏ କୂଅ ମଧ୍ୟରୁ ବାହାରିଆସିଥିବା ସୁନ୍ଦରୀ ଯୁବତୀଟିଏ ଦେଖି, କେମିତି ନିଆଁ ଆଗରେ ଘିଅ ପରି ତରଳିଗଲେ! ମୁଁ କୂଅ ଉପରକୁ ଉଠିଆସିବାମାତ୍ରେ, ମୋତେ କିପରି ଗୋଟିପଣେ ଗିଳିଦେଲାପରି, ଆଁ... କରି ଚାହିଁରହିଲେ। ନାରୀ ପୁରୁଷକୁ ଦେଖିବାମାତ୍ରେ ଚିହ୍ନିପାରେ। ପୁରୁଷର ସମସ୍ତ ଦୋଷ-ଗୁଣ ଘଡ଼ିକ ମଧ୍ୟରେ ନାରୀ ବେଶ୍ ଜାଣିପାରେ; ବିଶେଷତଃ ପୁରୁଷ କାମୁକ କି ନୁହେଁ ନାରୀ ସହଜରେ ଧରିନିଏ। ତାଙ୍କର ଲୋଭାଣିଆ ଚାହାଣିରୁ ବେଶ୍ ଜାଣିହୁଏ ଯେ, ଶିକାର ସହଜରେ ଜାଲରେ ପଡ଼ିବ। ମୁଁ କୂଅ ଉପରକୁ ଉଠିବା ପରେ ଯେତେବେଳେ କହିଲି– 'ମୋତେ ଡରଲାଗୁଛି, ମୋ ହାତ ଧରି ତଳକୁ ନେଇଯାଆନ୍ତୁ' ଆଉ ସମ୍ଭାଳେ କିଏ?

କିନ୍ତୁ ମହାରାଜଙ୍କ ପରିବର୍ତ୍ତେ ସେଠାରେ ଯଦି କଚ ଥାଆନ୍ତା, ତା'ହେଲେ ପ୍ରଥମେ 'ମୋ ହାତ ଧରନ୍ତୁ' ବୋଲି କହିବା ଲାଗି ମୋର ସାହସ ହୋଇନଥାନ୍ତା। କୌଣସିମତେ ଯଦି ମୋ ମୁହଁରୁ ସେଇ ପଦକ କଥା ବାହାରିଯାଇଥା'ନ୍ତା, ସେ କହିଥାନ୍ତା– 'ତୁମେ କୂଅରେ ପଡ଼ିଯାଇଥିଲ, ତୁମକୁ ଉପରକୁ ଉଠାଇ ଆଣିବା ମୋର ଧର୍ମ, ଏଣିକି ତୁମର ଇଚ୍ଛାହେଲେ ତୁମେ କୂଅ ଉପରୁ ତଳକୁ ଆସିପାର କିମ୍ବା ପୁଣି କୂଅକୁ ଡେଇଁପାର, ମୋର ସେଥିରେ ଯାଏଆସେ କ'ଣ?'

କଚ୍‌ର ଏହିପରି ରୋକ୍‌ଠୋକ୍ କଥା ଯୋଗୁ ମୁଁ ତା' ଆଡ଼କୁ ଆକୃଷ୍ଟ ହୋଇଯାଇଥିଲି। ଆଶ୍ରମକୁ ଆସିବାମାତ୍ରେ ମୋତେ ଫାନ୍ଦରେ ପକାଇବା ଲାଗି ଯଦି ସେ ଉଦ୍ୟମ କରିଥାନ୍ତା, ମୋତେ ଥରେ ଛୁଇଁଦେଲେ ସ୍ୱର୍ଗ ପାଇଗଲା ବୋଲି ଭାବନା ଯଦି ମୁଁ ତା'ର ହାବଭାବରୁ ଜାଣିଥାଆନ୍ତି କିମ୍ବା ମୋର ସୌନ୍ଦର୍ଯ୍ୟ ଆଡ଼କୁ ସେ ଯଦି ଅତୃପ୍ତ ଦୃଷ୍ଟିରେ ଥରକୁଥର ଚାହିଁ ଦୀର୍ଘନିଃଶ୍ୱାସ ପକାଇଥାଆନ୍ତା, ତେବେ ମୁଁ ତା' ଆଡ଼କୁ ଆଡ଼ଆଖିରେ ସୁଦ୍ଧା ଚାହିଁନଥା'ନ୍ତି; କିନ୍ତୁ ତା' ଦୃଷ୍ଟିରେ ମୁଁ କେବେହେଲେ ଲାଳସାର ସଙ୍କେତ ପାଇନାହିଁ, ତା' କାର୍ଯ୍ୟକଳାପରେ କାମୁକତାର ଆଭାସ ଲକ୍ଷ୍ୟକରିନାହିଁ। ନାରୀମାନେ ଏହିପରି ଜିତେନ୍ଦ୍ରିୟ ପୁରୁଷକୁ ପସନ୍ଦକରନ୍ତି। ଯେଉଁ ପୁରୁଷ ନାରୀର ପିଛା ଧରି ପ୍ରେମର ଅଭିନୟ ଆରମ୍ଭକରେ, ନାରୀ ତାକୁ କେବେହେଲେ ଅନ୍ତରର ସହିତ ଭଲପାଏ ନାହିଁ। ଏହାହିଁ ବିଧାତାଙ୍କ ସୃଷ୍ଟିର ବିଚିତ୍ର ଲୀଳା।

ଜୀବନକୁ ପାଣି ଛଡ଼ାଇ କଚ୍ ଘୋର ଜଙ୍ଗଲକୁ ଯାଇ ମୋ ପାଇଁ ସୁନ୍ଦର ସୁନ୍ଦର ଫୁଲ ତୋଳିଆଣେ। ସେ ଫୁଲଗୁଡ଼ିକର ମୂକ ଭାଷାରୁ ମୁଁ ଶୁଣିବାକୁ ପାଇଛି, ମୋ ପ୍ରତି କଚ୍ ହୃଦୟର ପ୍ରେମ, ସ୍ନେହ; କିନ୍ତୁ କଚ୍ ଦିନେହେଲେ ମୁହଁ ଖୋଲି ମୋତେ କିଛି କହିନାହିଁ। ଥରେ ବଗିଚାରେ ମୋ ପାଦରେ ଗୋଟିଏ କଣ୍ଟା ପଶିଗଲା; ମୁଁ ମଜା କରିବା ଛଳରେ କହିଲି – 'ମୋତେ ସାପ କାମୁଡ଼ିଦେଲା।' ଏହା ଶୁଣିବାମାତ୍ରେ କଚ୍‌ର ଆଖି ଲୁହ ଛଳଛଳ ହୋଇଗଲା; ସେହି ଅଶ୍ରୁବିନ୍ଦୁ ହିଁ ମୋତେ ତା'ର ଅନ୍ତର ଖୋଲି ଦେଖାଇଦେଲା।

ରାତିରେ ଶୋଇବା ପୂର୍ବରୁ ସେ ବଗିଚାର ଗୋଟିଏ କୋଣରେ ଥିବା ଲତାକୁଞ୍ଜରେ ବସି ଆଦିଶକ୍ତିଙ୍କୁ ପ୍ରାର୍ଥନାକରେ। ଥରେ ମୁଁ ଲୁଚିଛପି ଶୁଣିବାକୁ ପାଇଲି ତାର ପ୍ରାର୍ଥନା – ''ମା, ଦେବଯାନୀକୁ ସୁଖୀକର।'' ଏଇ କେତୋଟି ଶବ୍ଦ ଶୁଣିବାମାତ୍ରେ ମୋ ଶରୀରରେ ଆନନ୍ଦର ବିଦ୍ୟୁତ୍ ଖେଳିଗଲା ଏବଂ ମୋର ରୋମମୂଳ ପୁଲକରେ ଟାଙ୍କୁରି ଉଠିଲା। ସେଇ ଶବ୍ଦ କେଇଟିରୁ ବେଶ୍ ଜାଣିପାରିଲି, କଚ୍ ମୋତେ କେତେ ଭଲପାଏ। କେତେ ଦିନ ଧରି ସେହି ଶବ୍ଦଗୁଡ଼ିକ ବରାବର ମଧୁର ସଙ୍ଗୀତର ଝଙ୍କାର ପରି ମୋ କାନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା।

ମୁଁ ପ୍ରକୃତରେ ଚାହୁଁଥିଲି ଏଇ ଧରଣର ପ୍ରେମ। ଗୋଟିଏ ସୁନ୍ଦରୀ ଯୁବତୀକୁ ଦେଖିବା ମାତ୍ରେ ବାଜପକ୍ଷୀ ପରି ତା' ଉପରକୁ ଝାମ୍ପଦେବା କ'ଣ ପ୍ରକୃତରେ ପ୍ରେମ? ନାଃ... ତାହା ନିପଟ କାମୁକତା ବା ଲମ୍ପଟତା। କୌଣସି ସ୍ତ୍ରୀ ଏ ପ୍ରକାର ପ୍ରେମ ଆଗରେ ଆତ୍ମସମର୍ପଣ କରିବ ନାହିଁ!

କିନ୍ତୁ... ପ୍ରେମର ବିଫଳତା ଲାଗି ପ୍ରେମୀ ନାମରେ ପ୍ରଣୟର ମାଳା ଧରି ଜୀବନଟିକୁ ହା'ହୁତାଶ କରି ବିତାଇଦେବାକୁ ମୁଁ ଚାହୁଁନଥିଲି। କଚ୍ ମୋ ଅନ୍ତରରେ ଯେଉଁ ଆଘାତ ଦେଇଥିଲା, ମୁଁ ତା ଉପରେ ଶୀତଳ ପ୍ରଲେପ ଦେଇ ଭୁଲିଯିବାକୁ ଚାହୁଁଥିଲି। ତେଣୁ ମୁଁ ମୋର ପ୍ରଣୟିନୀର ଆତ୍ମାକୁ ଅନ୍ତରର ଗଭୀରତମ ପ୍ରଦେଶରେ ବନ୍ଦିନୀ କରି ରଖିଥିଲି। ସ୍ୱାମିନୀ ସାଜି ତା'ରି ଅଭିମାନରେ ସାରା ଜୀବନ ବିତାଇଦେବାକୁ ମୁଁ ମନେ ମନେ ସ୍ଥିରକରିନେଲି। ବାଃରେ ଭାଗ୍ୟ? ମୁଁ ଜୀବନରେ ଏପରି ଗୋଟିଏ ପ୍ରତିଜ୍ଞା କରିବା ବେଳକୁ ଶର୍ମିଷ୍ଠା ମୋତେ କୂଅକୁ ପେଲିଦେଲା। ମହାରାଜ ଯଯାତି

ଆସି ସେତିକିବେଳକୁ କୂଅମୂଳରେ ହାଜର ହୋଇଗଲେ। ଧନ୍ୟରେ ଭାଗ୍ୟ! କୂଅରେ ପଡ଼ି ଜୀବନର ଆଶା ଛାଡ଼ିଦେଇଥିବା ଦେବଯାନୀ ଓ କୂଅରୁ ବାହାରକୁ ଆସିଥିବା ଦେବଯାନୀ ମଧ୍ୟରେ କେତେ ପାର୍ଥକ୍ୟ! କୂଅମୂଳରେ ଛିଡ଼ାହୋଇଥିବା ବ୍ୟକ୍ତି ହସ୍ତିନାପୁରର ମହାରାଜ ଯଯାତି ବୋଲି ଜାଣିବା ମାତ୍ରେ . . .।

ସେତିକିବେଳେ ମୁଁ ମନେ ମନେ ନିଶ୍ଚୟ କରିନେଲି– ଯା'ହେଉ, ମୁଁ ୟା'ଙ୍କର ରାଣୀ; କେବଳ ରାଣୀ ନୁହେଁ, ପାଟରାଣୀ ହେବି। ଭଗ୍ନ ହୃଦୟକୁ ସାନ୍ତ୍ୱନା ଦେବାଲାଗି ମୋର ଆବଶ୍ୟକତା ଥିଲା; ଧନ, ସମ୍ପତ୍ତି, ଅଧିକାର ଓ ସମ୍ମାନ; ଆଉ ମଧ୍ୟ ମୋ'ରି ଇସାରାରେ ନାଚିବା ଭଳି ଗୋଟିଏ ସ୍ୱାମୀ। ଲମ୍ପଟ-ପତି ହିଁ କେବଳ ସ୍ତ୍ରୀର ଅଧିକାର ମାନିନେଇ ତା' ହାତମୁଠାରେ ରହିପାରେ।

ସରଗର ଚାନ୍ଦ ମୁଁ କ୍ଷଣକ ମଧ୍ୟରେ ହାତମୁଠାରେ ପାଇଗଲି; କିନ୍ତୁ କଚ୍ ସାଥିରେ ଆସିଥିବା ଏ ପାଗଳ ଯୋଗୀଟା ମୋର ସବୁ କିଛି. . . ସେ ମୋର ଦେଢ଼ଶୁର ଏବଂ ହସ୍ତିନା-ସିଂହାସନର ପ୍ରକୃତ ଅଧିକାରୀ! ଏ ପାଗଳଟା ଏଠାରେ ରହୁ କିମ୍ବା କୁଆଡ଼େ ଚାଲିଯାଉ! ମୁଁ ମହାରାଣୀ; ଶେଷ ପର୍ଯ୍ୟନ୍ତ ମହାରାଣୀ ହୋଇ ରହିବି। ସେ ମୁଣ୍ଡପାଗଳା ଲୋକଟା ହୁଏତ ଶର୍ମିଷ୍ଠାକୁ ପସନ୍ଦକରିପାରେ। ରାଜ୍ୟର ପ୍ରକୃତ ମାଲିକ ବୋଲି ଜାଣିଲେ, ଶର୍ମିଷ୍ଠା ମଧ୍ୟ ତାକୁ ରାଜିହୋଇଯାଇପାରେ।

ଏ ଯତିଟାକୁ କୌଣସିମତେ ଏଠାରୁ ତଡ଼ିବାକୁ ହେବ; ତେଣୁ ତାକୁ ରାଜମହଲରେ ନରଖିବା ପାଇଁ ମୁଁ ଜିଦ୍‌ଧରିବସିଲି। କିନ୍ତୁ ଶାଶୂଙ୍କର ସେ ଥିଲା ସ୍ନେହର ବନ୍ଦମୂଅ, ବହୁତ ବର୍ଷ ପରେ ଘରକୁ ଫେରିଛି; ତେଣୁ ତାକୁ ସେ ରାଜମହଲରେ ରଖାଇବାକୁ ଚାହୁଁଥିଲେ। କିନ୍ତୁ ମୁଁ କାନ୍ଦି, ମୁଣ୍ଡବାଡ଼େଇ ଶେଷକୁ ବାପଘରକୁ ପଳାଇଯିବା ଧମକ ଦେଲାରୁ, ମହାରାଜ ମାଆଙ୍କ ଇଚ୍ଛାବିରୁଦ୍ଧରେ ଯିବାକୁ ପ୍ରସ୍ତୁତହେଲେ। ସେମାନେ ସମସ୍ତେ ଯାଇ ଅଶୋକବନରେ ରହିଲେ, ଭଲହେଲା; ନହେଲେ କିଏ ଜାଣେ ଏ ପାଗଳଟା କେତେବେଳେ କି ନାଟ ଲଗାଇଥାଆନ୍ତା? ହୁଏତ, ତା'ର ଯେଉଁ ସ୍ୱଭାବ, ଦାସୀମାନଙ୍କୁ ଧରି ବଳାତ୍କାରରେ ଚୁମ୍ବନ ଦେଇଦିଅନ୍ତା। ବୁଢ଼ୀ ଦାସୀଗୁଡ଼ାକୁ ମଧ୍ୟ ଛାଡ଼ନ୍ତା ନାହିଁ! ତା'ହେଲେ . . .

କାଳେ ଅଶୋକବନରେ ମୋ ବିରୁଦ୍ଧରେ କ'ଣ ଷଡ଼ଯନ୍ତ୍ର ହେବ, ସେଥିଲାଗି ମୋର ବିଶ୍ୱାସୀ ବୁଢ଼ୀଦାସୀଟିକୁ ମୁଁ ଶାଶୂଙ୍କ ସେବା କରିବା ବାହାନାରେ ଅଶୋକବନରେ ରଖାଇଲି। ସେ ଆସି ମୋତେ ଖୁବ୍ ମଜା କଥା ଶୁଣାଇଲା। ସେ ଯୋଗୀଟା ଆଜିଯାଏଁ ମାଆଙ୍କୁ ଚିହ୍ନୁନାହିଁ। ଶାଶୂ ପ୍ରତିଦିନ ତା' ଆଗରେ ବସି ଆଖିରୁ ଲୁହଧାର ଗଡ଼ାଇ କହନ୍ତି– "ବାବା ଯତିରେ, ଥରେ ମୋତେ 'ମାଆ' ବୋଲି ଡାକିଦେ।" ସେ ଉତ୍ତର ଦେଇ କହେ, "ତୁମେ ମାଆ ତ, ନୁହଁ କି? ତେଣୁ ତୁମେ ଦୁଷ୍ଟା, ନୀଚ୍! ଦୁନିଆରେ ସବୁଯାକ ମାଆ, ସ୍ତ୍ରୀ, ଝିଅ ନୀଚ୍। ମୁଁ ସମସ୍ତଙ୍କୁ ନଷ୍ଟକରିଦେବାଲାଗି ଚାହୁଁଛି। ତୁମେ ବାପା ହୋଇଯାଅ, ମୁଁ ତୁମକୁ 'ବାପା' ବୋଲି ଆନନ୍ଦରେ ଡାକିବି।"

ତୀର୍ଥଯାତ୍ରାରୁ ଫେରିବା ବାଟରେ ଈଶ୍ୱରଙ୍କର କି ଦୟା ହେଲା କେଜାଣି, କଚ୍ ଏହି ପାଗଳ ଯତିଟାକୁ ସାଙ୍ଗରେ ଧରି ଆସି ଦରବାରରେ ହାଜର ହୋଇଥିଲା।

× × × ×

ମନେହେଉଛି, ଏ ଯତିଟା ସବୁ ଅନର୍ଥର ମୂଳକାରଣ। ବିଦାୟ-ସମ୍ବର୍ଦ୍ଧନା ଦିନ ଆମେ ଦୁହେଁ ରଥରେ ବସି ନଗର ପରିକ୍ରମା କରିଥିଲୁ। ଚାରିଆଡ଼େ ସ୍ୱଚ୍ଛ କିରଣ ବିଚ୍ଛୁରିତ ହେଉଥିଲା ଏବଂ ଆକାଶ ମଧ୍ୟ ନିର୍ମଳ ଥିଲା; ବର୍ଷା ବା ବାଦଲର ନାମ-ଗନ୍ଧ ସୁଦ୍ଧା ନଥିଲା। ବର୍ଷାର ଲକ୍ଷଣ ଦେଖାଯାନ୍ତା ବା କିପରି? କାରଣ ସେତେବେଳେ ତ ବସନ୍ତ ସମୟ! କିନ୍ତୁ ସେ ଯତି ଦରବାରରେ ପାଦଦେବାକ୍ଷଣି ଚାରିଆଡ଼େ ଅବସ୍ଥା ଅସମ୍ଭାଳ ହୋଇଉଠିଲା।

ଆକାଶ ସଙ୍ଗେ ସଙ୍ଗେ ପ୍ରଳୟକାଳୀନ ବାଦଲରେ ପୂର୍ଣ୍ଣହୋଇଗଲା ଏବଂ ଜଣାଗଲା ସତେ ଅବା ଆକାଶଟା ଗୋଟିଏ ଭୀଷଣ ଅନ୍ଧକାରମୟ ସୁଡ଼ଙ୍ଗ। ମଝିରେ ମଝିରେ ଏଡ଼େ ଜୋର୍‌ରେ ଘଡ଼ଘଡ଼ି ଓ ବିଜୁଳି ମାରୁଥିଲା ଯେ, ସୁଡ଼ଙ୍ଗ ଭିତରେ ନାଗୁଣୀକୁ ଦେଖିଲାପରି ଛାତି ଭୟରେ ଥରିଉଠୁଥିଲା। ନା . . . ନା . . . ନାଗୁଣୀ ନୁହେଁ, ଭୟଙ୍କର ଡାକିନୀ ବା ପିଶାଚିନୀ! ମୁଣ୍ଡର ଲମ୍ୱା ଲମ୍ୱା ବାଳ ଫିଟାଇଦେଇ ଘନଘୋର ଗର୍ଜନରେ ସେ ନଗରର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଧାଇଁ-ଦୌଡ଼ି କମ୍ପାଇଦେଉଛି! ତା'ପରେ ପରେ ଆରମ୍ଭ ହୋଇଗଲା ମୁଷଳଧାରା ବର୍ଷା। ଚାରିଦିନ ପର୍ଯ୍ୟନ୍ତ ଅନବରତ ବର୍ଷା ଲାଗିରହିଲା। ନଗରର ସମସ୍ତ କାରବାର ବନ୍ଦ ହୋଇଯିବା ଫଳରେ ଅମାତ୍ୟ ଚିନ୍ତାରେ ବ୍ୟସ୍ତହୋଇପଡ଼ିଲେ। ଯମୁନାରେ ପ୍ରବଳ ବନ୍ୟା ଆସି ଆଖପାଖ ଗାଁ-ଗଣ୍ଡା ଭସାଇନେଲେ ଅବସ୍ଥା ଆହୁରି ଅସମ୍ଭାଳ ହୋଇଉଠିବ। ମନ୍ତ୍ରୀଙ୍କୁ ଚିନ୍ତିତ ଦେଖି ମୁଁ କହିଲି, "ଆପଣଙ୍କର ଏ ଯତି ମହାରାଜ ଆସିବା ଦିନରୁ ଏ ସବୁ ଦୁର୍ଘଟଣା ଘଟୁଛି। ଯେ ପର୍ଯ୍ୟନ୍ତ ସେ ଏଠାରୁ କୁଆଡ଼େ ପଳାଇଯାଇନାହାନ୍ତି, ବର୍ଷା କେବେହେଲେ ଛାଡ଼ିବନାହିଁ।"

ଚତୁର୍ଥ ଦିନର ରାତିଅଧର କଥା; ବର୍ଷା ଖୁବ୍ ଜୋର୍‌ରେ ହେଉଥାଏ। ପ୍ରଥମେ ପ୍ରଥମେ ଖୁବ୍ ଜୋର୍‌ରେ ବର୍ଷା ତୁହାକୁ ତୁହା ଆରମ୍ଭ ହେଲା, ତା'ପରେ ଝିପଝିପି ବର୍ଷା ଲାଗିରହିଲା। ମହାରାଜ ନିଦରେ ଶୋଇପଡ଼ିଥାନ୍ତି; କିନ୍ତୁ ମୋ ଆଖିକୁ ନିଦ ଆସିନଥାଏ। ମୁଁ ମୋର ଭାବୀ ସନ୍ତାନର ରଙ୍ଗ, ରୂପ, ସେ କିପରି ଖନେଇ ଖନେଇ ମ . . . ମ ମା . . . ବୋଲି ମୋତେ ଡାକି କୁଣ୍ଢାଇପକାଇବ, ସେହି ସବୁ ବିଷୟର କଳ୍ପନାରେ ନିଜକୁ ହଜାଇଦେଇଥିଲି। ହଠାତ୍ ଏହି ସମୟରେ ଘୋଡ଼ାଟାପୁ ଶୁଣାଗଲା। ମୁଁ ଆଶ୍ଚର୍ଯ୍ୟ ହୋଇ ମହଲର ଦ୍ୱାର ଖୋଲି ବାହାରକୁ ଆସି ଦେଖିଲି ଯେ ଶାଶୂ ଅଶୋକବନରୁ ଜଣେ ସେବକକୁ ପଠାଇଛନ୍ତି। ସେ ମୋତେ ଦେଖିବାକ୍ଷଣି ଅଭିବାଦନ ଜଣାଇ କହିଲା – "ଋଷି ମହାରାଜ ଏଠାକୁ ଆସିଛନ୍ତି କି?"

ମୁଁ ଜାଣେ, ନିର୍ଜନ ସ୍ଥାନରେ ବସି ଧ୍ୟାନମଗ୍ନ ହୋଇଯିବା କଚ୍‌ଙ୍କର ସ୍ୱଭାବ। ରାତି ଅଧ ପର୍ଯ୍ୟନ୍ତ ବୋଧହୁଏ ସେ ଅଶୋକବନକୁ ନଫେରିବାରୁ ଶାଶୂ ଚିନ୍ତାରେ ପଡ଼ିଛନ୍ତି। ମୁଁ କହିଲି, "କାହିଁ, ନା'ତ, କଚ୍‌ଦେବ ଏଠାକୁ ଆସିନାହାନ୍ତି।"

ସେ ଗୋଟିଏ ଦୀର୍ଘନିଃଶ୍ୱାସ ଛାଡ଼ି କହିଲା – "କଚ୍‌ଦେବ ସେଠାରେ ଅଛନ୍ତି; କିନ୍ତୁ ଅନ୍ୟ ଯେଉଁ ମୁନି ମହାରାଜ ଆସିଥିଲେ . . .।"

–"ତାଙ୍କର କ'ଣ ହେଲା?"

—''କିଏ ଜାଣେ, ସେ କୁଆଡ଼େ ଚାଲିଗଲେଣି।''

—''କେତେବେଳେ ?''

—''ରାତି ଦେଢ଼ପହର ପର୍ଯ୍ୟନ୍ତ ସେ ଥିଲେ, ତା'ପରେ ସମସ୍ତେ ଶୋଇପଡ଼ିଲେ। କେତେ ସମୟ ପରେ ରାଜମାତା ଉଠି ଦେଖିଲେ ଯେ ଯତି ମହାରାଜ ନାହାନ୍ତି।''

ମୁଁ ମହାରାଜଙ୍କୁ ଉଠାଇଦେଲି; ସେ ସଙ୍ଗେ ସଙ୍ଗେ ଘୋଡ଼ାରେ ବସି ଅଶୋକବନକୁ ଯାଇ ପରଦିନ ସକାଳୁ ଫେରିଆସିଲେ। ଅନେକ ପ୍ରହରୀ ଓ ସେବକ ନଗରର ବିଭିନ୍ନ ସ୍ଥାନ ଓ ଯମୁନା କୂଳେ କୂଳେ ଅନେକ ଖୋଜିଲେ; କିନ୍ତୁ କେହି ତାଙ୍କର ସନ୍ଧାନ ପାଇପାରିଲେ ନାହିଁ। ପରଦିନ ଖବର ପ୍ରଚାରିତ ହେଲା; ଯତି ମହାରାଜ ପୂର୍ଣ୍ଣଗର୍ଭା ଯମୁନା ନଦୀର ପାଣି ଉପରେ ଚାଲି ଚାଲି ଆରପଟକୁ ଯାଉଥିବାର କେହି ଜଣେ ଦେଖିଛି।

ଯତି ପଳାଇଯିବାର ଅସଲ କଥା ବୁଢ଼ୀ ଦାସୀଟି ଆସି ମୋତେ କହିଲାରୁ, ମୁଁ ହସି ହସି ବେଦମ୍ ହୋଇଗଲି। କଥା ହେଉଛି, ଯତି ମହାରାଜ ଚାରିଦିନକାଳ ଶର୍ମିଷ୍ଠାକୁ ନିରୀକ୍ଷଣ କରି ଚାହିଁ ଚାହିଁ, ସେଦିନ ରାତିରେ ତା' କୋଠରୀରେ ପଶି ତାକୁ ଧରିପକାଇଲା। ସେ ହାଉଳି-ବାଉଳି ହୋଇ ଉଠିବାରୁ ଅନ୍ୟ ଦାସୀମାନଙ୍କ ନିଦ ଭାଙ୍ଗିଗଲା। ସମସ୍ତେ ପାଟିତୁଣ୍ଡ କଲାରୁ ସେ ଝରକା ବାଟଦେଇ ଡେଇଁ ବାହାରକୁ ପଳାଇଗଲା। ମେଘ-ଅନ୍ଧାର ରାତି, ସେଥିରେ ପୁଣି ମୁଷଳଧାରା ବର୍ଷା; ସେହି ଦୁର୍ଯୋଗରେ ସେ କୁଆଡ଼େ ପଳାଇଗଲା। ହୁଏତ ଯମୁନା ପାର ହେଉଥିବା ବେଳେ ନଦୀସ୍ରୋତରେ ଭସିଯାଇଥିବ। ମୁଁ ଏକଥା ଶୁଣି ମନେ ମନେ ଭାବିଲି, ଯା'ହେଉ ଭଲହେଲା, ବିନା ମାଡ଼ରେ ଦେବତା ଛାଡ଼ି ପଳାଇଗଲା, ରକ୍ଷା ...।

ମୁଁ ଶାଶୂଙ୍କୁ ସାନ୍ତ୍ୱନା ଦେବାଲାଗି ଅଶୋକବନକୁ ଯାଇ ତାଙ୍କୁ ରାଜମହଲକୁ ଆସିବା ଲାଗି ଅନେକ ଅନୁରୋଧ କଲି। କିନ୍ତୁ ସେ ତ ମୋ ଉପରେ ରାଗିଥିଲେ; ତେଣୁ କୌଣସିମତେ ଆସିବାଲାଗି ରାଜିହେଲେନାହିଁ। ମୋ ଉପରେ ଆଦୌ ବିରକ୍ତ ନହୋଇ କହିଲେ– ''ମୋତେ ଏଇଠି ଖୁବ୍ ଭଲଲାଗୁଛି ...।''

ଅଶୋକବନରେ କଚ୍ ସହିତ ମୋର ଭେଟହେଲା; ମାମୁଲି ଧରଣର କଥାବାର୍ତ୍ତା ହେଲା। ତା'ପରେ କଚ୍ ଆଉ ରାଜମହଲ ଆଡ଼କୁ ଆସିଲା ନାହିଁ; କିନ୍ତୁ ସେମାନଙ୍କର ସବୁ କଥାବାର୍ତ୍ତା, ଚାଲିଚଳଣ, ମୋତେ ପ୍ରତିଦିନ ଜଣାପଡ଼ିଯାଏ। କଚ୍ ଏକ ଅଦ୍ଭୁତ ଖିଆଲୀ ଲୋକଟାଏ; ସବୁବେଳେ କିଛି ନା କିଛି କାମରେ ଲାଗିଥାଏ। ମହାରାଜ ପ୍ରତିଦିନ ମାଆଙ୍କୁ ସାନ୍ତ୍ୱନା ଦେବାଲାଗି ଅଶୋକବନକୁ ଯାଆନ୍ତି, ଫେରିଆସି କିଛି ନପଚାରିଲେ ମଧ୍ୟ କହନ୍ତି, ''କଥାବାର୍ତ୍ତା କରିବାଲାଗି ମୋ ପିଲାଦିନର ସାଥୀ କଚ୍ ଭଳି ଜଣେ ଜ୍ଞାନୀ ମହର୍ଷି ମିଳିଛି। କଥା ପ୍ରସଙ୍ଗରେ ମାତିଗଲେ ବେଳ ଆଦୌ ଜଣାପଡୁନି।''

ସମସ୍ତଙ୍କ ସାଥୀରେ କଥାବାର୍ତ୍ତା କରିବା, ଅନ୍ୟାନ୍ୟ ଛୋଟ ଛୋଟ କାମରେ ହାତ ଦେବାଲାଗି କଚ୍ ସମୟ ପାଉଛି; ଅଥଚ୍ ମୋ ସହିତ ଦି'ପଦ ଦୁଃଖସୁଖ ହେବାଲାଗି ତାକୁ ସମୟ ମିଳୁନି ? ଅଶୋକବନରେ ଦିନେ ତାକୁ ଭେଟି ପଚାରିଲି, ''ରାଜମହଲକୁ କେବେ ଆସିବ ?'' ସେ ରୁକ୍ଷଭାବରେ ଉତ୍ତର ଦେଲା, ''ଦେଖେ,

କେବେ ସମୟ ଓ ସୁବିଧା ମିଳୁଛି।'' ଏତେ ଅହଙ୍କାର। ତଥାପି ସେ ଦେବଯାନୀକୁ ଚିହ୍ନିପାରିଲାନାହିଁ ?

ପ୍ରତିଦିନ ମୁଁ ଭାବେ, ଯାହେଉ ପଛକେ କଚ୍ ନିଶ୍ଚୟ ଆସି ମୋ ସହିତ ସାକ୍ଷାତ୍ କରିବ; ହୁଏତ ଦିନେ ହଠାତ୍ ଆସି ପହଞ୍ଚିଯାଇ ଚମକାଇଦେବ। ମୁଁ ମନେ ମନେ ଖୁସିହୋଇ ତାକୁ ସ୍ୱାଗତ ଜଣାଇବାଲାଗି ଅନେକ ପ୍ରକାର ଆୟୋଜନରେ ଲାଗିଯାଏ। ସିଂହାସନ ପରି ସୁନ୍ଦର ଆସନ, ସୁବର୍ଣ୍ଣ ପାତ୍ରରେ ସୁସ୍ୱାଦୁ ଫଳ, ତା'ର ପ୍ରିୟପୁଷ୍ପରେ ମାଳା ତିଆରିକରାଇ ମୁଁ ପ୍ରତିଦିନ ତାକୁ ଅପେକ୍ଷାକରେ; କିନ୍ତୁ ସେ ମନମଉଛିଆ ଋଷିର ଦେଖାମିଳେନାହିଁ।

ଫୁଲମାଳ ବାସିହୋଇ ମଉଳିଯାଏ, ଫଳଗୁଡ଼ିକ ପଚିସଢ଼ିଯାଏ; କିନ୍ତୁ କଚ୍‌ର ଦେଖାମିଳେନାହିଁ। ତା' ପାଇଁ ସଜାଡ଼ିଥିବା ଦ୍ରବ୍ୟଗୁଡ଼ିକର ଅବସ୍ଥା ଦେଖି ମୋ' ମନରେ ତୀବ୍ର ଆଘାତ ଲାଗେ। ସମସ୍ତଙ୍କ ସହିତ ଗପସପ କରିବାଲାଗି ତାକୁ ଅନେକ ସମୟ ମିଳୁଛି, ଅଥଚ୍ ମୋ'ରି ପାଇଁ ତା' ପାଖରେ ସମୟ ଓ ସୁବିଧା ନାହିଁ! ମନେ ମନେ ମୁଁ ତା' ଉପରେ ଖୁବ୍ ଚିଡ଼ିଉଠେ। ସେ ହସ୍ତିନାପୁର ଆସିଲା କିପରି ? ମୋରି ନିମନ୍ତ୍ରଣ ଫଳରେ ଆସିନାହିଁ କି ? ମହାରାଜା ତାକୁ ଭୁଲରେ ସୁଦ୍ଧା ଡକାଇନଥା'ନ୍ତେ; କିନ୍ତୁ ରାଜମହଲକୁ ଆସି ମୋ ସହିତ ଦେଖାକରିବାର ସାମାନ୍ୟ ଶିଷ୍ଟାଚାର ମଧ୍ୟ ଦେଖାଉନାହିଁ? ସେ ହୁଏତ ଭାବୁଛି, ଦେବଯାନୀ ଶେଷରେ ଝକ୍‌ମାରି, ହାତରେ କାନ ଧରି, ଭୂଇଁରେ ନାକ ରଗଡ଼ି, ତାକୁ ଡାକିବାକୁ ବାରମ୍ବାର ଦୌଡ଼ିବ! କିନ୍ତୁ ନିର୍ବୋଧ . . .।

ନା . . . ନା . . . କଚ୍ ମୋତେ ଅଭିଶାପ ଦେଇ ଚାଲିଯାଇଥିଲା; ସେହି ଦୁଃଖରେ କେତେ ଦିନ ଧରି ମୋ ଆଖିରୁ ଲୁହଧାର ବନ୍ଦହୋଇନଥିଲା। ତା'ପରେ ମୁଁ ସତର୍କହୋଇ ମନକୁ ଦୃଢ଼କରିନେଲି; ତା' ଲାଗି ଆଉ କେବେହେଲେ ଲୁହଧାର ନ ଗଡ଼ାଇବାଲାଗି ମନେମନେ ପ୍ରତିଜ୍ଞା କରିନେଲି। ଏପରି କି ଶାଶୂଘରକୁ ଆସିବାବେଳେ ବାପାଙ୍କର ଛଳ ଛଳ ଆଖି ଦେଖି ମୁଁ ଆଖିରୁ ଲୁହଧାର ଗଡ଼ାଇଲିନାହିଁ। ମୋ ମନ ଅବଶ୍ୟ ଭାରାକ୍ରାନ୍ତ ହୋଇଯାଇଥିଲା। ବାପାଙ୍କ ଆଖିର ଲୁହଧାର ଗଡ଼ି ମୋ' ମୁଣ୍ଡଉପରେ ପଡ଼ିଲା ତଥାପି ମୁଁ ମନକୁ ଦୃଢ଼କରିନେଲି; ଦେବଯାନୀ କେବେହେଲେ କୌଣସି ଅବସ୍ଥାରେ ମଧ୍ୟ ଆଖିରୁ ଲୁହ ଗଡ଼ାଇବନାହିଁ।

କିନ୍ତୁ ଏବେ ମୋତେ ଜଣାପଡୁଛି, କଚ୍ ହସ୍ତିନାପୁରକୁ ଆସିବା ପରେ ମୋ ପାଖକୁ ଆସିଥା'ନ୍ତା, ଆମେ ଅତୀତର ସେଇ ଦିନଗୁଡ଼ିକୁ ମନେପକାଇ କେତେ ଗପସପ କରନ୍ତୁ, ତା' ମଧ୍ୟରେ ମୁଁ ସେଇ ମଧୁରସ୍ମୃତି ଚିନ୍ତାକରି ଆଖିରୁ ଦି'ଧାର ଲୁହ ଗଡ଼ାଇଦେଇ ଏ ଅଶାନ୍ତ ମନକୁ ଟିକିଏ ହାଲୁକା କରିଦିଅନ୍ତି।

ପ୍ରକୃତରେ କ'ଣ ଦି'ଧାର ଲୁହ ଗଡ଼ାଇଦେଲେ ଆନନ୍ଦ ମିଳେ? ନା, ଲୁହ ହେଉଛି ଦୁର୍ବଳତାର ଚିହ୍ନ। ତା'ପରେ ପୁଣି ମହାରାଣୀ ଦେବଯାନୀ କାହିଁକି କାନ୍ଦିବ? କ'ଣ ସେଇ ପୁରୁଣା ସ୍ମୃତିକୁ ମନେପକାଇ ? ନା, ଏହା କଦାପି ହୋଇପାରିବନାହିଁ। ଗୋଟିଏ ବିଶାଳ ରାଜ୍ୟର ମହାରାଣୀ କାହିଁକି ଜଣେ ସାମାନ୍ୟ ଋଷି ଆଗରେ ଏତେ କାକୁତି ମିନତି କରିବ ? ନା, ଯା' ସେ କେବେ କରିବାକୁ ଯିବନାହିଁ।

ମୋତେ ଜଣାଗଲା କଚ୍ ମୋ ସହିତ ସାକ୍ଷାତ୍ ନକରି ହସ୍ତିନାପୁରରୁ ଲେଉଟିଯିବ। ତେଣୁ ମୁଁ ଅଷ୍ଟମ ଦିନରେ ଆଉ କଚ୍‌ର ସ୍ୱାଗତ ସମ୍ବର୍ଦ୍ଧନା ଲାଗି କୌଣସି ଆୟୋଜନ କଲିନାହିଁ। କିନ୍ତୁ ଅକସ୍ମାତ୍ ସେଇଦିନ ଆସି ସେ ପହଞ୍ଚିଗଲା। ତା' ସମ୍ବର୍ଦ୍ଧନା ଲାଗି ମୋତେ କେତେ ଧାଁ-ଦୌଡ଼ କରିବାକୁ ପଡ଼ିଲା। ସେବକମାନେ ଦୌଡ଼ିଯାଇ ତା' ପାଇଁ ସ୍ୱତନ୍ତ୍ରଭାବରେ ନିର୍ମିତ ଆସନଟି ନେଇଆସିବାବେଳକୁ ସେ ନିଜ ମୃଗଛାଲଖଣ୍ଡିକ ପକାଇ ତଳେ ବସିପଡ଼ିଥିଲା। ମୁଁ ତାକୁ ଉଚ୍ଚ ଆସନରେ ବସିବାକୁ ଯେତେ ଅନୁରୋଧ କଲି, ସେ ଆଦୌ ବସିଲା ନାହିଁ; ବରଂ ହସି ହସି ମନାକରିଦେଲା; ସତେ ଅବା ତା' ଦୃଷ୍ଟିରେ ସେ ସ୍ୱର୍ଣ୍ଣସିଂହାସନର କୌଣସି ମୂଲ୍ୟ ନାହିଁ। କିନ୍ତୁ ମୁଁ ଦେଖାଇଦେବାକୁ ଚାହୁଁଥିଲି ମୋର ଐଶ୍ୱର୍ଯ୍ୟ।

ମୁଁ ତାର ବ୍ୟବହାରରେ ମନେ ମନେ ରାଗିଗଲି। ତଥାପି ମୁହଁରେ ହସ ଫୁଟାଇ କହିଲି, ''କଚ୍‌ଦେବ, ଆସନ ଉପରେ ଆପଣଙ୍କୁ ନିଶ୍ଚୟ ବସିବାକୁ ପଡ଼ିବ।''

—''କାହିଁକି . . . ?''

—''କାରଣ . . . ଅଭ୍ୟର୍ଥନାକାରୀଙ୍କ ଗୃହରେ ଅତିଥିକୁ ଯାହା କରିବାକୁ ପଡ଼େ . . . ।''

—''ମୁଁ ତ ଏଠାରେ ଆଦୌ ଅତିଥି ନୁହେଁ!''

—''ଏ ଧାରଣା ଆପଣଙ୍କ ମନରେ କାହିଁକି ଜାତହେଲା ? ଯଜ୍ଞକୁ ନିମନ୍ତ୍ରିତ ହୋଇଥିବା ଜଣେ ଶ୍ରେଷ୍ଠ ଅତିଥି ଆପଣ !''

—''ନିଜ ଘରେ କେହି କ'ଣ ଅତିଥି ହୋଇପାରେ ?''

—''ଏହାକୁ କ'ଣ ଆପଣ ନିଜ ଘର ବୋଲି ମନେକରୁଛନ୍ତି ?''

—''ନିଶ୍ଚୟ! ଏହା ମୋର ଘର। ଭଉଣୀଘରେ ଭାଇ କ'ଣ ଅତିଥି ହୋଇପାରେ ଦେବଯାନି! ତୁମ ଘରେ ମୁଁ ଆଦୌ ଅତିଥି ନୁହେଁ। ଏଠାରେ ମୋ ମନରେ କୌଣସି ସଙ୍କୋଚ୍ ଜାତହେଉନାହିଁ। ନିଜ ଘରେ ଆମେ ଏଠିସେଠି ବସିଯାଉନଥାଇଁ କି? ସେଇପରି ମୁଁ ଏଠାରେ . . . !'' କହୁ କହୁ ସେ ହଠାତ୍ ନୀରବ ହୋଇଯାଇ କେବଳ ହସିଦେଲା। ମୁଁ ତା'ର ଉତ୍ତରରେ ତା' ମୁହଁ ବନ୍ଦକରିଦେବା ଲାଗି କହିଲି, ''ଭଉଣୀର ଜିଦ୍ ମାନି ନେବା କ'ଣ ଭାଇର ଉଚିତ ନୁହେଁ କି ?''

ସେ ଆସନ ଆଡ଼କୁ ଚାହିଁ କହିଲା, ''ଏ ସୁନ୍ଦର ଆସନ ଉପରେ ବସିପଡ଼ିଲେ ମୋ ଦେହରେ କଣ୍ଟା ଫୋଡ଼ିହୋଇଯିବ ନାହିଁ; ତଥାପି ମୁଁ ଜୀବନରେ ଗୋଟିଏ ନିୟମ ପାଳନ କରୁଛି, ତାକୁ ଭାଙ୍ଗିବି କାହିଁକି ?''

—''କ'ଣ ଆପଣଙ୍କ ନିୟମ ଶୁଣେ !''

—''ଦେଖିବାକୁ ଗଲେ ସେମିତି କିଛି ନୁହେଁ। ଦେଖ, ମୃଗଛାଲଉପରେ ଶୋଇପଡ଼ିଲେ ଯଦି ନିଦ ଆସିଯାଉଛି, ତା'ହେଲେ ପଲଙ୍କରେ ବିଛଣା ସଜାଇ ଲାଭ କଅଣ ? ଫଳମୂଳ ଖାଇ ଯଦି ସବୁଦିନେ ପେଟ ପୂରିଯାଉଛି, ତେବେ ଦିନେଅଧେ ସୁସ୍ୱାଦୁ ଖାଦ୍ୟ ଦେଇ ଜିଭର ଲାଳସା ବଢ଼ାଇବା କ'ଣ ଦରକାର ? ଦେବଯାନି! ମନୁଷ୍ୟର ଜିହ୍ୱା ହେଉଛି ଅତ୍ୟନ୍ତ ମନ୍ଦ; କେବଳ ସେ କଟୁଭାଷଣ କରୁଥିବାରୁ ମୁଁ ଏହା କହୁନାହିଁ; କିନ୍ତୁ ଦିନେ ତାକୁ ସୁଆଦିଆ ଖାଦ୍ୟ ମିଳିଗଲେ ସେ ପ୍ରତିଦିନ ସେଇ ଖାଦ୍ୟ ଖାଇବା ପାଇଁ ଇଚ୍ଛାକରେ, ଏହାହିଁ ହେଉଛି ତା'ର ସବୁଠାରୁ ବଡ଼ ଦୁର୍ଗୁଣ।

ଜିଭ, ନାକ, କାନ ଓ ଆଖିର ଏଇ ଦୁର୍ଗୁଣସବୁ ପୂରଣ କରିବାଲାଗି ମନୁଷ୍ୟକୁ ଅନେକ କୁ-କୃତ୍ୟ କରିବାକୁ ପଡ଼େ; ପାପପଥରେ ଅଗ୍ରସର ହେବାକୁ ପଡ଼େ। ଆଜି ତୁମର ଏଇ ସୁନ୍ଦର ଆସନ ଉପରେ ମୁଁ ବସିଯିବି; କିନ୍ତୁ ପୁଣି କାଲି ଜଙ୍ଗଲରେ ତପସ୍ୟା କରୁଥିବା ସମୟରେ ଯଦି ଏଇ ଆସନର ଚିନ୍ତା ମୋ ମନରେ... ।''

ତା' କଥାର ତୀବ୍ର ଉତ୍ତର ଦେଇ ମୁଁ କହିଲି, ''ତା'ହେଲେ ମୁଁ ମହାରାଣୀ ଭାବରେ ଏ ଯେଉଁ ବସ୍ତ୍ର-ଅଳଙ୍କାରସବୁ ପିନ୍ଧିଛି, ସେଗୁଡ଼ିକୁ ଧାରଣ କରିବା ଆଦୌ ଉଚିତ ନୁହେଁ ?''

''ନା... ନା... ତୁମ କଥା ଅଲଗା। ତୁମେ ଗୃହିଣୀ, ଘରକରଣା ତୁମର ଧର୍ମ। ମୁଁ ସନ୍ନ୍ୟାସୀ, ତ୍ୟାଗ ହିଁ ମୋର ମାର୍ଗ। ଗୃହସ୍ଥ-ଧର୍ମରେ ଉପଭୋଗ ଅଧର୍ମ ବୋଲି ଆଦୌ ମନେକରାଯାଏନାହିଁ; କିନ୍ତୁ ସନ୍ନ୍ୟାସ-ଧର୍ମରେ ଉପଭୋଗ ଏକ ଅକ୍ଷମ୍ୟ ଅପରାଧ।''

ମୃଗଛାଲ ଉପରେ ବସିରହିବାଲାଗି ସେ ତା'ର ଜିଦ୍ ପୂରଣକଲା। ତା'ପରେ କିଛି ଫଳାହାର କରି ସେ ସୁବର୍ଣ୍ଣଥାଳୀରେ ଥୁଆହୋଇଥିବା ତା'ର ପ୍ରିୟ ପୁଷ୍ପର ମାଳାଆଡ଼କୁ କିଛି ସମୟ ଚାହିଁ କହିଲା– ''ଜଣାପଡୁଛି, ଏପର୍ଯ୍ୟନ୍ତ ତୁମେ ମୋର ଅଭିରୁଚିଗୁଡ଼ିକ ଆଦୌ ଭୁଲିନାହଁ। ଯା'ହେଉ, ମହାରାଣୀ ପଦର ଗୁରୁଦାୟିତ୍ୱ ପାଳନ କରିବା ମଧ୍ୟରେ ତୁମେ ଯେ ଗୋଟିଏ ସାମାନ୍ୟ କଥାକୁ ମନେରଖିପାରିଛ, ଏଥିଲାଗି ... ।''

''ଆପଣଙ୍କୁ ଜୀବନରେ ଭୁଲିପାରିନାହିଁ, ତେଣୁ ଏତେ ସମ୍ମାନର ସହିତ ଏ ଯଜ୍ଞକୁ ଆମନ୍ତ୍ରଣ କରିଥିଲି।''

''ମୁଁ ତୁମକୁ ଅଭିଶାପ ଦେଇ ଚାଲିଯାଇଥିଲି; ତଥାପି ତୁମେ ମୋତେ ଭୁଲିନପାରି ଯଜ୍ଞଲାଗି ନିମନ୍ତ୍ରଣ କରିଛ। ଯା'ହେଉ, ମୋର ମହାଭାଗ୍ୟ ଯେ, ମୋତେ ଏପରି ଗୋଟିଏ ଉଦାରମନା ଭଉଣୀ ମିଳିଛି। କ୍ରୋଧର ବଶବର୍ତ୍ତୀ ହୋଇ ମୁଁ ତୁମକୁ ଅଭିଶାପ ଦେଇଥିଲି; ପ୍ରକୃତରେ ମୋର ଘୋର ଅପରାଧ ହୋଇଛି। ସେ ପ୍ରକାର କୃତ୍ୟ ଗୋଟିଏ ଋଷିକୁମାର ପକ୍ଷରେ ଉଚିତ ନୁହେ, ଗୋଟିଏ ଭାଇ ପକ୍ଷରେ ଏକାବେଳକେ ଅଶୋଭନୀୟ। ସେ ଅପରାଧ ଲାଗି ମୁଁ ତୁମକୁ ଅନ୍ତରର ସହିତ କ୍ଷମାମାଗୁଛି।'' ଏହା କହୁ କହୁ ସେ ହାତ ଯୋଡ଼ିଦେଲା। ତାର ମୁଖଭଙ୍ଗୀ ଅତ୍ୟନ୍ତ ଶାନ୍ତ ତଥା ଗମ୍ଭୀର ହୋଇଉଠିଲା। ମୋ'ରି କକ୍ଷରେ ବସି ମୋତେ ହାତଯୋଡ଼ି କ୍ଷମାମାଗିବା ନିତାନ୍ତ ଅଡୁଆ ଅଡୁଆ ଲାଗିଲା। ସେତେବେଳେ ମୋର କର୍ତ୍ତବ୍ୟ କ'ଣ ମୁଁ ଆଦୌ ସ୍ଥିର କରିପାରିଲି ନାହିଁ। ଆଶ୍ରମରେ ଥିବାବେଳେ ସେ ଏପରି କରିଥିଲେ ମୁଁ ଦୌଡ଼ିଯାଇ ତା'ର ହାତ ଦୁଇଟିକୁ ଧରିପକାଇ କହିଥା'ନ୍ତି; ଯାଃ ... କ'ଣ ବା କହିଥାନ୍ତି ?

କିନ୍ତୁ ମୁଁ ମହାରାଜ ଯଯାତିଙ୍କର ପତ୍ନୀ, କଚ ଜଣେ ପରପୁରୁଷ; ମୁଁ ହସ୍ତିନାର ରାଣୀ, କଚ ଜଣେ ସାମାନ୍ୟ ସନ୍ନ୍ୟାସୀ। ତେଣୁ ଏପରି ଅବସ୍ଥାରେ ମୋର କିଛି କରିବାର ନଥିଲା। ମୁଁ ଏପରି ଏକ ଅଡୁଆ ଅବସ୍ଥାରେ ପଡ଼ିଥିବାର ସେ ଅନୁଭବ କରି କହିଲା, ''ମୋତେ କ୍ଷମା କରିଦେଲ ତ ?'' ମୁଁ ମୁହଁ ତଳକୁ ପୋତି 'ହଁ' କହିଦେଲି। କିନ୍ତୁ ହଠାତ୍ ମୋ ମନରେ ପ୍ରଶ୍ନ ଉଠିଲା, ଏସବୁ ଯା'ର ଗୋଟିଏ ଅଭିନୟ ନୁହେଁ ତ ? ଦେବଯାନୀ ପ୍ରତି ଯଦି ଯା' ମନରେ ଏତେ ସ୍ନେହ ଥିଲା, ତା' ଆଗରେ କ୍ଷମା ମାଗିବା ଯଦି ଏହାର ପ୍ରକୃତ ଉଦ୍ଦେଶ୍ୟ ଥିଲା,

ତେବେ ଏତେ ଦିନ ସେ ମୋ କକ୍ଷରେ ପାଦ ପକାଉନଥିଲା କାହିଁକି ? ତା'ପରେ ମୁଁ ହସି ହସି ପଚାରିଲି – "କଚ୍‌ଦେବ, ଆପଣ ଏତେ ଦିନ ହେଲା ହସ୍ତିନାପୁର ଆସିଲେଣି, ତଥାପି ମୋ ଘରକୁ ଆସୁ ନ ଥିଲେ କାହିଁକି ? ମୁଁ ଭାବୁଥିଲି, ଭାଇ ତା'ର ଭଉଣୀକୁ ଭୁଲିଯାଇନାହିଁ ତ ?"

"ଧନୀ ଭାଇ ହୁଏତ ତା'ର ଗରିବ ଭଉଣୀଟିକୁ ଭୁଲିଯାଇପାରେ; କିନ୍ତୁ ଗରିବ ଭାଇ ତା'ର ଧନୀ ଭଉଣୀକୁ ଭୁଲିଯିବ କିପରି ?"

"ତା'ହେଲେ କଅଣ ରାଜମହଲକୁ ଆସିବାଲାଗି ରାସ୍ତା ଭୁଲିଯାଇଥିଲେ କି ?"

"ନା . . . ନା . . . ମୁଁ ଅନ୍ୟ ଅନୁସନ୍ଧାନରେ ବ୍ରତୀ ଥିଲି ।"

"କଅଣ ଟିକିଏ ଶୁଣେ . . . ।"

"ରାଜଅନ୍ତଃପୁରର ସ୍ୱାମିନୀଙ୍କର ହୃଦୟ ଜାଣିବାଲାଗି ମୁଁ ମାର୍ଗର ଅନୁସନ୍ଧାନ କରୁଥିଲି ।"

ଏ କଥାର ଅର୍ଥ ମୁଁ ଆଦୌ ବୁଝିପାରିଲିନାହିଁ। ନିରୁପାୟ ହୋଇ ପଥହରା ପଥିକ ପରି ମନେ ମନେ ଅନେକ ସନ୍ତାପ ଅନୁଭବ କଲି । କଚ୍‌କୁ ନୀରବ ଥିବାର ଲକ୍ଷ୍ୟକରି ମୁଁ ମନେ ମନେ ଭାବିଲି, ମହାରାଜ ମୋ ବିଷୟରେ କିଛି ପଚାରିଦେଇନାହାନ୍ତି ତ ? ମୋ ଆଚରଣ ବିଷୟରେ କିଛି ଯା'ଙ୍କ ଆଗରେ କହିନାହାନ୍ତି ତ ? ହୁଏତ ସେଇଥିଲାଗି ଏ ମୋତେ କିଛି ଉପଦେଶ ଦେବାକୁ ଆସିଛି ।

ସେ ଶାନ୍ତସ୍ୱରରେ କହିଲା – "ମୁଁ ତୁମକୁ ଗୋଟିଏ କିଛି ମାଗିବାକୁ ଆସିଛି ।"

ମୋ ମନ ସନ୍ଦେହରେ ପୂରିଗଲା। କ'ଣ ଉତ୍ତର ଦେବି କିଛି ସ୍ଥିର କରିପାରିଲି ନାହିଁ। ତଥାପି ଦୋ'ଦୋ'ପାଞ୍ଚ ହୋଇ କହିଲି, "କ'ଣ ମାଗିବାକୁ ଚାହୁଁଛନ୍ତି ?"

"ମୋର ମାଗୁଣି . . . ତୁମେ ଶର୍ମିଷ୍ଠାକୁ ଦାସତ୍ୱରୁ ମୁକ୍ତକରିଦିଅ ।"

କ୍ରୋଧରେ ମୋର ସର୍ବାଙ୍ଗ ନିଆଁହୋଇଗଲା । ମୁଁ ଉତ୍ତେଜନାପୂର୍ଣ୍ଣ ସ୍ୱରରେ କହିଲି, "ତାକୁ ମୁକ୍ତ କରିଦେଇ କ'ଣ କରିବି . . . ମହାରାଣୀ ? ମୋ ସ୍ଥାନରେ ତାକୁ ବସାଇଦେବି ନା ମୋ ସଉତୁଣୀ କରି ନିଜ ଛାତିରେ ବସି ମୁଗ ରଗଡ଼ି ତା'ର ଦାସୀପଣେ ଖଟିବି ?"

ମୋର କ୍ରୋଧପୂର୍ଣ୍ଣ ଉତ୍ତରରେ ସେ ଆଦୌ ବିଚଳିତ ହେଲାନାହିଁ। ତା'ର ମୁଖମଣ୍ଡଳରୁ ପ୍ରଶାନ୍ତି ଝରିପଡୁଥିଲା । ସେ ଶାନ୍ତ ସ୍ୱରରେ କହିଲା, "କ୍ରୋଧବଶରେ ତୁମେ ଜିଦ୍ ଧରିଥିଲ, ଏଥିରେ ଅବା ତୁମର ଦୋଷ କ'ଣ ? ଦୁନିଆରେ କିଏ ବା କ୍ରୋଧକୁ ଜୟକରିଛି ? କିନ୍ତୁ ସବୁବେଳେ ସେହି କ୍ରୋଧର ଖିଆଲରେ ଭାସିଯିବା ବଡ଼ପଣିଆ ନୁହେଁ; ଆତ୍ମଚିନ୍ତନ ଫଳରେ ମନୋବିକାର ଉପରେ ବିଜୟଲାଭ କରିବାରେ ହିଁ ଶ୍ରେଷ୍ଠ ମନୁଷ୍ୟତ୍ୱ ।"

ମୋତେ କିଛି ଉତ୍ତର ନଦେବାର ଲକ୍ଷ୍ୟକରି ସେ କହିଲା – "ଦେବଯାନି ! କ୍ଷଣକଲାଗି ତୁମେ କଳ୍ପନା କରି ଦେଖ, ଶର୍ମିଷ୍ଠା ଯଦି ତୁମ ସ୍ଥାନରେ ଥାଆନ୍ତା ଓ ତୁମେ ତା' ସ୍ଥାନରେ ଥାଆନ୍ତ . . ."

ତିରସ୍କାରପୂର୍ଣ୍ଣ ସ୍ୱରରେ ମୁଁ କହଲି, "ମୁଁ . . . ? ଦାସୀ ହୋଇଥାଆନ୍ତି . . . ? ମୁଁ ଦାସୀ ହେବି . . . ? ଏ . . . ଇ . . . ଶର୍ମିଷ୍ଠାଟାର ?"

ସେ ପୁଣି ପୂର୍ବପରି ଶାନ୍ତ ତଥା ସଂଯତ ସ୍ୱରରେ ଉତ୍ତରଦେଲା– "ଭାଗ୍ୟର ଗତି ବିଚିତ୍ର ତଥା ଅତ୍ୟନ୍ତ ନିର୍ମମ, ଦେବଯାନି! ଆକାଶର ଉଲ୍‌କା ଚାହୁଁ ଚାହୁଁ ତଳକୁ ଖସିଆସି ପଥରରେ ପରିଣତ ହୁଏ। ଭାଗ୍ୟ ଉପରେ ଭରସା ନାହିଁ; କିଏ କେତେବେଳେ ଦାସୀ ହୋଇଯିବ, କିଏ କେତେବେଳେ ମହାରାଣୀ ହୋଇ ବସିବ।"

"ମୁଁ ଏ ସବୁ ପ୍ରସଙ୍ଗ ବେଶ୍ ଭଲଭାବରେ ହୃଦୟଙ୍ଗମ କରିଛି କଚ୍‌ଦେବ!"

"ତୁମ ମନରେ କଷ୍ଟ ଦେବାଭଳି କୌଣସି କଥା ମୋ ମୁହଁରୁ ଯଦି ବାହାରିଯାଇଥାଏ ତେବେ ମୋତେ କ୍ଷମାଦିଅ। ଏ ଦୁନିଆରେ କାହାରି ଦୁଃଖ ବୁଝିବାକୁ ହେଲେ କେବଳ ଗୋଟିଏ ମାର୍ଗ ରହିଛି; ତା' ହେଉଛି, ତା' ସ୍ଥାନରେ ନିଜକୁ ବସାଇ ଚିନ୍ତାକରିବା। ଗତ କେତେଦିନ ହେଲା ଏହିପରି ଭାବରେ ମୁଁ ଶର୍ମିଷ୍ଠାର ଦୁଃଖ ବୁଝିବାଲାଗି ଚେଷ୍ଟାକରୁଥିଲି। ଆଜି ପର୍ଯ୍ୟନ୍ତ କଚ ଦେବଯାନୀକୁ କିଛି ମାଗିନାହିଁ। ଭାବିଥିଲି ତୁମେ ନିଜ ଭାଇଟାକୁ ବୋଧହୁଏ ଏତିକି ଭିକ୍ଷା . . .।"

ଯୁକ୍ତିରେ କଚ୍‌କୁ ଜିଣିବା ଅସମ୍ଭବ; ମୁଁ ଏହା ଭଲଭାବରେ ଜାଣିଥିଲି। ମୁଁ ତେଣୁ ଅଝୁଣୀ, କାଲୁଣୀ ତଥା ମୂକ ହୋଇ ବସିରହିଲି। କହୁ କହୁ ନୀରବ ହୋଇଯାଇ, ମୋ'ରି ଆଡ଼କୁ କରୁଣାପୂର୍ଣ୍ଣ ଦୃଷ୍ଟିରେ ସେ ଚାହିଁରହିଲା। ତା'ର ଦୃଷ୍ଟି ସହିତ ଦୃଷ୍ଟି ମିଳାଇ ଚାହିଁବା ମୋ ପକ୍ଷରେ ନିତାନ୍ତ ଅସମ୍ଭବ ହୋଇଉଠିଲା। ତା' ଦୃଷ୍ଟିରେ ନଥିଲା କଠୋରତା, ନିରାଶଭାବ କିମ୍ବା କରୁଣତା। ନା . . . ସେ ଦୃଷ୍ଟିରେ କିଛିହେଲେ ଭାବ ଫୁଟି ଉଠୁନଥିଲା। ମୋତେ ଜଣାପଡ଼ିଲା, ସତେ ଅବା ସାରା ଦୁନିଆର ସମସ୍ତ ମନ୍ତ୍ରଶକ୍ତି ତା' ଚାହାଣିରେ ଠୁଳହୋଇ ରହିଛି। ପିଲାଦିନେ ଶୁଣିଥିଲି, ଅଜଗରର ଦୃଷ୍ଟିଶକ୍ତିରେ ମଣିଷ ନିଶ୍ଚଳ ହୋଇ ରହିଯାଏ। କଚ୍‌ର ଦୃଷ୍ଟି ଠିକ୍ ସେହିପରି ମୋତେ ଜଣାଗଲା।

ତା' ସହିତ ଯୁକ୍ତିକରିବାଲାଗି ମୁଁ ମୋର ସମସ୍ତ ଶକ୍ତି ଓ ସାହସ ମନେ ମନେ ଠୁଳକରି ଭାବିଲି, ପିତାଙ୍କ ଯଜ୍ଞରେ ବିଘ୍ନ ଘଟାଇବାଲାଗି ଏଇ କଚ ଯତିକୁ ସଙ୍ଗରେ ଧରି ଆସିଥିଲା। ଓଃ. . . କେଡ଼େ ଅମଙ୍ଗୁଳିଆଟେ ଏ କଚ! ସେ ସମ୍ବନ୍ଧରେ ଗୋଟିଏ ହେଲେ ଶବ୍ଦ ଏ ମୁହଁରୁ ବାହାରକରୁନାହିଁ! ଆଖିକୁ ଝଲସାଇ ଦେଲାପରି ମୋର ରାଜବୈଭବ ଦେଖିବା ପରେ ମଧ୍ୟ ସେ ବିଷୟରେ ପଦେ ହେଲେ ମୋର ପ୍ରଶଂସାତ୍ମକ ବାକ୍ୟ ମୁହଁରୁ ବାହାରକଲାନାହିଁ। କେବଳ ଶର୍ମିଷ୍ଠାର ଦୁଃଖ ଯା'କୁ ତରଳାଇଦେଇ ପାରିଛି! ଏ ମୋହିନୀ ଶକ୍ତିରେ ଦେବଯାନୀ ନିଜକୁ ଭସାଇଦେବନାହିଁ। ମୋ ହୃଦୟରେ ତୀବ୍ର ଆଘାତ ଦେବାଲାଗି ମୋ'ରି କକ୍ଷରେ ବସି ଉପଦେଶ ଝାଡୁଛି! ନା . . . ନା . . . ଦେବଯାନୀ କିଛି ଶୁଣିବନାହିଁ। ତା'ର ମନ ଅନୁସାରେ ମୁଁ କେବେହେଲେ ଭିକ୍ଷା ଦେବିନାହିଁ।

ତା' ଆଡ଼କୁ ଟିକିଏହେଲେ ନ ଚାହିଁ ମୁଁ ମହଲର ବାହାରକୁ ଯିବାଲାଗି ଉଠି ଛିଡ଼ାହେଲି। କଚ ମଧ୍ୟ ଉଠି ଛିଡ଼ାହୋଇପଡ଼ି ଶାନ୍ତ ସଂଯତ ସ୍ୱରରେ କହିଲା, "ମହାରାଣୀ, ମୁଁ କାଲି ଭୃଗୁ ପର୍ବତକୁ ଚାଲିଯିବି। ସେଠାରେ ନିରୋଳାରେ ଭଜନ ପୂଜନରେ ବସିଯିବାଲାଗି ମୁଁ ନିଶ୍ଚୟ କରିଛି। ଏପର୍ଯ୍ୟନ୍ତ ମୁଁ ପରିପୂର୍ଣ୍ଣତା ଲାଭକରିନାହିଁ। ହୁଏତ, ମୋ'ର ତପସ୍ୟା ଫଳରେ ସଂସାରର କିଛି ଦୁଃଖ ଦୂରହୋଇପାରେ! ସଂସାରକୁ ଟିକିଏହେଲେ ଶାନ୍ତି . . .।"

ତା'ର କଥା ଶେଷ ହେବା ପୂର୍ବରୁ ମୁଁ ନମସ୍କାର ଜଣାଇଦେଲି। ସେ ମଧ୍ୟ ଆଶୀର୍ବାଦ ଦେଇ କହିଲା– "ପୁଣି ଆମର ଭେଟ କେବେ ହେବ ସେଇ ଆଦିଶକ୍ତି ଜାଣନ୍ତି। ମୋ ଅନ୍ତରର କାମନା; ଆଦ୍ୟାଶକ୍ତି ମହାରାଣୀଙ୍କୁ ସୁବୁଦ୍ଧି ଦିଅନ୍ତୁ, ଦେବଯାନୀଙ୍କୁ ଜୀବନରେ ସୁଖୀ କରାନ୍ତୁ।"

× × × ×

ଶାଶୂ କଚ୍ ସହିତ ଭୃଗୁ ପର୍ବତକୁ ଚାଲିଯିବାଲାଗି ସ୍ଥିରକରିଥିବା ପରଦିନ ଖବର ମିଳିଲା। ଏ ସମ୍ବାଦ ଶୁଣି ମହାରାଜ ଆଶ୍ଚର୍ଯ୍ୟ ହୋଇଗଲେ। ସେ ଯାଇ ମାଆଙ୍କୁ ଯେତେ ପ୍ରକାର ବୁଝାଇଲେ, ସେ ଆଦୌ ବୁଝିଲେନାହିଁ। ଶେଷକୁ ନାତିର ମୁହଁ ଦେଖି ତାକୁ ଆଶୀର୍ବାଦ ଦେଇ ଯିବାଲାଗି ବୁଝାଇଲେ। ବିବାହ ପରେ ମହାରାଜ ମାଆଙ୍କ ସହିତ ମନ ଖୋଲି କଥାବାର୍ତ୍ତା ହେଉଥିବାର ମୁଁ କେବେହେଲେ ଦେଖିନଥିଲି। କିନ୍ତୁ ତାଙ୍କର ବାନପ୍ରସ୍ଥଯାତ୍ରା ଲାଗି ଅଟଳ ପ୍ରତିଜ୍ଞା ଜାଣି ଛୋଟପିଲାଙ୍କ ପରି କଇଁକଇଁ ହୋଇ କାନ୍ଦିଉଠିଲେ। ମୁଁ ଭାବିଥିଲି– ବୋଧହୁଏ, ମହାରାଜଙ୍କ ଆଖିରେ ଲୁହ ଦେଖି ମାଆଙ୍କ ହୃଦୟ ତରଳିଯିବ; ବହୂର ଦାଉ ସହିନପାରି ଶାଶୂ ବନବାସକଲେ, ଏ ଅପବାଦରୁ ମୋତେ ତ୍ରାହିମିଳିବ। ମୁଁ ମଧ୍ୟ ମହାରାଜଙ୍କ ସହିତ ମିଶି ଅନେକ କାକୁତି-ମିନତି କଲି। କିନ୍ତୁ ସେ ଗୋଟିଏ ମାତ୍ର ଉତ୍ତରଦେଲେ, "ରୋଗୀକୁ ଯଦି ଖାଇବା ପିଇବା ଅରୁଚିକର ହୋଇଯାଏ, ତାକୁ ଜୋର୍ କରି ଖୁଆଇଲେ ତା'ଦେହ ଅଧିକ ଖରାପ ହେବ ସିନା, ଆଉ କିଛି ଲାଭ ନାହିଁ। ମୋ ମନ ଗୃହସ୍ଥାଶ୍ରମରୁ ଏକାବେଳକେ ଛାଡ଼ିଗଲାଣି। ମୁଁ ଆଉ ଏଠାରେ ରହିବିନାହିଁ।"

ଶାଶୂ ଅଶୋକବନରୁ ବାନପ୍ରସ୍ଥରେ ଚାଲିଗଲେ। ଯିବା ପୂର୍ବରୁ ମୋତେ ଡାକି କହିଲେ, "ମାଆ! ମୋ ମନରେ ଆଉ କୌଣସି ଉଦ୍ଦେଶ୍ୟ ନାହିଁ; କିନ୍ତୁ ଯଯୁର ଚିନ୍ତା କେବଳ ଘାରୁଛି। ତା'ର ମନ ଠିକ୍ ଗୋଟିଏ ଛୋଟପିଲାପରି। ସେ ଯେତିକି ସରଳ, ସେତିକି ଜିଦ୍‌ଖୋର। ହେଉ, ଛାଡ଼ ସେ ସବୁ କଥା। କେବଳ ମୋର ଅନୁଭବପୂର୍ଣ୍ଣ ଜୀବନର କେତୋଟି ଉପଦେଶ ଶୁଣ। ନାରୀ କେବଳ ନିଜ ସ୍ୱାମୀର ସଫଳ ପତ୍ନୀ ହେଲେ ତା' ଜୀବନର ପରିପୂର୍ଣ୍ଣତା ଆସେନାହିଁ, ତାକୁ ଅନେକ ସମୟରେ ସହଚରୀ, ଭଗ୍ନୀ, କନ୍ୟା ସାଜିବାକୁ ପଡ଼େ। ଆବଶ୍ୟକୀୟ ପରିସ୍ଥିତିରେ ମାଆ ଭୂମିକାରେ ମଧ୍ୟ ଅବତୀର୍ଣ୍ଣ ହେବାକୁ ପଡ଼ିଥାଏ।"

ତାଙ୍କର ଏ କଥାଗୁଡ଼ିକ ମୋତେ ରହସ୍ୟପୂର୍ଣ୍ଣ ପରି ବୋଧହେଲା। କାରଣ ଯିବାପୂର୍ବରୁ ମହାରାଜଙ୍କ ସହିତ ତାଙ୍କର ଗୋପନରେ କେତେକ କଥାବାର୍ତ୍ତା ହୋଇଥିଲା। ମୋର ସେ ବୁଢ଼ୀ ଦାସୀଟି ଲୁଚି ଲୁଚି ସବୁଯାକ ଆଲୋଚନା ଶୁଣି ମୋତେ କହିଥିଲା; ତେଣୁ ତାଙ୍କର ଏ ଉପଦେଶ ମୋତେ ଗୋଟିଏ ନାଟକୀୟ ଅଭିନୟ ପରି ବୋଧହେଲା। ମାଆ ଓ ମହାରାଜଙ୍କ ମଧ୍ୟରେ ଯେଉଁ ଆଲୋଚନା ଚାଲିଥିଲା ତାହା ମୁଁ ଅବିକଳ ଶୁଣିଥିଲି। ସେ ମହାରାଜଙ୍କୁ ସାବଧାନ ହୋଇ ରହିବାଲାଗି କହିଥିଲେ–

"ଦେଖ ବାପା, ମୋ' ନାତି ଜନ୍ମହେଲେ ମୋତେ ଖବର ଦେବୁ; ତା' ନାମ କ'ଣ ରଖିଲୁ ମୋତେ ଜଣାଇବୁ। ତା' ନାଆଁ ଯଦି ତୁ ତୋ' ବାପାଙ୍କ

ନାମ ଅନୁସାରେ ଦେବୁ, ତା'ହେଲେ ମୁଁ ଖୁବ୍ ଖୁସିହେବି। ମୋ ସାଥିରେ ଟିକିଏ ବଗିଚାକୁ ଯିବୁ ?''

– ''କାହିଁକି ?''

– ''ତୋତେ ଗୋଟିଏ ଗଛ ଚିହ୍ନାଇ ଦେଇ ଯିବି।''

– ''ସେ କ'ଣ କୌଣସି ଔଷଧ ଗଛ କି ?''

– ''ହଁ . . . !''

– ''ତା'ହେଲେ ରାଜବୈଦ୍ୟଙ୍କୁ ଚିହ୍ନାଇ ଦେଇ ଯାଅ, ମୁଁ ଜାଣି କ'ଣ କରିବି ?''

– ''ନା . . . ରାଜବୈଦ୍ୟଙ୍କୁ ଦେଖାଇହେବନାହିଁ।''

– ''କାରଣ . . . ?''

– ''ସେ ଔଷଧ ନିଜେ ବ୍ୟବହାର କରିବ କିମ୍ବା କାହାରିକୁ ଦେଇହେବ।''

– ''କେଉଁ ରୋଗର ଔଷଧ କି . . . ?''

– ''ସେ ରୋଗର କିଛି ନାମ ନାହିଁ। ଯେତେବେଳେ ମଣିଷର ଜୀବନ ଅତ୍ୟନ୍ତ ଭାରାକ୍ରାନ୍ତ ହୋଇଉଠିବ କିମ୍ବା ଅନ୍ୟ କାହାରିକୁ . . . ! କିନ୍ତୁ . . . ବାପା, ତୋତେ ଯଦି ଶର୍ମିଷ୍ଠାଭଳି ପତ୍ନୀଟିଏ ମିଳିଯାଆନ୍ତା; ତା'ହେଲେ ମୁଁ ନିଶ୍ଚିନ୍ତହୋଇ ବନକୁ ଯାଇଥାନ୍ତି।''

ସେ ଶାଶୂ ଯେମିତି, ଏ କଚ ମଧ ଠିକ୍ ସେମିତି; ଦୁହେଁଯାକ ଏକାପରି। ସେ ଯିବା ସମୟରେ ଶର୍ମିଷ୍ଠା ଉଦ୍ଦେଶ୍ୟରେ ଖଣ୍ଡିଏ ପତ୍ର ଲେଖି ମହାରାଜଙ୍କୁ ଦେଇଯାଇଛି। ସେ ମୋ' ବିଷୟରେ ମହାରାଜଙ୍କ ମନ କଳୁଷିତ କଲାଭଳି କିଛି ଲେଖିନାହିଁ ତ ? ପତ୍ରଟିକୁ ପାଠକରି ମହାରାଜ ଅନେକ ସମୟ ଚିନ୍ତାରେ ବୁଡ଼ିରହିଲେ। ଆଉ ସେ କ'ଣ ଲେଖିପାରେ ? ହୁଏତ, ଶର୍ମିଷ୍ଠାକୁ ଦାସୀପଦରୁ ମୁକ୍ତିଦେବାଲାଗି ସେ ମହାରାଜଙ୍କ ଉପରେ ପ୍ରଭାବ ପକାଇଥିବ। କିନ୍ତୁ ସେ କପଟୀଟା ଜାଣିନି ଯେ, ଶର୍ମିଷ୍ଠା ମହାରାଜଙ୍କର ଦାସୀ ନୁହେଁ, ମୋର ଦାସୀ। ତା' ଉପରେ କେବଳ ମୋ'ର ଅଧିକାର ରହିଛି। ଶେଷକୁ ମୁଁ ମହାରାଜଙ୍କୁ ସାହସ କରି ପଚାରିଦେଲି – ''ସେ ପତ୍ରରେ କ'ଣ ଲେଖାଥିଲା କି ?''

ମହାରାଜ ପତ୍ରଟିକୁ ମୋ ହାତରେ ଧରାଇଦେଇ କହିଲେ – ''ନା . . . ସେମିତି କିଛି ବିଶେଷ ସନ୍ଦେଶ ନାହିଁ ଏଥିରେ। କିନ୍ତୁ ମୁଁ ଭାବୁଛି, ଈଶ୍ୱର ଭଲା ମୋତେ କଚ ପରି ଜଣେ ସାଧୁ ସନ୍ନ୍ୟାସୀ କରି ଜନ୍ମଦେଇଥାଆନ୍ତେ।''

ତାଙ୍କ କାନ୍ଧ ଉପରେ ମୁଣ୍ଡ ରଖି ମୁଁ କହିଲି, ''ଈଶ୍ୱର ଅତି ଚିନ୍ତାଶୀଳ ନିଶ୍ଚୟ; ତାଙ୍କ ମନରେ ପୁଣି ଦେବଯାନୀର ଦାୟିତ୍ୱ ରହିଛି ତ ?''

ସେ ହସି ହସି କହିଲେ – ''ଏ କଥା ତୁମେ କାହିଁକି କହୁଛ ?''

''ଆପଣ ଋଷିଟିଏ ହୋଇଥିଲେ, ମୁଁ କେବଳ ଋଷିପତ୍ନୀଟିଏ ସାଜିଥାଆନ୍ତି। ଆଉ ମୋର ଅବସ୍ଥା . . .।''

ମୋର ଅଳରା କେଶଗୁଚ୍ଛକୁ ହାତରେ ସଜାଡ଼ିଦେଇ କହିଲେ ମହାରାଜ, ''ଦେବଯାନି ! ଯଯାତିର ପତ୍ନୀ ହୋଇ ତୁମେ କ'ଣ ସୁଖୀ ହୋଇପାରିଛ ?'' ମୁଁ ଲାଜରେ ଝାଉଁଳିପଡ଼ି କେବଳ ଛୋଟ ହଁ ଟିଏ ମାରିଦେଲି। ସେ ପୁଣି ପଚାରିଲେ, ''ପୂର୍ଣ୍ଣମାତ୍ରାରେ ସୁଖୀ

ଅନୁଭବ କରୁଛ?'' ମୁଁ ଆଉ ଥରେ ହଁ ମାରି ମୋର ସମ୍ମତି ଜଣାଇ ଧୀରେ ମୁହଁ ଉପରକୁ ଉଠାଇ ତାଙ୍କୁ ଚାହିଁଲି। କ୍ଷଣକାଳଲାଗି ତାଙ୍କ ମୁଖମଣ୍ଡଳରେ ପ୍ରଫୁଲ୍ଲତାର ନିର୍ମଳ ଆଭା ଛାଇହୋଇଗଲା। ପ୍ରକୃତରେ ଶାଶୂ ଯାହା କହିଥିଲେ, ମହାରାଜଙ୍କ ହୃଦୟ ଗୋଟିଏ କୋମଳମତି ବାଳକର ହୃଦୟ ପରି କୋମଳ ଓ ସରଳ।

ତା'ପରେ ମୁଁ କଚ୍‌ର ପତ୍ରଟି ପଢ଼ିବସିଲି। ସେ ଲେଖିଥିଲା – ''ଆମେ ବହୁଦିନ ପରେ ପରସ୍ପରକୁ ଭେଟିଲେ। ମହାରାଜ ଯଯାତିଙ୍କ ସହିତ ଆଲୋଚନା କରିବା ସମୟରେ ମୋତେ ବୋଧହେଲା, ମୁଁ ଅଙ୍ଗୀରସଙ୍କ ଆଶ୍ରମରେ ଯୁବରାଜ ଯଯାତିଙ୍କ ସହିତ କଥାବର୍ତ୍ତା କରୁଛି। ତେଣୁ ମୋ ମନରେ ଅତ୍ୟନ୍ତ ଆନନ୍ଦ ଜାତହେଲା। ପ୍ରିୟ ତଥା ପରିଚିତ ବ୍ୟକ୍ତି ସହିତ ସାକ୍ଷାତ୍ ଓ ତାଙ୍କ ସହିତ ହୃଦୟଖୋଲା ଆଲୋଚନା କେବଳ ବ୍ୟାବହାରିକତା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ନୁହେଁ; ଆତ୍ମିକତା ଦୃଷ୍ଟିରୁ ତାହା ସମ୍ବେଦନଶୀଳ ହୋଇଥାଏ। ଏପରି ଅବସ୍ଥାରେ ଘଡ଼ିଏ ଲାଗି ହେଉନା କାହିଁକି, ଆତ୍ମାନନ୍ଦ ସୁଖ ଅନୁଭବ କରିହୁଏ। ଏହି ଆତ୍ମାନନ୍ଦର ପ୍ରାପ୍ତିଲାଗି ମୁନିଋଷିମାନେ ଜୀବନବ୍ୟାପୀ ତପସ୍ୟାରେ ମଗ୍ନ ରହିଥାଆନ୍ତି। ଆପଣଙ୍କ ସହିତ ସାକ୍ଷାତ୍ ଫଳରେ ମୋତେ ଯେଉଁ ଆନନ୍ଦ ଓ ଶାନ୍ତି ମିଳିଛି, ସେ ସ୍ମୃତିକୁ ମୁଁ ସାରା ଜୀବନ ସାଇତିରଖିବି।

''ମୋର ଗୋଟିଏ ବିଶେଷ ପ୍ରାର୍ଥନା; ଆପଣ ଦୁହେଁ ମୋତେ ସେଦିନ ରାଜସଭାରେ ଯତିକୁ ନେଇ ଘଟିଥିବା ଅଘଟଣଲାଗି କ୍ଷମାଦେବେ। ଏଠାକୁ ଆସିବା ପର୍ଯ୍ୟନ୍ତ ମୁଁ ଯତି ବିଷୟରେ କିଛିହେଲେ ଜାଣିନଥିଲି। ତୀର୍ଥଯାତ୍ରାରୁ ଫେରିବା ବାଟରେ ତା'ର ଦୁରବସ୍ଥା ଦେଖି ମୁଁ ତାକୁ ସଙ୍ଗରେ ଆଣିଥିଲି। ଜଣେ ଅପରିଚିତ ତଥା ବୁଦ୍ଧିଭ୍ରଷ୍ଟ ସନ୍ନ୍ୟାସୀ ପ୍ରତି ମୋ ମନରେ ଦୟା ଜାତହେଲା। ତେଣୁ ତାର ଦୁର୍ଗତି ମୁଁ ଆଖିରେ ଦେଖି ସହ୍ୟ କରିପାରିଲିନାହିଁ। ସେ ଧୀରେ ଧୀରେ ମୋ ଉପରେ ବିଶ୍ୱାସକଲା। ସେପରି ଅବସ୍ଥାରେ ତାକୁ ରାଜସଭାକୁ ନେବା ମୋର ଉଚିତ ହୋଇନାହିଁ। ଏହି ସମୟରେ ମନ୍ତ୍ରୀଙ୍କଦ୍ୱାରା ମହାରାଣୀଙ୍କୁ ଜରୁରୀ ଡାକରା ଆସି ପହଞ୍ଚିଲା। ମୁଁ ଭାବିଲି, ଭିତରେ ଅନେକ ମୁନିଋଷି ଥିବେ; ସେମାନଙ୍କୁ ଦେଖି ଯତିର ମନ ଲାଗିଯିବ, ସେ ଚୁପ୍‌ଚାପ୍ ସେଠାରେ ବସିରହିବ।

''କିନ୍ତୁ ସେଠାରେ ଯାହା କିଛି ଘଟିଗଲା, ତା' ମୋର ଧାରଣାର ଅତୀତ। ମୋ'ରି ପାଇଁ ଆପଣଙ୍କର ଏଡ଼େ ବଡ଼ ଆୟୋଜନ ତଥା ଆନନ୍ଦଜନକ ସମାରୋହରେ ବାଧା ଉପସ୍ଥିତ ହେଲା। ବୋଧହୁଏ ଅନେକ ସ୍ତ୍ରୀ ପୁରୁଷ ତଥା ସାଂସାରିକ ଚାଲିଚଳଣ ଦେଖି ଯତିର ପାଗଳାମୀ ବଢ଼ିଗଲା ଏବଂ ଆଉ ମଧ ହଠାତ୍ ତା'ର ଅନ୍ତର୍ଦ୍ଧାନ ଫଳରେ ରାଜମାତାଙ୍କ ମନରେ ଅଶେଷ ଦୁଃଖ ଜାତହେଲା। ମୋ ଅଜ୍ଞାତସାରରେ ହେଲେ ମଧ, ମୋ'ରି ପାଇଁ ଆପଣମାନଙ୍କୁ କେତେ ଦୁଃଖ ସହିବାକୁ ନପଡ଼ିଲା? ମୁଁ ଜାଣେ, ସ୍ନେହ କ୍ଷମାଶୀଳ; ତେଣୁ ମୁଁ ଆପଣ ଦୁହିଁଙ୍କଠାରୁ କ୍ଷମାମାଗିନେଉଛି।

''ମୁଁ ପ୍ରଥମେ ଯତି ସମ୍ବନ୍ଧରେ ଆପଣଙ୍କଠାରୁ ଶୁଣିଲି। ତା'ର ଏ ଦଶା ପ୍ରକୃତରେ ହୃଦୟସ୍ପର୍ଶୀ। ପିଲାଦିନରୁ ଈଶ୍ୱରଙ୍କ ସନ୍ଧାନରେ ସେ ଘରଦ୍ୱାର ଛାଡ଼ି ଯାଇଥିଲା; କିନ୍ତୁ ଯୌବନରେ ସେ ନିଜର ମନୁଷ୍ୟତ୍ୱ ହରାଇବସିଛି। ତା'ର ଏ ଅବସ୍ଥା କାହିଁକି ହେଲା, ମୁଁ ସେ ସମ୍ବନ୍ଧରେ ଅନେକ ଚିନ୍ତାକରିଛି। ବୋଧହୁଏ ତା'ର

ଏଇ ଅବସ୍ଥାର ମୂଳରେ ରହିଛି ନିଃସଙ୍ଗ ଜୀବନ ତଥା ତ୍ରୁଟିପୂର୍ଣ୍ଣ ବିଚାରଧାରା। ଆମର ଏଇ ଜୀବନ, ଶରୀର ଓ ଆତ୍ମା ସ୍ତ୍ରୀ ପୁରୁଷ ଆଦି କେତେଗୁଡ଼ିଏ ଦ୍ୱନ୍ଦ୍ୱାତ୍ମକ ଭିତ୍ତି ଉପରେ ପ୍ରତିଷ୍ଠିତ। ମାନବ ମନର ଆଦିମ ଆଭିଜାତ୍ୟ ବିରୁଦ୍ଧରେ ଯତି ବିଦ୍ରୋହ ଆରମ୍ଭ କରିଦେଇଛି। ଏଭଳି ବିଦ୍ରୋହ ସଫଳ ହେବ ବା କିପରି? ନିଜର ଗୋଡ଼ ଦୁଇଟିକୁ କାଟିଦେଇ ଏ ଦୁନିଆରେ କିଏ ଅବା ଚାଲିପାରିବ? କିମ୍ବା ନିଜ ଆଖିକୁ ଫୁଟାଇଦେଇ କିଏ ଦେଖିପାରିବ?

''ଏ ସଂସାରରେ ଅଗଣିତ ଦ୍ୱନ୍ଦ୍ୱାତ୍ମକ ଭାବଧାରା ରହିଛି। ଅବଶ୍ୟ ଏକଥା ସତ୍ୟ ଯେ ଗୋଟିଏ ସନ୍ନ୍ୟାସୀ ନିର୍ଦ୍ୱନ୍ଦ୍ୱ ଅବସ୍ଥାରେ ହିଁ ବ୍ରହ୍ମାନନ୍ଦ-ସୁଖ ପାଇପାରେ। ସେଇଥିପାଇଁ ସେ ଅନେକ ପରିଶ୍ରମ ମଧ୍ୟ କରିଥାଏ। କେବଳ ସେହି ବ୍ରହ୍ମାନନ୍ଦ-ସୁଖ ପାଇବାଲାଗି ସେ ଅନେକ ପ୍ରକାର ଯମ ନିୟମ ପ୍ରଭୃତିର ପାଳନରେ ବ୍ରତୀ ହୁଏ। ତା' ସତ୍ତ୍ୱେ ସେ ଜୀବନର ଦ୍ୱନ୍ଦ୍ୱକୁ ସ୍ୱୀକାର କରେ। ଆତ୍ମା ଶରୀର ଧାରଣକରି ଆମ ଆଗରେ ଗୋଚର ହେବାମାତ୍ରେ 'ଆତ୍ମା'ର ଅସ୍ତିତ୍ୱ ସମ୍ବନ୍ଧରେ ଆମର ଆଉ ସନ୍ଦେହ ରହେନାହିଁ। ସ୍ତ୍ରୀ ଦଶମାସ କାଳ ଗର୍ଭଧାରଣ ନକଲେ ମନୁଷ୍ୟର ସୃଷ୍ଟି ସମ୍ଭବ ହେବ କିପରି? ଏହା ସବୁ ଅତ୍ୟନ୍ତ ସରଳ ତଥା ଶାଶ୍ୱତ ବିଷୟ। ପ୍ରତ୍ୟେକ ମନୁଷ୍ୟ ଏହି ସତ୍ୟକୁ ମାନି ସଂସାରରେ ଚଳୁଛି, ନିଜକୁ ପ୍ରାକୃତିକ ଜଗତର ଗୋଟିଏ ଅଂଶ ବୋଲି ମାନିନେଉଛି।

''ଯତି କେବଳ ପ୍ରକୃତିର ଅଧିକାରକୁ ନୁହେଁ, ପରନ୍ତୁ ପ୍ରକୃତିର ଅସ୍ତିତ୍ୱକୁ ଅସ୍ୱୀକାର କରୁଛି। ଏହା ତା' ଜୀବନର ଏକ ବିରାଟ ଭୁଲ୍। ମଣିଷ କେବଳ ପ୍ରକୃତିଦ୍ୱାରା ସୃଷ୍ଟ ନୁହେଁ, ପ୍ରକୃତିର ନିୟମରେ ପରିଚାଳିତ ମଧ୍ୟ। ଏହି ଶରୀର ମାଧ୍ୟମରେ ହିଁ ତାର ଅନ୍ତର୍ନିହିତ ଆତ୍ମାର ବିକାଶ ସମ୍ଭବ ହୋଇପାରେ। ମନୁଷ୍ୟ ତା'ର ଆତ୍ମିକ ଶକ୍ତି ବଳରେ ପ୍ରକୃତି ଉପରେ ଅଧିକାର ସାବ୍ୟସ୍ତ କରିପାରେ। ଏହି ଦୃଷ୍ଟିରୁ ବିଚାରକଲେ, ବିକଶିତ ମନୁଷ୍ୟ ପ୍ରକୃତିଠାରୁ ଅତି ମହାନ୍। କିନ୍ତୁ ପ୍ରକୃତି ବିରୁଦ୍ଧରେ ଯାଇ କିମ୍ବା ତା'ର ଅସ୍ତିତ୍ୱକୁ ଅସ୍ୱୀକାର କରି, ସେ ଆତ୍ମିକ ଶକ୍ତିକୁ କେବେହେଲେ ଉନ୍ନତ କରିପାରିବନାହିଁ। ଜୀବନ କହିଲେ କେବଳ ଆତ୍ମା କିମ୍ବା ଶରୀର ବୋଲି ମାନିନେଲେ ତାହା ଏକାବେଳକେ ଅନ୍ଧାନୁକରଣ ବା ବିଭ୍ରାନ୍ତିକର ଧାରଣା ବୋଲି ଜାଣିବାକୁହେବ। ଏପ୍ରକାର ସାରହୀନ କଳ୍ପନା ଫଳରେ ମନୁଷ୍ୟର ମାନସିକ ସ୍ଥିତି ବିକୃତ ହୋଇଯାଏ, ସେ ନିଜର ସର୍ବନାଶ କରିବସେ।

''ପ୍ରକୃତି ଓ ପରମାତ୍ମାଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ସେତୁ ହେଉଛି ମଣିଷ। ପରମାତ୍ମା ହେଉଛନ୍ତି ଦ୍ୱନ୍ଦ୍ୱାତୀତ। ପ୍ରକୃତି ଦ୍ୱନ୍ଦ୍ୱର ସୀମାରେଖା ମଧ୍ୟ ସ୍ପର୍ଶ କରେନାହିଁ। ମନୁଷ୍ୟ କେବଳ ଦ୍ୱନ୍ଦ୍ୱର ପରିକଳ୍ପନା କରିପାରେ। ଯେଉଁ ନଦୀ ମଣିଷର ତୃଷା ନିବାରଣ କରିପାରେ, ସେହି ନଦୀର ଗଭୀରତମ ପ୍ରଦେଶକୁ ପ୍ରବେଶକଲେ ମଣିଷ ପ୍ରାଣ ହରାଇଥାଏ। ଜୀବନରେ ଦ୍ୱନ୍ଦ୍ୱର ଆଭାସ କେବଳ ମଣିଷର ମନମଧ୍ୟରେ ଜାତହୋଇଥାଏ। ବିକଶିତ ଅବସ୍ଥାର ପ୍ରତ୍ୟେକ ସ୍ତରରେ ଏହି ଜ୍ଞାନ ସୂକ୍ଷ୍ମ ତଥା ବ୍ୟାପକ ହୋଇଯାଏ। ମଣିଷ ମନରେ ବଞ୍ଚିରହିବାଲାଗି ଯେଉଁ ଅଦମ୍ୟ ଇଚ୍ଛା ଜାତହୁଏ, ତାହା ପ୍ରକୃତିର ଶ୍ରେଷ୍ଠ ଅବଦାନ। କିନ୍ତୁ ମଣିଷ କେବଳ ନିପଟ ପଶୁ ହୋଇ ବଞ୍ଚିବାକୁ ଚାହେଁନାହିଁ।

ତେଣୁ ସେ ସ୍ୱାଭାବିକ ଢଙ୍ଗରେ ଭଲ ମନ୍ଦ ବିଚାରକରିଥାଏ। କିନ୍ତୁ ପ୍ରକୃତି ଧର୍ମ ଓ ଅଧର୍ମ ମଧ୍ୟରେ ଭେଦ ଦେଖେନାହିଁ, ଏହା କେବଳମାତ୍ର ମଣିଷ ପକ୍ଷରେ ସମ୍ଭବ। କୌଣସି ଗୋଟିଏ ମାଆର ଏକମାତ୍ର ସନ୍ତାନକୁ ବୁଡ଼ାଇ ମାରିଦେବାଲାଗି ନଦୀ କେବେହେଲେ ଦ୍ୱିଧା ବୋଧକରେନାହିଁ। କିନ୍ତୁ କୂଳରେ ବସିଥିବା ମଣିଷ କେବଳ ବଞ୍ଚିରହିବାଲାଗି ସେଠାରେ ନିଷ୍କ୍ରିୟ ହୋଇ ବସିବା ଅପେକ୍ଷା ନିଜ ଜୀବନକୁ ବିପଦାପନ୍ନ କରାଇ ପିଲାଟିକୁ ବଞ୍ଚାଇଦେବାପାଇଁ ଚେଷ୍ଟାକରେ।

''ନା ... ଏତେଗୁଡ଼ିଏ ଲେଖିସାରିବା ପରେ ମୁଁ ଆପଣଙ୍କୁ ଯାହା ବୁଝାଇବାକୁ ଯାଉଛି ତାହା ସ୍ପଷ୍ଟ ହୋଇପାରିଲା ନାହିଁ। ଦେଖନ୍ତୁ, କେଡ଼େ ଅପୂର୍ଣ୍ଣ ମୋର ଚିନ୍ତାଧାରା ! ସତ୍ୟର ଅନୁସନ୍ଧାନରେ ବାହାରିଥିବା ମୁଁ ଗୋଟିଏ ଯାତ୍ରୀ; କିନ୍ତୁ ବୋଧହୁଏ ଆହୁରି ଅନେକ ଦୂର ମୋତେ ଚାଲିବାକୁ ପଡ଼ିବ।

''ଆପଣଙ୍କ ସହିତ ଆଲୋଚନା ପ୍ରସଙ୍ଗରେ ମୁଁ ଅନେକ ଥର 'ଆତ୍ମା' ଶବ୍ଦ ପ୍ରୟୋଗ କରିଛି। ଆପଣ ଥରେଅଧେ ମୋତେ ହସି ହସି ପଚାରିଛନ୍ତି— 'ଏ ଆତ୍ମାର ଅବସ୍ଥାନ କେଉଁଠି?' ସେ ସମୟରେ ମୁଁ ଆପଣଙ୍କ ମନରେ ଉଠିଥିବା ସନ୍ଦେହର ନିରାକରଣ କରିପାରିନାହିଁ। କିନ୍ତୁ ମୋର ଅନୁରୋଧ, ଆମ ପୂର୍ବାଚାର୍ଯ୍ୟଙ୍କଦ୍ୱାରା କଳ୍ପିତ ଶରୀର ସମ୍ବନ୍ଧୀୟ ରୂପକଟିର ସ୍ମରଣକରନ୍ତୁ। ମାନବ ଜୀବନରେ ଆତ୍ମା ରଥୀ, ଶରୀର ରଥ ବୁଦ୍ଧି ସାରଥି; ମନ ତା'ର ଲଗାମ ଏବଂ ପଞ୍ଚେନ୍ଦ୍ରିୟ ତା'ର ଘୋଟକ। ଉପଭୋଗର ପ୍ରତ୍ୟେକ ବିଷୟ ବା ପଦାର୍ଥ ତା'ର ମାର୍ଗ। ଇନ୍ଦ୍ରିୟ ତଥା ମନଯୁକ୍ତ ଆତ୍ମା ତା'ର ଉପଭୋକ୍ତା। ଯଦି ରଥ ନ ରହେ, ତେବେ ଧନୁର୍ଦ୍ଧର-ରଥୀ ବସିବ କେଉଁଠି ? ରଥ ଉପରେ ଆରୋହଣ ନ କଲେ ସେ ଶୀଘ୍ର କିପରି ସମରଭୂମିରେ ପଦାର୍ପଣ କରିବ ଏବଂ ଶତ୍ରୁର ମାର୍ଗରୋଧକରି ସେ ଯୁଦ୍ଧ କରିବ କିପରି ? ତେଣୁ ଶରୀରରୂପୀ ସେହି ରଥଟିକୁ କେବେହେଲେ ନ୍ୟୂନ ବୋଲି ମନେକରିବା ଉଚିତ ନୁହେ। ଯତିଦ୍ୱାରା ଏହି ଅକ୍ଷମଣୀୟ ଭୁଲ ହୋଇଯାଇଛି।

''ଇନ୍ଦ୍ରିୟମାନେ ଏହି ଶରୀରରୂପୀ ରଥର ଘୋଡ଼ା ହୋଇଥିବାରୁ, ଏମାନଙ୍କ ବ୍ୟତୀତ ତିଳେହେଲେ ରଥ ଚାଲିପାରିବ ନାହିଁ। ସେହିପରି କେବଳ ରଥରେ ଘୋଡ଼ା ଯୋଚିଦେଲେ ତାହା ଘୋଡ଼ାମାନଙ୍କର ଇଚ୍ଛାରେ ଚାଲିପାରିବନାହିଁ। ସେପରି ଭାବରେ ଚାଲିବାକୁ ଆରମ୍ଭକଲେ, ହୁଏତ ଘୋଡ଼ାମାନେ ଧାଁ-ଦଉଡ଼ କରି ରଥଟିକୁ ଖାଲ-ଢିପରେ ପକାଇଦେବେ। ପରିଶେଷରେ ରଥଟି ଗଭୀର ଗର୍ତ୍ତମଧ୍ୟରେ ପଡ଼ି ଖଣ୍ଡ ଖଣ୍ଡ ହୋଇଯିବ। ତେଣୁ ଇନ୍ଦ୍ରିୟରୂପୀ ଘୋଡ଼ାମାନଙ୍କ ଗତିର ନିୟନ୍ତ୍ରଣ ଲାଗି ମନରୂପକ ଲଗାମର ବନ୍ଧନ ରହିବା ଏକାନ୍ତ ଆବଶ୍ୟକ। ଆହୁରି ମଧ୍ୟ ସେହି ଲଗାମଟି ସାରଥି ହାତରେ ରହିବା ଉଚିତ; ଅନ୍ୟଥା ଲଗାମ ରହିବା ନରହିବାରେ ବିଶେଷ କିଛି ପାର୍ଥକ୍ୟ ରହିବନାହିଁ। ଏଣୁ ମନ ଉପରେ ବୁଦ୍ଧିର ନିୟନ୍ତ୍ରଣ ଏକାନ୍ତ ଜରୁରୀ। ବୁଦ୍ଧି ଓ ମନ ଦୁହେଁ ମିଶି ଶରୀରରୂପୀ ରଥଟିକୁ ସୁସଂଯତ ରୂପେ ଚଳାଇନେବାକୁ ସମର୍ଥ ହୁଅନ୍ତି। ଏପରିଭାବରେ ତାକୁ ଚଳାଇଲେ ରଥଟି ଚାଲିବ ସତ; କିନ୍ତୁ ସେଥିରେ ଯଦି ରଥୀ ନ ବସନ୍ତି ତେବେ ସେ ଯିବ କୁଆଡ଼େ ? ତା'ର କାର୍ଯ୍ୟ କ'ଣ ହେବ ? ତେଣୁ ପ୍ରତ୍ୟେକ ମନୁଷ୍ୟଠାରେ ବିରାଜମାନ, ଆପଣ ତଥା ମୋ ମଧ୍ୟରେ 'ଅହଂ'

ରୂପରେ ସର୍ବଦା ଜାଗ୍ରତ ଯେଉଁ ଐଶ୍ୱରୀୟ ଅଂଶ ରହିଛି, ତାହାହିଁ ହେଉଛି ଆତ୍ମା; ଏହି ଶରୀରରୂପୀ ରଥର ରଥୀ ବା ଯୋଦ୍ଧା।

"ମୁଁ ଯା' ମଧ୍ୟରେ ଖୁବ୍ ଲମ୍ବା ପତ୍ରଟିଏ ଲେଖିଗଲିଣି। ଅବଶ୍ୟ ମୋ ପରି ଯୋଗୀଧର୍ମରେ ବିଶ୍ୱାସ ରଖିଥିବା ଲୋକମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ଆନନ୍ଦଦାୟକ ହୋଇପାରେ; କିନ୍ତୁ ଅନ୍ୟମାନଙ୍କ ପକ୍ଷରେ ଏହା କେବଳ ବାବଦୂକତା ବ୍ୟତୀତ ଅନ୍ୟ କ'ଣ ହୋଇପାରେ? ବିଶେଷତଃ ଆପଣମାନଙ୍କ ପକ୍ଷରେ ଏସବୁ ଦାର୍ଶନିକ-ଚର୍ଚ୍ଚାର ଆବଶ୍ୟକତା ବା କ'ଣ? ରାଜଧର୍ମ ଓ ପତିର କର୍ତ୍ତବ୍ୟ ପାଳନ କରିବା ସମୟରେ ଆପଣଙ୍କୁ ଏବଂ ଗୃହିଣୀ ତଥା ପତ୍ନୀର କର୍ତ୍ତବ୍ୟ ସମ୍ପାଦନ କରିବାବେଳେ ମହାରାଣୀଙ୍କୁ ଯେଉଁ ନିୟମଗୁଡ଼ିକ ଅତ୍ୟନ୍ତ ସହଜ ବୋଧହୋଇଥିବ, ସେଗୁଡ଼ିକୁ ଜଟିଳ ଭାବରେ ମୁଁ ଏହି ପତ୍ରରେ ପ୍ରକାଶ କରିଛି। ଏହା ସତ୍ୟ ନୁହେଁ କି?

"ମୁଁ ଛଳନା କରି ବିନୟ ପ୍ରକାଶ କରୁନାହିଁ। ପ୍ରକୃତରେ ମୁଁ ଯେତିକି ଅନୁଭବ କରିଛି; ସେଥିରୁ ଜାଣୁଛି, ସନ୍ୟାସଧର୍ମ ଅପେକ୍ଷା ଗୃହସ୍ଥର ଧର୍ମ ପାଳନ କରିବା ବାସ୍ତବିକ କଠିନ କାର୍ଯ୍ୟ। ପ୍ରତ୍ୟେକ ମନୁଷ୍ୟର ଆତ୍ମା ଶରୀରରୂପୀ ପିଞ୍ଜରା ମଧ୍ୟରେ ଆବଦ୍ଧ ହୋଇ ପଡ଼ିରହିଛି। ଏହି ଆବଦ୍ଧ ଆତ୍ମା ସେହି ଶାଶ୍ୱତବନ୍ଧନକୁ ପୂର୍ଣ୍ଣମାତ୍ରାରେ ଭୁଲିଯାଇ, ଶରୀର ମଧ୍ୟରେ ରହିଥିଲେ ସୁଦ୍ଧା, ଅଧିକ ଚଞ୍ଚଳ ତଥା ବ୍ୟାପକ ହେବାଲାଗି ସର୍ବଦା ଚେଷ୍ଟାକରେ; ଶରୀର-ସୁଖ ଅପେକ୍ଷା ଅନ୍ୟ କୌଣସି ଉତ୍କୃଷ୍ଟଧରଣର ଆନନ୍ଦ ମାଧ୍ୟମରେ ମୁକ୍ତିର ସ୍ୱାଦୁ ପାଇବାଲାଗି ଯତ୍ନଶୀଳ ହୋଇଥାଏ। ମୁକ୍ତିଲାଗି ଆତ୍ମାର ଏହି ପ୍ରଚେଷ୍ଟା ଜଗତ୍‌ରେ ବହୁ ଭାବରେ ବ୍ୟକ୍ତହୋଇଥାଏ। ସନ୍ୟାସଧର୍ମ ଏହି ପ୍ରଚେଷ୍ଟାର ଉଗ୍ର ରୂପ ମାତ୍ର।

"ଏହାର ବିପରୀତ ଦିଗଟିକୁ ଚିନ୍ତାକଲେ ଜଣାଯାଏ ଯେ, ନାରୀ ଓ ପୁରୁଷର ପ୍ରେମ ମଧ୍ୟ ଏହି ମୁକ୍ତି ପ୍ରଚେଷ୍ଟାର ଅନ୍ୟତମ ରମଣୀୟ ସ୍ୱରୂପ। କିନ୍ତୁ ଏ ପ୍ରୀତି କେବଳ ଶାରୀରିକ ଆସକ୍ତିରେ ପର୍ଯ୍ୟବସିତ ନୁହେଁ। ଏହି ଆସକ୍ତି ଫଳରେ କେବଳ ଶାରୀରିକ ମିଳନ ସମ୍ଭବ ହୋଇଥାଏ; କିନ୍ତୁ ପ୍ରୀତିର ଆନ୍ତରିକତାରେ ହିଁ ମନର ମିଳନ ଘଟେ। ଏହାର ପରବର୍ତ୍ତୀ ଅବସ୍ଥାରେ ମଧ୍ୟ ଆତ୍ମାର ମିଳନ ସମ୍ଭବ ହୁଏ। ଆତ୍ମାର ମିଳନ ଅତ୍ୟନ୍ତ ରମଣୀୟ ମାର୍ଗ ହେଲେ ମଧ୍ୟ ଯୋଗୀମାନଙ୍କଦ୍ୱାରା ପ୍ରସ୍ତୁତ ଈଶ୍ୱରପ୍ରାପ୍ତିର କଠିନ ମାର୍ଗଠାରୁ ଏହା ଆହୁରି କଠିନତର। ଗୃହସ୍ଥଧର୍ମ ଏହିପରି ଏକ ଶ୍ରେଷ୍ଠ ଯଜ୍ଞ ବୋଲି କଥିତ ହୁଏ। ଗାର୍ହସ୍ଥ୍ୟ ଯଜ୍ଞର ସଫଳତା ଲାଗି ସର୍ବପ୍ରଥମେ ପତି ପତ୍ନୀ ଦୁହେଁ ନିଜନିଜର ଅହଙ୍କାରକୁ ହୋମକୁଣ୍ଡରେ ଆହୁତି ଦେଇଦେବା ଆବଶ୍ୟକ।

"ଦେବଯାନୀ ଖୁବ୍ ଶୀଘ୍ର ମାଆ ହେବାକୁ ଯାଉଛନ୍ତି। ମାଆର ହୃଦୟ ସଂସାରରେ ପ୍ରଚଳିତ ସମସ୍ତ ପ୍ରକାର ଦର୍ଶନର ଆଧାର। ସମସ୍ତ କାବ୍ୟର ସରସତା ମାତୃହୃଦୟରେ ପ୍ରସ୍ଫୁଟିତ ହୋଇଥାଏ। ଆପଣ ଦେବଯାନୀଙ୍କୁ କହିଦେବେ; କଚ୍ ଦିନେ ନା ଦିନେ ତା'ଙ୍କ ପୁତ୍ରକୁ ସ୍ନେହାଶିଷ ଦେବାଲାଗି ନିଶ୍ଚୟ ଆସିବ। ମୁଁ ତା'ଙ୍କ ନିମନ୍ତ୍ରଣକୁ କେବେହେଲେ ଅପେକ୍ଷା କରିବିନାହିଁ। ଯାହାହେଲେ ବି ମୁଁ ତାଙ୍କ ଭାଇ ତ? ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମରେ ମୁଁ ତାଙ୍କର ଯେଉଁ ସାନିଧ ଓ ସାହଚର୍ଯ୍ୟ ଲାଭକରିଛି, ତା' ଅଦ୍ୟାପି ମୋ ମନରେ ଅପାସୋରା ରହିଛି। ପିଲାଟି ଦିନରୁ ତାଙ୍କ ମାଆ ଇହଧାମ ତ୍ୟାଗକରିଥିଲେ;

ମୁଁ ମଧ୍ୟ ମୋ ମାଆଙ୍କୁ ମନେ ପକାଇ ପାରୁନାହିଁ। ଏ ବିଷୟରେ ଆମେ ଦୁହେଁ ସମଦୁଃଖୀ; ବୋଧହୁଏ ସେଇଥିପାଇଁ ଆମ ଦୁହିଁଙ୍କ ମଧ୍ୟରେ ଏତେ ଶୀଘ୍ର ସ୍ନେହ-ସମ୍ପର୍କ ଗଢ଼ିଉଠିଲା। କିଏ ଜାଣେ, ହୁଏତ ସୁଖ ଅପେକ୍ଷା ଦୁଃଖରେ ପଡ଼ିଲେ ମଣିଷ ମଣିଷକୁ ଚିହ୍ନିବାର ସୁଯୋଗ ପାଏ !

''ଦେଖିଲେ ତ ଆପଣ; ମୁଁ ପୁଣି ପାଗଳଙ୍କ ପରି ବକିବା ଆରମ୍ଭ କରୁଛି ! ନା... ଆଉ ନୁହେଁ; ମୁଁ ଏହିଠାରେ ମୋର ପତ୍ର ଶେଷକରୁଛି। ଆଦିଶକ୍ତି ଆପଣ ତଥା ମହାରାଣୀଙ୍କ ଉପରେ ସଦାସର୍ବଦା କୃପାଦୃଷ୍ଟି ରଖିଥାଆନ୍ତୁ...।''

ଏ ଚିଠିଟିକୁ ପଢ଼ି ମୁଁ ବିରକ୍ତ ହୋଇଗଲି। ଜଣାଗଲା, ଏ କଚ୍ ମଧ୍ୟ ଦିନେ ନା ଦିନେ ଯତିପରି ପାଗଳ ହୋଇଯାଇ ମୋ ଆଗରେ ଆସି ଛିଡ଼ାହେବ। ନା... ନା ଲୋ ମା...! ସେ ଯେତେ କଠୋର ହେଉ ପଛକେ, ତାର ଅମଙ୍ଗଳ କଳ୍ପନା ମୋ ଦ୍ୱାରା ସହ୍ୟ ହେବନାହିଁ। କିନ୍ତୁ ତା' ପତ୍ର ପଢ଼ିସାରିବା ପରେ ମୋ ପରି ଲୋକର ମନରେ ଆଉ କି ପ୍ରକାର ଧାରଣା ଅବା ଜାତହୁଅନ୍ତା ? ଆତ୍ମା, ଆତ୍ମା, ଆତ୍ମା ! ସ୍ତ୍ରୀ-ପୁରୁଷଙ୍କ ପ୍ରେମ ସମ୍ପର୍କ ମଧ୍ୟରେ ତାକୁ ଆତ୍ମାର ସନ୍ଧାନ ମିଳିପାରୁଛି। ନିଜେ ବିବାହ କରନ୍ତା କି ବେଶ୍ ବୁଝିପାରନ୍ତା; ପ୍ରେମ ମଧ୍ୟରେ କେତେ ପରିମାଣରେ ଆତ୍ମା ରହିଛି। ମଣିଷଖିଆ ବାଘ ଓ ସ୍ତ୍ରୀର ସୌନ୍ଦର୍ଯ୍ୟରେ ମୁଗ୍ଧ ପୁରୁଷଙ୍କ ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ। ଏଭଳି ପୁରୁଷ ଚାହେଁ; ଲାବଣ୍ୟ, ତାରୁଣ୍ୟ ତଥା ଶାରୀରିକ ସୁଖ; ତା' ମନରେ ଉନ୍ମାଦନା ଜାତ କରିବା ଭଳି ଅଭିଳାଷ। ବୀଣାବାଦକ ହୁଏତ ତା ବୀଣା ପ୍ରତି ମନରେ ଦୟାଭାବ ରଖେ, କିନ୍ତୁ ସୌନ୍ଦର୍ଯ୍ୟଲୋଲୁପ ବ୍ୟକ୍ତି...।

ତା'ପରେ ମହାରାଜ ମୋ'ଠାରୁ ପତ୍ରଟିକୁ ମାଗିନେଲେ; ବୋଧହୁଏ ସେ ପୁଣି ଥରେ ସେ ପତ୍ରଟିକୁ ପଢ଼ିବାଲାଗି ଚାହୁଁଥିଲେ। ମୁଁ ହସି ହସି କହିଲି, ''ଏ ପତ୍ରଟି କ'ଣ ମୋ'ଠାରୁ ସୁନ୍ଦର...?'' ମୋ ଆଡ଼କୁ ନିରୀକ୍ଷଣ କରି କହିଲେ ମହାରାଜ– ''ତୁମଠାରୁ ଅଧିକ ସୁନ୍ଦର ସୃଷ୍ଟି କରିପାରିବେ କି ନା ସେ ସମ୍ବନ୍ଧରେ ବିଧାତା ଚିନ୍ତାରେ ପଡ଼ିଥିବେ।''

''ବେଶ୍ ତ... ମୁହଁଦେଖା କଥା ପଦେ କହିଦେଲେ ମୁଁ ତୃପ୍ତ ହୋଇଗଲି...!'' ଟିକିଏ ଲାଜେଇ ଯାଇ ମୁଁ ଉତ୍ତରଦେଲି। ସେ ମୋ ଚିବୁକଟିକୁ ଧରି ମୁହଁ ଉପରକୁ ଉଠାଇ କହିଲେ, ''ସତ କହୁଛି ଦେବଯାନୀ, ତୁମେ ପ୍ରକୃତରେ ଏବେ ଖୁବ୍ ସୁନ୍ଦର ଦେଖାଯାଉଛ।''

–''ଆପଣ ଯା'ର କାରଣ ଜାଣନ୍ତି କି?''

–''ନା... ତ...!''

ତାଙ୍କ ଛାତିରେ ମୁହଁ ଲୁଚାଇ ମୁଁ କହିଲି– ''ପୁରୁଷମାନେ ପ୍ରକୃତରେ ବଡ଼ ନିର୍ବୋଧ... ଆହେ ମହାରାଜ, ମୁଁ ପରା ମାଆ ହେବାକୁ ଯାଉଛି।''

ତା'ପରେ ଯାଇ ମହାରାଜ ସବୁ କଥା ବୁଝିପାରିଲେ। ମୁଁ ମନାକଲେ ମଧ୍ୟ ମହାରାଜ ମୋ ମୁହଁ ଉପରକୁ ଉଠାଇ ଅନେକ ସମୟ ପର୍ଯ୍ୟନ୍ତ ଏକଲୟରେ ଚାହିଁ ରହି କହିଲେ– ''ଦେଖିଲ, ସ୍ତ୍ରୀମାନଙ୍କ ଉପରେ ଈଶ୍ୱରଙ୍କର କି କରୁଣା ? ପ୍ରକୃତିର ସବୁଠାରୁ ଗୋପନୀୟ ରହସ୍ୟ ସେ ଆସି ତୁମମାନଙ୍କ କାନରେ ଧୀରେ

କହିଦିଅନ୍ତି।'' ଟିକିଏ ନୀରବ ରହି ସେ ପୁଣି କହିଲେ– ''ଏବେ ତ ତୁମର ଅନେକ ପ୍ରକାର ଇଚ୍ଛା ଜାତହେବ?''

–''ଇଚ୍ଛା ହେବ କଅଣ କହୁଛନ୍ତି– ହେଲାଣି!''

–''ତୁମେ ତ ମୋତେ ଏ ପର୍ଯ୍ୟନ୍ତ କିଛି କହିନାହଁ?''

–''ଆପଣ ତ ଧାଁ-ଦୌଡ଼ରେ ବ୍ୟସ୍ତ ଥିଲେ, ମୋ ଇଚ୍ଛା ସମ୍ବନ୍ଧରେ ଆଉ କହିଥାନ୍ତି କେତେବେଳେ?''

–''ଏ କି କଥା? ତୁମେ ତୁମର ଅଭିଳାଷ ପ୍ରକାଶ କରି ଦେଖ; ତୁମ ମୁହଁରୁ କଥା ବାହାରିବା ମାତ୍ରେ ମୁଁ ସଙ୍ଗେ ସଙ୍ଗେ ପୂରଣ କରିଦେଉଛି କି ନାହିଁ ଦେଖିବ।''

–''ହେଉ, କହୁଛି– ଶୁଣନ୍ତୁ। ମୋର ପ୍ରଥମ ଇଚ୍ଛା, ଆପଣ ଏ ପତ୍ରଟିକୁ ବାରମ୍ବାର ପଢ଼ନ୍ତୁନାହିଁ।''

–''କାରଣ କ'ଣ?''

–''ଏଭଳି ପତ୍ରଟିଏ ପାଠକଲେ ଲୋକ ପାଗଳହେଇଯିବ। ମୁଁ ତା' ଅର୍ଥ ଭଲଭାବରେ ସୁଦ୍ଧା ବୁଝିପାରିଲି ନାହିଁ।''

–''କିନ୍ତୁ...''

–''କିନ୍ତୁ ଫିନ୍ତୁ ଚଳିବ ନାହିଁ। ଆପଣ ଯେଉଁ ସିନ୍ଦୁକରେ ଆପଣଙ୍କ ପିଲାଦିନର ସହଚରୀର ସୁନା କେଶଟିକୁ ରଖିଛନ୍ତି, ସେଇଥିରେ ଏ ପତ୍ରଟିକୁ ସୁରକ୍ଷିତ ଅବସ୍ଥାରେ ସାଇତିଦିଅନ୍ତୁ। ଆମେ ବୁଢ଼ା ବୁଢ଼ୀ ହୋଇଗଲେ ଯେତେ ଇଚ୍ଛା ସେତେ ଥର ଏ ପତ୍ରଟିକୁ ପାରାୟଣ କରିବେ। ମୁଁ ମାଆ ହେବାକୁ ଯାଉଛି; ମୋ ମନ ଆନନ୍ଦ ଉଲ୍ଲାସରେ ନାଚିଉଠୁଚି। ଦୁନିଆର ସମସ୍ତ ପ୍ରକାର ଭୋଗବିଳାସ ଆମର ହାତପାଆନ୍ତାରେ ରହିଛି; ସେତିକିବେଳେ ବୃଥା ଚର୍ଚ୍ଚାରେ ବେଳ କଟାଇବାକୁ...।''

ମହାରାଜ ହସି ହସି କହିଲେ, ''ଆଚ୍ଛା, ଠିକ୍ ଅଛି। ତୁମର ଅଭିଳାଷ ଅନୁସାରେ ମୁଁ କାମ କରିବାକୁ ପ୍ରସ୍ତୁତ ଅଛି।''

× × × ×

ତା'ପରେ ମାସେ ଦୁଇମାସ ବେଶ୍ ସୁଖରେ କଟିଗଲା। ମୋତେ କୌଣସି ପ୍ରକାର ଅସୁବିଧା ହେଲାନାହିଁ, କିମ୍ବା ମୋର କୌଣସି ପ୍ରକାର ଇଚ୍ଛା ଅପୂର୍ଣ୍ଣ ରହିଲାନାହିଁ। ମହାରାଜଙ୍କର ଆନନ୍ଦ କହିଲେ ନ ସରେ। ମୋର ପ୍ରତ୍ୟେକ ଅଭିଳାଷ ପୂରଣ କରିବାଲାଗି ସେ ସମସ୍ତ ପ୍ରକାର ଚେଷ୍ଟା କରୁଥିଲେ। ନଗର-ଉତ୍ସବ ଉପଲକ୍ଷେ ଅଭିନୀତ ନାଟକ ଦେଖିବାଲାଗି ଥରେ ମୁଁ ମନ ବଳାଇଲି– ମହାରାଜ ସଙ୍ଗେ ସଙ୍ଗେ ବ୍ୟବସ୍ଥା କରିଦେଲେ। ସେହି ନାଟକ ଦେଖୁଥିବା ସମୟରେ ବହୁ ପୂର୍ବର ଗୋଟିଏ ଘଟଣା ମୋର ମନେପଡ଼ିଗଲା। ମୁଁ ମହାରାଜଙ୍କୁ କହିଥିଲି, ''ଆପଣ ଋଷିବେଶରେ ସଜ୍ଜିତ ହେଲେ ଆପଣଙ୍କୁ ବେଶ୍ ମାନିବ।'' ସେ ମଧ୍ୟ ସେଦିନ କଚ୍ଚର ପତ୍ର ପଢ଼ିବା ପରେ କହିଥିଲେ, 'ମୁଁ କଚ୍ଚ ପରି ଜଣେ ତପସ୍ୱୀ ହୋଇଥାଆନ୍ତି କି!''

ମୋ ମନରେ ବାରମ୍ବାର ଏ ଧାରଣା ହେଲା, ମହାରାଜଙ୍କୁ ଋଷିବେଶ କିପରି ମାନିବ ଦେଖିବା ! କି ସୁଖଦ କଳ୍ପନା ! କିନ୍ତୁ ଏହା ଚରିତାର୍ଥ ହେବ କିପରି ? ଶେଷକୁ ମୁଁ ଗୋଟିଏ ଉପାୟ ଚିନ୍ତାକରି କହିଲି, ''ମହାରାଜ, ମନହେଉଛି; କୌଣସି ଜଣେ ଋଷି– ମହାରାଜଙ୍କ ସହିତ ଯମୁନା କୂଳରେ ଚାନ୍ଦିନୀ ରାତିରେ ଟିକିଏ ବୁଲାବୁଲି କରନ୍ତି !''

''ଚାନ୍ଦିନୀ ରାତିରେ ଯମୁନା କୂଳକୁ ଯିବା ଆଦୌ ଅସୁବିଧାଜନକ ନୁହେଁ; କିନ୍ତୁ କୌଣସି ଜଣେ ଋଷିଙ୍କ ସହିତ ବୁଲିଯିବାକୁ ତୁମର ଅଦ୍ଭୁତ ଇଚ୍ଛା ପୂରଣ କରାଯିବ କିପରି ?''

''ମହାରାଜ ! ମୁଁ ଋଷି ଆଶ୍ରମରେ ପ୍ରତିପାଳିତା କନ୍ୟା । ମହାରାଣୀ ହୋଇଗଲେ କ'ଣ ହେଲା, ଜନ୍ମ-ସଂସ୍କାରକୁ ଭୁଲିଯିବା କ'ଣ ସହଜ ?''

''କିନ୍ତୁ ଏଥିପାଇଁ ତୁମର ପରିଚିତ ଜଣେ ଋଷିଙ୍କୁ ଆଣିବା କ'ଣ ସହଜ ? ତୁମ ବାପା ତପସ୍ୟାରେ ବସିଛନ୍ତି; କଚ ମଧ୍ୟ ଏଠାରେ ନାହିଁ. . .।''

''ମୁଁ କ'ଣ ପ୍ରକୃତରେ କୌଣସି ଋଷିମହାରାଜଙ୍କ ସହିତ ବେଦାନ୍ତଚର୍ଚ୍ଚା କରିବାକୁ ଚାହୁଁଛି କି ? ଏହା ତ ମୋର ଗୋଟିଏ ପାଗଳାମି ଜିଦ୍ ବୋଲି ଜାଣନ୍ତୁ । ଆପଣ ନିଜେ ଋଷିବେଶ ଧାରଣକରି ମୋ ସହିତ ବୁଲିଗଲେ ମୋ ମନସାଧ ମେଣ୍ଟିଯିବ ।''

''ଯାଃ . . . ତୁମକୁ ଆଉ କିଛି ଥଟ୍ଟା ପରିହାସ ମିଳିଲାନି . . .।''

''ତା'ହେଲେ ମୁଁ ଜାଣୁଛି ଆପଣ ମୋତେ ଆନ୍ତରିକତାର ସହିତ ଭଲପାଉନାହାନ୍ତି !'' ମୁଁ ଅଭିମାନରେ ମୁହଁ ମୋଡ଼ି ବସିପଡ଼ିଲି । ତା'ପରେ ଦିନେ ଦୁଇଦିନ ମହାରାଜାଙ୍କ ସହିତ କଥାବାର୍ତ୍ତା କରିବା ବନ୍ଦକରିଦେଲି । ଚେଷ୍ଟାକରି ତାଙ୍କ ଆଗକୁ ଆସିଲିନାହିଁ । ମୁଁ ଏହା ପୂର୍ବରୁ ବହୁବାର ଅଙ୍ଗେ ନିଭେଇଛି ଯେ ମୁଁ ରାଗିଗଲେ କିମ୍ବା ଅଭିମାନ କରି ବସିଲେ ମହାରାଜ ଦିନେ ଦି'ଦିନ ପରେ ଆତ୍ମସମର୍ପଣ କରିଦିଅନ୍ତି, ଏଥର ତାହାହିଁ ଘଟିଲା । ସେ ମୋତେ ଅନେକ ପ୍ରକାର ବୁଝାସୁଝା କରି ବିଫଳ ହେବା ପରେ, ନିଜର ଅନିଚ୍ଛା ସତ୍ତ୍ୱେ ଋଷିବେଶ ଧାରଣ କରିବାଲାଗି ପ୍ରସ୍ତୁତ ହୋଇଗଲେ । ନଗରର ଜଣେ ପ୍ରସିଦ୍ଧ ବେଶକାରୀଙ୍କୁ ଡକାଇ ତାଙ୍କୁ ଋଷିବେଶରେ ସଜ୍ଜିତ କରିବାର ଆୟୋଜନ ମୁଁ କରିଦେଲି । ଦିନେ ଚାନ୍ଦିନୀ ରାତିରେ ମହାରାଜ ଋଷିବେଶରେ ସଜ୍ଜିତ ହୋଇ ଦଣ୍ଡକମଣ୍ଡଳୁ ହାତରେ ଧରି ମୋ ସହିତ ବାହାରିପଡ଼ିଲେ । ମୁଁ ପୂର୍ବରୁ ସାରଥିକୁ ହାତକରିନେଇଥିଲି; ନୋହିଲେ ଜଣେ ଋଷିଙ୍କ ସହିତ ମହାରାଣୀ ରଥରେ ବସି ନିଶାର୍ଦ୍ଧରେ ଯମୁନା କୂଳକୁ ଯାଉଥିବାର ଘଟଣା ତା' ମନରେ ପ୍ରତିକ୍ରିୟା ସୃଷ୍ଟିକରିଥାଆନ୍ତା ।

ଯମୁନା କୂଳରେ ବୁଲାବୁଲି କରି ଚାନ୍ଦିନୀ ରାତିର ପୂର୍ଣ୍ଣ ଆନନ୍ଦ ଉପଭୋଗ କରିବା ପରେ ମୁଁ କହିଲି– ''ମହାରାଜ, ଆଜି ଜୀବନରେ ପ୍ରଥମଥର ଲାଗି ମୁଁ ଗୋଟିଏ ବଡ଼ ଧରଣର ବିଜୟ ହାସଲ କରିଛି ।''

–''କି ବିଜୟ . . . ?''

''ଆପଣଙ୍କର ମନେଥିବ, ମୁଁ ଥରେ କହିଥିଲି, ଆପଣଙ୍କୁ ଋଷିବେଶ ଖୁବ୍ ମାନିବ . . . ଆପଣ ଉତ୍ତର ଦେଇଥିଲେ– ମୁଁ କେବେହେଲେ ଋଷିବେଶ ଧାରଣ କରିବି ନାହିଁ; କିନ୍ତୁ ଆଜି କହନ୍ତୁ, କିଏ ଜିତିଲା ?'' ତା'ପରେ ଆମେ ଦୁହେଁ

ଅନେକ ସମୟ ପର୍ଯ୍ୟନ୍ତ ମନଖୋଲି ହସି ହସି ବେଦମ୍ ହୋଇଗଲୁ ।

ଯମୁନାକୂଳରୁ ଫେରିବା ବାଟରେ ଆହୁରି କୌତୂହଳପୂର୍ଣ୍ଣ କଳ୍ପନା ମୋ ମନରେ ଜାଗିଉଠିଲା । ସେଠାରୁ ଅଶୋକବନ ଆଦୌ ବେଶି ଦୂର ନଥିଲା । ମୁଁ ଭାବିଲି, ଏ ବେଶରେ ମହାରାଜଙ୍କୁ ଶର୍ମିଷ୍ଠା କୌଣସିମତେ ଚିହ୍ନିପାରିବନାହିଁ । ତା' ସହିତ ଟିକିଏ ଥଟ୍ଟା ପରିହାସ କରିନେଲେ କ୍ଷତି କ'ଣ ? ମହାରାଜ ନା... ନା... କରୁଥିଲେ; କିନ୍ତୁ ଅଶୋକବନ ଆଡ଼କୁ ରଥ ଚଳାଇନେବାଲାଗି ମୁଁ ସାରଥିକୁ ଆଦେଶଦେଲି । ରଥ ଛିଡ଼ାହେବାମାତ୍ରେ ଦୁଇଜଣ ସେବକ ଧାଇଁ ଧାଇଁ ବାହାରକୁ ଆସିଗଲେ । ମୁଁ ସେ ଦୁହିଁଙ୍କୁ କହିଲି– "ଆଜି ଏ ମହାତ୍ମା ରାଜମହଲକୁ ଆସିଛନ୍ତି । ଶର୍ମିଷ୍ଠା ଥରେ ଏ ମହାତ୍ମାଙ୍କର ଦର୍ଶନ କରିବ, ସେଇଥିପାଇଁ ମୁଁ ତାଙ୍କୁ ଏଠାକୁ ଘେନିଆସିଛି । ଦୁଇ ଚାରି ଘଡ଼ି ପରେ ମୁଁ ପୁଣି ଯା'ଙ୍କୁ ନେବାପାଇଁ ଏଠାକୁ ଆସିବି । ଏହାଙ୍କୁ ସମ୍ମାନର ସହିତ ଭିତରକୁ ନେଇଯାଇ ଶର୍ମିଷ୍ଠା ସହିତ ସାକ୍ଷାତ କରାଇଦିଅ ।"

ମହାରାଜ 'ହଁ' 'ନା' କିଛି କହିପାରିଲେନାହିଁ । କାଳେ କେହି ତାଙ୍କୁ ଚିହ୍ନିପାରିବ, ସେ ଭୟ ମଧ୍ୟ ତାଙ୍କର ଥିଲା । ମନେ ମନେ ଛେଚ଼ିକୁଟି ହୋଇ ସେ ଭିତରକୁ ଚାଲିଗଲେ । ମୁଁ ଶର୍ମିଷ୍ଠାର ଅବସ୍ଥା ଚିନ୍ତାକରି ମନେ ମନେ ଖୁବ୍ ହସିଲି । ସେ ବିଚ଼ାରୀ ମହାରାଜଙ୍କୁ ପ୍ରକୃତ ଜଣେ ସିଦ୍ଧ ମହାତ୍ମା ବୋଲି ମନେକରି ଖୁବ୍ ସେବା ଅଭ୍ୟର୍ଥନା କରିବ । ପରେ କେବେ ଦିନେ ତାକୁ ପ୍ରକୃତ ରହସ୍ୟ ବତାଇଦେଲେ ସେ କେଡ଼େ ଲଜ୍ଜିତା ନହେବ ?

ଦୁଇ ଚାରି ଘଡ଼ି ପରେ ମୁଁ ଆସି ମହାରାଜାଙ୍କୁ ଅଶୋକବନରୁ ଘେନିଆସିଲି । ରାଜମହଲକୁ ଫେରିବା ବାଟରେ ମହାରାଜ କହିଲେ, "ଦି' ଚାରି ଘଡ଼ି ଋଷିବେଶରେ ସଜ୍ଜିତ ହୋଇଥିଲେ ମଧ୍ୟ ମୋତେ କେତେ କଷ୍ଟ ସହିବାକୁ ପଡ଼ିଲା ତୁମେ ଆଦୌ ଧାରଣା କରିପାରିବ ନାହିଁ । ନିଜର ଛଦ୍ମବେଶକୁ ଲୁଚାଇରଖିବାଲାଗି ମୋତେ ଯେତେ ସାବଧାନ ହେବାକୁ ପଡ଼ିଛି, ଈଶ୍ୱର ଜାଣନ୍ତି... । ଆଜି ମୁଁ ବେଶ୍ ବୁଝିପାରୁଛି; ସମୁଦ୍ର-ମନ୍ଥନ ସମୟରେ ବିଷ୍ଣୁଙ୍କର ମୋହିନୀମୂର୍ତ୍ତି ଧାରଣକରିବା କେଡ଼େ କଷ୍ଟକର କାମ ହୋଇନଥିବ !"

ମୁଁ ପରିହାସମିଶା ସ୍ୱରରେ କହିଲି, "ଆମ ଋଷିମହାରାଜ ଶର୍ମିଷ୍ଠାକୁ କିଛି ଆଶୀର୍ବାଦ ଦେଲେ କି ନାହିଁ?"

"ନଦିଅନ୍ତି କିପରି ? ଋଷି ଭୂମିକାରେ ଅଭିନୟ କରୁଥିଲି ତ; ବେଶ୍ ଲୋଭାଣିଆ ଆଶୀର୍ବାଦ ନଦେଇ ଛାଡ଼ିଛି ?"

"ସେ ତ ଗୋଟିଏ ସାମାନ୍ୟ ଦାସୀ– ତାକୁ ପୁଣି ଆପଣ କି ଆଶୀର୍ବାଦ ଦେଲେ କହନ୍ତୁତ ?"

"ଗୋଟିଏ କୁମାରୀ କନ୍ୟାକୁ ସାଧାରଣତଃ ମହର୍ଷିମାନେ ଯେପରି ଆଶୀର୍ବାଦ ଦିଅନ୍ତି– "ମନୋରଥ ସିଦ୍ଧିରସ୍ତୁ, ଅନୁରୂପ ବରପ୍ରାପ୍ତିରସ୍ତୁ !"

ମହାରାଜଙ୍କ ଆଶୀର୍ବାଦ ଶୁଣି ମନେ ମନେ ଖୁବ୍ ହସିଲି । ମହାରାଜଙ୍କ ବରଦାନ ଫଳରେ ତାକୁ ଆଉ କି ବର ମିଳିବ ? ଅଶୋକବନର କେଉଁ ସେବକ ସହିତ ଗୁପ୍ତପ୍ରଣୟରେ ଲିପ୍ତ ରହି ଶେଷରେ ତାକୁ ବିବାହ କରିବ ।

× × × ×

ବାପାଙ୍କ ଗୁହାପ୍ରବେଶର ପ୍ରଥମ ତିନିମାସ ଶେଷହୋଇଆସିଲା । ତାଙ୍କୁ ଦର୍ଶନ କରିବାର ଦିନ ପାଖେଇ ଆସିଲା । ମୁଁ ସେଠାକୁ ଯିବାଲାଗି ପ୍ରସ୍ତୁତ ହୋଇଗଲି । ମହାରାଜ ବାରମ୍ବାର ବାଧାଦେଇ ଏତେ ଦୂର ବାଟ ନଯିବାଲାଗି ପ୍ରବର୍ତ୍ତାଉଥିଲେ, କିନ୍ତୁ ବାପାଙ୍କୁ ଦେଖିବାଲାଗି ମୁଁ ବିଶେଷ ତତ୍ପର ହୋଇଉଠିଥିଲି; ନଯାଇ ରହିଥାନ୍ତି କିପରି ? ମୁଁ ନିର୍ଦ୍ଦିଷ୍ଟ ଦିନରେ ସେଠାରେ ପହଞ୍ଚି, ବାପାଙ୍କୁ ଦେଖି ଖୁବ୍ ଖୁସିହେଲି । କିନ୍ତୁ ଦୂର ପଥ ଅତିକ୍ରମ କରିବା ଫଳରେ ମୁଁ ଅସୁସ୍ଥ ହୋଇ ମହାରାଜଙ୍କଠାରୁ ଦୀର୍ଘଦିନ ଦୂରରେ ରହିଲି ।

ଏହା ମଧ୍ୟରେ ଚାହୁଁ ଚାହୁଁ ସମୟ ବିତିଗଲା । ମୁଁ ଯଥାସମୟରେ 'ମାଆ' ହୋଇଗଲି; ମୋ କୋଳରେ ପୁତ୍ରରତ୍ନଟିଏ ଜାତହେଲା । କେବଳ ନଗରରେ ନୁହେଁ, ସମଗ୍ର ରାଜ୍ୟରେ ଉତ୍ସବ ଲାଗିଗଲା । ନାମକରଣ ସମୟରେ ମହାରାଜ ନିଜ ପିତା-ପିତାମହଙ୍କ ନାମ ରଖିବାଲାଗି ପ୍ରସ୍ତାବ ଦେଲେ; କିନ୍ତୁ ସେସବୁ ନାମ ପସନ୍ଦ ନକରି ମୋ ଇଚ୍ଛା ଅନୁସାରେ ପୁତ୍ରର ନାମ ରଖିଲି 'ଯଦୁ' ।

ନାମକରଣ ଉତ୍ସବରେ ଯୋଗଦେବାଲାଗି ଶର୍ମିଷ୍ଠା ରାଜମହଲକୁ ଆସିଲା । ବାସ୍ତବିକ ତାର ଚେହେରା ଖୁବ୍ ବଦଳିଯାଇଥିଲା । ଦାସୀଜୀବନକୁ ସେ ଏପରି ଆଦରିନେବ ବୋଲି ମୁଁ ଆଦୌ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରିନଥିଲି । ମୋର ଧାରଣା ଥିଲା, ଅଶୋକବନର ଏକାନ୍ତବାସ ତା' ପକ୍ଷରେ ନିତାନ୍ତ ଅସହ୍ୟ ବୋଧହେବ; ପରିଶେଷରେ ସେ ଆସି ମୋର ଗୋଡ଼ତଳେ ପଡ଼ି ରାଜଭବନକୁ ଘେନିଆସିବାଲାଗି ପ୍ରାର୍ଥନା କରିବ କିମ୍ବା ଦାସତ୍ୱରୁ ମୁକ୍ତିଦେବାଲାଗି ଅନୁରୋଧ କରିବ । କିନ୍ତୁ ତାର ଚାଲିଚଳଣ, ଚେହେରାରୁ ଜଣାପଡୁଥିଲା ଯେ, ସେ ସେଠାରେ ମହାଶାନ୍ତିରେ କାଳଯାପନ କରୁଛି । ଏହା ଥିଲା ମୋ କଳ୍ପନାର ବାହାରେ ।

ଆଉ ମଧ୍ୟ ଚାଲଚୁଲ କରିବାରେ ସେ ଯେପରି ଖୁବ୍ ସାବଧାନ ହେଉଥିଲା, ସେଥିରୁ ମୋ ମନରେ ଆଉ ଗୋଟିଏ ସନ୍ଦେହ ଉଙ୍କିମାରିଲା । କିଛି ସମୟ ତା' ଉପରେ କଡ଼ା ନଜର ରଖିବାଲାଗି ମୁଁ ମୋର ବୁଢ଼ୀ ଦାସୀକୁ ଆଦେଶ ଦେଲି । ଘଡ଼ିଏ ପରେ ସେ ଦାସୀଟି ଆସି ମୋ କାନରେ କେତେକଥା ଫୁସ୍‌ଫୁସ୍ କରି କହିଗଲା । ମୋ ମନରେ ଅନେକ ପ୍ରକାର ସନ୍ଦେହ ଜାତହେଲା । ପରେ ଭାବିଲି, ଗୋଟେ ରାଜକନ୍ୟା ହୋଇ ସତରେ ସେ କ'ଣ ଏପରିଭାବରେ ବ୍ୟଭିଚାରର ଆଶ୍ରୟ ନେଲା ? ତା' ପୁଣି କୌଣସି ଗୋଟିଏ ମାମୁଲି ସେବକ ସହିତ ? ଯା' ହେଉନା କାହିଁକି, ସେ ନିଶ୍ଚୟ ବ୍ୟଭିଚାରିଣୀ । ପାପ କ'ଣ କେବେହେଲେ ଲୁଚିଛପି ରହିପାରେ କି ? ବେଶ୍, ଏଣିକି ପୁଣି ମୋ ହାତରେ ତା'ର ଚୁଟି । ଏଥର ଯିବ କୁଆଡ଼େ ? ଅଗତ୍ୟା ମୋ ଗୋଡ଼ତଳେ ନାକ ରଗଡ଼ିବା ବ୍ୟତୀତ ତା'ର ଆଉ ଚାରା କ'ଣ ? ତାର ଅପରାଧ ତ ସାମାନ୍ୟ ନୁହେଁ ?

ଅନ୍ୟ ଦାସୀମାନଙ୍କୁ ମୋ ମହଲରୁ ବାହରକୁ ପଠାଇଦେଇ ମୁଁ ଶର୍ମିଷ୍ଠାକୁ ଡକାଇ ଆଣିଲି । ସେ ଆସି ମୁଣ୍ଡ ନୁଆଇଁ ଛିଡ଼ାହୋଇ ରହିଲା । ମୋତେ ନୀରବ

ରହିଥିବା ଦେଖି ସେ ପଚାରିଲା, ''କହନ୍ତୁ, କ'ଣ ଆଜ୍ଞା . . .।''

— ''ଉପରକୁ ମୁହଁ ଉଠାଅ।''

ସେ ମୁହଁ ଉଠାଇ ମୋ ଆଡ଼କୁ ଚାହିଁବାମାତ୍ରେ ମୁଁ କହିଲି, ''ମୁଁ ଗୋଟିଏ ପ୍ରଶ୍ନ ପଚାରୁଛି; ଦେଖ, ସତ ସତ ଉତ୍ତର ଦେବୁ। ନିଜ ମାଆ-ବାପାଙ୍କ ରାଣ ପକାଇ ଉତ୍ତର ଦେବୁ।''

ସେ ନୀରବ ରହିଲା। ମୁଁ ପୁଣି କଠୋର ସ୍ୱରରେ ପଚାରିଲି, ''ତୁ ଗର୍ଭବତୀ ହୋଇଛୁ . . .।''

ସେ ଉତ୍ତର ଦେବାକୁ ପ୍ରସ୍ତୁତ ହେଲାପରି ତା'ର ଓଠ ଥରିଉଠିଲା। ଶେଷକୁ ସେ ମୁଣ୍ଡ ନୁଆଁଇ କେବଳ 'ହଁ' କହିଲା।

— ''ଏହା ବ୍ୟଭିଚାର . . .।''

''ମୁଁ ବ୍ୟଭିଚାରିଣୀ ନୁହେଁ . . . ! ଜଣେ ମହାନ୍ ଋଷିଙ୍କ ଆଶୀର୍ବାଦରୁ . . .।''

''ଋଷିଙ୍କ ଆଶୀର୍ବାଦରୁ ? କିଏ ସେ ଋଷି ? କିଏ ତୋତେ ଆଶୀର୍ବାଦ ଦେଇଛି ? ସତ କହ, କିଏ ସେ . . . କଚ . . .?''

ସେ କିଛିହେଲେ ଉତ୍ତର ନଦେଇ କେବଳ ଏକ ପାଷାଣ ମୂର୍ତ୍ତିପରି ଛିଡ଼ାହୋଇ ରହିଲା।

# ଶର୍ମିଷ୍ଠା

ଦେବଯାନୀ ମୋତେ ଯେତେବେଳେ ପଚାରିଲା, 'ତୁ ଗର୍ଭବତୀ ହୋଇଛୁ କି?' –ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଗଲି। ମୁଁ କେବଳ ଦ୍ୱନ୍ଦ୍ୱରେ ପଡ଼ିନଥିଲି; ବରଂ କହିବାକୁ ଗଲେ ଖୁବ୍ ଡରିଯାଇଥିଲି। ମୋ ମନରେ ଏକସଙ୍ଗରେ ଲଜ୍ଜା ଓ ଭୟ ଜାତହୋଇଥିଲା। ମୁଁ ପରିସ୍ଥିତିର ପରିଣାମ ଅନୁମାନ କରି ଥରିଉଠିଲି। ମୁଁ ଖୁବ୍ ସାହସ ସହିତ 'ହଁ' କହିବାକୁ ମନେ ମନେ ଯେତେ ଇଚ୍ଛାକଲି, ତାହା ସମ୍ଭବ ହେଲାନାହିଁ। ସେ ଛୋଟିଆ ଶବ୍ଦଟି ମୋ ମୁହଁରୁ ସହଜରେ ବାହାରିପାରିଲାନାହିଁ।

ଆମେ ଦୁହେଁ ପିଲାଦିନର ସାଙ୍ଗ। ବଡ଼ ସାଙ୍ଗମାନେ ଯେତେବେଳେ ପଚାରନ୍ତି, 'କିରେ କେହି ନୂଆ ଲୋକ ଆସିବାର ସୂଚନା ଅଛି କି?' ମନ କେଡ଼େ ଆନନ୍ଦରେ ନାଚିଉଠେ। ତା'ପରେ ସେ ଧୀରେ ସେହି ସାଙ୍ଗସଖୀର କାନରେ ତା' ଜୀବନର ମଧୁର ରହସ୍ୟ ଲାଜେଇ ଲାଜେଇ କହିଦିଏ। କିନ୍ତୁ ନିର୍ମମ ନିୟତି ମୋ ଭାଗ୍ୟରେ ଏହି ମଧୁର ରହସ୍ୟ ଖୋଲି କହିବାର ସୁଯୋଗ ଦେଇନଥିଲା।

ଦେବଯାନୀ ମନେ ମନେ ଖୁବ୍ ଆନନ୍ଦିତ ହୋଇଉଠିଲା; କିନ୍ତୁ ତା'ର କାରଣ ନୁହେଁ ଯେ ବାଲ୍ୟସଙ୍ଗିନୀ ଶର୍ମିଷ୍ଠା ମାଆ ହେବାକୁ ଯାଉଥିବାର ଆନନ୍ଦ ତା' ମନରେ ଉଙ୍କିଉଠିଥିଲା; ବରଂ ସେ ତା' ଦାସୀର ଗୁପ୍ତପ୍ରଣୟର ରହସ୍ୟ ଜାଣିଯାଇଛି ଏଇଥିପାଇଁ ଆନନ୍ଦିତ ହୋଇଥିଲା। ମୁଁ ଚାରିଆଡ଼େ ଅପମାନିତ ହେବି, ଦାସଦାସୀ ମହଲରେ ମୋର ନିନ୍ଦାରଟିବ, ମୁଁ ମୁଣ୍ଡଟେକି ଚାଲିପାରିବି ନାହିଁ; ଏହି କଳ୍ପନାରେ ସେ ବିଭୋର ହୋଇଉଠିଲା। ତେଣୁ ସେ 'ବ୍ୟଭିଚାରିଣୀ' ବୋଲି କହି ମୋତେ ପ୍ରଥମେ ଅପମାନଦେଲା। ତା' ମୁହଁରୁ 'ବ୍ୟଭିଚାରିଣୀ' ଶବ୍ଦ ଶୁଣି ମୋ ରକ୍ତ ତାତିଉଠିଲା। ମୁଁ ଗୋଟିଏ ଉତ୍ତରରେ ତା' ମୁହଁ ବନ୍ଦ କରିଦେଇ ପାରିଥାନ୍ତି; ସମୁଦାୟ ରାଜପ୍ରାସାଦରେ ଗୋଟିଏ ଚହଲ ପକାଇଦେଇପାରିଥାନ୍ତି। ମୋ ଗର୍ଭସ୍ଥ ଶିଶୁର ପ୍ରକୃତ ପିତା କିଏ, ମୁଁ ଯଦି ସେଦିନ ମୁହଁଖୋଲି ତା' ଆଗରେ କହିଦେଇଥାଆନ୍ତି, ତେବେ ସେ ମଉଗର୍ବିଣୀର ମୁହଁ ଶୁଖି କଳାକାଠ ପଡ଼ିଯାଇଥାଆନ୍ତା।

ଅବଶ୍ୟ ତାହା କରିଥିଲେ ମୋ ମନର ଅଭିଳାଷ ପୂରଣ ହୋଇପାରିଥାନ୍ତା; ତା' ବିରୁଦ୍ଧରେ ମୋ ମନରେ ଯେଉଁ ପ୍ରତିଶୋଧର ତୀବ୍ର ଅଗ୍ନି ପ୍ରଜ୍ୱଳିତ ହେଉଛି, ତାହା କେତେକ ପରିମାଣରେ ଉପଶମ ହୋଇଥାନ୍ତା; କିନ୍ତୁ ସେଦିନ ଯଦୁର ନାମକରଣ ଉତ୍ସବର ସମସ୍ତ ଆନନ୍ଦ-ଉଲ୍ଲାସ ମୁହୂର୍ତ୍ତକ ମଧ୍ୟରେ ଉଭେଇଯାଇଥାନ୍ତା। ଚାହୁଁ ଚାହୁଁ ସମୁଦାୟ ରାଜମହଲରେ ଦୁଃଖର ଛାୟା ଖେଳିଯାଇଥାଆନ୍ତା। ଦେବଯାନୀ ମହାରାଜଙ୍କୁ କ୍ରୋଧରେ ଜାଳିପୋଡ଼ି ବ୍ୟତିବ୍ୟସ୍ତ କରିଦେଇଥାଆନ୍ତା। ଆଉ ମଧ୍ୟ ଆମ ଦୁହିଁଙ୍କ ମଧ୍ୟରେ ସାରା ଜୀବନ ଶତ୍ରୁତା ଆହୁରି ତୀବ୍ରବେଗରେ ବଢ଼ିଯାଇଥାନ୍ତା। କେବଳ ସେତିକି ନୁହେଁ, ଆହୁରି କେତେ କ'ଣ ଦୁର୍ଘଟଣା ଘଟିଥାଆନ୍ତା।

ମୁଁ କ'ଣ ମୋର କ୍ଷଣିକ ସନ୍ତୋଷ ଲାଗି ମୋ ପ୍ରାଣପ୍ରିୟଙ୍କୁ ଏତେ ଦୁଃଖ ଦେବା ଉଚିତ ହୋଇଥାଆନ୍ତା ? ନା . . . କେବେ ନୁହେଁ ! ତାହା କ'ଣ ପ୍ରକୃତରେ ମୋ ପ୍ରେମର ପରାକାଷ୍ଠା ପ୍ରଦର୍ଶନ ହୋଇଥାଆନ୍ତା ? ଯେଉଁ ପ୍ରେମରେ ତ୍ୟାଗ ନାହିଁ, ସର୍ବସ୍ୱ ଅର୍ପଣର ସାହସ ନାହିଁ, ତାହା କ'ଣ ପ୍ରକୃତ ପ୍ରେମ ?

''ମୁଁ ବ୍ୟଭିଚାରିଣୀ ନୁହେଁ, ଜଣେ ଋଷିଙ୍କ ଆଶୀର୍ବାଦରୁ . . .'' ଏ ଶବ୍ଦ ହଠାତ୍ କିପରି ମୋ ମୁହଁରୁ ବାହାରିଗଲା ମୁଁ କଳ୍ପନା ସୁଦ୍ଧା କରିପାରିଲିନାହିଁ। ତା'ରି ଫଳରେ ମୋର ମାନମହତ ରହିଗଲା, ଗୋଟିଏ ଅଶୋଭନୀୟ ପରିସ୍ଥିତିର ଅବସର ଅପସରିଗଲା। ଅବଶ୍ୟ ଏ ଶବ୍ଦ ମିଥ୍ୟା ନୁହେଁ; ସତ୍ୟ ମଧ୍ୟ ନୁହେଁ। ମୁଁ ଭାବିଥିଲି, ପୁରାଣଗ୍ରନ୍ଥମାନଙ୍କରେ ଯେପରି ସୂର୍ଯ୍ୟ ଓ ପବନ ପ୍ରଭୃତି ଦେବତାମାନଙ୍କ ଅନୁଗ୍ରହରୁ କେତେ କୁମାରୀ-କନ୍ୟା ପୁତ୍ରବତୀ ହୋଇଥିଲେ, ସେପରି ମୋର କିଛି ଘଟିଛି ବୋଲି ଭାବି ଦେବଯାନୀ ନିରୁପାୟ ହୋଇ ହାତମଳି ରହିଯିବ; କିନ୍ତୁ ତା'ର ସ୍ୱଭାବ ଭିନ୍ନ। ତା'ର ଶରୀର ଭିନ୍ନ ଉପାଦାନରେ ଗଢ଼ା। ସେ ସେଇ ମୁହୂର୍ତ୍ତରେ ଅତ୍ୟନ୍ତ କର୍ଣ୍ଣକଟୁ ଶବ୍ଦ ମୁହଁରୁ ବାହାରକରି କହିଲା, ''ତୋତେ କିଏ ଆଶୀର୍ବାଦ ଦେଇଛି ? ସେ କଚ ନୁହେଁ ତ ?'' ଯେଉଁ ଦେବଯାନୀ ଦିନେ କଚଦେବଙ୍କୁ ପ୍ରାଣଦେଇ ପ୍ରେମକରୁଥିଲା, ସର୍ବସ୍ୱ ଅର୍ପଣ କରି ତାଙ୍କର ପ୍ରେମିକା ସାଜିଥିଲା, ତାଙ୍କ ସମ୍ବନ୍ଧରେ ଏପରି ଘୃଣିତ ଶବ୍ଦ ତା ମୁହଁରୁ ବାହାରିଲା କିପରି ? ଏଭଳି ଅମଙ୍ଗଳ ଭାବନା ତା' ମନରେ ଜାତହେଲା କିପରି ? ଏଭଳି କୁତ୍ସିତ ସନ୍ଦେହକୁ ମନରେ ସ୍ଥାନ ଦେବାଲାଗି ସେ ତିଳେହେଲେ କୁଣ୍ଠାବୋଧ କଲାନାହିଁ କିପରି ?

''କିଏ ତୋତେ ଆଶୀର୍ବାଦ ଦେଇଛି ?'' ଏହି ସନ୍ଦେହସୂଚକ ଶବ୍ଦ କେଇଟି କେଡ଼େ ଭୟଙ୍କର, କେଡ଼େ ମର୍ମନ୍ତୁଦ ! କଚଦେବଙ୍କ ପରି ପବିତ୍ର ଆତ୍ମାଙ୍କ ସମ୍ବନ୍ଧରେ ତା'ର ଏ ଆକ୍ଷେପ ! ଶ୍ୱେତପଦ୍ମ ଅର୍ପଣ କରି ଯେଉଁ ଦେବତାଙ୍କର ପାଦପୂଜା କରାଯାଏ, ସେଇ ଦେବତାଙ୍କ ଦେହରେ ପଙ୍କ ବୋଳିବା କେବେ କ'ଣ ସମ୍ଭବ ? କିନ୍ତୁ ସୌନ୍ଦର୍ଯ୍ୟଗର୍ବରେ ମତ୍ତଗର୍ବିଣୀ ଦେବଯାନୀ ପକ୍ଷରେ ତାହା ସମ୍ଭବ ହୋଇଥିଲା।

ମୁଁ ତ କେବଳ 'ଜଣେ ଋଷିଙ୍କ ଆଶୀର୍ବାଦ' ବୋଲି କହିଥିଲି; କାହାରି ନାମ ଧରିନଥିଲି – ସେପରି ସ୍ଥଳେ ସେ ଯଦି ପାଗଳ ଯତିର ନାମ କହିଥାଆନ୍ତା, ତା'ହେଲେ ମୋ ମନରେ ଏତେ ଦୁଃଖ ଜାତହୋଇନଥାନ୍ତା।

ସେହିପରି; ସେଦିନ ଆଡ଼ମ୍ବରପୂର୍ଣ୍ଣ ରାଜଦରବାରରେ ଦେବଯାନୀ ମୋତେ କେତେ ଅପମାନ ନଦେଇଛି ? ପାଗଳ ଯତି ମୋ ଆଡ଼କୁ ଚାହିଁ 'ଏ ଦାସୀଟାକୁ ମୋତେ ଦେବ' ବୋଲି କହିଲା। ଦେବଯାନୀ ଭଲଭାବରେ ଜାଣିଥିଲା ସେ ଗୋଟିଏ ପାଗଳ। ତେଣୁ ସେ ପରିସ୍ଥିତିରେ ତା'ର ନୀରବ ରହିବା ଉଚିତଥିଲା; କିନ୍ତୁ ମୋ କଟାଘାଆରେ ଚୂନ ବୋଳିଲାପରି ସେ ସଙ୍ଗେ ସଙ୍ଗେ କହିଥିଲା 'ୟାକୁ ନେଇ କ'ଣ କରିବେ ସ୍ୱାମୀଜୀ ? ଆପଣ କ'ଣ ତାକୁ ପତ୍ନୀରୂପେ ଗ୍ରହଣ କରିବେ ?' ମୋର ସୌଭାଗ୍ୟ ଯେ, ମହାରାଜଙ୍କର ବଡ଼ଭାଇ ଯତି ସନ୍ନ୍ୟାସୀ ହୋଇ ଘରୁ ପଳାଇଯାଇଥିଲା। ହୁଏତ ଦୀର୍ଘ ସାଧନାରେ ବ୍ରତୀହୋଇ ପାଗଳ ହୋଇଯାଇଥିଲା; ନୋହିଲେ ଆଉ କେହି ଭଣ୍ଡ ତପସ୍ୱୀ ଯଦି 'ହଁ' ମାରିଦେଇଥାଆନ୍ତା, ତା'ହେଲେ ଏ ଡାକୁଣୀ ଦେବଯାନୀ

ତା' ଝୁଲିରେ ମୋତେ ପକାଇଦେବା ଅସମ୍ଭବ ନଥିଲା। ଦରବାରରେ ଦେବଯାନୀର ଏପ୍ରକାର ନିର୍ଲଜ୍ଜ ପ୍ରଶ୍ନ ଶୁଣି ମୋ ଧମନୀରେ ରକ୍ତ ଜମାଟ ବାନ୍ଧିଯାଇଥିଲା। ମୁଁ କିଛି ସମୟ ପର୍ଯ୍ୟନ୍ତ ଭଲଭାବରେ ନିଃଶ୍ୱାସ ପ୍ରଶ୍ୱାସ ନେଇପାରିନଥିଲି।

କିନ୍ତୁ ଯତି ଯେ ଗୋଟାଏ ବଦ୍ଧପାଗଳ, ଏଥିରେ ତିଳେହେଲେ ସନ୍ଦେହ ନାହିଁ। ମୁଁ ବରାବର ଭାବୁଥିଲି, ତା' ପାଗଳାମିର କାରଣ କ'ଣ? କେବେହେଲେ ମୁଁ ଯା'ର ସାମାଧାନ କରିପାରିନଥିଲି। ଅନେକ ସମୟରେ ମନରେ ପ୍ରଶ୍ନ ଉଠେ; ଘରଦ୍ୱାର, ଆତ୍ମୀୟ-ସ୍ୱଜନଙ୍କୁ ଛାଡ଼ି ମଣିଷ ଘୋର ଜଙ୍ଗଲ ମଧ୍ୟରେ ବସି, ଶରୀରକୁ କଷ୍ଟ ଦେଇ ତପସ୍ୟା କରେ କାହିଁକି? କଚ୍‌ଦେବ ତା'ରି ପରି ଜଣେ ଯୋଗୀ। ଯତି ସହିତ ସେ ମଧ୍ୟ ଅଶୋକବନରେ ରହୁଥିଲେ। ଦୁହେଁଯାକ ପୂଜାପାଠରେ ସମୟ ବିତାଉଥିଲେ; ମାତ୍ର ଦୁହିଁଙ୍କ ମଧ୍ୟରେ ଥିଲା ଆକାଶ-ପାତାଳର ପାର୍ଥକ୍ୟ। କଚ୍ କେଡ଼େ ସ୍ନେହଶୀଳ, କେଡ଼େ ବିବେକୀ, କେଡ଼େ ସମ୍ଭ୍ରାନ୍ତ। ସେ ଯତିଟା କିପରି ଗିଳିଦେଲାପରି ମୋ ଆଡ଼କୁ ଚାହିଁରହିଥାଏ, କିନ୍ତୁ ତା' ଆଖିରେ କାମନାର ପିପାସା ନଥିଲା। ତାର ଭୟଙ୍କର ଚାହାଣି, ବେଶଭୂଷା, ଚାଲିଚଳଣ ଅତ୍ୟନ୍ତ ଆପତ୍ତିଜନକ ହୋଇଥିଲେ ମଧ୍ୟ ତା' ସମ୍ବନ୍ଧରେ ମୁଁ କେବେହେଲେ ଅଭିଯୋଗ କରିନାହିଁ; କାରଣ ତା' ଫଳରେ ରାଜମାତାଙ୍କ ମନରେ ଦୁଃଖ ଜାତହୋଇଥା'ନ୍ତା। ତା' ସତ୍ତ୍ୱେ ଯାହା ହେବାର କଥା ତାହାହିଁ ଘଟିଲା।

ଦିନେ ରାତିରେ ମୁଁ ଗାଢ଼ନିଦରେ ଶୋଇଛି। ହଠାତ୍ ମନେହେଲା, କାହାର ଗୋଟିଏ ବରଫ ପରି ଥଣ୍ଡା ହାତ ମୋ ବେକକୁ ଚାପିଧରିଛି। ମୋ ନିଦ ଭାଙ୍ଗିଗଲା। ମୁଁ ଆଖି ଖୋଲି ଦେଖିଲି, ଯତି ମୋ ପାଖରେ ବସି ମୋ ତୋଟି ଚାପିଧରିଛି। ସେତେବେଳେ ତା' ଆଖି ଦୁଇଟି ପେଚା-ଆଖି ପରି ଦାଉ ଦାଉ ହୋଇ ଜଳୁଛି; ତା' ମୁହଁରୁ ସ୍ୱାଭାବିକ ହସ ଝରିପଡୁଛି। ମୁଁ ଭୟରେ ବ୍ୟାକୁଳ ହୋଇ ଚିତ୍କାରକରିଉଠିଲି। ସେ ହଠାତ୍ ଉଠିପଡ଼ି ଝରକାବାଟଦେଇ ଅନ୍ଧାରରେ କୁଆଡ଼େ ଉଭେଇଗଲା।

ମୋ ଗର୍ଭର ଶିଶୁ ସେହି ପାଗଳର ସନ୍ତାନ ବୋଲି ଯଦି ଦେବଯାନୀ ଅପବାଦ ରଟାଇଦିଏ, ତା' ମଧ୍ୟ ମୁଁ ଆନନ୍ଦରେ ସହ୍ୟକରିନେବି। ସେ ପାଗଳ ଲୋକଟାର ଆଉ ଯେତେବେଳେ ପତ୍ତା ନାହିଁ, ଏ ଅପମାନ କେବଳ ମୋରି ପାଇଁ; କିନ୍ତୁ କଚ୍, ଦେବପ୍ରତିମ କଚ୍‌ର ନାମ ଧରି ଦେବଯାନୀ ଯେଉଁ ବିଷୋଦ୍‌ଗାର କଲା, ଧର୍ମ...! ମଣିଷ କାଲି ଯାହାକୁ ଜୀବନର ସର୍ବସ୍ୱ ବୋଲି ମନେକରି ପ୍ରେମକରୁଥିଲା, ଆଜି ତାକୁ ଭୁଲିଯାଇପାରେ? ହଁ... ବୋଧହୁଏ ଭୁଲିଯାଆନ୍ତି! ନହେଲେ ଦେବଯାନୀ କଚ୍ ବିରୁଦ୍ଧରେ କ'ଣ ଏପରି ଘୃଣିତ ଶବ୍ଦ ପ୍ରୟୋଗ କରିପାରିଥାଆନ୍ତା? ଦେବଯାନୀ ପକ୍ଷରେ ଏପରି ଶଠତା ସମ୍ଭବ ହୋଇପାରେ। ସେ କାଲିର ପ୍ରେମକୁ ସୌନ୍ଦର୍ଯ୍ୟ ତଥା ଐଶ୍ୱର୍ଯ୍ୟ ଗର୍ବରେ ଭୁଲିଯାଇପାରେ; କିନ୍ତୁ ଶର୍ମିଷ୍ଠା କେବେହେଲେ ତା' କରିପାରିବନାହିଁ। କେବଳ ନିକଟଭବିଷ୍ୟତ କାହିଁକି ଏ ସୃଷ୍ଟିରେ ଶର୍ମିଷ୍ଠାର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ସେ କେବେହେଲେ ପ୍ରେମର ଏପରି ନିଷ୍ଠୁର ପ୍ରତାରଣା କରିପାରିବ ନାହିଁ। ଦେବଯାନୀର ଏଇ କୁତ୍ସିତ ଧାରଣା ସମ୍ବନ୍ଧରେ ଯଦି କଚ୍ କିଛି ଆଭାସ ପା'ନ୍ତି, ତେବେ ତାଙ୍କ ମନରେ କି ପ୍ରତିକ୍ରିୟା ନ ହେବ? ନା... ସେ କିଛିହେଲେ ଭାବିବେ ନାହିଁ;

...ବଳ ହସିଦେଇ କଥାଟାକୁ ଉଡ଼ାଇଦେବେ; କାରଣ ସେ ଭଲଭାବରେ ଦେବଯାନୀର ...ଭାବ ଜାଣନ୍ତି।

ରାଜମାତାଙ୍କୁ ସଙ୍ଗରେ ଧରି ଆଶୋକବନରୁ ସେ ବିଦାୟ ନେଉଥିବା ସମୟରେ ମୁଁ ପଚାରିଲି – "କଚ଼ଦେବ, ଆପଣଙ୍କ ସହିତ ପୁଣି କେବେ ସାକ୍ଷାତ୍ ହେବ?" ସେ ହସିଦେଇ କହିଲେ, "କିଏ ଜାଣେ? ନିୟତିର ଖେଳ ବଡ଼ ବିଚିତ୍ର। ହୁଏତ ସେ ମୋତେ ପୁଣି କାଲି ଏଠାକୁ ଟାଣିଆଣିପାରେ କିମ୍ବା ଦଶ କୋଡ଼ିଏ ବର୍ଷ ମଧ୍ୟରେ ମୁଁ ଆଦୌ ଏଠାକୁ ଆସି ନପାରେ।"

ତାଙ୍କର ଶେଷ କଥାପଦକ ଶୁଣି ମୋ ମନ ହତାଶହୋଇଉଠିଲା। ଓଃ... ଏବେ ଦଶ କୋଡ଼ିଏ ବର୍ଷ ମଧ୍ୟରେ କଚ଼ ସହିତ ସାକ୍ଷାତ ହେବନାହିଁ? ତା'ହେଲେ ଉପାୟ...।

କଚ଼ ଅଶୋକବନରେ ଅଳ୍ପ କେତେ ଦିନ ରହିଥିଲେ ମଧ୍ୟ ମୋ ମନରେ କେତେ ଆନନ୍ଦ ଜାତ ହୋଇନଥିଲା? ମୋତେ କେତେ ପ୍ରକାର ବୁଝାଇ ବରାବର ସାନ୍ତ୍ୱନା ଦେଉଥିଲେ। ପ୍ରକୃତରେ ସେ ଶର୍ମିଷ୍ଠାକୁ ପୁନର୍ଜନ୍ମ ଦେଇଛନ୍ତି। ତେଣୁ ମୁଁ ପଚାରିଲି, "ଦଶ କୋଡ଼ିଏ ବର୍ଷ ଆପଣ ରହିବେ କେଉଁଠି?"

– "ହିମାଳୟରେ ତପସ୍ୟା ମଗ୍ନ ହେବି।"

– "ଆପଣ କାହିଁକି ତପସ୍ୟା କରୁଛନ୍ତି?"

"କାରଣର ଆବଶ୍ୟକତା କ'ଣ? ମୋର ତପସ୍ୟାବଳରେ ଯଦି ଦେବଯାନୀର ସ୍ୱଭାବ ପରିବର୍ତ୍ତନ ହୋଇପାରନ୍ତା, ମୁଁ କଠୋରତମ ତପସ୍ୟା କରିବାକୁ କେବେହେଲେ ପଶ୍ଚାତ୍‌ପଦ ହୁଅନ୍ତିନାହିଁ।"

ସ୍ୱପ୍ନରେ ସୁଦ୍ଧା ମୁଁ କେବେହେଲେ ଦେବଯାନୀକୁ ଈର୍ଷା କରିନାହିଁ। ହସ୍ତିନାପୁରର ମହାରାଣୀ ହୋଇଥିଲେ ମଧ୍ୟ ତା' ପ୍ରତି ମୋ ମନରେ ତିଳେହେଲେ ଦ୍ୱେଷ ଜାତହୋଇନାହିଁ; କିନ୍ତୁ ତା' ସମ୍ବନ୍ଧରେ କଚ଼ଦେବଙ୍କ ଧାରଣା ଜାଣି ମୋର ମନେହେଲା, ଦେବଯାନୀ ପ୍ରକୃତରେ କେଡ଼େ ଭାଗ୍ୟଶାଳିନୀ ନୁହେଁ? ରାଜରାଣୀ ହେଲା; କଚ଼ପରି ପ୍ରଖ୍ୟାତ ସନ୍ନ୍ୟାସୀ ତାଙ୍କ ତପସ୍ୟାର ସମସ୍ତ ଫଳ ତା' ଉଦ୍ଦେଶ୍ୟରେ ଅର୍ପଣ କରିବାଲାଗି ପ୍ରସ୍ତୁତ ହେଉଛନ୍ତି; ଆଉ ତା'ର ଅଭାବ ରହିଲା କେଉଁଠି? କିନ୍ତୁ ଏଭଳି ସ୍ୱର୍ଗୀୟ ପ୍ରେମର କ'ଣ ସଂସାରରେ ତୁଳନା କରାଯାଇପାରେ?

ଦେବଯାନୀ ସମ୍ବନ୍ଧରେ କହୁଥିବା ସମୟରେ କଚ଼ ବରାବର ହସୁଥିଲେ। କିନ୍ତୁ... କିନ୍ତୁ ସେଇ ହସ ଭିତରେ ତାଙ୍କ ଅନ୍ତରର ବ୍ୟଥା ବେଶ୍ ଜଣାପଡୁଥିଲା। ଦେବଯାନୀର ସ୍ୱଭାବ, ବିଶେଷତଃ ତା'ର ଉଦ୍ଦଣ୍ଡ ଆଚ଼ରଣ କଚ଼ଙ୍କ ମନରେ ଖୁବ୍ ଆଘାତ ଦେଇଥିଲା; ତଥାପି ଦେବଯାନୀ ପ୍ରତି ତାଙ୍କ ମନରେ ଆତ୍ମୀୟତା ତିଳେହେଲେ ସୁଦ୍ଧା ଊଣା ହୋଇନଥିଲା। ପ୍ରଣୟୀ ମନର ଏପରି ମୂକ ଯନ୍ତ୍ରଣାଠାରୁ ବଳି ଆଉ କିଛି ଅଧିକ ଦୁଃଖ ନାହିଁ। ଏଭଳି ଯନ୍ତ୍ରଣାରୁ କିଏ ବା କିପରି ତାଙ୍କୁ ମୁକ୍ତିଦେଇପାରିବ?

ମୋତେ ନୀରବ ରହିଥିବା ଲକ୍ଷ୍ୟକରି କହିଲେ କଚ଼– "ଶୁକ୍ରାଚ଼ାର୍ଯ୍ୟ ପୁଣି ଥରେ ଉଗ୍ର ତପସ୍ୟା ଆରମ୍ଭ କରିଦେଲେଣି। ସଂଜୀବନୀ ପରି ଆଉ କୌଣସି ଗୋଟିଏ ଅଦ୍ଭୁତ ବିଦ୍ୟା ସେ ହାସଲକରିବେ। ଏହାଫଳରେ ପୁଣି ଥରେ ଦେବ-ଦାନବଙ୍କ

ମଧ୍ୟରେ ଯୁଦ୍ଧ ଲାଗିଯିବ। ଏ ବିଶ୍ୱ ଦେବ, ଦାନବ, ମାନବ, ସମସ୍ତଙ୍କର। କିନ୍ତୁ ଏମାନଙ୍କ ମଧ୍ୟରେ ବରାବର ଯେକୌଣସି ଗୋଟିଏ ପ୍ରକାର ଆଳ ନେଇ ଯୁଦ୍ଧ ଲାଗୁଥିବାରୁ ମୋ ଆଖିକୁ ଆଦୌ ନିଦ ଆସୁନାହିଁ। ତା'ହେଲେ କ'ଣ ପୁରୁଷାନୁକ୍ରମେ ଏହି ରୀତିରେ ଯୁଦ୍ଧ ବରାବର ଚାଲିଥିବ? ଭଗବାନ୍ ଉମାପତିଙ୍କର କ'ଣ ଏକାନ୍ତ ଇଚ୍ଛା ଯେ ବିଶ୍ୱରେ ସବୁବେଳେ ଯୁଦ୍ଧ, କଳହ, ଦୁଃଖ, ସଂଘର୍ଷର ସାମ୍ରାଜ୍ୟ ବିସ୍ତାର ଲାଭ କରୁ? କିନ୍ତୁ ମୋର ମନରେ ଗୋଟିଏ ଧାରଣା ଜାତହୋଇଛି; ମୁଁ ମହେଶ୍ୱରଙ୍କ ଉଦ୍ଦେଶ୍ୟରେ ଉଗ୍ର ତପସ୍ୟା ଆରମ୍ଭ କରିବି; ସେ ସନ୍ତୁଷ୍ଟ ହୋଇ ମୋତେ ବରଦାନକଲେ ମୁଁ କେବଳ ବିଶ୍ୱଶାନ୍ତି ମନ୍ତ୍ର ଲାଭକରିବାର କାମନା କରିବି। ସେଇଥିପାଇଁ ମୁଁ ତୁମକୁ କହିଛି ଯେ, ଆଗାମୀ ଦଶ କୋଡ଼ିଏ ବର୍ଷ ହୁଏତ ଆମର ସାକ୍ଷାତ ହୋଇନପାରେ।''

× × × ×

ସେଦିନ କଚ୍ ଓ ରାଜମାତା ଭୃଗୁ ପର୍ବତ ଉଦ୍ଦେଶ୍ୟରେ ଅଶୋକବନ ଛାଡ଼ି ଚାଲିଗଲେ। ତା'ପରେ ଆଶୋକବନ ଏକାବେଳକେ ଶୂନ୍‌ଶାନ୍ ହୋଇଗଲା। ମୋ ମନରେ ବଦ୍ଧମୂଳ ଧାରଣା ହୋଇଯାଇଥିଲା ଯେ, ମୁଁ ଗୋଟିଏ ଅଭାଗିନୀ ଦାସୀ ଏବଂ ମୋତେ ମାନସିକ ଯନ୍ତ୍ରଣାରେ ଜାଳିପୋଡ଼ି ମାରିବାଲାଗି ଦେବଯାନୀ ମତେ ଅଶୋକବନରେ ରଖାଇଛି। ଏଠାକାର ନିର୍ଜନତାରେ ଦୁଃଖରେ ସଢ଼ି ସଢ଼ି ଦିନେ ନା ଦିନେ ମୁଁ ମରିଯିବି, ଏହାହିଁ ଥିଲା ଦେବଯାନୀର ଚକ୍ରାନ୍ତ। ନାରୀଜୀବନର କୌଣସି ପ୍ରକାର କାମନା ମୋ'ଠାରେ ଚରିତାର୍ଥ ନ ହେଉ, ଏଥିଲାଗି ସେ ସର୍ବଦା ସତର୍କତାର ସହିତ ଯୋଜନାବଦ୍ଧ କାର୍ଯ୍ୟ କରିଚାଲିଥିଲା; ସେଇଥିରେ ହିଁ ସେ ତାର ପ୍ରତିଶୋଧ ନେଇପାରିବ; ସାରା ଜୀବନ ସେ ମୋ ସହିତ ଯେଉଁ ବାଦସାଧିଆସିଛି, ତା'ର ଆତ୍ମା ଶୀତଳ ହେବ। କିନ୍ତୁ କଚ୍‌ଦେବ ମୋ ମନରୁ ଏହି ଭୟଙ୍କର ଭୀତ ଏକାବେଳକେ ଛଡ଼ାଇଦେଇଥିଲେ।

ସେଦିନ ଉନ୍ମୁକ୍ତ ରାଜସଭାରେ କେଡ଼େ ଗର୍ବର ସହିତ ଦେବଯାନୀ କହିଥିଲା— ''ଶର୍ମିଷ୍ଠା ମୋର ଦାସୀ।'' ହାୟ... ଏ ଶବ୍ଦ ତ୍ରିଶୂଳର ଆଘାତ ପରି ମୋ ବକ୍ଷରେ ବିଦ୍ଧହୋଇଯାଇଥିଲା; ସେହି ଯନ୍ତ୍ରଣାରେ ମୋର ମୁଖ ବିକୃତ ହୋଇଗଲା। ଠିକ୍ ସେତିକିବେଳେ କଚ୍‌ଦେବ ମୋ ଆଡ଼କୁ କରୁଣାପ୍ଲୁତ ଚାହାଣିରେ ଚାହିଁ, ମୋର ଦଗ୍ଧ ପ୍ରାଣରେ ଶୀତଳ ପ୍ରଲେପ ବୋଳିଦେଲେ। ତାଙ୍କର ସେହି ସ୍ନିଗ୍ଧ ଚାହାଣିରେ ମୋ ହୃଦୟର ଉତ୍ତାପ ଏକାବେଳକେ ଉପଶମ ହୋଇଗଲା।

ଅଶୋକବନକୁ ଆସିବାମାତ୍ରେ ସେ ମୋର ହାଲ୍‌ଚାଲ୍ ଜାଣିବାଲାଗି ଅତିଥିଶାଳାର ପଛପଟେ ଥିବା ମୋ କକ୍ଷକୁ ଆସିଲେ। ତାଙ୍କୁ ଦେଖିବାମାତ୍ରେ ମୁଁ ଉଠି ଛିଡ଼ାହୋଇପଡ଼ିଲି। ବସିବାଲାଗି ସେ ମୋତେ ବାରମ୍ବାର ଅନୁରୋଧ କରନ୍ତେ, ମୁଁ କହିଲି— ''କଚ୍‌ଦେବ, ଆପଣଙ୍କ ଆଗରେ ବସିପଡ଼ିବାର ଅଧିକାର ଓ ସାହସ ଦାସୀ ଶର୍ମିଷ୍ଠା ହରାଇସାରିଛି; ସେ ଆଉ ପୂର୍ବର ରାଜକନ୍ୟା ହୋଇ ରହିନାହିଁ।''

ସେ ନିଜ ସ୍ୱଭାବସୁଲଭ ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରେ ମୋତେ ଚାହିଁ, ଟିକିଏ ହସିଦେଇ କହିଲେ, ''ଶର୍ମିଷ୍ଠା, ନିଜ ନାଭିରେ ସୁଗନ୍ଧିତ କସ୍ତୁରୀ ଥିବାର ସନ୍ଧାନ

କ'ଣ କସ୍ତୁରୀମୃଗ ପାଇଥାଏ ? ତୁମର ଅବସ୍ଥା ଠିକ୍ ସେହିପରି ହୋଇଉଠିଛି। ଅବଶ୍ୟ ତୁମେ ଠିକ୍ କହିଛ ଯେ, ତୁମର ଶରୀରକୁ ଏବେ ଦାସୀବୃତ୍ତି କରିବାକୁ ପଡୁଛି, କିନ୍ତୁ ତୁମର ଆତ୍ମା କାହାରି ଦାସୀ ହୋଇନପାରେ, ତାହା ସମ୍ପୂର୍ଣ୍ଣ ମୁକ୍ତ। ମୁକ୍ତ ଆତ୍ମା ହିଁ ଈଶ୍ୱରଙ୍କର ସାନ୍ନିଧ ଲାଭ କରିପାରେ। ପ୍ରସିଦ୍ଧ ମୁନିଋଷିମାନେ ବର୍ଷ ବର୍ଷ ଧରି ତପସ୍ୟାରେ ମଗ୍ନ ହୋଇ ଯେଉଁ ସାଧନାର ଅଧିକାରୀ ହୋଇନପାରନ୍ତି; ତାହା . . .।''

ମୁଁ ଲାଜରେ ଗୋଟିପଣେ ଲାଲହୋଇଉଠିଲି। ତଳକୁ ମୁହଁ ପୋତି କହିଲି– ''କଚ୍‌ଦେବ, ମୁଁ ମହାରାଣୀ ଦେବଯାନୀର ଗୋଟିଏ ଅପ୍ରିୟ ଦାସୀ। ମୋ ପରି କ୍ଷୁଦ୍ର ଦାସୀ ଆତ୍ମାର ଗୂଢ଼ତତ୍ତ୍ୱ ସମ୍ବନ୍ଧରେ କି ଧାରଣା ଅବା କରିପାରିବ ?''

''ପ୍ରଥମେ ତୁମେ ଆସନରେ ବସିପଡ଼ିଲ, କାରଣ ଶରୀର ସହିତ ବସିବା ଉଠିବାର ସମ୍ବନ୍ଧ ରହିଛି, ଆତ୍ମା ସହିତ ନୁହେଁ। ତେଣୁ ସେତିକି ଶାରୀରିକ କ୍ଷମତା ପ୍ରୟୋଗ କରିବାରେ ତୁମକୁ କିଛି ଅସୁବିଧା ହେବନାହିଁ ବୋଲି ମୁଁ ଭାବୁଛି।''

''ମୁଁ ଆପଣଙ୍କ ଆଗରେ ବସିପଡ଼ିଲେ କେହି ହୁଏତ ଯାଇ ଦେବଯାନୀ ଆଗରେ ଚୁଗୁଲି କରିଦେବ, ଆଉ ସେ ମୋତେ ଅପମାନିତ ନକରି ଛାଡ଼ିବନାହିଁ। ମୁଁ ଗୋଟେ ସାମାନ୍ୟ ଦାସୀ; ତେଣୁ . . .।''

–''ତୁମେ ଦାସୀ ନୁହଁ।''

''ତା'ହେଲେ ମୁଁ କ'ଣ ? ହୁଏତ କେବେ ମୁଁ ରାଜକନ୍ୟା ଥିଲି; କିନ୍ତୁ ଆଜି . . . ଆଜି ମୁଁ କାହାର କନ୍ୟା ନୁହେଁ, କାହାରି ମାତା ନୁହେଁ କିମ୍ବା କାହାରି ପତ୍ନୀ ନୁହେଁ। ଏ ସଂସାରରେ ମୁଁ କିଛି ନୁହେଁ।''

–''କିଏ କହୁଛି ?''

–''ମୁଁ . . . !''

–''ତୁମେ ଏପର୍ଯ୍ୟନ୍ତ ନିଜକୁ ଚିହ୍ନିପାରିନାହଁ ! ତୁମେ ଗୋଟିଏ ଭଉଣୀ।''

–''ଭଉଣୀ ? କାହାର . . . ?''

–''ମୋର . . . ଦୁଇଟି ଭଉଣୀ– ଦେବଯାନୀ ଓ ଶର୍ମିଷ୍ଠା।''

ଏଇ ସାମାନ୍ୟ କେଇଟି ଶବ୍ଦ ମୋ ମନରେ କି ଆନନ୍ଦର ସ୍ଫୁରଣ କରାଇଦେଲା– ମୁଁ କଚ୍‌ଦେବଙ୍କର ଭଉଣୀ ! ଏଭଳି ପବିତ୍ରାତ୍ମା, ତ୍ୟାଗୀ ଓ ସନ୍ନ୍ୟାସୀ ମୋର ଭାଇ ! ମୁଁ ମନେ ମନେ ଜଳିପୋଡ଼ି ମରୁଛି ବୋଲି କ'ଣ ଏହା ସମ୍ଭବ ହୋଇଛି ? ନା . . . ମୁଁ ଆଉ ଦାସତ୍ୱ ଭାରରେ ଲଇଁଯିବିନାହିଁ କିମ୍ବା କେବେହେଲେ ମନେ ମନେ ବ୍ୟଥିତ ହେବିନାହିଁ।

ତା'ପରେ କହିଲେ କଚ୍‌ଦେବ– ''ତୁମେ କେବଳ ମୋର ଭଉଣୀ ନୁହଁ, ମୋର ଗୁରୁ ମଧ୍ୟ ! ଆଜି ସୁଦ୍ଧା ଲୋକେ ମୋତେ ସମ୍ମାନ ଦେଉଥିଲେ ଯେ, ମୁଁ ନିଜ ଜାତିପାଇଁ ସଂଜୀବନୀ ଆଣି ଜୀବନରେ ଅନେକ ତ୍ୟାଗ କରିଛି; କିନ୍ତୁ ତୁମେ ମୋ ଅପେକ୍ଷା ବହୁଗୁଣରେ ଅଧିକ ତ୍ୟାଗ କରିଛ। ତେଣୁ ଏ ଦାସର ପ୍ରାର୍ଥନା; ତୁମେ ନିଜ ଦାସତ୍ୱ-ଦୁଃଖରେ ମ୍ରିୟମାଣ ହୋଇନଯାଅ। ଦୁନିଆର ଦୃଷ୍ଟିରେ ତୁମେ ହୁଏତ ଦାସୀ ହୋଇପାର; କିନ୍ତୁ ମୋ ଦୃଷ୍ଟିରେ ତୁମେ ପ୍ରକୃତରେ ମହାରାଣୀ।

ପ୍ରକୃତରେ ଦାସୀ ହେଉଛି ଦେବଯାନୀ। ସେ ଐଶ୍ୱର୍ଯ୍ୟ, ପ୍ରତିଷ୍ଠା ଓ ଅହଂକାରର ଦାସୀ ହୋଇଯାଇଛି। ଯେ ଏ ସଂସାରରେ ନିଜ ଆତ୍ମାକୁ ସ୍ୱାର୍ଥ, ବାସନା ତଥା ଭୋଗର ଅଧୀନ କରିଦିଏ, ସେ ହିଁ କେବଳ ଦାସତ୍ୱର ବନ୍ଧନରେ ସଢୁଥାଏ। ନିଜର ସ୍ୱାର୍ଥ, ନିଜର ସମସ୍ତ ସୁଖକୁ ଜାଳିପୋଡ଼ିଦେଇ ତୁମେ ଏଠାକୁ ଚାଲିଆସିଛ। ଈଶ୍ୱରଙ୍କ ସହିତ ମଣିଷର ସିଧାସଳଖ ସମ୍ବନ୍ଧ ଯୋଡ଼ିଦେବାର କଠିନ ମାର୍ଗରେ ତୁମେ ପଦଚାରିଣୀ ହୋଇପାରିଛ। ତୁମେ ହିଁ ପ୍ରକୃତରେ ସ୍ୱାମିନୀ; ତୁମେ କେବେହେଲେ ଦାସୀ ହୋଇନପାର। ଶର୍ମିଷ୍ଠା, ମୁଁ ଜାଣେ, ବଡ଼ଭାଇ ସାନଭଉଣୀକୁ ପ୍ରଣାମ କରିବାର ରୀତି ଆମ ସମାଜରେ ନାହିଁ ଏବଂ ଏହା କାହାରିକୁ ଭଲଲାଗିବନାହିଁ; କିନ୍ତୁ ବୟସରେ ତୁମେ ମୋ'ଠାରୁ ସାନ ହୋଇ ମଧ ତପସ୍ୟାରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବସିଛ। ଏଣୁ ତୁମେ ମୋର...।''

ଜଣାପଡ଼ିଲା, ସେ କହୁ କହୁ ହାତଯୋଡ଼ି ମୋତେ ପ୍ରଣାମ ଜଣାଇବାକୁ ଯାଉଛନ୍ତି; ତେଣୁ ମୁଁ କିଛି ଚିନ୍ତା କରିନପାରି ଆଗେଇଯାଇ ତାଙ୍କ ହାତ ଦୁଇଟିକୁ ଧରିପକାଇଲି। ପରକ୍ଷଣରେ ଭାବିଲି, ମୋର ଏଭଳି ଆଚରଣ ହୁଏତ ସେ ପସନ୍ଦନକରି ମୋ ହାତ ଛାଡିଦେବେ କିମ୍ବା ମନେ ମନେ ମୋ ଉପରେ ବିରକ୍ତ ହୋଇଉଠିବେ। ମୁଁ ଜାଣିଛି, ଆଶ୍ରମରେ ଥିବା ସମୟରେ ଦେବଯାନୀର ସ୍ପର୍ଶକୁ ସେ କେତେ ସତର୍କତାର ସହିତ ଟାଳିଦେଉଥିଲେ। ଏ ଧାରଣା ମୋ ମନରେ ଜାତହେବାକ୍ଷଣି ମୁଁ ଲାଜରେ ସଙ୍କୁଚିତା ହୋଇଯାଇ ହାତ ଦୁଇଟିକୁ ତାଙ୍କ ହାତରୁ ପୃଥକ୍ କରିବାକୁ ଚେଷ୍ଟାକଲି। ସେ ବୋଧହୁଏ ମୋ ଉଦ୍ଦେଶ୍ୟ ବୁଝିପାରିଲେ। ତେଣୁ ମୋ ହାତ ଦୁଇଟିକୁ ନିଜ ହାତରେ ଚାପିଧରି ହସି ହସି କହିଲେ, ''ଭଉଣି! ସମସ୍ତ ପ୍ରକାର ସ୍ପର୍ଶ ଗୋଟିଏ ଧରଣର ନୁହେଁ। ଆଜି ଯଦି ମୋର ସ୍ନେହମୟୀ ଜନନୀ ଥାଆନ୍ତେ, ମୋ ହିମାଳୟଯାତ୍ରାର ଆଭାସ ପାଇ ସେ ମୋ ହାତକୁ ଏହିପରି ଧରିପକାଇ ମୋତେ ବାରଣକରିନଥାନ୍ତେ କି?''

କ୍ଷଣକ ପରେ ସେ ମୋ ହାତ ଦୁଇଟିକୁ ଛାଡ଼ିଦେଇ ଆବେଗଭରା କଣ୍ଠରେ ଡାକିଲେ, ''ଭଗିନି...!'' ମୁଁ ଅବାକ୍ ହୋଇ ତାଙ୍କ ମୁହଁକୁ ଚାହିଁରହିଥିଲି। ତାଙ୍କ ପ୍ରଶାନ୍ତ ମୁଖମଣ୍ଡଳରୁ ଝରିପଡୁଥିଲା ସହାନୁଭୂତିର ଅମିୟ ଝର, କରୁଣାର ଶାଶ୍ୱତ ନିସ୍ୟନ୍ଦିନୀ। ସେ ପୁଣି ଥରେ ମୋତେ 'ଭଗନି' ବୋଲି ଡାକିଲେ। କଚ୍‌ଦେବ ମୋତେ 'ଭଗନି' ବୋଲି ଡାକୁଛନ୍ତି, ମୁଁ ତାଙ୍କର ଭଗନୀ ହୋଇଯାଇଛି; ଏଡ଼େବଡ଼ ସୌଭାଗ୍ୟର ଅଧିକାରିଣୀ ହୋଇଥିବାରୁ ମୋର ଦୁଃଖ କରିବାର ଆଉ କାରଣ କ'ଣ?

କଚ ପୂର୍ବପରି ମମତାଭରା ସ୍ୱରରେ କହିଲେ, ''ଭଉଣି! ତୁମେ ପତ୍ନୀହେବା ପୂର୍ବରୁ ମାଆ ହୋଇଯାଇଛ। ସମୁଦାୟ ଦାନବକୁଳର ମାତା ହୋଇପାରିଛ। ଯେଉଁ ଆତ୍ମିକ ଶକ୍ତିବଳରେ ତୁମେ ଏଡ଼େ ବଡ଼ ତ୍ୟାଗ କରିବାକୁ ସମର୍ଥ ହୋଇପାରିଛ, ସେ ଶକ୍ତି ତୁମ ଅନ୍ତରରେ ଚିରକାଳ ଜାଗ୍ରତ ରହୁ, ଏହାହିଁ ପରମେଶ୍ୱରଙ୍କଠାରେ ମୋର ପ୍ରାର୍ଥନା।''

ତାଙ୍କର ଗୋଟିଏ ଗୋଟିଏ ଶବ୍ଦ ମୋ ଅନ୍ତରରେ ଅଙ୍କିତ ହୋଇଯାଇଥିଲା। ସେ ଅଶୋକବନରେ ଥିବା ପର୍ଯ୍ୟନ୍ତ ତାଙ୍କର ପ୍ରତ୍ୟେକ ବାଣୀ ମୋ ମନରେ ସାତ୍ତ୍ୱିକ ଆନନ୍ଦ ଜାତକରାଉଥିଲା, କିନ୍ତୁ ସେ ଚାଲିଯିବାମାତ୍ରେ ମୋ ମନ ନିରାଶାର ଅମାଅନ୍ଧକାର

ମଧ୍ୟରେ ବୁଡ଼ିଗଲା । ଚତୁର୍ଥୀର ଚନ୍ଦ୍ର ବୁଡ଼ିଗଲାପରେ ଆକାଶରେ ଯେପରି ଅନ୍ଧକାରପଟଳ ଘୋଟିଯାଏ, ମୋ ମନର ଅବସ୍ଥା ଠିକ୍ ସେହିପରି ହୋଇଗଲା । କଚ୍‌ଙ୍କ ଆସିବା ପୂର୍ବରୁ ମୁଁ ଅଶୋକବନରେ ନିଃସଙ୍ଗ ତଥା ନିଷ୍କ୍ରିୟ ଜୀବନରେ ପୀଡ଼ିତ ହୋଇଉଠିଥିଲି । ମୁଁ ପ୍ରତ୍ୟେକ ଦିନ ଭାବୁଥିଲି, ଭବିଷ୍ୟତରେ ମୋର ସମୟ ଏ ବିରକ୍ତିକର ପରିବେଶ ମଧ୍ୟରେ କିପରି ବିତିବ ?

ରାଜମହଲରେ ମୁଁ ଚିତ୍ର ଅଙ୍କନ କରୁଥିଲି; ଏବେ ପୁଣି ସେଇଥିରେ ମନୋନିବେଶ କରିବାକୁ ଚେଷ୍ଟାକଲି । ପ୍ରଥମେ କେତେଦିନ ବୃକ୍ଷ ଲତା ପ୍ରଭୃତି ବିଭିନ୍ନ ବସ୍ତୁର ଚିତ୍ର ଅଙ୍କନକଲି; ତା' ପରେ ପରେ ପ୍ରାକୃତିକ ସୌନ୍ଦର୍ଯ୍ୟ ମୋ ମନ-ଦର୍ପଣରେ ପ୍ରତିବିମ୍ବିତ ହୋଇପାରିଲାନାହିଁ । କାରଣ ମନର ସେଇ ସ୍ୱଚ୍ଛ ଦର୍ପଣଟି ଭାଙ୍ଗିରୁଜି ଖଣ୍ଡ-ବିଖଣ୍ଡିତ ହୋଇଯାଇଥିଲା । ସେହି ଭଙ୍ଗା ଦର୍ପଣରେ ପ୍ରାକୃତିକ ସୌନ୍ଦର୍ଯ୍ୟର ପ୍ରତିବିମ୍ବ ଅତି ବିକୃତ ଭାବରେ ପ୍ରତିଫଳିତ ହେଉଥିଲା । ସେହି ବିକୃତ ଆକୃତିଗୁଡ଼ିକୁ ଭଗ୍ନ ଦର୍ପଣରେ ସଜାଇ ଚିତ୍ରାଙ୍କନ କରିବା ମୋ ପକ୍ଷରେ ଅସମ୍ଭବ ହୋଇଉଠିଲା । ମୋର ମନ ଏକାବେଳକେ ଶ୍ମଶାନରେ ପରିଣତ ହୋଇଯାଇଥିଲା; ତେଣୁ ଶ୍ମଶାନର ଲତାଗୁଳ୍ମଗୁଡ଼ିକ ଚିତାଗ୍ନିର ଧାସରେ କଳାକାଠ ଦିଶୁଥିବା ପରି ମୋ ମନର କାଳିମା ମୋତେ ବିବ୍ରତ କରିପକାଇଲା ।

ଅବସର ସମୟଗୁଡ଼ିକ ମୋତେ ଭୟଙ୍କର ବୋଧହେଲା । ସେହି ସମୟରେ ଅନେକ ଘଟଣା ଆସି ସ୍ମୃତିପଟଳରେ ଭାସିଉଠୁଥିଲା । ମହାରାଜ ଯୁଦ୍ଧକୁ ଯିବାଲାଗି ପ୍ରସ୍ତୁତ ହେଉଥିବା ସମୟରେ, ମୁଁ ତାଙ୍କ କପାଳରେ ତିଳକ କରିଥିଲି । ସେତେବେଳେ ତାଙ୍କର ସ୍ପର୍ଶ ମୋ ମନର ସ୍ମୃତି-କୁଞ୍ଜରେ ସୁରଭିତ କୁସୁମପରି ମହକିଉଠିଥିଲା; କିନ୍ତୁ କଚ୍‌ଦେବଙ୍କ ସ୍ପର୍ଶ ଅରଣ୍ୟମଧ୍ୟସ୍ଥ ଗୋଟିଏ ପବିତ୍ର ଋଷି ଆଶ୍ରମର ଶାନ୍ତ ତଥା ସୁନ୍ଦର ବାତାବରଣର କଳ୍ପନା ମୋ ମନରେ ଜାଗ୍ରତ କରିଥିଲା ।

କେବଳ ସେଦିନର ଘଟଣା ଓ ସେଇ ମଧୁମୟ ସ୍ମୃତି ମୋ ମନରେ ଉଙ୍କିମାରୁନଥିଲା; ତା' ସହିତ ଝଲସି ଉଠୁଥିଲା ମହାରାଜ ଓ ଦେବଯାନୀଙ୍କ ମଧୁଯାମିନୀର ଘଟଣା । ଦେବଯାନୀ ରାଗରେ ତମତମ ହୋଇ ସେଦିନ ମିଳନ-ମନ୍ଦିରରୁ ବାହାରିଆସିଲା; କିନ୍ତୁ ମୁଁ ଯଦି ଦେବଯାନୀ ସ୍ଥାନରେ ଥାଆନ୍ତି, ତେବେ କ'ଣ ଏଭଳି ଲଜ୍ଜାକର ଘଟଣା ଘଟିବାର ସୁଯୋଗ ଦେଇଥାନ୍ତି ? ନା . . . କେବେ ନୁହେଁ; ମୁଁ ମହାରାଜଙ୍କ ମନରେ ତିଳେହେଲେ ଦୁଃଖ ଜାତ ହେବାଭଳି କୌଣସି କାର୍ଯ୍ୟ କରିନଥାନ୍ତି । ମୋତେ ମଦ୍ୟଗନ୍ଧ ଭଲନଲାଗିଲେ ସୁଦ୍ଧା ମୁଁ ତାଙ୍କ ପାଇଁ ସେ ମହକକୁ ଆନନ୍ଦରେ ସହିଯାଇଥାନ୍ତି ।

ସେଦିନର ଘଟଣା ପ୍ରତ୍ୟେକ ରାତିରେ ମୋ ଆଖିଆଗରେ ନାଚିଉଠେ; ମୁଁ ସେହି ଭାବନାରେ ଆଦୌ ଶୋଇପାରେନାହିଁ । ସାଗର ସହିତ ସମ୍ମିଳିତ ହେବାଲାଗି ନଦୀର ଚଞ୍ଚଳତା ମୋ ଶରୀରର ରୋମେ ରୋମେ ପୁଲକିଉଠେ । ଶରୀରର ପ୍ରତ୍ୟେକ କଣିକା 'ପ୍ରେମ, ପ୍ରେମ' ବୋଲି ଚିତ୍କାର କରି ପିଆସୀ ହୋଇଉଠେ । ଏହିପରି ଚିନ୍ତାରେ ପ୍ରତ୍ୟେକ ରାତ୍ରି ଅନିଦ୍ରାରେ ମୋର କଟିବାକୁ ଲାଗେ । ମୁଁ କିଛି ଉପାୟ ନପାଇ ଶେଷକୁ ଚିତ୍ରାଙ୍କନରେ ଲାଗିଯାଏ । ମୁଁ ପୁରୁରବା ଓ ଉର୍ବଶୀ ନାଟକ ଦେଖିଥିଲି; ତେଣୁ ସେହି ଚିତ୍ରଟିକୁ ମୁଁ ତୂଳୀମୁନରେ ସାକାର କରିବାଲାଗି କଳ୍ପନାକଲି । କିନ୍ତୁ ପୁରୁରବାଙ୍କ

ସ୍ୱରୂପ ପ୍ରସ୍ତୁତ କରିବି କିପରି ? ତାଙ୍କ ସ୍ୱରୂପ କଳ୍ପନା କରିବା ଅବସରରେ ମହାରାଜଙ୍କ ଚେହେରା ମୋ ମାନସପଟରେ ଭାସିଉଠିଲା । ବେଶ୍, ମିଳିଗଲେ ପୁରୁରବା; ସେହିପରି ଉର୍ବଶୀ ରୂପେ ଦେବଯାନୀଙ୍କୁ ଆଙ୍କିବାଲାଗି ସ୍ଥିରକଲି । ଯା'ହେଉ, ସ୍ୱର୍ଗ ଅପ୍ସରୀର ରୂପ ଅଙ୍କନ କରିବାକୁ ଯାଇ ତାଙ୍କଠାରୁ ଅଧିକ ସୁନ୍ଦରୀଙ୍କୁ ପାଇଥିବାରୁ ମୁଁ ଖୁବ୍ ଖୁସିହୋଇଉଠିଲି; କିନ୍ତୁ ପରମୁହୂର୍ତ୍ତରେ ମନେପଡ଼ିଲା; ସେଦିନ ଦେବଯାନୀର ମନ୍ତବ୍ୟ– "ରାଜନ୍, ଗୋଟିଏ କଥା ମନେରଖିବେ, ସ୍ତ୍ରୀମାନଙ୍କ ସହିତ ସବୁବେଳେ ସ୍ନେହସମ୍ବନ୍ଧ ରଖିବା ସମ୍ଭବ ନୁହେଁ; କାରଣ, ସେମାନଙ୍କ ହୃଦୟ ହିଂସ୍ରଜନ୍ତୁ ପରି ନିର୍ମମ !"

ତା'ହେଲେ ଏପରି ଚିତ୍ର ଅଙ୍କନ କରିବା ଉଚିତ ନୁହେଁ; କିନ୍ତୁ ପୁରୁରବାଙ୍କ ସ୍ଥାନରେ ମହାରାଜଙ୍କ ସ୍ୱରୂପ କୌଣସିମତେ ଆଖିଆଗରୁ ଅପସରି ଗଲାନାହିଁ । ତେଣୁ ଶେଷକୁ ମୁଁ କେବଳ ମହାରାଜଙ୍କ ଚିତ୍ର ଅଙ୍କନ କଲି । ଚିତ୍ରାଙ୍କନରେ ସେହି ଦିନଗୁଡ଼ିକ ମୋର ବେଶ୍ ଆନନ୍ଦରେ କଟିଗଲା । ଶେଷରେ ଦିନେ ଚିତ୍ର ସମ୍ପୂର୍ଣ୍ଣ ହେଲା । ଚିତ୍ରଟିକୁ କାନ୍ଥରେ ଡେରିଦେଇ ମୁଁ ଦୂରରେ ଛିଡ଼ାହୋଇ ନିରୀକ୍ଷଣ କରି ଦେଖିଲି । ମୁଁ ଅବଶ୍ୟ ଚିତ୍ରକଳାରେ ସେପରି ନିପୁଣା ନଥିଲି, ତଥାପି ମହାରାଜଙ୍କ ଚିତ୍ରଟି ଖୁବ୍ ସଜୀବ ହୋଇଉଠିଥିଲା ।

ଚିତ୍ର ଶେଷହେବାର ପ୍ରଥମ ରାତ୍ରିର ଘଟଣା; ଆଖିକୁ ଆଦୌ ନିଦ ଆସିଲାନାହିଁ । ଘରର ଗୋଟିଏ କୋଣକୁ ଡେରା ହୋଇଥିବା ଚିତ୍ରଟିକୁ ମୁଁ ଏକଲୟରେ ଚାହିଁରହିଲି । କିଛି ସମୟ ପରେ ମୋତେ ଜଣାଗଲା, ସେ ଯେପରି ମୋତେ ଥଟ୍ଟାକରି କହୁଛନ୍ତି– 'ଈଶ୍ୱର ତୁମକୁ ଏତେ ସୁନ୍ଦର କେଶ ଦେଇଛନ୍ତି; ଅଥଚ୍ ତୁମେ କେଶସଜ୍ଜା ନ କରି ଗୋଟିଏ ବେଣୀ ପକାଇଛ କାହିଁକି ? କେଶରବିହୀନ ସିଂହ ଯେପରି ଶୋଭାପାଏନାହିଁ, କେଶସଜ୍ଜା ବିନା ନାରୀର ସୌନ୍ଦର୍ଯ୍ୟ ବିକଶିତ ହୁଏନାହିଁ ।

ଯାଃ... ଏ କ'ଣ ଗୋଟେ ପରିହାସର କଥା ? ମୁଁ ଲାଜେଇଯାଇ ତଳକୁ ମୁହଁପୋତିଦେଲି । କିଛି ସମୟ ପରେ ଏ ପରିହାସର ଉତ୍ତର ଦେବାଲାଗି ମୁଁ ମୁହଁ ଉପରକୁ ଉଠାଇଲି । କିଛି ଉତ୍ତର ଦେବାଲାଗି ମୋ ଓଠ ଥରିଉଠିଲା । କିନ୍ତୁ... କିନ୍ତୁ ମୁଁ ଉତ୍ତର ଦେବି କାହାକୁ ? ସେ କ'ଣ ଏ ମହଲରେ ଅଛନ୍ତି ? ସେ ଅବା କାହିଁକି ଏତେ ରାତିରେ ଅଶୋକବନକୁ ଆସିବେ ? ମୋ ଆଖି ଆଗରେ ଥୁଆହୋଇଥିଲା ମହାରାଜଙ୍କର ନିର୍ଜୀବ ସୁନ୍ଦର ଚିତ୍ରଫଳକଟି ।

× × × ×

ପିଲାଦିନେ ମୋର ଘନକୃଷ୍ଣ ତଥା ଲମ୍ବ କେଶଗୁଚ୍ଛକୁ ମାଆ ଖୁବ୍ ପସନ୍ଦକରୁଥିଲେ । ଯେତେ କାମ ଥାଉ ପଛକେ, ସେ ନିଜ ହାତରେ ମୋର ବେଣୀ ବାନ୍ଧିଦେଉଥିଲେ । ଦାସୀ-ପରିବାରୀଙ୍କ ହାତରେ ମୋ ମୁଣ୍ଡ କୁଣ୍ଡାଇବାକୁ ସେ ଆଦୌ ପସନ୍ଦକରୁନଥିଲେ । ତେଣୁ ପ୍ରତିଦିନ ନୂଆ ନୂଆ ଢଙ୍ଗରେ ସେ ମୋର କେଶସଜ୍ଜା କରୁଥିଲେ । କୌଣସି କୌଣସି ମଙ୍ଗଳ ଅବସରରେ ମୁଁ ମୁଣ୍ଡ ଧୋଇ କେଶ ଶୁଖାଏ । ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ମୋର ଘନ ଚିକ୍କଣ କେଶ ଦେଖି ମୋତେ ଖୁବ୍ ମଜାଲାଗେ । ମନରେ ଭାବେ, ପୁଚ୍ଛ ମେଲାଇ ମୟୂର ଯେପରି ନାଚୁଛି, ମୁଁ ମୋର କେଶକୁ ବିଞ୍ଚି ସେହିପରି ନାଚିଲେ କିପରି ହୁଅନ୍ତା ? କିନ୍ତୁ ମୁଁ ଯେତେ ଚେଷ୍ଟାକଲେ ମଧ୍ୟ ଦେବଯାନୀ ପରି

ନାଚିପାରେନାହିଁ। ତା'ହେଲେ କେଶକୁ ବିଞ୍ଚି ନାଚିବି କିପରି? ତା'ପରେ କେଶକୁ ବିଞ୍ଚି କିପରି ନାଚିବାକୁ ହୁଏ, ସେପରି କଳା ମୋତେ ତ କେହି ଶିଖାଇଲାନାହିଁ?

କେଶ କୁଣ୍ଡାଇବାବେଳେ ମାଆ ଅଧିକାଂଶ ସମୟରେ କହନ୍ତି– "ଶମା, କେଡ଼େ ଭାଗ୍ୟଶାଳିନୀଲୋ ତୁ! ଆଣ୍ଠୁ ପର୍ଯ୍ୟନ୍ତ କେଶବତୀ କନ୍ୟା କୋଟିକରେ ଗୋଟିଏ ମିଳିବେ। ଲୋକେ କହନ୍ତି, ଏପରି ଝିଅଙ୍କର ଭାଗ୍ୟ ହଠାତ୍ ଚମକିଉଠେ...।"

ମା'ଙ୍କର କେଡ଼େ ପାଗଳାମି ଧାରଣା ନଥିଲା? ଶେଷକୁ ମୋ ଭାଗ୍ୟ ଜଳିଉଠିଲା। ଯେଉଁ ସିନ୍ଦୁକରେ ହୀରା ମୋତି ଭରିହୋଇଥିଲା, ସେଥିରୁ ଶେଷକୁ ମାଟି, ଗୋଡ଼ି, ପଥର ମିଳିଲା। ମୁଁ ଦେବଯାନୀର ଦାସୀ ହୋଇ ଅଶୋକବନର ନିର୍ଜନତା ମଧ୍ୟରେ ସଢ଼ି ସଢ଼ି ମରୁଛି। ବେଶଭୂଷା ଲାଗି ମନହେଉନାହିଁ, ସନ୍ନ୍ୟାସିନୀ ପରି କାଳ କାଟୁଛି। ବେଶଭୂଷାରେ ସଜ୍ଜିତା ହେବାକୁ କେଉଁ ସ୍ତ୍ରୀକୁ ବା ଭଲଲାଗେନାହିଁ? କିନ୍ତୁ ନାରୀ କାହିଁକି ଓ କାହାଲାଗି ବେଶଭୂଷାରେ ନିଜକୁ ସଜାଇବ?

ରାତିରେ କଡ଼ ଲେଉଟାଇବାବେଳେ ଅନାୟାସରେ ମୋ ହାତ ବେଣୀ ଉପରେ ପଡ଼ିଯାଏ, ତା'ପରେ ମୋର ମନେପଡ଼ିଯାଏ ବାପଘରେ ପଢ଼ିଥିବା କାବ୍ୟର ସେହି ମଧୁର ବର୍ଣ୍ଣନା, ନାୟକ ଶୋଇଯାଇଥାଏ, କିନ୍ତୁ ନାୟିକା ଠିକ୍ ମୋ'ପରି ଅନିଦ୍ରା ରହି କାଳେ ନିଜ ପ୍ରିୟତମଙ୍କ ମୁଖଚନ୍ଦ୍ରମାକୁ ଦେଖି ଆକାଶର ଚାନ୍ଦ ଦୃଷ୍ଟି-ନଜର ପକାଇଦେବ ସେଥିଲାଗି ଉପାୟ ଚିନ୍ତାକରେ। ସେ ଝୀନବାସ ଖଣ୍ଡିଏ ସୁଦ୍ଧା ପ୍ରିୟତମଙ୍କ ମୁଖରେ ପକାଇ, ଘୋଡ଼ାଇ ଦେବାକୁ ପସନ୍ଦ କରେନାହିଁ। ଶେଷକୁ ମନେପଡ଼ିଯାଏ ତା'ର କେଶସଜ୍ଜା। ସେ ଭାବେ, କେଶସଜ୍ଜା ସିନା ପ୍ରିୟତମଙ୍କ ଆନନ୍ଦଲାଗି; ସେ ତ ଶୋଇପଡ଼ିଲେଣି, ଆଉ ସେ ସାଜସଜ୍ଜା କାହାଲାଗି? ତେଣୁ ସେ ନିଜର ଲମ୍ବ କେଶଗୁଚ୍ଛ ଫିଟାଇଦେଇ ଚନ୍ଦ୍ର ଓ ପ୍ରିୟତମଙ୍କ ମଝିରେ ବସିପଡ଼େ। ତା'ଫଳରେ ଆକାଶର ଚାନ୍ଦ ଆଉ ତା' ପ୍ରିୟତମଙ୍କ ମୁଖରେ ଜ୍ୟୋସ୍ନା ଅଜାଡ଼ି ଦେଇପାରେନା।

ଏ ବର୍ଣ୍ଣନା ପଢ଼ିବା ସମୟରେ ମୋ ମନରେ ଭାବନା ଜାଗିଥିଲା– 'ମୋର ତ ଲମ୍ବ କେଶ, ମୁଁ କାଲି ପୁଣି ବିବାହକରିଯିବି। ମୁଁ ମଧ୍ୟ ଏହିପରି ଭାବରେ ମୋ ପ୍ରିୟତମଙ୍କ ମୁଖଚନ୍ଦ୍ରମାକୁ ଆକାଶର ଚନ୍ଦ୍ରଠାରୁ ଲୁଚାଇରଖିବି।' ଏ କଥା ଚିନ୍ତା କରିବା ସମୟରେ ମନରେ କେତେ ନୂଆ ନୂଆ କଳ୍ପନା ଜାଗିଉଠେ; କିନ୍ତୁ ଏବେ ସେଇ କଥା ମନେପଡ଼ିଗଲେ, ମୋର ଛାତି କରତିହୋଇଯାଉଛି। କାହିଁ, କେଉଁଠି ଅଛି ଶର୍ମିଷ୍ଠାର ପ୍ରିୟତମ? ସେ କାହାଲାଗି କେଶସଜ୍ଜା କରିବ? ମନ୍ଦିରରେ ଦେବବିଗ୍ରହ ନାହିଁ; ତେଣୁ ସେ କାହାଲାଗି ବଣଜଙ୍ଗଲରେ ବୁଲି ସୁନ୍ଦର ସୁଗନ୍ଧିତ ଫୁଲ ସଂଗ୍ରହ କରିବ? କିନ୍ତୁ କଚ୍‌ଦେବଙ୍କ ପ୍ରତ୍ୟେକ କଥା ମନରେ ମୋର ଅପୂର୍ବ ସାନ୍ତ୍ୱନା ଦେଇଥାଏ। ସାରାଦିନ ତାଙ୍କରି ଉପଦେଶଗୁଡ଼ିକୁ ମନରେ ଭାବିଭାବି କାଳ କଟାଇଦିଏ; କିନ୍ତୁ ସେଇ କାଳରାତିଗୁଡ଼ିକୁ...।

ରାତ୍ରିର ଭୀଷଣତା ମଧ୍ୟରେ ମହାରାଜଙ୍କ ଚିତ୍ରଫଳକଟି ମୋର ମନକୁ କେତେ ସମୟ ବହଲାଇଦିଏ। ମୁଁ ପ୍ରତିଦିନ ଫୁଲମାଳରେ ସଜ୍ଜିତ କରି ଏକଲୟରେ ସେହି ଆଡ଼କୁ ଚାହିଁ ବସିରହେ। ତା'ପରେ ଘଣ୍ଟା ଘଣ୍ଟା ଧରି ଆଖି ବନ୍ଦକରିଦିଏ। ସେହି ସମୟ ମଧ୍ୟରେ ମହାରାଜ ଓ ମୋ ମଧ୍ୟରେ କେତେ କଥାବାର୍ତ୍ତା ଚାଲେ। ଆଖି

ଖୋଲିଦେବା ପରେ ଘରର କାନ୍ଥଗୁଡ଼ିକ ମୋତେ ପଚାରନ୍ତି – 'ବାଃ... ତୁ ତ ବଡ଼ ଚାଲାକ୍ ଶର୍ମିଷ୍ଠା, ଆଖି ବୁଜିଦେଇ ନିଜ ପ୍ରିୟତମଙ୍କ ସହିତ କଥାବାର୍ତ୍ତା କରୁଛୁ, ପଦେହେଲେ ସୁଦ୍ଧା ଆମେ ଶୁଣିପାରୁନାହୁଁ?'

ଦିନକର କଥା; ମୁଁ ଚିତ୍ରଫଳକରେ ଫୁଲହାର ଲମ୍ବାଇଦେଇ ଧ୍ୟାନଧାରଣା ଲାଗି ଆଖିବୁଜିଦେଇ କଥାବାର୍ତ୍ତା ଆରମ୍ଭକରିଦେଲି; କିନ୍ତୁ ମୋତେ ଜଣାପଡ଼ିଲା, ଯେତେଯେପରି ମହାରାଜ ମୋ ସହିତ କଥାବାର୍ତ୍ତା କରୁନାହାନ୍ତି। ଭାବିଲି, ବୋଧହୁଏ ସେ ମୋ ଉପରେ ରାଗିଛନ୍ତି। ସଙ୍ଗେ ସଙ୍ଗେ ମୁଁ ତାଙ୍କ ଓଠରେ ମୋ ଓଠ ଲଗାଇ ଦେଇ କହିଲି – 'ଆଉ ରାଗିବେନି ତ?' ପର ମୁହୂର୍ତ୍ତରେ ମୁଁ ସଚେତନ ହୋଇଯାଇ ଭାବିଲି, ଆରେ... ଏ' ତ ମହାରାଜ ନୁହନ୍ତି, ତାଙ୍କର ଚିତ୍ରଫଳକ ମାତ୍ର। ସେହି ଚୁମ୍ବନ ଫଳରେ ମୋତେ ଖୁବ୍ ଲାଜମାଡ଼ିଲା। କଚ୍‌ଦେବ ଏକଥା ଜାଣିଲେ କ'ଣ ମନରେ ଭାବିବେ? ତାଙ୍କ ଭଉଣୀ, ତାଙ୍କର ବଡ଼ଭଉଣୀ ନିଜ ମନକୁ ଆୟତ୍ତ କରିପାରୁନାହିଁ?

ଅନେକ ସମୟ ପର୍ଯ୍ୟନ୍ତ ମୁଁ ଛଟପଟ ହେଲି। ଜୀବନର ଅମାଅନ୍ଧକାର ମଧ୍ୟରେ ମୁଁ ଚନ୍ଦ୍ରମାଙ୍କର ଉଜ୍ଜ୍ୱଳ କିରଣ ଖୋଜୁଥିଲି। ମନମନ୍ଦିରର ଦ୍ୱାର ଓ ବାତାୟନ ବନ୍ଦକରିଦେବା ଅତ୍ୟନ୍ତ କଷ୍ଟକର; କିନ୍ତୁ ଆଦୌ ଅସମ୍ଭବ ନୁହେଁ। ଆଜି ସୁଦ୍ଧା ମୁଁ ତାହାହିଁ କରିଆସିଛି। ତଥାପି ବାତାୟନ ଓ ଛାତର ଛିଦ୍ର ଦେଇ ଯଦି ଆକାଶର ଚାନ୍ଦିନୀ ଘର ଭିତରକୁ ପଶିଆସେ, ତେବେ ଉପାୟ କ'ଣ? ତାକୁ କିପରି ରୋଧକରାଯାଇପାରିବ? ଚିତ୍ରଫଳକ ଉପରେ ମୋ ଚୁମ୍ବନ ଠିକ୍ ସେହିପରି।

ଅନେକ ଚିନ୍ତାକରି ଦେଖିଲି, କଚ୍‌ଦେବଙ୍କ ପଦଚିହ୍ନର ଅନୁସରଣ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର। କିନ୍ତୁ ତାହା ପବିତ୍ର, ସ୍ନେହଶୀଳ ଓ ପ୍ରାମାଣିକ ମଧ୍ୟ। କିନ୍ତୁ ସେ ପୁରୁଷ; ତାଙ୍କ ପବିତ୍ରତା, ତାଙ୍କ ଉଦାରତା ତଥା ସ୍ନେହଶୀଳତା ଶର୍ମିଷ୍ଠା ପକ୍ଷରେ ଅନୁକରଣୀୟ, ଶ୍ଳାଘ୍ୟ। କିନ୍ତୁ... କିନ୍ତୁ ଶର୍ମିଷ୍ଠା ଗୋଟିଏ ନାରୀ। ସ୍ତ୍ରୀ ଓ ପୁରୁଷଙ୍କ ମନ, ଶରୀର ଓ ଜୀବନ ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି। ପୁରୁଷ ଅମୂର୍ତ୍ତର ପଛେ ପଛେ ସହଜରେ ଦୌଡ଼ିପାରେ। ତେଣୁ କୀର୍ତ୍ତି, ଆତ୍ମା, ପରାକ୍ରମ ତଥା ପରମେଶ୍ୱର ଆଦି ଉଚ୍ଚାକାଙ୍କ୍ଷା ତା' ମନ ମଧ୍ୟରେ ସହଜରେ ସ୍ଥାନ ଆବୋରିନିଏ। କିନ୍ତୁ ନାରୀ ଏ ସବୁ ଆଡ଼କୁ ସହଜରେ ଆକର୍ଷିତ ହୋଇପାରେନାହିଁ। ସେ ପ୍ରେମ, ସ୍ନେହ, ସ୍ୱାମୀ, ପୁତ୍ରସେବା, ଗୃହ ଆଦି ମୂର୍ତ୍ତ ଆକର୍ଷଣ ଆଡ଼କୁ ଅନାୟାସରେ ଆକର୍ଷିତ ହୋଇଥାଏ। ସେ ସଂଯମ ଆଚରଣ କରେ, ତ୍ୟାଗର ପରାକାଷ୍ଠା ଦେଖାଏ; କିନ୍ତୁ ସବୁକିଛି ସେହି ସାଂସାରିକ ସୁଖ, ଦୈହିକ ଆକର୍ଷଣ ଲାଗି କରିଥାଏ। ନିର୍ଦ୍ଦିଷ୍ଟ ପୁତଳିକାକୁ ଆଖି ଆଗରେ ରଖି ନାରୀ ସର୍ବସ୍ୱ ଅର୍ପଣ କରିପାରେ, ଅଶ୍ରୁଜଳରେ ସେହି ମୂର୍ତ୍ତିର ଅଭିଷେକ କରିପାରେ। କିନ୍ତୁ ପୁରୁଷମାନଙ୍କ ପରି ଆକାଶର ଶୂନ୍ୟତା ମଧ୍ୟରେ ସେ ନିଜର ଧ୍ୟେୟ ତଥା ଆରାଧ୍ୟଙ୍କୁ ଦେଖିପାରେନାହିଁ।

ଅନେକ ସମୟ ପର୍ଯ୍ୟନ୍ତ ସେହି ବିଚାରଧାରାରେ ମୁଁ ନିଜକୁ ଭସାଇଦେଲି। ଅବଶ୍ୟ ତା'ଫଳରେ ମୋର ଅଶାନ୍ତ ମନ ଅନେକ ପରିମାଣରେ ଆଶ୍ୱସ୍ତ ହେଲା। ସୂର୍ଯ୍ୟ ଉଦୟ ହୋଇ ଅସ୍ତ ହୁଅନ୍ତି; ରାତିରେ ଚନ୍ଦ୍ର ନିଜର ଶୀତଳ କିରଣ ବିକିରଣ କରି ଉଭେଇଯାଆନ୍ତି। ଅମାବାସ୍ୟା ଓ ପୂର୍ଣ୍ଣିମା ଆସେ, ଚାଲିଯାଏ; କିନ୍ତୁ ମୋ

ମନଉପରେ ଏହାର କିଛି ପ୍ରଭାବ ପଡ଼େନାହିଁ। ବେଳେବେଳେ ମୁଁ ଚିନ୍ତାକରେ, ବିରାଡ଼ି ଯେପରି ମୂଷାକୁ ଜୀବନରୁ ମାରିବା ପୂର୍ବରୁ ତା' ସହିତ ଖେଳିବସେ, ଠିକ୍ ସେହିପରି ଦେବଯାନୀ ମୋ ସହିତ ବ୍ୟବହାର କରୁନାହିଁ ତ? ସେ କ'ଣ ଚାହୁଁଛି ଯେ, ମୁଁ ଜୀବନଉପରୁ ଆସ୍ଥା ହରାଇ ଆତ୍ମହତ୍ୟା କରି ଏ ସଂସାରରୁ ବିଦାୟନିଏ? ଏପରି ବିଚାର ଆସିବାମାତ୍ରେ ମୁଁ ଶିହରିଉଠି ଭାବେ; ଯଦି ଦିନେ ନା ଦିନେ ମୋତେ ଏହାହିଁ କରିବାକୁ ପଡ଼ିବ, ତେବେ ଆଜି କାହିଁକି ବା ଆତ୍ମହତ୍ୟା ନକରିବି? ବିଶେଷ କିଛି କଷ୍ଟ କରିବାକୁ ପଡ଼ିବ ନାହିଁ। ଯମୁନା ନଦୀ ତ ଏଇ ନିକଟରେ, କେବଳ ବୁଲିବାକୁ ଯାଇ କୂଳ ଉପରୁ ଗୋଟିଏ ଲମ୍ଫ ଦେଲେ . . .।

ଦିନେ ଘନଅନ୍ଧକାର ରାତିର ନିଃଶବ୍ଦ ମୁହୂର୍ତ୍ତରେ ଏପରି କେତେ କ'ଣ ଅହେତୁକ ଚିନ୍ତା କରୁଥିବା ସମୟରେ ଗୋଟିଏ ରଥ ଆସି ଅଟକିବାର ଶବ୍ଦ ଶୁଣାଗଲା। ରାତିଅଧରେ ମୋ ପରି ଗୋଟେ ହୀନମାନୀ ଦାସୀର ଖବର ନେବାକୁ କିଏ ବା କାହିଁକି ଆସିବ? ଶର୍ମିଷ୍ଠା ମରିଛି କି ବଞ୍ଚିଛି, ଏ ଖବର ନେବାପାଇଁ ଭୁଲ୍‌ରେ ସୁଦ୍ଧା ଦେବଯାନୀ କେବେହେଲେ ଏଠାରେ ପାଦ ପକାଇବ ନାହିଁ। କେହି ଅତିଥି ହୋଇପାରନ୍ତି। ଠିକ୍ ଅଛି, ଯେ ଆସୁନା କାହିଁକି ସେବକମାନେ ତା'ର ବ୍ୟବସ୍ଥା କରିଦେବେ।

ଏହିପରି ବସି ଚିନ୍ତା କରୁଥିବା ସମୟରେ ସେବକ ଜଣେ ଋଷିଙ୍କୁ ଧରି ଆସି ମୋ କକ୍ଷରେ ହାଜର ହୋଇଗଲା। ଅବଶ୍ୟ କଚ୍ଚ ମୋ ମହଲକୁ ଆସୁଥିଲେ, ସେ କଥା ଅଲଗା, କିନ୍ତୁ ଏ ଅପରିଚିତ ଋଷି ଏଠାକୁ ଆସିବା କେତେଦୂର ସଙ୍ଗତ ହେବ? ମୁଁ ହଠାତ୍ ସେବକକୁ କହିଲି, ''ତୋ ମୁଣ୍ଡ ଗୋଳମାଳ ହୋଇନାହିଁ ତ? ଏଇଟା କ'ଣ ଅତିଥିଶାଳା? ତୁ ଋଷି ମହାରାଜଙ୍କୁ ଏଠାକୁ ଆଣିଛୁ କାହିଁକି!''

—''ଆପଣଙ୍କ ପାଖକୁ ଆଣିବାଲାଗି ମୋତେ ଆଦେଶ ହୋଇଛି!''

—''କିଏ ଆଦେଶ ଦେଲେ?''

—''ନିଜେ ମହାରାଣୀ . . .''

—''ମହାରାଣୀ? କାହାନ୍ତି ସେ?''

—''ସେ ରଥରେ ବସି ଚାଲିଗଲେ; ଚାରି-ପାଞ୍ଚ ଘଡ଼ି ପରେ ଆସି ଏ ମହାତ୍ମାଙ୍କୁ ନେଇଯିବେ। ଯା' ମଧ୍ୟରେ ଆପଣ ଏ ମହାତ୍ମାଙ୍କ ଦର୍ଶନ . . .।''

ମୁଁ ଋଷିମହାରାଜଙ୍କ ଆଡ଼କୁ ଚାହିଁଲି। ମୋର ମନେହେଲା, ମୁଁ ଯେପରି ଆଉ କେଉଁଠି ତାଙ୍କୁ ଦେଖିଛି। ମନେମନେ ହସିଦେଲି, ଆରେ . . . ମୁଁ ଆଉ କେଉଁଠି ଯା'ଙ୍କୁ କାହିଁକି ବା ଦେଖନ୍ତି? କୌଣସି ଜଣେ ପରାକ୍ରମୀ ରାଜାଙ୍କ ପରି ବେଶ୍ ହୃଷ୍ଟପୁଷ୍ଟ ଶରୀର। ଗଳାରେ ଲମ୍ବିଥିବା ରୁଦ୍ରାକ୍ଷମାଳା ଠିକ୍ ରତ୍ନମାଳା ପରି ଶୋଭାପାଉଥିଲା। କିନ୍ତୁ ଋଷିମହାରାଜ ମନେମନେ ସଙ୍କୋଚ୍ କଲାପରି ମନେହେଲା। ସେ ମୋତେ ଦର୍ଶନ ଦେବାଲାଗି ଆସିଥିଲେ, କିନ୍ତୁ କିପରି ଭାବରେ ମୁଁ ତାଙ୍କର ଅଭ୍ୟର୍ଥନା କରିବି ଆଦୌ ବୁଝିପାରିଲି ନାହିଁ। ମୋ ଆଖିରେ ତାଙ୍କ ଆଖି ମିଶିଯିବାମାତ୍ରେ ସେ ଦୃଷ୍ଟି ଫେରାଇନେଲେ। ମୋ ମନରେ ହଠାତ୍ ସନ୍ଦେହ ଜାତହେଲା; ଯଦିପରି ଗୋଟିଏ ନାରୀହନ୍ତାକୁ ଦେବଯାନୀ କୌଶଳରେ ମୋ ପାଖକୁ ପଠାଇନାହିଁ ତ? ମୁଁ ମନେ ମନେ ଖୁବ୍ ସାବଧାନ ତଥା ସତର୍କ ହେବାଲାଗି ନିଶ୍ଚୟ କରିନେଲି।

ମୁଁ ତାଙ୍କୁ ବସିବାଲାଗି କକ୍ଷର ମଧ୍ୟଭାଗରେ ଆସନ ପକାଇଦେଲି। ସେ ସେଠାରେ ନବସି ଗୁରୁଗମ୍ଭୀର ସ୍ୱରରେ କହିଲେ– 'ଆମେ ଗୁମ୍ଫାବାସୀ ଯୋଗୀ; ମୁଁ ସେଠାରେ କୋଣରେ ବସିବି।'

ସେ ଯଦି 'ଛାତ ଉପରେ ବସିବି' ବୋଲି କହିଥା'ନ୍ତେ, ତେବେ ସୁଦ୍ଧା ମୋର ପ୍ରତିବାଦ କରିବାର ଉପାୟ ନଥିଲା। ତେଣୁ ମୁଁ ଆସନଟି ନେଇ ମହାରାଜଙ୍କ ଚିତ୍ରଫଳକ ଥିବା କୋଣରେ ବିଛାଇଦେଲି। ମୁଁ ଠିକ୍ ପୂର୍ବରୁ ଚିତ୍ର ଉପରେ ଫୁଲମାଳଟିଏ ଦେଇଥିଲି। ବାବାଜୀ ନିରୀକ୍ଷଣ କରି ସେହି ଆଡ଼କୁ ଚାହିଁବାରୁ ମୁଁ ଭାବିଲି, 'ଏ ଯାଇ ଦେବଯାନୀ ଆଗରେ ଚୁଗୁଲି କଲେ ମୋ କପାଳ ଫାଟିବ। ହେ ଭଗବାନ୍! ଏ ତ ନିରୀକ୍ଷଣ କରି ସେଇ ଚିତ୍ରଟିକୁ ଦେଖିବାରେ ଲାଗିଲେଣି।' ଏହା ଲକ୍ଷ୍ୟ କରି ମୁଁ ଝାଳରେ ଜୁଡୁବୁଡୁ ହୋଇଗଲି। ସେ ଚିତ୍ରଫଳକଟି ସମ୍ବନ୍ଧରେ କିଛି ମନ୍ତବ୍ୟ ନଦେଇ ଧ୍ୟାନମଗ୍ନ ହୋଇଗଲେ; କିନ୍ତୁ ତାଙ୍କର ମୁଖମଣ୍ଡଳ ଆନନ୍ଦରେ ପ୍ରଫୁଲ୍ଲିତ ହୋଇଉଠିଲା। ମୁଁ ତାଙ୍କୁ ପ୍ରଣାମ କରନ୍ତେ, ସେ ପୂର୍ବପରି ଗମ୍ଭୀର ସ୍ୱରରେ କହିଲେ– "ଝିଅ, ତୁ କ'ଣ ଚାହୁଁଛୁ?"

–"କିଛି ନୁହେଁ ମହାରାଜ!"

–"ତୁ ମିଛ କହୁଛୁ!"

ମୁଁ ନୀରବ ରହିଲି। ତା'ପରେ ସେ ହସିଦେଇ କହିଲେ– "ତୁ ନିଶ୍ଚୟ ମନେମନେ କାହାରିକୁ ପ୍ରେମ କରୁଛୁ। ସେ ବ୍ୟକ୍ତି ତୋ'ରି ନିକଟରେ ରହିଛି; କିନ୍ତୁ ତୁ ଭାବୁଛୁ ସେ ଖୁବ୍ ଦୂରରେ ଅଛି ଏବଂ ତୋ' ପକ୍ଷରେ ଦୁର୍ଲ୍ଲଭ . . .।"

ହଁ, ନା, କିଛି କହିବାଲାଗି ମୋର ସାହସ ହେଲାନାହିଁ; କିନ୍ତୁ ଭାବିଲି– ଏ କ'ଣ ତ୍ରିକାଳଜ୍ଞ? ମୋ ମନକଥା ଜାଣିଲେ କିପରି?

–"ତା'ହେଲେ କହ, ତୁ ତୋ'ର ପ୍ରଣୟୀଙ୍କ ପାଇଁ କ'ଣ କରିପାରିବୁ?"

"ପ୍ରାଣ ସୁଦ୍ଧା ଅର୍ପଣ କରିପାରେ . . .।" ହଠାତ୍ ମୋ ମୁହଁରୁ ବାହାରିଗଲା; କିନ୍ତୁ ଜିଭ କାମୁଡ଼ି ପକାଇ ସଂଯତ ହୋଇଗଲି।

ଋଷିମହାରାଜ ହସିଦେଇ ପୁଣି ଧ୍ୟାନମଗ୍ନ ହୋଇଗଲେ। ମୁଁ ସେଇଠି ଛିଡ଼ାହୋଇ ଏକ ଲୟରେ ତାଙ୍କରି ଆଡ଼କୁ ଚାହିଁରହିଲି। କିଛି ସମୟ ପରେ ସେ ଆଖି ଖୋଲି କହିଲେ– "ତୁ ଏପର୍ଯ୍ୟନ୍ତ ମୋତେ ବିଶ୍ୱାସ କରିପାରୁନାହିଁ। ତୁ କକ୍ଷର ଦ୍ୱାର ବନ୍ଦକରିଦେ; ମୁଁ ମୋ ମନ୍ତ୍ରର ପ୍ରଭାବ ତୋତେ ଦେଖାଉଛି।"

ମହଲର ଦ୍ୱାର ବନ୍ଦକରିଦେଲେ ଯତି ପରି ଏ ଯଦି ମୋ ତୋଟି ଚିପି ମାରିଦିଏ? ମୋତେ ଅସମଞ୍ଜସରେ ପଡ଼ୁଥିବା ଦେଖି ଋଷି ନିଜେ ଉଠିପଡ଼ିଲେ। ସେ ରାଗିକରି ପଳାଇଯାଉଛନ୍ତି ଭାବି ମୁଁ ମନେ ମନେ ଡରିଗଲି। ସେ ବାହାରକୁ ନଯାଇ ମୋ ମୁଣ୍ଡ ଉପରେ ହାତ ରଖି କହିଲେ, "ଯା . . . କବାଟ ବନ୍ଦ କରିଦେଇ ଆ। ତୋ ଜୀବନର ସ୍ୱର୍ଣ୍ଣିମକ୍ଷଣ ଏବେ ଆସିଗଲାଣି, ଯାଆ।"

ତାଙ୍କର ସ୍ପର୍ଶ ମୋ ମନରେ ଧୈର୍ଯ୍ୟ ଶାନ୍ତି ତଥା ଆଶ୍ୱାସନା ଆଣିଦେଲା। ମୁଁ ଦ୍ୱାର ବନ୍ଦକରିଦେଇ ଫେରିଆସିଲି। ମହାରାଜଙ୍କ ଚିତ୍ରଫଳକ ଆଡ଼କୁ ଆଙ୍ଗୁଳି ଦେଖାଇ ସେ କହିଲେ– "ତୁ କ'ଣ ଏଇ ମହାରାଜ ଯଯାତିଙ୍କୁ ପ୍ରେମକରୁଛୁ?"

ମୁଁ କିଛି ଉତ୍ତର ନଦେଇ ନୀରବ ରହିଲି। ସେ ପୁଣି ଟିକିଏ ଗମ୍ଭୀର ସ୍ୱରରେ କହିଲେ– "ତଥାପି ତୁ ଏପର୍ଯ୍ୟନ୍ତ ମୋତେ ବିଶ୍ୱାସ କରିପାରିଲୁ ନାହିଁ? ଠିକ୍ ଅଛି, ତୋର ବିଶ୍ୱାସ ଜନ୍ମିଲାଭଳି ଗୋଟିଏ ଚମତ୍କାର ଦୃଶ୍ୟ ତୋତେ ଦେଖାଉଛି। ଆଚ୍ଛା କହିଲୁ, ଏ ମହଲରୁ ବାହାରକୁ ଯିବାଲାଗି ସୁଡ଼ଙ୍ଗ ମାର୍ଗ ଅଛି କି?"

–"ନାଁ ..."

ସେ ହସିଦେଇ ପଲଙ୍କ ପାଖରେ ଥିବା କାନ୍ଥ ପାଖକୁ ଚାଲିଗଲେ। ସେଠାରେ ଥିବା ଗୋଟିଏ ଛୋଟିଆ କଳକୁ ବୁଲାଇଦେବାରୁ ପ୍ରାୟ ତିନି ହାତ ଉଚ୍ଚରେ ଗୋଟିଏ କବାଟ ଖୋଲିଯାଇ ସୁଡ଼ଙ୍ଗ ମାର୍ଗ ସ୍ପଷ୍ଟ ଦେଖାଗଲା। ଏହି ମହଲରେ ଥିବା ଲୋକମାନଙ୍କୁ ଏ ଗୁପ୍ତମାର୍ଗ ସମ୍ବନ୍ଧରେ କିଛି ଜଣାନଥିଲା; କିନ୍ତୁ ଏ ଋଷିଙ୍କୁ ଜଣାପଡ଼ିଲା କିପରି? ସେ କଳଟିକୁ ପୁଣି ମୋଡ଼ିଦେଇ ଗୁପ୍ତଦ୍ୱାର ବନ୍ଦକରିଦେଇ ମୋତେ ପଚାରିଲେ– "ତୁ କେଉଁଠି ଶୋଉଛୁ!"

–"ଏଇଠି ...।"

–"ଏକୁଟିଆ ?"

–"କେବେ କେବେ ଦୁଇଜଣ ଦାସୀ ମୋ ପାଖରେ ଶୁଅନ୍ତି– ନୋହିଲେ ପ୍ରାୟ ମୁଁ ଏକୁଟିଆ ଶୁଏ।"

"ଆଜିଠାରୁ ମହଲର ଦ୍ୱାର ବନ୍ଦକରି ଏ କକ୍ଷରେ ଏକୁଟିଆ ଶୋଇବୁ। ତୋର ପ୍ରେମ ସଫଳ କରାଇବାଲାଗି ମୁଁ ପ୍ରଚେଷ୍ଟା କରିବି। ଆବଶ୍ୟକ ହେଲେ ତୋ'ର ମଙ୍ଗଳଲାଗି ମୁଁ ମୋର ସମସ୍ତ ସାଧନା ପ୍ରୟୋଗ କରିବି। ପ୍ରକୃତ ପ୍ରଣୟୀ ବା ପ୍ରଣୟିନୀଙ୍କୁ ମୁନିଋଷିମାନେ ଯଥାସାଧ୍ୟ ସାହାଯ୍ୟ କରନ୍ତି। ମନେରଖ, ଦିନେ ନା ଦିନେ ଏହି ମାର୍ଗ ଦେଇ ଯଯାତି ତୋ ପାଖକୁ ନିଶ୍ଚୟ ଆସିବେ ଏବଂ ତୋ' ନାମ ଧରି ଡାକିବେ। ଆଚ୍ଛା, ତୋ' ବାପା ମାଆ ତୋତେ କ'ଣ ବୋଲି ଡାକନ୍ତି?"

–"ଶମା ...!"

–"ହଁ... ସେହି ନାମରେ ସେ ତୋତେ ଡାକିବେ। ତାଙ୍କ ଡାକ ଶୁଣି ତୁ ଆଦୌ ଭୟ କରିବୁ ନାହିଁ। ଏହି କଳକୁ ଘୂରାଇ ଦ୍ୱାର ଖୋଲିଦେବୁ। ସାବଧାନ ହୋଇ ଆଜିଠାରୁ ରହିବୁ। ଯେଉଁ ଦାସୀମାନଙ୍କ ଉପରେ ତୋର ପୂର୍ଣ୍ଣ ବିଶ୍ୱାସ ରହିଛି, କେବଳ ସେଇମାନଙ୍କୁ ଏଠାରେ ଶୁଆଇପାରୁ। ତୋର ପ୍ରେମପଥରେ ତୀକ୍ଷ୍ଣ କଣ୍ଟକ ରହିଛି; କିନ୍ତୁ ସେହି କଣ୍ଟକ ତଳେ ସୁଗନ୍ଧିତ ପୁଷ୍ପ ମଧ୍ୟ ରହିଛି।"

ମୁଁ ଆଦୌ ବିଶ୍ୱାସ କରିପାରିଲି ନାହିଁ। ଭାବିଲି, ହୁଏତ ଦେବଯାନୀ କୌଣସି ଅଭିନେତାଙ୍କୁ ଋଷିବେଶରେ ପଠାଇ ମୋତେ ଆହୁରି ଅପମାନିତ କରିବାଲାଗି ଏପରି ବ୍ୟବସ୍ଥା କରିଛି– ଏହି କଥା ଚିନ୍ତା କରିବାମାତ୍ରେ ଭୟରେ ମୋର ସର୍ବାଙ୍ଗ ଥରିଉଠିଲା। ନା ... ତା' ହୋଇନପାରେ। ବାହାରର ଗୋଟିଏ ଅଭିନେତା ରାଜପୁରର ଗୁପ୍ତଦ୍ୱାର ସମ୍ବନ୍ଧରେ ଜାଣିବ କିପରି? ମୁଁ ଏହିପରି ସନ୍ଦେହର ଦୋଳାରେ ଆନ୍ଦୋଳିତ ହୋଇ ଋଷିଙ୍କ ମୁହଁକୁ ଏକା ଧ୍ୟାନରେ ଚାହିଁରହିଲି। ସେ ହଠାତ୍ ମୁହଁ ବୁଲାଇନେଇ ଦ୍ୱାର ଖୋଲିବାଲାଗି ଚାଲିଗଲେ; କିନ୍ତୁ ତାଙ୍କ ଚାଲିରୁ ମନେହେଲା, ପୂର୍ବରୁ ମୁଁ ନିଶ୍ଚୟ ଏହାଙ୍କୁ ଦେଖିଛି। ମନେପଡ଼ିଲା, ସେଦିନ ନାଟକରେ ଯେଉଁ ଲୋକଟି ପୁରୁରବା

ସାଜିଥିଲା, ତାକୁ ହିଁ ଋଷିବେଶରେ ସଜାଇ ଦେବଯାନୀ ଲୋକହସା କରାଇବାର ଆୟୋଜନ କରିନାହିଁ ତ ?

ମୁଁ ପୁଣି ଭାବିଲି, ନା ମୁଁ ଋଷିଙ୍କ ଆଗରେ କହିବି– "ମୁଁ ଯାହା ଯାହା କହିଛି ସବୁ ମିଥ୍ୟା। ମୁଁ ଆପଣଙ୍କୁ ସବୁ ମିଛ କହିଛି। କିନ୍ତୁ ସେତେବେଳକୁ ସାଧୁ ମହାରାଜ ଦ୍ୱାର ଖୋଲିସାରିଲେଣି। ମୋ ମନକଥା ମନରେ ରହିଗଲା। ଚାହୁଁ ଚାହୁଁ ଅଶୋକବନରେ ଦାସଦାସୀମାନେ ଋଷିମହାରାଜଙ୍କ ପାଦଧୂଳି ନେବାଲାଗି ଆସି ରୁଣ୍ଡହୋଇଗଲେ। ମୁନି ମହାରାଜ ସମସ୍ତଙ୍କୁ ଆଶୀର୍ବାଦଦେଲେ। ଏହି ସମୟରେ ଦେବଯାନୀର ରଥ ଆସି ହାଜରହୋଇଗଲା। ସେ ଆଦୌ ରଥରୁ ଓହ୍ଲାଇଲାନାହିଁ, କିନ୍ତୁ ତାକୁ ସ୍ୱାଗତ ଜଣାଇବାଲାଗି ମୁଁ ଆଗେଇଗଲି, ଯେତେହେଲେ ଗୋଟେ ଦାସୀ ତ . . .।

ପିଲାଦିନେ ଯେପରି ସେ ମୋତେ 'ଶମାନାନୀ' ବୋଲି ଡାକୁଥିଲା, ଠିକ୍ ସେହିପରି ସମ୍ବୋଧନ କରି କହିଲା ଦେବଯାନୀ, "ଶମାନାନୀ! ଦେଖିଲ ଆମ ଋଷିରାଜଙ୍କୁ? କେମିତି ଲାଗିଲା . . .।"

ଓଃ . . . କେତେ ବର୍ଷ ପରେ ଦେବଯାନୀ ମୋତେ 'ଶମାନାନୀ' ବୋଲି ଡାକିଲା। କୃତଜ୍ଞତାପୂର୍ଣ୍ଣ ସ୍ୱରରେ ମୁଁ କହିଲି, "ଖୁବ୍ ଭଲଲାଗିଲା, ମହାରାଣୀ! ଆପଣ ଅନୁମତି ଦେଲେ ମୁଁ ସାରା ଜୀବନ ଏହାଙ୍କ ପାଦ ସେବା କରିବି।"

ଦେବଯାନୀ କିଛି ଉତ୍ତର ନଦେଇ କେବଳ ହସିଦେଲା। ସେତିକିବେଳେ ସାରଥି ରଥକୁ ଚଳାଇନେଲା।

ସେଦିନ ସାରା ରାତି, କେବଳ ସେଇ ଦିନ କାହିଁକି, ସେହିଦିନଠାରୁ ପ୍ରତ୍ୟେକ ରାତ୍ରି ଭୟ, ଉତ୍କଣ୍ଠା, କୌତୂହଳ ତଥା ଚିନ୍ତାରେ ବିତିବାକୁ ଲାଗିଲା। କେତେବେଳେ ଭାବେ; ସେଇ ସୁଡ଼ଙ୍ଗ ମାର୍ଗ ଦେଇ ଦେବଯାନୀ ଆସି 'ଶମା', 'ଶମା' ବୋଲି ଡାକିବ, ମୁଁ କଳ ମୋଡ଼ି ଦ୍ୱାର ଖୋଲିଦେବାମାତ୍ରେ, ଉପହାସ କରି ମୋତେ ଖାଇଯିବ।

ଦିନ ପରେ ଦିନ ଗଡ଼ିଚାଲିଲା; ମୋତେ ଜଣାଗଲା, ଋଷିମହାରାଜଙ୍କ ଆଶୀର୍ବାଦ ଗୋଟିଏ ସ୍ୱପ୍ନ। ମନରେ କେତେ କଥା ଉଠିଲା। ଆଶଙ୍କା ଜାତହେଲା– ଯାହା ମୋର ଭାଗ୍ୟ। ତଥାପି ମୁଁ ନିୟମପୂର୍ବକ ପ୍ରତ୍ୟେକ ରାତିରେ ମହଲର ଦ୍ୱାର ବନ୍ଦକରିଦେଇ ଦୁଇଜଣ ବିଶ୍ୱାସୀ ଦାସୀଙ୍କୁ କକ୍ଷର ଦ୍ୱାରଦେଶରେ ଶୁଆଏ। ରାତି ଅଧ ପର୍ଯ୍ୟନ୍ତ ଅନିଦ୍ରା ରହି, ସେହି ଗୁପ୍ତଦ୍ୱାର ଆଡ଼କୁ କାନପାତି ରହିଥାଏ। ମୁଁ କେବେହେଲେ ଏ ନିୟମରୁ ବିଚ୍ୟୁତ ହେଲିନାହିଁ; କାରଣ ଆଶା ଉପରେ ତ ଏ ସଂସାର ବଞ୍ଚିରହିଛି। ମଣିଷ ଆଶାର ସ୍ୱପ୍ନ ଦେଖେ, ସେହି ସ୍ୱପ୍ନର ଦୁନିଆରେ ବଞ୍ଚିରହିବାକୁ ଚେଷ୍ଟାକରେ।

ଜଣାପଡ଼ିଲା, ଦେବଯାନୀ ଦୁଇ-ଚାରିଦିନ ପାଇଁ ପିତାଙ୍କ ଦର୍ଶନ ଲାଗି ଯାଉଛି। ଏହା ଶୁଣିବାମାତ୍ରେ ମୁଁ ମନେ ମନେ ଥରିଉଠି ଭାବିଲି, ସେ ମୋତେ ନିଶ୍ଚୟ ସଙ୍ଗରେ ନେଇଯିବ। ଋଷିଙ୍କର ଆଶୀର୍ବାଦ ଅନୁସାରେ ସେହି ସମୟ ମଧ୍ୟରେ ମହାରାଜ ଆସିଲେ? ମୁଁ ମଧ୍ୟ ପିତାମାତାଙ୍କୁ ଦର୍ଶନ କରିବାଲାଗି ଖୁବ୍ ଚାହୁଁଥିଲି, ତଥାପି . . .।

କିନ୍ତୁ ଦେବଯାନୀ ମୋତେ ସାଥିରେ ନେଲାନାହିଁ। ସେ ଚାଲିଯିବା ପରେ ବାପାମାଆଙ୍କ କଥା ମୋର ଖୁବ୍ ମନେପଡ଼ିଲା; ସାରା ଦିନ ମନ ଗୁଡ଼େଇ-ତୁଡ଼େଇ

ହେଲା । ମନେମନେ ମୁଁ ବ୍ୟସ୍ତହୋଇଉଠିଲି । କିନ୍ତୁ ରାତି ହେବାମାତ୍ରେ ମୋ ମନର ବ୍ୟସ୍ତତା ଦୂରହୋଇଗଲା; ଋଷିମହାରାଜଙ୍କ ଆଶୀର୍ବାଦ ସ୍ମରଣକରି ମୋ ମନରେ ଉତ୍କଣ୍ଠା ଜାଗିଉଠିଲା । କକ୍ଷର ଦ୍ୱାର ବନ୍ଦକରି ମହାରାଜଙ୍କ ତୈଳଚିତ୍ର ଆଡ଼କୁ ଚାହିଁ ପଲଙ୍କରେ ଶୋଇପଡ଼ିଲି । କେତେବେଳେ ଆଖି ଲାଗିଗଲା ମୁଁ ଆଦୌ ଜାଣିପାରିଲିନାହିଁ । ହଠାତ୍ 'ଶମା', 'ଶମା' ଡାକରେ ମୋ ନିଦ ଭାଙ୍ଗିଗଲା । ମନେହେଲା, ସତେ ଅବା ସ୍ୱପ୍ନରେ ମୁଁ ସେହି ଡାକ ଶୁଣୁଛି ! ପଲଙ୍କର ସାମନା ଦୁଆର ପାଖରୁ ସେ ଡାକ ଶୁଭୁଥିଲା । ମୁଁ ଆଖି ଖୋଲିଲି; କିନ୍ତୁ ମୋ ଦେହ ଗୋଟିପଣେ ଥରୁଥିଲା । କୌଣସିମତେ ଯାଇ ଦୁଆର ଖୋଲିଦେଇ ଦେଖିଲି, ଦୁଆରମୁହଁରେ ସ୍ୱୟଂ ମହାରାଜ ଛିଡ଼ାହୋଇଛନ୍ତି । ପ୍ରଥମେ ମୁଁ ନିଜର ଆଖି ଦୁଇଟିକୁ ବିଶ୍ୱାସ କରିପାରିଲିନାହିଁ । ମୋର ଆନନ୍ଦର ସୀମା ରହିଲାନାହିଁ । ଜଣାଗଲା— ମୋର ମୁଣ୍ଡ ଘୂରାଇଦେଉଛି, ମୁଁ ମୂର୍ଚ୍ଛିତା ହୋଇଯିବି । ମୋର ଗୋଡ଼ ଟଳମଳ ହେବାକୁ ଲାଗିଲା । ମୁଁ ପଡ଼ିଯିବା ପୂର୍ବରୁ ମହାରାଜ ମୋତେ ଆଲିଙ୍ଗନ-ପାଶରେ ବାନ୍ଧିନେଲେ । କ୍ଷଣକମଧ୍ୟରେ ନଦୀ ସାଗରରେ ନିଜକୁ ମିଶାଇଦେଲା ।

× × × ×

ମୁଁ ଆଖି ଖୋଲି ଚାହିଁଲି; ମୁଁ କେଉଁଠି ? ଇନ୍ଦ୍ରଙ୍କର ନନ୍ଦନବନରେ ? ମନ୍ଦାକିନୀର ସ୍ୱଚ୍ଛଧାରାରେ ଭାସିଆସିଥିବା ସୁଗନ୍ଧିତ ଫୁଲଶେଯରେ ? ମଳୟଗିରିରୁ ବହିଆସୁଥିବା ଶୀତଳ, ମନ୍ଦ ତଥା ସୁଗନ୍ଧିତ ବାୟୁର ହିଲ୍ଲୋଳରେ ? କିମ୍ବା ବିଶ୍ୱର କେଉଁ ଅଜ୍ଞାତ ସୌନ୍ଦର୍ଯ୍ୟର ଅନ୍ୱେଷଣ ଲାଗି ବାହାରିଥିବା ମହାକବିଙ୍କ ସୁସଜ୍ଜିତ ନୌକାରେ ? ନା ... ଏ ସମସ୍ତ ପ୍ରକାର ସୁଖ ସେତେବେଳେ ମୋ ନିକଟରେ ତୁଚ୍ଛ ବୋଧହେଲା; ମୁଁ ଥିଲି ମହାରାଜଙ୍କର ଆଲିଙ୍ଗନପାଶରେ ବନ୍ଦିନୀ । ତାଙ୍କର ସୁଦୃଢ଼ ବାହୁପାଶ ମୋତେ କୋମଳ ଫୁଲର ମାଳାପରି ପରି ବୋଧହେଲା ।

ଅନେକ ସମୟ ପରେ ଦେଖିଲି; ଦୁଷ୍ଟ ଜହ୍ନଟା ଝରକାର ଫାଙ୍କବାଟେ ଚାହିଁ ମନେମନେ ହସୁଛି, ମୁଁ ଲାଜକୁଳୀଲତାପରି ଲାଜରେ ଝାଉଁଳିପଡ଼ିଲି । ମହାରାଜ ମୋ ଚିବୁକ ଧରି ମୁହଁ ଉପରକୁ ଉଠାଇ କହିଲେ— "ବିବାହ ସମୟରେ ବହୂ ଯଦି ପୁରୋହିତଙ୍କୁ ଲାଜକରେ, ତେବେ ବିଧି ସମ୍ପାଦିତ ହେବ କିପରି ।"

"ବାଃ ... ବେଶ୍ ଉପମା ତ ! ଆଜି ସୁଦ୍ଧା କବିମାନେ ଚନ୍ଦ୍ରମାଙ୍କୁ କେତେ ପ୍ରକାର ନାମ ଓ ରୂପରେ ଚିତ୍ରଣକରିଛନ୍ତି; କିନ୍ତୁ କେହି ଜଣେହେଲେ ତାଙ୍କୁ ପୁରୋହିତ କହିନାହାନ୍ତି ।"

"ଯୁଗ-ଯୁଗ ଧରି ପ୍ରଣୟୀ-ପ୍ରଣୟିନୀଙ୍କ ଗାନ୍ଧର୍ବ ବିବାହ ଏହାଙ୍କ ପୌରୋହିତ୍ୟରେ ସମ୍ପନ୍ନ ହୋଇଆସୁଛି । ପ୍ରେମିକ-ପ୍ରେମିକାଙ୍କର ଏ ହେଉଛନ୍ତି ମୂକସାକ୍ଷୀ ।"

ମହାରାଜଙ୍କ କାନ୍ଧରେ ମୁହଁ ରଖି, ନିର୍ମଳ ଆକାଶର ସ୍ୱଚ୍ଛ ଚାନ୍ଦିନୀ ଆଡ଼କୁ ଏକଲୟରେ ଚାହିଁରହିଲି । ନିର୍ମଳ ଚନ୍ଦ୍ରକିରଣ ମୋ ରୋମେ ରୋମେ ପୁଲକ ଭରିଦେଉଥିଲା ! ନା ... ସେ ଚାନ୍ଦିନୀ ନୁହେଁ, ଶାନ୍ତ ଧରଣୀରେ ସଫଳ ପ୍ରଣୟର ସ୍ୱପ୍ନିଳ ସୁଗନ୍ଧ । ସେ ସୁଗନ୍ଧର ମହକରେ ଚାହୁଁ ଚାହୁଁ ମୁଁ ମହକିଉଠିଲି । ଆଜିର ଶର୍ମିଷ୍ଠା ନଥିଲା

ରାଜକନ୍ୟା, ନଥିଲା ଦାସୀ, ନୁହେଁ ମହାରାଜ ବୃଷପର୍ବାଙ୍କ ଅଲିଅଳ ଦୁଲାଳୀ ଶର୍ମା କିମ୍ବା ତପସ୍ୱୀ କଚ୍‌ଙ୍କର ତ୍ୟାଗପୂତ ଭଗ୍ନୀ; ସେ ଥିଲା କେବଳ ଗୋଟିଏ ପ୍ରଣୟିନୀ।

ସେ ରାତ୍ରିପରେ ଅନେକ ରାତ୍ରି, ପ୍ରତ୍ୟେକ ରାତ୍ରିର ଅଗଣିତ ଘଡ଼ି, ପ୍ରତ୍ୟେକ ଘଡ଼ିର ଅସଂଖ୍ୟ ମୁହୂର୍ତ୍ତ ମୋ ଜୀବନରେ ସୁଖ ତଥା ଆନନ୍ଦର ଲହରୀ ଖେଳାଇଦେଲା। ସେ ସୁଖ, ସେ ଆନନ୍ଦ... ନା, ନା... କିଛି ହେଲେ ତା'ର ନାମକରଣ କରାଯାଇପାରିବ ନାହିଁ; ସେ ବ୍ରହ୍ମାନନ୍ଦ ସୁଖର ପ୍ରକୃତ ବର୍ଣ୍ଣନା କାହାରିଦ୍ୱାରା ସମ୍ଭବ ନୁହେଁ। ଶାମୁକାରେ ଜଳପୂର୍ଣ୍ଣ କରି କେହି କ'ଣ ସମୁଦ୍ରର ପରିକଳ୍ପନା କରିପାରେ? ରଙ୍ଗ ତୂଳୀରେ ଫୁଲର ଚିତ୍ର କରି କେହି କ'ଣ କେବେ ସୁଗନ୍ଧ ପାଇପାରେ? ପ୍ରୀତିର ଅନୁଭୂତି ଠିକ୍ ସେହିପରି। ମୁଁ ପିଲାଦିନରୁ ମୋକ୍ଷପ୍ରାପ୍ତି ଶବ୍ଦ ଶୁଣିଆସିଛି; କିନ୍ତୁ ତା'ର ବାସ୍ତବ ଅର୍ଥ କ'ଣ ମୁଁ କେବେହେଲେ ଅନୁଭବ କରିନଥିଲି। କିନ୍ତୁ ନିର୍ବାକ ସଙ୍ଗୀତମୟ ସେହି ରାତ୍ରି ମୋତେ ସ୍ପଷ୍ଟ ଜଣାଇଦେଲା ମୋକ୍ଷପ୍ରାପ୍ତି କ'ଣ।

ନାରୀ ବୁଝେନି ଶବ୍ଦର ଗାମ୍ଭୀର୍ଯ୍ୟ; ସେ କେବଳ ବୁଝେ ଶବ୍ଦର ଭାବାର୍ଥ। ମାତା ପାର୍ବତୀ ଭୀଷଣ ଗ୍ରୀଷ୍ମ, ବର୍ଷା, ଶୀତ ସହ୍ୟ କରି ଉଗ୍ର ତପସ୍ୟା କରିଥିଲେ। ତାଙ୍କ ତପସ୍ୟାର ଉଦ୍ଦେଶ୍ୟ କ'ଣ ମୋକ୍ଷପ୍ରାପ୍ତି ଥିଲା? ନା... ସେ କେବଳ ଶଙ୍କର ଭଗବାନ୍‌ଙ୍କ ପାଦସେବାର ସୁବିଧା ପାଇବାଲାଗି ଏତେବଡ଼ ତପସ୍ୟା କରିଥିଲେ। ଜଗନ୍ମାତା ନିଜ ଆଚରଣଦ୍ୱାରା ପ୍ରେମର ସ୍ୱରୂପ ସମ୍ବନ୍ଧରେ ଜଗତର ନାରୀଜାତିକୁ ଶିକ୍ଷାଦେଇଥିଲେ। ତାଙ୍କରି ପଦାଙ୍କ ଅନୁସରଣ କରି...।

ହଁ... ପ୍ରକୃତରେ ତାଙ୍କରି ପଦାଙ୍କ ଅନୁସରଣକରି ମୁଁ ମଧ୍ୟ ପ୍ରଣୟପାଶରେ ଆବଦ୍ଧ ହୋଇଛି। ମୁଁ ମହାରାଜ ଯଯାତିଙ୍କୁ ପ୍ରେମକରିଛି। ମୁଁ ଜାଣେ, ସେ ଦେବଯାନୀର ସ୍ୱାମୀ; ତଥାପି ତାଙ୍କୁ ପ୍ରେମକରିଛି। କକ୍ଷର ଦ୍ୱାରଦେଶରେ ଶୋଉଥିବା ଦୁଇଜଣ ବିଶ୍ୱସ୍ତା ଦାସୀଙ୍କ ବ୍ୟତୀତ ମୋ ପ୍ରେମର ଇସାରା ଆଉ କେହିହେଲେ ପାଇପାରିନାହାନ୍ତି; ଏହାହିଁ ଥିଲା ମୋ ଜୀବନର ଗୋପନୀୟ ତଥା ମଧୁମୟ ରହସ୍ୟ! ପ୍ରଣୟୀ-ପ୍ରଣୟିନୀଙ୍କ ପ୍ରେମର ରହସ୍ୟ ଜାଣିଥିବା ରଜନୀ ଦେବୀ ମଧ୍ୟ ଏ ରହସ୍ୟ ଜାଣିଥିଲେ। ଏ ରହସ୍ୟ ଜାଣିଥିଲେ କକ୍ଷର ଚାରୋଟିଯାକ କାନ୍ଥ; ଆଉ ମଧ୍ୟ ଏ ରହସ୍ୟ ଉଦ୍‌ଘାଟିତ ହୋଇଥିଲା ସେହି ଅନ୍ଧକାରମୟ ସୁଡ଼ଙ୍ଗ ପାଖରେ।

ଗତ ରାତ୍ରିର ମାଦକତା ସମ୍ପୂର୍ଣ୍ଣରୂପେ ଉପଶମ ହେବା ପୂର୍ବରୁ ପୁଣି ପରରାତ୍ରିର ନିଶା ଘାରିଯାଏ। କିନ୍ତୁ ସେହି ଉନ୍ମାଦନା ମଧ୍ୟରେ ମୋତେ କୌଣସି ଏକ ଅଦେଖା ହାତ ଝାଙ୍କିଦେଇ କହେ– "ସାବଧାନ ଶର୍ମିଷ୍ଠା, ସାବଧାନ! ଏ ଉନ୍ମାଦନାର ଉପଶମ ଲାଗି ଔଷଧ ବ୍ୟବହାର କର। ତୁ କେଉଁଆଡ଼କୁ ଧାଇଁଚାଲିଛୁ? ଏହା ଏକ ଅକ୍ଷମଣୀୟ ଅପରାଧ, ଭୟଙ୍କର ପାପ। ପାପର ବିଷବୃକ୍ଷ ଜଗତରେ ବ୍ୟାପିଯାଉଛି। ତା'ର ଫୁଲରେ ଭରିରହିଛି ପୂର୍ଣ୍ଣ ମାଦକତା; କିନ୍ତୁ ଫଳ...? ସେ ଫଳରେ ଲୁଚିରହିଛି ବିଷଧର ତକ୍ଷକ! ସେ କାହାକୁ କେତେବେଳେ ଦଂଶନ କରିବ କିଏ ଜାଣେ? ହୁଏତ ତୋତେ ଦଂଶନ କରିପାରେ, ମହାରାଜଙ୍କୁ ମଧ୍ୟ।"

ମହାରାଜଙ୍କ ସ୍ପର୍ଶ ମୋର ସର୍ବାଙ୍ଗରେ ଭରିଦିଏ ଅପାର ପୁଲକ; କିନ୍ତୁ ପାପର କଳ୍ପନାରେ ମୋର ପ୍ରତ୍ୟେକ ରୋମ ଟାଙ୍କୁରିଉଠେ। ମୁଁ ବାରମ୍ବାର ମନକୁ ମନ

କହିହୁଏ 'ପ୍ରେମର ପ୍ରକୃତ ଅର୍ଥ ହେଉଛି ଦାନ; ସର୍ବସ୍ୱ ସମର୍ପଣ।' ପ୍ରକୃତରେ ଏହା କ'ଣ ପାପ? ମୁଁ ଦେବଯାନୀର ଆଖିର କଣ୍ଟା ହୋଇଯାଇଛି। ମୋ ପ୍ରତି ତା' ମନରେ ବୈରି ଭାବନା ନଥିଲେ ହୁଏତ ମୁଁ ନିଜେ ଯାଇ ମହାରାଜଙ୍କ ପ୍ରତି ମୋ ମନୋଭାବ ପ୍ରକାଶ କରିଦିଅନ୍ତି; ତା' ଆଗରେ କାନ୍ଦିବିକ୍ଷାଇ ଭିକ୍ଷାମାଗି କହନ୍ତି– 'ଝିଅ ଶାଶୂଘରକୁ ଯିବାବେଳେ ପ୍ରତ୍ୟେକ ମାଆ ଉପଦେଶ ଦେଇ କହିଥା'ନ୍ତି– 'ସପତ୍ନୀ ସହିତ ବୈରି ଆଚରଣ କରିବୁନାହିଁ, ତାକୁ ନିଜ ସହଚରୀରୂପେ ବ୍ୟବହାର କରିବୁ।' ତୁମେ ମୁଁ ଦୁହେଁ ପିଲାଦିନର ସାଙ୍ଗ; ଆସ ଦୁହେଁ ମିଳିମିଶି ମହାରାଜଙ୍କୁ ସୁଖୀ କରାଇବାକୁ ଚେଷ୍ଟାକରିବା। ତୁମେ ତାଙ୍କର ପାଟରାଣୀ ହୋଇ ରୁହ; ତାଙ୍କ ସହିତ ରାଜସିଂହାସନରେ ବସି ସୌଭାଗ୍ୟଶାଳିନୀ ହୁଅ; ମୋର ସେଥିପ୍ରତି ଆଦୌ ଅଭିଳାଷ ନାହିଁ। ମହାରାଣୀ-ପଦର ମର୍ଯ୍ୟାଦା ଓ ସମ୍ମାନ ଲାଗି ମୁଁ ଆଦୌ ଅଭିଳାଷିଣୀ ନୁହେଁ। ରାଜକାର୍ଯ୍ୟ ଶେଷକରି ମହାରାଜ ମହଲକୁ ଫେରିବା ପରେ, ମୋତେ ଯଦି କେବଳ ତାଙ୍କର ପାଦସେବା କରିବାର ସୌଭାଗ୍ୟ ମିଳିଯାଏ ମୁଁ ସେଇଥିରେ ନିଜକୁ ଭାଗ୍ୟଶାଳିନୀ ବୋଲି ମନେକରିବି। ତୁମେ ଉଷାର ପ୍ରଭାରେ ବିଭାନ୍ୱିତା ହୁଅ, ସନ୍ଧ୍ୟାର ଅରୁଣବର୍ଣ୍ଣରେ ଅନୁରଞ୍ଜିତା ହୁଅ, ମୋର ଆପତ୍ତି ନାହିଁ କିମ୍ବା ମୁଁ ଈର୍ଷ୍ୟା କରିବିନାହିଁ। ମୁଁ ଚାହେଁ, ସୂର୍ଯ୍ୟମୁଖୀ ସାଜି ଦୂରରୁ ମୋ ଦେବତାଙ୍କର ପାଦବନ୍ଦନାକରିବି। ସେ ଯେଉଁଆଡ଼କୁ ଢଳିଯିବେ, ମୁଁ ସେହି ଆଡ଼କୁ ମୁହଁ ବୁଲାଇନେଇ ତାଙ୍କ ସୌନ୍ଦର୍ଯ୍ୟ ନେତ୍ରଭରି ପାନକରିବି।''

ପାପର କଳ୍ପନାରେ ବେଳେବେଳେ ବିଚଳିତ ହୋଇ ମୁଁ ଏହିପରି କେତେ କ'ଣ ଭାବିଯାଏ; କିନ୍ତୁ ଅନ୍ୟବେଳେ ତାର ତୀବ୍ର ଜ୍ୱାଳାରେ ବ୍ୟତିବ୍ୟସ୍ତ ହୋଇ, ତାର ଦଂଶନ ଅନୁଭବ କରି ବିଚଳିତ ହୋଇଉଠେ। ମୁଁ ସେତିକିବେଳେ, ସେହି ଅସହାୟ ଅବସ୍ଥାରେ ମାତା ପାର୍ବତୀଙ୍କ ଚରଣ ବନ୍ଦନାକରି କହେ, ''ମାଆ! ଭଗବାନ୍ ଶଙ୍କରଙ୍କ ପ୍ରତି ତୁମର ଅଟଳ ପ୍ରେମ ପରି ମୋ ମନରେ ଶକ୍ତି ଭରିଦିଅ; ମୁଁ ମହାରାଜଙ୍କୁ ପ୍ରାଣ ବିନିମୟରେ ପ୍ରେମକରେ। ପିତାଙ୍କଦ୍ୱାରା ପତିର ଅପମାନରେ ତୁମେ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେଇଥିଲ। ତୁମର ସେ ଅଗ୍ନିପରୀକ୍ଷାକୁ ମୁଁ କେବେହେଲେ ଭୁଲିପାରିବିନାହିଁ ମାଆ! ମୁଁ ଜାଣେ, ପ୍ରିୟତମଙ୍କ ମଙ୍ଗଳଲାଗି ଯେଉଁ ନାରୀ ସର୍ବସ୍ୱ ଅର୍ପଣ କରିବାକୁ ପ୍ରସ୍ତୁତ ହୋଇଯାଏ, ସେ ହେଉଛି ପ୍ରକୃତ ପ୍ରଣୟିନୀ। ତଥାପି ମୁଁ କ'ଣ ପାପିନୀ ରୂପେ ପରିଗଣିତା ହେବି?''

ବେଳେବେଳେ ଏ ଦଂଶନର ଜ୍ୱାଳା ତୀବ୍ରତର ହୋଇଉଠେ; କିନ୍ତୁ ଅନ୍ୟ ସମୟରେ ମୁଁ ପ୍ରଣୟର ସର୍ବୋଚ୍ଚ ଶିଖରରେ ଆରୋହଣକରି, ଲୋଭନୀୟ ପରିକଳ୍ପନାରେ ମାତିରହେ। ସାନସାନ ଦୁଇଟି ରଙ୍ଗିନ୍ ଡେଣା ମେଲାଇ ଏ ଫୁଲରୁ ସେ ଫୁଲକୁ ଉଡ଼ିବୁଲୁଥିବା ପ୍ରଜାପତି ପରି ମୋର ଅବସ୍ଥା ଦୋଳାୟିତ ହୋଇଉଠେ। ମହାରାଜଙ୍କ ଲାଗି ମୁଁ ତମ୍ବୁଳ ପ୍ରସ୍ତୁତ କରି ରଖେ, ସୁଗନ୍ଧିତ ଫୁଲର ମାଳା ଗୁନ୍ଥିଦିଏ, ତାଙ୍କର ମନଲାଖି କେଶସଜ୍ଜା କରେ, ବେଶଭୂଷାରେ ସଜ୍ଜିତା ହୁଏ; ତାଙ୍କ ମନ ରଞ୍ଜାଇବା ଲାଗି ଆହୁରି କେତେ କ'ଣ ସୁଖଦ କଳ୍ପନା କରି କରି ଦିନ ବିତାଇଦିଏ। ଜାଣିପାରେନା, କେତେ ଶୀଘ୍ର ଦିନ ବିତିଯାଉଛି। ରାତି ଆସିଯାଏ, ପୁଣି ମୋ ଭାଗ୍ୟରବି ପ୍ରାଚୀ

ଗଗନରେ ଉଦିତ ହୋଇଉଠନ୍ତି; ମୁଁ ଅଭିସାରିକା ସାଜି ପ୍ରଣୟୀଙ୍କ ଆସିବା ବାଟକୁ ଆତୁରଭାବେ ଚାହିଁରହେ। ରାତ୍ରିର ପ୍ରଥମ ଚାରିଘଡ଼ି ମୋ ପକ୍ଷରେ ନିତାନ୍ତ ଅସହ୍ୟ ହୋଇଉଠେ। ରାତ୍ରିର ଶିଥିଳ ଗତି ମୋ ମନରେ ତୀବ୍ର ଆଘାତ ଦିଏ; ତା ସହିତ ମୋ ମନ ନାନାଦି ଆଶଙ୍କାରେ ଭରିଉଠେ।

ମୁଁ ପ୍ରଣୟ ସମ୍ବନ୍ଧରେ ଅନେକ କାବ୍ୟ ପାଠକରିଛି। ମୁଁ ପ୍ରେମର ସାତ୍ତ୍ୱିକତା ଅନୁଭବ ନକରି ମଧ୍ୟ ଅନେକ ପ୍ରେମ-କବିତା ରଚନା କରିଥାଏ; କିନ୍ତୁ ଏବେ ଜାଣୁଛି ସେଗୁଡ଼ିକ କେବଳ ପ୍ରଣୟର ଛାୟାମାତ୍ର। ଦର୍ପଣରେ ପ୍ରତିବିମ୍ବିତ ଚନ୍ଦ୍ରର ସ୍ୱରୂପକୁ ପ୍ରକୃତ ଚନ୍ଦ୍ର ବୋଲି ମନେକରି, ଖେଳୁଥିବା ଅବୋଧ ବାଳକର ସାନ୍ତ୍ୱନା ପରି ଅଳୀକ। ପ୍ରକୃତ ପ୍ରେମର ସ୍ୱାଦ ଜାଣିବାକୁ ହେଲେ ପ୍ରଣୟିନୀ ସାଜିବାକୁ ହୁଏ; ପ୍ରେମର ଅଗ୍ନିରେ ଆତ୍ମାକୁ ଜଳାଇବାକୁ ପଡ଼େ। ଚନ୍ଦ୍ରର ଶୀତଳତା, ସୂର୍ଯ୍ୟଙ୍କର ପ୍ରଖରତା, ଅମୃତର ସଂଜୀବନୀ ଶକ୍ତି, ହଳାହଳର ତୀବ୍ରତା... ନା... ନା... ପ୍ରେମର ପ୍ରକୃତ ବର୍ଣ୍ଣନା କରିବା କାହାରି ପକ୍ଷରେ ସମ୍ଭବ ନୁହେଁ।

ଦିନେ ମହାରାଜ ଅମାତ୍ୟଙ୍କ ସହିତ ଆଲୋଚ଼ନାରେ ବ୍ୟସ୍ତ ରହି ରାତି ଅଧ ପର୍ଯ୍ୟନ୍ତ ମୋ ପୁରକୁ ଆସିପାରିଲେ ନାହିଁ। ମୋ ମନ କେତେ ପ୍ରକାର ଆଶଙ୍କାରେ ଭରିଗଲା— 'ମହାରାଜ ଅସୁସ୍ଥ ହୋଇଗଲେ କି? ମୁଁ ଯାଇ ଏ ଅବସ୍ଥାରେ ତାଙ୍କୁ ସେବାକରିବା ଉଚିତ ହେବନାହିଁ କି? କିନ୍ତୁ ସେ ତ ମୋତେ ଖବର ପଠାଇନାହାନ୍ତି? କିନ୍ତୁ ଖବର ପଠାଇବେ କିପରି? ମୁଁ ମଧ୍ୟ ରାଜପ୍ରାସାଦକୁ ଯିବି କିପରି? ଶର୍ମିଷ୍ଠା ମହାରାଜଙ୍କ ହୃଦୟରେ ସ୍ଥାନ ପାଇଥିଲେ ମଧ୍ୟ, ପ୍ରକାଶ୍ୟରେ ତାଙ୍କ ପାଖକୁ ଯିବାର ଅଧିକାରିଣୀ ନୁହେଁ। ହାୟରେ ଭାଗ୍ୟ... କେଡ଼େ କୃପଣତା ତୋର? କୁବେର ସମାନ ସମ୍ପତ୍ତିର ଅଧିକାରିଣୀ ନାରୀ ଯେପରି ପ୍ରକାଶ୍ୟରେ ସାମାନ୍ୟତମ ଅଳଙ୍କାର ପିନ୍ଧିନପାରିବାର ଅଭିଶାପ ପାଇଥାଏ, ତା'ରି ପରି ମୋର ଅବସ୍ଥା ନୁହେଁ କି?

ମୁଁ ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ। ଗୁପ୍ତଦ୍ୱାରର କଳ ମୋଡ଼ିଦେଇ କେତେ ପହଣ୍ଡ ଆଗେଇଗଲି। ନା... ଆଉ ଯାଇପାରିଲିନାହିଁ। ସୁଡ଼ଙ୍ଗପଥର ଅନ୍ଧକାର ମଧ୍ୟରେ ଲୁଚ଼ିରହିଥିବା ସର୍ପଦଂଶନର ଭୟ ନଥିଲା ମୋର; ମୋ ମନରେ ଗୋଟିଏ ନୂତନ ଭୟ ଜାଗ୍ରତ ହୋଇଉଠିଲା। ଆଜି ସୁଦ୍ଧା ମୋର ଯେଉଁ ସୌଭାଗ୍ୟ ଉଦିତହୋଇଛି, ହଠାତ୍ ମୁଁ ରାଜପୁରୀରେ ପହଞ୍ଚିଗଲେ ସେହି ସୌଭାଗ୍ୟ ମୋର ଶତ୍ରୁ ହୋଇଉଠିବ ନାହିଁ ତ? ଦେବଯାନୀ ମହାରାଜଙ୍କୁ ଋଷିବେଶରେ ସଜାଇ ମୋ ମହଲକୁ ପଠାଇବା ପର୍ଯ୍ୟନ୍ତ ମୋ ଭାଗ୍ୟ ତିମିରପଟଳ ମଧ୍ୟରେ ଆତ୍ମଗୋପନ କରିଥିଲା। ଦେବଯାନୀ ମୋ ସହିତ କପଟ କରି ଯେଉଁ ଜାଲ ବେଢ଼ାଇଥିଲା, ସେହି ଛଳନା ତା'ର କାଳ ହୋଇ ତାକୁଇ ଦଂଶନକଲା। ପୁଣି କିଏ ଜାଣେ, ସେହି ଭାଗ୍ୟ ମୋତେ ଆଜିଠାରୁ ବିଦ୍ରୂପ କରିବାଲାଗି ବିକଟ ଦଶନ ବାହାର ନକରିବ? ମୁଁ ଗୁପ୍ତମାର୍ଗ ଦେଇ ରାଜପୁରୀରେ ପ୍ରବେଶ କଲାମାତ୍ରେ ଯଦି ଦେବଯାନୀ ଫେରିଆସି ସେହି ମୁହୂର୍ତ୍ତରେ ପହଞ୍ଚିଯାଏ, ତେବେ... ନା... ନା... ସେ ଦୁର୍ଦ୍ଦଶା କଥା କଳ୍ପନା ମଧ୍ୟ କରିହେବନି। ନା... କୌଣସିମତେ ଏ ରହସ୍ୟ ଦେବଯାନୀ ନଜାଣୁ। କେବେହେଲେ ମୋ ପ୍ରଣୟକଳିକାର ସନ୍ଧାନ ଦେବଯାନୀ ପାଇନପାରୁ।

ମୁଁ ନୀରବରେ ସୁଡ଼ଙ୍ଗମାର୍ଗରୁ ଲେଉଟିଆସିଲି। ମନେମନେ ମୁଁ ଭାବୁଥାଏ – କେଡ଼େ ଅଭାଗିନୀଟାଏ ମୁଁ? ପ୍ରକାଶ୍ୟରେ ପ୍ରେମ କରିବାର ଅଧିକାର ସୁଦ୍ଧା ମୋତେ ଈଶ୍ୱର ଦେଇନାହାନ୍ତି। ହସ୍ତିନାପୁରର ଯେକୌଣସି ଅନାଥିନୀ ଦାସୀର ମଧ୍ୟ ଏ ଅଧିକାର ରହିଛି; କିନ୍ତୁ... ରାଜକନ୍ୟା ଶର୍ମିଷ୍ଠାର କେବଳ କପାଳ ଫଟା...! ମହାରାଜ ଆସିବାବେଳକୁ ମୋ ତକିଆ ଲୁହରେ ଭିଜିଯାଇଥିଲା।

ସେ ରାତିରେ ମହାରାଜଙ୍କୁ ଗାଢ଼ ନିଦ ଲାଗିଯିବା ପରେ ବି ମୁଁ ତାଙ୍କ ବାହୁପାଶରେ ଆତ୍ମବିଭୋର ହୋଇ ଚାହିଁରହିଥିଲି; କିନ୍ତୁ ମନର ଏ ଉନ୍ମାଦନା କ୍ଷଣକଲାଗି ମୋତେ ଉନ୍ମାଦିତ କରିପାରିଲା। ପରମୁହୂର୍ତ୍ତରେ କେଡ଼େ ଅମଙ୍ଗଳ କଳ୍ପନା ମୋ ଭାବନାରେ ରୂପପାଇଲା। ସେହି କଳ୍ପନାର ସ୍ରୋତରେ ନିଜକୁ ଭସାଇଦେଇ ମୁଁ ଭାବିବାକୁ ଲାଗିଲି; ଯଦି ଆମର ଏହି ଅବସ୍ଥାରେ ପ୍ରଚଣ୍ଡ ଭୂମିକମ୍ପ ଆସି ଆମକୁ ଧ୍ୱଂସସ୍ତୂପରେ ପୋତିପକାନ୍ତା; ତା'ହେଲେ ହୁଏତ ହଜାରେ ବର୍ଷ ପରେ କେହି ଜଣେ ପ୍ରତ୍ନତତ୍ତ୍ୱବିତ୍ ଭୂଖୋଦନ କରି, ଆମ ଯୁଗଳମୂର୍ତ୍ତିର ଅସ୍ଥି ପାଇ ଏ ଯୁଗରେ ପ୍ରେମର ପରାକାଷ୍ଠା ସମ୍ବନ୍ଧରେ ଅନେକ ତଥ୍ୟ ପାଇପାରନ୍ତା। ସେହି ଯୁଗଳ ଅସ୍ଥିପଞ୍ଜରକୁ ଦେଖି ହୁଏତ କେହି ପ୍ରତିଭାଶାଳୀ କବି ମଦନ-ରତି କଳ୍ପନା କରି କାବ୍ୟ ରଚନା କରନ୍ତା। ଆଉ କେହି ଇତିହାସର ଛାତ୍ର ଏହାକୁ ହସ୍ତିନାପୁରର ମହାରାଜ ଓ ମହାରାଣୀଙ୍କ ଅସ୍ଥିପଞ୍ଜର ବୋଲି ମତ ଦେଇ ଗବେଷଣା କରନ୍ତା; କିନ୍ତୁ କ୍ରୂର ନିୟତି ପ୍ରଣୟୀ-ପ୍ରଣୟିନୀଙ୍କର ଏ ଆନନ୍ଦଲୀଳା ତଥା ଗୋଟିଏ ହତଭାଗିନୀ ପ୍ରଣୟିନୀର ଗୁପ୍ତ ପ୍ରଣୟର ଲୀଳାକୁ କିପରି ଦୃଢ଼ହସ୍ତରେ ଦମନକରିଛି, ଏହା କେହି ହେଲେ ଉଲ୍ଲେଖ କରନ୍ତେନାହିଁ।

ପରମୁହୂର୍ତ୍ତରେ ମୁଁ ନିଜ କଳ୍ପନା ଲାଗି ନିଜ ଉପରେ ରାଗିଗଲି; କେଡ଼େ ସ୍ୱାର୍ଥପର ମୁଁ? ନିଜ ପ୍ରେମର ପରାକାଷ୍ଠା ଲାଗି ମହାରାଜଙ୍କର ଅମଙ୍ଗଳ ଚିନ୍ତାକରୁଛି? ସେ କଳ୍ପନା ମାତ୍ରେ ମୁଁ ଶିହରିଉଠିଲି। ବୋଧହୁଏ ମୋ ଶିହରଣ ମହାରାଜ ଜାଣିପାରିଲେ। ସେ ତାଙ୍କର ବାହୁପାଶ ଆହୁରି ଟିକିଏ ସୁଦୃଢ଼ କରିନେଇ ନିଦରେ ବାଉଳିହେଲାପରି କହିଲେ – "ଦେବଜ୍ଜୁଳୀ...! ସେହି ନିଦ୍ରିତାବସ୍ଥାରେ ତାଙ୍କ ଓଠ ମୋ ଓଠରେ ଲାଗିଗଲା। ଚନ୍ଦ୍ରକିରଣରେ ଅନ୍ଧକାର ଦୂରହୋଇଗଲା ପରି ପ୍ରଣୟର ମାଧୁରୀରେ ମୋ ମନର ଭୟ କୁଆଡ଼େ ଉଭେଇଗଲା।

କିନ୍ତୁ ପରଦିନ ସୂର୍ଯ୍ୟୋଦୟ ପରେ ମୋ ମନର ଭୂତ ମୋତେ ଖୁବ୍ ବ୍ୟତିବ୍ୟସ୍ତ କରିପକାଇଲା। ତା'ର ଉଗ୍ରରୂପ ଧୀରେ ଧୀରେ ବିକରାଳ ହୋଇଉଠିଲା। ସକାଳେ ଉଠିବାମାତ୍ରେ ମୋ ପେଟ ମୋଡ଼ିହୋଇ ବାନ୍ତିହୋଇଗଲା। ଏହା ଦେଖି ମୋ ପାଖରେ ଥିବା ଦାସୀ ଦୁଇଜଣ ପରସ୍ପରକୁ ଚାହିଁ ଚକ୍ଷୁର ଇଙ୍ଗିତରେ କେତେ କ'ଣ କୁହାକୁହି ହେଲେ। ସେମାନେ ମୋ ଆଗରେ କିଛି ପ୍ରକାଶ ନକଲେ ମଧ୍ୟ ମୁଁ ମାଆ ହେବାକୁ ଯାଉଛି ବୋଲି ମୋର ବିଶ୍ୱାସ ଦୃଢ଼ହୋଇଗଲା। ସେତେବେଳେ ମୋ ମନରେ ଆନନ୍ଦ, ଭୟ, ଲଜ୍ଜା, ଚିନ୍ତା, ଉତ୍କଣ୍ଠା ଓ କୌତୂହଳ ଆଦି ଭିନ୍ନ ଭିନ୍ନ ଧାରଣା ଏକ ସଙ୍ଗରେ ଜାଗ୍ରତ ହୋଇ, ସେସବୁ ଉବେଇଟୁବେଇ ହେବାକୁ ଲାଗିଲେ।

ମହାରାଜଙ୍କ ସହିତ ମୋର ବିବାହ ପ୍ରକାଶ୍ୟରେ ହୋଇଥିଲେ ଆଜି ଏ ଘଟଣା କେଡ଼େ ଆନନ୍ଦଦାୟକ ହୋଇନଥାଆନ୍ତା! ହାତୀ ଉପରେ ମିଠାଇ ବୋଝ ରଖି

ସମଗ୍ର ରାଜ୍ୟରେ ବଣ୍ଟାଯାଇଥାନ୍ତା। କିନ୍ତୁ ହାୟରେ ଭାଗ୍ୟ! ଆଜି ଏ ସମ୍ବାଦ ମୁଁ ଏ ପ୍ରାସାଦର ଗୋଟିଏ କ୍ଷୁଦ୍ର ପିମ୍ଫୁଡ଼ି ଆଗରେ ମଧ୍ୟ ପ୍ରକାଶ କରିପାରିବିନାହିଁ। ଝିଅ ଶାଶୂଘରକୁ ଯିବା ପରେ ଗର୍ଭବତୀ ହୋଇଥିବାର ସମ୍ବାଦ ଶୁଣିଲେ କେଉଁ ମାଆ ଆନନ୍ଦରେ ବିଭୋର ହୋଇନଉଠେ? ଠିକ୍ ସେହିପରି, ମୋ ଖବର ପାଇଥିଲେ ମୋ ମାଆ ମଧ୍ୟ ଅନୁରୂପ ଆନନ୍ଦିତା ହୋଇଉଠନ୍ତା। ବାପଘରେ ପାଦ ଦେବାକ୍ଷଣି ମୁଁ ଲାଜରେ ଝାଉଁଳିପଡ଼ି ଦୌଡ଼ିଯାଇ ମାଆଙ୍କ କୋଳରେ ମୁହଁ ଲୁଚାଇନିଅନ୍ତି। ମାଆ ମୋ ମୁଣ୍ଡ ଆଉଁଷିଦେଇ କହନ୍ତା– ''ଶମା, ପିଲାଦିନର ଗୋଟିଏ ଘଟଣା ତୋର ମନେଅଛି? ଦିନେ ବଗିଚ୍ଚାରେ ମାଳୀ କାମ କରୁଥିଲା, ତାକୁ ଦେଖି ତୁ ମାଟି-କାଦୁଅରେ ବଲବଲ ହୋଇ ଗୋଟିଏ ଗଛ ଲଗାଇଲୁ। ରାତିଅଧ ବେଳକୁ ଉଠି ମୋ ଗାଲରେ ଗାଲ ଘଷି କହିଲୁ– ମା! ମୋ ଚାରାରେ ଫୁଲ ଫୁଟିଯିବଣି? ମୁଁ ହସି ହସି କହିଲି– ପାଗଲୀଟା, ଏତେ ଶୀଘ୍ର କେଉଁଠି ଫୁଲ ଫୁଟେ? ପ୍ରଥମେ କଳିକା ହେବ, ତା'ପରେ ସେ ଫୁଟିଲେ ଫୁଲ ହେବ। ତୁ ଅଭିମାନରେ ଫୁଲିଉଠି ସେଥିରେ କଢ଼ ହେଲାଣି କି ନାହିଁ ଦେଖିବାଲାଗି ଜିଦ୍ ଧରି ବସିଲୁ। ମୁଁ ଦାସୀମାନଙ୍କ ସାଙ୍ଗରେ ତୋତେ ଗଛ ଦେଖି ଆସିବାକୁ ବଗିଚ୍ଚାକୁ ପଠାଇଲି। ସେଠାରୁ ତୁ କାନ୍ଦି କାନ୍ଦି ଫେରିଲୁ। ତୋ' ଗଛରେ ସେପର୍ଯ୍ୟନ୍ତ ଫୁଲ ଫୁଟିନଥିଲା; ଏହା ଦେଖି ତୁ ମନେ ମନେ ଦୁଃଖରେ ଭାଙ୍ଗିପଡ଼ିଲୁ। ସେହି ରାତିରେ ତୁ ଅତି କମ୍‌ରେ ଶହେଥର ପଚ୍ଚାରିଥିବୁ– ''ମୋ ଗଛରେ କେବେ କଢ଼ି ଧରିବ? କଢ଼ି କିପରି ଧରେ?'' ଶେଷକୁ ମୁଁ ଚିଡ଼ିଯାଇ କହିଲି– 'ତୋର ବିବାହ ହୋଇଗଲେ ତୁ ବୁଝିବୁ କଢ଼ି କିପରି ହୁଏ!' ଏହାପରେ ତୁ ଆଉ ଗୋଟିଏ ଜିଦ୍ ଧରିବସିଲୁ– ଆଗେ ମୋ ବିବାହ କରାଇଦିଅ, ମୋ ବିବାହ କରାଇଦିଅ। ତା' ହେଲେ ମୁଁ ଜାଣିପାରିବି ଯେ, ଗଛରେ କିପରି କଢ଼ି ଧରୁଛି।''

ଯୌବନରେ ପଦାର୍ପଣ କରିବା ପରେ ଏହି କଥା ମନେପକାଇ ମୋ ମନରେ କେତେ ପ୍ରକାର ନୂଆ ଭାବ ଜାତହୋଇଥିଲା। ସେତେବେଳେ କ'ଣ କେହିହେଲେ ସ୍ୱପ୍ନରେ ସୁଦ୍ଧା ଭାବିଥିଲା ଯେ, ପିଲାଦିନେ ବିବାହ ଲାଗି ଜିଦ୍ ଧରୁଥିବା ଶର୍ମିଷ୍ଠା ଲୌକିକତା ଦୃଷ୍ଟିରୁ କେବେହେଲେ ବିବାହ କରିପାରିବ ନାହିଁ।

ଜୀବନରେ ମହାରାଣୀ ହୋଇ କାଳ କାଟିବାକୁ ମନକରିଥିବା ଶର୍ମିଷ୍ଠା ଶେଷରେ ଦାସୀ ହୋଇ ଜୀବନ ବିତାଇଲା। କିନ୍ତୁ ପ୍ରକୃତି ମଣିଷ ପରି ଅଦୌ ଦୁଷ୍ଟାମି କରେନାହିଁ। ତେଣୁ ସେହି ଦାସୀ ଶେଷରେ ମାଆ ହେବାକୁ ଯାଉଛି; କିନ୍ତୁ ପ୍ରକୃତିର ଏହି ବାତ୍ସଲ୍ୟ ସତରେ କେଡ଼େ ଭୟଙ୍କର ଅଭିଶାପରେ ପରିଣତ ନହେଲା?

ମୋ ମନରେ ଯେତିକି ଆନନ୍ଦ ଜାତହୋଇଥିଲା, ମୁଁ ସେତିକି ଚିନ୍ତାରେ ପଡ଼ିଲି। ଏ ରହସ୍ୟ ଯଦି ପ୍ରକାଶ ପାଇଯାଏ ତେବେ ଦେବଯାନୀ ମୋର କି ଅନିଷ୍ଟ ନ କରିବ? ମୋ ବାପା ମାଆ ଏ କଥା ଜାଣିପାରିଲେ କଅଣ ନ ଭାବିବେ? ସେମାନେ କ'ଣ ମୋତେ କୁଳଟା ବୋଲି ତିରସ୍କାର କରିବେ ନାହିଁ? ମୁଁ ପାପ କରିନାହିଁ ବୋଲି ସେମାନଙ୍କୁ କିପରି ବୁଝାଇବି?

ମୋର ଦୁଇଜଣଯାକ ଦାସୀ ମଧ୍ୟ ବଡ଼ ଅଡୁଆରେ ପଡ଼ିଗଲେ। ତପସ୍ୟାରେ

ବସିଥିବା ଶୁକ୍ରାଚାର୍ଯ୍ୟଙ୍କ ଦର୍ଶନ ସାରି ଦେବଯାନୀ ସେପର୍ଯ୍ୟନ୍ତ ଫେରିନଥିଲା; କିନ୍ତୁ ସେ ଆସିଗଲେ ...''

ଏପରି କେତେ କ'ଣ ଆଲୋଚନା କରି କରି ମୁଁ ଶୁଖି କଳାକାଠ ପଡ଼ିଗଲି। ସେତିକିବେଳେ ମୋ ଆଖିଆଗରେ ନାଚିଉଠିଲା, କଚ୍‌ଙ୍କର ଦିବ୍ୟମୂର୍ତ୍ତି। ଭଲା ଏ ବିପଦ ସମୟରେ ସେ ଏଠାରେ ଥାଆନ୍ତେ? ସେ ନିଶ୍ଚୟ ମୋତେ ଆଶ୍ୱସ୍ତ କରିପାରନ୍ତେ। ତାଙ୍କ ଭଉଣୀ ପାପକରିଥିବାର ଜାଣିଲେ ସେ ନିଶ୍ଚୟ ତା'ର ପାପ ଛଡ଼ାଇବାଲାଗି ଉଗ୍ର ତପସ୍ୟା କରିବସନ୍ତେ। କିନ୍ତୁ ଏ ସଂସାରରେ ମୁଁ ଥିଲି ସଂପୂର୍ଣ୍ଣ ଏକାକିନୀ, ଅନାଥିନୀ।

ନା ... ମୁଁ ଅନାଥିନୀ ନୁହେଁ। ହସ୍ତିନାପୁରର ସମ୍ରାଟ୍‌ଙ୍କ ପ୍ରେୟସୀ କିପରି ଅନାଥିନୀ ହୋଇପାରିବ? ମହାରାଜ ଯଯାତିଙ୍କ ପ୍ରେମିକା କିପରି ଅସହାୟ ହୋଇପାରିବ? ପ୍ରତିଦିନ ମୁଁ ମନେମନେ ନିଶ୍ଚୟ କରିନିଏ ଯେ, ଆଜି ମହାରାଜଙ୍କୁ ଏ ଗୋପନ ରହସ୍ୟ ସମ୍ବନ୍ଧରେ ସୂଚନାଦେବି। ରାତିରେ ପ୍ରତିଦିନ କହିବାଲାଗି ଭାବେ; କିନ୍ତୁ କଥା ମୋ ଜିଭ ଅଗରେ ରହିଯାଏ; ମୁଁ କହିପାରେନାହିଁ। ମନରେ ଅଶେଷ ମନୋମୁଗ୍ଧକର କଳ୍ପନା ଉଙ୍କିମାରୁଥିଲେ ସୁଦ୍ଧା, ଅସମର୍ଥ କବି ଯେପରି ତାହା ଭାଷାରେ ବ୍ୟକ୍ତ କରିପାରେନାହିଁ, ମୋର ଅବସ୍ଥା ଠିକ୍ ସେହିପରି ହୋଇଥିଲା।

ଶେଷରେ ଦିନେ ମନେ ମନେ ଦୃଢ଼ହୋଇ ହସିହସି ମହାରାଜଙ୍କୁ କହିଲି– ''ଏବେ ଆଉ ବେଶି ଦିନ ଆମର ଗୁପ୍ତ ପ୍ରଣୟ ଗୋପନ ରହିପାରିବ ନାହିଁ। ବୁଝିଲେ ...?''

''ମାନେ? କେହି କ'ଣ ଆମ ରହସ୍ୟ ଜାଣିଗଲା କି? କିଏ ସେ? କୁହ। ଦେବଯାନୀର କେହି ଗୋଟେ ଖୁଆଁକହୀ ଦାସୀ ହୋଇଥିବ ନିଶ୍ଚୟ।''

''ନା ... ଏହା କୌଣସି ଦାସୀର କାମ ନୁହେଁ। ଏ ମହଲରେ କ'ଣ ଆମେ କେବଳ ଦୁଇଜଣ ଅଛେ କି?''

ମୋତେ ଦୃଢ଼ଭାବରେ ଆଲିଙ୍ଗନପାଶରେ ଆବଦ୍ଧ କରି କହିଲେ ମହାରାଜ, ''ଦୁଇ ...? କିଏ ସେ ଦୁଇ? ଏଠାରେ ତ କେହି ଦୁଇଜଣ ନାହାନ୍ତି? ଯଯାତି ଓ ଶର୍ମିଷ୍ଠା କ'ଣ ଭିନ୍ନ ଭିନ୍ନ?''

ମହାରାଜଙ୍କର ଏହି କଥାପଦକ ମୋ ହୃଦୟରେ ଅମୃତବାରି ସିଞ୍ଚିଦେଲା। ତା'ହେଲେ ... ମହାରାଜଙ୍କୁ କିପରି ଏ ରହସ୍ୟ ସମ୍ବନ୍ଧରେ ବୁଝାଇବି ଏହା ମୋ ପକ୍ଷରେ ଏକ ସମସ୍ୟା ହୋଇଉଠିଲା। ମୁଁ ଲାଜରେ ଝାଉଁଳିପଡ଼ି କହିଲି– ''କି ... କି ... ନ୍ତୁ ...''

–''ଏ ... ଛାଡ଼ ...। ହେଉ, ମାନିଲି ଆମେ ଏଠାରେ ଦୁଇଜଣ ଅଛେ।''

–''ଦୁଇ ନୁହନ୍ତି ... ତିନି।''

–''ହଁ ... ଠିକ୍ କହିଛ, ଈଶ୍ୱର ସର୍ବବ୍ୟାପୀ ... ତାଙ୍କୁ ମିଶାଇ ଆମେ ତିନି।''

–''ନା ... ନା ... ତାଙ୍କୁ ମିଶାଇଲେ ଆମେ ଚାରି।''

–''ଚାରି ... କିପରି?''

–''ମୁଁ ... ମୁଁ ... ମୁଁ ... ଶୀଘ୍ର ମା ...''

ଖେଳ ଖେଳି ଥକିପଡ଼ିଲେ ପିଲା ଯେପରି ମାଆକୋଳରେ ମୁଣ୍ଡ ଜାକି ଶୋଇପଡ଼େ; ମୁଁ ସେହିପରି ମହାରାଜଙ୍କ କୋଳରେ ମୁହଁ ଲୁଚାଇଦେଲି। ମୋର ଚିବୁକ ଧୀରେ ଉପରକୁ ଉଠାଇ ମୋ ଆଡ଼କୁ ଏକଲୟରେ ଚାହିଁ କହିଲେ ମହାରାଜ, "କେଡ଼େ ସୁନ୍ଦର ଦେଖାଯାଉଛ ଶମା ? ତୁମର ଅଳରା କେଶ ସାଜସଜ୍ଜାଠାରୁ ବହୁ ଗୁଣରେ ତୁମକୁ ମାନୁଛି। ସ୍ୱଚ୍ଛନ୍ଦତାରେ ହିଁ ସୌନ୍ଦର୍ଯ୍ୟର ପରିପ୍ରକାଶ ଅଧିକ ହୋଇଥାଏ।"

ମୁଁ ମୋର ଅଶାନ୍ତ ମନକୁ ଆଶ୍ୱାସନା ଦେବାକୁ ଚାହୁଁଥିଲି, ସୌନ୍ଦର୍ଯ୍ୟର ପ୍ରଶଂସା ନୁହେଁ। ତେଣୁ ମୁଁ କହିଲି– "ଏ ସୌନ୍ଦର୍ଯ୍ୟ କେତେଦିନ ରହିବ ?"

–"କାହିଁକି ରହିବ ନାହିଁ?"

–"ମୁଁ ଶୀଘ୍ର ମାଆ ହେଇଯିବି; ତା'ପରେ . . .।"

ମହାରାଜଙ୍କର ସମସ୍ତ ପ୍ରକାର ଶୃଙ୍ଗାରିକ କୁତୂହଳ କୁଆଡ଼େ ଉଭେଇଗଲା। ସେ ମନେମନେ ଭୟଭୀତ ହୋଇଗଲା ପରି ବେଶ୍ ଜଣାପଡ଼ିଲେ। ତା'ପରେ ସେ ଅନ୍ୟମନସ୍କ ଭାବରେ କେତେକ କଥା ମୋ ଆଗରେ ହୃଦୟ ଖୋଲି କହିଗଲେ। ସେଥିରୁ ମୁଁ ବୁଝିଲି, ଦେବଯାନୀ ଓ ତାର କ୍ରୋଧୀ ପିତାଙ୍କର ଭୀତ ତାଙ୍କୁ କବଳିତ କରିଛି। ଦେବଯାନୀ ପିତାଙ୍କ ଆଗରେ ସବୁ କଥା କାନ୍ଦି କାନ୍ଦି କହିଲେ, ସେ କିଛି ବିଚାର ନକରି, ଝିଅର ଅନ୍ଧମମତା ଯୋଗୁଁ ମହାରାଜଙ୍କୁ କ'ଣ ନାଇଁ କ'ଣ ଗୋଟେ ଅଭିଶାପ ଦେଇ ତାଙ୍କର ଅଭିଶପ୍ତ ପ୍ରାଣକୁ ଆହୁରି ଦୁଃଖମୟ କରିଦେବେ। ଦେବଯାନୀର ଈର୍ଷାଳୁ ସ୍ୱଭାବ ମୁଁ ଜାଣେ। କ୍ରୋଧରେ ସେ ଜଳିଉଠି କ୍ଷଣକରେ ସବୁ ପୋଡ଼ିଜାଳି ଧ୍ୱଂସକରିଦେବ। ତେଣୁ ମହାରାଜଙ୍କର ଭୟ ଅସ୍ୱାଭାବିକ ନୁହେଁ।

ମହାରାଜ ଯଦି ଶୁକ୍ରାଚାର୍ଯ୍ୟଙ୍କ କ୍ରୋଧରେ ଅଭିଶପ୍ତ ହୋଇଯାଆନ୍ତି, ତା'ହେଲେ ଚିରଦିନ ଲାଗି ଲଜ୍ଜାରେ ମୋର ମୁଣ୍ଡ ତଳକୁ ହୋଇଯିବ। ଭାବୀ ବଂଶଧରମାନେ ଆମ ପ୍ରଣୟ କାହାଣୀ ଶୁଣି ଉପହାସକରିବେ। ନିଜର ସମ୍ମାନ ରକ୍ଷା କରିବାକୁ ଯାଇ ଶର୍ମିଷ୍ଠା ପ୍ରଣୟୀ ଯଯାତିଙ୍କ ଜୀବନକୁ ଚିରଦିନ ଲାଗି ଦୁଃଖମୟ କରିଦେଲା ବୋଲି କହି କବିମାନେ ମୋତେ ତିରସ୍କାର ଦୃଷ୍ଟିରେ ଦେଖିବେ। ନା . . . ପ୍ରକୃତ ପ୍ରେମରେ ସ୍ୱାର୍ଥ ନାହିଁ। ନିଷ୍କାମ ଭାବରେ ହିଁ ପ୍ରେମର ସୁକୁମାର କଳିକା ସତେଜ ହୋଇପାରେ। ମୁଁ . . . ନା . . . ନା . . . ନିଜ ସୁଖଲାଗି, ନିଜର ମାନମର୍ଯ୍ୟାଦା ଦୃଷ୍ଟିରୁ, କେବେହେଲେ ପ୍ରିୟତମଙ୍କୁ ବଳି ଦେଇପାରିବି ନାହିଁ। ମାଆ ପାର୍ବତୀଙ୍କ ଶ୍ରୀଚରଣରେ ଧ୍ୟାନ କରି ମୁଁ ପ୍ରଣୟର ପିଚ୍ଛିଳ ପଥରେ ପାଦ ଦେଇଛି। ନିନ୍ଦା, ଅପମାନ, ଦୁଃଖ, ଦୁର୍ଦ୍ଦଶା ସବୁ କିଛି ନିଜେ ସହ୍ୟକରି ଦେବଯାନୀର ସମ୍ମୁଖୀନ ହେବି। କେବେହେଲେ ମହାରାଜଙ୍କ ଉପରେ ସନ୍ଦେହ ହେଲାପରି କିଛି କହିବି ନାହିଁ କିମ୍ବା କରିବି ନାହିଁ।

× × × ×

ଦୁଇ ତିନିଦିନ ପରେ ଦେବଯାନୀ ଫେରିଆସିଲା। ମୋ ଥାଳୀରେ ପ୍ରତିଦିନ ତମ୍ବୁଳ ଯୋଗାଡ଼ ଶୁଖିବାକୁ ଲାଗିଲା; ସାରା ରାତି ମୋର ଉଜାଗରରେ କଟିଲା। ଦେବଯାନୀ ମନରେ କାଳେ ସନ୍ଦେହ ଜାତହେବ, ତେଣୁ ମହାରାଜ ମହଲରୁ ରାତିରେ

କୁଆଡ଼େ ଗଲେନାହିଁ; କିନ୍ତୁ ତାଙ୍କର ଦର୍ଶନ ଓ ସ୍ପର୍ଶ ଲାଗି ମୋ ମନ ଆକୁଳ ହେବାକୁ ଲାଗିଲା । ବେଳେବେଳେ ମୋ ଆଖି ଲାଗିଯାଏ; କକ୍ଷ ମଧ୍ୟରେ କୌଣସି ପ୍ରକାର ଖଟ୍-ଖଟ୍ ବା ଧଡ଼୍ଧଡ଼୍ ଶବ୍ଦ ହେଲେ ମୋର ନିଦ ଚାଉଁକିନା ଭାଙ୍ଗିଯାଏ । ମୁଁ କାନେଇ ରହେ ସୁଡ଼ଙ୍ଗ ଆଡ଼କୁ; ଆଖି ଲାଖିରହେ ଗୁପ୍ତମାର୍ଗର ଦ୍ୱାରଦେଶରେ ।

ରାତି ରାତି ଏଇପରି କରୁଣ ପରିବେଶ ମଧ୍ୟରେ ମୋର ଦିନ ବିତିଚାଲିଲା । ଆଖିର ପିପାସା, ଅଧରର ଲାଳସା ମୋତେ ଅସ୍ଥିରକରିଦେଲା । ଦିନେ ମୁଁ ଆଉ ନିଜକୁ ଆୟତ୍ତ କରିନପାରି ମହାରାଜଙ୍କ ଚିତ୍ରଫଳକ ଉପରେ ଅଧୀର ମନରେ ଅସଂଖ୍ୟ ଚୁମ୍ବନର ଝଡ଼ ସୃଷ୍ଟି କଲି । ପ୍ରେମିକ ପ୍ରେମିକା ପ୍ରକୃତରେ ପାଗଳ ନୁହନ୍ତି କି ?

ସମୟର ଗତି ତୀବ୍ର ଘୋଟକର ଗତିଠାରୁ ଆହୁରି ଚଞ୍ଚଳ । ଦେବଯାନୀର ନବମମାସ ଆସି ଉପସ୍ଥିତ ହେଲା । ତେଣୁ ସେ ଆଉ ଅଶୋକବନକୁ ଆସିଲାନାହିଁ । ଥରେ ସେ ମୋତେ ଡକାଇନେଲା; କିନ୍ତୁ ମୋ ଉପରେ ତା'ର ସନ୍ଦେହ ହୋଇଥିବାର କୌଣସି ଲକ୍ଷଣ ନ ଦେଖି ମୁଁ ମନେମନେ ଖୁବ୍ ଖୁସିହୋଇଉଠିଲି । ସେହି ଦିନ ମହାରାଜଙ୍କ ଦର୍ଶନଲାଭ କରି ମୋ ବିରହ-ସନ୍ତପ୍ତ ମନକୁ ଆଶ୍ୱସ୍ତ କଲି ।

ମହଲର ବାତାୟନପଥରେ ସନ୍ଧ୍ୟାକାଳୀନ ଆକାଶର ଦୃଶ୍ୟ ଦେଖିବାଲାଗି ମୁଁ ଛିଡ଼ାହୋଇଥାଏ; ଆକାଶର ବହୁ ଦୂରରେ ଚନ୍ଦ୍ରମା ହସି ହସି ଉଦିତହେଲେ । ତାଙ୍କୁ ଚାହିଁ ଚାହିଁ ମୁଁ ମଧ ଆକାଶଠାରୁ ଆହୁରି ମହାନ୍ ହୋଇଉଠିଲି । ମୁଁ ନିଜ ହୃଦୟରେ ଗୋଟିଏ ସୁନ୍ଦର ଚାନ୍ଦର କଳ୍ପନା କରିନେଲି । ସେ ଚାନ୍ଦଟି ଖୁବ୍ କୋମଳ ତଥା ଲୋଭନୀୟ ବୋଲି ମୋର ମନେହେଲା । ଏହା ଭାବି ଭାବି ମୁଁ ମନେମନେ ଆନନ୍ଦପାରାବାରରେ ଉବେଇ-ଟୁବେଇ ହେବାକୁ ଲାଗିଲି । ତେଣୁ ମୁଁ ମୋ ଗର୍ଭରେ ଥିବା ସୁକୁମାର ସନ୍ତାନ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲି । ମହାରାଜଙ୍କ ସାନ୍ନିଧ୍ୟ ପାଇବା ତ ଭାଗ୍ୟର କଥା; କେବେ ମିଳିପାରେ, କେବେ ଅବା ଆକାଶ-କୁସୁମ ହୋଇଉଠେ । କିନ୍ତୁ ଏଇ ସୁକୁମାର କଳିକାଟି ଦିନରାତି ମୋ ଗର୍ଭରେ ରହି ମୋ ସହିତ ଲୁଚ୍‌କାଳି ଖେଳୁଛି । ତା'ର ମୂକ ସଙ୍ଗୀତ ମୁଁ ପ୍ରତି ମୁହୂର୍ତ୍ତରେ ଶୁଣିବାକୁ ପାଉଛି । ସେହି ସଙ୍ଗୀତରେ ମୁଁ ଆତ୍ମହରା ହୋଇଯାଇ, ସମସ୍ତ ଦୁଃଖ ଭୁଲିଯାଇପାରିଛି । ସମସ୍ତ ଆଶଙ୍କା, ଦେବଯାନୀର ଦୁର୍ବ୍ୟବହାର, ମହାରାଜଙ୍କ ବିରହ, ସବୁ କିଛି ଭୁଲିଯାଇ ସେହି ଅନାଗତ ସନ୍ତାନର ନାକ, କାନ, ହାତ, ଗୋଡ଼ ଆଦି ସମ୍ବନ୍ଧରେ କେତେ କ'ଣ କଳ୍ପନା କରିବସିଛି । ମୁଁ ତା'ର ସ୍ୱରୂପ ଦେଖିନାହିଁ, ତଥାପି ମୁନିମାନଙ୍କ ବ୍ରହ୍ମସାକ୍ଷାତ୍‌କାର ପରି ମୁଁ ଆନନ୍ଦରେ ମଗ୍ନ ହୋଇଗଲି ।

ଓଃ . . . ମାଆ ହେବା କେଡ଼େ ସୁଖଦ କଳ୍ପନା ! ଗଛର ପତ୍ର ଯେତେ ଗହଳ ହେଲେ ମଧ ଫୁଲ ବିନା ସେ ଶୋଭାପାଏକି ? ପତ୍ରଗହଳ ଅବଶ୍ୟ ବୃକ୍ଷର ସମ୍ପଦ; କିନ୍ତୁ ଫୁଲଗୁଡ଼ିକ ତା'ର ସୌନ୍ଦର୍ଯ୍ୟ ନିଶ୍ଚୟ । ଫୁଲଭାରରେ ମଣ୍ଡିତ ହୋଇ ସେ ଏକ ଅଲୌକିକ ରାଜ୍ୟରେ ବିଚରଣକରେ । ଏହି ସୌନ୍ଦର୍ଯ୍ୟର ତୁଳନା ବିଶ୍ୱର କୌଣସି ବସ୍ତୁ ସହିତ କରାଯାଇନପାରେ । ତେଣୁ ଶୁକ୍ରାଚାର୍ଯ୍ୟଙ୍କ ମନରେ ସଂଜୀବନୀବିଦ୍ୟା ଲାଗି ଏତେ ଆନନ୍ଦ ପୂରିରହିଥିଲା ।

ଏକୁଟିଆବେଳେ ମୁଁ ମୋର ଗର୍ଭସ୍ଥ ଶିଶୁ ସହିତ କଥାବାର୍ତ୍ତା କରି ବେଶ୍ ଆନନ୍

ପାଉଥିଲି। ମୁଁ ତାକୁ ପଚାରେ, 'ତୁ ଥିଲୁ କେଉଁଠି?' ସେ ଅବା କ'ଣ ଉତ୍ତର ଦିଅନ୍ତା? ମୁଁ ପୁଣି ପଚାରେ, ''ତୁ ତୋ' ମାଆକୁ ପସନ୍ଦ କରିବୁ ତ? ତୋ ମାଆ ଗୋଟିଏ ଦାସୀ। କିନ୍ତୁ ସେ ନିଜ ଜାତି ତଥା ଦେଶ ଲାଗି ଦାସୀ ହୋଇ ରହିଛି। ତୁ ପରାକ୍ରମଶାଳୀ ହୋଇ ନିଜ ମାଆର ଦୁଃଖ ଦୂରକରିବୁ ତ? ତୋ' ବାପା ଏଡ଼େ ବଡ଼ ରାଜା କିନ୍ତୁ ସେ ମୋତେ ସୁଖୀ କରିପାରିଲେ ନାହିଁ। ବାପାରେ, ମୁଁ ତ କେବଳ ତୋ'ରି ଉପରେ ଭରସା କରି ରହିଛି। ମୋ ଧନ, ମୋ ରଙ୍କୁଣୀଥାଳ, ତୋ' ବିନା ଏ ସଂସାରରେ ମୋର ଆଉ କେହି ସାହା-ଭରସା ନାହିଁ।''

ଏହିପରି ଭାବରେ, କେତେ ସମୟ ଧରି କଥାବାର୍ତ୍ତା କଲେ ମୋର ଭାରାକ୍ରାନ୍ତ ମନ ଆଶ୍ୱସ୍ତ ହୋଇଉଠେ; ଆବିଳତା ଧୋଇଯାଇ ମନ ନିର୍ମଳ ହୋଇଯାଏ।

କ୍ରମେ ମୋର ନାନା ପ୍ରକାର ଇଚ୍ଛା ଜାତ ହେବାର ସମୟ ଆସିଗଲା। ମୁଁ ବାପଘରେ ଥିଲେ, ମାଆ ମୋର ପ୍ରତ୍ୟେକ ଇଚ୍ଛାକୁ ହସିହସି ପୂରଣ କରିଦିଅନ୍ତା। କିନ୍ତୁ ହାୟ... କାହିଁ ସେ ଭାଗ୍ୟ?

ମୋ ମନର ଅଭିଳାଷ ମଧ୍ୟ ଅତି ବିଚିତ୍ର। ମୁଁ ଚାହୁଁଥିଲି; ଘନଜଙ୍ଗଲର ଭୀଷଣ ପରିବେଶ ମଧ୍ୟରେ ମୁଁ ଶିକାର କରି ବୁଲନ୍ତି; ରାତିରେ ବଣ-ଜଙ୍ଗଲର ଉଚ୍ଚ ଡାଳ ଉପରକୁ ଚଢ଼ିଯାଇ ବସିରହନ୍ତି; ସବୁଜ ଲତାର ସୁନ୍ଦର ଫୁଲଗୁଡ଼ିକ ତୋଳି ବେଣୀରେ ଗୁନ୍ଥିଦିଅନ୍ତି। ହଠାତ୍ ଗୋଟିଏ ସିଂହ ମୋ ହାବୁଡ଼ରେ ପଡ଼ିଗଲେ ମୁଁ ତାର କେଶର ଧରି ତା' ପାଟି ମେଲାଇ ଦାନ୍ତଗୁଡ଼ିକ ଗଣିଦିଅନ୍ତି। ଏହିପରି କେତେ କେତେ ବିଚିତ୍ର ଅଭିଳାଷ ମୋ ମନରେ ଜାତ ହୋଇ ଆପଣାଛାଏଁ ଉଭେଇଯାଏ। ଏହା ଲକ୍ଷ୍ୟ କରି ମୁଁ ଆଶ୍ଚର୍ଯ୍ୟ ହୋଇଯାଏ। ମୁଁ ପରାଧୀନା ଦାସୀଟାଏ; ମୋର ସ୍ୱାଧୀନ ଚିନ୍ତା, ସ୍ୱାଧୀନ ଅଭିଳାଷ ପୂରଣ ହେବ କିପରି? କେବଳ ମୋର ଗର୍ଭସ୍ଥ ଶିଶୁ ସନ୍ତାନଟି ଖେଳୁଆଡ଼ ହୋଇ ମୋତେ ଖେଳାଉଥାଏ।

ଦିନେ ମୋର ଇଚ୍ଛା ହେଲା – ଭାବିଲି, ଗୋଟିଏ ବୁଢ଼ୀବେଶରେ ଯାଇ ମହାରାଜଙ୍କ ପାଖରେ ପହଞ୍ଚିବି। ସେମିତି କଲି। ସେ ମୋତେ ଚିହ୍ନିପାରିଲେନାହିଁ। ତହୁଁ ମୁଁ ବେଶ ଓହ୍ଲାଇଦେଇ କହିଲି, 'ଆପଣ ଋଷିବେଶରେ ମୋତେ ଭୁଲାଇଦେଇଥିଲେ, ଏବେ ମୁଁ ବୁଢ଼ୀବେଶରେ... ବେଶ ପରିବର୍ତ୍ତନ କରିବା କେବଳ କ'ଣ ଆପଣଙ୍କୁ ହିଁ ଜଣା? ଦେଖିଲେ, କିପରି ଠକାଇଦେଲି ଆପଣଙ୍କୁ।'

× × × ×

ଦେବଯାନୀର ପୁଅଟିଏ ହେଲା, ନାମକରଣ ଉତ୍ସବରେ ଯୋଗଦେବାଲାଗି ମୋତେ ଡାକରାଆସିଲା। କିନ୍ତୁ ବାହାରିବାମାତ୍ରେ ମୋ ଗୋଡ଼ହାତ ଥର ଥର ହୋଇ ଥରିବାକୁ ଲାଗିଲା। ମୋ ଚେହେରା ସଂପୂର୍ଣ୍ଣ ବଦଳିଯାଇଥିଲା; ତେଣୁ ଆଜି ସୁଦ୍ଧା ଯେଉଁ ରହସ୍ୟ ମୁଁ ଗୋପନକରିଆସିଛି, ଆଉ କେବେହେଲେ ଲୁଚାଇ ହେବ ନାହିଁ, ଏ ଧାରଣା ମୋ ମନରେ ଦୃଢ଼ହୋଇଗଲା। ତେଣୁ ଅନେକ ବେଳଯାଏ ଦର୍ପଣ ଆଗରେ ଛିଡ଼ାହୋଇ ଆତ୍ମଗୋପନ ଲାଗି କେତେ ପ୍ରକାର ସଜାସଜି କରି ଲୁଗାପଟା ପିନ୍ଧିଲି; ତଥାପି ମନ ମାନିଲାନାହିଁ। ପରମୁହୂର୍ତ୍ତରେ ଭାବିଲି; ଆଜି ଦେବଯାନୀ ଆନନ୍ଦରେ

ବିଭୋର ହୋଇ ବ୍ୟସ୍ତ ଥିବ; ତେଣୁ ମୋତେ ଲକ୍ଷ୍ୟ କରିବାକୁ ବେଳ ପାଇବ କୁଆଡୁ ? ତଥାପି ମନେମନେ ଖୁବ୍ ଡରିଯାଇ ରାଜମହଲରେ ପହଞ୍ଚିଲି; ଦେବଯାନୀର ଆଖି ଆଗରୁ ଦୂରେଇ ରହିବା ଲାଗି ବରାବର ଚେଷ୍ଟାକଲି । କିନ୍ତୁ ସେ ମୋତେ ତା' ପୁଅ ଯଦୁକୁ ଦେଖାଇବାଲାଗି ଡକାଇପଠାଇଲା; ପୁଅ ଦେଖାଉଥିବା ସମୟରେ ମୋତେ ଭଲଭାବରେ ନିରୀକ୍ଷଣ କରି କହିଲା– ''ଶର୍ମିଷ୍ଠା, ଜଣାପଡୁଛି ଅଶୋକବନର ଜଳବାୟୁ ତୋ' ଦେହରେ ବେଶ୍ ଗଲା ତ ?''

ମୁଁ ଡରି ଡରି କେବଳ 'ହୁଁଟିଏ' ମାରିଦେଲି । ତା'ପରେ ସେ ବିରକ୍ତିମିଶା ସ୍ୱରରେ କହିଲା, ''ସେଠାରେ ତୋତେ ନିର୍ଜ୍ଜନ ବୋଧହେଉନାହିଁ ?''

କହିଲି– ''ହଁ... ପ୍ରଥମରୁ କେତେଦିନ ଲାଗୁଥିଲା । ମୋ ସାଥିରେ ଆସିଥିବା ଦୁଇଜଣଯାକ ଦାସୀ ଅଛନ୍ତି ତ; ସେଇମାନଙ୍କ ସହିତ ପିଲାଦିନର କେତେ ଘଟଣା ଓ ଖୁସିଗପ କରି ସମୟ କଟାଇଦେଉଛି ।''

''ଆଚ୍ଛା ... ଆଉ ସେଠାକୁ କିଏ ସବୁ ଯିବା ଆସିବା କରୁଛନ୍ତି ?''

''ସେଠାକୁ ଆଉ କିଏ ଆସିବ ? କେବେ କେବେ ମୁନି-ଋଷିମାନେ ଆସନ୍ତି, ସେଇମାନଙ୍କ ସେବାରେ ଦିନ କଟିଯାଏ – ଜଣାପଡ଼େନାହିଁ ।''

ବାଘୁଣୀ ହାବୁଡ଼ରୁ ତ୍ରାହି ପାଇଲା ପରି ମୁଁ ତା' ଆଗରୁ ପଳାଇଆସି ପୁଣି ଜନଗହଳିରେ ମିଶିଗଲି । ମୁଁ ରାଜମହଲର ଅନ୍ୟାନ୍ୟ ଦାସୀମାନଙ୍କ ସହିତ କଥାବାର୍ତ୍ତା କରୁଥିବାବେଳେ ଲକ୍ଷ୍ୟ କଲି, ଦେବଯାନୀର ସେଇ ଖୁଣ୍ଟାକହି ବୁଢ଼ୀଦାସୀଟା ମୋ ପିଛାଧରି ଚାଲିଛି; ମୋତେ ଗିଳିଗଲାପରି କଟ୍‌ମଟ୍ କରି ମୋ'ରି ଆଡ଼କୁ ଚାହିଁରହୁଛି । ଅବଶ୍ୟ ପ୍ରଥମେ ମୁଁ ଏହା ବିଶେଷ ଲକ୍ଷ୍ୟକରିନଥିଲି; କିନ୍ତୁ ପରେ ତା' ଆଖିର କୁଟୀଳ ଭାଷା ବୁଝିପାରି ଭୟରେ କମ୍ପିଉଠିଲି । ତା'ପରେ ଦେବଯାନୀଠାରୁ ବିଦାୟ ନେଇ ଶୀଘ୍ର ଆଶୋକବନକୁ ଲେଉଟିଯିବା ଲାଗି ସ୍ଥିର କଲି । ଏହି ସମୟରେ ସେ ଡକାଇପଠାଇଲା । ମୁଁ ଡରି ଡରି ତା' କକ୍ଷରେ ପ୍ରବେଶକଲି । ସେ ଅନ୍ୟାନ୍ୟ ଦାସୀମାନଙ୍କୁ ବାହାରକୁ ପଠାଇଦେଇ ଭିତରୁ ଦ୍ୱାର ବନ୍ଦକରିଦେଇ ନିତାନ୍ତ କର୍କଶ ସ୍ୱରରେ ପଚାରିଲା– ''ତୁ ଗର୍ଭବତୀ ହୋଇଛୁ ?''

–''ହଁ...''

–''ଜାଣିଛୁ, ଏହା ବ୍ୟଭିଚାର ...''

–''ମୁଁ ବ୍ୟଭିଚାରିଣୀ ନୁହେଁ। ଜଣେ ମହାନ୍ ଋଷିଙ୍କ ଆଶୀର୍ବାଦରୁ ...''

–''ଋଷିଙ୍କ ଆଶୀର୍ବାଦ ... ? କିଏ ସେ ଋଷି ? ତା' ନାମ, ଗୋତ୍ର, କୁଳ ବିଷୟରେ କହୁନାହୁଁ କାହିଁକି ? ପାଟିରୁ କଥା ବାହାରୁନାହିଁ ? କିଏ ସେ ତୋ' ଉପରେ ଏତେ ଦୟା ଦେଖାଇଲେ ? କହ ... ?''

ସେ ରାତିଟାଯାକ ମୁଁ ଶୋଇପାରିନାହିଁ । ମୋ ଅନାବିଳ ପ୍ରଣୟ କେବେ ପାପ ହୋଇନପାରେ । ସେ ପାପ ହୋଇପାରେ; ମାତ୍ର କଚ଼ଙ୍କ ପରି ପବିତ୍ର ଆତ୍ମାଙ୍କର ତା' ସହିତ ସମ୍ପର୍କ କ'ଣ ? ଦେବଯାନୀ ଯେତେବେଳେ ଏଭଳି ବିଷ ଉଦ୍‌ଗାର କରୁଥିଲା, ମୁଁ ନୀରବ ରହିଲି କାହିଁକି ? ମୁଁ ରୋକ୍‌ଠୋକ୍ ଭାବରେ କହିଲିନାହିଁ କାହିଁକି ଯେ, 'ବୃଥାଟାରେ କଚ଼ଦେବଙ୍କ ପରି ମହାପୁରୁଷଙ୍କୁ ଏହା ମଧ୍ୟକୁ ଟାଣନାହିଁ,

ତାଙ୍କ ସହିତ ଯା'ର କିଛି ସମ୍ପର୍କ ନାହିଁ।' ମୁଁ ଏଭଳି ଉତ୍ତର ଦେଇଥିଲେ ସେ ଖୋଳିତାଡ଼ି କେତେ କ'ଣ ପଚାରି ଅସଲ କଥା ବାହାର କରିବାକୁ ଚେଷ୍ଟା କରିଥା'ନ୍ତା। ତା'ପରେ...।

କଚ୍‌ଦେବଙ୍କଠାରୁ ମନେ ମନେ କ୍ଷମା ମାଗିବା ବ୍ୟତୀତ ମୋର ଆଉ ଉପାୟ କ'ଣ ଥିଲା? ତାଙ୍କର ସ୍ନେହଶୀଳ ତଥା କୃପାମୟୀ ମୂର୍ତ୍ତି ମୋ ଆଖି ଆଗରେ ଝଲସିଉଠିଲା। ମୁଁ ଆଣ୍ଠୁ ମାଡ଼ି ବସିଯାଇ କହିଲି– "ମୋ ପ୍ରାଣର ଭାଇଟା ପରା! ମୋତେ କ୍ଷମାକରିଦିଅ, ଦୁର୍ବଳ ଭଉଣୀଟିକୁ କ୍ଷମାକରିଦିଅ ଭାଇ!"

× × × ×

ଦୁଃଖର ସାତସମୁଦ୍ର ତେରନଈ ପାରନହେଲେ ଆନନ୍ଦର ସୀମାରେଖା ଛୁଇଁବା ଅସମ୍ଭବ, ଏହାହିଁ ହେଉଛି ଜୀବନର ଶାଶ୍ୱତ ନିୟମ। ପ୍ରସବ-ପୀଡ଼ାରେ ମୁଁ ଅସ୍ଥିର ହୋଇ ମୃତ୍ୟୁର ଦ୍ୱାରଦେଶରେ ଛିଡ଼ାହୋଇଗଲି। ଜନ୍ମ ଓ ମୃତ୍ୟୁର ଏ ବିଚିତ୍ର ଲୀଳା ଲକ୍ଷ୍ୟ କରି; ମୁଁ ମନେମନେ ଜୀବନ ପ୍ରତି ବୀତଶ୍ରଦ୍ଧ ହୋଇଉଠିଲି। ମହାରାଜଙ୍କ ବାହୁପାଶରେ ଆବଦ୍ଧ ରହି ଯେଉଁ ଶରୀର ଆନନ୍ଦରେ ପ୍ରତି ମୁହୂର୍ତ୍ତ ଫୁଲିଉଠୁଥିଲା, ଝୁଲିଉଠୁଥିଲା, ସେହି ଶରୀର ଅସୀମ ମର୍ମନ୍ତୁଦ ପୀଡ଼ାରେ ଆର୍ତ୍ତ ଚିତ୍କାର କରିଉଠିଲା। ଖୁବ୍ ବେଶି ପୀଡ଼ା ହେଲେ ମୁଁ ଆଖି ବୁଜିଦେଇ ଭାବେ, ବୋଧହୁଏ ଏ ଆଖି ଆଉ ଖୋଲିବନାହିଁ କିମ୍ବା ଏ ନିର୍ଦ୍ଦୟ ତଥା ସୁନ୍ଦର ଦୁନିଆ ମୁଁ ଆଉ ଦେଖି ପାରିବି ନାହିଁ। ପୁଅ ହେବ କି ଝିଅ ତାକୁ ନ ଦେଖି, କୋଳରେ ନଧରି, ଛାତିରେ ନଲଗାଇ, ସତେ କ'ଣ ଭଗବାନ୍ ମୋତେ ସଂସାରରୁ ନେଇଯିବେ? ହେ ଈଶ୍ୱର...!

ହଠାତ୍ ମୋ ଆଖି ଆଗରେ ଅନ୍ଧକାର ଛାଇଗଲା। ମୁଁ ସେଇ ଘନ ଅନ୍ଧକାର ମଧ୍ୟରେ ନିଜକୁ ହଜାଇଦେଲି। କେତେ ସମୟ ପରେ କେଜାଣି ମୋତେ ଜଣାଗଲା ସତେ ଅବା, ମୁଁ ଯୋଗନିଦ୍ରାରୁ ଚେଇଁଉଠିଛି। ମୋ ଦାସୀ ଦୁଇଜଣ ମୋ କାନରେ ଫୁସ୍‌ଫୁସ୍ କରି କ'ଣ କହିଲେ, ମୁଁ ହଠାତ୍ ଜାଣିପାରିଲିନାହିଁ। ପର ମୁହୂର୍ତ୍ତରେ ତ୍ରିଲୋକର ଆନନ୍ଦଦାୟୀ ସଙ୍ଗୀତର ମୂର୍ଚ୍ଛନା ପରି ମୋ କାନରେ ପ୍ରତିଧ୍ୱନିତ ହେଲା– "ପୁଅ ହୋଇଛି... ପୁଅ...! ବେଶ୍ ଗୋରା ତକ୍‌ତକ୍ ଓ ସୁନ୍ଦର ସ୍ୱାସ୍ଥ୍ୟବାନ୍...।"

ମୋ ପୁଅର ଏନ୍ତୁଡ଼ିଶାଳରେ କେବଳ ମୋର ଦୁଇଜଣ ଦାସୀ ଥିଲେ। ଦେବଯାନୀ ରାଜମହଲରେ ଥାଇ ସବୁ ଶୁଣୁଥିଲା, ସମସ୍ତ ଖବର ଗୋଟି ଗୋଟି କରି ରଖୁଥିଲା। କିନ୍ତୁ ଛଳନାକରୁଥିଲା, ସତେ ଅବା ସେ କିଛି ଜାଣିନାହିଁ। ଅବଶ୍ୟ ସେ ସେହି ସମୟରେ ପ୍ରକାଶ୍ୟରେ କିଛି ବିରୋଧ କଲାନାହିଁ, କିନ୍ତୁ ମୋର ଚତୁଃପାର୍ଶ୍ୱରେ ସେ ସୁଦୃଢ଼ ଜାଲ ବିଛାଇଦେଇଥିଲା।

ମୋର ଧନ... ଜଣେ ମହାନ୍ ସମ୍ରାଟ୍‌ଙ୍କ ପୁତ୍ର। କିନ୍ତୁ ଅଭାଗିନୀ ଶର୍ମିଷ୍ଠାର କୋଳରେ ସେ ଜନ୍ମନେଇଥିଲା। ତେଣୁ ସୁସଜ୍ଜିତ ଝୁଲାରେ ଝୁଲାଇ ତାର ନାମକରଣ କିଏ କାହିଁକି କରନ୍ତା? ତା' ନାମ ପୁରୁରବା ରଖିବାଲାଗି ମୋର ଇଚ୍ଛାହେଲା; କିନ୍ତୁ ତା' ଫଳରେ କାଳେ ଦେବଯାନୀ ଆମ ପ୍ରଣୟର କିଛି ସୁରାକ ପାଇଯିବ, ସେଥିଲାଗି ମଧ୍ୟ ମନରେ ଭୟ ଜାତହେଲା। ଯାହାହେଉ, ମହାରାଜଙ୍କ ପ୍ରପିତାମହଙ୍କ

ନାମ ଥିବାରୁ; ମୁଁ ସେ ନାମଟିରେ ଲୋଭ ସମ୍ବରଣ କରିପାରିଲିନାହିଁ; ତେଣୁ ତା' ନାମ ଦେଲି ପୁରୁ। ତାର ନାମକରଣ ଉତ୍ସବ ସମ୍ପାଦିତ ହେଲା ଉଦ୍ୟାନର ଗୋଟିଏ ନିର୍ଜନ କୋଣରେ। ମୋରି ହାତରେ ଝୁଲିଝୁଲି ସେ ଆକାଶର ଚାନ୍ଦ ସହିତ ଖେଳି, ଖେଳନାର ସଉକ ମେଣ୍ଟାଇନେଲା। ଏହାହିଁ ଥିଲା ମୋ ପୁଅର ଜନ୍ମୋତ୍ସବ !

ପୁରୁ ମୋ ଦୁଃଖମୟ ଜୀବନରେ ଆନନ୍ଦର ସ୍ରୋତ ଖେଳାଇଦେଲା। ତାକୁ ଯେତେ ଆଦର କରି ଚୁମ୍ବନ ଦେଲେ ମଧ୍ୟ ମୋ ମନ ତୃପ୍ତ ହେଲାନାହିଁ। ତା'ର ଘନକୃଷ୍ଣ କେଶରେ ଅଙ୍ଗୁଳି ଚଳାଇ ମୁଁ ଆଉଁସିଲାବେଳେ ମୋତେ ଜଣାପଡ଼ିଲା, ସତେ ଯେପରି ନନ୍ଦନକାନନରେ ଫୁଲଶେଯ ଉପରେ ମୁଁ ଥିରିଥିରି ପାଦ ପକାଇ ମନ ଆନନ୍ଦରେ ଚାଲିଛି। ଭୋକ ଲାଗିଲାବେଳେ ସେ ମୋ କୋଳରେ ଥାଇ ବ୍ୟତିବ୍ୟସ୍ତ ହୋଇଉଠିଲେ ମୋତେ ସ୍ୱର୍ଗୀୟ ଆନନ୍ଦ ମିଳିଯାଏ। ମୋ କ୍ଷୀର ପାନ କରୁଥିବାବେଳେ ସେ ମଝିରେ ମଝିରେ ଟିକିଏ ରହିଯାଇ... ଫୁ... ଫୁ... କରି ମୁହଁରୁ କ୍ଷୀର ବାହାରକରିଦିଏ। ସେହି କ୍ଷୀରବିନ୍ଦୁ କେଇଟି ଉଡ଼ିଆସି ତା' ଗାଲରେ ପଡ଼ିଯାଏ। ମୁଁ ଆନନ୍ଦରେ ବିହ୍ୱଳ ହୋଇଯାଏ। ତା'ର କୋମଳ ଗାଲରେ ଅସଂଖ୍ୟ ଚୁମ୍ବନ ଆଙ୍କିଦେଇ ତାକୁ ବ୍ୟତିବ୍ୟସ୍ତ କରିଦିଏ। ମୋ ଆଡ଼କୁ ଆଖି ମିଟିମିଟି କରି ଚାହିଁ ତା'ର କୁନି କୁନି ଲାଲ ଟୁକ୍‌ଟୁକ୍ ଓଠ ଦେଖାଇ ହସିଦେଲେ ମୋ ମନରେ ଖେଳିଯାଏ ଅପୂର୍ବ ହିଲ୍ଲୋଳ; ବସନ୍ତର ବାସନ୍ତୀ ସ୍ଫୁରଣ। ତାର ଆଖିଯୋଡ଼ିକ ଦୁଇଟି ଉଜ୍ଜ୍ୱଳ ଚନ୍ଦ୍ରମାପରି ମୋ ଜୀବନର ଘନତମିସ୍ରାରେ ଛାଇଦିଏ ଶୁଭ୍ର ଚାନ୍ଦିନୀ।

ପୁରୁ ଦିନକୁ ଦିନ ବଡ଼ ହେବାକୁ ଲାଗିଲା। ଧୀରେ ଧୀରେ ପେଟେଇ ପେଟେଇ ଚାଲିବା ପରେ, ଆଣ୍ଠେଇପଡ଼ି ଗୁରୁଣ୍ଡିବାକୁ ଲାଗିଲା। କିଛି ଦିନ ପରେ ଆଉ ଟିକିଏ ବଡ଼ହୋଇ ଚାଲିବା ସଙ୍ଗେ ସଙ୍ଗେ କୁଆ, ମୈନା, ଶୁଆ, ପ୍ରଜାପତି ତଥା ଆହୁରି କେତେ ପ୍ରକାର ଚଢ଼େଇ ତଥା ଚନ୍ଦ୍ରର ନିର୍ମଳ ଚାନ୍ଦିନୀ ସହିତ ସେ ଖେଳିବାକୁ ଲାଗିଲା।

ଶୁଣିଲି– ଶୁକ୍ରାଚାର୍ଯ୍ୟ ପୁଣି ଥରେ ତପସ୍ୟାରୁ ଉଠିଛନ୍ତି। କିନ୍ତୁ ଯଦୁ ଅସୁସ୍ଥ ଥିବାରୁ ଦେବଯାନୀ ଗଲାନାହିଁ। ମୁଁ ଭଲଭାବରେ ଜାଣିଥିଲି, ସେ ହସ୍ତିନାପୁରରୁ ବାହାରକୁ ନଗଲେ ମହାରାଜଙ୍କ ସହିତ ମୋର ଭେଟ ହେବନାହିଁ। ତଥାପି ପୁରୁର ବାଳଲୀଳାରେ ମଗ୍ନ ରହି ମୁଁ ମହାରାଜଙ୍କ ବିରହ ଅନୁଭବ କଲିନାହିଁ କିମ୍ବା ଭବିଷ୍ୟତ ଚିନ୍ତା ମୋତେ ଆଦୌ ଦୁଃଖ ଦେଇପାରିଲାନାହିଁ।

ପୁରୁର ସ୍ୱ-ନକ୍ଷତ୍ର ଦିନ ପାଖେଇଆସିଲା; ଠିକ୍ ସେତିକିବେଳେ ସର୍ବସାଧାରଣଙ୍କ ଦର୍ଶନ ଲାଗି ଶୁକ୍ରାଚାର୍ଯ୍ୟ ଗୁମ୍ଫାର ବାହାରକୁ ଆସିଲେ। ତାଙ୍କ ଦର୍ଶନ ତଥା ଅଭ୍ୟର୍ଥନା ଲାଗି ଦେବଯାନୀ ଯଦୁକୁ ନେଇ ଚାଲିଗଲା। ସେଦିନ ମୋ ମନ ଚିରବିରହିଣୀ ନବବଧୂପରି ଉଲ୍ଲସିଉଠିଲା। ସନ୍ଧ୍ୟା ସମୟରୁ ଥରଥର କରି ଦୁଇଥର ବେଶ-ଭୂଷଣରେ ସଜ୍ଜିତାହେଲି; କିନ୍ତୁ ପୁରୁ ଦି'ଥରଯାକ ମୋ ସାଜସଜ୍ଜା ଅଲଗାକରିଦେଲା। ବୋଧହୁଏ ଜୀବନରେ ପ୍ରଥମଥର ଲାଗି ମୁଁ ତା' ଆଡ଼କୁ ଆଖି ତରାଟି ଚାହିଁଲି; ତଥାପି ସେ ଶାନ୍ତ ହୋଇ ନ ବସିବାରୁ; ବାଧ୍ୟହୋଇ ତା'ର କୋମଳ ଗାଲରେ ଚାପୁଡ଼ାଟିଏ ବସାଇଦେଲି। କିନ୍ତୁ ପରକ୍ଷଣରେ ମୋ ମନ ମୋତେ ତୀବ୍ର ତାଡ଼ନା ଦେଲା। ମୁଁ ତାକୁ କୋଳରେ ଭିଡ଼ିଧରି ଅଶ୍ରୁଧାରରେ ତା ସର୍ବାଙ୍ଗ ଅଭିଷେକ କରାଇଦେଲି।

ବାସ୍ତବିକ ସେ କ୍ରନ୍ଦନ ମଧ୍ୟରେ କେଡ଼େ ହୃଦୟଭରା ଆନନ୍ଦ ପୂରିରହିଥିଲା !

ଅଧରାତି ବିତିଗଲା, ତଥାପି ସୁଡ଼ଙ୍ଗପଥର ଦ୍ୱାର ଖଟ୍ ଖଟ୍ ହେଲା ନାହିଁ କିମ୍ବା ସେପଟରୁ କିଛି ଶବ୍ଦ ଶୁଣାଗଲାନାହିଁ। ମୁଁ ଭାବିଲି, ସତେ କ'ଣ ମହାରାଜ ମତେ ଭୁଲିଗଲେ ? ଏହା ଭାବି ଅବାରିତ ଗତିରେ ବହିଚାଲିଲା ମୋର ଦୁଇ ଆଖିରୁ ଝରଝର ଲୁହଧାର।

ରାତି ଅଧ ପରେ ଆହୁରି ଦୁଇ ଘଡ଼ି ବିତିଗଲା। ତା'ପରେ ସୁଡ଼ଙ୍ଗଦ୍ୱାରରେ ଶବ୍ଦ ଶୁଭିଲା ଏବଂ ଧୀରେ ଧୀରେ କବାଟଟି ଖୋଲିଗଲା। ମୋ ପିଣ୍ଡରେ ପ୍ରାଣ ପଶିଲା। ପରମୁହୂର୍ତ୍ତରେ ମୁଁ ମହାରାଜଙ୍କ ବାହୁପାଶରେ ମେଘକୋଳରେ ବିଜୁଳି ଲୁଚିଗଲା ପରି ବନ୍ଦିନୀ ହୋଇଗଲି। ଦୀର୍ଘ ବିରହ ପରେ ମିଳନ, ଆଃ... କି ସୁଖଦ ସେ ମିଳନ ? ମୁଁ ଅନେକ କିଛି କହିବାକୁ ଚାହୁଁଥିଲି; କିନ୍ତୁ ଚେଷ୍ଟାକରି ମଧ୍ୟ ପଦଟିଏ ହେଲେ ମୁହଁରୁ କଥା ବାହାର କରିପାରିଲିନାହିଁ। ତଥାପି ଆଖି ଆଖିରେ ନୁହେଁ; ସ୍ପର୍ଶରେ, ଲୁହଧାରରେ ଅନେକ କିଛି କୁହାକୁହି ହେଲୁ।

ଗାଢ଼ନିଦରେ ଶୋଇଥିବା ପୁରୁ ଆଡ଼କୁ ମହାରାଜ ଏକଲୟରେ ଚାହିଁ ଦେଖୁଥିଲେ; ହଠାତ୍ ମୋର ଦୁଇହାତ ଧରିପକାଇ କହିଲେ, ''ମୋତେ କ୍ଷମାକର ଶମା, ମୁଁ ଅଦ୍ୟାପି ଆମର ସ୍ନେହର ପୁରୁ ପାଇଁ କିଛି ହେଲେ କରିପାରିଲିନାହିଁ। କିନ୍ତୁ ଭବିଷ୍ୟତରେ...'' ମୁଁ ତାଙ୍କ ମୁହଁରେ ହାତ ଚାପିଦେଇ ତାଙ୍କୁ କିଛି କୁହାଇଦେଲିନାହିଁ।

ମୋ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ଦେବଯାନୀ କଠୋର ବ୍ୟବସ୍ଥା କରିଯାଇଥିଲା। ତେଣୁ ତାର ଚାଲାକିରେ ଧରାନପଡ଼ିବା ଲାଗି ଆମେ ଦୁହେଁ ଅନେକ କିଛି ଆଲୋଚ଼ନାକଲୁ। ମୁଁ ଲୋଭ ସମ୍ବରଣ କରିନେଲି; ବୃଥାଟାରେ ମହାରାଜଙ୍କୁ ଅସୁବିଧାରେ ପକାଇବାକୁ ଚାହିଁଲିନାହିଁ। ଚାରି ଆଠଦିନରେ ହେଉ ପଛେକେ, ଥରେ ଅଧେ କେବଳ ତାଙ୍କର ସାନ୍ନିଧ୍ୟ ମୁଁ ଚାହୁଁଥିଲି।

ଦିନେ ସେ ଆସିବାବେଳକୁ ପୁରୁ ଶୋଇନଥିଲା। ମୋ ଦାସୀ ତାକୁ ନେଇ ବଗିଚ଼ାରେ ଫୁଲ ଛିଣ୍ଡାଇବା କାମରେ ଲଗାଇଦେଲା। ଆକାଶରେ ଅଗଣିତ ତାରାଙ୍କ ଝିଲିମିଲି ଦୃଶ୍ୟ ଦେଖି ସେ ଖୁବ୍ ଖୁସିହୋଇଥିଲା। ସେ ବୋଧହୁଏ ଭାବିଲା, ଆକାଶରେ ମଧ୍ୟ ଅସଂଖ୍ୟ ଫୁଲ ଫୁଟିଛି। ସେ ତାରାଗୁଡ଼ିକୁ ତୋଳିଆଣିବା ଲାଗି ହାତ ବଢ଼ାଇଲା। ଦାସୀ ବିଚ଼ାରୀ ତାକୁ ଉପରକୁ ଟେକିଧରିଥିଲା; ମାତ୍ର କେତେବା ସେ ଉପରକୁ ଟେକିବ ? ପୁରୁ ସେହି ତାରାଗୁଡ଼ିକୁ ନେବା ପାଇଁ ଖୁବ୍ ଜିଦ୍‌ଧରିବସିଲା; କାନ୍ଦି କାନ୍ଦି ତା' ଆଖି ଲାଲ୍‌ହୋଇଗଲା। ତାକୁ ଖୁଆଇ ବୋଧଦେବାଲାଗି, ତା' ଖାଦ୍ୟରୁ ଗୁଣ୍ଡାଏ ଲେଖାଏ କୁଆ, ଶୁଆ, ଶାରୀ, ବିରାଡ଼ି ପ୍ରଭୃତି ତାର ସାଙ୍ଗମାନଙ୍କ ନାଁ ଧରି ଡାକିଲି। କିନ୍ତୁ କୌଣସିମତେ ସେ ବୋଧହେଲାନାହିଁ। ତେଣୁ ସେଦିନ ସେ ରାତି ଅଧ ପର୍ଯ୍ୟନ୍ତ ଚାହିଁରହିଥିଲା। କାନ୍ଧରେ ପକାଇ ଯେତେ ବୋଧ ଦେଲେ ମଧ୍ୟ ସେ ଆଦୌ ବୁଝିଲାନାହିଁ।

ସେ ଚାହିଁରହିଥିବା ଦେଖି ମହାରାଜ ପ୍ରଥମଥରଲାଗି ତାକୁ କୋଳକୁ ନେବାଲାଗି ହାତବଢ଼ାଇଲେ। ସେ ଏକ ଧ୍ୟାନରେ ତାଙ୍କଆଡ଼କୁ କେଇ ମୁହୂର୍ତ୍ତ ଚାହିଁବା ପରେ, ମୁହଁ ବୁଲାଇନେଇ ତାଙ୍କ ଚିତ୍ରଫଳକଟି ଆଡ଼କୁ ଚାହିଁ ହାତବଢ଼ାଇଦେଲା ଏବଂ ମୁଁ

ସେ ଆଡ଼କୁ ଚାହିଁବାଲାଗି ମୋ ମୁହଁ ଧରି ବୁଲାଇଦେଲା। "ଦେଖ, କେଡ଼େ ଚାଲାକ, ମୋ ଚିତ୍ରପଟ ଆଡ଼କୁ ଚାହିଁ ତୁମକୁ ଦେଖାଇବାକୁ ଚେଷ୍ଟାକରୁଛି।" —କହି ମହାରାଜ ତା' ଗାଲରେ ଗୋଟିଏ ଚୁମା ଦେଲେ। ମୁଁ ମଧ୍ୟ ବିଳମ୍ବ ନକରି ତା' ଗାଲର ଠିକ୍ ସେଇ ସ୍ଥାନରେ ଆଉ ଗୋଟିଏ ଚୁମ୍ବନ ଦେବାବେଳେ ମୋ ମନରେ ଯେଉଁ ଆନନ୍ଦର ଉଲ୍ଲାସ ଜାଗିଉଠିଲା, ସେଥିରେ କେବଳ ନଥିଲା ବାତ୍ସଲ୍ୟମମତା; ପ୍ରଣୟର ହିଲ୍ଲୋଳ ମଧ୍ୟ ପୂରିରହିଥିଲା।

ଦେବଯାନୀ ଫେରିଆସିବା ପରେ ଆମର ସବୁ ସୁଖସରାଗ ଉଭେଇଗଲା। ଯା' ମଧ୍ୟରେ ପୁରୁ ଗୋଟିଏ ଅକ୍ଷର ଦୁ'ତୁଣ୍ଡା ଭାଷାରେ କହିଶିଖିଲା। ତା'ର ପ୍ରତ୍ୟେକ ଅକ୍ଷର ମୋ ମନରେ ଯେଉଁ ଆନନ୍ଦ ଦେଉଥିଲା, ମୁଁ ତାହା ଭାଷାରେ ପ୍ରକାଶ କରିପାରିବି ନାହିଁ। ଭାବୁଛି, ସମୁଦ୍ର ମନ୍ଥନବେଳେ ଅମୃତ କଳସୀ ବାହାରିବାର ଦେଖି ଏଇଭଳି ଆନନ୍ଦ ଦେବଦାନବଙ୍କ ମନରେ ଜାତହୋଇଥିବ। ପ୍ରତିଦିନ ସନ୍ଧ୍ୟା ସମୟରେ ମୁଁ ତାକୁ ଧରି ମହାରାଜଙ୍କ ଚିତ୍ର ଦେଖାଏ; ସେ ଚିତ୍ରଫଳକ ପାଖକୁ ଯିବାମାତ୍ରେ ପା-ପା . . . ପା . . . ପା . . . କହି ପ୍ରଣାମ କରିବାଲାଗି ମୁଁ ତାକୁ ଶିଖାଇଦେଲି। ବେଳେବେଳେ ସେ ପା . . . ପା . . . ବଦଳରେ ଆଉ କ'ଣ ନାଇଁ କ'ଣ କହିଦିଏ; କିନ୍ତୁ ତାକୁ ବହୁତ ବୁଝାଇ ଅନେକ ପ୍ରକାର ସାକୁଲେଇ ପା . . . ପା . . . ଡାକି ପ୍ରଣାମ କଲେ ସେ ଦୃଶ୍ୟ ଦେଖି ମୁଁ ଆନନ୍ଦରେ ଫୁଲିଉଠିବି! ହାୟରେ ମନ . . .! ମନ ମଧ୍ୟରେ ଯଦି କଳ୍ପନାର ଅବାରିତ ସ୍ରୋତ ନଥାନ୍ତା, ତା'ହେଲେ . . .

ମୁଁ ପୁରୁର କୌତୁକ, ହସ, ଖେଳରେ ଏତେ ମଜ୍ଜିଯାଏ ଯେ, ମୋ ମନର ଦୁଃଖ ପାସୋରିଯାଏ; କିନ୍ତୁ ଆଉ ଦିନେ ଦିନେ ଅଦ୍ଭୁତ ଧରଣର ଘଟଣା ଘଟିଯାଏ। ଏହିଭଳି ଆଉ ଗୋଟିଏ ଦିନର ଘଟଣା; ବର୍ଷାଋତୁର ଶେଷଭାଗରେ, ଦିନେ ସକାଳୁ ଆକାଶରେ ମେଘ ଘୋଟିଗଲା। ସକାଳୁ ମୋ ଦାସୀ ପୁରୁକୁ ମୁହଁ ଧୁଆଇଲାବେଳେ ମୋ ପିଲାଦିନର ଗୋଟିଏ ଘଟଣା କହି ମୋର ଅଶାନ୍ତ ମନରେ ବିଷାଦର କାଳିମା ବୋଳିଦେଲା। ମୁଁ ଭାବିଲି; 'ହାୟ, ଯେ ଏତେ ଗୌରବସରରେ ବଢ଼ିଥିଲା, ତା' ଭାଗ୍ୟରେ କ'ଣ ଏଇ ଦାସୀପଣିଆ ଲେଖାଥିଲା ?'

ଏଇପରି ଭାବରେ ମୋ ମନ ଯେବେ ଦୁଃଖରେ ଭରିଯାଏ, ମୁଁ କଚ୍ଚଙ୍କ ଉପଦେଶଗୁଡ଼ିକୁ ମନେପକାଏ; ତଥାପି ଯଦି ମନ ନ ବୁଝେ, ତା'ହେଲେ କଚ୍ଚ ଦେବଯାନୀକୁ ଉପହାର ଦେଇଥିବା ଲାଲ୍ ଶାଢ଼ୀଟିକୁ ପିନ୍ଧିପକାଏ। ହାୟ . . .! ଯେଉଁ ଶାଢ଼ୀ ପାଇଁ ଆଜି ମୋର ଏ ଦୁର୍ଦ୍ଦଶା, ତାକୁଇ ପିନ୍ଧିନେଲେ ଆପଣାଛାଏଁ ମୋର ଅଶାନ୍ତ ମନ ବୋଧହୋଇଯାଏ !

ଆଉ ଦିନକର ଘଟଣା; ମୁଁ ସେଇ ଲାଲ୍ ଶାଢ଼ୀଟିକୁ ପିନ୍ଧିଥାଏ, ପୁରୁକୁ ନେଇ ଯିବାଲାଗି ହଠାତ୍ ଦେବଯାନୀଠାରୁ ଜରୁରୀ ଡାକରା ଆସିଲା। ମୁଁ ଲୁଗା ବଦଳାଇବାକୁ ଭୁଲିଯାଇ, ତରବରରେ ଡରିମରି ରାଜମହଲକୁ ଚାଲିଗଲି। ହଠାତ୍ ମୋ ମନରେ କେତେ କ'ଣ ପାପ ଛୁଇଁଲା; କାଳେ ଦେବଯାନୀ ଆମ ରହସ୍ୟ କୌଣସି ଦାସୀ ପୋଇଲୀଠାରୁ ଶୁଣିପାରିଲା କି! ଏକେ ତ ଲାଲ୍ ଶାଢ଼ୀ ପିନ୍ଧିଥିବା ଭୟ; ତା'

ଉପରେ ଏ ଭୟ ମୋତେ ବ୍ୟତିବ୍ୟସ୍ତ କରିଦେଲା। ଯା ହେଉ, ମୋ ଲାଲ୍ ଶାଢ଼ୀ ଦେଖି ଦେବଯାନୀର ମୁଖଭଙ୍ଗୀ ବିକୃତ ହେଲାନାହିଁ। ଏହା ଲକ୍ଷ୍ୟ କରି ମୁଁ ମନେ ମନେ ଶାନ୍ତିରେ ନିଃଶ୍ୱାସ ମାରିଲି।

ସାମୁଦ୍ରିକ ଶାସ୍ତ୍ର ଜାଣିଥିବା ଜଣେ ପଣ୍ଡିତଙ୍କୁ ସେ ଡକାଇଥିଲା; ତେଣୁ ମୋତେ ଜାଣିଶୁଣି ଡକାଇଥିବାର ମୁଁ ବେଶ୍ ଅନୁମାନ କରିନେଲି। ସେ ପଣ୍ଡିତ ପୂର୍ବରୁ ଥରେ କହିଥିଲେ– 'ଏ ଝିଅ ବଡ଼ ଅଭାଗିନୀ; କିନ୍ତୁ ଯା' ପୁଅ ସିଂହାସନରେ ବସିବ।'

ଆଜି ସେଇ ପଣ୍ଡିତଙ୍କ ବୁଦ୍ଧିବିଦ୍ୟା ପରୀକ୍ଷା କରିବାଲାଗି ସେ ଗୋଟିଏ ଚାଲାକି କଲା। ସେ ଯଦୁ ଓ ପୁରୁକୁ ଏକଧରଣର ବେଶଭୂଷାରେ ସଜ୍ଜିତ କରି, ଅନେକ ଖେଳନା ତାଙ୍କ ଆଗରେ ଅଜାଡ଼ିଦେଇ ବସାଇଦେଲା। ପିଲା ଦୁହେଁ ଖେଳରେ ମସ୍‌ଗୁଲ୍ ହୋଇଯାଆନ୍ତେ, ସେ ପଣ୍ଡିତଙ୍କୁ ଡାକିଆଣିଲା। ପଣ୍ଡିତ ମହାଶୟ ଦୁଇପିଲାଙ୍କର ହାତ ବାରମ୍ବାର ନିରୀକ୍ଷଣ କରି ଦେଖିବାପରେ ଯଦୁ ଆଡ଼କୁ ଚାହିଁ କହିଲେ– "ଜଣାପଡୁଛି ଏ ପିଲାଟି ଭାଗ୍ୟବାନ୍ ନୁହେଁ।"

ଏହା ଶୁଣି ଦେବଯାନୀ ମନେ ମନେ ରାଗି ପଞ୍ଚମ ହୋଇଯାଇଥିଲେ ମଧ୍ୟ ଓଠ କାମୁଡ଼ି ରହିଗଲା। ତା'ପରେ ପୁରୁ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲା– "ଆଉ ଏ...?" ଅନେକ ସମୟ ପର୍ଯ୍ୟନ୍ତ ପୁରୁର ହସ୍ତରେଖା ଗଣନା କରି ସେ କହିଲେ– "ଏ ପିଲା ନିଶ୍ଚୟ ରାଜଚକ୍ରବର୍ତ୍ତୀ ହେବ।"

ଦେବଯାନୀ ମୁଣ୍ଡରେ ଯେପରି ବଜ୍ରପଡ଼ିଗଲା! ପଣ୍ଡିତ ମହାଶୟଙ୍କ ଆଡ଼କୁ ଲାଲ୍ ଲାଲ୍ ଆଖିରେ ଚାହିଁ ତାଙ୍କୁ ଅପମାନିତ କରିବା ଭଳି ସ୍ୱରରେ କହିଲା, "ଏ ଦୁହେଁଯାକ ଗୋଟିଏ ମାଆର ପୁଅ ଦୁଇଭାଇ; ଦୁହେଁଯାକ ପୁଣି ରାଜକୁମାର। କିନ୍ତୁ ଦିହିଁଙ୍କ ଜୀବନରେ ଏପରି ଆକାଶ-ପାତାଳର ଅନ୍ତର କିପରି ହେବ?"

ଜ୍ୟୋତିଷୀ ମହାଶୟ ଅତ୍ୟନ୍ତ ଶାନ୍ତ ସ୍ୱରରେ କହିଲେ– "ମହାରାଣୀ, ଭାଗ୍ୟର ଅଦେଖା ହାତକୁ କାହାରି ବଳ ନାହିଁ। ଯେଉଁ ଆକାଶରେ ଧ୍ରୁବ ନକ୍ଷତ୍ର ରହିଛି, ସେହି ଆକାଶରୁ ତାରା ଖସି ପୃଥ୍ୱୀରେ ପଥର ପାଲଟି ଯାଉଛି।"

ଦେବଯାନୀ କୌଣସିମତେ ଜ୍ୟୋତିଷୀଙ୍କୁ ବିଦାକରିବା ପରେ ପରେ ମାଧବଙ୍କ ସହିତ ମହାରାଜ ଭିତରକୁ ପଶିଆସିଲେ। ମହାରାଜଙ୍କୁ ଦେଖିବାମାତ୍ରେ ପୁରୁ ପା... ପା... କହି ତାଙ୍କ ପାଖକୁ ଯିବାଲାଗି କୁଲୁରିଉଠିଲା। ଅବୋଧ ବାଳକର ଏ ରୀତି ଦେଖି ମୋର ହଳକ୍ ଶୁଖିଗଲା। ଯା' ଦେଖି ଦେବଯାନୀ ମୋତେ ବିରକ୍ତ ହେଲାପରି ପଚାରିଲା– "ଏ କ'ଣ କହୁଛି?" କିନ୍ତୁ ପୁରୁର ଏକାକ୍ଷରୀ ମନ୍ତ୍ରର ଅର୍ଥ ଅନେକ ହୋଇପାରେ, ତେଣୁ ଦେବଯାନୀ ସେଥିରୁ ବିଶେଷ କିଛି ଅନୁମାନ କରିପାରିଲାନାହିଁ।

ଜ୍ୟୋତିଷୀ ଚାଲିଯିବା ପରେ ଦେବଯାନୀ ମହାରାଜଙ୍କ ସହିତ ପଦେ ହେଲେ କଥାବାର୍ତ୍ତା ନକରି ମୋତେ କହିଲା– "ତୋ' ସାଥିରେ ଅନେକ କଥାବାର୍ତ୍ତା ଅଛି; ଚାଲ, ମହାରାଜଙ୍କ ମହଲରେ ଆମେ କଥାବାର୍ତ୍ତା ହେବା। ରାଜଧାନୀକୁ ଅନେକ ଦକ୍ଷ ନର୍ତ୍ତକ-ନର୍ତ୍ତକୀ ଆସିଛନ୍ତି, ସେମାନେ ଆଜି ନୃତ୍ୟ ପ୍ରଦର୍ଶନ କରିବେ, ଆ... ପୁରୁକୁ ସଙ୍ଗରେ ନେଇ ଆ।"

ମହାରାଜଙ୍କ ମହଲ ଭିତରେ ଗୋଡ଼ ଦେବାମାତ୍ରେ ଦେବଯାନୀ ଭିତରୁ ଦ୍ୱାର ବନ୍ଦକରିଦେଲା। ମୋ ମନକୁ ପାପଛୁଇଁଲା। ସେ ପଲଙ୍କ ଉପରେ ବସି କଠୋର ସ୍ୱରରେ ମୋତେ କହିଲା, "ଶର୍ମିଷ୍ଠା, ତୋର ଭୁଲିଯିବା ଉଚିତ ନୁହେଁ ଯେ ତୁ ମୋର ଦାସୀ।"

ମୁଁ ମୁଣ୍ଡ ହଲାଇଦେଇ 'ହଁ' ଭରିଲି। ତା'ପରେ ସେ ବାଘୁଣୀ ପରି ଆଖି ଲାଲ୍ ଲାଲ୍ କରି ମୋତେ କହିଲା– "ମୁଁ ଦାସୀମାନଙ୍କର ସବୁପ୍ରକାର ଦୋଷ କ୍ଷମାକରିଦିଏ, ଭବିଷ୍ୟତରେ ମଧ୍ୟ ସେମାନଙ୍କ ଦୋଷ କ୍ଷମାକରିବି। କିନ୍ତୁ କୌଣସି ଦାସୀର ବ୍ୟଭିଚାରକୁ...।"

–"ମୁଁ ବ୍ୟଭିଚାରିଣୀ ନୁହେଁ।"

ଦେବଯାନୀ ବିକୃତସ୍ୱରରେ ଅଟ୍ଟହାସ୍ୟ କରି କହିଲା– "ବାଃ, ବେଶ୍ ଚାଲାକି ତ? ବିନା ପତିରେ ପୁତ୍ର ଜନ୍ମକରି କହୁଛୁ କ'ଣ ନା ମୁଁ ବ୍ୟଭିଚାରିଣୀ ନୁହେଁ?"

–"ଜଣେ ମହର୍ଷିଙ୍କ କୃପାରୁ ମୋର ଏ ପୁତ୍ର ହୋଇଛି।"

–"ସେ ଋଷିଙ୍କ ନାମ କ'ଣ?"

–"ସେ ଋଷିଙ୍କ ନାମ-ଧାମ ଜାଣି କା'ର କ'ଣ ଲାଭ?"

–"ଜଣକର ଆଶୀର୍ବାଦରୁ ଜଣକର ପୁତ୍ର ହୋଇଗଲା; ଏଭଳି ନିଶାଖୋର ଗପ ମୁଁ ଶୁଣିବାକୁ ପ୍ରସ୍ତୁତ ନୁହେଁ କିମ୍ବା ଆଉ କେହି ତୋ'ଭଳି ମଉନମୁହାଁର ଏ କଥା ଶୁଣିବାକୁ ପ୍ରସ୍ତୁତ ନୁହନ୍ତି। ସେଇଥିପାଇଁ ସମସ୍ତେ ତା' ନାଁ ଜାଣିବାକୁ ଚାହାନ୍ତି।"

ଏହା ଶୁଣିବାମାତ୍ରେ ମନେ ମନେ ମୁଁ ରାଗରେ ଅଗ୍ନିଶର୍ମା ହୋଇଯାଇ କହିଲି– "ଶୁକ୍ରାଚାର୍ଯ୍ୟ ନିଜର ସଂଜୀବନୀ ମନ୍ତ୍ରଶକ୍ତିବଳରେ ମୃତ ରାକ୍ଷସଙ୍କୁ ଜୀବନଦାନ ଦେଇପାରୁ ଥିଲେ, ଏହା କ'ଣ ସେହିପରି ନିଶାଖୋରଙ୍କ ଗପ?"

ଆଉ ଦେବଯାନୀକୁ ସମ୍ଭାଳେ କିଏ? ସେ ଆଖି ତରାଟି, ଓଠ ଫୁଲାଇ କହିଲା, "ମୂର୍ଖ! ବେକୁବ୍!! ତୋ' ବୁଦ୍ଧିରେ ନିଆଁ ଲାଗିନାହିଁ ତ? କାହିଁ ତ୍ରିଭୁବନର ପ୍ରସିଦ୍ଧ ତପସ୍ୱୀ ଶୁକ୍ରାଚାର୍ଯ୍ୟ, ଆଉ କେଉଁଠି ତୋ'ପରି ଗୋଟାଏ ଦାସୀର ପ୍ରେମିକ ପାଗଳା ଯୋଗୀ? ସେ ନିଲଠା ପ୍ରେମିକର ନାମ କ'ଣ କହ।"

–"ମୁଁ ତାହା ପ୍ରକାଶ କରିବି ନାହିଁ।"

"ମୁଁ ମହାରାଣୀ! ମୁଁ ଯେଉଁ ଦଣ୍ଡ ବିଧାନ କରିବି ତା' ତୁ ଭୋଗକରିବାକୁ ବାଧ୍ୟ। କାଲି ମୁଁ ଦରବାର ଡକାଇ ତୋ' ବ୍ୟଭିଚାର ବିଷୟରେ ବିଚାରକରାଇବି। ତୋତେ ନିଜର ସତୀତ୍ୱ ସମସ୍ତଙ୍କ ଆଗରେ ପ୍ରମାଣିତ କରିବାକୁ ପଡ଼ିବ। ନ୍ୟାୟପତିମାନେ ଯଦି ତୋ' କଥାରେ ରାଜି ନହେବେ ତେବେ... ଭଲକରିଛୁ ଖଣ୍ଡିଏ ଲାଲ୍ ଶାଢ଼ି ପିନ୍ଧିଛୁ; କାରଣ ଶୂଳିରେ ବସାଇ ମାରିବା ଲୋକକୁ ଲାଲ୍ ଲୁଗା ପିନ୍ଧିବାକୁ ଦିଆଯାଏ।"

ତା' କଥା ଶୁଣି ମୋ ମୁଣ୍ଡ ଝାଇଁଝାଇଁ ହୋଇଗଲା, ଆଖି ଆଗରେ ଅନ୍ଧାର ଘୋଟିଗଲା। ଭାବିଲି; ଦେବଯାନୀର ମୁହଁରୁ ଆଉ ଗୋଟିଏ ହେଲେ ଶବ୍ଦ ନଶୁଣି ମୋର ଏଠାରୁ ଚାଲିଯିବା ଉଚିତ। ତେଣୁ ପୁରୁକୁ ଛାତିରେ ଭିଡ଼ିଧରି ମୁଁ ସେଠାରୁ ପଳାଇ ଆସିବାକୁ ବସିଲି। ମୁଁ ପହଣ୍ଡ ଉଠାଇ ଫେରିବାମାତ୍ରେ ସେ କହିଲା, "ଏଃ... ଯାଉଛୁ କୁଆଡ଼େ?" ତା'ର ନିର୍ମମ କଠୋର ଶବ୍ଦର କି ଯାଦୁକରୀ ପ୍ରଭାବ ଥିଲା

କେଜାଣି; ତା' କଥା ଶୁଣିବାମାତ୍ରେ ମୋର ପାଦ ଅଟକିଗଲା। ବାରମ୍ବାର ମନରେ ଭାବିଲି, ଯାଉଛି, 'ମହାରାଜ!' 'ମହାରାଜ!' ବୋଲି ଜୋର୍‌ରେ ଚିତ୍କାରକରିଉଠିବି। କିନ୍ତୁ... ପୁଣି ଭାବିଲି; ଯଦି ମୋ ଚିତ୍କାର ଶୁଣି ମହାରାଜ ଧାଇଁଆସି ମୋତେ ରକ୍ଷାକରିନିଅନ୍ତି, ତା'ହେଲେ ଅବସ୍ଥା ଅତି ଭୟଙ୍କର ହୋଇଉଠିବ। ଯେଉଁ ରହସ୍ୟକୁ ମୁଁ ଆଜି ସୁଦ୍ଧା ଗୋପନ କରି ରଖିଆସିଛି, ହଠାତ୍ କ୍ଷଣକମଧ୍ୟରେ ପଦାକୁ ଫୁଟିଉଠିବ। ଦେବଯାନୀର କ୍ରୋଧାଗ୍ନିରେ ମହାରାଜ ଜଳିପୋଡ଼ି ଭସ୍ମହୋଇଯିବେ। ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପରେ ମହାରାଜ, ମୋର ପ୍ରାଣପ୍ରିୟ ଦେବତା, ସାରା ଜୀବନ ଦହଗଞ୍ଜ ହେବେ। ଅଭିଶାପର ପରିଣତି ସମ୍ବନ୍ଧରେ କେତେ ପ୍ରକାର ଭୟାନକ ଦୃଶ୍ୟ ମୋ ଆଖିଆଗରେ ନାଚିଉଠିଲା। ତେଣୁ ପ୍ରାଣସଂକଟ ଉପସ୍ଥିତ ହୋଇଥିଲେ ମଧ୍ୟ ମୁଁ ଗୋଟିଏ ପଥରଖମ୍ବ ପରି ନିଶ୍ଚଳଭାବରେ ଛିଡ଼ାହୋଇରହିଲି।

ତା'ପରେ ଦେବଯାନୀ ମୋତେ ତା' ପଛେ ପଛେ ଯିବାକୁ ଇଶାରାଦେଲା; ମୁଁ ମଧ୍ୟ ମନ୍ତ୍ରଶକ୍ତିରେ ବିମୂଢ଼ ହେବାପରି, ତା' ପଛେପଛେ ଚାଲିବାକୁ ଲାଗିଲି। ପୂର୍ବ ଆଡ଼କୁ କିଛିବାଟ ଗଲାପରେ, ଦେବଯାନୀ ଗୋଟିଏ ଗୁପ୍ତଦ୍ୱାରର କଳ ମୋଡ଼ିଦେଲା; ସଙ୍ଗେ ସଙ୍ଗେ ଅଶୋକବନର ଗୁପ୍ତମାର୍ଗ ପରି ଗୋଟିଏ ସୁଡ଼ଙ୍ଗ ଦେଖାଗଲା। ତା'ପରେ ସେ କହିଲା, "ଚାଲ୍, ଏହାରି ଭିତରକୁ ଆଗେ ଆଗେ ଚାଲ୍।"

ମୁଁ ସୁଡ଼ଙ୍ଗପଥରେ ଆଗେଇଚାଲିଲି; ମୋ ପଛେ ପଛେ ଦେବଯାନୀ ମଧ୍ୟ ଆସିଲା। ମୋତେ ସେ କୁଆଡ଼େ ନେଇଯାଉଛି କିମ୍ୱା କ'ଣ ସେ କରିବାକୁ ଚାହୁଁଛି, ମୁଁ କିଛି ବୁଝିପାରିଲିନାହିଁ। ସେ ସୁଡ଼ଙ୍ଗପଥରେ ବେଶି ଦୂର ଯିବାକୁ ପଡ଼ିଲା ନାହିଁ; ଅଳ୍ପ ଦୂର ଯିବାପରେ ଗୋଟିଏ କୋଠରି ପଡ଼ିଲା। ସେହିଠାରେ ଛିଡ଼ାହୋଇ ସେ କହିଲା– "ଯା... ଭିତରକୁ ଯା'। ଖୁବ୍ ଏକାନ୍ତ ସ୍ଥାନ। ଇଚ୍ଛାକଲେ ତୋ'ର ସେ ନିଲଠା ପ୍ରେମିକକୁ ଡକାଇଆଣି ମନଖୁସିରେ ମଉଜକର। କିନ୍ତୁ ମନେରଖ, ଆଜି ରାତିକମଧ୍ୟରେ ତୋ ପ୍ରେମିକର ନାମ କହିବୁ, କି ନା ସେ ନିଷ୍ପତ୍ତି ନେବାକୁ ପଡ଼ିବ। ତୋ' ପ୍ରେମିକ ଗୋଟେ ଋଷି ପରା; ସେ ମନ୍ତ୍ରଶକ୍ତିବଳରେ ଏଠାକୁ ଆସିପାରିବ। ସେ ଯଦି ନଆସେ, ତା' ପୁଅଠାରୁ ପଚାରି ବୁଝ। ମୁଁ କାଲି ସକାଳୁ ଆସିବି, ଯଦି ତୁ ତୋ' ପ୍ରେମିକର ନାମ କହିଦେବୁ ତ ଭଲ; ନଇଲେ ସାରା ରାଜଧାନୀରେ ତୋ ଭ୍ରଷ୍ଟାଚାର ବିଷୟରେ ଡେଙ୍ଗୁରା ପିଟି, ଦରବାର ଡକାଇ, ତୋ ମାମଲାର ବିଚାର କରାଇ ତୋତେ...।"

କହୁ କହୁ ସେ ଟିକିଏ ନୀରବ ହୋଇଯାଇ ପୁଣି ହସିଦେଲା। ଓଃ... କି କ୍ରୂର ବିଷମିଶା ହସ ସେ? ତା'ପରେ ସେ ଛଳନାପୂର୍ଣ୍ଣ ମୃଦୁବାଣୀ ଫୁଟାଇ କହିଲା– "ଏଠାରେ ଯଦି କେହି ତପସ୍ୟା ଲାଗି ଆସନ ଲଗାଏ, ତା'ର ସେବା-ଶୁଶ୍ରୂଷା ଲାଗି ଆମେ କୌଣସି ଜଣେ ଲୋକକୁ ତା' ପାଖରେ ରଖାଇଥାଉଁ; ତେଣୁ ତୋ ତପସ୍ୟାରେ ସାହାଯ୍ୟ ଲାଗି ଏ ପ୍ରହରୀ ଏଠାରେ ରହିଲା; କିନ୍ତୁ ତୋ' ସୌନ୍ଦର୍ଯ୍ୟରେ ସେ ମୁଗ୍ଧ ହୋଇଯାଇ କାଲି ସକାଳେ ତୋ' ପ୍ରେମିକରୂପେ ଯଦି ସେ ଆତ୍ମପ୍ରକାଶ କରେ, ତେବେ ସବୁ ଘଟଣା ଗଣ୍ଡଗୋଳ ହୋଇଯିବ, ତେଣୁ ଆଜି ଏଠାରେ କାହାରିକୁ ରଖାଯିବନାହିଁ। କିନ୍ତୁ ମନେରଖ, ଏବେ ଆଉ ମାତ୍ର ଚାରି ପ୍ରହର ସମୟ ରହିଲା,

ଠିକ୍‌ଠିକ୍ ସତକଥା କହିଦେ– ଏ ତୋ' ପୁଅ ହାତରେ ଚକ୍ରବର୍ତ୍ତୀ-ଚିହ୍ନ ରହିଲା କିପରି ?''

ମୁଁ ପୂର୍ବପରି ଶାନ୍ତସ୍ୱରରେ ଉତ୍ତରଦେଲି– ''ସେଇ ମହାତ୍ମାଙ୍କର ଆଶୀର୍ବାଦରୁ।''

''ତା'ହେଲେ, ସେ ମହାତ୍ମାଙ୍କ ଆଶୀର୍ବାଦ ବଳରେ ତୁ ଏ ଗୁପ୍ତ କୋଠରିରୁ ଅନ୍ତର୍ଦ୍ଧାନ ହୋଇଯିବୁ। ବୁଝିଲୁ ?''

''ନିଶ୍ଚୟ ହୋଇଯାଇପାରିବି– ଏଥିରେ ଅସମ୍ଭବ କ'ଣ ? ଦେଖିଲେନାହିଁ... ଅଶୋକବନରୁ ଯତି ମହାରାଜ କିପରି ଅନ୍ତର୍ଦ୍ଧାନ ହୋଇଗଲେ ? ଲୋକମାନେ କହୁଛନ୍ତି– ବନ୍ୟାଜଳରେ ପରିପୂର୍ଣ୍ଣ ଯମୁନାନଦୀରେ ଭୂଇଁ ଉପରେ ଚାଲିବାପରି ସେ ଚାଲିଯାଇପାରିଲେ। ମୁଁ ମଧ ସେହିପରି ଏ କୋଠରି ଭିତରୁ...।''

ଦେବଯାନୀର ଈର୍ଷା ଫଳରେ, ପ୍ରାଣ ଚାଲିଗଲେ ସୁଦ୍ଧା ମୁଁ ତା'ର ଜିଦ୍ ଓ ଗର୍ବ ଆଗରେ କେବେହେଲେ ମୁଣ୍ଡ ନୁଆଇଁବି ନାହିଁ ବୋଲି ମନେ ମନେ ପ୍ରତିଜ୍ଞା କରିନେଲି; ତେଣୁ ମୋ ମନକୁ ଯାହା ଆସିଲା ବକିଗଲି। ଏହି ସମୟରେ ବାହାରୁ ଦ୍ୱାର ବନ୍ଦକରିଦେଇ ଦେବଯାନୀ ଚାଲିଯିବାକୁ ବସିଲା। ମନେହେଲା, ଯାଉଛି କବାଟ ଭିଡ଼ିଧରି ଦେବଯାନୀର ପାଦତଳେ ପଡ଼ି କହିବି– ''ତୁମେ ମୋତେ ଯେତେ କଷ୍ଟ ଦେବାକୁ ଚାହୁଁଛ ଦିଅ ପଛକେ; କିନ୍ତୁ ମୋ ପିଲାଟିକୁ କଷ୍ଟ ଦିଅନାହିଁ। ଏ ଅନ୍ଧକାରମୟ ଗମ୍ଭୀରିଘରେ... ସେ...''

ମୋତେ ଜଣାଗଲା ସତେଯେପରି, ଯୁଗ ଯୁଗ ଧରି ଏହି ଅନ୍ଧକାର ଗହ୍ୱର ମଧ୍ୟରେ ମୁଁ ପଡ଼ିରହିଛି। ପୁରୁ ମଧ ଅନ୍ଧାରରେ ଭେଁକିନା କାନ୍ଦିଉଠିଲା। ମୁଁ ତାକୁ ମୋ ଲୁଗାକାନି ଘୋଡ଼ାଇ ଶୁଆଇଦେଲି। କିନ୍ତୁ ପ୍ରତ୍ୟେକ ମୁହୂର୍ତ୍ତ ମୋ ପକ୍ଷରେ ଭୟଙ୍କର ହୋଇଉଠିଲା। ଧୀରେ ଧୀରେ ଗୁପ୍ତଗୃହର ଅନ୍ଧକାର ଭେଦକରି ଗୋଟିଏ ଆକୃତି ମୋତେ ଦେଖାଗଲା। କିଏ ସେ ? ମୋ'ରି ପରି କ'ଣ କେହି ପ୍ରଣୟିନୀ ? କ'ଣ ସେ ଖୋଜୁଛି ? ଏହିପରି ଚିନ୍ତା କରି କରି ମୁଁ ପାଗଳ ହୋଇଯିବି ନାହିଁ ତ ? ସେଇଥିପାଇଁ ମୋତେ ଦେବଯାନୀ ଏଠାରେ ଛାଡ଼ିନାହିଁ ତ ?

ସେହି କ୍ଷୁଦ୍ର ଅନ୍ଧକାରମୟ ପ୍ରକୋଷ୍ଠଟି ଅନେକ ଦିନର ବହୁ ଅକୁହା କାହାଣୀ ମୋ ଆଗରେ ଗାଇବସିଲା। କେଉଁ କାମୁକ ରାଜାର ପ୍ରଣୟଈର୍ଷାନ୍ୱିତା ସପତ୍ନୀର କ୍ରୋଧ, କେଉଁ ନିରୀହା ପ୍ରଣୟିନୀର ଅକାଳମୃତ୍ୟୁ, କେତେ କେତେ କଥା ମୋ ଆଗରେ ବଖାଣିଗଲା। ଆତ୍ମହତ୍ୟା କରିବାକୁ ମନେମନେ ସ୍ଥିରକରି ଉଠିବାକୁ ଚେଷ୍ଟା କଲି; ମାତ୍ର ପୁରୁ ମୋ କୋଳରେ ଶୋଇଥିଲା। ତା' ନିଦ ଭାଙ୍ଗିଯିବା ଭୟରେ ଉଠିପାରିଲିନାହିଁ। ହେ ଈଶ୍ୱର ! ତୁମେ ମୋତେ କେତେ କୋମଳ ଅଥଚ ସୁଦୃଢ଼ ବନ୍ଧନରେ ବାନ୍ଧିରଖିଛ ? ହଠାତ୍ ଗୃହମଧ୍ୟରେ ଆଲୋକ ଚମକିଉଠିଲା। ସେ ଆଲୋକ ଦେଖିବାମାତ୍ରେ ମୋ ମନରେ ଟିକିଏ ସାହସ ଆସିଲା। ମୁଁ ମନେ ମନେ କଚ୍ଦେବଙ୍କୁ ସ୍ମରଣ କରିବାକୁ ଲାଗିଲି। ଏହି ପ୍ରାଣସଙ୍କଟ ସମୟରେ ତାଙ୍କ ପ୍ରଣୟିନୀଙ୍କ ଲାଲ୍ ଶାଢ଼ୀଟି ମୁଁ ପିନ୍ଧିଥାଏ। ମୁଁ ଭାବିଲି– ବାସ୍ତବିକ୍ କଚ୍ଙ୍କ ପ୍ରଦତ୍ତ ଲୁଗାଟି ପିନ୍ଧିଥିବାରୁ ମୁଁ ଭାଗ୍ୟବତୀ ନିଶ୍ଚୟ। ପୁରୁକୁ ଛାତିରେ ଜାବୁଡ଼ିଧରି ମୁଁ ସେଇଠି ତଳେ ଶୋଇପଡ଼ିଲି। କିଛି ସମୟପରେ ମୋ ଆଖିକୁ ନିଦ ଆସିଗଲା।

ହଠାତ୍ ଦ୍ୱାର ଖୋଲିବା ଶବ୍ଦରେ ମୋ ନିଦ ଭାଙ୍ଗିଗଲା। ପ୍ରଥମେ ମୁଁ ସ୍ୱପ୍ନ ବୋଲି ଭାବିଥିଲି; କିନ୍ତୁ ତାହା ସ୍ୱପ୍ନ ନୁହେଁ, ପ୍ରକୃତରେ କେହି ଜଣେ ଗୁପ୍ତ କୋଠରିର ଦ୍ୱାର ଖୋଲୁଥିଲା। ମନମଧ୍ୟରେ ଆଶା ଓ ଭୟ ଏକସଙ୍ଗରେ ଉଦୟହେଲା। ମୋତେ କେହି ଉଦ୍ଧାର କରିବାକୁ ଆସିଛି ନା, ଦେବଯାନୀ ନିଜେ ବିଷର ପିଆଲା ଧରି ଆସୁଛି ? ହଠାତ୍ ବିଜୁଳିର ଚମକରେ କୋଠରିଟି ଝଲସିଉଠିଲା। ମୁଁ ସ୍ପଷ୍ଟ ଦେଖିପାରିଲି, ଘର ଭିତରକୁ ଆସୁଥିବା ବ୍ୟକ୍ତି ନିଜେ ମହାରାଜ। ପାଖକୁ ଆସି ମୋ କାନ୍ଧ ଉପରେ ସେ ହାତ ରଖିଲେ। ସେ ମୋତେ ମୁହଁ ଖୋଲି କିଛି କହିପାରିଲେନାହିଁ। ସେ ଦ୍ୱାର ଆଡ଼କୁ ଚାଲିବାକୁ ଲାଗିଲେ; ମୁଁ ପୁରୁକୁ କୋଳକରି ତାଙ୍କ ପଛେ ପଛେ ଚାଲିଲି।

ଆମେ ଶୀଘ୍ର ମହଲ ଉପରକୁ ଆସିଗଲୁ। ଦକ୍ଷିଣପଟରେ ଗୋଟିଏ କଳ ଲାଗିଥିଲା। ମହାରାଜ କଳଟିକୁ ମୋଡ଼ିଦେଇ ସେହି ବାଟରେ ଆଗେଇଚାଲିଲେ; ମୁଁ ତାଙ୍କ ପଛେ ପଛେ ଧାଇଁଧାଇଁ ଚାଲିଲି। ଏହି ଧାଁ-ଦଉଡ଼ ମଧ୍ୟରେ ପୁରୁର ନିଦ ଭାଙ୍ଗିଗଲା। ସେ ମହାରାଜଙ୍କୁ ଦେଖି ପା . . . ପା . . . ପା . . . ବୋଲି ଡାକିବାକୁ ଲାଗିଲା। ମୁଁ ତା' ମୁହଁରେ ହାତଦେଇ କୌଣସିମତେ ଚୁପ୍ କରାଇଲି।

ସୁଡ଼ଙ୍ଗ ପାରହୋଇ ଆମେ ଅଶୋକବନରେ ପହଞ୍ଚିଗଲୁ। ମହାରାଜ ମୋ ଆଡ଼କୁ ଚାହିଁ କହିଲେ, "ଆଉ ଗୋଟିଏ ମୁହୂର୍ତ୍ତ ଏଠାରେ ବିଳମ୍ବ ନକରି, ତୁମ ଦାସୀ ଦୁହିଁଙ୍କୁ ସୁଦ୍ଧା ସାକ୍ଷାତ୍ ନକରି, ଶୀଘ୍ର ଅଶୋକବନର ବାହାରକୁ ବାହାରିଯାଅ। ସେଠାରେ ଗୋଟିଏ ରଥ ପ୍ରସ୍ତୁତ ଅଛି। ମୋ ବାଲ୍ୟବନ୍ଧୁ ମାଧବ ସେଥିରେ ବସିଛି; ତୁମକୁ ନେଇ ସେ . . . ଯାଅ . . . ଯାଅ . . . ଶୀଘ୍ର ଯାଅ !" ଏହା କହୁ କହୁ ତାଙ୍କ ଆଖି ଛଳଛଳ ହୋଇ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା। ସେ ଅଶ୍ରୁଳ-ନେତ୍ରରେ ମୋ ଗଣ୍ଡରେ ଗୋଟିଏ ଆବେଗଭରା ଚୁମ୍ବନ ଆଙ୍କିଦେଲେ। ତାଙ୍କ ଚକ୍ଷୁରୁ ଅଶ୍ରୁଧାର ଝରିପଡ଼ିଲା ମୋ ଗଣ୍ଡଦେଶରେ। ସେ ଅତ୍ୟନ୍ତ ସ୍ନେହରେ ପୁରୁର ପିଠି ଥାପୁଡ଼େଇଦେଇ ସୁଡ଼ଙ୍ଗର ଦ୍ୱାର ବନ୍ଦକରିଦେଲେ।

ମୋ ଦାସୀ ଦୁହେଁ ଖୁବ୍ ବ୍ୟସ୍ତହୋଇ ମୋତେ ଖୋଜାଖୋଜି କରୁଥିଲେ। ମୁଁ ସେ ଦୁହିଁଙ୍କ ସହିତ ସାକ୍ଷାତ୍ ନକରି ସଙ୍ଗେ ସଙ୍ଗେ ବାହାରକୁ ଚାଲିଆସିଲି। ମହାରାଜଙ୍କ କହିବା ଅନୁସାରେ ବାହାରେ ମାଧବ ରଥ ରଖି ମୋତେ ଅପେକ୍ଷାକରିଥିଲେ। ମୁଁ ଯାଇ ବସିବାମାତ୍ରେ ରଥ ପବନବେଗରେ ଦୌଡ଼ିବାକୁ ଲାଗିଲା।

ଆକାଶ ମେଘାଚ୍ଛନ୍ନ, ବିଜୁଳି ଓ ଘଡ଼ଘଡ଼ି ଶବ୍ଦରେ ଗଗନପବନ କମ୍ପିଉଠୁଥିଲା। ଆମେ ନଗର ବାହାରେ ପହଞ୍ଚିବାବେଳକୁ ମୁଷଳଧାରାରେ ବର୍ଷାହେବାକୁ ଲାଗିଲା। ଚାହୁଁ ଚାହୁଁ ପ୍ରକୃତିର ଉଗ୍ରରୂପ ଭୀଷଣ ଆକାର ଧାରଣକଲା। କାଲି ଦେବଯାନୀ ଗୁପ୍ତ କୋଠରିରେ ମୋତେ ନଦେଖି ଠିକ୍ ଏହିପରି ତାଣ୍ଡବଲୀଳା ଲଗାଇଦେବ। ଏହା ଭାବି ଭାବି ମୁଁ ମନେ ମନେ ଅତ୍ୟନ୍ତ ବିକଳ ହେବାକୁ ଲାଗିଲି।

ରଥ ତୀବ୍ରବେଗରେ ଯାଇ ଶେଷରେ ଗୋଟିଏ ଜୀର୍ଣ୍ଣ ମନ୍ଦିର ନିକଟରେ ଅଟକିଲା। ହଠାତ୍ ମୁଁ ଶୁଣିବାକୁ ପାଇଲି, "ମହାରାଣୀ . . . !" ଓଃ . . . ଏ ବୁକୁଫଟା ସମ୍ବୋଧନର ଅର୍ଥ ମୁଁ ଆଦୌ ବୁଝିପାରିଲିନାହିଁ। ସାରଥି ପାଖରେ ବସି ମେଘବର୍ଷାରେ ଓଦା

ଜୁଡ୍ଡୁବୁଡୁ ହୋଇ ମାଧବ ମୋତେ ସେହି ସମ୍ବୋଧନରେ ଡାକୁଥିଲେ। ମୁଁ କିଛି ଉତ୍ତର ନଦେବାରୁ ସେ ପୁଣି ଡାକିଲେ, ''ମହାରାଣୀ . . .''

ଏଥର ସେ ସମ୍ବୋଧନରେ ମୋ ମନ ଆନନ୍ଦରେ ପୁଲକିଉଠିଲା। ମୁହୂର୍ତ୍ତକଲାଗି ମୁଁ ନିଜକୁ ଆନନ୍ଦସାଗରରେ ନିମଜ୍ଜିତ କରାଇଦେଲି।

ପୁଣି ମାଧବ କହିଲେ– ''ମହାରାଣି ! ଆପଣ ଏହିଠାରେ ଓହ୍ଲାଇଯାଆନ୍ତୁ।''

''ମହାରାଜଙ୍କର କ'ଣ ଏହାହିଁ ଆଦେଶ ?''

''ଆଜ୍ଞା ହଁ। କାହାରି ମନରେ କୌଣସି ପ୍ରକାର ସନ୍ଦେହ ଉପୁଜିବା ପୂର୍ବରୁ ମୁଁ ରଥ ନେଇ ରାଜଧାନୀକୁ ଫେରିଯିବି। ଆପଣ କେବେହେଲେ ହସ୍ତିନାପୁର ଫେରିବେନାହିଁ। କାରଣ ଆପଣଙ୍କ ପ୍ରତି . . .'' ମାଧବ ଆଉ କିଛି କହିପାରିଲେନାହିଁ।

ପୁରୁକୁ ଧରି ମୁଁ ରଥରୁ ଓହ୍ଲାଇପଡ଼ିଲି। ହସ୍ତିନାପୁରର ମହାରାଣୀ ଓ ଭାବୀଚକ୍ରବର୍ତ୍ତୀଙ୍କ ଉପରେ ମେଘ ଜଳଅଭିଷେକ କରୁଥିଲା; ବିଦ୍ୟୁତ୍‌ରୂପକ ଚାମର ତାଙ୍କ ମୁଣ୍ଡ ଉପରେ ଦୋହଲୁଥିଲା। ମୁଁ ମାଧବଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ କହିଲି, ''ମହାରାଜଙ୍କୁ ମୋର ଗୋଟିଏ ବାର୍ତ୍ତା କହିଦେଇପାରିବ କି ?''

''ହଁ ଆଜ୍ଞା, କହନ୍ତୁ।''

''କହିବ, ଶର୍ମିଷ୍ଠା ଯେକୌଣସି ଅବସ୍ଥାରେ ଥିଲେ ମଧ୍ୟ ତାଙ୍କ ଶ୍ରୀଚରଣପୂଜାରୁ କେବେହେଲେ ବିରତ ହେବନାହିଁ– ମୃତ୍ୟୁର ଦ୍ୱାରଦେଶରେ ଉଭାହୋଇ ମଧ୍ୟ ନୁହେଁ। ତାଙ୍କର ଆଜ୍ଞା ମୋର ଶିରୋଧାର୍ଯ୍ୟ। ଆଉ . . .''

''ଆଉ କ'ଣ କହନ୍ତୁ ?''

''ଆଉ ମଧ୍ୟ କହିବ, ମୋ ପୁରୁ ଯେଉଁଠି ଥିଲେ ମଧ୍ୟ ତାଙ୍କର ବରଦହସ୍ତରୁ ଯେପରି ସେ ବଞ୍ଚିତ ନହୁଏ ! ମହାରାଜଙ୍କ ଆଶୀର୍ବାଦରୁ ସେ . . .।''

ମୁଁ ଆଉ କିଛି କହିପାରିଲିନାହିଁ, ମୋର କଣ୍ଠ ରୋଧହୋଇଗଲା। ମୁଁ ସେହି ବର୍ଷାରେ ଭିଜି ଭିଜି ପୁରୁକୁ ଛାତିରେ ଭିଡ଼ିଧରି କହିଲି, ''ଚାଲରେ ବାପା, ମୋ ଟିକି ରାଜା, ଚାଲ। ବର୍ଷାର ଏ ଅଭିଷେକ ତୋ'ରି ଉନ୍ନତି ପଥରେ ମଙ୍ଗଳକରହେଉ। ମୋ ଟିକିଚକ୍ରବର୍ତ୍ତୀ ! ଆକାଶର ବିଜୁଳି ଆଜି ତୋରି ଆରତି ଲାଗି ସଜ୍ଜିତହୋଇଛି। ଚାଲ . . . ବାପା . . . ! ଏ ବୃଷ୍ଟିଜଳଠାରୁ ଆହୁରି ଶୀତଳତର, ବିଦ୍ୟୁତ୍‌ଠାରୁ ଅଧିକ ତେଜୀୟାନ୍ ହେଉ ତୋର ଜୀବନଧାରା।''

# ଯଯାତି

ଦେବଯାନୀର ପ୍ରଥମ ନୃତ୍ୟ ସମାପ୍ତହେଲା । ସମ୍ମାନ ଓ ପ୍ରଶଂସାସୂଚକ କରତାଳିରେ ସଭାଭବନଟି ମୁଖରିତ ହୋଇଉଠିଲା । ନୃତ୍ୟ ଶେଷ ହେବାମାତ୍ରେ ଆକାଶରେ ଘନଘୋର ମେଘ ଗର୍ଜନ ଶୁଣାଗଲା । ମୁଁ ଦେବଯାନୀକୁ ନେଇ ନୃତ୍ୟଶାଳାକୁ ଆସୁଥିବା ସମୟରେ ଆକାଶରେ ଘନକୃଷ୍ଣ ବାଦଲ ଘୋଟିରହିଥିଲା । ମୋର ମନେହେଲା – ଏଇ କଳାମେଘ ପରି ଦେବଯାନୀର ଅନ୍ତର କଳୁଷିତ ହୋଇ ରହିଛି । ସେ ମନେ ମନେ କୌଣସି ଏକ କଦର୍ଯ୍ୟ ଷଡ଼ଯନ୍ତ୍ରରେ ଲିପ୍ତଥିବାପରି ତା'ର ଆଖିରୁ ସ୍ପଷ୍ଟ ହୋଇଉଠୁଥିଲା । ମୁଁ ମନେମନେ ସନ୍ଦେହ କରି ପଚାରିଲି, "ତୁମର ଏ ନୃତ୍ୟ ଦେଖିବାଲାଗି ଶର୍ମିଷ୍ଠାକୁ ଅଟକାଇଲ ନାହିଁ ?"

ସେ ମୁହଁରେ କୁଟୀଳ ହାସ୍ୟରେଖା ଖେଳାଇ କହିଲା – "ମୁଁ ଅନେକକରି କହିଛି; କିନ୍ତୁ ସେ ଆଦୌ ରାଜିହେଲାନାହିଁ । ତା' ଦେହ ଭଲ ନାହିଁ ବୋଲି ସେ କହୁଥିଲା । ତେଣୁ ସେ ଅଶୋକବନକୁ ଲେଉଟିଗଲା ।"

ତା'ର କୁଟୀଳ ଚାହାଣି, କଥାର ବିଚିତ୍ର ଭଙ୍ଗୀ ମୋ ମନରେ ସନ୍ଦେହ ଜାତ କରାଇଲା । ମୁଁ ତା' କଥାରେ ସନ୍ତୁଷ୍ଟ ହୋଇପାରିଲିନାହିଁ । କାରଣ ମୁଁ ଦେବଯାନୀର ଚକ୍ଷୁରେ ସ୍ପଷ୍ଟ ଲକ୍ଷ୍ୟକରୁଥିଲି ଆସୁରୀ ପ୍ରବୃତ୍ତିର ବିକଟ ଆନନ୍ଦ । ମୁଁ ସଙ୍ଗେସଙ୍ଗେ ମାଧବ କାନରେ କେତେ କଥା କହି ତାକୁ ଅଶୋକବନକୁ ପଠାଇଦେଲି । ସେ ଅଶୋକବନରେ ବହୁତ ଖୋଜାଖୋଜି କରି ଫେରିଆସିଲା । ତହୁଁ ମୋ ମନର ସନ୍ଦେହ ଦୃଢ଼ୀଭୂତ ହୋଇଗଲା । ମୁଁ ବେଶ୍ ଧାରଣା କରିନେଲି ଯେ, ଶର୍ମିଷ୍ଠାକୁ ଷଡ଼ଯନ୍ତ୍ରରେ ପକାଇ ଶେଷକରିଦେବାଲାଗି ଦେବଯାନୀ ସବୁପ୍ରକାର ବ୍ୟବସ୍ଥା କରିଛି । ହଠାତ୍ ମୋର ମନେପଡ଼ିଗଲା – ଅଳକାର ମୃତ୍ୟୁ ଘଟଣା । ଗୁପ୍ତ ଗମ୍ଭୀରି ଘରେ ମାଆ ତାକୁ ରଖାଇ ବିଷପିଆଇ ଦେଇଥିଲେ । ବୋଧହୁଏ ପ୍ରତ୍ୟେକ ମହାରାଣୀଙ୍କର ଏହାହିଁ ହେଉଛି ପରମ୍ପରା । ସେଇଥିପାଇଁ ଭୂ-ଗର୍ଭର ସେଇ ଗୁପ୍ତଗୃହ ନିର୍ମିତ ହୋଇଛି; କିନ୍ତୁ ଶର୍ମିଷ୍ଠାକୁ ମୁଁ ସେହି ଗମ୍ଭୀରିଘରୁ ଉଦ୍ଧାର କରିବି କିପରି ?

ଦେବଯାନୀର ବସନ୍ତ-ନୃତ୍ୟ ଆରମ୍ଭ ସମୟ ହେଲା । ରାଜଧାନୀକୁ ଆସିଥିବା ନୃତ୍ୟଶିକ୍ଷୀମାନେ ଦେବଯାନୀର ନୃତ୍ୟକୁଶଳତା ସମ୍ବନ୍ଧରେ ଅନେକ କଥା ଶୁଣିଥିଲେ । ବିଶେଷତଃ ରାକ୍ଷସ-ରାଜ୍ୟରେ ନିଜେ ମହାରାଜ ବୃଷପର୍ବା କହିଥିଲେ – "ଆଜି ଆମ ଗୁରୁକନ୍ୟା ଏଠାରେ ଥିଲେ ତୁମେମାନେ ତାଙ୍କ ଆଗରେ ନୃତ୍ୟ କରିବାକୁ କେବେ ହେଲେ ସାହସ କରିପାରନ୍ତ ନାହିଁ ।" ତେଣୁ ସେମାନେ ଦେବଯାନୀର ନୃତ୍ୟ ଦେଖିବାଲାଗି ଆଗ୍ରହୀ ହେବା ସ୍ୱାଭାବିକ । ପ୍ରଥମେ ପ୍ରଥମେ ଦେବଯାନୀ 'ଅଭ୍ୟାସ ନାହିଁ, ଆଉ ସେପରି ନାଚିପାରିବିନାହିଁ' ବୋଲି କହି, ସେମାନଙ୍କ ଅନୁରୋଧ ଏଡ଼ାଇଦେବାକୁ ଚେଷ୍ଟାକଲା; ମାତ୍ର ପରମୁହୂର୍ତ୍ତରେ ତା'ର ଆତ୍ମବଡ଼ିମା ଉଗ୍ରହୋଇଉଠିଲା । ତେଣୁ

ଅନ୍ତତଃ ତିନିପ୍ରହର ରାତ୍ରି ପର୍ଯ୍ୟନ୍ତ ସେ ନୃତ୍ୟକଳା ପ୍ରଦର୍ଶନରେ ବ୍ୟସ୍ତ ରହିବାର ସୂଚନା ମିଳୁଥିଲା ।

ମୋ ଆଖିଆଗରେ ନାଚୁଥିଲା ଦେବଯାନୀ । ବସନ୍ତନୃତ୍ୟର ଅନୁରୂପ ବାସନ୍ତୀ ସଜ୍ଜାରେ ସଜ୍ଜିତାହୋଇ କେତେ କୋମଳ, କେତେ ଶୁଚିମନ୍ତ ଦେଖାଯାଉଥିଲା ସେ । କିନ୍ତୁ ସେଇ ସମୟରେ ତା'ର ଅନ୍ତର କେତେ କଳୁଷିତ ଚିନ୍ତାରେ ପୂର୍ଣ୍ଣ ହୋଇ ନଥିଲା ? ମଣିଷର ଗୋଟିଏ ମନ ମଧ୍ୟରେ ଦୈବୀ ଓ ଆସୁରୀ ଶକ୍ତିର କି ଅଦ୍ଭୁତ ସହାବସ୍ଥାନ . . . !

ବସନ୍ତର ପ୍ରଥମ ସ୍ପର୍ଶରେ ପଲ୍ଲବିତ; ତା'ପରେ ପ୍ରଫୁଲ୍ଲିତ, ନିଜ ସୁଗନ୍ଧରେ ବାତାବରଣକୁ ସୁଗନ୍ଧିତ କରି ପବନର ତାଳେ ତାଳେ ନାଚିଉଠୁଥିବା ନବଲତିକାର ଭୂମିକାରେ ଅବତୀର୍ଣ୍ଣ ଦେବଯାନୀ ନୃତ୍ୟମାଧ୍ୟମରେ ସମସ୍ତ ଭାବ ଅତ୍ୟନ୍ତ ନିପୁଣତାର ସହିତ ବ୍ୟକ୍ତକରୁଥିଲା । ତା' ପାଦର ଘୁଙ୍ଗୁର ଝୁମୁଝୁମ୍ ତାନରେ କୋକିଳର କୁହୁତାନକୁ ଅନୁକରଣ କରୁଥିଲା । ପରିଶେଷରେ ବସନ୍ତର ହିଲ୍ଲୋଳରେ ଆନ୍ଦୋଳିତ ଲତା, ବୃକ୍ଷର ବିସ୍ତାରିତ ଶାଖା ରୂପ ଭୁଜବନ୍ଧନ ଲାଭକରି ବ୍ରହ୍ମାନନ୍ଦ-ସୁଖରେ ନିମଜ୍ଜିତ ହେଲାପରି, ଦେବଯାନୀ ନୃତ୍ୟର ଭଙ୍ଗିମାରେ, ଅଭିନୟ ମାଧ୍ୟମରେ ସବୁଯାକ ଫୁଟାଇଦେଲା ।

ମୁଁ ଏହା ଲକ୍ଷ୍ୟକରି ଭାବିଲି – ମଣିଷର ମନ ମଧ୍ୟରେ କଳାକାର ଆତ୍ମା କ'ଣ ଭିନ୍ନ ଭାବରେ ଆତ୍ମଗୋପନ କରି ରହିଥାଏ ? ବସନ୍ତ-ନୃତ୍ୟଦ୍ୱାରା ଦେବଯାନୀ ପ୍ରଣୟର ସମସ୍ତ ପ୍ରକାର ହାବଭାବ ତଥା ବିବିଧ ଛଟା କେତେ ନିପୁଣତାର ସହିତ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ଆତ୍ମହରା ହୋଇଉଠିଛି । ସେତେବେଳେ ସେ ନଥିଲା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ କିମ୍ବା ହସ୍ତିନାପୁରର ମହାରାଣୀ; ଅନ୍ତର ଓ ବାହାର ତା'ର ଏକାକାର ହୋଇଉଠିଥିଲା । ସେ କେବଳ ସାଜିଥିଲା ପ୍ରଣୟିନୀ । ସେସମୟରେ ତା'ର ମୁଖମଣ୍ଡଳରୁ ଯେଉଁ ସ୍ନିଗ୍ଧ ଓ ମଧୁମୟ ଛଟା ଝରିପଡୁଥିଲା, ଜୀବନରେ ମୁଁ କେବେହେଲେ ସେପରି ଛଟା ଥରେ ହେଲେ ସୁଦ୍ଧା ଦେଖିନଥିଲି । ଆମ ଏକାନ୍ତ ମିଳନର ମଧୁମୟ ମୁହୂର୍ତ୍ତରେ ମଧ୍ୟ ସେ ଅନ୍ୟମନସ୍କ ଥିବାର ମନେହୁଏ । କେବେହେଲେ ତାର ଆଲିଙ୍ଗନପାଶରେ ମୁଁ ଶର୍ମିଷ୍ଠାର ନିବିଡ଼ ଭୁଜବନ୍ଧନର ଆସ୍ୱାଦ ପାଇପାରୁନଥିଲି । ଏପରି କି ଚୁମ୍ବନ ଦେବା ସମୟରେ ମଧ୍ୟ ଦେବଯାନୀର ଆନ୍ତରିକତା ମୁଁ ଆଦୌ ଅନୁଭବ କରିପାରୁନଥିଲି । ମନେହୁଏ – ସେ ନିଶ୍ଚିତ ଭାବରେ ମୋ ଆଗରେ କିଛିନାକିଛି ମୋ ଲାଗି ଗୋପନରଖୁଛି । ଜଣେ ସୁଦକ୍ଷ ଶିଳ୍ପୀ ତଥା କଳାକାର ଭାବରେ ସେ ନିପୁଣ ପ୍ରଣୟିନୀ ସାଜିପାରିଛି ସତ୍ୟ; କିନ୍ତୁ ପତ୍ନୀର ଭୂମିକାରେ ସେ ଥରଟିଏ ହେଲେ ପ୍ରଣୟିନୀ ହୋଇପାରିନଥିଲା । ଗୋଟିଏ ମଣିଷଠାରେ ଏପରି ଦୁଇପ୍ରକାର ପରସ୍ପର ବିରୋଧାତ୍ମକ ଭୂମିକା ସମ୍ଭବ ହେଉଛି କିପରି ? ଏହା କ'ଣ ନିୟତିର କ୍ରୂର ଅଭିଶାପ ? ମଣିଷକୁ ଚିରସୁଖୀ ନକରିବା ଇଚ୍ଛାରେ ନିୟତିର ଏ ଖେଳ କ'ଣ ଅବଶ୍ୟମ୍ଭାବୀ ? ଖୁବ୍ ସମ୍ଭବତଃ ଏହି କଦର୍ଯ୍ୟ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ବିଧାତା ମଣିଷର ଲଲାଟପଟରେ ଏପରି ଗୋଟିଏ ବକ୍ରରେଖା ଆଙ୍କିଦେଇଛନ୍ତି !

ବସନ୍ତ-ନୃତ୍ୟ ପରେ ପରେ 'ଉମାଚରିତ' ନୃତ୍ୟ କରିବାଲାଗି ସେ ପ୍ରସ୍ତୁତ ହେବାକୁ ଲାଗିଲା । ସେହି ନୃତ୍ୟରେ ଦକ୍ଷଯଜ୍ଞରେ ସତୀଙ୍କର ଆତ୍ମାହୁତିଠାରୁ ଆରମ୍ଭକରି,

କ୍ରୋଧରେ ପ୍ରମତ୍ତ ଶଙ୍କରଙ୍କୁ ଭୁଲାଇଦେବା ଲାଗି ସତୀଙ୍କର ଶବରୁଣୀ-ନୃତ୍ୟ ପର୍ଯ୍ୟନ୍ତ, ସମସ୍ତ ଦୃଶ୍ୟ ନୃତ୍ୟମାଧ୍ୟମରେ କୁଶଳତାର ସହିତ ଫୁଟାଇବା ଲାଗି ଦେବଯାନୀ ଖୁବ୍ ସତର୍କତାର ସହିତ ଚେଷ୍ଟାକରୁଥିଲା ।

ମୁଁ ଭିତରକୁ ଯାଇ ବସନ୍ତ-ନୃତ୍ୟ ଲାଗି ତାକୁ ଖୁବ୍ ପ୍ରଶଂସା କଲି । ମୋ ପ୍ରଶଂସା ଶୁଣି ସେ ଗୋଟିଏ ନିରୀହା ବାଳିକା ପରି ହସିଦେଲା । ଅବଶ୍ୟ ସେସମୟରେ ଦେବଯାନୀ ଥିଲା କଳାମୟ ଧାମରେ; କଳାକାରର ସାତ୍ତ୍ୱିକ ଭାବ ତା' ଶରୀରର ପ୍ରତ୍ୟେକ ଅବୟବରୁ ଫୁଟିଉଠୁଥିଲା ।

ମୁଁ ଧୀର ପଦକ୍ଷେପରେ ନୃତ୍ୟଶାଳାରୁ ବାହାରକୁ ବାହାରିଆସିଲି । ମାଧବକୁ ପ୍ରଥମରୁ ମୁଁ ପଠାଇଦେଇଥିଲି; ସେ ରଥ ନେଇ ଅଶୋକବନର ଦ୍ୱାରଦେଶରେ ଅପେକ୍ଷା କରି ରହିଥିଲା । ମୁଁ ଦେବଯାନୀର ସେହି ବୁଢ଼ୀ ଦାସୀଟାକୁ ଅନେକ କିଛି ପୁରସ୍କାର ଦେବା ପରେ ସେ ମୋତେ ସବୁ ରହସ୍ୟ ଖୋଲି କହିଦେଲା । ମୋର ଅନୁମାନ ସତ୍ୟ । ମୁଁ ଗମ୍ଭୀରିଘର ଭିତରକୁ ପଶିଯାଇ ଦେଖିଲି ସେଠାରେ କେବଳ ଶର୍ମିଷ୍ଠା ନାହିଁ, ତା'ର ପୁଅ ପୁରୁ ମଧ୍ୟ ରହିଛି । ଏହା ଦେଖି ଭୟରେ ମୋର ରୋମମୂଳ ଟାଙ୍କୁରିଉଠିଲା । ସେହି ଦାସୀଠାରୁ ଆହୁରି ମଧ୍ୟ ଜଣାଗଲା ଯେ, ଦେବଯାନୀ ନୃତ୍ୟଶାଳାକୁ ଯିବାପୂର୍ବରୁ ରାଜମହଲରେ ତୀକ୍ଷ୍ଣଦୃଷ୍ଟି ରଖିବା ଲାଗି ସମସ୍ତ ପ୍ରକାର କଠୋର ବ୍ୟବସ୍ଥା କରିଯାଇଛି ।

ମୁଁ ଗୁପ୍ତ-ଗୃହରେ ପହଞ୍ଚିବାମାତ୍ରେ ମୋର ଛାତି ଥରିଉଠିଲା । ଏ ସେହି ସ୍ଥାନ; ଯେଉଁଠାରେ ସେଦିନ ମାଆ ଅଳକାକୁ ଆବଦ୍ଧ କରି ହତ୍ୟାକରିଥିଲେ । ସେହି ସ୍ଥାନରେ ଆଜି ଦେବଯାନୀ ଶର୍ମିଷ୍ଠାକୁ ବନ୍ଦିନୀକରି ତାର ପ୍ରାଣ ନେବାକୁ ଚକ୍ରାନ୍ତ କରିଛି । ଅଳକା . . .! ଓଃ କେଡ଼େ ନିରୀହା ବାଳିକା ସେ . . . ମୋ'ରି ପାଇଁ ଅକାଳରେ ତାର ଜୀବନ-କଳିକା ବିଷଜ୍ୱାଳାରେ ଝରିପଡ଼ିଲା ।

ଚିନ୍ତା କରିବାର ସମୟ ନଥିଲା; ତେଣୁ ସେହି ମୃତ୍ୟୁର ଦ୍ୱାରଦେଶରୁ ଶର୍ମିଷ୍ଠାକୁ ଉଦ୍ଧାରକରି, ଅତି ଶୀଘ୍ର ସୁଡ଼ଙ୍ଗମାର୍ଗଦେଇ ମୁଁ ଅଶୋକବନରେ ପହଞ୍ଚିଲି । ସୁଡ଼ଙ୍ଗର ଶେଷ ପାହାଚ଼ରେ ଛିଡ଼ାହୋଇ ମୁଁ ଶର୍ମିଷ୍ଠାଠାରୁ ବିଦାୟ ନେବାକୁ ବସିଲି । ସେତେବେଳେ ମୋର ହୃଦୟ ବିଦୀର୍ଣ୍ଣ ହୋଇଗଲା । ମନେହେଲା, ମୁଁ ସମୟକୁ ହାତଯୋଡ଼ି ବିନତି କରି କହିବି— 'ହେ ସମୟ, ଏତେ କ୍ଷିପ୍ରଗତିରେ ତୁମେ ପଳାଅନାହିଁ । ଟିକିଏ ଧୀରେ ଧୀରେ ଗତି କର । ଏ ଅଭାଗିନୀଟାକୁ ଓ ତା'ର ଏଇ ନିରୀହ ପୁତ୍ରଟିକୁ ଟିକିଏ ଦୟାକର !'

କିନ୍ତୁ ସମୟ କାହାରି ଅନୁରୋଧକୁ ଅପେକ୍ଷା କରେନାହିଁ । ମୁଁ ବ୍ୟାକୁଳ ହୋଇ ଭାବିଲି— ଯାଉଛି ଶର୍ମିଷ୍ଠାକୁ ଥରେ ମୋର ବାହୁପାଶରେ ଭିଡ଼ିଧରି ନିବିଡ଼ ଆଲିଙ୍ଗନ କରିବି । ଏ ଆଲିଙ୍ଗନ କାଳକାଳକୁ ଆମେ ଦୁହେଁ ମନେରଖିପାରିବୁ । ଆଉ ମଧ୍ୟ ଏପରି ଗୋଟିଏ ଗାଢ଼ ଚୁମ୍ବନ ଦେବି ଯେ, ମୃତ୍ୟୁର କରାଳ ଛାୟା ଆଗରେ ମଧ୍ୟ ସେ ଚୁମ୍ବନର ସୁଖଦ ସ୍ପର୍ଶ ମନେପଡୁଥିବ ।

ଓଃ . . . ଏ ଅବୋଧ ଶିଶୁଟି ! ବିଚରା ପୂର୍ବଜନ୍ମରେ କି ପାପ କରିଥିଲା କେଜାଣି; ସମ୍ରାଟ୍‌ର ପୁତ୍ର ହୋଇ ସୁଦ୍ଧା ଅପରାଧୀର ପୁତ୍ର ପରି ତା'ର ଦଶା

ଦୟନୀୟ ହୋଇଉଠିଛି। କିନ୍ତୁ ହସ୍ତରେଖା ଦେଖି ଜ୍ୟୋତିଷୀ ପରା କହିଥିଲା ଯେ ଏ ପୁତ୍ର ଚକ୍ରବର୍ତ୍ତୀ ହେବ; କିନ୍ତୁ ଦୁଇପ୍ରହର ବିତିବା ପୂର୍ବରୁ ସେହି ପୁତ୍ର ଅସହାୟ ଭାବରେ ନଗର ଛାଡ଼ି ଚାଲିଯାଉଛି।

ମନରେ ଭାବନା ଜାତହେଉଥିଲା; ପୁରୁକୁ କୋଳକୁ ଘେନିଆସି ତାକୁ ସ୍ନେହରେ ଥରେ ହେଲେ ଆଦର କରିନିଏ; କିନ୍ତୁ ସମୟ କାହିଁ? ଥରେ ମାତ୍ର ତାକୁ କୋଳରେ ଧରିଥିଲେ ଆଉ ତ୍ୟାଗ କରିବା କ'ଣ ସମ୍ଭବ ହୁଅନ୍ତା? ଛାତି ପଥର କରି ମୁଁ ଶର୍ମିଷ୍ଠାଠାରୁ ବିଦାୟନେଲି। ମୁହଁରେ ପ୍ରକାଶ କରିନପାରିଲେ ମଧ୍ୟ ଅନ୍ତରର ସ୍ନେହ କେବଳ ଅଧରର ସ୍ଫୁରଣରେ ଓ ଚକ୍ଷୁର ଅଶ୍ରୁଧାରରେ ବ୍ୟକ୍ତକରି ମୁଁ ସେଠାରୁ ବିଦାୟନେଲି।

ନୃତ୍ୟଶାଳାକୁ ଫେରିବାବେଳେ ମୁଁ ଗୋଟିଏ ରତ୍ନମାଳା ସଙ୍ଗରେ ନେଇଗଲି। ମୁଁ ନୃତ୍ୟଶାଳାରେ ପ୍ରବେଶ କରିବାବେଳେ, ଦେବଯାନୀ ଶବରୁଣୀ ନୃତ୍ୟ କରୁଥିଲା। ସେ ନୃତ୍ୟ ଦେଖି ଦର୍ଶକମଣ୍ଡଳୀ ମୁଗ୍ଧ ହୋଇଯାଇଥିଲେ। ଶବରୁଣୀ ନୃତ୍ୟଛନ୍ଦରେ କଟାକ୍ଷପାତ କରି ପ୍ରତ୍ୟେକ କ୍ଷଣରେ ଶିବଙ୍କୁ ଆହତ କରିଦେଉଥିଲା। ମାଦକଭରା ଅଙ୍ଗବିକ୍ଷେପରେ ଶଙ୍କରଙ୍କୁ ଉନ୍ମାଦିତ କରୁଥିଲା। ତା'ର ସାମାନ୍ୟ ଭାବଭଙ୍ଗିମା ମଧ୍ୟ ଅତ୍ୟନ୍ତ ଆକର୍ଷକ ବୋଧହେଉଥିଲା। ପ୍ରିୟତମଙ୍କ ସହିତ ତା'ର ମୁଗ୍ଧ ପ୍ରଣୟ-କ୍ରୀଡ଼ା, ଅଭିନୟ ମାଧ୍ୟମରେ ଖୁବ୍ ଉତ୍ତେଜକ ହୋଇଥିଲା। ଜଣେ କଳାକାର ରୂପେ ସେ ଯେଉଁ ଅଭିନୟ ପ୍ରଦର୍ଶନ କରୁଥିଲା, ତାହା ବାସ୍ତବିକ ମନୋମୁଗ୍ଧକର ହୋଇପାରିଥିଲା। କିନ୍ତୁ ମୋ ସହିତ ଆନ୍ତରିକତାର ସହ ଦିନେହେଲେ ସେ ଏପରି ପ୍ରଣୟକ୍ରୀଡ଼ା ସମ୍ପାଦନ କରିନାହିଁ କାହିଁକି? ଏପରି ବୈଚିତ୍ର୍ୟର କାରଣ କ'ଣ ହୋଇପାରେ? ଦେବଯାନୀକୁ ବିଶ୍ରାମ ଦେବାଲାଗି ଅନ୍ୟ କେତେକ ନୃତ୍ୟର ବ୍ୟବସ୍ଥା କରାଯାଇଥିଲା। ପରିଶେଷରେ ତା'ର ବର୍ଷା-ନୃତ୍ୟ ଆରମ୍ଭହେଲା। ବସନ୍ତ ନୃତ୍ୟରେ ତାର ଅଭିନୟ ଥିଲା ପ୍ରଣୟପୂର୍ଣ୍ଣ ଅଭିବ୍ୟକ୍ତି। ସେଥିରେ ସେ ପୂର୍ଣ୍ଣ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲା। ତେଣୁ ମୋ ମନରେ ବାରମ୍ବାର ଗୋଟିଏ ପ୍ରଶ୍ନ ଉଙ୍କିମାରିଲା; ଦେବଯାନୀର ଏ ସମସ୍ତ ଉନ୍ମାଦନା ଏକାନ୍ତ ମିଳନବେଳେ କୁଆଡ଼େ ଉଭେଇଯାଏ? ମୋର ବାହୁବନ୍ଧନରେ ଥିବାବେଳେ, କାହିଁ ଦେବଯାନୀର ଏ ଉନ୍ମାଦନା କଣିକାଏ ହେଲେ ତ ପରିସ୍ଫୁଟ ହୁଏ ନାହିଁ? ଏ ସ୍ୱଚ୍ଛନ୍ଦ କଳକଳନାଦିନୀ ନିର୍ଝରଣୀ ଏକାବେଳକେ ଜମାଟ ବାନ୍ଧିଯାଏ କାହିଁକି? ଏ ହାବଭାବ ତଥା ପ୍ରଣୟର ଅଭିବ୍ୟକ୍ତି ଜଡ଼ ପାଲଟିଯାଏ କିପରି? କାହିଁକି ଏହା ଘଟୁଛି?

ତା'ର ନୃତ୍ୟରେ ଉପସ୍ଥିତ ଦର୍ଶକ ତନ୍ମୟ ହୋଇଯାଇଥିଲେ; କିନ୍ତୁ ମୁଁ ସେ ରଙ୍ଗରେ ନିଜକୁ ରଞ୍ଜିତ କରିପାରିନଥିଲି। ମୋର ସତୃଷ୍ଣ ଚାହାଣି ଲାଖିରହିଥାଏ ମାଧବର ଆଗମନ ପଥରେ। ସେ ଏପର୍ଯ୍ୟନ୍ତ ଆସିଲା ନାହିଁ କାହିଁକି? କିଏ କ'ଣ ତା'ର ରଥକୁ ଅଟକାଇନେଲାକି? ନା...' ଯା' ସମ୍ଭବ ନୁହେଁ। ତା' ନିକଟରେ ରାଜମୁଦ୍ରା ରହିଛି...। ତା'ହେଲେ ତା'ର ଫେରିବାରେ ଏତେ ବିଳମ୍ବ ଘଟୁଛି କାହିଁକି? ବୋଧହୁଏ... ଫେରିବାବେଳେ ଶର୍ମିଷ୍ଠା କାନ୍ଦିପକାଇଥିବ; ତେଣୁ ମାଧବର ଭାବୁକ ହୃଦୟ ନିଶ୍ଚୟ ତରଳିଯାଇଥିବ। ତାକୁ ସାନ୍ତ୍ୱନା ଦେବାଲାଗି ହୁଏତ କିଛି ସମୟ ସେ ସେହିଠାରେ ବିଳମ୍ବ କରିଥିବ କିମ୍ବା ସେ ତାକୁ ପୁଣି ରାଜଧାନୀକୁ ଫେରାଇଆଣିପାରେ;

ଯା' ମଧ୍ୟ ଅସମ୍ଭବ ନୁହେଁ। ଯଦି ପ୍ରକୃତରେ ଯା' ହୋଇଥିବ, ତେବେ ଚଣ୍ଡୀ ଦେବଯାନୀର କବଳରୁ ତାକୁ ଉଦ୍ଧାର କରିବାର ମୋର ସମସ୍ତ ଚେଷ୍ଟା ପଣ୍ଡହୋଇଯିବ।

ମୁଁ ଏହି ଚିନ୍ତାରେ ମଗ୍ନ ଥିବାବେଳେ ଜଣେ ସେବକ ଧୀରେ ଆସି ମୋତେ ରାଜମୁଦ୍ରା ଫେରାଇଦେଲା। ମୁଁ ବେଶ୍ ଧାରଣା କରିପାରିଲି ଯେ, ନଗରଠାରୁ ବହୁ ଦୂରରେ ଥିବା ସେହି ଜୀର୍ଣ୍ଣ ଦେବାଳୟ ନିକଟରେ ଶର୍ମିଷ୍ଠାକୁ ଛାଡ଼ିଦେଇ ମାଧବ ଫେରିଆସିଛି। ମୋ ମନରେ ଉଠୁଥିବା ନାନାପ୍ରକାର ଆଶଙ୍କା ଶାନ୍ତହେଲା।

ଦେବଯାନୀର ବର୍ଷା-ନୃତ୍ୟ ଶେଷହେବାପରେ ଦର୍ଶକମାନଙ୍କ କରତାଳିଧ୍ୱନିରେ ନୃତ୍ୟଶାଳା ମୁଖରିତ ହୋଇଉଠିଲା ଏବଂ ଦେବଯାନୀ ଆତ୍ମ-ଅଭିମାନରେ ଫୁଲିଉଠି ସମସ୍ତଙ୍କୁ ଅଭିବାଦନ ଜଣାଇଲା। ସେତିକିବେଳେ ମୁଁ ଗୋଟିଏ ରତ୍ନମାଳା ଦେବଯାନୀର ଗଳାରେ ଲମ୍ବାଇଦେଇ କହିଲି, "ଏହି ତୁଚ୍ଛ ଉପହାର କଳା-କୁଶଳିନୀ ପତ୍ନୀ ପ୍ରତି ପତିର ଉପହାର ନୁହେଁ; ଏହା ଜଣେ ମୁଗ୍ଧ ଦର୍ଶକର, ଜଣେ ରସିକ ସାମାଜିକର ଅସାଧାରଣ ଶିଳ୍ପୀ ଓ କଳାକାର ପ୍ରତି ପ୍ରୀତ୍ୟୁପହାର।"

ସମୁଦାୟ ନୃତ୍ୟଶାଳା ହାସ୍ୟର କଳନାଦ ଓ ପ୍ରଶଂସାସୂଚକ କରତାଳିଧ୍ୱନିରେ ଅନେକ ସମୟ ପର୍ଯ୍ୟନ୍ତ ଉଦ୍‌ବେଳିତ ହେବାକୁ ଲାଗିଲା।

× × × ×

ପରଦିନ ଅନେକ ସମୟ ପର୍ଯ୍ୟନ୍ତ ଦେବଯାନୀ ଶେଯରେ ପଡ଼ିରହିଲା। ବହୁଦିନ ପରେ ସେ କଠିନ ନୃତ୍ୟ ପ୍ରଦର୍ଶନ କରିଥିବାରୁ ଖୁବ୍ କ୍ଲାନ୍ତହୋଇପଡ଼ିଥିଲା। ତା'ର ଶରୀର ନିତାନ୍ତ ଅବଶ ହୋଇଯାଇଥିଲା। ସମୁଦାୟ ପ୍ରସାଧନ ସାମଗ୍ରୀରେ ସଜ୍ଜିତା ହୋଇ ସେ ମୋ ମହଲକୁ ଆସି ବାତାୟନ ପଥରେ ବାହାରକୁ ଚାହିଁ କହିଲା– "ଆଃ... କେଡ଼େ ସୁନ୍ଦର ପ୍ରଭାତ, ଉଠି ଦେଖିଲେ...!" ମୁଁ ଝରକା ପାଖକୁ ଚାଲିଯାଆନ୍ତେ, ସେ ହସି ହସି କହିଲା, "କାଲି ରାତିରେ ମହାରାଜ ଯେଉଁ ରତ୍ନମାଳାଟି ମୋ ଗଳାରେ ଲମ୍ବାଇଦେଲେ, ସେଥିରେ ମୁଁ ଏତେ ଆନନ୍ଦିତ ହୋଇଛି ଯେ, ତାହା ଭାଷାରେ ବ୍ୟକ୍ତ କରିପାରିବିନାହିଁ। କିନ୍ତୁ... ସତ କଥା କହିବି...? ମୁଁ ସେଥିରେ ଖୁବ୍ ବେଶି ମୁଗ୍ଧ ନୁହେଁ।"

"ଗୋଟିଏ ସାମାନ୍ୟ ରତ୍ନମାଳା ପାଇ କୁବେର-ସମ୍ପତ୍ତିର ଅଧିକାରିଣୀ ହସ୍ତିନାପୁରର ମହାରାଣୀ କିପରି ସନ୍ତୁଷ୍ଟ ହେବ...?"

"ନା... ନା... ସେପରି କିଛି ନୁହେଁ।" ତା'ପରେ ସେ ଉଦ୍ୟାନରେ ଫୁଟିଥିବା ଫୁଲଗୁଡ଼ିକ ଆଡ଼କୁ ଏକଲୟରେ ଚାହିଁ କହିଲା, "ସ୍ତ୍ରୀର ମନ ପୁରୁଷ ବୁଝିପାରେ ନାହିଁ।"

"ତା'ହେଲେ ବତାଇ ଦେଉନ କାହିଁକି?"

ସେ ଅତ୍ୟନ୍ତ ଆକର୍ଷଣୀୟ ହାସ୍ୟଛଟା ଖେଳାଇ କହିଲା– "ତା'ହେଲେ ମୁଁ କ'ଣ ମୁହଁ ଖୋଲି କହିଦେବି!"

"ହଁ... କୁହ!"

"ଦେଖୁଛନ୍ତି. ଏ ବଗିଚାରେ କେତେ ସୁନ୍ଦର ସୁନ୍ଦର ଫୁଲ ଫୁଟିଛି। ମହାରାଜ

ନିଜ ଇଚ୍ଛାନୁସାରେ ସେଥିରୁ କେତେକ ଫୁଲ ତୋଳିଆଣନ୍ତେ। ବହୁତ ଫୁଲ, ଯେତେ ଇଚ୍ଛା ସେତେ। ମୁଁ ସେହି ଫୁଲରେ ମାଳା ତିଆରି କରିଦିଅନ୍ତି; ମହାରାଜ ଗୋଟିଏ ମାଳା ନିଜ ହାତରେ ମୋ ବେଣୀରେ ପିନ୍ଧାଇଦିଅନ୍ତେ; ଆଉ ମୁଁ ଗୋଟିଏ ହାର ମହାରାଜଙ୍କ ଗଳାରେ ଲମ୍ବାଇ ଦିଅନ୍ତି। ଏ ପ୍ରକାର ଆଗ୍ରହ ଅବଶ୍ୟ ପିଲାଳିଆ ଜିଦ୍... କିନ୍ତୁ...।''

ମୁଁ ବେଶ୍ ଜାଣିପାରିଲି; ସେ କାହିଁକି ମୋତେ ବାହାରକୁ ପଠାଇଦେଉଛି। ତେଣୁ ମୁଁ ମନେ ମନେ ହସି ଉଦ୍ୟାନକୁ ଚାଲିଗଲି। ଅନେକ ସମୟ ବିତିଯାଇଥିଲେହେଁ ଦେବଯାନୀ ଉଦ୍ୟାନକୁ ଆସିଲାନାହିଁ। ମୁଁ ଅନେକ ବିଳମ୍ବରେ ବଗିଚାରୁ ଫେରିଆସିଲି, କିନ୍ତୁ ଦେବଯାନୀ ସେଠାରେ ନଥିଲା। ସେ ନିଜର ବୁଢ଼ୀ ଦାସୀଟାକୁ ନେଇ ନିଜ କକ୍ଷରେ କବାଟ ଦେଇ ବସିଥିଲା। ଅନ୍ୟ ଦାସୀମାନେ ନିଜନିଜର କାମରେ ଲାଗିଥିଲେ ସୁଦ୍ଧା ସମସ୍ତଙ୍କ ଆଖି ଲାଖିରହିଥିଲା ସେହି ରୁଦ୍ଧଦ୍ୱାର ଆଡ଼କୁ। ତୀବ୍ର ବୃଷ୍ଟିଧାରାରେ ଆହତ ପକ୍ଷୀ ଯେପରି ଆଶ୍ରୟ ଖୋଜିବାଲାଗି କରୁଣଦୃଷ୍ଟିରେ ଏଣେତେଣେ ଚାହୁଁଥାଏ, ସେହିପରି ଛନ୍‌ଛନ୍ ଚାହାଣିରେ ଏକକୁ ଆରେକ ଚାହିଁ ନିଜ ମନର ଭୟ ଜଣାଇଦେଉଥିଲେ।

ବେଳ ତିନିପହର ବିତିଗଲା; ତା'ପରେ ମୋ ମହଲକୁ ଆସିଲା ଦେବଯାନୀ। ତା'ର ଚେହେରା ଖୁବ୍ ଗମ୍ଭୀର ହୋଇଉଠିଥିଲା। ସେ କଠୋର ସ୍ୱରରେ ମୋତେ ପ୍ରଶ୍ନ କଲା– ''କାଲି ରାତିରେ ନୃତ୍ୟ ଚାଲିଥିବାବେଳେ ମହାରାଜ କ'ଣ ମହଲକୁ ଆସିଥିଲେ କି ?''

–''ହଁ...''

–''କାହିଁକି ?''

–''ତୁମର ବସନ୍ତ-ନୃତ୍ୟ ଦେଖିବା ପରେ ଗୋଟିଏ ରତ୍ନମାଳା ଉପହାର ଦେବାଲାଗି ମୋ ମନରେ ଧାରଣା ହେଲା।''

ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲା ଦେବଯାନୀ– ''ମହାରାଜ ଜାଣିଛନ୍ତି କି ଶର୍ମିଷ୍ଠା କୁଆଡ଼େ ଚାଲିଯାଇଛି !''

–''ଶର୍ମିଷ୍ଠା ପଳାଇଯାଇଛି ? କିପରି...।''

–''ଅଶୋକବନରୁ ସେ କୁଆଡ଼େ ଚାଲିଯାଇଛି।''

–''ଗଲା କୁଆଡ଼େ ?''

–''ଯେ ପଳାଇଯାଏ ସେ କ'ଣ କହିକରି ଯାଏ ଯେ ସେ କୁଆଡ଼େ ଯାଉଛି ?''

ଦେବଯାନୀ ଯେଉଁ ଚକ୍ରାନ୍ତ କରିଥିଲା ସେହି ଚକ୍ରାନ୍ତରେ ସେ ନିଜେ ପଡ଼ିଗଲା। ନା... ମୁଁ ତାକୁ ସେହି ଜାଲରେ ପକାଇଥିଲି। ବିଜୟର ଉନ୍ମାଦନା ମଦିରାର ଉନ୍ମାଦନା ଅପେକ୍ଷା ଅଧିକ ଫଳପ୍ରଦ। ସନ୍ଧ୍ୟା ପର୍ଯ୍ୟନ୍ତ ମୁଁ ସେହି ନିଶାରେ ଘାରିହୋଇ ରହିଲି, କୁଆଡ଼େ ଗଲିନାହିଁ; ଏପରିକି ମାଧବଙ୍କ ଘରକୁ ମଧ୍ୟ ଗଲିନାହିଁ। କିନ୍ତୁ ଦେବଯାନୀକୁ ପରାଜିତ କରିବାର ଆନନ୍ଦ ମୋ ମନରେ ବେଶି ସମୟ ପର୍ଯ୍ୟନ୍ତ ସ୍ଥାୟୀ ହେଲାନାହିଁ। ଦିନ ବିତିଗଲା, ରାତି ଆସି ହେଲା; କିନ୍ତୁ ସେଦିନର ରାତ୍ରି ପୂର୍ବଦିନ ପରି ସେପରି ଭୟଙ୍କର ନଥିଲା। ଦେବଯାନୀ ନିଜର ଚଣ୍ଡୀ ଭୂମିକା ସଂପୂର୍ଣ୍ଣରୂପେ ବଦଳାଇଦେଇଥିଲା। ଏକ ମୁଗ୍ଧା ପ୍ରଣୟିନୀ ପରି ସେ ଲଜ୍ଜାଶୀଳା, ମନ୍ଦଗାମିନୀ ସାଜି ଧୀରେ ଧୀରେ

ରଙ୍ଗମହଲରେ ପ୍ରବେଶକଲା । ସତେ ଅବା ରଜନୀରାଣୀ ରାତ୍ରିର ଉଜ୍ଜ୍ୱଳତା ଲାଗି ହାତରେ ରତ୍ନଦୀପ ଧରି ଧୀରେ ଧୀରେ ମୋ କେଳିମନ୍ଦିରରେ ପ୍ରବେଶକରୁଛନ୍ତି ।

ରାତ୍ରିର ପ୍ରତ୍ୟେକ ତାରକା ମୋ ମନରେ ଶର୍ମିଷ୍ଠାର ସ୍ମୃତି ଜାଗ୍ରତ କରାଇ ନଭୋମଣ୍ଡଳରେ ଉଦିତହେଲେ । ଚାହୁଁ ଚାହୁଁ ମୋ ମନରେ ତାର ମଧୁର ସ୍ମୃତି, ଉନ୍ମାଦଭରା ମୁହୂର୍ତ୍ତ ସଜୀବ ହୋଇଉଠିଲା । ସେଥିମଧ୍ୟରୁ କେତୋଟି ସ୍ମୃତି ଥିଲା ଅତ୍ୟନ୍ତ ଆହ୍ଲାଦକ, ଅନ୍ୟ କେତୋଟି ନିତାନ୍ତ ଦୁଃଖଦାୟୀ । କିଛି ସମୟ ପରେ କେତୋଟି ସ୍ମୃତି କଣ୍ଟକ ପରି ମୋତେ ଆଘାତ ଦେବାକୁ ଲାଗିଲେ । ରାତି ଅଧ ବିତିଯାଇଥିଲେହେଁ ସୁକୋମଳ ଶେଯରେ ମୁଁ କେବଳ କଡ଼ଲେଉଟାଇବାରେ ଲାଗିଲି । ମହୁଫେଣାରେ ନିଆଁହୁଳା ଗେଞ୍ଜିଥିବା ଲୋକକୁ ଯେପରି ମହୁମାଛିମାନେ ଆକ୍ରମଣକରି କାମୁଡ଼ି ତାକୁ କ୍ଷତବିକ୍ଷତ କରିଦିଅନ୍ତି, ସେହିପରି ଶର୍ମିଷ୍ଠାର ସ୍ମୃତି ମୋର ଅବଚେତନ ମନକୁ ଉଦ୍ଭ୍ରାନ୍ତ କରିପକାଇଲା ।

କାଲି ଶର୍ମିଷ୍ଠାକୁ ମୁକ୍ତ କରିବା ସମୟରେ ମୋ ମନରେ ଧାରଣା ହୋଇଥିଲା ଯେ, ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଦେଇପାରିଛି । ସେ ଭ୍ରମଧାରଣା ମୋ ମନରୁ ଦୂରହୋଇଗଲା । କାଲିର ରାତ୍ରି ବାରମ୍ବାର ମୋତେ ଦଂଶନ କରି ପଚାରୁଥିଲା; 'ବର୍ତ୍ତମାନ ଶର୍ମିଷ୍ଠା କେଉଁଠି ଅଛି ? ତୁମେ ସୁକୋମଳ ଶେଯରେ ଶୋଇ ଏପାଖ ସେପାଖ ହେଉଛ, ଅଥଚ ଯେଉଁ କୋମଳାଙ୍ଗୀକୁ ବାହୁବନ୍ଧନରେ ବନ୍ଦିନୀ କରି ତୁମେ ଦିନେ ପରମ ସୁଖ ଲାଭ କରିଛ, ସେ ଆଜି କିପରି ଅଛି ? ହେ ନିର୍ଦ୍ଦୟ, ଥରେ ଚିନ୍ତା କରି ଦେଖ, ଦେଖିନିଅ ଥରେ ମାନସଚକ୍ଷୁ ଖୋଲି । ସେ ଅଭାଗିନୀ କେଉଁ ଗଛମୂଳେ, କାହା ଓଳିତଳେ କିମ୍ବା ନିର୍ଜନ ଜଙ୍ଗଲର ପଥରଗଦା ଛାଇରେ କାନିପାତି ଶୋଇଥିବ । ତୁମରି ହୃଦୟ ପରି ଖଣ୍ଡେ ପଥରକୁ ମୁଣ୍ଡତଳେ ତକିଆ କରି ବିଶ୍ରାମ ନେବାକୁ ଚେଷ୍ଟାକରୁଥିବ ସେ ହତଭାଗିନୀ ପ୍ରଣୟିନୀ । ଆଖିରୁ ତା'ର ଝରିପଡୁଥିବ ଅଶ୍ରୁର ଶ୍ରାବଣ । ସେ ମନେ ମନେ ଭାବୁଥିବ; 'ତୁମେ ମୋର, ତୁମେ ମୋର' ବୋଲି କହି ଯେ ମୋତେ ଆଲିଙ୍ଗନପାଶରେ ଭିଡ଼ିଧରୁଥିଲେ, ଆଜି ସେ କେଡ଼େ ନିର୍ଦ୍ଦୟ ହୋଇଯାଇଛନ୍ତି । ଏ ଘୋର ଝଡ଼ବର୍ଷା ରାତିରେ ମୋତେ ଅନାଥିନୀ ପରି ଦୂରେଇଦେଇ ନିଶ୍ଚିନ୍ତ ହୋଇଛନ୍ତି । ତୋର ଦୁଃଖ-ଦୁର୍ଦ୍ଦଶା ଚିନ୍ତାକରି ତାଙ୍କର ହୃଦୟ ଯେତେବେଳେ ତରଳିଲା ନାହିଁ, କାନ୍ଦିକାନ୍ଦି ଏ ପଥରଟାକୁ ଭସାଇଦେଲେ ସେ କ'ଣ ତରଳିବ ? ମୋର ହୃଦୟଭରା ଅଗଣିତ ଚୁମ୍ବନରେ ଯାହାର ଓଠର ପିପାସା ଶାନ୍ତହୁଏନାହିଁ, ଆଜି ଝଞ୍ଜାପବନରେ ସେହି ଓଠ ଶୁଖି କଳାପାଠ ପାଲଟିଯାଇଥିବ । ଆରେ ନିର୍ମମ, ଥରେ ଆଖି ଖୋଲି ଦେଖିନେ, ସେ ବିଚାରୀ ପୁରୁକୁ ରକ୍ଷାକରିବାଲାଗି ନିଜର ସମସ୍ତ ଶକ୍ତି ଖଟାଇ ଛଟପଟ ହେଉଛି, ଆଉ ତୁ ଏଇ କୋମଳ ଶେଯରେ ଶୋଇରହିଛୁ ? ଏହାହିଁ କ'ଣ ତୋର ପୁରୁ ପ୍ରତି ବାତ୍ସଲ୍ୟ-ମମତା ? ତୋ' ସ୍ଥାନରେ ଯଦି କଚ ଥାଆନ୍ତା, ତା'ହେଲେ ସେ ଝଡ଼ବର୍ଷା ରାତିରେ ନିଜେ ରଥ ଚଳାଇ ଶର୍ମିଷ୍ଠା ସହିତ ହିମାଳୟ ଅଭିମୁଖେ ହସି ହସି ପ୍ରସ୍ଥାନ କରିଥାଆନ୍ତା ।'

ମୋ ସ୍ଥାନରେ କଚ ଥିଲେ...! କି ବିଚିତ୍ର କଳ୍ପନା ! କଚ ଓ ଯଯାତି...! କି ଅକଳ୍ପନୀୟ କଳ୍ପନା । ଏହି କଳ୍ପନା ଫଳରେ ମୋ ମନରେ କଚ ସମ୍ବନ୍ଧୀୟ

ଅନେକ ସ୍ମୃତି ଜାଗ୍ରତ ହୋଇଉଠିଲା। ମହର୍ଷି ଅଙ୍ଗୀରସଙ୍କ ଆଶ୍ରମରେ ତା' ସହିତ ମୋର ପ୍ରଥମ ସାକ୍ଷାତ୍। ମୁଁ ଗୋଟିଏ ସୁନ୍ଦର ରଙ୍ଗିନ ପକ୍ଷୀକୁ ଲକ୍ଷ୍ୟ କରି ବାଣ ବିନ୍ଧିବାକୁ ଯାଉଥିଲି, କଚ୍ ମୋତେ ବାରଣକଲା। ଉତ୍ତରରେ ମୁଁ ଟିକିଏ ବିରକ୍ତିମିଶା ସ୍ୱରରେ କହିଥିଲି– 'ସେ ପକ୍ଷୀର ରଙ୍ଗ ମୋ ମନକୁ ପ୍ରଲୁବ୍ଧ କରିଛି।' ସେ ସଙ୍ଗେସଙ୍ଗେ ଉତ୍ତର ଦେଇଥିଲା, 'ବଡ଼ ରସିକ ତୁମେ ଦେଖୁଛି; କିନ୍ତୁ ତୁମେ ଭୁଲିଯାଉଛ, ଯେଉଁ ଅଦେଖା ହାତ ତୁମ ମନରେ ରସିକତା ଭରିଦେଇଛନ୍ତି, ସେ ହିଁ ପକ୍ଷୀଟିକୁ ଜୀବନଦାନ ଦେଇଛନ୍ତି।'

ମୋ ପ୍ରାଣର ସନ୍ତାନ ପୁରୁ; ସେ ଠିକ୍ ଗୋଟିଏ ନିରୀହ ପକ୍ଷୀପରି କୋମଳ, ଅସହାୟ। କିନ୍ତୁ କାଲି ରାତିରେ ମୁଁ ତାକୁ...।

ଆଶ୍ରମର ସେ ଛୋଟ ବାଳିକାଟି; କଚ୍‌କୁ ସେ ଖୁବ୍ ଆଦରକରୁଥିଲା। ଗୋଟିଏ ଦରଫୁଟା ଫୁଲ ତୋଳି କଚ୍‌କୁ ଦେବାଲାଗି ସେ ଚାହୁଁଥିଲା। କିନ୍ତୁ କଚ୍ ଫୁଲଟିକୁ ତୋଳିବାଲାଗି ବାରଣ କଲା। ବାଳିକାଟିର ଟିକି ଟିକି ହାତକୁ ଧରି କହିଲା କଚ୍, "ମାଆରେ, ତୋ'ର ଏ ଫୁଲଟି ମୁଁ ପାଇଗଲି। ସେ ଲତାରେ ଖେଳୁ, ତାକୁ ଛିଣ୍ଡାଇବା ଦରକାର ନାହିଁ। ମୁଁ ପ୍ରତିଦିନ ଆସି ତା' ସହିତ କେତେ କଥାବାର୍ତ୍ତା କରିବି। ଏଥର ତୋ' କଥା ରହିଲା ତ?" ମୋ ଶମା ଠିକ୍ ସେହିପରି ଗୋଟିଏ ଅର୍ଦ୍ଧପ୍ରସ୍ଫୁଟିତା ସୁଗନ୍ଧଭରା ସୁନ୍ଦର କଳିକା ନୁହେଁ କି? କିନ୍ତୁ ବିଚ୍ଛାରୀକୁ ମୁଁ କାଲି ରାତିରେ...।

ମୁଁ ଅତ୍ୟନ୍ତ ବ୍ୟସ୍ତ ହୋଇଉଠିଲି। ବୋଧହୁଏ ମଦ୍ୟପାନ କଲେ ଭଲଲାଗିପାରେ ବୋଲି ଭାବି ଟିକିଏ ମଦ୍ୟ ପାନକଲି। ତା' ଫଳରେ ଟିକିଏ ଭଲଲାଗିଲା, ମନ ଆଶ୍ୱସ୍ତ ହେଲା, ତା'ପରେ ମୁଁ ଶୋଇପଡ଼ିଲି। ହଠାତ୍ ଗୋଟିଏ ବିଲକ୍ଷଣ ସ୍ୱପ୍ନ ଦେଖିଲି। ଅନ୍ଧାରରେ ସାପ କାମୁଡ଼ିବା ଭୟରେ ଚିତ୍କାର କରି ଉଠିପଡ଼ିବା ଭଳି ମୁଁ ପଲଙ୍କରେ ଉଠି ବସିପଡ଼ିଲି। ନ ଶୋଇଥିଲେ ହୁଏତ ଭଲହୋଇଥାନ୍ତା। ମୁଁ ଯେଉଁ ସ୍ୱପ୍ନ ଦେଖିଲି, ସେଥିରେ କହିବା ଭଳି ବିଶେଷ କିଛି ନଥିଲା। କେବଳ ଶୁଣିଲି ଦୁଇଟି କଣ୍ଠସ୍ୱର– ସେଥିରୁ ଗୋଟିଏ ଥିଲା ମୋ'ରି ସ୍ୱର, ତା' ମୁଁ ବେଶ୍ ବାରିପାରିଲି। କିନ୍ତୁ ଅନ୍ୟ ସ୍ୱର କାହାର? ମୁଁ ବହୁତ ଚିନ୍ତା କଲି, ସେ ସ୍ୱର କାହାର; ଆଦୌ ବାରିପାରିଲିନାହିଁ। ପ୍ରଥମେ ଭାବିଲି– ଏ ସ୍ୱର କ'ଣ କଚ୍‌ର? ହୁଏତ ଯତିର କଣ୍ଠସ୍ୱର ହୋଇପାରେ। ନା... ତା'ର ନୁହେଁ। ସେ ମଧ୍ୟ ମୋ'ରି ସ୍ୱର; କିନ୍ତୁ ତା' ମୋର ସ୍ୱାଭାବିକ ସ୍ୱର ନୁହେଁ, ନିତାନ୍ତ ଅସ୍ୱାଭାବିକ ତଥା କଠୋର।

ସ୍ୱପ୍ନରେ ଦୁଇଜଣ ପରସ୍ପର କଥାବାର୍ତ୍ତା ହେଉଥିଲେ। ଦ୍ୱିତୀୟ ଯଯାତି ପ୍ରଶ୍ନ କଲା– "ତୁମେ କ'ଣ ଶର୍ମିଷ୍ଠାକୁ ଭଲପାଉଥିଲ? ସତ କୁହ, ପ୍ରକୃତରେ କ'ଣ ପ୍ରେମକରୁଥିଲ?"

"ଏଥିରେ ସନ୍ଦେହର ଅବକାଶ କେଉଁଠି? ମୁଁ ତାକୁ ପ୍ରେମକରୁନଥିଲେ କାଲି ରାତିରେ ଗୁପ୍ତଗୃହରୁ ତାକୁ ଉଦ୍ଧାର କରିବାର ସାହସ କରିଥାନ୍ତି କିପରି?"

"ନା.. ଏହା ଯେକୌଣସି ଦୟାଳୁ ବ୍ୟକ୍ତି ପକ୍ଷରେ ସମ୍ଭବ। କିନ୍ତୁ ତୁମେ ଯଦି ପ୍ରକୃତରେ ତାକୁ ପ୍ରାଣଦେଇ ଭଲପାଉଥାଆନ୍ତ, ତାହେଲେ କାଲି ରାତିରେ ତା' ସହିତ ବନବାସ କରିବାକୁ କେବେହେଲେ ପଶ୍ଚାତ୍‌ପଦ ହୋଇନଥାନ୍ତ। ତୁମରି ଆନନ୍ଦଲାଗି

ସେ ବିଚାରୀ କ'ଣ ନ କରିଛି? କୁହ, ଜବାବ ଦିଅ! ତୁମରି ଶ୍ରୀଚରଣତଳେ ସେ ନିଜର ସର୍ବସ୍ୱ ଅର୍ପଣକରି ତୁମ-ପାଦଧୂଳିକୁ ଫୁଲଚନ୍ଦନ ପରି ମଥାରେ ବୋଳିଛି। ଆଉ ତୁମେ କ'ଣ କରିଛ ତା' ପାଇଁ? ତୁମେ ଯଦି ରାଜସିଂହାସନ ତ୍ୟାଗକରି ତା' ପାଇଁ ବନବାସୀ ହୋଇଥାଆନ୍ତ, ତା'ହେଲେ ହୁଏତ ତୁମେ ତୁମର କର୍ତ୍ତବ୍ୟ ସମ୍ପାଦନ କରିଛ ବୋଲି ଲୋକେ ଅନୁଭବ କରିଥା'ନ୍ତେ। ଘଡ଼ିଏ ଦି'ଘଡ଼ି ଶାରୀରିକ ଉନ୍ମାଦନାର ଅପର ନାମ ପ୍ରେମ ନୁହେଁ। ଯେ ନିଜର ପ୍ରିୟବ୍ୟକ୍ତି ଲାଗି ହସି ହସି ପ୍ରାଣବଳି ଦେଇପାରେ, ସେହି କେବଳ ପ୍ରେମିକ। ଉଠ, ଏବେ ବି ସମୟ ଅଛି; ତୁମେ ରାଜପ୍ରାସାଦ ତ୍ୟାଗକରି ତାର ଅନୁସନ୍ଧାନରେ ବାହାରିପଡ଼। ସେ ଯେଉଁଠି ଥାଉନା କାହିଁକି ତାକୁ ଖୋଜି ଫେରାଇଆଣ। ତାକୁ ଆଣି ଦେବଯାନୀ ସମ୍ମୁଖରେ ଛିଡ଼ାକରାଇ କୁହ— ମନୁଷ୍ୟର ଅନ୍ତରାତ୍ମା ଯେଉଁ ପ୍ରେମ ପାଇବାପାଇଁ ବ୍ୟାକୁଳ, ସେ ପ୍ରକାର ପ୍ରେମର ମଧୁ ମୋତେ ଚଖାଇପାରିଛି ଶର୍ମିଷ୍ଠା; ତେଣୁ ସେ ମୋର ପ୍ରିୟତମା, ଏ ରାଜମହଲରେ ରହିବାର ଅଧିକାର କେବଳ ତା'ରି ରହିଛି।

'ଅସମ୍ଭବ! ସମ୍ପୂର୍ଣ୍ଣ ଅସମ୍ଭବ! ଦେବଯାନୀ ଆଗରେ ଏତିକି କହିବାଲାଗି ମୋର ଧୈର୍ଯ୍ୟ ଓ ସାହସ କାହିଁ? ତା'ରି ଈର୍ଷ୍ୟାପୂର୍ଣ୍ଣ ସ୍ୱଭାବ, ତାର ମହାକ୍ରୋଧୀ ପିତା . . . ନା . . . ନା . . . ତା' କେବେହେଲେ ସମ୍ଭବ ନୁହେଁ।'

'କିନ୍ତୁ ମୁଷଳଧାରା ବର୍ଷା, ପ୍ରଚଣ୍ଡ ତୋଫାନବେଳେ ନିଜ ଭବିଷ୍ୟତ ଲାଗି ତିଳେ ଚିନ୍ତା ନକରି ଶର୍ମିଷ୍ଠା ଯେଉଁ ସାହସ ଦେଖାଇପାରିଲା, ସେଥିରୁ କାଣିଚାଏ ସାହସ . . .।'

—'ଚୁପ୍ କର . . .।'

—'ଭୀରୁ! ଲମ୍ପଟ!! ସ୍ୱାର୍ଥପର!'

ଓଃ . . . ଏ ଶବ୍ଦ ଛାତିକୁ ମୁଗୁରରେ ପିଟିବାଠାରୁ ଆହୁରି ଦୁଃସହ, ଆହୁରି ଭୟଙ୍କର। ମୁଁ ଆଉ ସହ୍ୟ କରିପାରିଲିନାହିଁ, ଛଟପଟ ହୋଇ ବିଛଣାରେ ଉଠି ବସିଲି। ସାରାରାତି ମୁଁ ଏପାଖ ସେପାଖ ହୋଇ ଶହ ଶହ ବୃଶ୍ଚିକଦଂଶନର କଷ୍ଟ ଅନୁଭବ କଲି। ଶେଷକୁ ଭାବିଲି— ମଦ୍ୟପାନ କରି ଏ ଯନ୍ତ୍ରଣାରୁ ରକ୍ଷାପାଇବି। ଏ ସମୟରେ ମଦିରା କିମ୍ବା ମଦିରାକ୍ଷୀ କେବଳ ମୋତେ ଶାନ୍ତିଦେଇପାରିବ; କିନ୍ତୁ . . .।

ସକାଳେ ଦେବଯାନୀ ଯଦି ଜାଣିପାରେ ଯେ ମୁଁ ମଦ୍ୟପାନ କରିଛି, ତେବେ . . . ସେ ପ୍ରଥମରୁହିଁ ରାଗି ଲାଲ୍ ହୋଇରହିଛି, ସେହି ନିଆଁରେ ଘିଅ ଢାଳି . . .

ବହୁ କଷ୍ଟରେ ମୁଁ ନିଜର ମନସ୍ଥିତିକୁ ସମ୍ଭାଳିନେଲି। ସକାଳେ ଦେବଯାନୀ ଗୋଟିଏ ଅଶୁଭ ସମ୍ବାଦ ଆଣିଦେଲା— ମାଧବର ସ୍ୱାସ୍ଥ୍ୟ ହଠାତ୍ ଅତ୍ୟନ୍ତ ଚିନ୍ତାଜନକ ହୋଇଉଠିଛି। ଏ ଖବର ଦେଇସାରି ସେ ମୋ ଆଡ଼କୁ କେତେ ସମୟ ପର୍ଯ୍ୟନ୍ତ ନିରୀକ୍ଷଣ କରି ଚାହିଁବା ପରେ ଖିଲ୍‌ଖିଲ୍ ହୋଇ ହସିଉଠି କହିଲା— ''ଜାଣନ୍ତି ଆପଣ, ମାଧବକୁ ଜ୍ୱର କାହିଁକି ହୋଇଛି?''

''ନା . . . ତ . . .। ପଅରଦିନ ସେ ମୋ ସହିତ ନୃତ୍ୟ ଦେଖିବାପାଇଁ ଯାଇଥିଲା; ମଝିରୁ ଉଠି କୁଆଡ଼େ ଚାଲିଗଲା। ବାହାରେ ଖୁବ୍ ଜୋର୍‌ରେ ଝଡ଼ବର୍ଷା ହେଉଥାଏ, ମୁଁ ତାକୁ ଖୋଜିବାଲାଗି ଗଲି; କିନ୍ତୁ କୌଣସିଠାରେ ତାକୁ ପାଇଲିନାହିଁ।''

"ମହାରାଜ ତାକୁ ଖୋଜି ପାଆନ୍ତେ କିପରି ? ସେ ମହାଶୟ ସ୍ୱର୍ଗକୁ ନିଶୁଣି ଲଗାଇବାକୁ ଯାଇଥିଲେ। ଅନେକ ରାତିରେ ଘରକୁ ଫେରିଲେ। ପେଟେ ମଦପିଇ କେଉଁଠି ବର୍ଷାରେ ପଡ଼ିଥିଲେ, ଓଦା ଜୁଡୁବୁଡୁ ହୋଇ ଫେରିଲେ।"

ଶୀଘ୍ର ରାଜବୈଦ୍ୟଙ୍କୁ ପଠାଇବାର ବ୍ୟବସ୍ଥାକରି ଦି'ଘଡ଼ି ପରେ ମୁଁ ଯାଇ ସେଠାରେ ପହଞ୍ଚିଲି। ଯୁବରାଜ ଥିବାବେଳେ ଏହିପରି ଏକ ଅସ୍ୱସ୍ତିକର ମନ ନେଇ ମାଧବ ଘରକୁ ଦିନେ ମୁଁ ଆସିଥିଲି। ମାଧବର କୁନି ଝିଅାରୀଟି କେଡ଼େ ଗେହ୍ଲେଇ ହୋଇ କଥା କହିଥିଲା – 'ଯୁବରାଜ କଅନ କକା ! ପଲନାମ କାଇଁକି କଲିବି, ଏ କନ ଭଗବାନ୍ ? ଏ ଯୁବଲାଜ, ଆପନ ମତେ ଘୁଲା ଦେବେ ? ଏ ଯୁବଲାଜ, ମୋ କନ୍ଧେଇଲାଗି ଆପନ ବଲ ହେବେ ?'

ମାଧବର ଦୁଆରେ ଝିଅଟିଏ ଛିଡ଼ାହୋଇଥିଲା, ସେ ନିଶ୍ଚୟ ତାରକା। ସେଦିନ ସେ ଛୋଟ କଳିକାଟିଏ ହୋଇଥିଲା, ଆଜି ବେଶ୍ ସୁନ୍ଦର ଫୁଲଟିଏ ହୋଇଯାଇଛି। ମୋତେ ଦେଖିବାମାତ୍ରେ ଲାଜରେ ଜୁଡୁବୁଡୁ ହୋଇ ସେ ଘର ଭିତରକୁ ପଳାଇଗଲା। ମୁଁ ଘର ଭିତରକୁ ପଶିଗଲା ପରେ ଜାଣିପାରିଲି ଯେ, ତାରକା ଦୌଡ଼ି ଦୌଡ଼ି ଆସି ମୋ ଲାଗି ଖଣ୍ଡିଏ ସୁନ୍ଦର ଆସନ ଯୋଗାଡ଼ କରିପକାଇଛି।

ଶୁଖିଲା ଭୂଇଁରେ ପଡ଼ି ମାଛ ଛଟପଟ ହେଲାପରି ମାଧବ ଖୁବ୍ ବ୍ୟାକୁଳ ହେଉଛି। ରାଜବୈଦ୍ୟ ତା' ନାଡ଼ିରେ ହାତଦେଇ ଦେଖୁଥିଲେ; କିଛି ସମୟ ପରେ ସେ ମୋ ଆଡ଼କୁ ନିରାଶପୂର୍ଣ୍ଣ ଦୃଷ୍ଟିରେ ଚାହିଁରହିଲେ। ତାଙ୍କ ଚାହାଣିରୁ ବେଶ୍ ଅନୁମାନ କରିନେଲି ଯେ, ମାଧବର ଅବସ୍ଥା ସାଙ୍ଘାତିକ। ଏହି ସମୟରେ ଜଣେ ଯୁବତୀ ହାତରେ କିଛି ଲେହ୍ୟ ଆଣି ମାଧବକୁ ଚଟାଇଲା। ମୁଁ ପ୍ରଥମେ ତା' ମୁହଁ ଦେଖିପାରିଲିନାହିଁ; କିନ୍ତୁ ତା'ର ପଛଆଡୁ ଦେଖି ବେଶ୍ ଜାଣିପାରିଲି ଯେ, ନିଶ୍ଚୟ ମୁଁ ଏ ସ୍ତ୍ରୀକୁ କେଉଁଠାରେ ଦେଖିଛି। ମାଧବର ମାଆ ବୁଢ଼ୀ, ତାରକାର ମାଆ କେବେଠାରୁ ଇହଧାମ ତ୍ୟାଗକରିଛି; ତେବେ ଏ ଆଉ କିଏ ?

ମାଧବର୍କୁ ସନ୍ନିପାତ ହୋଇଯାଇଥିଲା। ସେ ହଠାତ୍ ପ୍ରଳାପ କରି ଉଠିଲା – "ମହାରାଣୀ, ମହାରାଣୀ !"

ସେ ଯୁବତୀଟି ଧୀରେ କହିଲା – "ମହାରାଜ ଆସିଛନ୍ତି, ମହାରାଣୀ ନୁହନ୍ତି।" ସେ ମାଧବ ମୁଣ୍ଡର ଓଦାପଟି ବଦଳାଇଦେଇ ଫେରିଯିବାବେଳେ ମୁଁ ତାକୁ ସ୍ପଷ୍ଟ ଦେଖିପାରିଲି। ଆଃ . . . ସେ ମୁକୁଳିକା।

ମୁକୁଳିକା ! ବିଚାରୀ ମୋ'ରି ଆନନ୍ଦଲାଗି ଦେଶାନ୍ତର ଦଣ୍ଡ ପାଇଥିଲା। ପ୍ରକୃତରେ ସେ କ'ଣ ଦୋଷ କରିଥିଲା ? ହଠାତ୍ ତାକୁ ଦେଖିବାମାତ୍ରେ ମୋ ମନର ଗଭୀରତମ ପ୍ରଦେଶରେ ଏକ କରୁଣ ମୂର୍ଚ୍ଛନା ସାକାର ହୋଇଉଠିଲା। ସମ୍ମୁଖରେ ମୃତ୍ୟୁଶଯ୍ୟାରେ ମାଧବ। ମୋ'ରି ପାଇଁ ସେ ଝଡ଼ବର୍ଷାରେ ଭିଜି ଭିଜି ଆଜି ସନ୍ନିପାତ ରୋଗରେ ପଡ଼ିଛି। ଠିକ୍ ସେହିପରି ଏ ମୁକୁଳିକା . . .

ମୁଁ ସହାନୁଭୂତିପୂର୍ଣ୍ଣ ସ୍ୱରରେ କହିଲି – "ମୁକୁଳିକା କିପରି ଅଛ ? ଭଲ ତ ?"

ସେ ଆଗେଇଆସି ମୋତେ ପ୍ରଣାମ କରି କହିଲା – "ମହାରାଜଙ୍କ ଅନୁଗ୍ରହରୁ ଦାସୀ ଭଲରେ ଅଛି।" ସେ ମୁଖମଣ୍ଡଳରେ କ୍ଷୀଣ ହାସ୍ୟଛଟା ଫୁଟାଇ, ଟିକିଏ

ଲାଜେଇଯାଇ ଗୋଟିଏ କୋଣରେ ଛିଡ଼ାହୋଇରହିଲା। ତା' ଆଡ଼କୁ କେଇ ମୁହୂର୍ତ୍ତ ଚାହିଁବା ପରେ, ମୁଁ ଭାବିଲି– ଯୌବନ କେଡ଼େ କୋମଳ କଳିକା ! ମୋ ସେବାରେ ଆଶୋକବନରେ ଥିବାବେଳେ ମୁକୁଳିକା . . .!

ଆଖି ଆଗରେ ସେଦିନର ରଙ୍ଗିନ୍ ମୁହୂର୍ତ୍ତ ମାନସପଟରେ ଭାସିଉଠିଲା। ପିତାଙ୍କର ମୃତ୍ୟୁଯନ୍ତ୍ରଣାରେ ବ୍ୟଥିତ ହୋଇ, ମରୁଭୂମିର କ୍ଳାନ୍ତ ପଥିକପରି ମୁଁ ମଧ୍ୟ ଆଶ୍ରୟ ଲୋଡୁଥିଲି। ସେଦିନ ମୁକୁଳିକା ହିଁ ମୋତେ ପରମ ଆନନ୍ଦ ତଥା ପରିତୃପ୍ତିର କୋଳରେ ଶୁଆଇପାରିଥିଲା। ଆମ ଦୁହିଁଙ୍କ ଓଠର ମିଳନରେ ମୋ ମନରୁ ମୃତ୍ୟୁର ଭୟ କୁଆଡ଼େ ଉଭେଇଗଲା।

ଜଣେ ମୁମୂର୍ଷୁ ବ୍ୟକ୍ତିର ଶଯ୍ୟାପାଖରେ ବସି ଅତୀତର ରଙ୍ଗିନ୍ ରାତି ସମ୍ବନ୍ଧରେ ମନେ ମନେ ଆଲୋଚନା କରିବା ଅତି ଲଜ୍ଜାକର କଥା ନୁହେଁ କି? ମୁଁ ମନେମନେ ଅନୁତାପ କଲି ଏବଂ ରାଜବୈଦ୍ୟଙ୍କୁ ସଦାସର୍ବଦା ଜଗିରହି ଚିକିତ୍ସା କରିବାଲାଗି ଆଦେଶ ଦେଇ ଘରୁ ବାହାରିଆସିଲି। ମୁକୁଳିକା ମୋ ପଛେ ପଛେ ଆସି, ମୁହଁରେ ଟିକିଏ ଲାଜରା-ହସ ବିଞ୍ଚିଦେଇ କହିଲା, "ମହାରାଣୀଙ୍କୁ ମୁଁ ଆଜିପର୍ଯ୍ୟନ୍ତ ଦେଖିନାହିଁ।"

"ମାଧବ ଭଲହୋଇଯାଉ, ଦିନେ ରାଜମହଲକୁ ଆସି ସାକ୍ଷାତ୍‌କରିଯିବ।"

"ଯୁବରାଜ ଚାଲବୁଲ କଲେଣି କି? କଥା କହିଲେଣି? ମହାରାଜଙ୍କୁ କ'ଣ ବୋଲି ଡାକୁଛନ୍ତି?"

ମୁଁ ଅବଶ୍ୟ ତାକୁ କିଛି ଉତ୍ତର ଦେଲିନାହିଁ; କିନ୍ତୁ ମୋ କାନ ପାଖରେ ପ୍ରତିଧ୍ୱନିତ ହୋଇଉଠୁଥିଲା– "ପା . . . ପା . . . ପା" ଶବ୍ଦ। ଏଇ ସେଦିନ ମୁଁ ଦେବଯାନୀର ମହଲକୁ ଯାଇଥିଲି। ମୋତେ ଦେଖିପକାଇ ପା . . . ପା . . . ପା . . . କହି ପର୍ବତର ଉନ୍ନତ ଶିଖରରୁ କୁଳୁକୁଳୁନାଦିନୀ ଝରଣା ଡେଇଁଲାପରି, ଶର୍ମିଷ୍ଠା କୋଳରୁ ପୁରୁ ମୋ ଆଡ଼କୁ ଉହୁଙ୍କି ଆସିଲା। କାଳେ ଦେବଯାନୀର ମନରେ ସନ୍ଦେହ ଜାଗିଉଠିବ, ମୁଁ ଜାଣିଶୁଣି ପୁରୁର ପା . . . ପା . . . ଶବ୍ଦ ଉପରେ ବିଶେଷ ଗୁରୁତ୍ୱ ନଦେଲାପରି ଛଳନାକଲି। ମୋର ଏ'ପ୍ରକାର ଉପେକ୍ଷା ଫଳରେ ବିଚରା ଅବୋଧ ଶିଶୁଟିର ମନରେ କେତେ ଦୁଃଖ ଜାତ ହୋଇନଥିବ? ଶର୍ମିଷ୍ଠାକୁ ଶେଷ ବିଦାୟ ଦେବା ସମୟରେ ମୁଁ ପୁରୁକୁ ଟିକିଏହେଲେ କୋଳକୁ ନେଲିନାହିଁ କିମ୍ବା ସ୍ନେହସୂଚକ ଗୋଟିଏ ହେଲେ ବାତ୍ସଲ୍ୟମମତାଭରା ଚୁମ୍ବନ ତା' କପୋଳରେ ଆଙ୍କିଦେଲି ନାହିଁ। ପିତା ହୋଇ କ'ଣ କେହି ଏତେ ନିର୍ମମ ହୋଇପାରେ?

ଏବେ ପୁରୁ କେଉଁଠି ଥିବ? ଶର୍ମିଷ୍ଠା କେଉଁଠି କିପରି କାଳ କାଟୁଥିବ? ପିଲାଦିନେ ନିଜ କଣ୍ଢେଇବାହାଘରେ ଅକ୍ଷତ ବୋଲି ମୋତି-ମାଣିକ୍ୟଦାନା ଯେଉଁ ଶର୍ମିଷ୍ଠା ଫିଙ୍ଗିଥିବ, ସେଇ ଅଲିଅଳ ରାଜଦୁଲାଳୀ ଆଜି ନିଜ ପୁରୁ ପାଇଁ କାହା ଦୁଆରେ ଅନ୍ନମୁଠିଏ ଲାଗି ହାତପାତୁଥିବ!

ମୁଁ ଅବାକ୍ ହୋଇଯିବାର ଲକ୍ଷ୍ୟକରି କହିଲା ମୁକୁଳିକା, "ମହାରାଜ, ମୋର କିଛି ଭୁଲ ହୋଇଗଲା କି?"

ମୁଁ ମୋ ମନର ବ୍ୟାକୁଳତାକୁ ଗୋପନ କରିବାକୁ ଯାଇ କହିଲି, "ନା ନା . . . ତୁମର କିଛି ଭୁଲ ହୋଇନାହିଁ . . . ଭୁଲ ମୋର। ଏତେଦିନ ପରେ ମୁଁ

ତୁମକୁ ଦେଖିଲି। ପୁଣି ମାଧବ ମୋର ପରମ ମିତ୍ର, ତା'ରି ସେବା-ଶୁଶ୍ରୂଷାରେ ତୁମେ ଲାଗିଛ, ତଥାପି କେବଳ ତୁମେ କିପରି ଅଛ ଏତିକି ପଚାରି ନୀରବ ରହିଲି। ଆଚ୍ଛା, କହିଲ, ତୁମେ ମାଧବ ଘରକୁ କିପରି ଆସିଲ ?''

ମୁକୁଳିକା କହିଲା, ''ମୁଁ ଜଣେ ମହାତ୍ମାଙ୍କର ସେବାକରୁଛି; ସେ ତୀର୍ଥଯାତ୍ରାରୁ ଫେରି ଏଠାରେ ଅଛନ୍ତି। ନୃତ୍ୟଶାଳାର ପଛପଟେ ଗୋଟିଏ ମଠରେ ଆମେ ରହିଛୁ। ଯା' ମଧ୍ୟରେ ମାଧବ ଗୋଟିଏ ଝିଅକୁ ଭଲପାଇବସିଲେ। ତା' ସମ୍ବନ୍ଧରେ ସେ ଆଜିକାଲି ଆପଣଙ୍କ ସହିତ ଆଲୋଚନା କରିଥାଆନ୍ତେ; କିନ୍ତୁ ଯା' ମଧ୍ୟରେ ତାଙ୍କୁ ଜ୍ୱର ହୋଇଗଲା; ଜ୍ୱରରୁ ସନ୍ନିପାତ। ତାଙ୍କ ମାଆ ମଠକୁ ପୁରାଣ ଶୁଣିବାକୁ ଯାଆନ୍ତି; ମାଧବଙ୍କ ରୋଗରେ ବ୍ୟସ୍ତହୋଇପଡ଼ି ସେ ଗୁରୁଦେବଙ୍କ ଆଶ୍ରୟନେଲେ। ଗୁରୁମହାରାଜ ମନ୍ତ୍ରଜଳ ଓ କିଛି ବିଭୂତି ଦେଇ ମୋତେ ତାଙ୍କର ସେବା କରିବା ଲାଗି ଆଦେଶ ଦେଇଛନ୍ତି''

''ମୁଁ ଥରେ ତୁମ ଗୁରୁ ମହାରାଜଙ୍କୁ ଦର୍ଶନ କରିବି। ତାଙ୍କ ପ୍ରବଚନ ଶୁଣି ଯଦି ମୋର ଅଶାନ୍ତ ମନକୁ ଟିକିଏ ଶାନ୍ତି ମିଳିପାରେ. . .।''

ମୁକୁଳିକା ଆଉ କିଛି ଉତ୍ତର ନଦେଇ କେବଳ ଓଠଫାଙ୍କରେ ଟେନାଏ ହସ ଖେଳାଇ ଦେଇ ଲାଜେଇଗଲା। ତା'ଠାରୁ ବିଦାୟ ନେଇ ଆସିବା ସମୟରେ ମୁଁ କହିଲି – ''ମୁକୁଳିକା, ମାଧବ ମୋର ପ୍ରାଣର ମିତ୍ର। ତା'ପରି ବନ୍ଧୁ ସଂସାରରେ ଲକ୍ଷକରେ ଗୋଟିଏ ମିଳିବେ କି ନା ସନ୍ଦେହ। ତୁମେ ଜୀବନମୂର୍ଚ୍ଛା ତା'ର ସେବା-ଶୁଶ୍ରୂଷାରେ ଲାଗିପଡ଼। ତୁମର ଏ ଉପକାର ମୁଁ କେବେହେଲେ ଭୁଲିପାରିବିନାହିଁ।''

ଲାଜରେ ମୁକୁଳିକାର ମୁହଁ ଲାଲ୍ ହୋଇଗଲା। ସେ ତାର ଚାନ୍ଦମୁହଁରେ ଶରଦର ଚାନ୍ଦିନୀ ଖେଳାଇ କହିଲା – ''ମହାରାଜ ଭାରି ଜଣେ. . . ଯା' କ'ଣ ମୋତେ କହିବାକୁ ପଡ଼ିବ ?''

ସେ ରାତିରେ ମୁଁ ଆଦୌ ଶୋଇପାରିଲିନାହିଁ। ମୁଁ ଅନେକ ସମୟ ପର୍ଯ୍ୟନ୍ତ ମୁକୁଳିକା ସମ୍ବନ୍ଧରେ ଚିନ୍ତାକଲି। ରାଜମାତା ବାନପ୍ରସ୍ଥ ନେଇ ଚାଲିଯିବାର ଖବର ଶୁଣି ବୋଧହୁଏ ସେ ହସ୍ତିନାପୁରରେ ପାଦଦେଇଛି; କିନ୍ତୁ ଅଶୋକବନର ମୁକୁଳିକା ଓ ଆଜିର ମୁକୁଳିକା ଭିତରେ ଆକାଶ-ପାତାଳ ପାର୍ଥକ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ସେତେବେଳେ ସେ ଥିଲା ବିଳାସିନୀ ମୁକୁଳିକା; କିନ୍ତୁ ଆଜି ସେ ଧାତ୍ରୀ ଓ ସ୍ନେହଶୀଳା ପାଲଟିଯାଇଛି। ହୁଏତ ସେଇ ସାଧୁଙ୍କର ସାନ୍ନିଧ୍ୟରୁ ଏହା ସମ୍ଭବ ହୋଇଛି। ମୁଁ ନିଶ୍ଚୟ ଥରେ ତାଙ୍କୁ ଦର୍ଶନ କରିବି। ସେ ତ୍ରିକାଳଜ୍ଞ ହୋଇଥିବେ; ହୁଏତ ଶର୍ମିଷ୍ଠା ଓ ପୁରୁର ସନ୍ଧାନ ତାଙ୍କର କୃପାରୁ ମିଳିଯାଇପାରେ।

ଏଇ ଧାରଣା ମୋ ମନରେ ଜାତହେବାକ୍ଷଣି ମୁଁ ଅତ୍ୟନ୍ତ ଅସ୍ୱସ୍ତି ଅନୁଭବକଲି। ହାୟ. . . ଶର୍ମିଷ୍ଠା କେଉଁଠି ଥିବ? ପୁରୁ. . . ଅବୋଧ ବାଳକ ପୁରୁ ଆଜି କି ଦୁର୍ଦ୍ଦଶା ଭୋଗକରୁଥିବ? ପା. . . ପା. . . କହି ଅବୋଧ ଶିଶୁଟି ପାଟିକରିଉଠିଲେ ଶର୍ମିଷ୍ଠା କେଡ଼େ କଷ୍ଟ ଅନୁଭବ କରୁନଥିବ? ସେ କ'ଣ ତା' ପିତାମାତାଙ୍କ ପାଖକୁ ଫେରଯିବ? ନା. . . ଆଉ ଯିବ କେମିତି? ନୋହିଲେ ଶେଷକୁ ଜୀବନରୁ ଆସ୍ଥା ହରାଇ ବିଚାରୀ ପୁରୁକୁ ଛାତିରେ ଜାକିଧରି କେଉଁ ପର୍ବତର ଶିଖରଦେଶରୁ ଡେଇଁପଡ଼ି ଆତ୍ମହତ୍ୟା କରିଦେବ।

ହଠାତ୍ ମୋ ଆଖିଆଗରେ ନାଚିଉଠିଲା– ଶର୍ମିଷ୍ଠାର ଲହୁଲୁହାଣ ଶରୀର; ତା' ଉପରେ ଦଳଦଳ ହୋଇ ଶାଗୁଣା ଉଡ଼ିବୁଲୁଥିବା ଦୃଶ୍ୟ। ମୁଁ ଭୟରେ ଥରିଉଠି ଆଖିବୁଜିଦେଲି; କିନ୍ତୁ ସେ ଦୃଶ୍ୟ ମୋ ଆଖିଆଗରୁ ଅପସରିଗଲାନାହିଁ; ବରଂ ଆହୁରି ଭୟଙ୍କର ହୋଇଉଠିଲା। ସେହି କ୍ଷତବିକ୍ଷତ ଭୀଷଣ ଦେହଟା ଅଗ୍ନିର ଲେଲିହ୍ୟମାନ ପ୍ରଚଣ୍ଡ ଶିଖା ମଧ୍ୟରେ ତାଣ୍ଡବନୃତ୍ୟ କରି ପ୍ରଶ୍ନକରୁଥିଲା– କାହିଁ ତୋର ସେହି କପଟୀ ପ୍ରେମିକ? କୁଆଡ଼େ ଗଲା ସେ କାମୁକ ପତି? କେଉଁଠି ଲୁଚିଛି ସେ ଦାୟିତ୍ୱହୀନ ପିତା?

ଅନୁତାପର ପ୍ରଚଣ୍ଡ ଜ୍ୱାଳାରେ ମୁଁ ସାରାଦିନ ସନ୍ତପ୍ତ ହେଉଥିଲି; ରାତି ଅଧ ପର୍ଯ୍ୟନ୍ତ ମୋ ଆଖିକୁ ନିଦ ଆସିଲାନାହିଁ। ମୁଁ ମର୍ମନ୍ତୁଦ ଯନ୍ତ୍ରଣାର ତୀବ୍ର ଜ୍ୱାଳାରେ ଦହଗଞ୍ଜ ହୋଇ, ଶେଷକୁ ପୂର୍ବଦିନଠାରୁ ଅଧିକମାତ୍ରାରେ ମଦ୍ୟ ପିଇଦେଲି। ଭାବିଲି, ଅତି ବେଶି ମାତ୍ରାରେ ମଦ୍ୟ ପିଇ ଶୋଇପଡ଼ିଲେ ଆଉ କେବେହେଲେ ଉଠିବାକୁ ପଡ଼ନ୍ତାନାହିଁ। କିନ୍ତୁ ଦେବଯାନୀ ଆଗରେ ଶପଥ କରିଛି; ମୁଁ ଜାଣେ ତାର ସ୍ୱଭାବ, ସଙ୍ଗେ ସଙ୍ଗେ କ୍ରୋଧରେ ମୋତେ ଜାଳିପୋଡ଼ି ବ୍ୟତିବ୍ୟସ୍ତ କରିପକାଇବ। ଯା'ହେଉ କୌଣସି ମତେ ମୁଁ ମୋର ଅମାନିଆ ମନଟାକୁ ଆୟତ୍ତକଲି।

ମଦ୍ୟରେ ଉତ୍ତେଜିତ ଶରୀର ଚାହେଁ ସ୍ତ୍ରୀ-ସମ୍ଭୋଗ। କିନ୍ତୁ ଦେବଯାନୀ ମୋର ଏ ଅବସ୍ଥା ଦେଖିଲେ ସଙ୍ଗେ ସଙ୍ଗେ ମୋତେ ଭର୍ତ୍ସନା କରି ତା' ମହଲରୁ ବାହାରକରିଦେବ। ତା'ପରେ ଶର୍ମିଷ୍ଠା ମୋର କଳ୍ପନାପଥରେ ଆସି ଛିଡ଼ାହୋଇଗଲା। ତା' ସହିତ ବିତିଥିବା କେତୋଟି ରଙ୍ଗିନ୍ ରାତ୍ରି ମୋ ଆଖିଆଗରେ ଉଦ୍ଦୀପ୍ତ ହୋଇଉଠିଲା। ମୁଁ ସେଇ ଭାବନାର ଜାଲରେ ଛଟପଟ ହୋଇ ରାତ୍ରିଟି ବିତାଇଦେଲି।

ମାଧବର ଅବସ୍ଥା ଜାଣିବାଲାଗି ମୁଁ ପ୍ରତିଦିନ ତା' ଘରକୁ ଯାଏ; ପ୍ରତିଦିନ ମୋର ଧାରଣାହୁଏ– ଆଜି ନିଶ୍ଚୟ ସେ ସଚେତ ହୋଇ ମୋ ସହିତ କଥାବାର୍ତ୍ତା କରିବ; ମୁଁ ମୋର ଆକୁଳ ମନର ବ୍ୟାକୁଳ ବେଦନା ତା' ଆଗରେ କହିବି ରାଜବୈଦ୍ୟ ଯଥାସାଧ୍ୟ ଚେଷ୍ଟା ଚଳାଇଥିଲେ। ମାଧବର ମାଆ ଓ ମୁକୁଳିକା ମଧ୍ୟ ଦିନରାତି ସେବା-ଶୁଶ୍ରୁଷାରେ ଲାଗିରହିଥିଲେ। ବିଚାରୀ ମୁଗ୍ଧା ତାରକା ମାଧବର ଗୋଡ଼ରେ ହାତ ବୁଲାଉ ବୁଲାଉ ତା'ର ରୋଗଶୀର୍ଣ୍ଣ ଚେହେରା ଆଡ଼କୁ ଚାହିଁ ଶିହରିଉଠୁଥିଲା, କେବେ କେବେ ଅବାକ୍ ହୋଇ ତା'ଆଡ଼କୁ ଚାହିଁରହୁଥିଲା।

ପଞ୍ଚମ ଦିନ ଜଣାପଡ଼ିଲା– ବୋଧହୁଏ ମାଧବର ଚେତନା ଫେରିଆସିଛି। ସେ ବ୍ୟାକୁଳ ହେଉଥିଲା। ତାରକା 'କକା କକା' ବୋଲି କେଇଥର ଡାକିଲା। ସେ ଡାକ ଶୁଣି ମାଧବ ଥରେମାତ୍ର 'ହଁ...' କହିବାରୁ ସେ 'ବୁଢ଼ୀମା' 'ବୁଢ଼ୀମା' 'ବୁଢ଼ୀମା' ଡାକି ଡାକି ଆନନ୍ଦରେ ଘର ଭିତରକୁ ଧାଇଁଗଲା। ରାଜବୈଦ୍ୟ ଓ ମୁକୁଳିକାର ମୁହଁରେ ମଧ୍ୟ ଆନନ୍ଦର ଛଟା ଝଲସିଉଠିଲା। ମୁଁ ଯାଇ ତା' ମୁଣ୍ଡ ପାଖରେ ବସି କହିଲି– "ମାଧବ, ମୋତେ ଚିହ୍ନିପାରୁଛ?"

ସେ କେତେ ସମୟ ପର୍ଯ୍ୟନ୍ତ ଓଠଫାଙ୍କରେ କେତୋଟି ଅସ୍ପଷ୍ଟ ଶବ୍ଦ କହିବା ପରେ, ସ୍ପଷ୍ଟଭାବରେ କହିଲା– "ମହାରାଣୀ ... ଏହାହିଁ ମହାରାଜଙ୍କର ଆଜ୍ଞା ...।"

ପାଞ୍ଚଦିନ ପରେ ମାଧବ ମୁହଁରୁ ଏହି କେତୋଟି ଶବ୍ଦ ଶୁଣି ମୋ ଛାତିରେ ଛୁରି ଚାଲିଗଲା ପରି ବୋଧହେଲା। ଶର୍ମିଷ୍ଠା ବୋଧହୁଏ ପଚାରିଥିବ– 'ମୋତେ

କ'ଣ ଏହିଠାରେ ଓହ୍ଲାଇବାକୁ ପଡ଼ିବ?' ତା'ରି ଉତ୍ତରରେ କହିଥିବ ମାଧବ...। ସେଭଳି ଝଡ଼ତୋଫାନ ରାତିରେ, ଅସହାୟ ଭାବରେ ଶର୍ମିଷ୍ଠାକୁ ଛାଡ଼ିଦେଇ ଆସିବା ଲାଗି ମାଧବକୁ ନିଶ୍ଚୟ ଖରାପବୋଧହୋଇଥିବ; କିନ୍ତୁ ତା'ର ଉପାୟ ଆଉ କ'ଣ ଥିଲା? ସେ ବାଧହୋଇ କହିଥିବ– 'ଏହାହିଁ ମହାରାଜଙ୍କର ଆଦେଶ।'

ମୁଁ ମାଧବର ଭାବପ୍ରବଣତା ଭଲଭାବରେ ଜାଣିଥିଲି; କିନ୍ତୁ ସେଦିନ ରାତିର ଝଡ଼ତୋଫାନ ସେ ସହ୍ୟ କରିପାରିଲାନାହିଁ।

କିନ୍ତୁ ମୁଁ ନିର୍ଦ୍ଦୟ... ଯେଉଁ ଶର୍ମିଷ୍ଠା ମୋ କାନ୍ଧରେ ମୁଣ୍ଡ ରଖି ବ୍ରହ୍ମାନନ୍ଦ-ସୁଖ ଅନୁଭବ କରୁଥିଲା, ମୋ'ରି ପାଇଁ ସମସ୍ତ ପ୍ରକାର ନିନ୍ଦା-ଅପବାଦ ସହିନେଇ ମୃତ୍ୟୁକୁ ସୁଦ୍ଧା ବେଖାତିର କରିଥିଲା, ମୁଁ ତା' ପାଇଁ କିଛିହେଲେ କରିପାରିଲିନାହିଁ।

ସେଦିନ ରାତିରେ ମୁଁ ପୁଣି ସେହି ଶବ୍ଦ ସ୍ୱପ୍ନରେ ଶୁଣିପାରି ଚମକି ଉଠିବସିଲି। ଶେଷକୁ ଖୁବ୍ ବ୍ୟସ୍ତ ହୋଇ ମୁଁ ପଲଙ୍କ ପାଖରେ ଥୁଆହୋଇଥିବା ମଦ୍ୟପାତ୍ର ଉଠାଇନେଇ ଢକ୍‌ଢକ୍ କରି ପିଇଗଲି। ମୋ ମନ ମଧ୍ୟରେ ପ୍ରଜ୍ୱଳିତ ହେଉଥିବା ବଡ଼ବାନଳକୁ ସୁରା-ସାଗରରେ ବୁଡ଼ାଇଦେବା ବ୍ୟତୀତ ମୋର ଆଉ କିଛି ଉପାୟ ନଥିଲା।

ଆଠଦିନ ବିତିଗଲେ ସୁଦ୍ଧା ମାଧବର ଜ୍ୱର ଛାଡ଼ିବାର କୌଣସି ସଙ୍କେତ ମିଳିଲାନାହିଁ। ନବମ ଦିନ ହଠାତ୍ ସେ ଆମକୁ ଛାଡ଼ି ପରଲୋକର ଅତିଥି ହୋଇଯିବ, ଏହା କେହି ଧାରଣା କରିପାରିନଥିଲେ। ଏପରିକି ରାଜବୈଦ୍ୟ ମଧ୍ୟ ଚିନ୍ତାକରିନଥିଲେ।

ସେଦିନ ତା' ଦେହରୁ ଖୁବ୍ ଝାଳ ବୋହିଗଲା, ଜ୍ୱର ଛାଡ଼ିଯିବାର ଆଶା ଉଜ୍ଜ୍ୱଳ ହୋଇଉଠିଲା; ସେ ମଧ୍ୟ ସଚେତ ହୋଇ ମୋତେ ପଚାରିଲା– "ସେ କେଉଁଠି...?"

ମୁଁ ଭାବିଲି, ସେ ଶର୍ମିଷ୍ଠା ବିଷୟରେ ମୋତେ ପଚାରୁଛି। ତେଣୁ ମୁଁ ନୀରବ ରହିଲି। ତା' ମାଆ ମଧ୍ୟ ମାଧବର ପ୍ରଶ୍ନ ଭଲଭାବରେ ବୁଝିପାରିଲେନାହିଁ। ମାଧବ ସହିତ ବିବାହ କରିବା ଲାଗି ନିର୍ବନ୍ଧ ହୋଇଥିବା ଝିଅଟିକୁ ସେ ଡକାଇଆଣିଲା। ମୁଁ ମଧ୍ୟ ସେ ଝିଅଟିକୁ ଆଦୌ ଦେଖିନଥିଲି। ସତର ଅଠର ବର୍ଷ ବୟସର ଝିଅଟି ଆସି ଖୁବ୍ ନମ୍ରତାର ସହିତ ମାଧବର ବିଛଣା ପାଖରେ ଛିଡ଼ାହୋଇରହିଲା। ସେପରି ଦୁଃଖଦ ଅବସ୍ଥାରେ ମଧ୍ୟ ତା'ର ସୌନ୍ଦର୍ଯ୍ୟ ମୋତେ ଆକର୍ଷିତ କରିଥିଲା। ମୁଁ ମନେମନେ ଭାବିଲି– ବାସ୍ତବିକ, ମାଧବ ଖୁବ୍ ଭାଗ୍ୟଶାଳୀ। ମାଧବ ତା'ଆଡ଼କୁ ଚାହିଁ କହିଲା– "ଆସ, ଏଇଠି ଆସି ବସ। ଲଜ୍ଜାକରନି।" ତା'ପରେ ସେ ରାଜବୈଦ୍ୟଙ୍କ ଆଡ଼କୁ ଚାହିଁ କହିଲା– "ବୈଦ୍ୟରାଜ, ମୁଁ ଏ ରୋଗରୁ ଭଲହୋଇଯିବି ତ?"

ରାଜବୈଦ୍ୟ କହିଲେ– "ନିଶ୍ଚୟ– କିନ୍ତୁ ସଂପୂର୍ଣ୍ଣ ସୁସ୍ଥ ହେବାକୁ କିଛିଦିନ ସମୟ ଲାଗିବ।"

ତା'ପରେ ସେ ମୋ'ଆଡ଼କୁ ମୁହଁ ବୁଲାଇ କହିଲା– "ମହାରାଜ, ମୁଁ ଏବେ ମରିବାକୁ ଚାହୁଁନି। ମୁଁ ମରିଗଲେ ତାରକାକୁ ସମ୍ଭାଳିବ କିଏ? ମୁଁ ଯଦି ଏପରି ଅସମୟରେ ଚାଲିଯାଏ, ତା'ହେଲେ ମାଧବୀ ଭାବିବ ଯେ ମୁଁ ତାକୁ ଠକିଦେଇ ଚାଲିଗଲି। ଆମେ ଦୁହେଁ ମିଳି ଅନେକ ସ୍ୱପ୍ନର ସଂସାର ଗଢ଼ିଥିଲୁ। ମହାରାଜ, ଏ ବିଚାରୀ ନିତାନ୍ତ ନିରୀହା ବାଳିକା। ଆମ ବିବାହ ପରେ ଆପଣ ଯେତେବେଳେ

ଆମ ଘରକୁ ଭୋଜନ କରିବାକୁ ଆସିବେ, ସେତେବେଳେ ଆମେ କ'ଣ କ'ଣ ଖାଦ୍ୟପଦାର୍ଥ ପ୍ରସ୍ତୁତ କରିବୁ, ତା' ମଧ୍ୟ ଆମେ ସ୍ଥିରକରିସାରିଛୁ। ଲତାକୁଞ୍ଜ ମଧ୍ୟରେ ବସି ଆମେ ପରସ୍ପର ଚାହାଣିରେ ଘଣ୍ଟାଘଣ୍ଟାଧରି କଥାବାର୍ତ୍ତା ହୋଇଛୁ। ନଦୀକୂଳରେ ପରସ୍ପରର ସ୍ପର୍ଶସୁଖ ମଧ୍ୟରେ ଆମେ ମନଗହନର କେତେ ଅକୁହା କାହାଣୀ କୁହାକୁହି ହୋଇଛୁ। ମହାରାଜ, ମୁଁ ବଞ୍ଚିରହିବି ତ? ଆପଣ ସତ୍ୟ କରି କୁହନ୍ତୁ, ମୋତେ ଭଲକରିବାଲାଗି ଆପଣ ସବୁମନ୍ତେ ଚେଷ୍ଟାକରିବେ ତ ?''

ତା' କଥାବାର୍ତ୍ତା ମଧ୍ୟରେ ସେପରି କିଛି ଅସଙ୍ଗତି ନଥିଲା; କିନ୍ତୁ ମୁଁ ବେଶ୍ ଜାଣିପାରିଲି ଯେ, ସନ୍ନିପାତ ରୋଗ ଫଳରେ ସେ ଏପରି ଭାବରେ ପ୍ରଳାପକରୁଛି। ତଥାପି ମୁଁ ତାକୁ ପ୍ରବୋଧନା ଦେବାଲାଗି କହିଲି– ''ଯାହା କିଛି କରିବାକୁ ପଡ଼ିଲେ ପଡୁ ପଛକେ, ମୁଁ ତୁମକୁ ବଞ୍ଚାଇବାଲାଗି ସମସ୍ତ ପ୍ରକାର ଚେଷ୍ଟା କରିବି।'' ରାଜବୈଦ୍ୟ ନିଜ ପୋଟଳୀ ମଧ୍ୟରୁ ଗୋଟିଏ ବଟିକା ବାହାରକରି ତାକୁ ଘୋରିଆଣିବାଲାଗି ମୁକୁଳିକାକୁ କହିଲେ।

ଏତେଦିନ ଧରି ଅଚେତ ରହିବାପରେ ସେ ଗଡ଼ଗଡ଼ କରି କେତେ କଥା କହିଚାଲିଥାଏ– ''ତୁମର ମନେଅଛି; ଯଦି ଆମର ପ୍ରଥମେ ଝିଅ ହେବ, ତା'ହେଲେ ମୁଁ ନାଁ ପସନ୍ଦ କରିବି ଏବଂ ପୁଅ ହେଲେ ତୁମ ପସନ୍ଦ ଅନୁସାରେ ନାଆଁ ଦିଆଯିବ... ରାଜି ତ...? ହଁ ଦେଖ, ସେତେବେଳକୁ ଆଉ ଯେପରି ଝଗଡ଼ା ନକର।''

ସେ ବିଚାରୀ କ'ଣ ବା କହନ୍ତା ? ତା'ରି ଆଗରେ ମୃତ୍ୟୁର କରାଳ ବିଭୀଷିକା ନଗ୍ନ ନୃତ୍ୟ କରୁଥିବାବେଳେ ସେ ପ୍ରଣୟର ମଧୁର ସ୍ମୃତିକୁ କିପରି ବ୍ୟକ୍ତ କରିପାରନ୍ତା ?

ମୁକୁଳିକା ଔଷଧ ଖଲି ଘେନିଆସିଲା; ରାଜବୈଦ୍ୟଙ୍କ ନିର୍ଦ୍ଦେଶ ଅନୁସାରେ ସେ ଚଟାଇଦେବାକୁ ଗଲାବେଳେ ମାଧବ ତା'ର ହାତ ଠେଲିଦେଲା। ତା'ପରେ ବୈଦ୍ୟଙ୍କ ଇସାରରେ ମାଧବୀ ଔଷଧତକ ଖୁଆଇଦେବାକୁ ଚେଷ୍ଟାକଲାରୁ ମାଧବ ତା'ର ହାତଟିକୁ ଧରିପକାଇ କହିଲା– ''ଏହି ଦେଖ, ଆମର ବିବାହ ହୋଇଗଲା...।'' ତା'ପରେ ଦୁଇ ତିନି ଘଡ଼ି କାଳ ସେହିପରି କେତେ କ'ଣ ବକ୍‌ବକ୍ କରି ନୀରବହୋଇଗଲା। ହଠାତ୍ ତା'ର ହାତଗୋଡ଼ ହେମାଳିଆ ହୋଇଆସିଲା। ରାଜବୈଦ୍ୟ ବହୁ ଚେଷ୍ଟାକଲେ; କିନ୍ତୁ ତାଙ୍କର ସମସ୍ତ ପରିଶ୍ରମ ବିଫଳ ହୋଇଗଲା; ମାଧବର ପ୍ରାଣପକ୍ଷୀ କେଉଁ ଅଜଣା ନୀଡ଼ ଆଡ଼କୁ ସମସ୍ତଙ୍କ ଅଗୋଚରରେ ଉଡ଼ିଗଲା।

× × × ×

ଦିନ ଦି'ପହରେ ମାଧବୀର ହାତକୁ ନିଜ ହାତରେ ଧରି 'ଏଇ ଦେଖ, ଆମର ବିବାହହୋଇଗଲା' ବୋଲି ପ୍ରଳାପ କରୁଥିବା ମାଧବର ଶବକୁ ସନ୍ଧ୍ୟାବେଳେ ଚିତାଗ୍ନିରେ ଅର୍ପଣ କରାଗଲା। ତା'ର ମୃତ ଶରୀର ଆଡ଼କୁ ମୁଁ ଆଦୌ ଚାହିଁପାରିଲିନାହିଁ। ତା'ର ସେ ମନଖୋଲା ହସ, ଉତ୍ସାହଦାୟୀ ସ୍ପର୍ଶ କୁଆଡ଼େ ଘଡ଼ିକ ମଧ୍ୟରେ ମିଳାଇଗଲା। ମୁଁ ତା'ରି ପାଖରେ ଛିଡ଼ାହୋଇଥିଲେ ସୁଦ୍ଧା ସେ ଆନନ୍ଦରେ ମୋତେ ଦେଖି ହାତ ହଲାଉନାହିଁ। ପ୍ରତିଦିନ ପରି ସେ 'ମହାରାଜ!' ବୋଲି ଡାକ ପକାଉନାହିଁ। ମୋର ଅଭିନ୍ନ ମିତ୍ର ମାଧବ, ମୋର ପରମ ବନ୍ଧୁ ମାଧବ; ହାୟ କୁଆଡ଼େ ଚାଲିଗଲା !

ଚିତାଗ୍ନି ଜଳିଉଠି ମାଧବର ଶରୀରକୁ ଚାହୁଁ ଚାହୁଁ ଗ୍ରାସ କରିଗଲା। ପ୍ରଥମେ ମୁଁ ଆଖିରୁ ଲୁହଧାର ଗଡ଼ାଇ ତା'ପରେ ଛାତି ପଥର କରି ଏ ଦୃଶ୍ୟ ଦେଖୁଥିଲି। 'ଯେକୌଣସିମତେ ମୁଁ ତୁମକୁ ରକ୍ଷାକରିବି'; ଏ ପ୍ରତିଶ୍ରୁତି ମୁଁ ମାଧବକୁ ଦେଇଥିଲି; କିନ୍ତୁ ହାୟ, ଏଡ଼େବଡ଼ ସାମ୍ରାଜ୍ୟର ଅଧୀଶ୍ୱର ହୋଇ ସୁଦ୍ଧା ମୁଁ ମୋର ସତ୍ୟ ରକ୍ଷା କରିପାରିଲିନାହିଁ।

ଜୀବନ ଓ ମୃତ୍ୟୁ; ନିୟତିର କି ଭୟଙ୍କର ଖେଳ। ଏଇ ବିଭୀଷିକାପୂର୍ଣ୍ଣ ଖେଳ ଖେଳିବାକୁ ମଣିଷ ଏ ସଂସାରକୁ ଆସେ। ମଣିଷ କାହିଁକି ଏ ସଂସାରକୁ ଆସେ? ପୁଣି ଅକାଳରେ ଏପରି ଚାଲିଯାଏ କାହିଁକି? ମନର ଗହନ-ଉପବନରେ ଅଙ୍କୁରିତ କଳିକାଗୁଡ଼ିକ ବିକଶିତ ହେବା ପୂର୍ବରୁ ସେ ଏ ସଂସାରକୁ ଛାଡ଼ିଯାଏ କାହିଁକି? ମାଧବୀକୁ ଛାଡ଼ି ତା'ର ଚାଲିଯିବା ଉଚିତ ନୁହେଁ; ତଥାପି ତାକୁ ଯିବାକୁ ହିଁ ପଡ଼ିଲା। ସେ ନିୟତି ନିକଟରେ କି ଅକ୍ଷମଣୀୟ ଅପରାଧ କରିଥିଲା ଯେ, ଏପରି ଏକ କଠୋର ଦଣ୍ଡ ତାକୁ ଭୋଗକରିବାକୁ ପଡ଼ିଲା?

ମୃତ୍ୟୁ . . . ଜୀବନର କେଡ଼େ ଭୟଙ୍କର ରହସ୍ୟ। ସମୁଦ୍ରକୂଳରେ ଗୋଟିଏ ଅବୋଧ ଶିଶୁ ବାଲିର କେଡ଼େ ବଡ଼ ବଡ଼ ଘର ନିର୍ମାଣକରେ; କିନ୍ତୁ ପଲକ ମଧ୍ୟରେ ଲହରୀର ପ୍ରବାହରେ ତାହା ଭୁଷୁଡ଼ି ପଡ଼େ; କିଛି ହେଲେ ଚିହ୍ନ ଅବଶେଷ ରହେନାହିଁ। ମାନବଜୀବନ କ'ଣ ଏହି ବାଲିଘରଠାରୁ ଭିନ୍ନ? ମାନବରୂପରେ ଆମେ ଯାହାକୁ ସମ୍ମାନ ଦେଉ, ପରମାତ୍ମାଙ୍କର ପ୍ରତିମୂର୍ତ୍ତି ବୋଲି ଯାହାକୁ ଆଦରକରୁ, ତା'ର ପରିଣତି କ'ଣ ଏଇଆ? ବିଶ୍ୱର ବିଶାଳ ଦ୍ରୁମରେ ସେ ଗୋଟିଏ ସୁକୋମଳ ପତ୍ର ନୁହେଁ କି? ସେ ପତ୍ରଟି ଏତେ ସୁକୁମାର ଯେ, ପବନର ସାମାନ୍ୟ ପ୍ରବାହରେ ମଧ୍ୟ ସେ ଝରିପଡ଼େ। ଆଉ . . . ମୁଁ . . . ମୁଁ ଯଯାତି . . .ହସ୍ତିନାପୁରର ସମ୍ରାଟ୍ . . . ତା' ଆଗରେ ନିତାନ୍ତ ତୁଚ୍ଛ।

ମୁଁ ମାଧବର ଚିତାଗ୍ନିଠାରୁ ଶେଷ ବିଦାୟ ନେଇ ମହଲକୁ ଆସିଲି। ସେ ଦିନ ରାତ୍ରି . . . ନା . . . ନା . . . ରାତ୍ରି ନୁହେଁ କାଳରାତ୍ରି– ପ୍ରତିମୁହୂର୍ତ୍ତରେ ଫଁ ଫଁ କରି ମୋତେ ଦଂଶନ କରିବାକୁ ଫଣାଟେକି ଗୋଡ଼େଇଲା। ମନ ମଧ୍ୟରେ ମୃତ୍ୟୁର ଭୀଷଣତା ଉତ୍କଟ ଆକାର ଧାରଣକରି ମୋତେ ହତପ୍ରଭ କରିଦେଲା। ମୋର ମନେହେଉଥିଲା; ଏହିପରି ଅସମୟରେ ଦେବଯାନୀ ଆସି ମୋତେ ମାଧବର ମୃତ୍ୟୁ ସମ୍ବନ୍ଧରେ କେତେ କ'ଣ ପଚାରିଯାଆନ୍ତା, ମୁଁ ତା' କୋଳରେ ମୁଣ୍ଡ ରଖି ମାଧବର କେତେ ଗୁଣ ବାହୁନିଯାଆନ୍ତି। ମାଧବର ମୃତ୍ୟୁରେ ଶୋକ ପ୍ରକାଶ କରି ତା' ଆଖିରୁ ଝରିପଡ଼ନ୍ତା କେଇଟୋପା ଲୁହ; ମୋ ଲୁହଧାରରେ ତା' ଲୁହ ମିଶି ଏକ ଶୋକର ସଙ୍ଗମ ବହିଯାଆନ୍ତା। ମୁଁ ମାଧବର ଗୁଣବର୍ଣ୍ଣନାରେ ବିଭୋର ହୋଇଯାଇ, ତା'ରି ଭୁଜବଲ୍ଲରୀକୁ ଆଶ୍ରୟ କରି ସୁଖନିଦ୍ରାର କୋଳରେ ଆଶ୍ରୟ ନିଅନ୍ତି। କିନ୍ତୁ ଦେବଯାନୀ କେବଳ ''ମାଧବ ଚାଲିଗଲା, ବଡ଼ ଅସୁବିଧା ହେଲା . . .'' ଏତିକି କହି ନୀରବ ରହିଲା। ମୋ ଦୁଃଖ ପ୍ରତି ପଦଟିଏ ହେଲେ ସମବେଦନା ପ୍ରକାଶ କଲାନାହିଁ। ମୁଁ ଖାଇବା ପାଇଁ ମନାକରିଦେଲି; କିନ୍ତୁ ''ଚାଲନ୍ତୁ କ'ଣ ଟିକିଏ ଖାଇନେବେ'' ଆଦି ଆଗ୍ରହସୂଚକ ଅନୁରୋଧ ପଦଟିଏ ହେଲେ କହିଲା ନାହିଁ କିମ୍ବା ମାଧବର ଶୋକରେ ଅଭିଭୂତ ହୋଇ ଛଟପଟ ହେଉଥିବା ସମୟରେ ସେ ମୋ ଆତ୍ମାକୁ

ଥରେହେଲେ ଆଡ଼ଆଖିରେ ଚାହିଁଲାନାହିଁ।

ଅନେକ ସମୟ ପର୍ଯ୍ୟନ୍ତ ରାତ୍ରିର ଅନ୍ଧକାର ମଧ୍ୟରେ ମୁଁ ନିଜକୁ ମିଶାଇଦେଇ ବାହାରକୁ ଏକଲୟରେ ଚାହିଁରହିଲି। ଏହି ସମୟରେ ଗୋଟିଏ ରଥ ଆସୁଥିବାର ଦେଖାଗଲା; କିନ୍ତୁ ରଥଟି ରାଜମାର୍ଗରୁ ରାଜମହଲ ଆଡ଼କୁ ତୀରବେଗରେ ଛୁଟିଆସୁଥିଲେ ମଧ୍ୟ ଟିକିଏ ହେଲେ ଶବ୍ଦ ଶୁଣାଯାଉନଥିଲା। ହଁ... ସେ ରଥରେ କଳାଘୋଡ଼ା ଚାରିଟି ଯୋଚାଯାଇଥିଲେ। ରଥଟା ରାଜଉଦ୍ୟାନର ବୃକ୍ଷଲତାଗୁଡ଼ିକୁ ମାଡ଼ି ଦଳିଚକଟି ଠିକ୍ ମୋରି କକ୍ଷରେ ବାତାୟନ ନିକଟରେ ଆସି ଛିଡ଼ାହୋଇଗଲା।

ସାରଥି ଧୀରେ ଆଗେଇଆସି କହିଲା – "ମହାରାଜ, ଯିବେ ?"

ମୁଁ କହିଲି, "ମହାରାଣୀ ଶୋଇପଡ଼ିଛନ୍ତି, ଅବୋଧ ଶିଶୁ ଯଦୁ ଶୋଇଛି; ସେମାନଙ୍କଠାରୁ ବିଦାୟ ନ ନେଇ...?"

ତା'ପରେ ସେ ଆଉ କ'ଣ କହିଲା ମୋତେ ଶୁଭିଲାନାହିଁ; କିନ୍ତୁ ଚାହୁଁ ଚାହୁଁ ତା'ର ହାତ ଲମ୍ବ ହୋଇ ମୋରି ଆଡ଼କୁ ଆଗେଇ ଆସି ମୋତେ ଗୋଟିଏ ଫୁଲ ପରି ଉଠାଇନେଇ ରଥରେ ବସାଇଦେଲା।

ରଥ ବାୟୁବେଗରେ ଉଡ଼ିଚାଲିଲା। ପଛରେ ରହିଗଲା ମୋର ପରିଚିତ ହସ୍ତିନାପୁର। ଏଥର ମୁଁ ଆଉ ନୀରବ ରହିପାରିଲିନାହିଁ।

ପଚାରିଲି – "ମୋତେ କୁଆଡ଼େ ନେଇଯାଉଛ ?"

– "ମୁଁ ଜାଣେ ନାହିଁ...।"

– "ଆମେ ପୁଣି କେତେବେଳେ ଫେରିବା ?"

– "ମୁଁ ଜାଣେନାହିଁ...।"

ମୁଁ ମନେ ମନେ ଖୁବ୍ ବିରକ୍ତ ହୋଇ ପଚାରିଲି – "ତୁମେ ଆଉ କ'ଣ ଜାଣିଛ ?"

– "କେବଳ ଦୁଇଟି ନାମ...।"

– "କାହାର...?"

– "ଜଣେ ହେଉଛନ୍ତି ଶ୍ରୀମାନ୍ ମହାରାଜ...।"

– "ଅନ୍ୟ ଜଣକ କିଏ ସେ ?"

– "ମୋ ନିଜ ନାଁ...?"

– "ତୁମ ନାମ କ'ଣ ?"

– "ମୃତ୍ୟୁ...।"

ଗୋଟିଏ ଭୟଙ୍କର ଆଭାସ ମୋ ମୁଣ୍ଡରେ ଖେଳିଗଲା। ମୁଁ ଭୟରେ ଥରିଉଠି ଦୃଢ଼ଭାବରେ ଝରକାର କାଠିଗୁଡ଼ିକୁ ଧରି ଛିଡ଼ାହୋଇରହିଲି। ମୋ ମୁଣ୍ଡ ଘୂରାଇଦେଲା। ମୋର ମନେହେଲା, ମୁଁ ତଳେ ପଡ଼ିଯିବି। ମୁଁ ଅନନ୍ୟୋପାୟ ହୋଇ ପୁଣି ମଦ୍ୟପାନ କଲି। ଖୁବ୍ ପେଟଭରି ମଦ୍ୟପାନ କରିବା ପରେ ମୋତେ ଟିକିଏ ଭଲଲାଗିଲା। ତା'ପରେ ମୋ ଆଖିକୁ ନିଦ ଲାଗିଆସିଲା। ସେହି ଅବସ୍ଥାରେ ମୁଁ ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖିଲି – ମୋ ଆଖି ଆଗରେ ଗୋଟିଏ ଚିତା ଧୂ... ଧୂ ହୋଇ ଜଳୁଛି, ସେହି ଚିତାରେ ମୋର ପ୍ରତ୍ୟେକ ଅଙ୍ଗ ଗୋଟିଏ ପରେ ଗୋଟିଏ ଜଳି ଭସ୍ମହୋଇଯାଉଛି।

ଚାହୁଁ ଚାହୁଁ ମୋର ଆଖି, କାନ, ନାକ, ହାତ ଗୋଡ଼ ସବୁ ଜଳି ପାଉଁଶହୋଇଗଲା । ମୁଁ ଭାବିଲି, ହାୟ... ମୁଁ କରିବି କ'ଣ? ଆଖି ଜରିଆରେ ମୁଁ ଯେଉଁ କମନୀୟ ମୂର୍ତ୍ତି ଦେଖିପାରୁଥିଲି, ଉଗ୍ର ତଥା ଉନ୍ମାଦକ ମଦିରା ପିଇ ମୋର ଓଠ ପରିତୃପ୍ତ ହେଉଥିଲା; ଆଉ ସେ ସୁଯୋଗ ମିଳିବ ନାହିଁ। ଚମ୍ପାଫୁଲ ପରି ସୁରଭିତ ପ୍ରିୟାର କେଶପାଶର ଆମୋଦ ମୁଁ ଆଘ୍ରାଣ କରିପାରିବି ନାହିଁ।

ଏ ଭୟଙ୍କର ଦୃଶ୍ୟ ଦେଖୁ ଦେଖୁ ମୋ ନିଶା ଛାଡ଼ିଗଲା, ମୁଁ ପଲଙ୍କ ଉପରେ ଚମକିଉଠି ବସିପଡ଼ିଲି। ମୋ ଛାତି ଥରଥର ହୋଇ କମ୍ପିଉଠିଲା। ମୃତ୍ୟୁ ମୋ ହୃଦୟରେ ପ୍ରଚଣ୍ଡ ଆଘାତ ଦେଉଥିଲା। ସେ ଆଘାତର ପ୍ରତିଧ୍ୱନି ମୋତେ ସ୍ପଷ୍ଟ ଶୁଣାଯାଉଥିଲା।

ମୋର ମୁଣ୍ଡ ଘୂରିଗଲା। ବାଣୁଆର ଶରାଘାତରେ ବ୍ୟାକୁଳ ହରିଣୀ ପରି, ମୋ ମନ ଇତସ୍ତତଃ ଭାବରେ ବ୍ୟାକୁଳ ହେବାକୁ ଲାଗିଲା। ମଦ୍ୟ ବିନା ସେ ପ୍ରକାର ଅବ୍ୟବସ୍ଥିତ ଅବସ୍ଥାରୁ ଉଦ୍ଧାର ପାଇବାର ଅନ୍ୟ କୌଣସି ଉପାୟ ନଥିଲା।

ମୁଁ କେବେହେଲେ ଏତେ ମଦ୍ୟ ପାନକରିନଥିଲି। ଧୀରେ ଧୀରେ ମୁଁ ନିଶାରେ ନିମଜ୍ଜିତ ହୋଇଗଲି। ମଦିରାର ମାଦକତା ଫଳରେ ମୋର ମାନସପଟଳରେ ଆହୁରି କେତେକ ଘଟଣା ଭାସିଉଠିଲା– ଅଳକାର ବେଣୀରେ ଗୁନ୍ଥାହୋଇଥିବା ସୁଗନ୍ଧିତ ପୁଷ୍ପଗୁଚ୍ଛ ମୋ' ଆଡ଼କୁ ନଇଁଆସିଲା। ମୁଁ ଦୁଇହାତରେ ତାର ବେଣୀରୁ ଫୁଲତକ ବାହାରକରିନେଇ ହାତରେ ମନ୍ଥି ଆଘ୍ରାଣ କରିବାରେ ଲାଗିଲି। ଉଚ୍ଛ୍ୱସିତ କଣ୍ଠରେ ପଚାରିଲା ଅଳକା– ''ଏ କ'ଣ ଯୁବରାଜ?''

ମୁଁ ଉତ୍ତର ଦେଲି– ''ଏ ପର୍ଯ୍ୟନ୍ତ ମୋ ମନ ତୃପ୍ତ ହୋଇନି, ମୋତେ ପ୍ରାଣଭରି ସୁଗନ୍ଧର ଆସ୍ୱାଦ ନେବାକୁ ସୁବିଧା ଦିଅ ଅଳକା।''

ଅଳକାକୁ ନିଜର ଭୁଜବନ୍ଧନରେ ବାନ୍ଧି ତା'ର ପ୍ରତ୍ୟେକ ଅବୟବର ଆସ୍ୱାଦ ନେବାଲାଗି ବ୍ୟାକୁଳ ହୋଇ ମୁଁ ହାତ ବଢ଼ାଇଦେଲି; କିନ୍ତୁ... କାହିଁ ମୋ ପ୍ରାଣର ପ୍ରେୟସୀ ଅଳକା? ମୁଁ ଆଖି ଖୋଲି ଚାରିଆଡ଼କୁ ନିରାଶପୂର୍ଣ୍ଣ ଦୃଷ୍ଟିରେ ଚାହିଁଲି; କିନ୍ତୁ ସେ ବିଶାଳ କକ୍ଷରେ ମୋ ବ୍ୟତୀତ ଆଉ କେହି ନଥିଲେ; ଥିଲି ମୁଁ ଏକାକୀ... ସଂପୂର୍ଣ୍ଣ ଏକୁଟିଆ। ଆଉ... ଅଳକା? ସେ କାହିଁ? ସେ କ'ଣ ଗୁପ୍ତଗମ୍ଭୀରି ଘରେ ଅଛି? ନା' ତ...। ସେ କ'ଣ ଆଉ କେଉଁଠି ନିର୍ଜନ ସ୍ଥାନରେ ଲୁଚିଛପି ବସିଛି? 'ଅଳକା'... 'ଅଳକା'... ମୁଁ ଚିତ୍କାର କରିଉଠିଲି।

ମୋର ଏ ପ୍ରକାର ଚିତ୍କାରର ଉତ୍ତର ଦେଲା କେହି ଜଣେ। କିନ୍ତୁ ସେ ତ ଅଳକା ନୁହେଁ? ନା... ମୁକୁଳିକା। ସେ କାହିଁ କେଉଁଠି? ଓଃ... ସେ ମୋ'ରି ଭୁଜବନ୍ଧନରେ। ମୁଁ ମୋର ପିଆସୀ ପ୍ରାଣକୁ ଶୀତଳ କରିବା ଲାଗି ଆଙ୍କିଦେଇଥିଲି ଶତଚୁମ୍ବନ; ସେ ମଧ୍ୟ ପ୍ରାଣପୂର୍ଣ୍ଣ ଆଶ୍ଳେଷରେ ମୋତେ ଜାବୁଡ଼ି ଧରି, ମୋ ଅଧରରେ ଅଧର ମିଶାଇ ପିଆଉଥିଲା ତା'ର ଗୋଲାପୀ ଅଧରର ମଧୁ। ମୁଁ ସୀମାହୀନ ଆକାଶର ଅଗଣିତ ତାରକା ଆଡ଼କୁ ଚାହିଁ ଆଙ୍କିଦେଇଥିଲି ମୁକୁଳିକାର କପୋଳରେ ଆବେଗଭରା ଚୁମ୍ବନ। ନା... ନା... ମୋ ପ୍ରାଣର ଆବେଗ ପରିତୃପ୍ତ ହେଉନଥିଲା; ମୁଁ ମୋର ଭୁଜବନ୍ଧନ ଆହୁରି ସୁଦୃଢ଼ କରିନେଇ ପିଉଥିଲି ତା' ଅଧରର ମଧୁ।

କିନ୍ତୁ... କିନ୍ତୁ... କାହିଁ... କିଏ ସେ କାହିଁ? ମୋ ଅଧର ତ କୁଆପଥର ପରି ଥଣ୍ଡା; ମୁକୁଳିକାର ଚୁମ୍ବନରେ ଉଷ୍ଣତା କାହିଁ? ନା... ନା... ଭ୍ରମ, ମିଥ୍ୟା। ମୁକୁଳିକା ମାଧବର ସେବାରେ ନିଯୁକ୍ତ ହୋଇଛି। କିନ୍ତୁ ମାଧବ? ମାଧବ କାହିଁ? ସେ ତ ମୃତ୍ୟୁର ହାତରେ ହାତ ଛନ୍ଦି... ଆଚ୍ଛା... ତା'ହେଲେ ମୋ ଅଧରରେ କାହାର ଏ ଶୀତଳ ସ୍ପର୍ଶ? ମୃତ୍ୟୁର? ମୃତ୍ୟୁର ନୁହେଁ ତ?

ମୁଁ ପୁଣି ଆଖି ଖୋଲି ଚାହିଁଲି। ଆରେ... କେଉଁ ବ୍ୟାକୁଳତାର ସହିତ ମୁଁ ଭାସିଚାଲିଛି? ମୁଁ ତ ମୋ କକ୍ଷରେ ଅଛି; ଏକାକୀ... ସଂପୂର୍ଣ୍ଣ ଏକାକୀ। ବୋଧହୁଏ ମୃତ୍ୟୁ ଅଦୃଶ୍ୟ ଭାବରେ ମୋ'ର ଚାରିପଟେ ଘୂରିବୁଲୁଛି। ତା' ହେଲେ ଏହା କ'ଣ ମୋ ଜୀବନର ଶେଷ ରାତ୍ରି? ଏହି ଅନ୍ତିମ ରାତ୍ରିର ଆନନ୍ଦ-ମଧୁ ମୁଁ ଆକଣ୍ଠ ପାନ ନକରିବି କାହିଁକି? ଜୀବନର ଏଇ ରିକ୍ତ ପିଆଲା ଆଉ ଥରକ ଲାଗି ପୂର୍ଣ୍ଣ କରିନିଏ; କମନୀୟ ନାରୀଅଧରରେ ଫେନିଳ ମଦିରା ଆଉ ଥରେ ମନ ତୃପ୍ତକରି ପିଇନିଏ।

"ଶର୍ମିଷ୍ଠା, ଶର୍ମିଷ୍ଠା, ଶର୍ମା... ଶ... ମା..." ମୁଁ ଉଠିପଡ଼ିଲି। ମୋ ପାଦ ଟଳମଳ ହେଉଛି; ତଥାପି ମୁଁ ଉଠିଲି... ଦ୍ୱାର ପର୍ଯ୍ୟନ୍ତ ଯାଇ ଗୋଟିଏ ଝୁଙ୍କରେ ଦ୍ୱାର ଖୋଲି ବାହାରକୁ ଚାଲିଗଲି।

× × × ×

ଦେବଯାନୀ ମହଲର ଦ୍ୱାରଦେଶରେ ଗୋଟିଏ ଦାସୀ ବସି ଢୁଳାଉଥିଲା। ମୋତେ ଦେଖିବାମାତ୍ରେ ସେ ଭିତରକୁ ଚାଲିଗଲା; କିନ୍ତୁ ସେ ଫେରିଆସିବା ପର୍ଯ୍ୟନ୍ତ ମୁଁ ଅପେକ୍ଷା କରି ରହିପାରିଲି ନାହିଁ। ମୋ ମନରେ ଜଳୁଥିବା ବାସନା, ଭୋଗଲିପ୍ସାର ଲେଲିହାନ ଶିଖା ମୋତେ ରାଜପୁରୀର ବନ୍ଧନ ଛିଣ୍ଡାଇ ଭିତରକୁ ଠେଲିଦେଲା। ଅତ୍ୟଧିକ ମଦ୍ୟପାନ ଫଳରେ ମୁଁ ପ୍ରାୟ ଚେତନା ହରାଇବସିଥିଲି। ଆଖି ଆଗରେ କେବଳ ନାଚୁଥିଲା ସୌନ୍ଦର୍ଯ୍ୟର ନଗ୍ନ ଆଭରଣ, ଗୋଲାପୀ ଅଧରର ମଧୁବୋଳା ରକ୍ତିମ ଆଭା। ମୁଁ ଦେବଯାନୀର ଶଯ୍ୟା ନିକଟରେ ପହଞ୍ଚିଗଲି। ତା'ପରେ କ'ଣହେଲା ଠିକ୍ ଭାବରେ ମୋର ମନେନାହିଁ, କିନ୍ତୁ ମନେଅଛି, କେବଳ ଦେବଯାନୀର ନିର୍ମମ, ନିର୍ଦ୍ଦୟ ତଥା ନିଷ୍କରୁଣ ବ୍ୟବହାର।

ମୁଁ ଚାହୁଁଥିଲି ତା'ର ସଂପୂର୍ଣ୍ଣ ଆତ୍ମସମର୍ପଣ। ସେ ଅଜାଡ଼ିଦେଉ ତା'ର ସୌନ୍ଦର୍ଯ୍ୟପସରା ମୋ'ରି ପାଦ ତଳେ। ସୁକୋମଳ ବଲ୍ଲରୀ ପରି ଜଡ଼ିଯାଉ ମୋ ବକ୍ଷ-ପାଦପରେ। କିନ୍ତୁ... ହାୟ... କୁପିତା ଫଣିନୀ ଦେବଯାନୀ... କ୍ରୋଧରେ ଜଳିଉଠିଲା... ତାଚ୍ଛଲ୍ୟ ଭାଷାରେ ମୋ'ର ପୌରୁଷ ପ୍ରତି ଧିକ୍କାର କରି, ଅନେକ କଟୁକଥା ଶୁଣାଇଲା। ମୁଁ ମଧ ନିଜକୁ ଆଉ ସମ୍ଭାଳିପାରିଲିନାହିଁ; ତା' କଟୂକ୍ତିର ପ୍ରତ୍ୟୁତ୍ତର ଦେଇ ମୁଁ ବେଶ୍ ଦି'ପଦ ଶୁଣାଇଦେବା ମଧରେ ଥରେ-ଅଧେ ଶର୍ମିଷ୍ଠା ନାମ ଧରି ତା'ର ପ୍ରଶଂସା କରିଦେଲି। ଦେବଯାନୀକୁ ଆଉ ସମ୍ଭାଳେ କିଏ? ଜଳନ୍ତା ନିଆଁରେ ଘିଅ ପଡ଼ିଲାପରି ସେ ହୁତୁହୁତୁ ହୋଇ ଜଳିଉଠିଲା। ମୁଁ ମଦ୍ୟପାନ ନକରିବା ପାଇଁ ଶୁକ୍ରାଚାର୍ଯ୍ୟଙ୍କ ନାମରେ ଶପଥ କରି ତାହା ଭଙ୍ଗକରିଥିବାରୁ, ତା'ରି ଅପରାଧ

ସ୍ୱରୂପ ସେ ମୋ'ରି ମୁହଁରେ ଆଉ ଗୋଟିଏ ଶପଥ କରାଇନେଲା – 'ମୁଁ ଭବିଷ୍ୟତରେ କେବେହେଲେ ତୁମକୁ ସ୍ପର୍ଶ କରିବିନାହିଁ।'

ମୁଁ ପରାଜିତ ତଥା ଅତୃପ୍ତ ବାସନାର ସହିତ ଦେବଯାନୀ ମହଲରୁ ଫେରିଆସିଲି। ଯେଉଁ ରାଜପ୍ରାସାଦରେ ମୋର ଅଧିକାର ନାହିଁ, ଯେଉଁଠି ମୁଁ ମୋର ବିବାହିତା ପତ୍ନୀକୁ ସ୍ପର୍ଶ କରିବାର ଅଧିକାର ହରାଇବସିଲି, ସେଠାରେ ରହିବିନାହିଁ ବୋଲି ମନେମନେ ସ୍ଥିରକରିନେଲି। ସେହିଦିନଠାରୁ ମୁଁ ଅଶୋକବନରେ ରହି ଶର୍ମିଷ୍ଠାର ମଧୁର ସ୍ମୃତିରେ କାଳ ବିତାଇବାକୁ ସ୍ଥିରକରି ଭାବିଲି, ଦେବଯାନୀର ମୁଖ ଆଉ ଦର୍ଶନକରିବିନାହିଁ।

ଅଶୋକବନକୁ ଯିବାଲାଗି ମୁଁ ରଥରେ ବସିପଡ଼ିଲି। ମୋ ଆଖି ଆଗରେ ପୃଥକ୍ ପୃଥକ୍ ଭାବରେ ଭାସିଉଠିଲା ଦେବଯାନୀ ଓ ଶର୍ମିଷ୍ଠାର ମୂର୍ତ୍ତି। ମୁଁ ଦୁହିଁଙ୍କର ସାନ୍ନିଧ ଚାହୁଁଥିଲି; କିନ୍ତୁ ଜଣେ ମୋତେ ପ୍ରତ୍ୟାଖ୍ୟାନ କରିଛି; ଆଉ ଜଣକୁ ମୁଁ ନିର୍ବାସିତ କରିଛି।

ରଥ ଅବିରାମ ଗତିରେ ଚାଲିଥାଏ। ମୋ ମାନସପଟରେ ଦୁହିଁଙ୍କର ଆକୃତି ମିଶିଯାଇ ଆଉ ଗୋଟିଏ ସ୍ୱତନ୍ତ୍ର ଲାବଣ୍ୟବତୀ ନାରୀମୂର୍ତ୍ତି ଭାସିଉଠିଲା। ପ୍ରତି ମୂହୂର୍ତ୍ତରେ ସେ ନାରୀର କମନୀୟ ଅଙ୍ଗଶୋଭା ମୋ ମନରେ ବିଚିତ୍ର ଉନ୍ମାଦନ ସୃଷ୍ଟିକଲା। ହଠାତ୍ ସେ ମୂର୍ତ୍ତି ଅଳକାରୂପରେ ପ୍ରତିଭାତ ହେଲା ଏବଂ ପରମୁହୂର୍ତ୍ତରେ ମୁକୁଳିକା . . .।

ମୁକୁଳିକା ଓ ତା'ରି ଗୁରୁମହାରାଜ ନୃତ୍ୟଶାଳାର ପଛପଟ ମଠରେ ରହୁଥିଲେ। ଭାବିଲି, ଅଶୋକବନକୁ ଯାଇ ସାରାରାତି ଛଟପଟ ହେବା ଅପେକ୍ଷା ମଠକୁ ନ ଯିବି କାହିଁକି? ଦେଖିବି, ମୋ ମନକୁ ଶାନ୍ତ କରିବା ଲାଗି କିଛି ଉପାୟ ମିଳିବ କି କ'ଣ?

ଅସମୟରେ ମଠଦ୍ୱାରରେ ମୋତେ ଦେଖିପକାଇ ମୁକୁଳିକା ପ୍ରଥମେ ଚମକିପଡ଼ିଲା; ପରେ ସେ ଲାସ୍ୟମୟୀ ଛଟାରେ ଟିକିଏ ସରମବୋଳା ହସ ହସିଦେଇ ମୋତେ ତା'ର ଗୁରୁମହାରାଜଙ୍କ ନିକଟକୁ ଘେନିଗଲା। ଗୁରୁମହାରାଜଙ୍କର ରାଜସିକ ମୂର୍ତ୍ତି ମୋତେ ଚିହ୍ନାଚିହ୍ନା ପରି ବୋଧହେଲା; କିନ୍ତୁ ମୁଁ ତାଙ୍କ ସମ୍ବନ୍ଧରେ କିଛି ମନେ ପକାଇ ପାରିଲି ନାହିଁ। ମୁଁ ତାଙ୍କ ଆଗରେ ମୋ ମନର ଅବସ୍ଥା ସମ୍ବନ୍ଧରେ ଜଣାଇଦେଇ ମଦ୍ୟପାନ କରି ମଠକୁ ଆସିଥିବାରୁ କ୍ଷମା ପ୍ରାର୍ଥନା କଲି। ସେ ମୋ କଥା ଶୁଣି ହସିହସି କହିଲେ, "ମହାରାଜ, ଆପଣ ନିଜ ମନକୁ ଆଶ୍ୱସ୍ତ କରିବାର କେତେକ ଉପାୟ ଆଦରିନେଲେଣି।"

ମୁଁ ବିସ୍ମିତ ହୋଇ ପଚାରିଲି – "ଯଥା' ମାନେ?"

"ମହାରାଜ, ଏ ହେଉଛି ମୃତ୍ୟୁଲୋକ। ଏଠାରେ ମାନବଜୀବନକୁ ଜରାଜୀର୍ଣ୍ଣ କରିବାର ସମସ୍ତ ଉପାଦାନ ରହିଛି। ସେହି ଦୁଃଖଜାଲରୁ ମୁକୁଳାଇବା ଲାଗି ଏଠାରେ ଦୁଇଟି ପ୍ରଧାନ ଉପାୟ ରହିଛି।"

ମୁଁ ଅତ୍ୟନ୍ତ ଆଗ୍ରହୀ ହୋଇ ପଚାରିଲି – "କ . . . ଅ . . . ଣ?"

– "ମଦିରା ଓ ମଦିରାକ୍ଷୀ . . .।"

ମୁଁ ଆଶ୍ଚର୍ଯ୍ୟ ହୋଇଗଲି; କିନ୍ତୁ ମନକୁ ଖୁବ୍ ଦୃଢ଼କରି ପଚାରିଲି, "ମଦ୍ୟପାନ, ମହାପାପ . . .!"

ଗୁରୁମହାରାଜ ଟିକିଏ ଗମ୍ଭୀର ହୋଇ କହିଲେ – "ମହାରାଜ, ପାପ ଓ ପୁଣ୍ୟ ଧୂର୍ତ୍ତ ପଣ୍ଡିତମାନଙ୍କର ଏକ କୌଶଳପୂର୍ଣ୍ଣ ଉଦ୍‌ଭାବନ। ଏ ସଂସାରରେ ସୁଖ ବା ଦୁଃଖ କେବଳ ସତ୍ୟ, ଅନ୍ୟ ସବୁକିଛି ମାୟା। ପାପ ଓ ପୁଣ୍ୟ କେବଳ ମନର ଆଭାସ, କଳ୍ପନାର ଚମତ୍କାରିତା। ମୁଁ ନିଜ ଭକ୍ତମାନଙ୍କ ମଧ୍ୟରେ ତୀର୍ଥବାରି ପରି ମଦିରା ବିତରଣକରେ।"

ଗୁରୁମହାରାଜଙ୍କ କଥା ଶୁଣି ମୁଁ ମୋର ନିଜ କାନକୁ ବିଶ୍ୱାସ କରିପାରିଲିନାହିଁ। ଭାବିଲି, ମୁଁ ସ୍ୱପ୍ନ ଦେଖୁନାହିଁ ତ ? ଗୁରୁମହାରାଜ ଛିଡ଼ାହୋଇଯାଇ କହିଲେ – "ମହାରାଜ, ଆପଣ ଶାନ୍ତି ପାଇବାକୁ ଚାହାନ୍ତି ତ ? ସେଥିଲାଗି ମୋ ନିକଟରେ ଅନେକ ଦେବୀ ଅଛନ୍ତି, ଆପଣ ଇଚ୍ଛାନୁସାରେ ଯେକୌଣସି ଦେବୀଙ୍କର ଆରାଧନାରେ ନିଯୁକ୍ତ ହୋଇପାରନ୍ତି।"

ସେ ଚାଲିବାକୁ ଆରମ୍ଭକଲେ। ମୁଁ ତାଙ୍କ ପଛେ ପଛେ ଯନ୍ତ୍ରଚାଳିତ ପରି ଅନୁଗମନ କଲି। ମୋତେ ଜଣାପଡୁଥିଲା; ସତେଯେପରି ଯୁଗ-ଯୁଗର ସୂଚୀଭେଦ୍ୟ ଅନ୍ଧକାର ଭେଦକରି ପର୍ବତଶିଖର ଉପରୁ ମୁଁ କୌଣସି ଗଭୀରତମ ବୃହଦାକାର ଗର୍ତ୍ତ ଆଡ଼କୁ ଅଗ୍ରସରହେଉଛି।

# ଶର୍ମିଷ୍ଠା

ଦୀର୍ଘ ଅଠରବର୍ଷ ପରେ ମୁଁ ପୁଣି ହସ୍ତିନାପୁରକୁ ଫେରିଲି। ଯେଉଁ ବାଟଦେଇ ଯାଇଥିଲି, ସେହି ପଥରେ, ଠିକ୍ ସେହିପରି ଭୟଗ୍ରସ୍ତ ମନରେ। ସେହି ରାଜମାର୍ଗରେ ବଡ଼ ବଡ଼ ଗଛ ଠିକ୍ ସେହିପରି ଛିଡ଼ାହୋଇଥିଲେ। ଗାଁଗହଳର କୋଳାହଳମୟ ବାତାବରଣ ସେଦିନ ପରି ଶାନ୍ତ, ସାନ୍ଦ୍ର ତଥା ନୀରବ; ଅଠର ବର୍ଷ ମଧ୍ୟରେ କିଛିହେଲେ ପରିବର୍ତ୍ତିତ ହୋଇନଥିଲା; କିନ୍ତୁ ଶର୍ମିଷ୍ଠା . . .।

ମୁଁ କ'ଣ ଅଠର ବର୍ଷ ତଳର ସେହି ଶର୍ମିଷ୍ଠା? ନା . . . ଏ ଶର୍ମିଷ୍ଠା ସଂପୂର୍ଣ୍ଣ ଭିନ୍ନ। ସେଦିନର ଶର୍ମିଷ୍ଠା ଥିଲା ମାଆ, ପତ୍ନୀ ଓ ପ୍ରଣୟିନୀ, କିନ୍ତୁ ଆଜିର ଶର୍ମିଷ୍ଠା କେବଳ ମାଆ। ଆଜି କେବଳ ମୋ ମନରେ ଗୋଟିଏ ମାତ୍ର ପ୍ରଶ୍ନ– 'ମୋ ପୁରୁ କୁଶଳରେ ଅଛି ତ?'

ଶୁକ୍ରାଚାର୍ଯ୍ୟଙ୍କ ଘୋର ତପସ୍ୟା ଲାଗି କଚ, ଯତି, ଅଙ୍ଗୀରସ ପ୍ରଭୃତିଙ୍କ ମନରେ ଯେଉଁ ଆତଙ୍କ ସୃଷ୍ଟି ହୋଇଛି, ସେ ପ୍ରକାର ଭୟ ମୋ ମନକୁ ସ୍ପର୍ଶକରିନଥିଲା। ମୋ ମନରେ କେବଳ ଏକମାତ୍ର ଆଶଙ୍କା ଥିଲା– 'ମୋ ପୁରୁ କେଉଁଠି?' ବିଜୟୀ ଯୁବରାଜ ଯଦୁ ସହିତ ସେ କ'ଣ ହସ୍ତିନାପୁର ଯାଇଥିବ? ସେ ଯଦି ଯାଏ, ତାକୁ କ'ଣ ଦେବଯାନୀ ଚିହ୍ନିପାରିବ? ଯଦି ଦେବଯାନୀ ତାକୁ ଚିହ୍ନେ।

ମୋ ସହିତ ଏବେ ପ୍ରହରୀ ଅଛନ୍ତି; ତା' ବ୍ୟତୀତ ଅଳକା ମଧ୍ୟ ରହିଛି। ଏହି ସ୍ୱର୍ଣ୍ଣକେଶୀ ଅଳକାକୁ ପୁରୁ ପ୍ରେମକରୁଛି; କିନ୍ତୁ ସେ ମୁହଁ ଖୋଲି ଏ କଥା କେବେହେଲେ କହୁନାହିଁ। ଫୁଲଟିଏ ଫୁଟିଲେ କେହି କ'ଣ ତାର ସୁଗନ୍ଧକୁ ଗୋପନ ରଖିପାରିବ? ଏ ଝିଅଟା ମୋ ସାଥିରେ ଯିବାଲାଗି ଜିଦ୍ ଧରୁଛି; କିନ୍ତୁ ପୁରୁକୁ ରାଜିକରାଇବାଲାଗି ଏ ଝିଅଟିକୁ ହାତରେ ରଖିବା ନିହାତି ଦରକାର। ସେଇଥିପାଇଁ ମୁଁ ଏହାକୁ ସାଥିରେ ଆଣିଛି; କିନ୍ତୁ ଦୁଃଖଦ ମୁହୂର୍ତ୍ତରେ ଏ ଝିଅଟି ଆଖିରୁ ଲୁହଧାର ପୋଛୁଥିବାର ଦେଖିଲେ ମନ ବିକଳ ହୋଇଉଠେ। ଅଧରାତି ବିତିଯାଇଥିଲେ ସୁଦ୍ଧା ମୋ ଆଖିକୁ ନିଦ ଆସୁନାହିଁ। ଅତୀତର ସମସ୍ତ ଘଟଣା ଗୋଟି ଗୋଟି ହୋଇ ମୋର ମନେପଡ଼ିଯାଉଛି। ସେଦିନର ଭୟଙ୍କର ରାତ୍ରି . . .!

ସେଇ ରାତିଅଧରେ ମୋତେ ଛାଡ଼ିଦେଇ ମାଧବ ଚାଲିଗଲେ। ସେଇ ମୁଷଳଧାରା ବର୍ଷାମୁଖର ରାତିରେ ମୁଁ ଏକାକୀ ରହିଗଲି। ନା . . . ଏକୁଟିଆ ନୁହେଁ, ମୋ ପୁରୁ ମଧ ରହିଛି। ବର୍ଷାରେ ଭିଜି ସେ ଓଦା ସରସର ହୋଇଯାଇଛି; କାଲି ଯଦି ସେ ରୋଗରେ ପଡ଼ିଯାଏ? ପ୍ରକୃତିର ସେହି ଉଦ୍ଦଣ୍ଡତା ଲାଗି ମୋ ମନରେ ଭୀଷଣ କ୍ରୋଧ ଜାତହେଲା। କାହାରି ମନରେ ଟିକିଏ ଦୟା ହେଲା ନାହିଁ, ବିଚରା ଅବୋଧ ଶିଶୁଟି ପ୍ରତି କାହାରି ମନରେ ଅନୁକମ୍ପା ଜାତହେଲାନାହିଁ। ମୋ ମନରେ ଧୈର୍ଯ୍ୟ ଦେଲାଭଳି କାହାରି ସାହସ ହେଲାନାହିଁ; କିନ୍ତୁ ତା' ପରିବର୍ତ୍ତେ ସେହି

ପ୍ରାକୃତିକ ସ୍ଥିତି ମୋତେ ଭୟଭୀତ କରିପକାଇଲା। ଦେହକୁ ଜାଳିପୋଡ଼ି ଦେଉଥିବା ଗରମପବନ, ଗର୍ଜି ଘୁମୁରି ଆସୁଥିବା କଳାମେଘ, ଚକ୍‌ଚକ୍ ମାରୁଥିବା ବିଜୁଳି, ଏମାନଙ୍କର ମୋପ୍ରତି ତିଳେହେଲେ ଦୟାମାୟା ନଥିଲା। ଯେଉଁ ପରିବେଶରେ ପଡ଼ି ରକ୍ତମାଂସ-ଶରୀରଧାରୀ ପାଷାଣ ହୋଇଯାଇଥିଲେ, ସେଠାରେ ନିର୍ଜୀବ ଉପାଦାନରୁ ମାନବତା ଆଶା କରିବା ଅଳୀକ କଳ୍ପନା ନୁହେଁ କି? ଦେବଯାନୀ ମୋତେ ମାରିଦେବାକୁ ବସିଥିଲା; ମହାରାଜ ଟିକିଏ ସାହସିକ ପଦକ୍ଷେପ ନେଇନଥିଲେ ମୋର ଜୀବନ-ନାଟିକା ସେଇ ବନ୍ଦିଗୃହରେ ଚିରଦିନଲାଗି ଅଟକିଯାଇଥାନ୍ତା। କିନ୍ତୁ...?

ସୀମାର ଆରପାଖକୁ ଯାଇ ପ୍ରେମ କରିବା କ'ଣ ମନୁଷ୍ୟ ଶକ୍ତିର ବାହାରେ? ଏ କଥା କିନ୍ତୁ ସତ୍ୟ ଯେ, ମହାରାଜ ମୋର ପ୍ରାଣରକ୍ଷା କରିଛନ୍ତି। କିନ୍ତୁ ତାଙ୍କ ସ୍ନେହର 'ଶମା'କୁ ସେ କିପରି ଏ ଘନ-ଘୋର ରାତିରେ ମୂର୍ଚ୍ଛିପାରିଲେ? ସେ ତ ଏ କଥା କହିପାରିଥାନ୍ତେ ଯେ, 'ଶର୍ମିଷ୍ଠା, ମୋର ରାଜ୍ୟ, ଧନ, ପ୍ରଜା କିଛିହେଲେ ଦରକାର ନାହିଁ, ମୁଁ କେବଳ ଚାହେଁ ତୁମକୁ, ତୁମରି ପ୍ରଣୟ! ଚାଲ, ମୁଁ ତୁମ ସହିତ ଏ ସମସ୍ତ ଆଡ଼ମ୍ବର ତ୍ୟାଗକରି ହିମାଳୟର ନିଘଞ୍ଚ ଅଞ୍ଚଳକୁ ଯିବାଲାଗି ପ୍ରସ୍ତୁତ ଅଛି।' ଏଇ କଥାପଦକ ଶୁଣି ମୁଁ କେଡ଼େ ଆନନ୍ଦିତ ହୋଇନଥାନ୍ତି। ମୋ ମନରେ କେତେ ଧୈର୍ଯ୍ୟ ଆସିନଥାନ୍ତା?

ମୁଁ ଏହା କରିବାଲାଗି କେବେହେଲେ ତାଙ୍କୁ ସୁବିଧା ଦେଇନଥାନ୍ତି; କିନ୍ତୁ ସେଇ ମଧୁର ପ୍ରୀତିବୋଳା କଥା ମୋ ଜୀବନର ସଞ୍ଜୀବନି ହୋଇ କାଳକାଳକୁ ରହିଥାନ୍ତା ତ! ତା'ହେଲେ ଏଇ ଅକାଳ ମେଘଗର୍ଜନ, ଚମକପ୍ରଦ ବିଜୁଳି, ଏଇ ପ୍ରଚଣ୍ଡ ରୌଦ୍ର ତଥା ପ୍ରଭଞ୍ଜନ ମୋ ମନରେ ତିଳେହେଲେ ଭୟ ସଞ୍ଚାର କରାଇପାରିନଥାନ୍ତେ। ତଥାପି ମୁଁ ସାରା ରାତି ଏ ସବୁକୁ ଭ୍ରୂକ୍ଷେପ ନକରି ଜୀବନବିକଳରେ ଧାଇଁଛି ଆଶ୍ରୟ ପାଇବାପାଇଁ। ସତେ କ'ଣ ମହାବିପଦ ସମୟରେ ମନରେ ଅଲୌକିକ ଶକ୍ତି ଜାଗିଉଠି ମଣିଷକୁ ବିପଦର ସମ୍ମୁଖୀନ ହେବାଲାଗି ବଳ ଯୋଗାଏ? କିନ୍ତୁ ରାଜକନ୍ୟାଭାବରେ ମୋର ଜନ୍ମ, ସୁଖ ଓ ସୌଭାଗ୍ୟମୟ ମାର୍ଗରେ ମୋର ଜୀବନଧାରା ଗଡ଼ିଆସିଛି; ଫୁଲଶେଯରେ ମୋର ଅଙ୍ଗଲତିକା ଅଭ୍ୟସ୍ତ; ତଥାପି ବଣଜଙ୍ଗଲର କଣ୍ଟା, ଖୁଣ୍ଟ, ଖାଇ ଡିପ ନମାନି ମୁଁ ଜୀବନପଥରେ ଆଗେଇଚାଲିଛି। ହସ୍ତିନାପୁରର ମୃତ୍ୟୁଗୁମ୍ଫାଠାରୁ ମୁଁ ଦୂରକୁ, ବହୁ ଦୂରକୁ ପଳାଇଯାଇ ଜୀବନରକ୍ଷାର ସନ୍ଧାନ ପାଇଛି। ସେ ସମୟରେ ମୁଁ ନଥିଲି ମହାରାଜ ବୃଷପର୍ବାଙ୍କର କନ୍ୟା, ମହାରାଜ ଯଯାତିଙ୍କର ପ୍ରଣୟିନୀ; କେବଳ ଏ ସଂସାରରେ ମୋର ଏକମାତ୍ର ପରିଚୟ ଥିଲା— ମୁଁ ଜନନୀ। ଏ ଅବୋଧ ତଥା ସୁକୁମାର ଶିଶୁଟିକୁ ବକ୍ଷରେ ଭିଡ଼ି ଧରି ତା'ରି ଜୀବନରକ୍ଷାଲାଗି ମୁଁ ଧାଇଁଚାଲିଛି; ସୀମାହୀନ ଲକ୍ଷ୍ୟହୀନ ପଥରେ। ପରିଣାମରେ ମୁଁ ଚାହୁଁଥିଲି ତାର ଶୌର୍ଯ୍ୟ ତଥା ପୌରୁଷପୂର୍ଣ୍ଣ ଅବୟବ। ତାକୁ ହିଁ ଦେଖି ମୁଁ ଚିରଦିନଲାଗି ଆଖି ବୁଜିଦେବାକୁ କାମନା କରୁଥିଲି।

ପରଦିନ ପ୍ରଭାତକାଳରେ କୌଣସି ଗୋଟିଏ ଗ୍ରାମର ଉପକଣ୍ଠରେ ଥିବା ଏକ ଜୀର୍ଣ୍ଣ ଦେବାଳୟରେ ମୁଁ ଟିକିଏ ବିଶ୍ରାମ ନେବାକୁ ଇଚ୍ଛାକଲି। ହଠାତ୍ ମୋ ମନରେ ପ୍ରଶ୍ନ ଉଙ୍କିମାରିଲା— ମୁଁ ଯିବି କୁଆଡ଼େ? ବାପଘରକୁ ଫେରିଯିବି? ନାତିଟିକୁ ଦେଖିଲେ

ବାପା ମାଆ କେତେ ଖୁସିନହେବେ ? କିନ୍ତୁ ସେ ଯଦି ଜାଣିବେ ଯେ, ଶର୍ମିଷ୍ଠା ଦେବଯାନୀର ସପତଣୀ ହୋଇଯାଇଛି ଏବଂ ଗୁରୁକନ୍ୟା ତାଙ୍କ ଅଳିଅଳ କୁମାର ପ୍ରାଣବିନାଶ ଲାଗି ଚେଷ୍ଟାଚଳାଇଛି, ତେବେ ତାଙ୍କ ମନରୁ ସମସ୍ତ ଆନନ୍ଦ କୁଆଡ଼େ ଉଭେଇ ଯିବ ନାହିଁ କି ? ତପସ୍ୟାରେ ରତ ମହାକ୍ରୋଧୀ ଶୁକ୍ରାଚାର୍ଯ୍ୟ କାଳେ ତାଙ୍କୁ ଅଭିଶାପ ଦେଇ ସମଗ୍ର ରାକ୍ଷସକୁଳକୁ ଧ୍ୱଂସକରିଦେବେ, ଏହି ଭୟରେ ସେ ବିବ୍ରତ ହୋଇପଡ଼ିବେ। ପିତାଙ୍କ ନିକଟକୁ ଯାଇ ତାଙ୍କୁ ଏ ପ୍ରକାର ଅସୁବିଧାରେ ପକାଇବା ଅପେକ୍ଷା ବରଂ . . . ମୁଁ ଭାବିଲି– ଏତେ ବଡ଼ ଗହଳଚହଳପୂର୍ଣ୍ଣ ସଂସାରରେ ମଣିଷ କ'ଣ ଏକୁଟିଆ ହୋଇପାରେ ? ଏଡ଼େ ବିଶାଳ ଦୁନିଆରେ ଗୋଟିଏ ମାତ୍ର ଅବୋଧ ଶିଶୁ ବ୍ୟତୀତ କାହାରି ଉପରେ ମୋର କିଛିହେଲେ ଅଧିକାର ନାହିଁ ?

ବଡ଼ିସକାଳୁ ମନ୍ଦିରକୁ ଜଣେ ଦୟାଳୁ ସ୍ତ୍ରୀ ଆସି ମୋତେ କେତେ ପ୍ରକାର ପଚରାଉଚରା କଲେ। ତାଙ୍କର ମୋ ପ୍ରତି ମମତା ଦେଖି ମୋ ଆଖିରୁ ଝରଝର ହୋଇ ଲୁହଧାର ଝରିପଡ଼ିଲା। କିଏ ଜାଣେ, କେତେବେଳେ ପରମାତ୍ମା କେଉଁ ରୂପରେ ଆସି ମଣିଷକୁ ଦେଖାଦିଅନ୍ତି ? ମୋତେ ଦେଖିପକାଇ ସେ ମନେକଲେ, ସତେ ଅବା ସାନଭଉଣୀଟିଏ ତାଙ୍କ ଘରକୁ ଆସିଯାଇଛି।

କେତେଦିନ ବେଶ୍ ଆନନ୍ଦରେ ବିତିଗଲା। ସେଦିନ କାଳରାତ୍ରିରେ ଭୋଗିଥିବା ଅଶେଷ ଦୁଃଖଯୋଗୁ ମୁଁ ଭାବିଲି ପୁରୁ ହୁଏତ ବେମାର ପଡ଼ିଯାଇପାରେ; କିନ୍ତୁ ଦୁଇ ଚାରିଦିନ ନିର୍ବିଘ୍ନରେ କଟିଗଲା ପରେ, ମୋ ମନରୁ ସେ ଭୟ ଦୂରହୋଇଗଲା। ମୁଁ ଯେଉଁଠି ଆଶ୍ରୟ ନେଇଥିଲି ସେ ଗାଁଟି ହସ୍ତିନାପୁରଠାରୁ ବେଶି ଦୂରରେ ନଥିଲା। ସେଥିପାଇଁ ମନରେ ସବୁବେଳେ ଭୟ ଜାତହେଲା, ମୁଁ ସେଠାରେ ରହିବି ନା ନାହିଁ। କିନ୍ତୁ ସେ ଭଉଣୀଙ୍କ ସହିତ ମୁଁ ଏତେ ମିଳିମିଶି ଯାଇଥିଲି ଯେ ଭାବିଲି, କିପରି ତାଙ୍କର ସ୍ନେହବନ୍ଧନ ଛିଡ଼ାଇ ଦୂରକୁ ଚାଲିଯିବି ?

ପଞ୍ଚମ ଦିନ ରାତିରେ ମୁଁ କୋଳରେ ପୁରୁକୁ ଧରି ଶୋଇପଡ଼ିଥିଲି; ମୋର ମାନସପଟରେ କେତେ ମଧୁର ସ୍ୱପ୍ନର ତରଙ୍ଗ ଖେଳିଯାଉଥିଲା। ହଠାତ୍ ମୁଁ ସ୍ୱପ୍ନ ଦେଖିଲି . . . ପୁରୁ ପା . . . ପା . . . ପା କହି ମହାରାଜଙ୍କ ନିକଟକୁ ଚାଲିଯାଇ ତାଙ୍କ ଗଳାରେ ଝୁଲିପଡୁଛି। ସେତିକିବେଳେ ଚମକିପଡ଼ି ମୁଁ ଉଠିପଡ଼ିଲି। ଜଣାଗଲା, କାହାର ରୁକ୍ଷସ୍ପର୍ଶ ମୁଁ ଅନୁଭବ କରୁଛି। ମୁଁ ଆଖି ଖୋଲି ଦେଖିଲି, ସେହି କରୁଣାର ମୂର୍ତ୍ତି ନାରୀଙ୍କ କାମୁକ ସ୍ୱାମୀ ଧୀରେ ଧୀରେ ମୋ କୁଟୀରରୁ ବାହାରିଯାଉଛି। ମୁଁ 'ନାନୀ' ବୋଲି ଚିତ୍କାରକରି ଉଠିପଡ଼ିଲି; ସଙ୍ଗେ ସଙ୍ଗେ ସେ ସ୍ତ୍ରୀ ଦୌଡ଼ିଆସି ପଚାରିଲେ– "କ'ଣ ହେଲା ଭଉଣୀ !" ମୁଁ ଭୟରେ ବିଚଳିତ ହୋଇ କହିଲି– "କ'ଣ ଗୋଟେ ସର୍‌ସର୍ ହୋଇ ମୋ ଦେହ ଉପରେ ଚାଲିଗଲା।" ସେ ନିଜ ସ୍ୱାମୀକୁ ଡାକପକାଇଲେ; ଗାଢ଼ନିଦ୍ରାରେ ଶୋଇଥିବାର ଛଳନା କରି ହାତରେ ଆଲୁଅ ଧରି ଆସି ସେ ଘରଟିର ଅନ୍ଧିସନ୍ଧି ଖୋଜିପକାଇଲେ; କିନ୍ତୁ ମନୁଷ୍ୟରୂପରେ ସେ ଘରକୁ ପ୍ରବେଶ କରିଥିବା କାଳସର୍ପର ପତ୍ତା ମିଳନ୍ତା କାହୁଁ ? ପୂର୍ବଜନ୍ମର ମୋର ସେ ଭଉଣୀ ପ୍ରତି ମୋ ମନରେ ଦୟା ଜାତହେଲା। ହାୟ ବିଧାତା, ଏ ମମତାମୟୀ ଭଉଣୀଟି ଭାଗ୍ୟରେ ଏପରି ଗୋଟିଏ କାଳସର୍ପ ବାନ୍ଧିଦେଇଛ ?

ଏଥର ଗୋଟିଏ ନୂତନ ଆଶଙ୍କା ମୋ ମନରେ ଜାତହେଲା । ଆଜିସୁଦ୍ଧା ରାଜମହଲ ମଧ୍ୟରେ ଥିବାରୁ ମୋର ସୌନ୍ଦର୍ଯ୍ୟ ସୁରକ୍ଷିତ ଅବସ୍ଥାରେ ରହିଥିଲା; କିନ୍ତୁ ଏଥର ପୁତ୍ରକୁ ରକ୍ଷାକରିବା ସଙ୍ଗେ ସଙ୍ଗେ ନିଜକୁ ମଧ୍ୟ ମୋତେ ରକ୍ଷାକରିବାକୁ ପଡ଼ିବ। ପରଦିନ ମୁଁ ଅନେକ ପ୍ରକାର ମିଥ୍ୟା ଛଳନା କରି ସେ ଭଉଣୀଠିଁାରୁ ବିଦାୟନେଲି। ଚାଲିଯାଉଥିବାବେଳେ ମୋର ଆଖି ଛଳଛଳ ହୋଇଗଲା; ମୁଁ ଭାବିଲି, ଏଇ ସଂଯୋଗ ବିଯୋଗର ଅଦ୍ଭୁତ ମିଳନ ହିଁ କ'ଣ ଜୀବନ ?

ହସ୍ତିନାପୁରଠାରୁ ବହୁ ଦୂରକୁ ଚାଲିଯିବା ଲାଗି ଠିକ୍‌କରି, ମୁଁ କେତେକେତେ ଗାଁଗଣ୍ଡା ଛାଡ଼ି ଅଙ୍କାବଙ୍କା ରାସ୍ତା ଦେଇ ଆଗେଇଚାଲିଲି। କୌଣସିଠାରେ ଗୋଟିଏ ରାତି ବ୍ୟତୀତ ଅଧିକ ସମୟ ରହିଲିନାହିଁ। ଅନେକ ଲୋକଙ୍କର ଭିନ୍ନ ଭିନ୍ନ ଧରଣରର ପ୍ରଶ୍ନର ଉତ୍ତର ଦେଇ, ମୁଁ ଅଗ୍ରସର ହେବାକୁ ଲାଗିଲି। କେହି ବେଶି ଜିଦ୍ କରି ପଚାରିଲେ ଉତ୍ତର ଦେଲି– ''ସ୍ୱାମୀ ଆମକୁ ଛାଡ଼ି ସନ୍ନ୍ୟାସୀ ହୋଇ ହିମାଳୟ ଆଡ଼କୁ ଚାଲିଯାଇଛନ୍ତି; ତାଙ୍କରି ସନ୍ଧାନରେ ବାହାରିପଡ଼ିଛି।'' କେହି ମୋର ଅବସ୍ଥା ସମ୍ବନ୍ଧରେ ଚିନ୍ତାକରି ଦୟାରେ ଦ୍ରବୀଭୂତ ହୋଇ ଦି'ପଦ 'ଆହା' ବାଣୀ ଶୁଣାଇଲେ, ଆଉ କେହି ମୋ କଥା ଶୁଣି ଫୁସ୍‌ଫାସ୍ ହୋଇ ମୁରୁକିହସା ଦେଇ ଥଟ୍ଟା କରିବାକୁ ଲାଗିଲେ।

ମୋର ଧାରଣା ହୋଇଥିଲା– ପ୍ରବାସର କଷ୍ଟ ପୁରୁ ପକ୍ଷରେ ଅସହ୍ୟ ହୋଇଉଠିବ; କିନ୍ତୁ ନୂଆ ନୂଆ ଗାଁ, ମନ୍ଦିର, ଗଛ, ଲତା, ନଦୀ, ନାଳ ଦେଖି ସେ ଖୁସିହେଲା; ସତେ ଅବା ପ୍ରତିଦିନ ସେ ନୂଆ ନୂଆ ଖେଳନା ପାଇଯାଉଛି।

ମୁଁ ହସ୍ତିନାପୁରଠାରୁ ବହୁଦୂରକୁ ଚାଲିଯାଇ ଗୋଟିଏ ଗ୍ରାମରେ କିଛିଦିନ ବିଶ୍ରାମନେଲି। ଗୃହସ୍ୱାମିନୀ ବୃଦ୍ଧା ବିଧବା ମୋ ଅବସ୍ଥା ଦେଖି ଅନେକ ଖୋଳିତାଡ଼ି ପ୍ରଶ୍ନକଲେ। ମୁଁ ପୂର୍ବପରି ଗୋଟିଏ ପ୍ରକାର ଉତ୍ତର ଦେଇ ତାଙ୍କ ମନରେ ମମତାର କ୍ଷୀଣ ଆଲୋଡ଼ନ ସୃଷ୍ଟିକଲି। ସେ ଅତ୍ୟନ୍ତ ସହାନୁଭୂତି ପ୍ରକାଶକରି କହିଲେ– ''ଏପରି ଚନ୍ଦ୍ରବଦନୀ ପତ୍ନୀ, ରାଜକୁମାର ପରି ସୁକୁମାର ପୁତ୍ରକୁ ଛାଡ଼ି କିପରି ଜଣେ ଲୋକ ସନ୍ନ୍ୟାସୀ ହୋଇଯାଇପାରେ ? ହାୟରେ ଭାଗ୍ୟ ...''

ଦିନସାରା ସେ ମୋ ଆଡ଼କୁ ନିରୀକ୍ଷଣ କରି ଚାହୁଁଥିଲା। ମୁଁ ଆଦୌ ବୁଝିପାରିଲିନି ଯେ ସେ ମୋ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ଏପରି ଚାହୁଁଛି ନା ଯା' ମଧ୍ୟରେ କିଛି ରହସ୍ୟ ଅଛି ? ମୁଁ ମନେ ମନେ ଖୁବ୍ ଚିନ୍ତିତ ହୋଇଉଠିଲି। ରାତିରେ କେବଳ ଆଖିବୁଜି ପଡ଼ିଥାଏ, ଆଖିକୁ ଆଦୌ ନିଦ ଆସୁନଥାଏ। ସେହି ସମୟରେ ମୋ ଆଖିଆଗରେ ନାଚିଗଲା ମୋର ସୌଭାଗ୍ୟପୂର୍ଣ୍ଣ ଦିନଗୁଡ଼ିକ– ମୁଁ ମହାରାଜଙ୍କର ଭୁଜବନ୍ଧନରେ ରହି କିପରି ସୁକୁମାର ଲତିକା ପରି ଜଡ଼ିଯାଇଥାଏ ତାଙ୍କର ପ୍ରଶସ୍ତ ବକ୍ଷ ଉପରେ। ମୁଁ ସେହି ଅର୍ଦ୍ଧନିଦ୍ରିତାବସ୍ଥାରେ କେତେ କ'ଣ ଆକାଶପାତାଳ ଭାବିଗଲି। ମୋ ସ୍ମୃତିପଟଳରେ ସାଇତା ହୋଇ ରହିଥିବା କେତେ କ'ଣ ଅମୂଲ୍ୟ ସମ୍ପଦର ଚାକଚକ୍ୟରେ ମୋ ମନ ଯେତିକି ଉଲ୍ଲସିତ ହେଲା, ତା'ଠାରୁ ଅଧିକ ଦୁଃଖ ଜାତହେଲା। କିଛିକ୍ଷଣ ପରେ ମୋର ଘୂମନ୍ତ ଆଖିକୁ ସ୍ୱପ୍ନିଳ ନିଦ୍ରା ବିଜଡ଼ିତ କରିଦେଲା।

ଏହି ସମୟରେ କକ୍ଷ ମଧ୍ୟରେ ଦୀପାଲୋକ ଦେଖି ମୋ ନିଦ ଭାଙ୍ଗିଗଲା। କେହି ଜଣେ ମୋ ମୁହଁ ପାଖକୁ ଦୀପଟି ଆଣି ନିରୀକ୍ଷଣ କରି ଦେଖିଲା। ମୁଁ

ଅର୍ଦ୍ଧନିମୀଳିତ ଚକ୍ଷୁରେ ସବୁ ଦେଖିପାରୁଥାଏ। ମୋତେ ଆଶ୍ରୟ ଦେଇଥିବା ବୃଦ୍ଧା ଓ ଅନ୍ୟ ଜଣେ ତରୁଣ ପରସ୍ପର କଥାବାର୍ତ୍ତା କରୁଥିଲା। ସେମାନଙ୍କ ଫୁସ୍‌ଫାସ୍‌ରୁ ମୁଁ କେବଳ 'ହସ୍ତିନାପୁର', 'ରାଜଘୋଷଣା', 'ପୁରସ୍କାର' ଆଦି କେତୋଟି ଶବ୍ଦ ମାତ୍ର ଶୁଣିପାରିଲି।

ଆଲୋଚନା ପ୍ରସଙ୍ଗରେ ଦୁହିଁଙ୍କର ସ୍ୱର ଟିକିଏ ସ୍ପଷ୍ଟ ହୋଇଉଠିଲା। ତରୁଣଜଣକ କହୁଥିଲେ– "ନା... ନା, ଏ ଶର୍ମିଷ୍ଠା ହୋଇନପାରେ। ରାଜକନ୍ୟାର ତେଜ ଟିକିଏ ହେଲେ କ'ଣ ଯା' ମୁହଁରୁ ଫୁଟିଉଠୁ ନାହିଁ। ତୁ କେବଳ ପୁରସ୍କାର ଲୋଭରେ ଲୋଭେଇପଡ଼ିଲୁଣି। ଏଇଥିପାଇଁ..." ସେ ଦୁହେଁ ଯୁକ୍ତିତର୍କ କରି କରି ବାହାରକୁ ଚାଲିଗଲେ। ସେ ଦୁହିଁଙ୍କ କଥା ଶୁଣି ମୋ କଲିଜା ଭୟରେ ପାଣିହୋଇଗଲା। ପାଖରେ ଶୋଇଥିବା ପୁରୁ ମୋ ଆଖିର ତାତିଲା ଲୁହଧାରରେ ଚେଇଁଉଠିଲା। ମୁଁ ତାକୁ କୌଣସିମତେ ବକ୍ଷରେ ଚାପଧରି ରାତିଅଧରେ ସେ ଘରୁ ବାହାରି ଜୀବନ ବିକଳରେ ପଳାଇଗଲି।

× × × ×

କାଳେ ମୋତେ କେହି ଧରିବାଲାଗି ପଛେ ପଛେ ଗୋଡ଼ାଇଆସିବ, ସେହି ଡରରେ ଲୁଚିଛପି ଗାଆଁ ପରେ ଗାଆଁ ପାରହୋଇ ଆଗେଇ ଚାଲିଲି। ନିହାତି ଦରକାର ହେଲେ ରାତିରେ ମୁଁ ଦେବାଳୟ କିମ୍ବା ପାନ୍ଥଶାଳାରେ ଆଶ୍ରୟନିଏ। ଏହିପରି ଭାବରେ ଧାଇଁ ଦୌଡ଼ି ମୁଁ ମନେମନେ ବିରକ୍ତ ହୋଇଉଠିଲି। ଦିନେ ମନେମନେ ଚିଡ଼ିଯାଇ ଭାବିଲି– ମଣିଷକୁ ଦିନେ ନା ଦିନେ ମୃତ୍ୟୁମୁଖରେ ପଡ଼ିବାକୁ ପଡ଼ିବ; ତେଣୁ ଏତେ ହନ୍ତସନ୍ତ ହୋଇ ବଞ୍ଚିବାର ଲାଭ କ'ଣ? ଯାଉଛି ହସ୍ତିନାପୁର ଚାଲିଯାଇ ଦେବଯାନୀ ଆଗରେ ଛିଡ଼ାହୋଇ କହିବି– 'ତୁ ମୋ ମୁଣ୍ଡ କାଟିନେବାକୁ ଚାହୁଁଛୁ ତ, ନେ... କାଟିନେ...।' ସଙ୍ଗେ ସଙ୍ଗେ ପାଖରେ ଶୋଇ ମୁରୁକିହସା ଦେଉଥିବା ପୁରୁର ମୁହଁ ଉପରେ ମୋର ନଜର ପଡ଼ିଗଲା। ପରମୁହୂର୍ତ୍ତରେ ଭାବିଲି– 'ମୋ ମୁଣ୍ଡକାଟ ହୋଇଗଲେ ସେଥିଲାଗି ଚିନ୍ତାନାହିଁ; କିନ୍ତୁ ଏ ସୁକୁମାର ଶିଶୁଟିର ଗୋଡ଼ରେ କଣ୍ଟା ଫୁଟିବା ମଧ ଉଚିତ ନୁହେଁ।" ମୋତେ କେବଳ ଏଇ ପୁରୁପାଇଁ ବଞ୍ଚିବାକୁ ପଡ଼ିବ; ଦୁର୍ଗମ ଗିରିକନ୍ଦର, ଅତଳ ଭୟାବହ ସାଗର ପାରିହେବାକୁ ମୁଁ ତିଳେହେଲେ ଭ୍ରୁକ୍ଷେପ କରିବି ନାହିଁ; କିନ୍ତୁ ମୋ ପୁରୁର...।

ଚାରିଦିନ ଅବିରାମ ଭାବେ ଚାଲିବା ପରେ ମୁଁ ଗୋଟିଏ ଛୋଟିଆ ଗାଁର ମନ୍ଦିର ପାଖରେ ଆସି ପହଞ୍ଚିଲି। ମନ୍ଦିରରେ କିଛି ସମୟ ବିଶ୍ରାମ ନେବାପରେ କୌଣସି ଧର୍ମଶାଳାରେ ରାତି କଟାଇବା ପାଇଁ ଚିନ୍ତାକଲି। କୂଅ ପାଖରେ ପୁରୁର ହାତ ଗୋଡ଼ ଧୋଇଦେବା ପରେ, ମନ୍ଦିରର ନାଟମଣ୍ଡପରେ ତାକୁ ଖେଳିବାଲାଗି ଛାଡ଼ିଦେଇ ଗୋଟିଏ ଖମ୍ବକୁ ଆଉଜି ମୁଁ ବସିପଡ଼ିଲି। ପୁରୁ ସେଠାରେ ଘଣ୍ଟାଶବ୍ଦ ଶୁଣି ତାଳି ବଜାଇ ଆନନ୍ଦରେ ଖେଳିବାକୁ ଲାଗିଲା। କିଛି ସମୟ ଖେଳିବା ପରେ ଘଣ୍ଟା ବଜାଇବାଲାଗି ମୋ ହାତଧରି ସେଇଆଡ଼କୁ ଓଟାରିଲା। ମୁଁ ପ୍ରଥମେ ତାକୁ ଭୁଲାଇଦେବା ଲାଗି ଚେଷ୍ଟାକଲି; କିନ୍ତୁ ବାଳକର ଜିଦ୍ ଆଗରେ ମାଆର ଚାଲାକି

କିପରି ବା କାମ କରନ୍ତା ? ମୁଁ ଦୁଇ ହାତରେ ପୁରୁକୁ ଟେକି ଘଣ୍ଟା ଆଡ଼କୁ ଅଗ୍ରସର ହେବା ସମୟରେ ହଠାତ୍ ମନ୍ଦିର ଆଗରେ ଡେଙ୍ଗୁରା ବାଜିଉଠିଲା । ରାଜକର୍ମଚାରୀ ଉଚ୍ଚ ସ୍ୱରରେ କହୁଥିଲା – "ଭାଇମାନେ ଶୁଣନ୍ତୁ । ହସ୍ତିନାପୁରର ମହାରାଣୀ ଦେବଯାନୀଙ୍କର ଗୋଟିଏ ସୁନ୍ଦରୀ ଦାସୀ ରାଜମହଲରୁ ପଳାଇଆସିଛି । ତା' ପାଖରେ ଗୋଟିଏ ଛୋଟ ପୁଅ ଅଛି । ସେ ଦାସୀ ବ୍ୟଭିଚାରିଣୀ । ତା' ପିଲା ସହିତ ତାକୁ ଯେଉଁ ବ୍ୟକ୍ତି ନେଇ ମହାରାଣୀଙ୍କ ପାଖରେ ପହଞ୍ଚାଇଦେବ ସେ ଯଥେଷ୍ଟ ପୁରସ୍କାର ପାଇବ ।"

ଘୋଷଣାର ପ୍ରତ୍ୟେକ ଶବ୍ଦ ମୋ ଛାତିରେ ମୁଗୁରର ପ୍ରହାର ପରି ବୋଧହେଲା । ମୋ ଗୋଡ଼ହାତ ଥରିବାକୁ ଲାଗିଲା । ଉପରକୁ ଟେକିଧରିଥିବା ପୁରୁ ମୋ ହାତରୁ ଖସିପଡ଼ିବ ଭାବି ମୁଁ ଧୀରେ ସେଇଠି ବସିପଡ଼ିଲି । ଅବୋଧ ବାଳକ ଘୋଷଣାର ଅର୍ଥ କିଛି ବୁଝୁନଥିଲା; ତେଣୁ ସେ ତା'ର ଆନନ୍ଦମୟ ଦୁନିଆରେ ମଗ୍ନ ରହି ଘଣ୍ଟା ବଜାଇବାଲାଗି ଜିଦ୍‌ଧରିବସିଲା । ମୁଁ ତାକୁ ଯେତେ ଭୁଲାଇଦେବାକୁ ଚେଷ୍ଟାକଲି, ସେ ସେତିକି ଜିଦ୍ ଧରି ଶେଷକୁ ତା'ର ଅମୋଘ ଅସ୍ତ୍ର ପ୍ରୟୋଗକରି ଜୋର୍‌ରେ ରାହାଧରି କାନ୍ଦିବାକୁ ଲାଗିଲା । ଘୋଷଣାର ପ୍ରତ୍ୟେକ ଶବ୍ଦ ମୋ କାନରେ ପ୍ରତିଧ୍ୱନିତ ହେଉଥିଲା । ସେଥିରେ ମୁଁ ଏତେ ଡରିଯାଇଥିଲି ଯେ, ତଳୁ ଉଠିବାକୁ ମୋର ସାହସ ହେଲାନାହିଁ । କିନ୍ତୁ ପୁରୁର କରୁଣ କ୍ରନ୍ଦନ ଶୁଣି ସାଧାରଣ ଲୋକେ ମୋ ଆଡ଼କୁ କଠୋର ଦୃଷ୍ଟିରେ ଚାହିଁରହିଲେ । ଜଣେ ବୃଦ୍ଧ ବ୍ୟକ୍ତି ମୋତେ ବିରକ୍ତିମିଶା ସ୍ୱରରେ କହିଲେ – "ଏଃ, ସେ ପିଲାଟା କାହିଁକି କାନ୍ଦୁଛି, ତାକୁ ସମ୍ଭାଳୁନାହୁଁ କାହିଁକି ? ସେ କାହିଁକି କାନ୍ଦୁଛି ?" ଏତିକି କହି ସେ ମୋ ଆଡ଼କୁ ନିରୀକ୍ଷଣ କରି ଚାହିଁରହିଲା । ତା'ର ସେ ବନ୍ୟ ଦୃଷ୍ଟି ଲକ୍ଷ୍ୟକରି ମୋ ଛାତି ଦୁଲୁକିଉଠିଲା । ମୁଁ ପୁରୁକୁ କାଖେଇନେଇ ଧର୍ମଶାଳା ଆଡ଼କୁ ଆଗେଇଆସିଲି । ରାତ୍ରିର ଅନ୍ଧକାର ଚାରିଆଡ଼େ ଘୋଟିଯାଆନ୍ତେ ମୁଁ ଚୁପ୍‌ଚାପ୍ ଧର୍ମଶାଳାରୁ ବାହାରିପଡ଼ିଲି ।

ସେ ଘୋଷଣା ଶୁଣିଲା ପରେ ପରେ ମୋ ମନରେ ନାନାପ୍ରକାର ସନ୍ଦେହ ଉଙ୍କିମାରିଲା । ତେଣୁ ମୁଁ କୌଣସି ଜନସମାଗମ ସ୍ଥାନରେ ରହିବାଲାଗି ଆଦୌ ସାହସ କଲିନାହିଁ । ପୁରସ୍କାର ଲୋଭରେ କେହି ମୋତେ ଧରାଇଦେବା ଆଦୌ ଅସମ୍ଭବ ନୁହେଁ । ତେଣୁ ବେଶ ବଦଳାଇ ଦେବାକୁ ମୁଁ ମନେ ମନେ ସ୍ଥିରକଲି । ପୁଣି ଭାବିଲି – 'ଯଦି କାହାରି ପାଖରେ ପୁରୁକୁ ଛାଡ଼ିଦେଇପାରନ୍ତି ଭଲ ହୁଅନ୍ତା ନାହିଁକି ? ହଠାତ୍ ମୋ ଛାତିରୁ ନିଆଁହୁଳା ବାହାରିଆସିଲା । ମୋ ଗଣ୍ଠିଧନ, ରଙ୍କୁଣୀଥାଳ ପୁରୁକୁ ନିଜଠାରୁ ଦୂରେଇ ଦେବି ? ନା . . . ଏହା କେବେହେଲେ ସମ୍ଭବ ହୋଇପାରିବ ନାହିଁ । ତେଲ ନଥିଲେ ଦୀପ ଜଳିବ କିପରି ? ପୁରୁର ହସହସ ମୁହଁର ଆଖିଯୋଡ଼ିକ ମୋ ଆଗରେ ଚନ୍ଦ୍ର ସୂର୍ଯ୍ୟ ପରି ଶୋଭାପାଉଥିଲା । ତା'ର କୋମଳ ସ୍ପର୍ଶ ମୋ ପକ୍ଷରେ ଥିଲା ସୁଦର୍ଶନ ଚକ୍ରପରି ଅଭୟ ବର । ତା'ଠାରୁ ସରୁ ଚୁମାଟିଏ ପାଇଲେ ମୋତେ କୁବେରର କୋଟିନିଧି ପାଇଲା ପରି ବୋଧହୁଏ । ନିଦରେ ଶୋଇଥିବାବେଳେ ତା' ମୁହଁରେ ହସର ମଧୁରିମା ଖେଳିଗଲେ ମୋତେ ଜଣାପଡ଼େ ରାତିଅଧରେ ସୂର୍ଯ୍ୟ ଉଦୟ ହୋଇଗଲେ କି ? ମୁଁ କେବଳ ତା'ରି ପାଇଁ ଏବଂ ତାକୁଇ ଏକମାତ୍ର ସମ୍ବଳ କରି ବଞ୍ଚିରହିଥିଲି ।

ପୁରୁକୁ କାଖେଇ ପୁଣି ଚାଲିବା ଆରମ୍ଭକରିଦେଲି। କୌଣସି ଗ୍ରାମରେ ସହରରେ କିମ୍ବା କୌଣସି ଧର୍ମଶାଳାରେ ନରହି, ବଣ-ଜଙ୍ଗଲ ଭିତର ଦେଇ ଚାଲିବାକୁ ମନେମନେ ସ୍ଥିରକରିନେଲି। କୌଣସି ଜୀର୍ଣ୍ଣ ଦେବାଳୟ, ପଥରର ଚଟାଣ, ଏପରିକି ଖୋଲା ପଡ଼ିଆରେ ପଛକେ କାନିପାତି ଶୋଇବି କିନ୍ତୁ କୌଣସି ଜନକୋଳାହଳ ସ୍ଥାନକୁ ଯିବିନାହିଁ। ପ୍ରାଣ ବାହାରିଗଲେ ସୁଦ୍ଧା ମୁଁ ଏ ପ୍ରତିଜ୍ଞାକୁ ତିଳେହେଲେ ଟଳିବି ନାହିଁ ବୋଲି ମନେମନେ ନିଶ୍ଚୟକରିନେଲି।

ଏହି କ୍ରମରେ ଚାରି ପାଞ୍ଚଦିନ କୌଣସିମତେ ବିତିଗଲା। ରାଜଦରବାରର ଘୋଷଣା ଧୀରେ ଧୀରେ ମୋ ମନରୁ ପାସୋରିଗଲା। କଚ୍ଙ୍କ ସ୍ମୃତିକୁ ମନେପକାଇ ମନେ ମନେ ଆଶ୍ୱସ୍ତ ହେଲି। କଚ୍ ଯେଉଁ ବସ୍ତ୍ରଟି ଦେଇଥିଲେ ତାକୁ ଗଣ୍ଠିଲିରେ ବାନ୍ଧି ରଖିଥିଲି; ଆଜି ପ୍ରଥମଥର ଲାଗି ତାକୁ ପିନ୍ଧିନେଲି। ସେଦିନ ରାତିରେ ଗ୍ରାମ ବାହାରେ ଗୋଟିଏ ନିର୍ଜନ ଦେବାଳୟରେ ରାତ୍ରି ଯାପନ କଲି। ମନ୍ଦିରର ଆଖପାଖ ଘନଜଙ୍ଗଲରେ ପରିପୂର୍ଣ୍ଣ। ପ୍ରଥମେ ବାଘ, ସିଂହଙ୍କ ଭୟରେ ଦେହ ଶୀତେଇ ଉଠିଲା; କିନ୍ତୁ ପର ମୁହୂର୍ତ୍ତରେ ଭାବିଲି, 'ମନୁଷ୍ୟର ହିଂସ୍ର ପ୍ରକୃତି ତୁଳନାରେ ହିଂସ୍ରଜନ୍ତୁଙ୍କ ସ୍ୱଭାବ ସେତେ ଭୟଙ୍କର ନୁହେଁ। ଦେବବିଗ୍ରହଙ୍କ ସମ୍ମୁଖରେ ଅଖଣ୍ଡ ଦୀପ ଜଳୁଥିଲା। ମୁଁ ଦେଉଳ ଦୁଆରେ ବସି, ଥାପୁଡ଼େଇଦେଇ ପୁରୁକୁ ଶୁଆଉଥିଲି। ଏହି ସମୟରେ ଜଣେ ସାଧୁ ମନ୍ଦିରକୁ ଆସି ସିଧା ମୂର୍ତ୍ତିଙ୍କ ପାଖକୁ ଚାଲିଗଲେ। ବୋଧହୁଏ ପୁରୁ ତାଙ୍କ ଆଡ଼କୁ ଚାହିଁଥିଲା; ସେ ହଠାତ୍ ମୋ କୋଳରୁ ଉଠିପଡ଼ି ପା . . . ପା . . . ପା . . . କହି ଡାକପକାଇଲା। ତାଙ୍କ ପଛଆଡ଼କୁ ଦେଖି ମୋର ମଧ୍ୟ ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ। ସେ ଅବିକଳ ମହାରାଜଙ୍କ ପରି ଦେଖାଯାଉଥିଲେ। ସେଇଥିପାଇଁ ପୁରୁ ତାଙ୍କୁ ଦେଖି ପା . . . ପା . . . ବୋଲି ଡାକପକାଇଥିଲା। ମନେପଡ଼ିଗଲା– ସେଦିନ ମହାରାଜ ଋଷିବେଶରେ ସଜ୍ଜିତ ହୋଇ ଅଶୋକବନକୁ ଆସିଥିଲେ; ମୋତେ ଖୋଜିବା ଲାଗି ପୁଣି ସାଧୁବେଶ ସାଜିନାହାନ୍ତି ତ ? ହାୟ . . . ସତେ କ'ଣ ନିୟତିର ଇଚ୍ଛା ଅନୁସାରେ ଆମର ପୁନର୍ମିଳନ ଏଇ ଘନଜଙ୍ଗଲର ଜୀର୍ଣ୍ଣ ଦେବାଳୟରେ ସମ୍ଭବ ହେବ ?

ସେ ସନ୍ନ୍ୟାସୀ କେଉଁ ଆଡ଼କୁ ନ ଚାହିଁ ଦେଉଳରୁ ବାହାରି ଜଙ୍ଗଲଆଡ଼କୁ ଆଗେଇଗଲେ। ମୁଁ ପୁଣି ଥରେ ସେ ସାଧୁଙ୍କ ଆଡ଼କୁ ଭଲଭାବରେ ନିରୀକ୍ଷଣ କଲି; ମାତ୍ର ସେ ପ୍ରକୃତରେ ମହାରାଜ ନଥିଲେ। କିନ୍ତୁ ସେ ଚାଲିଯିବାପରେ ପୁରୁ ପା . . . ପା . . . ପା . . . କହି କାନ୍ଦିଉଠିଲା। ଅଶୋକବନରେ ମୁଁ ତାକୁ ମହାରାଜଙ୍କ ଚିତ୍ରପଟ ଦେଖାଇ ଶାନ୍ତ କରିଦେଉଥିଲି; କିନ୍ତୁ ଏଠାରେ କେବଳ ମୋ ହୃଦୟପଟରେ ମହାରାଜଙ୍କ ମୂର୍ତ୍ତି ଅଙ୍କିତ ହୋଇ ରହିଛି, ବିଚରା ପୁରୁକୁ କିପରି ତାହା ଦେଖାଇ ଶାନ୍ତକରିପାରିବି ?

ଥଣ୍ଡା ପବନ ବାଜିଲେ କାଳେ ପୁରୁ ଶୀଘ୍ର ଶୋଇପଡ଼ିବ, ତେଣୁ ତାକୁ ଛାତିରେ ଶୁଆଇ ଦେଉଳ ବାହାରକୁ ବାହାରିଆସି ଆଗେଇ ଚାଲିଲି। ଆକାଶର ନିର୍ମଳ ଚାନ୍ଦିନୀ ପୃଥିବୀରେ ଏକ ଅଭିନବ ଶୋଭା-ସମ୍ପଦ ଅଜାଡ଼ି ଦେଇଥିଲା। ସତେଯେପରି, ଧରିତ୍ରୀର ଅଭିନନ୍ଦନ ଲାଗି ଚନ୍ଦ୍ରମା ଗୋଟିଏ ସହସ୍ରଦଳ ଶ୍ୱେତପଦ୍ମ ଧରି ଉଭାହୋଇଛି। ସମଗ୍ର ଜଙ୍ଗଲ ଉପରେ ଚନ୍ଦ୍ରମା ଗୋଟିଏ ଧଳା ଚଦର ବିଛାଇଦେଲାପରି ମୋତେ ବୋଧହେଲା। ଜଙ୍ଗଲର ଯେଉଁ ବୃକ୍ଷ, ଲତା ତଥା ଗହଳିଆ ସ୍ଥାନ ମନରେ ଭୟ ଜନ୍ମାଏ, ସେ

ଏହି ଚାନ୍ଦିନୀ ରାତିରେ ଶୋଭା-ସମ୍ପଦର ଭଣ୍ଡାର ପରି ଶୋଭାପାଉଥିଲା ଏବଂ ଚାନ୍ଦିନୀର ସୁମଧୁର ସଙ୍ଗୀତ ଶୁଣି ଧରିତ୍ରୀ ନିଦ୍ରାଦେବୀଙ୍କ କୋଳରେ ଆନନ୍ଦରେ ତୃପ୍ତହୋଇ ଶୋଇଥିବା ପରି ମୋତେ ଜଣାଗଲା ।

ରାତ୍ରିର ନୀରବତା ଭଙ୍ଗକରି ଗୋଟିଏ ପକ୍ଷୀ କଳକୂଜନର ସହିତ ମୋ'ରି ପାଖ ଦେଇ ଉଡ଼ିଗଲା । 'ହେଇ ଦେଖ' —କହି ସେ ପକ୍ଷୀ ଆଡ଼କୁ ଆଙ୍ଗୁଳି ଦେଖାଇ ମୁଁ ପୁରୁର ଦୃଷ୍ଟି ଆକର୍ଷଣକଲି । ସେ ଆନନ୍ଦରେ ତାଳିମାରି କୁରୁଳିଉଠିଲା । ତା'ର ଖୁସିରେ ମୋ ମନ ଆନନ୍ଦରେ ନାଚିଉଠିଲା । ମୁଁ ବେଗ ବେଗ ପହଣ୍ଡ ପକାଇ କେତେଦୂର ଆଗେଇଗଲି । କିନ୍ତୁ ପକ୍ଷୀଟି ଚକ୍ଷୁର ଅନ୍ତରାଳକୁ ଚାଲିଯିବା ମାତ୍ରେ ପୁରୁ ପୁଣି ଜିଦ୍ କରି କାନ୍ଦିଉଠିଲା; ମୋତେ ଆହୁରି ବେଗବେଗ ପହଣ୍ଡ ପକାଇ ଚାଲିବା ଲାଗି ଇସାରାଦେଲା । ଗୋଟିଏ ଅଣଓସାରିଆ ଚଲାବାଟ ଦେଇ ମୁଁ ତାର ଇଶାରା ଅନୁସାରେ ଆଗେଇଚାଲିଲି । କେତେ ବାଟ ଗଲାପରେ ଗୋଟିଏ ଲତାରେ ଫୁଟିଥିବା ସୁନ୍ଦର ବାଘନଖପରି ବଙ୍କାବଙ୍କା ନୀଳରଙ୍ଗର ଫୁଲ ଦେଖି ପୁରୁ ସେ ଆଡ଼କୁ ଆନନ୍ଦରେ ଉହୁଙ୍କିପଡ଼ିଲା । ମୁଁ ସେଥିରୁ ଦୁଇ ପେଛା ଫୁଲ ଛିଣ୍ଡାଇଆଣି ତାକୁ ଧରାଇଦେଲି । ସେ ଦୁଇ ହାତରେ ଫୁଲପେଛା ଦୁଇଟିକୁ ହଲେଇ ହଲେଇ ବେଶ୍ ଖେଳରେ ମାତିଗଲା ।

ମୁଁ ସେ ରାତିର ଚାନ୍ଦିନୀ ଦେଖି ଏତେ ଦୁଃଖ-କଷ୍ଟମୟ ଜୀବନରେ ମଧ୍ୟ ଆନନ୍ଦରେ ଆତ୍ମହରା ହୋଇଗଲି । ବୃକ୍ଷଲତାର ଅପରୂପ ଶୋଭା ଏବଂ ବଣବୁଦାର ଅପାସୋରା ସୌନ୍ଦର୍ଯ୍ୟ ଦେଖି ମୋ ମୁହଁରୁ ଗୁଣୁଗୁଣୁ ହୋଇ କେଇପଦ ଗୀତ ବାହାରିପଡ଼ିଲା । ମୁଁ ହସ୍ତିନାପୁରକୁ ଆସିବା ଦିନରୁ ମୋ ତୁଣ୍ଡରୁ ପଦେ ହେଲେ ଗୀତ ବାହାରିନଥିଲା; କିନ୍ତୁ ସେଦିନର ସ୍ୱଚ୍ଛ ଚାନ୍ଦିନୀ, ପ୍ରକୃତିରାଣୀଙ୍କର ରଙ୍ଗରଙ୍ଗିଆ ଝିଲିମିଲି ବେଶ ଦେଖି ମୁଁ ମୋର ଦୁଃଖ ପାସୋରି ଦେଲି ।

ସେଇ ଚଲାପଥରେ କେତେବାଟ ଆଗେଇଯାଇ ଗୋଟିଏ ବଣ ପାରିହୋଇଗଲି । ହଠାତ୍ ମୋ ନଜରରେ ପଡ଼ିଲା ଆଗରେ ଗୋଟିଏ କଚ୍ଛପ ଆକାରର ପଥର ମୁଣ୍ଡିଆ; ତା' ତଳେ ଅତଳ ଗହ୍ୱର । ମୁଁ ଏଣେତେଣେ ଚାହିଁ ଦେଖିଲି, ଚଟାଣର ଦୁଇପାଖରେ ଭୟଙ୍କର ଗହ୍ୱର । କାହିଁକି କେଜାଣି ମୋ ମନ ସେହିଆଡ଼କୁ ଆକର୍ଷିତ ହେଲା । ମୁଁ କିଛି ନ ବିଚାରି ସେ ମୁଣ୍ଡିଆଟିର ଧାର ପର୍ଯ୍ୟନ୍ତ ଆଗେଇଯିବାକୁ ପହଣ୍ଡ ପକାଇ ଚାଲିଲି । ମନେମନେ ଭାବିଲି, ଆଜି ଚାନ୍ଦିନୀର ଏ ମନୋମୁଗ୍ଧକର ଦୃଶ୍ୟ ଆଉ କେବେ ଜୀବନରେ ମିଳିବନାହିଁ, ତେଣୁ ମନପୂରାଇ ଏ ଦୃଶ୍ୟ ଉପଭୋଗ କରିବି । ମୁଁ ପୁରୁକୁ କାଖେଇ ଚଟାଣର ଶେଷଭାଗ ଆଡ଼କୁ ଆଗେଇଗଲି । ମୁଁ ଜାଣିଥିଲି— ସେଠାରେ ମୃତ୍ୟୁର ବିଭୀଷିକା ନଗ୍ନ ନୃତ୍ୟ କରୁଛି; କିନ୍ତୁ ମୃତ୍ୟୁ ଯା'ର ଚାରିପଟେ ଗର୍ଜି ଘୁମୁରି ଘୂରିବୁଲୁଛି, ସେ କ'ଣ ପ୍ରାକୃତିକ ସୌନ୍ଦର୍ଯ୍ୟର ଉପଭୋଗରୁ କେବଳ ଏଇ ମୃତ୍ୟୁଭୟ ଲାଗି ବଞ୍ଚିତ ହେବ ? ଜୀବନର ସ୍ୱର୍ଣ୍ଣିମ ଅବସର ସମୟରେ କେହି କ'ଣ ଅନ୍ୟ କଥା ଚିନ୍ତା କରିପାରେ ?

ମୁଁ ଦୃଢ଼ତାର ସହିତ ଚଟାଣର ଶେଷ ସୀମା ଆଡ଼କୁ ଆଗେଇ ଚାଲିଥିବାବେଳେ ହଠାତ୍ ପଛରୁ ଶୁଣାଗଲା— "ଛିଡ଼ାହୁଅ . . . ! ରହିଯା ।" ଅବଶ୍ୟ ମୁଁ ସେତେବେଳକୁ

ଚଟାଣର ଶେଷସୀମାଠାରୁ ଅଳ୍ପ ଦୂରରେ ଥିଲି; ତେଣୁ ଭାବିଲି, 'ଆରେ, ଚାନ୍ଦିନୀର ଆକର୍ଷଣରେ ମୁଁ କ'ଣ କରିବାକୁ ଯାଉଛି? ନା, ଯେଉଁ ବାଟ ଦେଇ ମୁଁ ଆସିଛି ସେଇ ପଥରେ ଫେରି ପଳାଇଯିବି। କିନ୍ତୁ ପଛକୁ ଚାହିଁ ଦେଖିଲି 'ଛିଡ଼ାହୁଅ', 'ରହିଯାଅ' ଡାକଛାଡ଼ିଥିବା ବ୍ୟକ୍ତି ମୋର ଖୁବ୍ ପାଖକୁ ଆସିଗଲାଣି। ମୁଁ ପଳାଇଯିବାକୁ ଚାହିଁଲେ ସୁଦ୍ଧା, ସେ ଅନାୟାସରେ ମୋତେ ଧରିନେଇପାରିବ। ହୁଏତ ସେ ଲୋକ ସାଥିରେ ଆହୁରି କେତେଜଣ ତା'ର ସାଙ୍ଗ ଥିବେ। ସେମାନଙ୍କ ଦୃଷ୍ଟିକୁ ଏଡ଼ାଇ ମୁଁ କେଉଁଠି ଏ ଅପରିଚିତ ଜଙ୍ଗଲରେ ଲୁଚିପାରିବି?

ଧୀରେ ଧୀରେ ସେ ବ୍ୟକ୍ତି ମୋ ଆଡ଼କୁ ଆଗେଇ ଆସିଲା। ଖୁବ୍ ନିକଟକୁ ଆସିଯିବାରୁ ମୁଁ ବେଶ୍ ଦେଖିପାରିଲି ସେ ଜଣେ ସନ୍ନ୍ୟାସୀ। ଏବେ ମନ୍ଦିରରେ ଜଣେ ସାଧୁଙ୍କୁ ଦେଖିଥିଲି; ପୁଣି ଏଠାରେ ଆଉ ଜଣେ? ବୋଧହୁଏ ନିକଟରେ କେଉଁଠି କୌଣସି ମହାତ୍ମାଙ୍କର ଆଶ୍ରମ ଥାଇପାରେ। ତେଣୁ ମୋ ମନରେ ଟିକିଏ ସାହସ ହେଲା; ମୁଁ ସେହିଠାରେ ଛିଡ଼ାହୋଇରହିଲି। ସନ୍ନ୍ୟାସୀ ମୋ ନିକଟକୁ ଆସିଯାଆନ୍ତେ, ମୁଁ ସ୍ପଷ୍ଟ ଚିହ୍ନିପାରିଲି, ସେ ହେଉଛନ୍ତି ମହାରାଜ ଯଯାତିଙ୍କ ଭାଇ ଯତି। ଯତି ମୋ ଆଡ଼କୁ ନିରୀକ୍ଷଣ କରି କେତେ ସମୟ ପର୍ଯ୍ୟନ୍ତ ଚାହିଁରହିଲେ। ଯା' ମଧ୍ୟରେ ଯତିଙ୍କ ପୂର୍ବ କାର୍ଯ୍ୟକଳାପ ମନେପକାଇ ମୋ ଦେହ ବରଡ଼ାପତ୍ର ପରି ଥରିଉଠିଲା ଏବଂ ଶ୍ରମଝାଳରେ ମୁଁ ଜୁଡୁବୁଡୁ ହୋଇଗଲି। ଯତି ମୋତେ ଓ ପୁରୁକୁ ବାରମ୍ବାର ନିରିଖେଇ ନିରିଖେଇ ଚାହିଁବା ପରେ କହିଉଠିଲେ– ''ତୁମେ ଏଠାକୁ କିପରି ଆସିଲ ଶର୍ମିଷ୍ଠା?''

ତାଙ୍କ ସ୍ୱରରେ ନଥିଲା ପୂର୍ବର ନାରୀବିଦ୍ୱେଷ ମନୋଭାବ କିମ୍ବା ପାଗଳାମିର ଆଭାସ, ବରଂ କରୁଣାର ସ୍ୱଚ୍ଛଧାରା ଝରିପଡ଼ିଲା ପରି ମୋତେ ବୋଧହେଲା। ମୁଁ ମନେ ମନେ କାନ୍ଦିଉଠିଲି; କ'ଣ ତାଙ୍କୁ ଉତ୍ତରଦେବି ମୋତେ କିଛି ବୁଦ୍ଧିବାଟ ଦେଖାଗଲାନାହିଁ। କେବଳ ମୋ ଆଖିରୁ ଧାରଧାର ହୋଇ ଲୁହଧାର ଝରିଚାଲିଲା। ମୁଁ ମଧ୍ୟ ନିଜକୁ ସଂଯତ କରିନେଲି। ମୁଁ ମୁହଁରେ ହସ ଫୁଟାଇବାକୁ ଚେଷ୍ଟାକରି କହିଲି– ''ମୁଁ ଜାଣିଶୁଣି ହସ୍ତିନାପୁର ଛାଡ଼ି ଚାଲିଆସିଛି।''

''ଜାଣିଶୁଣି ଏତେ ଦୂର?''

''ଆଜ୍ଞା ... ହଁ''

''କାହିଁକି? ଉଦ୍ଦେଶ୍ୟ?''

ମୋ କାନ୍ଧ ଉପରେ ନିଘୋଡ଼ ନିଦରେ ଶୋଇପଡ଼ିଥିବା ପୁରୁ ଆଡ଼କୁ ଚାହିଁ ମୁଁ କହିଲି– ''ବଡ଼ବାପାଙ୍କୁ ତାଙ୍କ ପୁତୁରାକୁ ଦେଖାଇବାଲାଗି। ଭାବିଲି, ଆପଣ ତ କେବେହେଲେ ହସ୍ତିନାପୁର ଆସିବେ କି ନା ସନ୍ଦେହ– ତେଣୁ ଆପଣଙ୍କ କୁଳଚନ୍ଦ୍ରମାକୁ ଦେଖାଇନଦେବି କାହିଁକି?'' ମୁଁ ଏକାନିଃଶ୍ୱାସକେ ଏତକ କହିଦେଲି। ଅବଶ୍ୟ ଏହା ଫଳରେ ମୋ ମନର ଚାଞ୍ଚଲ୍ୟ ଅନେକ ପରିମାଣରେ କମିଗଲା।

ଯତି ମୋ ନିକଟକୁ ଆହୁରି ଘୁଞ୍ଚିଆସି କହିଲେ– ''ଏ ମୋ ପୁତୁରା? ମାନେ... ଯଯାତିର ପୁଅ?''

ମୁଁ ମୁହଁ ତଳକୁ ପୋତି କହିଲି– ''ହଁ...।'' ଯତି ଆହୁରି ପାଖକୁ ଲାଗିଆସି, ପୁରୁ ଚାହିଁଛି କି ଶୋଇଛି ନିରୀକ୍ଷଣ କରି ଦେଖିଲେ। ତା'ପରେ ସେ ହସିହସି

କହିଲେ– "ମୁଁ ଭାବୁଥିଲି ପୁତୁରାଠାରୁ ଗୋଟିଏ ଚୁମା ମିଳିବ ନା ନାହିଁ; କିନ୍ତୁ ସେ ମହାରାଜ ତ ନିଦରେ ଘୁଙ୍ଗୁଡ଼ି ମାରୁଛନ୍ତି।" ସେ ପୁରୁର ଗାଲରେ ଗୋଟିଏ ବାତ୍ସଲ୍ୟ-ମମତାବୋଳା ସରୁ ଚୁମ୍ବନ ଆଙ୍କିଦେଇ କହିଲେ– "ଜୀବନରେ ଏହା ମୋର ପ୍ରଥମ ଚୁମ୍ବନ।"

ମୁଁ ଯତିଙ୍କର ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ ଏକଲୟରେ ତାଙ୍କ ଆଡ଼କୁ ଚାହିଁରହି ଭାବିଲି– 'ଏ ପ୍ରକୃତରେ ଯତି ନା କଚ୍‌ଦେବ ଯତିରୂପରେ ଆବିର୍ଭାବ ହୋଇଛନ୍ତି? ଯତିର ସେ ପାଗଳାମି ଗଲା କୁଆଡ଼େ? ସେ ଏବେ ଜଣେ ଉଦାର ତଥା ଅତିମାନବୀୟ ଗୁଣସମ୍ପନ୍ନ ବ୍ୟକ୍ତି ଭାବରେ ମୋ ଆଗରେ ଛିଡ଼ାହୋଇଛନ୍ତି। ଏ ଶୁଷ୍କ ମରୁଭୂମିରେ ସୁନ୍ଦର ପୁଷ୍କରିଣୀ ସମ୍ଭବ ହେଲା କିପରି?

ଯତିଙ୍କ ପଛେ ପଛେ ଯାଇ ମୁଁ ତାଙ୍କ ଆଶ୍ରମରେ ପହଞ୍ଚିଲି। ସେ ଆଶ୍ରମଟି ନିର୍ମାଣ କରିଥିଲେ ମହର୍ଷି ଅଙ୍ଗୀରସଙ୍କର ଜଣେ ଶିଷ୍ୟ। କେବଳ ଏଠାରେ କାହିଁକି, ମହର୍ଷିଙ୍କ ଶିଷ୍ୟମାନେ ବିଭିନ୍ନ ସ୍ଥାନରେ ଗୋଟିଏ ଗୋଟିଏ ଆଶ୍ରମ ନିର୍ମାଣ କରିଥିଲେ।

ବାସ୍ତବିକ ଜୀବନର ସଂଯୋଗ ଅତ୍ୟନ୍ତ ଅଦ୍ଭୁତ। ମୁଁ ସେହି ସମ୍ବନ୍ଧରେ ମନେ ମନେ ଅନେକ କିଛି ଭାବିଗଲି। ଭାଗ୍ୟର ଗତି ଦେଖ; ମୁଁ ଅଜାଣତରେ ଦେବଯାନୀର ଲୁଗା ପିନ୍ଧିଦେଲି; ସାଧାରଣତଃ ଏପରି ଘଟଣାରେ ସାଧାରଣ ଧରଣର ମନୋମାଳିନ୍ୟ ହୋଇ ପୁଣି କଳି ମେଣ୍ଟିଯାଏ; କିନ୍ତୁ ସେହି ଦୋଷରେ ଦଣ୍ଡିତା ହୋଇ ମୁଁ ରାଜକନ୍ୟା ହୋଇ ସୁଦ୍ଧା ଦାସୀରୂପେ ଜୀବନ ଅତିବାହିତ କଲି। ତା'ପରେ ହଠାତ୍ ମହାରାଜଙ୍କ ସ୍ନେହ-ସୋହାଗ ପାଇ ଜୀବନକୁ ଧନ୍ୟମନେକଲି। କିନ୍ତୁ ନିୟତିର ଖେଳ ସେତିକିରେ ଶେଷ ହେଲା ନାହିଁ; ମୋତେ ସେହି ଅପରାଧରେ ବନବାସିନୀ ଭାବରେ ଦିନ ବିତାଇବାକୁ ପଡ଼ିଲା। ସେହି ଅସହାୟ ଅବସ୍ଥାରେ ମୋତେ ଏପରି ଏକ ମହର୍ଷିଙ୍କ ଅନୁକମ୍ପା ପ୍ରାପ୍ତହେଲା ଯେ, ସାରା ସମାଜ ଯାହାଙ୍କୁ ପାଗଳ ନାମ ଦେଇ ଘୃଣାକରୁଛି।

କିଛି ଫଳାହାର କରିବା ପରେ ମୁଁ ଆଶ୍ରମରେ ପୁରୁକୁ ଶୁଆଇଦେଇ ବାହାରକୁ ଆସିଗଲି ଏବଂ ଯତି ମଧ୍ୟ ମୋ ସହିତ ବାହାରକୁ ଆସି ଖଣ୍ଡିଏ ଛୋଟ ପଥର ଉପରେ ବସିପଡ଼ିଲେ। ତା'ପରେ ଆମ ମଧ୍ୟରେ ଆଲୋଚନା ଆରମ୍ଭ ହୋଇଗଲା। ମୁଁ ଅସହାୟ ଅବସ୍ଥାରେ ପଥର ଚଟାଣ ଉପରକୁ ଯାଉଥିବା ସମୟରେ ସେ ମୋତେ ଦେଖିଥିଲେ। ମୁଁ ନାଲିଶାଢ଼ି ପିନ୍ଧିଥିବାରୁ ଚାନ୍ଦିନୀ ରାତିରେ ସହଜରେ ବାରିହୋଇଗଲି। ମୋତେ ବିକ୍ଷିପ୍ତ ଅବସ୍ଥାରେ ସେହି ଚଟାଣ ଆଡ଼କୁ ଯାଉଥିବାର ଦେଖି, ମୁଁ ଆତ୍ମହତ୍ୟା କରିବାକୁ ଦୁଃସାହସ କରୁଛି ବୋଲି ତାଙ୍କର ଧାରଣା ହୋଇଥିଲା; ତହୁଁ ସେ 'ଛିଡ଼ାହୁଅ', 'ରହିଯାଅ' ବୋଲି ଜୋର୍‌ରେ ଡାକପକାଇଥିଲେ।

ମୁଁ ନିଃସଙ୍କୋଚ୍‌ରେ ତାଙ୍କ ପାଖରେ ମୋର ଅତୀତ କାହାଣୀ ଗୋଟି ଗୋଟି କରି କହିଗଲି। ମୁଁ କଚ୍‌ଦେବଙ୍କ ବ୍ୟବହାର ଓ ଆଶ୍ୱାସନା ସମ୍ବନ୍ଧରେ କହୁଥିବାବେଳେ ମୋର କଣ୍ଠରୋଧ ହୋଇଯାଇ ଆଖିରୁ ଆନନ୍ଦାଶ୍ରୁ ଝରଝର ହୋଇ ଝରିପଡ଼ିଲା।

ବୋଧହୁଏ ମୋ କଥା ଶୁଣିଲା ପରେ, ଯତି ମଧ୍ୟ ନିଜ ଜୀବନ-କାହାଣୀ ମୋ ଆଗରେ କହିବସିଲେ। ସେ ଶାନ୍ତ ନିର୍ଲିପ୍ତ ଭାବରେ ଗୋଟି ଗୋଟି କରି ତାଙ୍କ ଜୀବନୀ କହିଗଲେ। ବିଶେଷତଃ କଚ୍‌ଦେବଙ୍କ ଦୟାରୁ ସେ କିପରି ନବଜୀବନ

ଲାଭକଲେ ସେ କଥା ବିସ୍ତୃତ ଭାବରେ କହିଗଲେ।

'ନହୁଷର ପୁତ୍ରମାନେ କେବେହେଲେ ସୁଖୀ ହୋଇପାରିବେ ନାହିଁ' ଏହି ଅଭିଶାପ ତାଙ୍କ ମନରେ ଭୀଷଣ କୁପ୍ରଭାବ ପକାଇଥିଲା। ସୁଖର ସନ୍ଧାନରେ ସେ ଘରୁ ବାହାରି ସାଧନାରେ ରତହେଲେ। ତା'ପରେ ଯାଦୁମନ୍ତ୍ର ଗୁଣି-ଗାରେଡ଼ିର ସନ୍ଧାନରେ ପଡ଼ି ସେ ଦିଗହରା ନାବିକ ପରି ଅଥଳ ସମୁଦ୍ରରେ ଉଦ୍‌ଭ୍ରାନ୍ତ ହୋଇ ବୁଲିବାରେ ଲାଗିଲେ। ଶେଷରେ ଶୁକ୍ରାଚାର୍ଯ୍ୟଙ୍କ ସଂଜୀବନୀମନ୍ତ୍ର ତାଙ୍କୁ ମଧ୍ୟ ଆକୃଷ୍ଟ କରିଥିଲା। ତା'ପରେ ଏକାବେଳକେ ସେ ନିଜତ୍ୱ ହରାଇବସିଲେ ଏବଂ ମିଠାଫଳଠାରୁ ଆରମ୍ଭ କରି ନାରୀଜାତି ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ଘୃଣା କରିବାକୁ ଲାଗିଲେ। ତାଙ୍କର କେହି ଆପଣାର ତଥା ହିତୈଷୀ ବନ୍ଧୁ ନଥିବାରୁ, ଯାହା ଯେତେବେଳେ ମନକୁ ଆସିଲା ସେଥିରେ ଭାସିଯାଇ, ନିଜ ଜୀବନକୁ ବିପଦସଙ୍କୁଳ କରିଦେଲେ। ପ୍ରକୃତରେ ପ୍ରଚଣ୍ଡ ପବନରେ ଉଡୁଥିବା ଶୁଖିଲା ପତ୍ର ପରି ତାଙ୍କର ଜୀବନଧାରା ଲକ୍ଷ୍ୟହୀନ ଭାବରେ ଉଡ଼ିଚାଲିଲା।

ଯତି ମହାରାଜ ଗୋଟି ଗୋଟି କରି ମୋତେ ତାଙ୍କ ଜୀବନର ଧାରାବିବରଣୀ ଦେଇଗଲେ। ତାଙ୍କ ମାନସପଟରେ ଅତୀତର ଧୂମିଳ ସ୍ମୃତି ଗୋଟିକ ପରେ ଗୋଟିଏ ସଜଡ଼ା ହୋଇ ରଖାଯାଇଥିଲା। ତେଣୁ ସଂକୋଚ ନକରି ଦ୍ୱିଧାହୀନ ଭାବରେ ଅନୁତାପଭରା ସ୍ୱରରେ ସବୁକିଛି ମୋ ଆଗରେ କହିଗଲେ। ବାସ୍ତବିକ ତାଙ୍କ ଜୀବନର ମଧୁମୟ ସ୍ମୃତି ପବନରେ ଭାସିଆସୁଥିବା ଚନ୍ଦନବନର ସୁରଭିଠାରୁ ଆହୁରି ଆମୋଦପ୍ରଦ, ଆହୁରି ପ୍ରୀତିପଦ ଲାଗିଲା।

ଭୃଗୁ ପର୍ବତର ଆଶ୍ରମରେ ରାଜମାତା ରହୁଥିଲେ। ତାଙ୍କର ବାତ୍ସଲ୍ୟମମତା ଓ କଚ଼ଦେବଙ୍କ ଅକୃତ୍ରିମ ସ୍ନେହରେ ଯତିଙ୍କର ଜୀବନଧାରା ପରିବର୍ତ୍ତିତ ହୋଇଗଲା। ସେ ସେଇଠି ଶିଳାଖଣ୍ଡ ଉପରେ ବସି, କଚ଼ଦେବଙ୍କ ସହିତ ହୋଇଥିବା ତାଙ୍କ ଆଲୋଚ଼ନା ସମ୍ପର୍କରେ ମୋତେ ସମସ୍ତ ତଥ୍ୟ ବତାଇଦେଲେ। ଅବଶ୍ୟ ସେଥିମଧ୍ୟରୁ ଅଳ୍ପ କେତୋଟି ଆଲୋଚ଼ନା ଆଜି ସୁଦ୍ଧା ମୋ ସ୍ମୃତିପଟରେ ସଜଡ଼ାହୋଇ ରହିଛି।

ସେହି ପ୍ରସଙ୍ଗରେ ଯତି କହିଥିଲେ– ଶରୀର ଓ ଆତ୍ମା ପରସ୍ପରର ଶତ୍ରୁ ନୁହନ୍ତି; ବରଂ ଗୋଟିଏ ରଥର ଦୁଇଟି ଚକ। ଏଥିରୁ ଗୋଟିଏ ଚକ ଅଚ଼ଳ ହୋଇଗଲେ ଅନ୍ୟଟି ଉପରେ ସମୁଦାୟ ରଥର ଭାର ଆସି ପଡ଼େ। ତେଣୁ ରଥର ଗତିରେ ଭାରସାମ୍ୟ ରହିପାରେନାହିଁ; ପରିଶେଷରେ ରଥ ଅଚ଼ଳ ହୋଇଯାଏ। ଆତ୍ମାର ଉନ୍ନତି ଲାଗି ଦେହକୁ କଷ୍ଟ ଦେବା କିମ୍ୱା ଦୈହିକ ଉନ୍ନତି ଲାଗି ଆତ୍ମିକ ଉପଦେଶକୁ ଦଳି ମତୁଆଲାଙ୍କ ପରି କାର୍ଯ୍ୟ କରିବା ଉଚ଼ିତ ନୁହେଁ। ପରମାତ୍ମାଙ୍କଦ୍ୱାରା ନିର୍ମିତ ପ୍ରକୃତିର ପ୍ରତ୍ୟେକ ବସ୍ତୁ ଓ ଜୀବନ ଅପବିତ୍ର କିମ୍ୱା ଅଶୁଦ୍ଧ କିପରି ହୋଇପାରିବ? ସ୍ତ୍ରୀ ଓ ପୁରୁଷର ସମ୍ବନ୍ଧ ଶରୀର ତଥା ଆତ୍ମାର ସମ୍ପର୍କ ପରି ଶାଶ୍ୱତ। ପରସ୍ପର ପ୍ରତି ବିଦ୍ୱେଷ ନୁହେଁ; ବରଂ ଅନାବିଳ ପ୍ରେମର ସାଧନାରେ ବ୍ରତୀ ହୋଇ ସ୍ତ୍ରୀ-ପୁରୁଷ ଗୃହସ୍ଥ-ଜୀବନଧାରାରେ ନିଜକୁ ଭସାଇଦେଇ ମୁକ୍ତିଲାଭ କରିପାରିବେ। ନିଜନିଜର ଅସ୍ତିତ୍ୱ ହରାଇ ଉଭୟେ ଉଭୟଙ୍କ ପ୍ରେମରେ ତଲ୍ଲୀନ ହୋଇପାରିଲେ ଗୃହସ୍ଥାଶ୍ରମ ସ୍ୱର୍ଗରେ ପରିଣତ ହୋଇଥାଏ। ତେଣୁ ଗୃହସ୍ଥ-ଧର୍ମକୁ ଯଜ୍ଞ ସହିତ ଋଷିମାନେ ତୁଳନା କରିଛନ୍ତି। ସାଧାରଣ ଜନତାର ଏହାହିଁ ହେଉଛି ପରମଧର୍ମ। ଶୁକ୍ରାଚ଼ାର୍ଯ୍ୟ, କଚ଼ଦେବ

ପ୍ରଭୃତି ଯୋଗୀମାନେ ବିଶ୍ୱର କଲ୍ୟାଣ ଲାଗି ଚିନ୍ତା କରିବେ; ବୃଷପର୍ବା, ଇନ୍ଦ୍ର ଓ ଯଯାତି ପରି ରାଜାମାନେ ନିଜନିଜର ପ୍ରଜାଙ୍କ ଉନ୍ନତି ଲାଗି ଯତ୍ନବାନ୍ ହେବେ ଏବଂ ସାଧାରଣ ଗୃହସ୍ଥମାନେ ନିଜ ପତ୍ନୀ, ପୁତ୍ର ତଥା ପରିବାରର ଆତ୍ମୀୟମାନଙ୍କ ମଙ୍ଗଳ କାମନାରେ କାଳଯାପନ କରିବେ। ପ୍ରତ୍ୟେକ କ୍ଷେତ୍ରରେ ସାବଧାନ ହୋଇ ଚଳିବା ହେଉଛି ଏ ସଂସାରରେ ମାନବର ଧର୍ମ। ନିଜ ସୁଖ ଲାଗି ଅପରକୁ ଦୁଃଖଦେବା ଭଳି ଅନ୍ୟାୟ ତଥା ପାପକାର୍ଯ୍ୟ ଆଉ କିଛି ହେଲେ ନାହିଁ। ତେଣୁ ବ୍ୟକ୍ତିଧର୍ମ, ଗୃହସ୍ଥଧର୍ମ, ରାଜଧର୍ମ ତଥା ସନ୍ୟାସଧର୍ମ ମଧ୍ୟରେ କିଛି ହେଲେ ତାରତମ୍ୟ ନାହିଁ। ଅନ୍ୟକୁ ଘୃଣାକରିବା, ଐଶ୍ୱରୀୟ ସୃଷ୍ଟିର ବିରୁଦ୍ଧାଚରଣ କରିବା କୌଣସି ଧର୍ମର ନୀତି ନୁହେଁ; ବରଂ ସେଭଳି ଆଚରଣକୁ ମର୍ଯ୍ୟାଦାର ଉଲ୍ଲଂଘନ ବୋଲି ଦୋଷାରୋପ କରାଯାଏ। ସ୍ୱଧର୍ମର ବିରୁଦ୍ଧାଚରଣ କରିବା କିମ୍ବା ନିଜ ଧର୍ମକୁ ପ୍ରତାରଣା କରିବା ମହାପାପ; ତେଣୁ ପ୍ରତ୍ୟେକ ବ୍ୟକ୍ତି ନିଜର ଧର୍ମ କଅଣ, ସେ ସମ୍ବନ୍ଧରେ ନିଶ୍ଚିତ କରିନେବା ଆବଶ୍ୟକ। ସେହି ଧର୍ମର ଆଚରଣରେ, 'ଯତି'ଠାରୁ 'ପତି' ପର୍ଯ୍ୟନ୍ତ ପ୍ରତ୍ୟେକର ମନେରଖିବା ଉଚିତ ଯେ, ପ୍ରେମହିଁ ସବୁ ଧର୍ମର ମଉଡ଼ମଣି।

ଯତି ମହାରାଜଙ୍କଠାରୁ ଏ ସମସ୍ତ ତଥ୍ୟ ଶୁଣିବାପରେ କଚ୍‌ଦେବଙ୍କ ପ୍ରତି ମୋର ମଥା ନତ ହୋଇଯାଇ ତାଙ୍କର ମହାନତା ପ୍ରତି ମୋ ମନରେ ଅଜସ୍ର ଶ୍ରଦ୍ଧା ଜାଗ୍ରତହେଲା। ହାୟ... ଦେବଯାନୀ କେଡ଼େ ଅଭାଗିନୀ; ଯାହାଙ୍କର ଅନାବିଳ ସ୍ୱଭାବର ସାତ୍ତ୍ୱିକତାରେ ସ୍ୱର୍ଗ ଓ ମର୍ତ୍ତ୍ୟର ମିଳନ ସମ୍ଭବ ହୋଇପାରିଛି, ସେଇଭଳି ଜଣେ ମହାନ୍ ତପସ୍ୱୀ ତା'ର ପ୍ରଣୟୀ ହୋଇଥିଲେ; ଶେଷକୁ ତାଙ୍କୁହିଁ ସେ ଅଭିଶାପ ଦେଇ ନିଜଠାରୁ ଦୂରେଇଦେଲା! ଅଗଣାରେ ଅଙ୍କୁରିତ କଳ୍ପତରୁକୁ ସେ ଜାଣିଶୁଣି ନିଜ ହାତରେ ଉପାଡ଼ି ଅପନ୍ତରାକୁ ଫିଙ୍ଗିଦେଲା!

ମୋ ମନରେ ଗୋଟିଏ ଜଟିଳ ପ୍ରଶ୍ନ ଉଠିଲା– 'ମୁଁ ପୁରୁକୁ ନେଇ କେଉଁଠାରେ ଆଶ୍ରୟ ନେବି? ଏ ପ୍ରଶ୍ନ ଅତି ସହଜରେ ସମାଧାନ କରିଦେଇ କହିଲେ ଯତି ମହାରାଜ– "ହିମାଳୟର ଉପତ୍ୟକାରେ କେତେକ ସତ୍ୟନିଷ୍ଠ ଆଦିବାସୀ ଅଛନ୍ତି; ସେମାନେ ଥରେ ଯାହାକୁ ଆଦରିନେବେ ଜୀବନ ଦେଇ ତା'ର ସୁରକ୍ଷା କରିବେ। ମୁଁ ସେମାନଙ୍କ ଗହଣରେ ଏକବର୍ଷ ବିତାଇଛି। ସେମାନେ ମୋର ଗୁଣି, ମନ୍ତ୍ର ତଥା ହଠଯୋଗ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ ଏବଂ ମୋତେ ଆନ୍ତରିକ ଭକ୍ତିକରୁଥିଲେ। ତେଣୁ ମୋ ଅନୁରୋଧରେ ସେମାନେ ତୁମ ପୁରୁକୁ ଜୀବନ ଦେଇ ରକ୍ଷାକରିବେ।"

ମୁଁ ଚିନ୍ତାକଲି– 'ଆମେ ତିନିଜଣ ମିଶି ହିମାଳୟର ପାଦଦେଶରେ ଆଶ୍ରମ ନିର୍ମାଣ କରି ରହନ୍ତୁ; ମୁଁ ମୋର ଦେଢ଼ଶୁର ଯତି ମହାରାଜଙ୍କ ପାଦସେବାରେ ଜୀବନ ବିତାଇଦିଅନ୍ତି।' ଶେଷକୁ ମୁଁ ମନରେ ସାହସ ସଞ୍ଚୟ କରି ଯତିମହାରାଜଙ୍କ ଆଗରେ ମୋର ମନୋଭାବ ବ୍ୟକ୍ତ କରିଦେଲି। ତହୁଁ ସେ ହସିହସି ଉତ୍ତରଦେଲେ– "ବୋହୂ! ଏହା ସମ୍ଭବ ହୋଇପାରିବନାହିଁ। କଚ୍‌ଦେବ ବର୍ତ୍ତମାନ ଏକ ଉଗ୍ର ତପସ୍ୟାରେ ବ୍ରତୀ ହେବାକୁ ଯାଉଛନ୍ତି। ସେ ସମୟରେ ମୁଁ ତାଙ୍କରି ସେବାରେ...।"

ମୁଁ ତାଙ୍କ କଥା ମଝିରୁ ପଚାରିଲି– "ଆଚ୍ଛା... କଚ୍‌ଦେବ କାହିଁକି ଏଭଳି ତପସ୍ୟାରେ ବ୍ରତୀ ହେଉଛନ୍ତି ଆପଣ ଜାଣନ୍ତି?"

"ଶୁକ୍ରାଚାର୍ଯ୍ୟ ପରା ପୁଣି ଥରେ କଠୋର ତପସ୍ୟାରେ ଲାଗିପଡ଼ିଛନ୍ତି; ତେଣୁ କଚ୍‌ଦେବ...।"

ମୁଁ ହସି ହସି କହିଲି– "ଗୁରୁଦେବ ଯେପରି କରିବେ ଶିଷ୍ୟ କ'ଣ ଅନୁରୂପ ଆଚରଣ କରିବା ଶାସ୍ତ୍ରସମ୍ମତ ?"

ଯତି ମହାରାଜ ମୋ ପ୍ରଶ୍ନ ଶୁଣି ଗମ୍ଭୀର ହୋଇଯାଇ ଉତ୍ତରଦେଲେ – "କଚ୍‌ଦେବ ବାସ୍ତବରେ ଜଣେ ମହାପୁରୁଷ। ତାଙ୍କୁ ଈର୍ଷା ବା ମାତ୍ସର୍ଯ୍ୟ ସ୍ପର୍ଶକରିନାହିଁ। ତାଙ୍କ ମନରେ କୀର୍ତ୍ତିର ଲାଳସା ନାହିଁ; ଦେବଗୁରୁ ହେବାର ଆକାଙ୍‌କ୍ଷା ମଧ୍ୟ ନାହିଁ; କିନ୍ତୁ ସଂଜୀବନୀବିଦ୍ୟା ହରାଇଦେବା ପରେ ଶୁକ୍ରାଚାର୍ଯ୍ୟ ଉଗ୍ର ତପସ୍ୟା-ଲବ୍ଧ ସାଧନାରେ ଅସୁର-ସମାଜର ମଙ୍ଗଳ ଲାଗି ସତତ ବ୍ୟାକୁଳ। ତେଣୁ ସେ ହୃଦୟରେ ମହତ୍ତ୍ୱାକାଙ୍‌କ୍ଷା ପୋଷଣ କରି ସାଧନାରେ ରତହୋଇଛନ୍ତି।"

ମୁଁ ରାକ୍ଷସରାଜ ବୃଷପର୍ବାଙ୍କ କନ୍ୟା; ତେଣୁ ରାକ୍ଷସ-ସମାଜର କଲ୍ୟାଣ ଲାଗି କଠୋର ତପସ୍ୟା କରୁଥିବା ଶୁକ୍ରାଚାର୍ଯ୍ୟଙ୍କ ସଫଳତାର ସମ୍ବାଦ ମୋ ମନରେ ଆନନ୍ଦ ଜାତ କରାଇବା ଅସମ୍ଭବ ନୁହେଁ। କିନ୍ତୁ ମୁଁ ଆନନ୍ଦିତା ହୋଇପାରିଲିନାହିଁ। ମନେମନେ ଡରିଯାଇ ପଚାରିଲି– "ଶୁକ୍ରାଚାର୍ଯ୍ୟ ଏଥର କି ବିଲକ୍ଷଣ ବିଦ୍ୟାଲାଭ କରିବାକୁ ଯାଉଛନ୍ତି ?"

–"ସଞ୍ଜୀବନୀ ବିଦ୍ୟା ବଳରେ କେବଳ ମୃତବ୍ୟକ୍ତିକୁ ବଞ୍ଚାଇଦିଆଯାଇ ପାରୁଥିଲା; କିନ୍ତୁ ଏଥର ସେ ବିଦ୍ୟାବଳରେ ଜୀବିତ ବ୍ୟକ୍ତିକୁ ମୃତ୍ୟୁମୁଖରେ ପକାଇଦେବା ଲାଗି ଚିନ୍ତାକରୁଛନ୍ତି।"

– "ତା'ହେଲେ କ'ଣ କଚ୍‌ଦେବ ସେହିପରି ଗୋଟିଏ ଅଦ୍ଭୁତ ବିଦ୍ୟା ହାସଲକରିବା ଲାଗି ତପସ୍ୟାରେ ବ୍ରତୀ ହେବାକୁ ଯାଉଛନ୍ତି ?"

"ଏଥିଲାଗି କଚ୍‌ଦେବଙ୍କ ମନରେ ଗଭୀର ଦୁଃଖ ଜାତହୋଇଛି। ତାଙ୍କ ମତରେ ତପସ୍ୱୀମାନେ ଏପରି ଏକ ଧ୍ୱଂସାତ୍ମକ ବିଦ୍ୟାର ଅଧିକାରୀ ହେବା ଉଚିତ୍ ନୁହେଁ। କିନ୍ତୁ ଶୁକ୍ରାଚାର୍ଯ୍ୟଙ୍କର ଏହି ବିନାଶକାରୀ ଶକ୍ତିକୁ ଆୟତ୍ତ କରିବା ଏକାନ୍ତ ଆବଶ୍ୟକ; ଅନ୍ୟଥା ସେ କ୍ରୋଧବଳରେ ସମଗ୍ର ଜୈବିକ ସଭ୍ୟତାକୁ ଧ୍ୱଂସସ୍ତୂପରେ ପରିଣତ କରିଦେବେ। ତେଣୁ କଚ୍‌ଦେବ ଏକ ମହାନ୍ ତପସ୍ୟାର ଚିନ୍ତା କରୁଛନ୍ତି। ତାଙ୍କର ସଫଳତା କାମନାକରି ମୋ'ପରି କେତେଜଣ ତାଙ୍କର ମିତ୍ର, ବନ୍ଧୁ ତଥା ଗୁରୁଭାଇମାନେ ନିଜନିଜର ସାଧ୍ୟାନୁସାରେ ତପସ୍ୟା କରିବାକୁ ନିଶ୍ଚୟ କରିଛନ୍ତି। ଏହାହିଁ ହେଉଛି ପ୍ରକୃତରେ ସନ୍ନ୍ୟାସୀର ଧର୍ମ। ମୁଁ ତାହା ହିଁ ପାଳନ କରିବାକୁ ଯାଉଛି। କିଏ ଜାଣେ କଚ୍‌ଦେବଙ୍କର ସାଧନା କେତେଦିନଧରି ଚାଲିବ ?"

ଏ କଥା ଶୁଣିବା ପରେ ମୋର ଆଉ ଉପାୟ କ'ଣ ଥିଲା ? ହଠାତ୍ ଗୋଟିଏ ବିଷୟ ମୋ ଭାବନାରାଜ୍ୟକୁ ଅଧିକାର କରିନେଲା। ମୁଁ ଥିଲି ଜଣେ ସାଧାରଣ ସ୍ତ୍ରୀ; ମୋର ଚିନ୍ତାଧାରା ପୁରୁ ତଥା ଘର-ସଂସାରର ବନ୍ଧନରେ ଆବଦ୍ଧଥିଲା। କଚ୍ ଓ ଯତି ଥିଲେ ଅସାଧାରଣ ପୁରୁଷ; ସାଧାରଣ ସ୍ତ୍ରୀ ପରି ତାଙ୍କର କାର୍ଯ୍ୟ-ପରିସର ସୀମିତ ନଥିଲା; ତାଙ୍କ ମନରେ ଥିଲା 'ବସୁଧୈବ କୁଟୁମ୍ବକମ୍' ପରି ଅସାଧାରଣ ଭାବନା।

ପରଦିନ ପ୍ରଭାତରୁ ଆମେ ହିମାଳୟଯାତ୍ରାରେ ବାହାରିପଡ଼ିଲୁ। କେତେଦିନ ପରେ ଆମେ ଯାଇ ଆମ ଲକ୍ଷ୍ୟସ୍ଥଳରେ ପହଞ୍ଚିଲୁ। ହିମାଳୟର ମନୋମୁଗ୍ଧକର ଦୃଶ୍ୟ ଦେଖି ପୁରୁ ଆନନ୍ଦରେ କୁଳୁରିଉଠିଲା। ଗୋଟିଏ ନୂତନ ସ୍ଥାନରେ ମୋର ଯେପରି କୌଣସି ପ୍ରକାର ଅସୁବିଧା ନହୁଏ, ସେଥିଲାଗି ଯତିମହାରାଜ ସମସ୍ତ ପ୍ରକାର ବ୍ୟବସ୍ଥା କରିଦେଲେ। ସେ ଫେରିବା ଲାଗି ପ୍ରସ୍ତୁତ ହେବା ସମୟରେ ମୁଁ ପୁରୁକୁ ତାଙ୍କ ପାଦତଳେ ଶୁଆଇଦେଇ, ନିଜେ ପ୍ରଣାମ କରି କହିଲି– "ନନା, ପୁଣି ଆପଣଙ୍କ ସହିତ କେବେ ମୋର ଦେଖା ହେବ?"

ସେ ହସି ହସି ପ୍ରଶାନ୍ତ ଚିତ୍ତରେ ଉତ୍ତରଦେଲେ– "କେବେ ଦେଖାହେବ? ଏ ପ୍ରଶ୍ନର ଉତ୍ତର ସେହି ତ୍ରିକାଳଦର୍ଶୀ କାଳପୁରୁଷ ହିଁ ଦେଇପାରିବେ, ମୁଁ ନୁହେଁ।"

ଯତିମହାରାଜଙ୍କର କଥା ଶୁଣି ମୁଁ ମନେ ମନେ କମ୍ପିଉଠି କହିଲି– "ଏ ଅଭାଗିନୀର ଏକମାତ୍ର ଆଶାଭରସାର ସନ୍ତାନଟିକୁ ଆପଣ ଆଶୀର୍ବାଦ ଦିଅନ୍ତୁ।"

ସେ ପୁରୁକୁ ତଳୁ ଉଠାଇନେଇ କୋଳରେ ବସାଇ ତା'ର ଅଳିଆ କେଶରେ ହାତ ବୁଲାଉ ବୁଲାଉ କହିଲେ– "ବୋହୂ! ଆଜି ହୁଏତ ତୁମ ପୁରୁ ବନବାସୀ ହୋଇ ଦୁଃଖମୟ ଜୀବନ ଭୋଗକରୁଛି; କିନ୍ତୁ କାଲି ଏ ହସ୍ତିନାପୁରର ରାଜସିଂହାସନରେ ନିଶ୍ଚୟ ଅଭିଷିକ୍ତ ହେବ।"

× × × ×

ଶୁକ୍ଳପକ୍ଷର ଚନ୍ଦ୍ରମାପରି ମୋ ରଙ୍କୁଣୀଧନ ପୁରୁ ଧୀରେ ଧୀରେ ବଢ଼ିବାକୁ ଲାଗିଲା; କିନ୍ତୁ ସେ ଭାରି ଦୁଷ୍ଟ ହୋଇଥିଲା। ତାକୁ ସମ୍ଭାଳିବାକୁ ଯାଇ ମୁଁ ନାକେଦମ୍ ହୋଇଯାଉଥିଲି। ଯତିମହାରାଜଙ୍କ ବ୍ୟବସ୍ଥା ଫଳରେ ମୁଁ ସେଠାରେ 'ବନଦେବୀ' ପରି ସମ୍ମାନିତା ହୋଇ ରହିଥିଲି। ମୋତେ ସାହାଯ୍ୟ କରିବାଲାଗି ଅନେକ ଲୋକ ଆଜ୍ଞାକୁ ଅବଧାନ ହୋଇ ରହିଥିଲେ। ସେହିମାନଙ୍କ ଯତ୍ନରୁ ପୁରୁର ଗୋଡ଼ରେ ଗୋଟିଏ ସାମାନ୍ୟ ଗୋଡ଼ି ମଧ୍ୟ ବାଜୁନଥିଲା।

ପୁରୁ ଧୀରେ ଧୀରେ କଥା କହିବାକୁ ଆରମ୍ଭକଲା। ତାର ଦୋ'ତୁଣ୍ଡା କଥା ଶୁଣି ମୋର ମନରେ ଆନନ୍ଦର ଉସ୍ର କୂଳ ଲଂଘନ କଲା। ସେ ଆଉ ଟିକିଏ ବଡ଼ହୋଇଯାଇ ଛୋଟ ଧନୁଟିଏ ଧରି ଲକ୍ଷ୍ୟ ସାଧନରେ ଲାଗିପଡ଼ିଲା। ତା'ର ଟିକି ଶରଟି ଲକ୍ଷ୍ୟସ୍ଥଳରେ ବାଜିଗଲେ ମୋତେ ସ୍ୱର୍ଗ ମିଳିଗଲାପରି ବୋଧହେଉଥିଲା। ପୁରୁ ଆଉ ଟିକିଏ ବଡ଼ହୋଇଯିବାପରେ, କିଛି ଦୂରରେ ଥିବା ଜଣେ ବିଦ୍ୱାନ୍ ଋଷିଙ୍କ ଆଶ୍ରମରେ ତାର ବିଦ୍ୟାରମ୍ଭ ହୋଇଗଲା।

ମୋ ସହିତ ତାଳଦେଇ ମୋ ଗଣ୍ଠିଧନ ପୁରୁ ବୟସର ସୁନେଲି ସୋପାନରେ ପାଦଦେଇ ଅଗ୍ରସର ହେଉଥିଲା। ଧୀରେ ଧୀରେ ତା' ମନରେ ସ୍ୱତନ୍ତ୍ର ବିଚାରଧାରା ଜାଗ୍ରତହେଲା ଏବଂ ମୁଁ ତା'ର ସ୍ୱାଧୀନ ଚିନ୍ତା, ସ୍ୱତନ୍ତ୍ର କଳ୍ପନାକୁ ସମ୍ମାନଦେଲି। ତଥାପି ସେ ଥିଲା ମୋର ଗଣ୍ଠିଧନ, ଅନ୍ଧର ଲଉଡ଼ି ଓ ଦୁଃଖିନୀର ପସରା। ଧୀରେ ଧୀରେ ସେ ଦଶ ଏଗାର ବର୍ଷରେ ପଦାର୍ପଣ କଲା। ତା'ର ପରାକ୍ରମ ଦେଖି ମୁଁ ଯେତିକି ଗର୍ବିତା ହେଲି, ସେତିକି ଭୟଭୀତା ହେଲି ତାର ସାହସ ଲକ୍ଷ୍ୟକରି।

ମାଆର ମନ କେଡ଼େ ଅବୁଝା! ଗୋଟିଏ ଦିଗରେ ସେ ଚାହେଁ ଯେ ତା'ର ପୁତ୍ର ଶୀଘ୍ର ଶୀଘ୍ର ବଡ଼ ହୋଇଯାଇ ଅଦ୍ଭୁତ କାର୍ଯ୍ୟଦ୍ୱାରା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁ, ଦୁନିଆରେ ଖ୍ୟାତି ଅର୍ଜନ କରୁ; ଅନ୍ୟ ଦିଗରେ ଚାହେଁ ତା' ନୟନର ତାରା ସବୁଦିନେ ଟିକିପିଲା ହୋଇ ରହିଥାଉ, ତା' ଦେହରେ ସାମାନ୍ୟ ଆଘାତ ସୁଦ୍ଧା ନ ଲାଗୁ; ସେ ତା'ରି ପଣତକାନିର ଆଶ୍ରୟରେ ସବୁଦିନ ସୁରକ୍ଷିତ ହୋଇ ରହିଥାଉ, ମୃତ୍ୟୁ ସୁଦ୍ଧା ତାର କିଛି ହେଲେ ଅନିଷ୍ଟ କରିନପାରୁ। ସେ ଶିକାରକୁ ଯାଇ ଶୀଘ୍ର ଲେଉଟିନଆସିଲେ ମୋର ପ୍ରାଣ କଣ୍ଠାଗ୍ରତ ହୋଇଯାଏ। ମନରେ କେତେ ପ୍ରକାର ଅମଙ୍ଗଳ ଆଶଙ୍କା ଜାତହୁଏ ଏବଂ ଦେବୀ ଦେବତାଙ୍କ ଉଦ୍ଦେଶ୍ୟରେ କେତେ ମୁଁ ମାନସିକ କରିପକାଏ। ପର୍ଣ୍ଣକୁଟୀରଦ୍ୱାରରେ ଛିଡ଼ାହୋଇ ତା'ରି ଲେଉଟାଣି ପଥକୁ ମୁଁ ଚାହିଁରହିଥାଏ; କିନ୍ତୁ ପୁରୁକୁ ଫେରିଆସୁଥିବାର ଦେଖିଲେ ଅଶାନ୍ତ ମନର ଝଡ଼ କ୍ଷଣକ ମଧ୍ୟରେ ଶାନ୍ତହୋଇଯାଏ। ତା'ର ଶିକାର ଦେଖିଲେ ମନ ଆନନ୍ଦରେ କୂଳକିନାରା ମାନେନାହିଁ। ଭାବେ– ସତେ ମୁଁ ସ୍ୱପ୍ନ ଦେଖୁନାହିଁ ତ? ସଙ୍ଗେ ସଙ୍ଗେ ଆଖି ଆଗରେ ନାଚିଉଠେ ତା'ର ଟିକି ଟିକି ଆଙ୍ଗୁଳିଗୁଡ଼ିକ ଏବଂ ଛୋଟ ଛୋଟ ହାତ ଦୁଇଟି। ଏଇ ଛୋଟ ହାତରେ ସେ ଧନୁରେ ଗୁଣ ଦେଇ ସତେ କ'ଣ ଏତେ ବଡ଼ ଜନ୍ତୁଟାକୁ ମାରିଦେଇଛି? ପିଲାଦିନେ ନିଜ ଛାଇକୁ ଅନାଇଦେଇ ଡରରେ ମୋ ପଣତକାନି ମୁହଁରେ ଢାଙ୍କି ଲୁଚିଯାଉଥିବା ପୁରୁ, ଯୌବନର ପ୍ରଥମ ସୋପାନରେ ପଦାର୍ପଣ କରି, ଘନ ଜଙ୍ଗଲର ଅଗମ୍ୟ ଅଞ୍ଚଳରେ ପଶି ହିଂସ୍ର ଜନ୍ତୁଙ୍କର ସମ୍ମୁଖୀନ ହୋଇପାରୁଛି।

ନଦୀ ନିଜର ଉଦ୍‌ଗମ ସ୍ଥାନରେ ନିତାନ୍ତ କ୍ଷୀଣଧାରରେ ବହିଚାଲେ; ଧୀରେଧୀରେ ବଣବୁଦା, ଖାଲଢ଼ିପ, ଖମା ଓ ଅରମା ଅତିକ୍ରମ କରି ସେ ପାହାଡ଼ର ପାଦଦେଶକୁ ଓହ୍ଲାଇ ଆସିବା ମାତ୍ରେ ଆଉ କେତେ ଧାର ଆସି ତା'ଦେହରେ ମିଶିଯାଆନ୍ତି। ସେ କେତେ କୁଟୀଳ ମାର୍ଗ ଅତିକ୍ରମକରି ମହାନଦୀରେ ପରିଣତ ହୋଇ ବହିଚାଲେ। ଠିକ୍ ସେହିପରି, ମୋ ନୟନର ତାରା ପୁରୁ ଦିନକୁଦିନ ନୂଆନୂଆ ପ୍ରକାର କାର୍ଯ୍ୟ କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବା ସଙ୍ଗେ ସଙ୍ଗେ ଆଦିବସୀମାନଙ୍କ ମଧ୍ୟରୁ ବଛା ବଛା ପରାକ୍ରମୀ ଯୁବକମାନଙ୍କୁ ନିଜର ପରମ ମିତ୍ରରୂପେ ଆଦରିନେଲା। ତା'ର ମିତ୍ରମଣ୍ଡଳୀରେ କେତେଜଣ ଋଷିକୁମାର ମଧ୍ୟ ଥିଲେ। ସେ ସେଠାକାର ଆନନ୍ଦ-ଉତ୍ସବ ଓ ସୁଖ-ଦୁଃଖରେ ଭାଗୀଦାର ହୋଇ ମହାଆନନ୍ଦରେ ହସଖେଳରେ ଦିନ ବିତାଇବାକୁ ଲାଗିଲା।

ବେଳେବେଳେ ମୋ ମନରେ ଅଦ୍ଭୁତ ଖିଆଲ ଜାତହୁଏ। ମୁଁ ଭାବେ– 'ପୁରୁ ମୋ'ରି ପାଖେପାଖେ ଲାଗିକରି ରହିଛି'; ଆଉ କେତେବେଳେ ଭାବେ– 'ନା... ଏହା ଗୋଟିଏ କଳ୍ପନା ମାତ୍ର, ସେ ମୋ'ଠାରୁ ବହୁଦୂରକୁ ଚାଲିଗଲାଣି।' ମନଖୁସିରେ ଗୀତ ଗାଇ ଗାଇ ପକ୍ଷୀ ଆକାଶରେ ବିଚରଣ କରୁଥିବାବେଳେ ନିଜର କାଠିକୁଟାରେ ନିର୍ମିତ ନୀଡ଼ ସହିତ ତା'ର ଯେତିକି ସମ୍ପର୍କ ରହିଥାଏ, ଠିକ୍ ସେହି ସମ୍ପର୍କ ପୁରୁ ଓ ମୋ' ମଧ୍ୟରେ ରହିଥିଲା। ମୋ ଜୀବନଧାରା, ଚାଲିଚଳନଠାରୁ ସେ ସଂପୂର୍ଣ୍ଣ ଦୂରେଇଯାଇ ନିଜର ଏକ ସ୍ୱତନ୍ତ୍ର ଦୁନିଆ ଗଢ଼ିନେଲା। ତା' ଲକ୍ଷ୍ୟ କରି ମୁଁ ଭାବେ– ସେ ତା'ର ଏକ ବିକଶିତ ଦୁନିଆ ଗଢ଼ିନେଲେ ଏ ଅଭାଗିନୀ ମା'ଟା ପାଇଁ ସେଥିରେ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ରହିବ ତ? ନା...।

ବେଳେବେଳେ ଏହି ବିଚାର ମୋ ମନକୁ ଭାରାକ୍ରାନ୍ତ କରିଦିଏ ଏବଂ ମୁଁ ଉଦାସ ମନରେ ବସିରହେ। ମୋ ଉଦାସିଆ ଚାହାଣିକୁ ଲକ୍ଷ୍ୟକରି ପୁରୁ ପଚାରେ– "ମାଆ, ତୁମର କ'ଣ ହୋଇଛି କି? ତୁମେ ଏଡ଼େ ଉଦାସ ହୋଇ ବସିଛ କାହିଁକି?" ତା' ପ୍ରଶ୍ନର ଉତ୍ତର ଦେବାକୁ ମୁଁ କିଛିହେଲେ ବୁଦ୍ଧିବାଟ ପାଏନାହିଁ; କେବଳ ଭାବେ– ଏହାହିଁ କ'ଣ ନିୟତିର ବିଧାନ? ମଣିଷ କ'ଣ କେବଳ ନିଜର ପରିଧିରେ ଘୂରିବୁଲିବା ଈଶ୍ୱରଙ୍କର ଏକମାତ୍ର ଇଚ୍ଛା? ମୁଁ ପିତା, ମାତା ଓ ସ୍ୱାମୀ ସୁଖରୁ ବଞ୍ଚିତା; କିନ୍ତୁ ଏ ବୟସରେ କ'ଣ ପୁତ୍ରସୁଖରୁ ବଞ୍ଚିତ ହେବା ମୋ ଫଟାକପାଳରେ ଲେଖାଅଛି? ନିଜର ଭବିଷ୍ୟତ କଥା ଚିନ୍ତାକରି ମୁଁ ଖୁବ୍ ଡରିଯାଏ।

ଏଭଳି ଅଦ୍ଭୁତ ଭାବନା ମୋ ମନରେ ଜାତହେବାକ୍ଷଣି, ମୁଁ ପତ୍ରକୁଡ଼ିଆରୁ ବାହାରକୁ ବାହାରିଆସି ହିମାଳୟର ବରଫପୂର୍ଣ୍ଣ ଉତ୍ତୁଙ୍ଗ ଶିଖର ଆଡ଼କୁ ଚାହିଁ ଘଣ୍ଟା ଘଣ୍ଟା ବିତାଇଦିଏ। ଏହି ସୁରମ୍ୟ ପରିସର ମଧ୍ୟରେ ମାଆ ପାର୍ବତୀ କଠୋର ତପସ୍ୟାକରି ସଫଳ ହୋଇଥିଲେ। ମୁଁ ମଧ୍ୟ ଦୀର୍ଘଦିନଧରି ବନବାସିନୀ ହୋଇ ଶେଷରେ ଆସି ସେହି ହିମାଳୟର ପାଦଦେଶରେ ରହି ତପୋମୟ ଜୀବନ ଯାପନ କରୁଛି; ତେଣୁ ମୋର ମନୋରଥ ଯେ ନିଶ୍ଚୟ ସିଦ୍ଧ ହେବ ଏହା ଭାବି ମୁଁ ଆଶ୍ୱସ୍ତ ହେଉଥିଲି।

କେବଳ ହିମାଳୟର ଦୃଶ୍ୟ କାହିଁକି, ବଣଜଙ୍ଗଲର ପ୍ରତ୍ୟେକ ବସ୍ତୁ ମୋ ମନରେ ଅପାର ଧୈର୍ଯ୍ୟ ଆଣିଦିଏ ଏବଂ ଜୀବନଦର୍ଶନର ଗୁପ୍ତ ରହସ୍ୟ ସମ୍ବନ୍ଧରେ ମୋ ଆଖି ଖୋଲିଦିଏ। ଲତାକୁଞ୍ଜରେ ପ୍ରଥମେ କଳିକା ହୁଏ, ତା'ପରେ ଫୁଲ ଫୁଟି ବାସନାରେ ଦିଗ ଚହଟାଇଦିଏ। ତା'ପରେ ଦିନେ ସେ ମଉଳିଯାଉଥିଲେ ମଧ୍ୟ ହସିହସି ମୋ ମନ-ବେଦନାର ନିରାକରଣ ଲାଗି ମୋ କାନେକାନେ କହିଯାଏ– "ଶର୍ମିଷ୍ଠା, ତୁ ପାଗଳୀଟାଏ– ତୋର ଅପରୂପ ସୌନ୍ଦର୍ଯ୍ୟ, ଯୌବନର ରେଶମୀ ପାଖୁଡ଼ା ଏ ଆରଣ୍ୟକ ପ୍ରାନ୍ତରେ ମଉଳିଯାଉଥିବାରୁ ତୁ ଦୁଃଖ କରୁଛୁ; ମାତ୍ର ଏହା ହିଁ ହେଉଛି ସୃଷ୍ଟିର ନିୟମ। ଯାହା ଆଜି ବିକଶିତ ହୋଇଛି, ତାହା କାଲି ପୁଣି ମଉଳିଯିବ। ଆମେ ତ କାହିଁ ସେଥିଲାଗି ଟିକିଏ ହେଲେ ଦୁଃଖ କରୁନାହୁଁ? ଜୀବନରେ ସୁଖ ଆସୁ ବା ଦୁଃଖ ଆସୁ, ତାକୁ ଆନନ୍ଦର ସହିତ ଗ୍ରହଣ କରିନେବା ଏବଂ ଜନକଲ୍ୟାଣ ଉଦ୍ଦେଶ୍ୟରେ ହସି ହସି ବିତରଣ କରିବା ହେଉଛି ସୁଖୀ ହେବାର ସବୁଠାରୁ ସହଜ ଓ ସରଳ ମାର୍ଗ।

କୁଳୁକୁଳୁନାଦିନୀ ନଦୀ ମଧ୍ୟ ଏହିପରି କେତେ କଥା କହି ମୋ ବିରସ ମନରେ ଧୈର୍ଯ୍ୟ ଧାରଣ ଲାଗି ପ୍ରେରଣା ଦିଏ। ବର୍ଷାକାଳରେ ସେହି ମନୋହର ନଦୀଗୁଡ଼ିକର ଉଗ୍ର ରୂପ ତଥା ତା'ଦ୍ୱାରା ହେଉଥିବା କ୍ଷୟକ୍ଷତିର କଳନା କରି ମୁଁ ଭାବେ– 'ବାସ୍ତବିକ ମଣିଷର ଯୌବନ ମଧ୍ୟ ଠିକ୍ ଏହିପରି। ଯୌବନର ଜୁଆରରେ ମଣିଷ ଉଗ୍ର ହୋଇଯାଇ, ଆଗପଛ ନ ବିଚାରି କେତେ ଉଦ୍ଦଣ୍ଡ ହୋଇନଯାଏ? ସୁଖ, ଆନନ୍ଦ ତଥା ଉତ୍ସାହର ମୋହରେ ଭାସିଯାଇ ସେ ନାନାପ୍ରକାର ଅସୁବିଧାର ସମ୍ମୁଖୀନ ହୁଏ। ସେହି ଧାଁ-ଦୌଡ଼ ମଧ୍ୟରେ ସେ କେତେ ସୁକୁମାର ବସ୍ତୁକୁ ପାଦରେ ଦଳିଚକଟି ଦିଏ ତା'ର କଳନା ନାହିଁ।'

ଏହି ବନବାସ-ଜୀବନରେ ମୁଁ ମଧ୍ୟ ମୁନିଋଷିମାନଙ୍କ ତପସ୍ୟାର ରହସ୍ୟ ଭଲଭାବରେ ହୃଦୟଙ୍ଗମ କରିପାରିଲି। ନୈସର୍ଗିକ ବସ୍ତୁ ସହିତ ମାନବର ଅଭେଦ୍ୟ ତଥା ଅଚ୍ଛେଦ୍ୟ ସମ୍ପର୍କ ଲକ୍ଷ୍ୟ କଲେ ଜଣାଯାଏ, ଏହି ଶାଶ୍ୱତ ସମ୍ବନ୍ଧ ବିନା ମଣିଷ ଜୀବନର ରହସ୍ୟ, ଦୃଷ୍ଟିଭଙ୍ଗୀ ତଥା ମର୍ଯ୍ୟାଦା ବିଷୟରେ କିଛି ହେଲେ ଧାରଣା କରିହେବ ନାହିଁ। କୃତ୍ରିମ ତଥା ସ୍ୱାର୍ଥପୂର୍ଣ୍ଣ ଜୀବନଧାରାରେ ମଣିଷର କଳ୍ପନା, ଭାବନା ଏବଂ ବାସନା ମଧ୍ୟ ବିକୃତ ଆକାର ଧାରଣ କରେ। ମୋର ସୌଭାଗ୍ୟ ଯେ, ମୁଁ ଅଭାଗିନୀ ହୋଇଥିଲେ ମଧ୍ୟ ଏ ଅରଣ୍ୟ ପ୍ରଦେଶକୁ ଆସି ଜୀବନର ସତ୍ୟ ଓ ଜୀବନଦର୍ଶନ ବିଷୟରେ ଅନେକ ରହସ୍ୟ ଜାଣିପାରିଛି।

ଅବଶ୍ୟ ଏ ଧାରଣର ରହସ୍ୟାବୃତ୍ତ ଚିନ୍ତାଧାରାରେ ମୁଁ ସବୁବେଳେ ମଗ୍ନ ହୋଇପାରେନାହିଁ। ମୁଁ ଗୋଟିଏ ବିରହିଣୀ ନାରୀ; ମୋ ପକ୍ଷରେ ବେଶଭୂଷଣରେ ସଜ୍ଜିତ ହେବା ସୁନ୍ଦର ନୁହେଁ। ତା'ଛଡ଼ା ଶୃଙ୍ଗାରିକ ବେଶସଜ୍ଜା କାହାପାଇଁ ସଜାଇବି ? ତା'ସତ୍ତ୍ୱେ ମନ ବେଳେବେଳେ ମାନେନାହିଁ। ବେଶଭୂଷଣରେ ଭୂଷିତହେବାଲାଗି ମନ ବ୍ୟଗ୍ର ହୋଇଉଠେ। ଆଖପାଖରେ କେତେ ରଙ୍ଗ-ବେରଙ୍ଗରେ ଫୁଟିଥିବା ଫୁଲଗୁଡ଼ିକ ମୋ ଆଡ଼କୁ ଚାହିଁ ହସିହସି କହନ୍ତି– ''ଆରେ ପାଗଳି ! ତୁ ଆମ ପାଖରୁ ପଳାଇଯାଉଛୁ କାହିଁକି ? ଆମେ ପରା ତୋ'ରି ପାଇଁ ସବୁ ଫୁଟିଛୁ ? ତୁ ମୁହଁମୋଡ଼ି ଆମକୁ ଆଡ଼େଇଦେଲେ ଚଳିବ କିପରି ? ମୋ ଭିତରେ ଲୁଚିରହିଥିବା ସ୍ତ୍ରୀର ଲୋଭାଣିଆ ମନ ଜାଗିଉଠେ। ମୁଁ ନାନାରଙ୍ଗର ଫୁଲଗୁଡ଼ିଏ ତୋଳିଆଣି ଇଚ୍ଛାନୁସାରେ ନିଜକୁ ସଜାଇନିଏ। ଏହି ସମୟରେ ମହାରାଜଙ୍କ ସୌମ୍ୟ ମୂର୍ତ୍ତି ମୋ ଆଖିଆଗରେ ନାଚିଉଠେ। ସେତେବେଳେ ଏହିପରି ବେଶଭୂଷଣରେ ସଜ୍ଜିତା ହୋଇ ଅଶୋକବନର କକ୍ଷ ମଧ୍ୟରେ ମୁଁ ତାଙ୍କରି ପ୍ରତୀକ୍ଷାରେ ବସିରହୁଥିଲି। ସେ ସମୟର ଉନ୍ମାଦକ ସ୍ମୃତି ଗୋଟି ଗୋଟି ହୋଇ ମନକୁ ଘାଣ୍ଟିପକାଏ। ସାରାଦିନ ମନ ଖାଲି ଗୋଳେଇଘାଣ୍ଟି ହୁଏ, ରାତିରେ କୁଟୀରର ତୃଣଶଯ୍ୟା ମନରେ ନିଆଁ ଜଳାଇଦିଏ। ହାୟ . . . ହେଉପଛେକେ ତୃଣଶଯ୍ୟା, ଥରେ 'ଶମା' ବୋଲି ଡାକି ମହାରାଜ ଯଦି ମୋର ଶଯ୍ୟାସଙ୍ଗୀ ହୁଅନ୍ତେ, ତା'ହେଲେ ସ୍ୱର୍ଗସୁଖ ମୋ ପାଖରେ ତୁଚ୍ଛ ମନେହୁଅନ୍ତା। ତାଙ୍କର ସୁଖଦ ସ୍ପର୍ଶ, ନା . . . ନା . . . ଆଃ . . . ଥରେ ହେଲେ ପାଇପାରନ୍ତି କି !

ମନେ ମନେ ଅନେକ ଚେଷ୍ଟା କରେ ଏ ପ୍ରକାର ଅଳୀକ କଳ୍ପନାଠାରୁ ଦୂରରେ ରହିବାପାଇଁ; କିନ୍ତୁ ସମ୍ଭବ ହୁଏନାହିଁ। ତେଣୁ କଚ୍‌ଦେବ ଓ ଯତିମହାରାଜଙ୍କ କଠୋର, ସତ୍ୟନିଷ୍ଠ ଜୀବନଧାରା ସମ୍ବନ୍ଧରେ ଭାବିବସେ। ସେମାନଙ୍କ ବୈରାଗ୍ୟ ବିଷୟରେ ଚିନ୍ତାକରି ମନକୁ ବୁଝାଇବାଲାଗି ଚେଷ୍ଟାକରେ, କିନ୍ତୁ କ'ଣ ହେବ; ଓଲିଆ ଗାଈ ପଘା ଛିଡ଼ାଇ ଫସଲ କ୍ଷେତକୁ ଧାଇଁଗଲାପରି; ମୋ ମନ ପୁଣି ସେହି ଚିନ୍ତାରେ ମଗ୍ନ ହୋଇଯାଏ। ନିମିଷକମାତ୍ରେ ମନ ଯାଇ ପହଞ୍ଚିଯାଏ ସୁଦୂର ହସ୍ତିନାପୁର ରାଜମହଲରେ; ଅଶୋକବନର ସୁଡ଼ଙ୍ଗଦ୍ୱାର ପାଖରେ। ନା . . . ମଣିଷ ନିଜ ନିଜ ଅତୀତରେ ସ୍ମୃତିକୁ ଏତେ ସହଜରେ ଏଡ଼ାଇ ଦେଇ ପାରେନାହିଁ !

ମୁଁ ଅନେକ ଚେଷ୍ଟା କରି, ଭିନ୍ନ ଭିନ୍ନ ବିଷୟରେ ଚିନ୍ତା ମନ ମଧ୍ୟରେ ପୂରାଇ, ଅତୀତର କୋମଳ ସ୍ମୃତିକୁ ଭୁଲିଯିବା ଲାଗି ସାଧ୍ୟମତେ ଯତ୍ନକରେ; କିନ୍ତୁ ହୋଇପାରେନା।

ମୋ'ରି ଭାବନା ମଧ୍ୟରେ ସେ ଝିଲିମିଲି ସ୍ମୃତିଗୁଡ଼ିକ କେତେବେଳେ ଆସି ମନଗହନରେ ଆସନପାତି ବସିଯାଆନ୍ତି, ମୁଁ ଠଉରେଇପାରେନାହିଁ। ସେହିପରି କେତେକ ସ୍ମୃତି ମଧ୍ୟରେ ଗୋଟିଏ ହେଉଛି– ଖୁବ୍ ବେଶି ଦିନର ନୁହେଁ ଅବଶ୍ୟ; କିନ୍ତୁ ଅତ୍ୟନ୍ତ ମଧୁର ତଥା ମନୋମୋହକ। ପୁରୁ ସାତ-ଆଠ ବର୍ଷର ହୋଇଥାଏ, ମୁଁ ତାକୁ ନେଇ ନିକଟସ୍ଥ ଗ୍ରାମରେ ଅନୁଷ୍ଠିତ ଗୋଟିଏ ଉତ୍ସବରେ ଯୋଗଦେବାକୁ ଯାଇଥିଲି। ପୁରୁ ଋଷିକୁମାର ଓ ତା'ର ଅନ୍ୟାନ୍ୟ ସାଙ୍ଗସାଥୀମାନଙ୍କ ସହିତ ଆଗରେ ଯାଇ ବସିଲା। ମୋ ପାଖରେ ଜଣେ ପ୍ରୌଢ଼ାଙ୍କ କୋଳରେ ତିନିଚାରି ବର୍ଷର ସୁନ୍ଦର ଝିଅଟିଏ ବସିଥିଲା। ତା' ଆଖିଯୋଡ଼ିକ ମୋତେ ଖୁବ୍ କଉତୁକିଆ ଲାଗିଲା; ଆଖି ଅପେକ୍ଷା ତା'ର କୁଞ୍ଚୁକୁଞ୍ଚିଆ କେଶ, ତା ମଝିରେ ଗୋଟିଏ ଗୋଟିଏ ସୁନେଲି ରଙ୍ଗ କେଶ ମୋ ମନକୁ ଓଟାରିନେଲା। ଝିଅଟି କେବଳ ସୁନ୍ଦର ନଥିଲା, ତା'ର ଠାଣିରୁ ଜଣାପଡୁଥିଲା ଯେ, ସେ ଖୁବ୍ ଚାଲାକ୍ ଚତୁର ମଧ୍ୟ। ମୁଁ ହାତ ବଢ଼ାଇଦେବାରୁ ସେ ବିନା ସଙ୍କୋଚ୍‌ରେ ମୋ କୋଳକୁ ଡେଇଁପଡ଼ି ମୋ ମୁହଁକୁ ଏକଲୟରେ କିଛିକ୍ଷଣ ଚାହିଁରହିଲା। ମୁଁ ତା'ର ଚିବୁକ ଧରି ପଚାରିଲି– "ଝିଅ, ତୋ' ନାଆଁ କଅଣ?"

"ଅଳକା ..."

ଓଃ, କେଡ଼େ ସୁନ୍ଦର ନାଆଁଟିଏ ତ! ସେ ସ୍ତ୍ରୀଙ୍କ ସହିତ ପରିଚିତା ହୋଇ କେତେ ସମୟ ପରେ ମୁଁ କୁଡ଼ିଆକୁ ଫେରିଆସିଲି। ବହୁଚେଷ୍ଟା କଲେ ମଧ୍ୟ ମୋ ଆଖି ଆଗରୁ ସେ ଝିଅଟିର ଅପରୂପ ଛବି ଦୂରେଇ ଗଲାନାହିଁ। ତା'ରି ମଧ୍ୟରେ ମହାରାଜଙ୍କ ସ୍ମୃତି ପୁଣି ଆସି ମନକୁ ଆବୋରି ବସିଲା। ହାୟ... ପୁରୁର ଏହିପରି ଗୋଟିଏ ଭଉଣୀ ଥାଆନ୍ତା କି? ଅନେକ ଦିନ ପର୍ଯ୍ୟନ୍ତ ମୋ ମନରେ ଏହି ଚିନ୍ତା ଲାଗିରହିଲା। ମହାରାଜଙ୍କ ସାନ୍ନିଧ ଲାଗି ମନ ସବୁବେଳେ ବ୍ୟତିବ୍ୟସ୍ତ ହୋଇଉଠିଲା।

ଯା' ମଧ୍ୟରେ ଥରେ ଯତିମହାରାଜ ଆସି ମୋ ଖବର ବୁଝି, ରାଜମାତାଙ୍କର ସ୍ୱର୍ଗବାସ ହୋଇଥିବାର ସମ୍ବାଦ ଦେଲେ। ରାଜମାତାଙ୍କ ମୃତ୍ୟୁ-ଖବର ଶୁଣି ମୁଁ ଦୁଃଖିତାହେଲି। ସେ ମୋତେ ଖୁବ୍ ସ୍ନେହକରୁଥିଲେ; ଯା'ହେଲେ ବି ସେ ମୋ ଶାଶୂ ତ? ଶେଷ ଜୀବନରେ ମୁଁ ତାଙ୍କର କିଛି ହେଲେ ସେବା କରିପାରିଲିନାହିଁ; ସେଥିପାଇଁ ମୋ ମନରେ ଗଭୀର ଦୁଃଖ ଜାତହେଲା।

ଥରେ ହସ୍ତିନାପୁରରୁ ଲେଉଟିଥିବା ଜଣେ ସାଧୁଙ୍କ ସହିତ ମୋର ସାକ୍ଷାତ୍ ହେଲା। ତାଙ୍କରିଠାରୁ ଶୁଣିଲି ଯେ, ମହାରାଜ ରାଜକାର୍ଯ୍ୟ ଆଦୌ ବୁଝୁନାହାନ୍ତି। ଯଦୁ ଛୋଟପିଲା ହୋଇଥିବାରୁ ଦେବଯାନୀ ସମସ୍ତ ଦାୟିତ୍ୱ ସମ୍ଭାଳି ନେଉଛି। ଆଦୌ ବୁଝିପାରିଲିନି– ହେଲା କଅଣ? ତା'ହେଲେ କ'ଣ ମହାରାଜ ଓ ଦେବଯାନୀଙ୍କ ମଧ୍ୟରେ କଳିତକରାଳ ହୋଇଯାଇଛି? ହେଲେ ସୁଦ୍ଧା, କେହି କ'ଣ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟରେ ଅବହେଳା-କରିପାରେ? ଏ ଝଗଡ଼ା ଫଳରେ ମହାରାଜଙ୍କର ମନଃସ୍ଥିତି କ'ଣ ହୋଇଥିବ? କେତେକ ଲୋକ ଅଛନ୍ତି, ସେମାନେ କେବଳ ସ୍ନେହ, ପ୍ରେମ ଓ ଆଦର ଆଶାକରନ୍ତି, ସେତକ ନ ପାଇଲେ ସେମାନେ ଝାଉଁଳିପଡ଼ନ୍ତି। ଦେବଯାନୀର ଆଚରଣ ଫଳରେ ମହାରାଜଙ୍କର ଅବସ୍ଥା କ'ଣ ସେଇଆ ହୋଇଛି?

ସେ ଦିନସାରା ମୋ ମନ ଖାଲି ଗୁଡ଼େଇ-ଘାଣ୍ଟିହେଲା। ମନେ ମନେ ଭାବିଲି,

ଯାଉଛି, ସାହସ କରି ହସ୍ତିନାପୁର ଚାଲିଯାଇ ମହାରାଜଙ୍କୁ କହିବି– ''ଚାଲନ୍ତୁ, ଆପଣ ମୋର ପତ୍ରକୁଡ଼ିଆକୁ ଚାଲନ୍ତୁ, ସେଇଠି ଆମେ ରାଜମହଲ ନିର୍ମାଣ କରିବା।'' ପୁରୁ ବର୍ତ୍ତମାନ ଛୋଟପିଲା, ଦେବଯାନୀର ଘୋଷଣା ଏବେ ସୁଦ୍ଧା ମୋର ମନେ ଅଛି; ମୁଁ କିଛି ଉପାୟ ନପାଇ ଶେଷରେ ଅନେକ ସମୟ ପର୍ଯ୍ୟନ୍ତ ବସି କାନ୍ଦିଲି। ସେଦିନ ରାତିରେ ଆଦୌ ନିଦ ହେଲାନାହିଁ। ମୁଁ ପ୍ରତିଦିନ ଶୋଇବା ପୂର୍ବରୁ ପ୍ରାର୍ଥନା କରି କହେ– 'ହେ ଭଗବାନ୍, ତାଙ୍କୁ ସୁଖୀ କରାଅ।' ମୋ ପ୍ରାର୍ଥନା ଶୁଣି ପୁରୁ ପିଲାଟିଦିନରୁ ମୋ ସ୍ୱରରେ ସ୍ୱର ମିଳାଇ ଠିକ୍ ସେଇଆ କହିଥାଏ। ଏବେ ସେ ଆଉ ଛୋଟ ପିଲା ନୁହେଁ; ପ୍ରତ୍ୟେକ କଥା ଖୁଣ୍ଟିନାଣ୍ଟି କରି ପଚାରି ବୁଝେ। ଦିନେ ସେ ଅଝଟିଆଙ୍କ ପରି ପଚାରିଲା– ''ମାଆ, ତୁମେ ବରାବର ରାତିରେ ଶୋଇବାବେଳେ କହୁଛ 'ତାଙ୍କୁ' . . . କାହାକୁ ?''

ମୁଁ ହସି ହସି କହିଲି– ''ତାଙ୍କୁ . . . ମାନେ . . . ତାଙ୍କୁ . . .।''

''ତାଙ୍କ ନାମ କୁହ।''

''ତୁ ବଡ଼ହୋଇଗଲେ ମୁଁ ତୋତେ ବତାଇଦେବି।''

''ମୁଁ କ'ଣ ଏବେ ଛୋଟପିଲା ହୋଇ ରହିଛି ? ମୁଁ ବଡ଼ପିଲାଟେ ହୋଇଗଲିଣି। ମୁଁ ଲକ୍ଷ୍ୟଭେଦ କରିପାରୁଛି, ମନ୍ତ୍ର ଠିକ୍ ଭାବରେ ଉଚ୍ଚାରଣ କରିପାରୁଛି। ପହଁରିବା, ଗଛ ଚଢ଼ିବା ଆଦି ସବୁ କାମ ମୋ ଦ୍ୱାରା ସମ୍ଭବ ହୋଇପାରୁଛି।''

''ଉଁ. . .ହୁଁ. . . ଆହୁରି ଅନେକ କାମ ବାକିରହିଛି, ବହୁ ବିଦ୍ୟା ଅଧ୍ୟୟନ କରିବାର ଅଛି; ବଡ଼ବଡ଼ ଯୁଦ୍ଧରେ ବିଜୟ ହାସଲ କଲେ ଯାଇ ମଣିଷ ବଡ଼ହୋଇପାରେ।''

''ଆଜି କହିଲେ ମୁଁ ଯୁଦ୍ଧରେ ବିଜୟ ହାସଲ କରିପାରିବି। କୁହ, କାହା ସହିତ ଯୁଦ୍ଧ କରିବି ?''

ମୁଁ ତା' ପିଠି ଆଉଁସି ଦେଇ କହିଲି– ''ବାପା, ଏବେ ଯୁଦ୍ଧ କରିବା ଆବଶ୍ୟକ ନାହିଁ। ତୁ ପ୍ରଥମେ ଷୋ'ଳବର୍ଷର ହୋଇଯା; ତା'ପରେ ମୁଁ ତୋତେ କହିଦେବି 'ତାଙ୍କୁ' ମାନେ କାହାକୁ।''

ପୁରୁ ଷୋହଳବର୍ଷ ବୟସର ହେବା ପୂର୍ବରୁ ତା'ର ଚେହେରାରେ ମହାରାଜଙ୍କ ଆକୃତି ସ୍ପଷ୍ଟ ହୋଇଉଠିଲା। ଦଶ ବାର-ବର୍ଷ ବୟସ ପର୍ଯ୍ୟନ୍ତ ସେ ମୋ ପରି ଦେଖାଯାଉଥିଲା, କିନ୍ତୁ ତା'ପରେ ସେ ଖୁବ୍ ଲମ୍ବା ଏବଂ ହୃଷ୍ଟପୁଷ୍ଟ ହୋଇଗଲା। ତା' ଆଡ଼କୁ ଚାହିଁଦେଲେ, ମୋ ଆଖି ଆଗରେ ମହାରାଜଙ୍କ ସୌମ୍ୟ ମୂର୍ତ୍ତି ନାଚିଯାଏ। ମୁଁ ବରାବର ସାଧୁ-ସନ୍ନ୍ୟାସୀଙ୍କ ମୁହଁରୁ ହସ୍ତିନାପୁରର ଖବର ପାଉଥିଲି। ମହାରାଜ ରାଜମହଲ ତ୍ୟାଗକରି ବରାବର ଅଶୋକବନରେ ରହୁଥିଲେ, ବେଳେବେଳେ ଦୀର୍ଘଦିନ ଲାଗି ରାଜଧାନୀ ଛାଡ଼ି ବାହାରେ ରହି ଖୁବ୍ ବିଳାସ-ବ୍ୟସନରେ କାଳକାଟୁଥିଲେ। ତାଙ୍କ ସମ୍ବନ୍ଧରେ ଏପରି ଖବର ଶୁଣିଲେ, ମୋ ମନରେ କେତେ ପ୍ରକାର ଆଶଙ୍କା ଜାତ ହୁଏ। ଖବର ଦେବା ଲୋକେ କାହିଁକି ଜାଣିବେ ଯେ, ମହାରାଜଙ୍କ ସହିତ ମୋ ସମ୍ପର୍କ କ'ଣ ? ସେମାନେ ନିଜ କର୍ତ୍ତବ୍ୟ ଦୃଷ୍ଟିରୁ ଯାହା ଶୁଣିଥିଲେ, ମୋ ଜିଜ୍ଞାସାମତେ ବଖାଣିଯାଉଥିଲେ; କିନ୍ତୁ ସେମାନଙ୍କ କଥା ଶୁଣି ମୋ ଛାତି ଭିତରେ କ'ଣ ହୋଇଯାଉଥିଲା।

ଏପରି ଅବସ୍ଥାରେ ମୁଁ କ'ଣ କରିବି କିଛି ବୁଝିପାରିଲିନାହିଁ। ଗୋଟିଏ ମୁହୂର୍ତ୍ତ ବିଳମ୍ବ ନକରି, ଯାହାଙ୍କ ଲାଗି ପ୍ରାଣ ବିସର୍ଜନ କରିବାକୁ ପ୍ରସ୍ତୁତ, ତାଙ୍କରି ସମ୍ବନ୍ଧରେ ଦୁର୍ଦ୍ଦଶାଜନକ ସମ୍ବାଦ ଶୁଣିଲେ ସୁଦ୍ଧା ମୁଁ କିଂକର୍ତ୍ତବ୍ୟମୂଢ଼ ହୋଇ ବସିଛି, ଯା'ଠାରୁ ବଳି ଆଶ୍ଚର୍ଯ୍ୟର କଥା କ'ଣ ହୋଇପାରେ? ହାୟରେ, ମାନବ-ହୃଦୟ! କେଡ଼େ ଦୁର୍ବଳ!!

ହଠାତ୍ ଉପୁଜିଥିବା ନୂଆ ପ୍ରକାର ଦୁର୍ଦ୍ଦଶାଜନକ ପରିସ୍ଥିତିକୁ ଭୁଲିବାପାଇଁ ମୁଁ ପୁଣି ଚିତ୍ର ଅଙ୍କନ ଆରମ୍ଭ କରିଦେଲି। ଅଶୋକବନରେ ଯେଉଁ ରଙ୍ଗ ପ୍ରଭୃତି ଚିତ୍ରାଙ୍କନର ଉପାଦାନ ମିଳୁଥିଲା, ଏଠାରେ ତାହା କିପରି ସୁଲଭ ହୁଅନ୍ତା? ତଥାପି ଫୁଲ, ପତ୍ର ଓ ଅନ୍ୟାନ୍ୟ ଉପାଦାନରୁ ରଙ୍ଗ ପ୍ରସ୍ତୁତ କରିବାର ସାମଗ୍ରୀ ଏଠାରେ କମ୍ ନଥିଲା। ବିଶେଷତଃ ବାଳ ଓ ପରରେ ତୂଳୀ ପ୍ରସ୍ତୁତ କରି ମୁଁ କାମ ଆରମ୍ଭ କରିଦେଲି। ନଗରବାସୀଙ୍କ ତୁଳନାରେ ଏଠାକାର ବନବାସୀମାନେ ଚିତ୍ରାଙ୍କନ ଲାଗି କମ୍ ଆଗ୍ରହ ପ୍ରକାଶ କରୁନଥିଲେ। ଉତ୍ତୁଙ୍ଗ ହିମାଚଳ, ମନୋହର ବନଶ୍ରୀ ଓ ଆକାଶର ଭିନ୍ନ ଭିନ୍ନ ରଙ୍ଗ ପ୍ରଭୃତି ପ୍ରାକୃତିକ ପରିବେଶ ମୋ ଚିତ୍ରାଙ୍କନର ମୁଖ୍ୟ ବିଷୟବସ୍ତୁ ହୋଇଉଠିଲା। ପିଲାଟିଏ ନୂଆ କଉତୁକିଆ ଖେଳନା ପାଇଲେ ଯେପରି ଆଗ୍ରହରେ ଖେଳରେ ମାତିଯାଏ, ମୁଁ ସେହିପରି ଅତ୍ୟନ୍ତ ଉତ୍ସାହରେ ଚିତ୍ରାଙ୍କନରେ ମାତିଗଲି।

ଦିନେ ଭାବିଲି– ଯାଉଛି, ପୁରୁର ଖଣ୍ଡିଏ ଚିତ୍ର ଆଙ୍କିଦେବି। ଅଙ୍କନ ଆରମ୍ଭ କରିବା ପୂର୍ବରୁ ତା'ର ସ୍ୱରୂପ ମନେମନେ ଚିନ୍ତାକଲି; କିନ୍ତୁ ମୋ ଆଖି ଆଗରେ ଆସି ଲାଖିରହିଲା ମହାରାଜଙ୍କ ପ୍ରତିମୂର୍ତ୍ତି। ମୁଁ ଆଶ୍ଚର୍ଯ୍ୟ ହୋଇଗଲି, ପ୍ରକୃତରେ ହୃଷ୍ଟପୁଷ୍ଟ ଚେହେରାର ପୁରୁ ଠିକ୍ ମହାରାଜଙ୍କ ପରି ଦେଖାଯାଉଥିଲା।

ପୁରୁ ଷୋହଳ ବର୍ଷ ବୟସର ହୋଇଯିବାପରେ ମୁଁ ତାକୁ ମୋ ଜୀବନର ରହସ୍ୟ ଖୋଲି କହିଦେଲି। ସେ ଯେତେବେଳେ ଜାଣିଲା ଯେ, ତା'ର ମାଆ ଜଣେ ସାମାନ୍ୟ ସ୍ତ୍ରୀ ନୁହନ୍ତି କିମ୍ବା ସେ ମଧ୍ୟ ଜଣେ ସାଧାରଣ କୁମାର ନୁହେଁ, ସେତେବେଳେ ସେହି ଅରଣ୍ୟର ପରିବେଶକୁ ସେ ଆଉ ଭଲପାଇଲାନାହିଁ। ମୁଁ ତାକୁ ଦେବଯାନୀର ଈର୍ଷ୍ୟା ଏବଂ ମହାରାଜଙ୍କର ନିରୁପାୟତା ସମ୍ବନ୍ଧରେ ଗୋଟିଗୋଟି କରି ବୁଝାଇଦେଲି। କିନ୍ତୁ ମୋ କଥାଗୁଡ଼ିକ ମନଦେଇ ଶୁଣିଲେ ମଧ୍ୟ ତା' ମନ ବୁଝିଲାନାହିଁ। ସେ ମନେମନେ ଆହତ ହେଲା ପରି କହିଲା– "ଚାଲ ମାଆ, ଆମେ ଦୁହେଁ ହସ୍ତିନାପୁରକୁ ଚାଲିଯିବା। ସେଠାରେ ମହାରାଜଙ୍କ ସହିତ ସାକ୍ଷାତ୍ କରି ମୁଁ ସ୍ପଷ୍ଟ କହିବି; ମୁଁ ଆପଣଙ୍କ ପୁତ୍ର, ଆପଣଙ୍କ ଲାଗି ଯେ କୌଣସି ଅସାଧ୍ୟ ସାଧନ କରିବାକୁ ପ୍ରସ୍ତୁତ ଅଛି। କିନ୍ତୁ ଆପଣ ମୋ ଏ ଦୁଃଖିନୀ ମାଆଟିକୁ ଆଉ ଏତେ କଷ୍ଟ ଦିଅନ୍ତୁ ନାହିଁ।"

ପନ୍ଦର-ଷୋ'ଳ ବର୍ଷ ବୟସର ଯୁଆନ ପୁଅକୁ ବୁଝାଇବା ସହଜ ନୁହେଁ। ଯୌବନର ଉତ୍ସାହ ଯେତିକି ଭାବାବେଗପୂର୍ଣ୍ଣ ସେତିକି ବିଚାରହୀନତା ମଧ୍ୟ ସେଥିରେ ରହିଛି। ବାସ୍ତବ ପରିସ୍ଥିତିରେ ଯେ, ଅସୁବିଧା କେତେ ରହିଥାଏ, ତାହା ଯୁବକମାନେ ଆଦୌ କଳ୍ପନା କରିପାରନ୍ତିନାହିଁ। ସେମାନେ କେବଳ ସ୍ୱପ୍ନର ନନ୍ଦନକାନନରେ ବିଚରଣ କରି ଅଳୀକ ସୁରଭିର ସନ୍ଧାନ କରନ୍ତି। ମହାରାଜ ଆମକୁ ଖୁବ୍ ଶୀଘ୍ର ହସ୍ତିନାପୁର

ଡକାଇନେବେ; ଅନ୍ତତଃ ଆଉ ଅଳ୍ପ କେତେଦିନ ଆମକୁ ଏଠାରେ ରହିବାକୁ ହେବ, ଇତ୍ୟାଦି ଯେତେ ପ୍ରକାରେ ତାକୁ ବୁଝାଇଲେ ମଧ୍ୟ ସେ ମୋ ଯୁକ୍ତିଗୁଡ଼ିକ ଆନ୍ତରିକତାର ସହିତ ସମର୍ଥନ କଲାନାହିଁ। କେବଳ ମାଆର ଆଜ୍ଞା ଲଙ୍ଘନ କରିବା ଉଚିତ ହେବନାହିଁ ବୋଲି ଭାବି ବାହା କାମୁଡ଼ି ରହିଗଲା। ମୁଁ ତାକୁ ରାଣ-ନିୟମ ପକାଇ କହିଲି– "ତୁ ରାଜପୁତ୍ର, ବିଶେଷତଃ ହସ୍ତିନାର ରାଜକୁମାର ବୋଲି କାହାରି ଆଗରେ ଏବେ ପ୍ରକାଶ କରିବୁ ନାହିଁ।"

"ମହାରାଜଙ୍କ ଆଗରେ ମଧ୍ୟ ପ୍ରକାଶ କରିବିନାହିଁ?"

"ଆରେ ପାଗଳ, ମହାରାଜ ଏଠାରେ କେଉଁଠି ଅଛନ୍ତି?"

"ଏଠାରେ ନହୋଇପାରେ, ଅନ୍ୟ କୌଣସିଠାରେ ମୁଁ ତାଙ୍କ ସାକ୍ଷାତ୍ ପାଇଲେ କ'ଣ ପ୍ରଣାମ କରି ତାଙ୍କ ପାଦଧୂଳି ନେବିନାହିଁ?"

ତା' ମନ ବୁଝିବା ଭଳି ମୁଁ ଉତ୍ତର ଦେଲି– "ମୁଁ କ'ଣ ଏଇଆ କହିଲି? ତୁ ନିଶ୍ଚୟ ମହାରାଜଙ୍କୁ କହିବୁ– ମୁଁ ଆପଣଙ୍କ ପୁତ୍ର ପୁରୁ। ତୋର ଅବଶ୍ୟ ଖିଆଲ ନାହିଁ, ତୋତେ ସେ ଖୁବ୍ ଭଲପାଉଥିଲେ। ତୋତେ ମୋ ରାଣ ରହିଲା; କିନ୍ତୁ ମହାରାଜଙ୍କ ବ୍ୟତୀତ ଆଉ କାହାରିକୁ ତୁ ରାଜକୁମାର ବୋଲି କହିବୁନାହିଁ।"

ମୁଁ ଏତେବର୍ଷ ଧରି ମୋ ମନର ଗଭୀର କୋଣରେ ସାଇତିରଖିଥିବା ଗୋପନ ରହସ୍ୟ ପୁରୁ ଆଗରେ ପ୍ରକାଶକରିଦେଲି; କିନ୍ତୁ ସେ ତା'ର ମନକଥା ଆଦୌ ମୋ ପାଖରେ ଖୋଲି କହିଲାନାହିଁ। ପିଲାମାନେ ବଡ଼ ହେବାକ୍ଷଣି ବାପାମାଆଙ୍କଠାରୁ ଦୂରେଇଯାଆନ୍ତି। ପ୍ରଣୟ ଓ ପରାକ୍ରମ, ଏହି ଦୁଇଟି ଲୋଭାଣିଆ ଆକର୍ଷଣ ପ୍ରତି ସେମାନେ ଲୋଭେଇପଡ଼ି ଶୈଶବର ସ୍ମୃତିକୁ ଆଖିପିଛୁଳାକେ ଭୁଲିଯାଆନ୍ତି ଏବଂ ମାଆ-ବାପାଙ୍କ ସ୍ନେହ-ସୋହାଗ ପ୍ରତି ତିଳେହେଲେ ଦୃଷ୍ଟି ନଦେଇ ସେମାନେ ବହୁ ଦୂରକୁ ଚାଲିଯାଆନ୍ତି; କିନ୍ତୁ ବାପା ମାଆ ନିଜନିଜର ପ୍ରାଚୀନ ପରିଧିରେ ଧନ୍ଦିହୋଇ ସନ୍ତାନର ଅବୋଧତା ବିଷୟରେ ଚିନ୍ତିତ ହେଉଥାଆନ୍ତି।

ପ୍ରକୃତିର ସେଇ ଶାଶ୍ୱତ ନିୟମରୁ ପୁରୁ ଅଲଗା ହୋଇପାରନ୍ତା କିପରି? ସେ ଶିକାର କରିବା ଲାଗି ଦୂରଦୂରାନ୍ତ ବଣ-ଜଙ୍ଗଲକୁ ଚାଲିଯାଏ, ଶ୍ରେଷ୍ଠ ଧନୁର୍ବିଦ୍ୟା ଶିଖିବା ଲାଗି ଆଗ୍ରହ ପ୍ରକାଶ କରେ ଏବଂ ନିର୍ଭୀକ ଭାବରେ ବିଚରଣ କରି ନିଜର ଇପ୍‌ସିତ ପଥରେ ଅଗ୍ରସରହୁଏ।

ତା'ମନରୁ ଭୟ ଦୂରହୋଇଯିବା ସଙ୍ଗେ ସଙ୍ଗେ ପ୍ରଣୟର ଗୋଲାପୀ ଛଟା ତା'ର ଅନ୍ତରତମ ପ୍ରଦେଶକୁ ଅଧିକାର କରି ବସିଲା; କିନ୍ତୁ ତା' ମନର ଏ ଗୋପନ ରହସ୍ୟ ଦିନେ ହେଲେ ଖୋଲି କହିଲାନାହିଁ। ତାର ପ୍ରଣୟିନୀ ଥିଲା ସେହି ସ୍ୱର୍ଣ୍ଣକେଶୀ ଅଳକା। ତା' ମାଆ ସହିତ ମୋର ଘନିଷ୍ଠ ମିତ୍ରତା ଥିଲା; ତେଣୁ ପିଲାଦିନରୁ ଅଳକା ଓ ପୁରୁ ମିଳିମିଶି ଖେଳୁଥିଲେ। ବୟସ ବଢ଼ିବା ସଙ୍ଗେସଙ୍ଗେ ଦୁହିଁଙ୍କ ମଧ୍ୟରେ ସଂକୋଚ ବଢ଼ିଚାଲିଲା। ଅନ୍ୟ ଲୋକେ କଥାବାର୍ତ୍ତାରେ ମଗ୍ନଥିବାବେଳେ ସେ ଦୁହେଁ ଦୁହିଁଙ୍କ ଆଡ଼କୁ ଏକଲୟରେ ଚାହିଁ ମୁରୁକିହସା ଦିଅନ୍ତି। ତା'ପରେ ଅଳକା ତଳକୁ ମୁହଁ ପୋତି ଗୋଡ଼ନଖରେ ଭୂଇଁ ଉପରେ ଗାର କାଟିବାରେ ଲାଗେ। ପିଲାଦିନେ ପୁରୁ ପାଇଁ କିଛି କାମ କରିଦେବାକୁ କହିଲେ, ଅଳକା ମୁହଁ ମୋଡ଼ିଦେଇ

କହେ– 'ମୁଁ କାହିଁକି ତା' କାମ କରିବି? ସେ ମୋର କି କାମ କରିଦେଉଛି କି?' ସେହି ଅଳକା ଆଜିକାଲି ମୋ କୁଟୀରକୁ ଆସିବାମାତ୍ରେ ପ୍ରଥମେ ପୁରୁର ସୁଖ-ସୁବିଧା ପ୍ରତି ଅଧିକ ଦୃଷ୍ଟି ଦେଉଛି।

ଧୀରେ ଧୀରେ ସେ ଦୁହିଁଙ୍କ ପ୍ରଣୟଲୀଳା ସମ୍ବନ୍ଧରେ ମୁଁ ବେଶ୍ ଜାଣିପାରିଲି; ସେଥିରେ ଅନୁଚିତ ବା ଥିଲା କ'ଣ? କିନ୍ତୁ ବେଳେବେଳେ ମୁଁ ମନେମନେ ଭାବେ; ଏ ଦୁହିଁଙ୍କ ମଧ୍ୟରେ ଅଙ୍କୁରିତ ପ୍ରଣୟର କଳିକାକୁ ବିକଶିତ ହେବାର ସୁଯୋଗ ଦେବା କ'ଣ ଉଚିତ ହେବ? ପୁରୁ ରାଜପୁତ୍ର, ମହାରାଜ ଯଯାତିଙ୍କ ପୁତ୍ର। କୌଣସି ରାଜକନ୍ୟାର ପାଣି ଗ୍ରହଣ କରିବ। ସେତେବେଳେ ବିଚାରୀ ସରଳା ଅଳକା ହୃଦୟରେ ଯେଉଁ ଆଘାତ ଲାଗିବ ତାହା ବାସ୍ତବିକ ଅସହନୀୟ ହେବ। ତେଣୁ ଏତିକିବେଳରୁ ପ୍ରଣୟର ଅଙ୍କୁରକୁ ମୂଳପୋଛ କରିଦେଲେ ଭଲ ହୁଅନ୍ତା ନାହିଁ କି? ଏବେଠାରୁ ନିରାଶ ହେବା ବରଂ ସହ୍ୟ; କିନ୍ତୁ ଦୀର୍ଘଦିନଧରି ଆଶାର ମରୀଚିକା ପଛରେ ଧାଇଁ ଶେଷକୁ ବିଫଳ ହେଲେ ଆଦୌ ସହ୍ୟ କରିହେବନାହିଁ।

ଶୁଣିଲି; ଅଳକାର ମାଉସୀ ଅନେକ ଦିନ ତଳେ ହସ୍ତିନାପୁରର ରାଜମହଲରେ ଦାସୀ ଥିଲା। ସେହି ପରିବାରର କନ୍ୟା ଅଳକା, ଆଉ ପୁରୁ ହେଉଛି ଖୋଦ୍ ରାଜପୁତ୍ର। ପତ୍ରକୁଡ଼ିଆର ଦୀପାଲୋକ ଆକାଶର ନକ୍ଷତ୍ର ସହିତ ମିଶିବାକୁ ଚାହିଁଲେ କେବେହେଲେ ତାହା ସମ୍ଭବ ହେବ କି? ପରମୁହୂର୍ତ୍ତରେ ମୁଁ ପୁଣି ଚିନ୍ତାକରେ– ଆରେ... ମୁଁ ନିଜେ ତ ରାଜକନ୍ୟା ଥିଲି; କିନ୍ତୁ ଦାସୀ ହୋଇ କାଳ କାଟିଲି ତ! ହୁଏତ ଅଳକା କୌଣସି ପ୍ରଖ୍ୟାତ ବଂଶର କନ୍ୟା ହୋଇପାରେ; କିନ୍ତୁ ତାର ପ୍ରେମ ତ ସ୍ୱଚ୍ଛ। ଦାସୀକନ୍ୟାର ପ୍ରଣୟ ଓ ରାଜକନ୍ୟାର ପ୍ରଣୟ ମଧ୍ୟରେ କ'ଣ କିଛି ତାରତମ୍ୟ ଥାଏ?

ମୋ ମନରେ ଏସବୁ କେତେ କ'ଣ ବିଚାର ଆସେ, ଉଭେଇଯାଏ; କିନ୍ତୁ କେବେହେଲେ ଦିନେ ବି ଅଳକା କିମ୍ବା ପୁରୁ ଆଗରେ ମୁହଁ ଖୋଲି ଏ ପ୍ରସଙ୍ଗ ଉଠାଇବାର ସାହସ କଲିନାହିଁ। ପ୍ରକୃତରେ ପିଲାମାନଙ୍କ ପରି ଗୁରୁଜନମାନେ ମଧ୍ୟ ଏସବୁ ପ୍ରସଙ୍ଗରେ ସଙ୍କୋଚ ବୋଧକରିଥାନ୍ତି।

ଯା' ମଧ୍ୟରେ ଆହୁରି ତିନିବର୍ଷ ବିତିଗଲା; ପୁରୁ ଉଣେଇଶ ବର୍ଷ ବୟସରେ ପଦାର୍ପଣକଲା। ହଠାତ୍ ଦିନେ ଶିକାର କରିବାକୁ ଯାଇ ବାଟରୁ ଫେରିଆସିଲା! ମୁଁ ତା'ର ଭାବଭଙ୍ଗୀରୁ ବେଶ୍ ଜାଣିପାରିଲି ଯେ, ସେ ମନେମନେ ଖୁବ୍ ବ୍ୟସ୍ତହୋଇପଡ଼ିଛି। ଶେଷକୁ ବୁଝିଲି, ଉତ୍ତରାଞ୍ଚଳ ଦସ୍ୟୁମାନେ ଘୋର ବିଦ୍ରୋହ ଆରମ୍ଭ କରିଦେଇଛନ୍ତି; ବିଦ୍ରୋହ ଦମନ ଲାଗି ଯୁବରାଜ ଯଦୁ ବହୁ ସୈନ୍ୟସାମନ୍ତ ଘେନି ଅଗ୍ରସର ହେଉଛି।

ସେ ରାତିରେ ମୋ ଆଖିକୁ ଆଦୌ ନିଦ ଆସିଲା ନାହିଁ। ମୁଁ ସାରାରାତି ବସି ଭାବିଲି– ବିଦ୍ରୋହ ଦମନ ଲାଗି ସୈନ୍ୟସାମନ୍ତ ଘେନି ଯଦୁ ଆସିଲା– ମହାରାଜ ଗଲେ କୁଆଡ଼େ? ରାଜ୍ୟ ଉପରେ ଆକ୍ରମଣ, ତଥାପି ସେ କ'ଣ ଚୁପଚାପ୍ ବସିପାରିଲେ? ନା... ନା, ଏହା କେବେହେଲେ ସମ୍ଭବ ନୁହେଁ। ତା'ହେଲେ ସେ କ'ଣ ଅସୁସ୍ଥ ହୋଇଗଲେ କି? ନା... ସେ... ନିର୍ମମ ଦେବଯାନୀଟା ତାଙ୍କୁ କ'ଣ କେଉଁ କାରାଗାରରେ ବନ୍ଦୀ କରି ରଖିଛି? ଏପରି ଅନେକ ଆଶଙ୍କା ମୋ

ମନକୁ ସାରାରାତି ଆଚ୍ଛନ୍ନ କରି ରଖିଲା; ମୁଁ ଆଦୌ ଶୋଇପାରିଲିନାହିଁ।

ମୁଁ ଲକ୍ଷ୍ୟ କରିଛି; ମୋ'ରି ପରି ପୁରୁ ମଧ ସାରାରାତି ଏପାଖ ସେପାଖ କଡ଼ ଲେଉଟାଇବାରେ ଲାଗିଛି। ଥରେ ଦି'ଥର ପଚାରିଲି, ସେ ହୁଁ... ହାଁ... କହି ମୋ ପ୍ରଶ୍ନ ଟାଳିଦେଇ, ତା ମନର ଗୋପନ ରହସ୍ୟ ପ୍ରକାଶ କଲାନାହିଁ। ତା' ରଙ୍ଗଢଙ୍ଗ ଦେଖି ମୋତେ ହସମାଡ଼ିଲା। ମୁଁ ଭାବିଲି, ବୋଧହୁଏ ସେ ଅଳକାକୁ ମନେପକାଉଥିବ, କିମ୍ବା ହୁଏତ ସେ ଆଜି ପ୍ରଥମଥର ଲାଗି ଅଳକାର ଗଣ୍ଡରେ ସରୁ ଚୁମାଟିଏ ଆଙ୍କିଦେଇଥିବ।

ରାତିରେ ପୁରୁ କାହିଁକି ବ୍ୟସ୍ତହେଉଥିଲା ପରଦିନ ମୋତେ ଜଣାପଡ଼ିଲା। ସେ ପରଦିନ ସକାଳୁ ଯାଇ ସନ୍ଧ୍ୟା ସୁଦ୍ଧା ଘରକୁ ଫେରିଲାନାହିଁ। ରାତି ହେବାକୁ ବସିଲା; ତଥାପି ତା'ର ଦେଖାନାହିଁ। ମୋ ମନରେ କେତେ ପ୍ରକାର ଆଶଙ୍କା ଉଙ୍କିମାରିଲା। ତା' ସାଥିରେ ଶିକାରକୁ ଯାଇଥିବା ପିଲାମାନଙ୍କ ଘରକୁ ଯାଇ ବୁଝିଲି, ଯେ ସେମାନେ ମଧ ଘରକୁ ଫେରିନାହାନ୍ତି। ମୁଁ ବାୟାଣୀ ପରି ହୋଇଯାଇ କେତେ କ'ଣ ଭାବିଗଲି। ହାଏର ଫଟା କପାଳ! ଅଠରବର୍ଷ ପରେ ତୁ କ'ଣ ପୁଣି ମୋତେ ଗ୍ରାସ କରିବାକୁ ମାଡ଼ିଆସୁଛୁ? ହେ ଈଶ୍ୱର, ଦୁନିଆର କୌଣସି ମାଆ ଭାଗ୍ୟରେ ଏପରି ରାତ୍ରି ନ ଆସୁ!

ପରଦିନ ଦୁଇପ୍ରହର ପର୍ଯ୍ୟନ୍ତ ତାତିଲା ଭୂଇଁରେ ଜୀଅନ୍ତା ମାଛପରି ଛଟପଟ ହୋଇ ରହିଲି। ଏହି ସମୟରେ ଅଳକା ଆସି ପହଞ୍ଚିଲା। ତା'ଠାରୁ ଜଣାଗଲା ଯେ, ପୁରୁ ଓ ତାର ସାଥୀମାନେ ଦସ୍ୟୁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯାଇଛନ୍ତି। ଘରେ ଜଣାଇକରି ଗଲେ କାଳେ ଗୁରୁଜନମାନେ ଯିବାରେ ବାଧାଦେବେ, ତେଣୁ ସେମାନେ ଶିକାର ବାହାନାରେ ଘରୁ ଯାଇ ଆଉ ଫେରିବେ ନାହିଁ ବୋଲି ନିଷ୍ପ୍ତଯକଲେ। ବାଟରେ ଅଳକାର ଘର; ତେଣୁ ପୁରୁ ତା' ପାଖରେ ସବୁ କଥା ଜଣାଇ ଖଣ୍ଡିଏ ପତ୍ର ମୋ ପାଖକୁ ଲେଖିଦେଇ ଯାଇଛି। ଅଳକାର ମୁହଁ ଶୁଖିଯାଇଥିଲା ଏବଂ ମୋ ହାତକୁ ଚିଠିଟି ବଢ଼ାଇଦେବାବେଳେ ତା' ହାତ ଥରଥର ହୋଇ ଥରୁଥିଲା। ମୁଁ ଚିଠିଟି ତା' ହାତରୁ ନେଇ ଖୋଲି ପଢ଼ିଲି— ''ମାଆ, ହସ୍ତିନା ରାଜ୍ୟ ଉପରେ ଦସ୍ୟୁମାନେ ଆକ୍ରମଣ କରିଦେଇଛନ୍ତି। ଏପରି ଏକ ବିପଦର ମୁହୂର୍ତ୍ତରେ ମୋର କର୍ତ୍ତବ୍ୟ କ'ଣ ତୁମକୁ ବତାଇବାକୁ ପଡ଼ିବ ନାହିଁ। ଜୀବନରେ ପ୍ରଥମଥର ଲାଗି ତୁମ ଆଦେଶ ଲଙ୍ଘନ କରୁଛି। ତୁମକୁ ନ କହି ବହୁ ଦୂରକୁ ଯାଉଛି। ମା'! ମୋତେ କ୍ଷମାକରିବ। ମୋ ପାଇଁ ଆଦୌ ଚିନ୍ତା କରିବ ନାହିଁ। ମୋପାଇଁ ଜୀବନ ଉତ୍ସର୍ଗ କରିବା ଭଳି ସାଥୀମାନେ ମୋ ସହିତ ଯାଉଛନ୍ତି। ମାଆ, ତୁମ ଆଦରର ପୁରୁ ମହାପରାକ୍ରମ ଦେଖାଇ ହସ୍ତିନାପୁରର ଆକ୍ରମଣକାରୀଙ୍କୁ ଉଚିତ ଶିକ୍ଷା ଦେଇ ଶୀଘ୍ର ଆସି ତୁମକୁ ସାକ୍ଷାତକରିବ।''

ପତ୍ର ପାଠ କରୁକରୁ ମୋ ଆଖିରୁ ଝରଝର ହୋଇ ଲୁହ ଝରିପଡ଼ିଲା। କ୍ଷତ୍ରିୟ-ସନ୍ତାନଙ୍କୁ ଯୁଦ୍ଧଯାତ୍ରାରୁ କିଏ ବା ରୋକିପାରିବ? ତଥାପି ମା'ର ମମତା, ମା'ର ମନ; କୌଣସି ମତେ ମୁଁ ନିଜକୁ ସମ୍ଭାଳି ପାରିଲି ନାହିଁ। ମୋ ଆଖିରୁ ଧାର ଧାର ହୋଇ ଲୁହ ବହିଚାଲିଲା।

ଅଳକା ମୋ ଆଖିରୁ ଲୁହଧାର ପୋଛିଦେଇ କହିଲା– ''ମାଆ, କାନ୍ଦ ନାହିଁ।'' ଏହା କହି ମୋତେ କୁଣ୍ଢାଇ ଅନେକ ବୁଝାଇଲା। ମୁଁ ତା'ଠାରୁ ସାନ୍ତ୍ୱନା ପାଇ, ଆଖିରୁ ଲୁହଧାର ପୋଛିଦେଇ ମନକୁ ଦୃଢ଼କରିନେଲି। ତା'ର ସୁନେଲି କେଶ ଉପରେ ସୂର୍ଯ୍ୟକିରଣ ପଡ଼ି ଚକ୍‌ଚକ୍ କରୁଥିଲା। ମୁଁ ମନେ ମନେ ଭାବିଲି– ଏ ଭଳି ପୁତ୍ରବଧୂ ଲକ୍ଷକରେ ଗୋଟିଏ ମିଳିବ। ପୁରୁର ଚିନ୍ତାରେ ବିମର୍ଷ ମୋର ମନ କ୍ଷଣକ ମଧ୍ୟରେ ପୁଲକିତ ହୋଇଉଠିଲା।

ତା' ପରେ ପରେ ଅଳକା କାନ୍ଦି କାନ୍ଦି ପଚାରିଲା– ''ସେ... ମଙ୍ଗଳରେ ଫେରିଆସିବେ ତ ମାଆ!'' ତା'ର ପ୍ରଶ୍ନ ଶୁଣି ମୋ ମନ ପୁଣି ବ୍ୟାକୁଳ ହୋଇଉଠିଲା; କିନ୍ତୁ ଉପରକୁ ମୁଁ ଦୃଢ଼ତା ଦେଖାଇ କହିଲି– ''ଆରେ ପାଗିଳି! ଯୁଦ୍ଧଭୂମିକୁ କ'ଣ କମ୍ ଲୋକ ଯାଉଛନ୍ତି? ଆମ କ୍ଷତ୍ରିୟମାନଙ୍କର ଯୁଦ୍ଧ ହେଉଛି ଧର୍ମ।'' ଅଳକାର ଲୁହଧାର ସହିତ ମୋ ଲୁହଧାର ମିଶିଗଲା। ତା'ପରେ ଯାଇ ଆମ ମନ ଆଶ୍ୱସ୍ତ ହେଲା।

ଆମେ ଦୁହେଁ ଅନେକ ସମୟ ପର୍ଯ୍ୟନ୍ତ ନାନାପ୍ରକାର ଆଲୋଚନା କଲୁ। ଏଠାରେ ରହିଲେ ଯୁଦ୍ଧ-ଖବର ପାଇବାରେ ଅନେକ ବିଳମ୍ବ ହେବ; ତେଣୁ ହସ୍ତିନାପୁରଠାରୁ ପାଞ୍ଚଛଅ କୋଶ ଦୂରବର୍ତ୍ତୀ କୌଣସି ଗୋଟିଏ ଗାଁରେ ଯାଇ ରହିବା ଲାଗି ଆମେ ସ୍ଥିରକଲୁ। ତା' ଫଳରେ ଯୁଦ୍ଧଭୂମିକୁ ଯା-ଆସ କରୁଥିବା ଲୋକମାନଙ୍କଠାରୁ ଅନେକ ଖବର ମିଳିପାରିବ। ସେଠାରେ ମଧ୍ୟ ପୁରୁ ଓ ତା'ର କୌଣସି ବନ୍ଧୁଙ୍କ ସହିତ ସାକ୍ଷାତ୍ ମିଳିପାରେ। ଅଳକାର ମା' ଅତି କଷ୍ଟରେ ତାକୁ ମୋ ସହିତ ଯିବାକୁ କହିଲେ– ''ଯା, ସଅଁପି ଦେବା ହିଁ ଭଲ।''

ସେଠାକାର ଲୋକମାନଙ୍କ ମଧ୍ୟରୁ ଦୁଇଜଣ ହୃଷ୍ଟପୁଷ୍ଟ ବ୍ୟକ୍ତି ଆମ ସହିତ ଆସିଲେ। ମୋ ମନରେ ନାନାପ୍ରକାର ଆଶଙ୍କା ଜାତହୋଇ ଆଖିରେ ବେଳେବେଳେ ଲୁହ ଛଳଛଳ ହୋଇଯାଏ। ମୁଁ ସମସ୍ତଙ୍କ ଅଜ୍ଞାତରେ ଆଖିରୁ ଲୁହଧାର ପୋଛିଦେଉଥିଲି।

ଅଠର ବର୍ଷ ପରେ ମୁଁ ପୁଣି ହସ୍ତିନାପୁରକୁ ଯାଉଛି। ସେଦିନ ପରି ଆଜି ମଧ୍ୟ ମୋ ମନ ଭୟଭୀତ ହୋଇଉଠିଛି। ଏହି ଅଠର ବର୍ଷ ମଧ୍ୟରେ ଲିଭିଯାଇଥିବା ଘଟଣାଗୁଡ଼ିକ ମୋ ମନରେ ଗୋଟିକ ପରେ ଗୋଟିଏ କ୍ରମରେ ସଜା ହୋଇ ରହିଥିଲା। ସେଗୁଡ଼ିକ ମୁଁ ମନେ ମନେ ସ୍ମରଣ କରିବା ସଙ୍ଗେ ସଙ୍ଗେ ଆଗାମୀ ଦିନର ସୁନେଲି ସ୍ୱପ୍ନରେ ପୁଲକିତ ହୋଇଉଠୁଥିଲି। ବେଳେବେଳେ ମୋ ମନରେ ଅହଂକାରର ମଳିନତା ମୋତେ ବିବ୍ରତ କରିଦେଉଥିଲା।

ଅଠର ବର୍ଷ ତଳେ, ଦିନେ ମେଘ ଅନ୍ଧାରିଆ ରାତିରେ କେବଳ ପୁରୁର ରକ୍ଷାଲାଗି; ମୁଁ ଏହି ପଥଦେଇ ପଳାଇଯାଇଥିଲି; ଆଜି ସେହି ପୁରୁ ତା'ର ମାଆକୁ ଗଭୀର ଚିନ୍ତାରେ ବୁଡ଼ାଇଦେଇ ଯୁଦ୍ଧଭୂମିକୁ ଚାଲିଯାଇଛି। ମୁଁ ପ୍ରତି ମୁହୂର୍ତ୍ତରେ ଚିନ୍ତା କରୁଛି– 'ମୋ ଧନମଣି ଭଲ ଅଛି ତ?' ମଣିଷର ଛାଇ ପରି ଚିନ୍ତା ମଧ୍ୟ ତାକୁ କେବେହେଲେ ଛାଡ଼ିପାରେ ନାହିଁ; ଏହା ହିଁ କ'ଣ ବିଧିର ବିଧାନ?

ଶେଷକୁ ଆମେ ଆସି ହସ୍ତିନାପୁରଠାରୁ ଛଅ କୋଶ ଦୂରରେ ଗୋଟିଏ ଗ୍ରାମରେ ବସାକରି ରହିଲୁ। ସେ ଦିନଟି ଆମ ପକ୍ଷରେ ଏକ ଅଶୁଭ ଦିନ, କାରଣ ସେଦିନ

ଖବର ଆସି ପହଞ୍ଚିଲା, ରାଜକୁମାର ଯଦୁ ଓ ତାର କେତେଜଣ ସୈନ୍ୟଙ୍କୁ ଦସ୍ୟୁମାନେ ବନ୍ଦୀ କରି ନେଇଛନ୍ତି। ଦସ୍ୟୁମାନଙ୍କ ପ୍ରଥା ଅନୁସାରେ ସେମାନେ ଶତ୍ରୁର ମୁଣ୍ଡ କାଟି ଗୋଟିଏ ଭାଲା ମୁନରେ ଧରି ଶୋଭାଯାତ୍ରାରେ ଗ୍ରାମ ପରିକ୍ରମା କରିବେ।

ଏ ଖବର ମିଳିବା ପରେ ଗ୍ରାମଟିରେ ବିଷାଦର କାଳିମା ଛାଇଗଲା। ରାଜକୁମାର ଯଦୁର ଅବସ୍ଥା କ'ଣ ହେବ, କେବଳ ସେହି ଚିନ୍ତାର ରେଖା ସମସ୍ତଙ୍କ ମୁଖମଣ୍ଡଳରେ ସ୍ପଷ୍ଟ ହୋଇଉଠିଲା।

କିନ୍ତୁ ଅଳକା ଓ ମୋର ଚିନ୍ତା ଥିଲା ଭିନ୍ନ ଧରଣର ଏବଂ ଆମ ଦୁହିଁଙ୍କ ହୃଦୟରେ ଦୁଃଖର ମାତ୍ରା ଉଗ୍ରରୂପ ଧାରଣ କରିଥିଲା। କାରଣ ଆମେ ଭାବୁଥିଲୁ— ଯଦୁଙ୍କୁ ମୁକ୍ତକରିବାଲାଗି ପୁରୁ ଓ ତାର ବନ୍ଧୁମାନେ ନିଶ୍ଚୟ ପ୍ରାଣପଣେ ଚେଷ୍ଟାକରିଥିବେ; ତେଣୁ ସେମାନେ ମଧ୍ୟ ଯଦୁ ସହିତ ବନ୍ଦୀହୋଇଥିବେ। ମୁଁ କେଉଁ ଅବସ୍ଥାରେ ମୋ ରଙ୍କୁଣୀଧନଙ୍କୁ ଦେଖିବି; ଜଣେ ବିଜୟୀ ବୀର ଭାବରେ ନା ଭାଲା ମୁନରେ ତା'ର . . . !

ଏ ପ୍ରକାର ଅଶୁଭ ଚିନ୍ତା ମୋତେ ବିବ୍ରତ କରିପକାଇଲା। ହାୟ . . . ପରମେଶ୍ୱର, ପୂର୍ବଜନ୍ମରେ ମୁଁ କି ପାପ କରିଥିଲି ଯେ ମୋତେ ଏତେ ଯନ୍ତ୍ରଣା ଦେଉଛ ?

# ଦେବଯାନୀ

ଅମାବାସ୍ୟାର ଏ ଘନତିମିର ଯତେ ଅବା ମୋତେ ଗ୍ରାସ କରିଗଲା ପରି ମାଡ଼ିଆସୁଛି। ଝରକା ବାଟଦେଇ ଆକାଶକୁ ଚାହିଁଲେ ଜଣାପଡୁଥିଲା, ଯତେଯେପରି ଆକାଶର ତାରାଗୁଡ଼ିକ ମୋତେ ଚାହିଁ ଉପହାସରେ ଆଖିମିଟିକା ମାରୁଛନ୍ତି। ରାଜପ୍ରାସାଦରେ ଏତେ ଲୋକ ଅଛନ୍ତି; ସମସ୍ତେ ଆଜି ନୀରବ, ନିସ୍ପନ୍ଦ; ବର୍ଷାମାତ୍ରରୁ ରକ୍ଷାପାଇବାଲାଗି ଅଳିନ୍ଦରେ କୁଙ୍କୁରି-କାଙ୍କୁରି ହୋଇ ବସିଥିବା ଚିଁକି ଚଢ଼େଇଟି ପରି; କାହାରି ମୁହଁରୁ ଶବ୍ଦ ବାହାରୁନାହିଁ। ନିଆଁ ଘେରରେ ପଡ଼ିଥିବା ଅସହାୟ ମନୁଷ୍ୟ ପରି ମୋର ଅବସ୍ଥା ହୋଇଯାଇଛି। ସନ୍ଧ୍ୟାବେଳେ ଦୂତ ଏ ଅଶୁଭ ଖବର ଆଣି ପହଞ୍ଚିଲା; ସେତିକିବେଳୁ ମୋର ଏ ଦଶା।

ଯଦୁ ହାରିଯାଇଛି ! ମୋ ଯଦୁ ପରାଜିତ !! ଦସ୍ୟୁମାନେ ତାକୁ ବନ୍ଦୀ କରି ନେଇଯାଇଛନ୍ତି ! ନା . . . ନା . . . ଏଭଳି ଅମଙ୍ଗଳସୂଚକ ସମ୍ବାଦ ଉପରେ ବିଶ୍ୱାସ କରାଯାଇନପାରେ। ଏ ଅଘଟଣ ଘଟିଲା କିପରି ? ପିମ୍ପୁଡ଼ି ହୋଇ ମେରୁ ପର୍ବତକୁ କିପରି ଗିଳିପାରିବେ ? ମହାରାଣୀ ଦେବଯାନୀର ପୁତ୍ର କ'ଣ ହାରିଯାଇପାରେ ? ଅଖିଳ ବିଶ୍ୱର ସୁବିଖ୍ୟାତ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପୌତ୍ର ଶତ୍ରୁହାତରେ ପରାଭବ ପାଇଛି ? ନା . . . ଏସବୁ ତାହା ମିଛ। ଏହା ମୋତେ ଭୂତର ଭୟ ପରି ଅଳୀକ ବୋଧହେଉଛି।

ଯଦୁ ଯୁଦ୍ଧଯାତ୍ରା କରିବାବେଳେ ମୁଁ କେଡ଼େ ଉତ୍ସାହରେ ତାକୁ ବନ୍ଦାପନାକରି, ତା' ମୁଣ୍ଡରେ ଚନ୍ଦନ-କୁଙ୍କୁମର ବିଜୟଟୀକା ପିନ୍ଧାଇଦେଇଛି। କେଡ଼େ ଆହ୍ଲାଦରେ ତାର ବିଜୟ ସମ୍ବାଦ ଶୁଣିବାଲାଗି କାନଡେରି ରହିଛି। ବଜ୍ରପାତରେ ଛଟପଟ ହେଉଥିବା ଚକୋର ପକ୍ଷୀପରି ଆଜି ମୋର ଦଶା ହୋଇଯାଇଛି। ଆଜିପର୍ଯ୍ୟନ୍ତ କେବେହେଲେ ଦେବଯାନୀର ମୁଣ୍ଡ ଲଜ୍ଜାରେ ତଳକୁ ଲଇଁଯାଇନାହିଁ। ସେ କାହାରି ନିକଟରୁ କେବେହେଲେ ହାରିଯାଇନାହିଁ। କିନ୍ତୁ ଆଜି . . . ଏବେ ମୁଁ କ'ଣ କରିବି ? କାହାଠାରେ ଶରଣ ପଶିବି ? ବାପା ଅଠର ବର୍ଷ ହେଲା କଠୋର ତପସ୍ୟାରେ ମଗ୍ନ। ଯା' ମଧ୍ୟରେ ତାଙ୍କର ତପସ୍ୟା ପୂର୍ଣ୍ଣହୋଇଯିବ; ମୁଁ ଏହି ଦୀର୍ଘ ସମୟ ମଧ୍ୟରେ ଥରେହେଲେ ସୁଦ୍ଧା ତାଙ୍କ ଦର୍ଶନ ଲାଗି ଯାଇପାରିନାହିଁ। ତାଙ୍କ ଆଗରେ ନିଜ ଜୀବନର ଦୁଃଖ କହିନାହିଁ କିମ୍ବା ମୋ ଦୁଃଖ ଜଣାଇ ପ୍ରତିକାର ଲୋଡ଼ିନାହିଁ। ସେ ମହାକ୍ରୋଧୀ; କିଛି ନ ବିଚାରି ହଠାତ୍ ତପସ୍ୟାରୁ ଉଠିପଡ଼ିବେ। ଏଇଥିପାଇଁ ସବୁ ଦୁଃଖ ଅଙ୍ଗେ ନିଭାଇନେଇଛି। ସଂଜୀବନୀ ପରି ଅଦ୍ଭୁତ ବିଦ୍ୟା କେବଳ ମୋ'ରି ଜିଦ୍‌ପାଇଁ ସେ ହାତଛଡ଼ାକଲେ। ଏବେ ତା'ଠାରୁ ଆହୁରି ଅଦ୍ଭୁତ ବିଦ୍ୟା ସେ ହାସଲ କରିବାକୁ ଯାଇଛନ୍ତି। ଏପରି ପରିସ୍ଥିତିରେ ମୁଁ କିପରି ତାଙ୍କ ଆଗରେ ଯାଇ କହିବି– ''ବାପା, ମୋ ଯଦୁକୁ ଉଦ୍ଧାର କରି ଆଣନ୍ତୁ।' କେଉଁ ମୁହଁରେ ତାଙ୍କର ଦୀର୍ଘଦିନର କଠୋର ତପସ୍ୟା ଭଙ୍ଗ କରିବାକୁ କହିବି ?

ନା... ନା, ମୁଁ ତାଙ୍କ ପ୍ରତି ଏତେ ଅବିଚାର କରିବିନାହିଁ। ନା... ନିଜ ପ୍ରାଣର ପ୍ରତିମା ଯଦୁ ପାଇଁ ମଧ୍ୟ ନୁହେଁ। ବିଗତ ଅଠରବର୍ଷ ଧରି ମୋ ମନରେ କେତେ ଦୁଃଖ ସଞ୍ଚିତ ହୋଇ ରହିଛି। ଆଗ୍ନେୟଗିରିର ଜ୍ୱଳନ୍ତ ତରଳ ଧାତବ ପଦାର୍ଥ ପରି ସେଗୁଡ଼ିକ ଭିତରେ ଭିତରେ ଚାପି ହୋଇ ରହିଛି। ସାମାନ୍ୟ ଅସାବଧାନତାବଶତଃ ଭୟଙ୍କର ବିସ୍ଫୋରଣ ଫଳରେ ସେଗୁଡ଼ିକ ବାହାରକୁ ବାହାରିଆସି ଧ୍ୱଂସର ତାଣ୍ଡବଲୀଳା ଲଗାଇଦେବ। ଯେଉଁମାନେ ମୋତେ ଦୀର୍ଘଦିନ ଧରି ଦୁଃଖ-କଷ୍ଟ ଦେଇଆସିଛନ୍ତି, ମୁଁ ସମସ୍ତଙ୍କ ବିରୋଧରେ ତୀବ୍ର ପ୍ରତିଶୋଧ ନେବି। ସେଇ ଦାସୀ ଶର୍ମିଷ୍ଠା, ତା'ର ରାଜଚକ୍ରବର୍ତ୍ତୀ ଜାରଜସନ୍ତାନ, ଆଉ ଏ ଯଯାତି ମହାରାଜ, ମୁଁ କାହାରିକୁ ଛାଡ଼ିବି ନାହିଁ। ସମସ୍ତଙ୍କ ଉପରେ ପ୍ରତିଶୋଧ ନେବି। କିନ୍ତୁ ଏବେ ସମୟ ନୁହେଁ; ବାପାଙ୍କର ତପସ୍ୟା ପୂର୍ଣ୍ଣହୋଇଯାଉ; ସେ ଅଦ୍ଭୁତ ବିଦ୍ୟା ହାସଲ କରିସାରନ୍ତୁ...!

କିନ୍ତୁ ସେ ସିଦ୍ଧିଲାଭ କରି ଆସିବା ପର୍ଯ୍ୟନ୍ତ ଯଦୁର ଅବସ୍ଥା କ'ଣ ହେବ? ତାକୁ ବନ୍ଦୀକରି ଦସ୍ୟୁମାନେ ଯଦି... ଓଃ... ଅସହ୍ୟ ଏ କଳ୍ପନା! ଆଃ... ମୋ ଗଣ୍ଠିଧନ ଯଦୁ! ସତେ କ'ଣ ସେ କୁଶଳରେ ଫେରିଆସିବ? ନା... ନା, ମୋର କିଛି ଲୋଡ଼ାନାହିଁ, ମୁଁ ଚାହେଁ କେବଳ ମୋ ଯଦୁ କୁଶଳରେ ଫେରିଆସୁ। ମୁଁ ଆନନ୍ଦାଶ୍ରୁରେ ତା'ର ସର୍ବାଙ୍ଗ ସିକ୍ତକରିଦିଏ। ପିତାଙ୍କର ସିଦ୍ଧିଲାଭ... ନା... ନା, ତା' ବି ମୋର ଲୋଡ଼ାନାହିଁ। ରାଜ୍ୟ, ଧନ, ସିଂହାସନ କିଛିରେ ମୋର ଲୋଭ ନାହିଁ; ମୁଁ ଚାହେଁ ଯଦୁ।

ନା... ଏହା ଦେବଯାନୀର ବିଚାର ନୁହେଁ, ଗୋଟିଏ ଅସହାୟା ମାଆର ଚିନ୍ତା, ଦେବଯାନୀ କେବଳ ମାଆ ନୁହେଁ, ସେ ଶୁକ୍ରାଚାର୍ଯ୍ୟଙ୍କର ଅଲିଅଳ କନ୍ୟା! ହସ୍ତିନାପୁରର ମହାରାଣୀ!! ସେ କେବେହେଲେ ନିଜ ମନକୁ ଦୁର୍ବଳ କରିଦେବନାହିଁ। ମାଆର ମନ କ'ଣ ମହାରାଣୀର ମନଠାରୁ ଅଧିକ ଦୃଢ଼? ମୋତେ ଚତୁର୍ଦ୍ଦିଗ ଅନ୍ଧାର ଦେଖାଯାଉଛି; କ'ଣ କରିବି? କେଉଁ ଉପାୟରେ ଯଦୁକୁ ଉଦ୍ଧାର କରିପାରିବି? ହଠାତ୍ ମୋର ମନେପଡ଼ିଗଲା, ମହାରାଜଙ୍କର ଅମିତ ବିକ୍ରମ; ସେ କିଶୋରାବସ୍ଥାରେ ନିଜ ପରାକ୍ରମବଳରେ ଦସ୍ୟୁମାନଙ୍କୁ ପରାଭୂତ କରିଥିଲେ। ତାଙ୍କ ପରାକ୍ରମର ଅନେକ କାହାଣୀ ମୁଁ ଏଇ ରାଜପୁରରେ ଶୁଣିଛି। ନିଜ ପୁଅକୁ ଶତ୍ରୁ ବନ୍ଦୀକରିଛନ୍ତି ବୋଲି ଶୁଣି ସେ କ'ଣ ନୀରବ ହୋଇ ବସିପାରିବେ? ତାଙ୍କପରି ପରାକ୍ରମଶାଳୀ ପିତା ଏ ଅସମୟରେ କ'ଣ ହାତ ଗୋଡ଼ କୁଣ୍ଢାଇ ଚୁପ୍‌ଚାପ୍ ବସିରହିପାରେ? ଯଦୁ କ'ଣ କେବଳ ମୋ'ରି ପୁଅ? ତା' ଉପରେ ଯେତିକି ଅଧିକାର ମୋର, ସେତିକି ଅଧିକାର ତାଙ୍କର ରହିଛି। ତା'ହେଲେ କ'ଣ ମହାରାଜ ଏପର୍ଯ୍ୟନ୍ତ ଖବର ପାଇନାହାନ୍ତି? ନା, ଏହା କ'ଣ ସମ୍ଭବ? ଅମାତ୍ୟ ଏ ଅମଙ୍ଗଳ ସମ୍ବାଦ ନେଇ ମୋ ପାଖକୁ ଆସିଲେ; ମୁଁ ଶୁଣିବାମାତ୍ରେ ସ୍ତବ୍ଧ ହୋଇ ରହିଗଲି। ସେତିକିବେଳେ ଅମାତ୍ୟ କହିଲେ– "ମୁଁ ବର୍ତ୍ତମାନ ମହାରାଜଙ୍କ ପାଖକୁ ଯାଇ ସମ୍ବାଦ ଦେବି। ସମଗ୍ର ରାଜ୍ୟ ଉପରେ ବିପଦ ଘନେଇ ଆସିଛି ଜାଣିଲେ ସେ କେବେହେଲେ ଶାନ୍ତିରେ ରହିପାରିବେ ନାହିଁ। ଆଜି ପର୍ଯ୍ୟନ୍ତ ଯାହା ଘଟିଗଲା, ସେ କଥା ନିଆରା; ବର୍ତ୍ତମାନର ବିପଦପୂର୍ଣ୍ଣ ଅବସ୍ଥା ଏକାବେଳକେ ସ୍ୱତନ୍ତ୍ର। ମହାରାଣୀ, ଆପଣ ଚିନ୍ତା କରନ୍ତୁନାହିଁ।

ଯୁବରାଜଙ୍କୁ ଉଦ୍ଧାରକରିଆଣିବା ଲାଗି ମହାରାଜ ନିଜେ ଯୁଦ୍ଧକୁ ବାହାରିଯିବେ।''

ଅମାତ୍ୟ ଦୁଇପ୍ରହର ହେବ ଗଲେଣି; ତଥାପି ମୁଁ କ'ଣ କିଛି ହେଲେ ଚିନ୍ତା କରିବିନାହିଁ? ଦେଶେ ମୋ ପୁଅ ଶତ୍ରୁର କବଳରେ ବନ୍ଦୀ, ତାର ଜୀବନ ସଙ୍କଟାପନ୍ନ, ହସ୍ତିନାପୁରର ସମ୍ମାନ ଧୂଳିସାତ୍ ହୋଇଯାଉଛି; ମୁଁ କିଛି ଚିନ୍ତା କରିବି ନାହିଁ? ତା'ହେଲେ...? ମୁଁ ମାଆ, ମୁଁ ରାଜ୍ୟର ମହାରାଣୀ, ତଥାପି କିପରି ନୀରବ ରହିବି?

ଅମାତ୍ୟ ତାଙ୍କ ସହିତ କ'ଣ କଥାବାର୍ତ୍ତା କଲେ? ମହାରାଜ ଏପର୍ଯ୍ୟନ୍ତ କାହିଁକି ମୋ ପୁରକୁ ଆସୁନାହାନ୍ତି? ହାୟ... ସେ ଏ ପରିସ୍ଥିତିରେ ଶୀଘ୍ର ମୋ ପୁରକୁ ଆସିଥାଆନ୍ତେ; ମୋତେ ତାଙ୍କର ଭୁଜବନ୍ଧନରେ ବନ୍ଦିନୀ କରିନିଅନ୍ତେ, ଆମ ଦୁହିଁଙ୍କର ଅଶ୍ରୁ ଏକାକାର ହୋଇଯାଇଥାନ୍ତା। ମୋ ମନରେ ଯେଉଁ ଗ୍ଲାନି ଜମାଟ ବାନ୍ଧି ମୋତେ ବ୍ୟତିବ୍ୟସ୍ତ କରୁଛି; ସେଥିରୁ ମୋତେ କିଛି ପରିମାଣରେ ତ୍ରାହିମିଳନ୍ତା। ମୋ ମୁଣ୍ଡ ଉପରେ ଯେଉଁ ପାହାଡ଼ ପରି ବୋଝ ଲଦି ହୋଇ ରହିଛି କେତେ ପରିମାଣରେ ଉଶ୍ୱାସ ହୋଇଯାଆନ୍ତା। ତାଙ୍କ ତୁଣ୍ଡରୁ ମୁଁ ପଦଟିଏ ଯଦି ଶୁଣନ୍ତି 'ମୁଁ ଏଇଲେ ଯାଉଛି, ଯଦୁକୁ ଉଦ୍ଧାର କରି ଆଣିବି, ତୁମେ ଆମ ଦୁହିଁଙ୍କୁ ବନ୍ଦାଇବା ଲାଗି ପ୍ରସ୍ତୁତ ହୋଇ ରୁହ; ତା'ହେଲେ ମୋର ଅନ୍ଧକାରପୂର୍ଣ୍ଣ ମନ ଘଡ଼ିକ ମଧ୍ୟରେ ଆଲୋକିତ ହୋଇଉଠନ୍ତା। କିନ୍ତୁ ସେ କାହାନ୍ତି? କେଉଁଠି ଅଛନ୍ତି? ମୋ ପାଖକୁ ଶୀଘ୍ର ଆସୁନାହାନ୍ତି କାହିଁକି? କିମ୍ବା ସେ ମଦିରାର ପ୍ରଭାବରେ କେଉଁଠି ଜ୍ଞାନ ହରାଇ ପଡ଼ିଛନ୍ତି; ଯଦୁର ଅଶୁଭ ସମାଚାର ଶୁଣିଲେ ବି କିଛି ବୁଝିବାର ଶକ୍ତି ହୁଏତ ତାଙ୍କର ନାହିଁ। ମଦିରା ଓ ମଦିରାକ୍ଷୀର ପ୍ରବାହରେ ସେ ଚେତନା ହରାଇ ପଡ଼ିଛନ୍ତି; କିଛିହେଲେ ବୁଝିବାଭଳି ଶକ୍ତି ତାଙ୍କର ନାହିଁ। ପିତାଭାବରେ ସେ ତାଙ୍କର କର୍ତ୍ତବ୍ୟ ବୁଝିପାରୁନାହାନ୍ତି। ଛି... ଛି... ହସ୍ତିନାପୁରର ମହାରାଣୀ ହେବାର ଗର୍ବରେ ମୁଁ ଗର୍ବିଣୀ ହୋଇଉଠିଛି। ମୋର ବିବାହ ହୋଇନାହିଁ, ମୁଁ ବିବାହ ବେଦୀରେ ଯଜ୍ଞ-ପଶୁପରି ବଳିହୋଇଯାଇଥିଲି। ସେହି ବେଦୀର ପ୍ରଜ୍ୱଳିତ ଅଗ୍ନିର ଲେଲିହାନ ଶିଖାରେ ମୁଁ ଗତ ଅଠର ବର୍ଷ ଧରି ଜଳିପୋଡ଼ି ମରୁଛି।

× × × ×

ଅଠରବର୍ଷ। ଗତ ଅଠରବର୍ଷ ତଳର ଝଡ଼ଝଞ୍ଜାପୂର୍ଣ୍ଣ ରାତିଟି ମୋ ଆଖି ଆଗରେ ସାକାର ହୋଇଉଠିଲା। ସେଦିନ ପ୍ରଖ୍ୟାତ କଳାକାରମାନେ ମୋ ନୃତ୍ୟ ଦେଖି ଆତ୍ମହରା ହୋଇଉଠିଥିଲେ। ବସନ୍ତ-ନୃତ୍ୟ, ଉମାଚରିତ-ନୃତ୍ୟ, ବର୍ଷା-ନୃତ୍ୟ ତଥା ଅନ୍ୟ ସମସ୍ତ ନୃତ୍ୟ ସେ ରାତିରେ ବିଶେଷ ଉପଭୋଗ୍ୟ ହୋଇଥିଲା। କରତାଳିଦ୍ୱାରା ମୋର ପ୍ରଶଂସା କରୁଥିବା ଦର୍ଶକମାନେ ଗୋଟିଏ ବିଷୟ ଜାଣିନଥିଲେ— ଦେବଯାନୀ ପ୍ରତ୍ୟେକ ନୃତ୍ୟ ତା' କଳିଜାର ରକ୍ତରେ ରଞ୍ଜିତ ହୋଇ ନିର୍ଗତ ହେଉଥିଲା। କାରଣ, ତା' ହୃଦୟରେ ତୀବ୍ର ଆଘାତ ଲାଗିଥିଲା। ସେ ଆଘାତ ପାଇଥିଲା ତା' ସ୍ୱାମୀର ନିର୍ମମ ବ୍ୟବହାରରୁ। ମହାରାଜ ଦେବଯାନୀ ସହିତ ବିଶ୍ୱାସଘାତକତା କରିଥିଲେ। ଦାସୀରୂପେ ଆସିଥିବା ଗୋଟିଏ ଡାହାଣୀର ପ୍ରେମପ୍ରବାହରେ ସେ ନିଜକୁ

ଉପାଇଦେଇଥିଲେ । ସେହି ଦୁଃଖକୁ ଭୁଲିବା ଲାଗି ଦେବଯାନୀ ସେଦିନ ରାତିରେ ମର୍ମସ୍ପର୍ଶୀ ନୃତ୍ୟ କରିଥିଲା । ତା'ହେଲେ କ'ଣ କଳାକାରର ମର୍ମନ୍ତୁଦ ଦୁଃଖ ଫଳରେ ତା'ର କଳା ଅଧିକ ସଜୀବ, ସୁନ୍ଦର ତଥା ଆମୋଦପ୍ରଦ ହୋଇଥାଏ ? ଏହାହିଁ କ'ଣ ବିଧାତାର ଗୋପନୀୟ ବିଧାନ? କଥାକାର କେବେହେଲେ ସୁଖୀ ନହେଉ, ଏହାହିଁ କ'ଣ ତାଙ୍କର ଏକାନ୍ତ ଇଚ୍ଛା ?

ସେଦିନ ରାତିରେ ଆକାଶ ଘନଘୋର ବାଦଲରେ ପୂର୍ଣ୍ଣହୋଇ ରହିଥିଲା । ପ୍ରବଞ୍ଚନାରେ ବ୍ୟଥିତ ମୋ'ର ହୃଦୟପରି ଆକାଶ ଭାରାକ୍ରାନ୍ତ ହୋଇଉଠିଥିଲା । କଳାମେଘ କୋଳରେ ଚକ୍‌ଚକ୍ ମାରୁଥିବା ବିଜୁଳିର ଚମକ ପରି ମୋ ହୃଦୟରେ ବାରମ୍ବାର କ୍ରୋଧର ଉଚ୍ଛ୍ୱାସ ଉଠୁଥିଲା । ସାଏଁ-ସାଏଁ କରି ବହୁଥିବା ପ୍ରଚଣ୍ଡ ପବନର ପ୍ରବାହ ପରି ମୋ ହୃଦୟରେ ମହାରାଜଙ୍କ ପ୍ରତି ଉତ୍କଟ ଘୃଣା ଜାତହେଉଥିଲା । ତଥାପି ମୁଁ ସେହି କଳାକାରମାନଙ୍କୁ ନୃତ୍ୟ ପ୍ରଦର୍ଶନଲାଗି ପ୍ରତିଶ୍ରୁତି ଦେଇଥିଲି । ମୁଁ ମୋର ଆଦରର ନୃତ୍ୟକଳାକୁ ଆଦୌ ଭୁଲିଯାଇନଥିଲି । ମୁଁ ନୃତ୍ୟଶାଳାରେ ପ୍ରବେଶକରି ପ୍ରଥମ ନୃତ୍ୟ ଆରମ୍ଭକଲି; ଚାହୁଁଚାହୁଁ ମୁଁ ମୋର ସମସ୍ତ ଦୁଃଖ ଭୁଲିଗଲି । ବୋଧହୁଏ କଳାର ଦୁନିଆ ଲୌକିକ ଦୁଃଖ, ଦୁର୍ଦ୍ଦଶା ଓ ବିଷୟବାସନାପୂର୍ଣ୍ଣ ଦୁନିଆଠାରୁ ସଂପୂର୍ଣ୍ଣ ଭିନ୍ନ; ନୋହିଲେ ନୃତ୍ୟରସରେ ମଗ୍ନହୋଇ ମୁଁ ସବୁକିଛି ଭୁଲିଗଲି କିପରି ? ମୁଁ ନିଜେ ମୋର ନୃତ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ନୃତ୍ୟ ଲାଗି ବେଶପୋଷାକରେ ସଜ୍ଜିତ ମୋର ଚେହେରା ଦର୍ପଣ ଆଗରେ ଦେଖି ମୁଁ ଆତ୍ମହରା ହୋଇଉଠିଲି । ମୋ ମସ୍ତିଷ୍କରେ ନୃତ୍ୟର ମାଦକତା ଘାରିହୋଇଯାଇଥିଲା; ମୋର ରୋମେରୋମେ କଳାର ଅଭିବ୍ୟକ୍ତି ପ୍ରସ୍ଫୁରିତ ହୋଇଥିଲା । ସେହି ଅଭିବ୍ୟକ୍ତି ଫଳରେ ମୋର ମନ, ବୁଦ୍ଧି ଓ ହୃଦୟ ସବୁ ଏକାକାର ହୋଇଯାଇଥିଲା । ନୃତ୍ୟଶାଳାରେ ପ୍ରବେଶ କରିବା ପୂର୍ବ ପର୍ଯ୍ୟନ୍ତ, ମୁଁ ବରାବର ମନେମନେ ଭାବୁଥିଲି– 'ଶର୍ମିଷ୍ଠା ମିଥ୍ୟା କହିଛି ... ମହାରାଜଙ୍କ ସହିତ ତା'ର ଗୁପ୍ତପ୍ରଣୟ ନିଶ୍ଚୟ ରହିଛି । ସେଇଥିପାଇଁ ପୁରୁର ହସ୍ତରେଖାରେ ଚକ୍ରବର୍ତ୍ତୀର ଚିହ୍ନ ସୁସ୍ପଷ୍ଟ ହୋଇଉଠିଛି । ଏହାହିଁ ହେଉଛି ଏ ଦୁହିଁଙ୍କ ବ୍ୟଭିଚାରର ସ୍ପଷ୍ଟ ପ୍ରମାଣ । ଶର୍ମିଷ୍ଠା-ପୁଅର ହସ୍ତରେଖାରୁ ମୁଁ ଚକ୍ରବର୍ତ୍ତୀ-ଚିହ୍ନ ଲିଭାଇଦେଇ ଶାନ୍ତିରେ ନିଃଶ୍ୱାସ ମାରିବି । ତା'ର ମାଆର ଅସ୍ତିତ୍ୱ ମଧ୍ୟ ଏ ସଂସାରରୁ ଚିରଦିନଲାଗି ପୋଛିଦେବି ।' ବସନ୍ତ-ନୃତ୍ୟଠାରୁ ଆରମ୍ଭକରି ବର୍ଷା-ନୃତ୍ୟ ପର୍ଯ୍ୟନ୍ତ, ଥରେହେଲେ ସୁଦ୍ଧା ଏ ଭାବନା ମୋ ମନଗହନରେ ଉଙ୍କିମାରିଲାନାହିଁ । ମହାରାଜ ମୋତେ ରତ୍ନହାର ପିନ୍ଧାଇଦେବା ପର୍ଯ୍ୟନ୍ତ ମୋ ମସ୍ତିଷ୍କରେ ନୃତ୍ୟକଳାର ମାଦକତା ଘାରିଥିଲା । ସେହି ନିଶାରେ ମୁଁ ସେଦିନ ରାତିଟି ବେଶ୍ ଶାନ୍ତିରେ ଶୋଇପଡ଼ିଲି । ଶର୍ମିଷ୍ଠାକୁ ଗୁପ୍ତ ଗମ୍ଭୀରିଘରେ ବନ୍ଦୀକରିଥିବାର ଘଟଣା ମୁଁ ଭୁଲିଯାଇଥିଲି ।

ପରଦିନ ସକାଳେ ମୋର ନିଦ ଭାଙ୍ଗିବାବେଳକୁ ମୋ ମସ୍ତିଷ୍କରୁ କଳାକାରର ନିଶା ଉତୁରିଯାଇଥିଲା । ମୁଁ ପୁଣି ସାଜିଗଲି ମହାରାଣୀ– ଏକ ପ୍ରବଞ୍ଚିତା ପତ୍ନୀ, ନିଜ ପୁତ୍ରର କଲ୍ୟାଣକାରିଣୀ ବାତ୍ସଲ୍ୟମମତାପୂର୍ଣ୍ଣ ମାଆ । ମହାରାଜଙ୍କୁ କୌଣସିମତେ ବାହାରକୁ ପଠାଇଦେଇ, ମୁଁ ଗୁପ୍ତ ଗମ୍ଭୀରିଘରେ ପହଞ୍ଚିଲି । କିନ୍ତୁ ସେଠାରେ ଶର୍ମିଷ୍ଠା ନଥିଲା । ମୋ ପାଦରୁ ମୁଣ୍ଡଯାଏ ନିଆଁ ଜଳିଉଠିଲା । ମହାରାଜଙ୍କଠାରୁ ଆରମ୍ଭକରି

ସେଇ ବୁଢ଼ୀଦାସୀଟା ପର୍ଯ୍ୟନ୍ତ କେହି କିଛି ଜାଣିନଥିବାର ଛଳନାକଲେ। କିନ୍ତୁ ପ୍ରକୃତ ସତ୍ୟକୁ ସାତସମୁଦ୍ର ତେରନଈ ପାରକରି ଲୁଚାଇଲେ ମଧ୍ୟ ସେ କେବେହେଲେ ଲୁଚିବନାହିଁ।

ସେ ବୁଢ଼ୀ ଦାସୀର ପିଠିରେ ଧଡ଼ାଧଡ଼ ଚାବୁକମାଡ଼ ବସିବାରୁ ସେ ମାନିଲା ଯେ, ନୃତ୍ୟଶାଳାରୁ ମଝିରେ ମହାରାଜ ମହଲକୁ ଆସିଥିଲେ। କିନ୍ତୁ ମହାରାଜ ଶର୍ମିଷ୍ଠାକୁ ରାଜମହଲର ବାହାରକୁ କିପରି ନେଇପାରିଲେ? ତା'ହେଲେ କ'ଣ ରାଜମହଲର ପ୍ରହରୀମାନେ ବିଶ୍ୱାସଘାତକ? ନା... ଯା' ହୋଇନପାରେ। ସେମାନଙ୍କ ମଧ୍ୟରୁ କେତେଜଣ ତ ମୋର ଅତି ବିଶ୍ୱସ୍ତ ଲୋକ। ଶର୍ମିଷ୍ଠାର ଦୁଇଜଣଯାକ ଦାସୀ 'ଆମକୁ କ'ଣ ଜଣା' ବୋଲି କହି ଆଦୌ ମାନିଲେନାହିଁ। କିନ୍ତୁ ତାଙ୍କ ମୁଣ୍ଡ ଲଣ୍ଡାକରି ଗଧରେ ବସାଇ ବୁଲାଇବି ବୋଲି ଧମକଦେଲି। ସେ ଦୁହେଁ କହିଲେ– ଶର୍ମିଷ୍ଠା ରଥରେ ବସି କୁଆଡ଼େ ଚାଲିଗଲା। ତାଙ୍କଠାରୁ ମୁଁ ସାରଥିର ନାମ ଆଦୌ ଜାଣିପାରିଲି ନାହିଁ; କିନ୍ତୁ ଦୁଇଦିନପରେ ମାଧବ ଅସୁସ୍ଥ ହୋଇଥିବାର ଖବର ମିଳିଲା। ମହାରାଜ ତାକୁ ଦେଖିବାଲାଗି ପ୍ରତିଦିନ ଗଲେ। ଲୌକିକତା ଦୃଷ୍ଟିରୁ ମୁଁ ମଧ୍ୟ ଦିନେ ଦେଖିବାକୁ ଗଲି। ସେଠାରେ ତା'ର ବାଗ୍‌ଦତ୍ତାପତ୍ନୀ ମାଧବୀ ଥିଲା। ତାକୁ ସାନ୍ତ୍ୱନା ଦେବାଲାଗି ମୁଁ ତା'ର ପିଠି ଆଉଁସିଦେବାରୁ ସେ କଇଁକଇଁ ହୋଇ କାନ୍ଦିଉଠିଲା। କିଛି ସମୟ ପରେ ତା'ର ଦୁଃଖର ଆବେଗ କମିଯିବାରୁ ସେ ମୋ ସହିତ ବେଶ୍ ମନଖୋଲା କଥାବାର୍ତ୍ତା କଲା। ସେ କଥାପ୍ରସଙ୍ଗରେ ମାଧବର ଅସୁସ୍ଥ ହେବାର କାରଣ ବତାଇଦେଲା – ନୃତ୍ୟ ହେଉଥିବା ରାତିରେ ମାଧବ ଅନେକ ଡେରିରେ ଓଦା ଜୁଡୁବୁଡୁ ହୋଇ, ଥରିଥରି ଘରକୁ ଫେରିଲା। ସେ କୁଆଡ଼େ ଯାଇଥିଲା, କାହିଁକି ଯାଇଥିଲା, ତା' ମାଆକୁ ସୁଦ୍ଧା କହିନଥିଲା।

ମୁଁ ଜାଣିଛି– ମାଧବ ମହାରାଜଙ୍କ ଅନ୍ତରଙ୍ଗ ବନ୍ଧୁ। ସେଦିନ ମୁଷଳଧାରା ବର୍ଷାରାତିରେ ମାଧବ କୁଆଡ଼େ ଯାଇଥିଲା; ସେ ସମ୍ବନ୍ଧରେ ମୋର ଆଉ ସନ୍ଦେହ ରହିଲାନାହିଁ। ସେ ମହାରାଜଙ୍କ ଅନୁରୋଧରେ ଶର୍ମିଷ୍ଠାକୁ ରାଜଧାନୀଠାରୁ ବହୁଦୂରରେ ଛାଡ଼ିଆସିବାଲାଗି ଯାଇଥିଲା; ନୋହିଲେ ସେଦିନର ଘୋର କାଳରାତ୍ରିରେ କିଏ କାହିଁକି ରାତି ଅଧ ପର୍ଯ୍ୟନ୍ତ ବର୍ଷାରେ ଭିଜିଭିଜି ଘରକୁ ଫେରନ୍ତା? ନଗର ମଧ୍ୟରେ ତାକୁ କ'ଣ ମୁଣ୍ଡଗୁଞ୍ଜିବାକୁ କେଉଁଠି ହେଲେ ଟିକିଏ ସ୍ଥାନ ମିଳିନଥା'ନ୍ତା?

ଏଇଥିରୁ ଖିଅ ବାହାରକରି ମୁଁ ଶର୍ମିଷ୍ଠାର ରହସ୍ୟ ଜାଣିବାଲାଗି ଖୋଳତାଡ଼କଲି। ତେଣୁ ପ୍ରତିଦିନ ମାଧବର ହାଲଚାଲ ଜାଣିବା ଛଳରେ ମୁଁ ତାଙ୍କ ଘରକୁ ଗଲି। ମାଧବ ସନ୍ନିପାତ ରୋଗରେ ପଡ଼ି ସବୁବେଳେ ଏଣୁତେଣୁ ଗୁଡ଼ାଏ ପ୍ରଳାପ କରୁଥିଲା। କିନ୍ତୁ ଥରେ ଦି'ଥର ତା'ର ପ୍ରଳାପପୂର୍ଣ୍ଣ କଥାରୁ ମୁଁ ମହାରାଜଙ୍କ ଷଡ଼ଯନ୍ତ୍ର ସମ୍ବନ୍ଧରେ ବେଶ୍ ଅନୁମାନ କରିନେଲି। ଥରେ ସେ କହିଲା– 'ସାରଥି ଜୋର୍‌ରେ ରଥ ଚଳାଅ।' ଆଉ ଥରେ କହିଲା– 'ମହାରାଣି, ଏହିଠାରେ ଓହ୍ଲାଇଯାଆନ୍ତୁ।' ପ୍ରଥମେ ଶୁଣିବାମାତ୍ରେ ଏ ବାକ୍ୟର ଅର୍ଥ ମୁଁ ବୁଝିପାରିଲିନାହିଁ; ଅନେକ ଚିନ୍ତା କରିବା ପରେ ସେ ବାକ୍ୟ ଦୁଇଟିରୁ ଅନେକ କଥା ବାହାରିଲା। ସେଥିରୁ ସ୍ପଷ୍ଟ ଜଣାପଡୁଥିଲା ଯେ, ମାଧବ ଶର୍ମିଷ୍ଠାକୁ ମହାରାଣୀ ବୋଲି ସମ୍ବୋଧନ କରିଥିଲା। ମହାରାଜ ମୋତେ

ଠକାଇ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିଲେ। ଶର୍ମିଷ୍ଠାକୁ ମହାରାଣୀର ଆସନରେ ବସାଇ, ମୋତେ ଚିରଦିନଲାଗି ଶେଷକରିବାର ଯୋଜନା ସେ କରିଥିଲେ। ତେଣୁ ଶର୍ମିଷ୍ଠାକୁ କୌଣସି ଏକ ସୁରକ୍ଷିତ ସ୍ଥାନରେ ରଖାଇ ପରେ ଆଣିବାର ପରିକଳ୍ପନା କରିଥିଲେ।

ମୁଁ ମନେ ମନେ ବିଷବୃକ୍ଷକୁ ସମୂଳେ ଓପାଡ଼ିଦେବା ଲାଗି ପ୍ରତିଜ୍ଞା କଲି। ତେଣୁ ସମଗ୍ର ରାଜ୍ୟରେ ଶର୍ମିଷ୍ଠାକୁ ଧରିଆଣିବାଲାଗି ପୁରସ୍କାର ଘୋଷଣା କରାଇଦେଲି। ନିଶ୍ଚୟ କେହି ନା କେହି ପୁରସ୍କାର ଲୋଭରେ ଶର୍ମିଷ୍ଠାକୁ ଧରିଆଣିବ, ଏହି ଅପେକ୍ଷାରେ ମୁଁ ରହିଲି। ମୋ ଅଭିଳାଷ ପୂର୍ଣ୍ଣ ହୋଇପାରିଲାନାହିଁ। ସେ ମାଆ ପୁଅ ଦୁହେଁ କେଉଁଠି ଆତ୍ମଗୋପନ କଲେ କେଜାଣି, ତାଙ୍କର କୌଣସି ପତ୍ତା ମିଳିଲାନାହିଁ। କିଏ ଜାଣେ, ସେ ଦୁହେଁ ବଞ୍ଚିଛନ୍ତି କି ନାହିଁ?

ମହାରାଜ ଶର୍ମିଷ୍ଠା ସହିତ ଗୁପ୍ତରେ ସମ୍ପର୍କ ରଖିଥିବେ ବୋଲି ଅନୁମାନ କରି, ମୁଁ ଖୁବ୍ କଡ଼ା ପ୍ରହରୀ ଚାରିଆଡ଼େ ଲଗାଇଦେଲି; ତା' ବ୍ୟତୀତ ଗୁପ୍ତଚର ମାଧ୍ୟମରେ ସେ ରହସ୍ୟ ଜାଣିବାଲାଗି ଅନେକ ଚେଷ୍ଟାକଲି। କିନ୍ତୁ ମୁକୁଳିକା ଓ ତା' ଗୁରୁ ବ୍ୟତୀତ ଆଉ କେହି ଅଶୋକବନକୁ ଯା'ଆସ କରୁଥିବାର ସନ୍ଧାନ ମିଳିଲାନାହିଁ।

ପ୍ରଥମେ ମୁଁ ଭାବିଥିଲି, ଯଦୁ ବନ୍ଦୀ ହୋଇଯାଇଛି ବୋଲି ଶୁଣିବାମାତ୍ରେ ମହାରାଜ ମୋ ନିକଟକୁ ଧାଇଁଆସିଲେ ନାହିଁ କାହିଁକି? ମୁଁ ସତରେ କେଡ଼େ ପାଗଳୀଟାଏ; ନୁହେଁକି? ସେ କାହିଁକି ମୋ ମହଲକୁ ଧାଇଁଆସନ୍ତେ? ବିଗତ ଅଠରବର୍ଷ ଧରି ଆମର ସମ୍ପର୍କ ତିକ୍ତରୁ ତିକ୍ତତର ହୋଇଉଠିଛି, ଆମେ ପରସ୍ପରଠାରୁ ବହୁଦୂରକୁ ଚାଲିଯାଇଛୁ। ଦୁନିଆର ଦୃଷ୍ଟିରେ ସେ ମୋର ସ୍ୱାମୀ ଓ ମୁଁ ତାଙ୍କର ପତ୍ନୀ; କିନ୍ତୁ ଭିତରେ ଭିତରେ ଆମେ ପରସ୍ପରର ଶତ୍ରୁ ହୋଇଉଠିଛୁ। ଶତ୍ରୁଠାରୁ ଆହୁରି ଅଧିକ ଦୁର୍ବ୍ୟବହାର ମୁଁ କରିଛି। ତାଙ୍କୁ କ୍ଷମତାରୁ ବିଚ୍ୟୁତକରାଇ ସମସ୍ତ ରାଜକାର୍ଯ୍ୟ ମୁଁ ନିଜେ ବୁଝିଛି। ସେ ଭାବିଛନ୍ତି, ମୁଁ ତାଙ୍କ ନାକ-କାନ କାଟି ମୁହଁରେ ଚୂନକଳା ବୋଳିଦେଇଛି। ତେଣୁ ସେ ବିଳାସ-ବ୍ୟସନର ଅଗାଧ ସମୁଦ୍ରରେ ବୁଡ଼ିରହିଛନ୍ତି। ଦେବଯାନୀ ନାମରେ ତାଙ୍କର ଗୋଟିଏ ପତ୍ନୀ ଥିବାର ଧାରଣା ଆଉ ତାଙ୍କ ମନରେ ନାହିଁ କିମ୍ବା ଯଦୁ ବୋଲି ତାଙ୍କର ପୁଅଟିଏ ଅଛି, ତା' ମଧ୍ୟ ସେ ପାସୋରି ଦେଇଛନ୍ତି। କେଡ଼େ ନିଷ୍ଠୁର ସତ୍ୟ ଏ ଘଟଣା! ଆମେ ପତିପତ୍ନୀ ଭାବରେ ପରସ୍ପର ପାଖାପାଖି ରହିବା ସ୍ଥଳେ, ମାନସିକ ବିଚାରଧାରାରେ ଆମେ ଶହଶହ କୋଶ ଦୂରେଇଯାଇଛୁ।

ବେଳେବେଳେ ମୋର ଧାରଣା ହୋଇଛି; ସେ ଦିନ ରାତିରେ ମୁଁ ତାଙ୍କୁ ଅପମାନିତ କରିଛି, ତାଙ୍କ ଆକୁଳ ପ୍ରଣୟ-ପ୍ରାର୍ଥନାକୁ ପ୍ରତ୍ୟାଖ୍ୟାନକରିଛି, ମୋତେ କେବେହେଲେ ସ୍ପର୍ଶ ନକରିବା ଲାଗି ତାଙ୍କୁ ନିୟମ କରାଇନେଇଛି; ବର୍ତ୍ତମାନ ତାଙ୍କର ଏ ଶୋଚନୀୟ ଅବସ୍ଥା ତା'ର ପରିଣତି ନୁହେଁ କି?

ମୋର କ'ଣ ଉପାୟ ଥିଲା? ମାଧବର ମୃତ୍ୟୁ ଓ ମହାରାଜଙ୍କ ଷଡ଼ଯନ୍ତ୍ର ବିଷୟକ ସମସ୍ତ ରହସ୍ୟ ମୁଁ ଜାଣିଗଲି। ତେଣୁ ମୋ ମନରେ କ୍ରୋଧ, ବିଦ୍ୱେଷ, ଘୃଣା ଜାତହେବା ସ୍ୱାଭାବିକ ନୁହେଁ କି? କିନ୍ତୁ ମୁଁ ସବୁ ରହସ୍ୟ ଜାଣିପାରିଛି ବୋଲି ମହାରାଜଙ୍କ ଧାରଣା ଥିଲା। ସେଦିନ ରାତିଅଧରେ ମଦିରାପାନରେ ଉନ୍ମତ୍ତ ହୋଇ ସେ ମୋ ପୁରରେ

ଆସି ପହଞ୍ଚିଲେ। ମଦ୍ୟପ ଲମ୍ପଟ ହେବା ସ୍ୱାଭାବିକ ବୋଲି ମୁଁ ଶୁଣିଥିଲି; କିନ୍ତୁ ସେଦିନ ମହାରାଜଙ୍କ ପ୍ରତ୍ୟକ୍ଷ ବ୍ୟବହାରରୁ ଲମ୍ପଟତା ସ୍ପଷ୍ଟ ହୋଇଉଠିଥିଲା। ତା' ପୂର୍ବରୁ ମୁଁ ତାଙ୍କ ଷଡ଼ଯନ୍ତ୍ରମୂଳକ କାର୍ଯ୍ୟକଳାପରେ ଅତ୍ୟନ୍ତ ରାଗିଯାଇଥିଲି। ସେଦିନ ତାଙ୍କ ପାଶବିକ ଆଚରଣ ଫଳରେ ମୋର କ୍ରୋଧ ଶହେଗୁଣ ବଢ଼ିଗଲା। ମୁଁ ବିଦ୍ରୂପାତ୍ମକ ସ୍ୱରରେ ପଚାରିଲି– "ଶର୍ମିଷ୍ଠା ଏଠାରେ ନାହିଁ; ତେଣୁ ବୋଧହୁଏ ମୁଁ ମନେପଡ଼ିଗଲି . . .।" ସେ ଆଦୌ ହୋଶ୍‌ରେ ନଥିଲେ; ନୋହିଲେ ଏତେ କଦର୍ଯ୍ୟ ଉତ୍ତର ସେ ଦେଇନଥା'ନ୍ତେ। ସେ ନିତାନ୍ତ ଯୌନବିକାରଗ୍ରସ୍ତ ମଣିଷ ପରି ମୋ ଉପରକୁ ଝାଂପିପଡ଼ି, ମୋତେ ଟଣାଓଟରା କରିବା ସଙ୍ଗେ ସଙ୍ଗେ କହିଲେ– "ମୁଁ ଶର୍ମିଷ୍ଠା ଓ ଦେବଯାନୀ ଉଭୟଙ୍କୁ ଚାହେଁ; ମୋର ଉପଭୋଗ ଲାଗି ଦୁନିଆରେ ସମସ୍ତ ସୁନ୍ଦରୀଙ୍କୁ ମୁଁ ଏକାବେଳେ ଚାହେଁ; ସ୍ୱର୍ଗର ସମସ୍ତ ଅପ୍‌ସରାଙ୍କ ସହିତ କାମ-ବିଳାସରେ ମାତିଲେ ସୁଦ୍ଧା ମୋ ଉଦ୍ଦଣ୍ଡ କାମଲିପ୍‌ସା ପରିତୃପ୍ତ ହେବନାହିଁ।" ତାଙ୍କ ମୁହଁରୁ ଏପରି ବର୍ବରୋଚିତ କଥା ଶୁଣି ମୁଁ କ୍ରୋଧରେ ଆତ୍ମଜ୍ଞାନ ହରାଇବସିଲି। ମୋତେ ଜଣାଗଲା– ମୁଁ ଛିଡ଼ାହୋଇ ରହିପାରିବିନାହିଁ; ତଳେ ପଡ଼ିଯିବି। ତେଣୁ ମୁଁ ନିତାନ୍ତ ତାଚ୍ଛଲ୍ୟପୂର୍ଣ୍ଣ ସ୍ୱରରେ କହିଲି– "ଦୂରରେ ଛିଡ଼ାହୁଅନ୍ତୁ, ଖବରଦାର୍ ମୋ ପାଖକୁ ଆସନ୍ତୁ ନାହିଁ। ଦୂରରେ ଛିଡ଼ାହୋଇ ଯାହା ମନକୁ ଆସୁଛି ସେଇଠି ବକ୍‌ବକ୍ ହୁଅନ୍ତୁ।"

ମୋ କଠୋର ବାକ୍ୟ ଶୁଣି ସେ ବିକଟ ସ୍ୱରରେ ହସି ହସି କହିଲେ– "ମୁଁ ପ୍ରଳାପ କରୁନାହିଁ, ସତ୍ୟକଥା କହୁଛି। ମୁଁ ନହୁଷ ରାଜାଙ୍କ ପୁତ୍ର, ମହାରାଜ ପୁରୁରବାଙ୍କର ପ୍ରପୌତ୍ର। ମୋର ଉପଭୋଗ ପାଇଁ ଶର୍ମିଷ୍ଠା, ଦେବଯାନୀ କେବଳ ଯଥେଷ୍ଟ ନୁହଁନ୍ତି, ଦୁନିଆର ପ୍ରତ୍ୟେକ ସୁନ୍ଦରୀଙ୍କୁ ମୁଁ ଉପଭୋଗ କରିବାକୁ ଚାହେଁ। ପ୍ରତିଦିନ ମୋ ପାଇଁ ନୂତନ ସୁନ୍ଦରୀ . . .!"

ମୁଁ ଆଉ ଅଧିକ ଶୁଣିବାର ଧୈର୍ଯ୍ୟ ହରାଇବସିଲି। ସେ ପାଗଳଙ୍କ ପରି ବକିଚାଲିଥିଲେ। ସେଦିନ ରାଜଦରବାରକୁ ତାଙ୍କ ବଡ଼ଭାଇ ଆସିଥିଲେ। ସେ ସ୍ତ୍ରୀ-ଦ୍ୱେଷରେ ପାଗଳ ହୋଇଯାଇଛନ୍ତି; ଏ ସ୍ତ୍ରୀ-ପ୍ରେମରେ ପାଗଳ ହୋଇଯାଇନାହାନ୍ତି ତ?

ମହାରାଜ ସେଇମିତି ପ୍ରଳାପ କରିଚାଲିଥିଲେ . . . "ମୋ ବାପା ଇନ୍ଦ୍ରାଣୀଙ୍କୁ ଉପଭୋଗ କରିପାରିନଥିଲେ; ମୁଁ କିନ୍ତୁ ତାଙ୍କୁ ଲାଭକରିବି। ବିଶ୍ୱର ପ୍ରତ୍ୟେକ ସୁନ୍ଦରୀ ସ୍ତ୍ରୀଙ୍କୁ ପାଇବା ପାଇଁ ଚେଷ୍ଟା କରିବି। ଗୋଟିଏ ଫୁଲ ଛିଡ଼ାଇନେଇ ଥରେ ଶୁଙ୍ଘିଦେଇ ଫିଙ୍ଗିଦେବି, ପୁଣି ଆଉ ଗୋଟିଏ ନୂଆ ଫୁଲ ତୋଳିଆଣି ତାକୁ ଦଳି-ମକ୍ଥି ଫିଙ୍ଗିଦେବି।

ମୁଁ ଦୁଇ ହାତରେ ମୋର କାନ ବନ୍ଦକରିନେଲି। ସେ ଅଟ୍ଟହାସ୍ୟ କରି ମୋ ଆଡ଼କୁ ଝପଟିଆସିଲେ। ମୁଁ ମୋର ସମସ୍ତ ଶକ୍ତି ପ୍ରୟୋଗକରି ତାଙ୍କୁ ଠେଲିଦେବା ସଙ୍ଗେସଙ୍ଗେ ପାଟି କରି କହିଲି– "ଦୂରହୋଇଯାଅ . . . ଜାଣିଛ, ମୁଁ କିଏ ?"

ସେ ଉତ୍ତର ଦେଲେ– "ହଁ, ମୁଁ ଜାଣିଛି, ତୁମେ ମୋର ପତ୍ନୀ।"

"ନା . . . ଆପଣ ମୋତେ ଭଲଭାବରେ ଚିହ୍ନିନାହାନ୍ତି, ମୁଁ ହେଉଛି ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା। ବିବାହ ପରେ ଆପଣ ମଦିରା ପାନକରି ମୋ ପୁରକୁ ଆସିବେ ନାହିଁ ବୋଲି ଶପଥ କରିଥିଲେ, ବୋଧହୁଏ ଆପଣ ସେ ଶପଥ ଭୁଲିଯାଇଛନ୍ତି। ମୁଁ ଆପଣଙ୍କୁ ସ୍ମରଣକରାଇଦେଉଛି। ଆଜି ଆପଣ ମଦନିଶାରେ ଟଳମଳ ହୋଇ

ମୋ ପୁରକୁ ଆସିଛନ୍ତି। ଆପଣ ସେ ପ୍ରତିଜ୍ଞା ଭଙ୍ଗକରିଛନ୍ତି। ଜାଣନ୍ତି, ମହର୍ଷି ଶୁକ୍ରାଚାର୍ଯ୍ୟ କେଡ଼େ ବଡ଼ ତପସ୍ୱୀ ? ଆଉ ଜାଣନ୍ତି କି, ମୋ' ପ୍ରତି ତାଙ୍କ ମନରେ ମମତା କେତେ? ତାଙ୍କ ତପସ୍ୟା ଭଙ୍ଗହୋଇଯାଉ ପଛକେ, ମୁଁ ବର୍ତ୍ତମାନ ତାଙ୍କ ପାଖକୁ ଯାଇ ଆପଣଙ୍କ ଦୁରାଚାର ସମ୍ବନ୍ଧରେ ଶୁଣାଇଦେବି। କୌଣସି ଭୟଙ୍କର ଅଭିଶାପ ନପାଇଲେ ଆପଣ ଠିକଣା ବାଟରେ ପଡ଼ିବେନାହିଁ।'' ମୁଁ କ୍ରୋଧ ତଥା ଈର୍ଷ୍ୟାବଶତଃ ଗୋଟିଏ ଆବେଗରେ ଏହା କହିଦେଲି।

'ଅଭିଶାପ' ଶବ୍ଦ ଶୁଣିବାମାତ୍ରେ ମହାରାଜ ଚମକିପଡ଼ିଲେ। ସେଇ ମାତଲାମି ମଧ୍ୟରେ ଗୋଟିଏ ଶବ୍ଦର ଅର୍ଥ ସେ ହୃଦୟଙ୍ଗମ କରିପାରିଥିଲେ। ମୋ ଆଡ଼କୁ ସତୃଷ୍ଣ ଚାହାଣିରେ ଚାହିଁଚାହିଁ ସେ ପଛକୁ ଫେରିଲେ। ତାଙ୍କର ସେ ପ୍ରକାର ଚାହାଣିରେ ମୋ ମନରେ ଦୟା ଜାତହେଲା। ଯେତେ ଯାହାହେଲେ ବି ସେ ମୋର ପତି; ମୁଁ ତାଙ୍କର ପତ୍ନୀ। ଆମେ ପରସ୍ପର ବୁଝି-ବିଚାରି ଆମ ଜୀବନନଦୀର ସଙ୍ଗମ କରାଇଥିଲୁ। ହେଉ ହେଲା, ସେ ଅବା ମଦ୍ୟପ ଭାବରେ ଟଳିଟଳି ମୋ' ପୁରକୁ ଆସିଥିଲେ, କର୍ତ୍ତବ୍ୟ ଭୁଲି ବିପଥଗାମୀ ହୋଇଥିଲେ, ସେ ଜୀବନରେ ମଦ୍ୟସ୍ପର୍ଶ ନକରିବା ଲାଗି ପ୍ରତିଜ୍ଞା କରି ଭଙ୍ଗକରିଥିଲେ; ତଥାପି ସେ ମୋର ଅତି ଆପଣାର ନଥିଲେ କି? ଆପଣା ଲୋକଙ୍କର ଦୋଷ, ଭୁଲଭଟକା ଯଦି ନିଜେ କ୍ଷମାନଦେବ, ଆଉ ଦେବ କିଏ ? ମୁଁ ତାଙ୍କର ବିବାହିତା ଧର୍ମପତ୍ନୀ। ସେ ସିନା ପତିଧର୍ମ ପାଳନ କଲେନାହିଁ; ଧର୍ମପତ୍ନୀର କର୍ତ୍ତବ୍ୟ ପାଳନ କରିବା ମୋ ପକ୍ଷରେ ଉଚିତ ନଥିଲା କି ?

ପ୍ରଣୟ କ'ଣ ବାଣିଜ୍ୟ-କାରବାର ? ତାହା କ'ଣ ମୁଦ୍ରା ବିନିମୟରେ କ୍ରୟକରାଯାଇପାରେ ? ଘରସଂସାର ମଧ୍ୟରେ ବାଣିଜ୍ୟିକ କାରବାର ଚାଲିପାରେନାହିଁ। ମହାରାଜ ଭୁଲ ମାର୍ଗରେ ଯଦି ପରିଚାଳିତ ହେଉଥିଲେ, ତାଙ୍କୁ ଭଲ ମାର୍ଗକୁ ଟାଣିଆଣିବାର ଦାୟିତ୍ୱ ମୋର ନଥିଲା କି? ସେ ଯଦି ମାତଲାମିରେ ବେହୋଶ୍ ହୋଇଗଲେ, ତାଙ୍କୁ ସମ୍ଭାଳିନେବା ଦାୟିତ୍ୱ ମୋର ନୁହେଁ କି ?

କ୍ଷଣକ ଲାଗି; ହଁ... ଅଳ୍ପ କେଇ ମୁହୂର୍ତ୍ତ ଲାଗି ମୁଁ ଏହି ଧରଣର ଉନ୍ନତ ଚିନ୍ତାରେ ବିଚଳିତ ହୋଇ ଭାବିଲି– ଯାଉଛି, ଧାଇଁଯାଇ ତାଙ୍କୁ କୁଣ୍ଢାଇପକାଇ ମୋ ପଲଙ୍କ ଉପରକୁ ଘେନିଆସିବି। ତାଙ୍କ କାନ୍ଧରେ ମୁଣ୍ଡ ରଖି କାନ୍ଦିକାନ୍ଦି କହିବି– ମୋ ପାଇଁ, ଆପଣଙ୍କର ପ୍ରିୟତମା ଦେବଯାନୀ ପାଇଁ ଆପଣ କ'ଣ ଏ ମନ୍ଦ ଆଚରଣ ଛାଡ଼ିଦେବେନି? କେବଳ ମୋ ପାଇଁ ନୁହେଁ, ଆପଣଙ୍କ ଆଦରର ଯଦୁ ପାଇଁ...। ଯଦୁ ଆଜି ଛୋଟ ପିଲା ହୋଇଛି, କାଲି ପୁଣି ବଡ଼ହୋଇଯିବ; ତା' ଉପରେ ପ୍ରଭାବ ପଡ଼ିବ କାହାର? ତାକୁ ବୁଦ୍ଧି ଶିଖାଇବ କିଏ ? କାହାର ପଦାଙ୍କ ଅନୁସରଣ କରି ମହାପରାକ୍ରମୀ ବୀର ରୂପେ ସେ ବିଶ୍ୱରେ ପ୍ରତିଷ୍ଠିତ ହେବ ? ତେଣୁ ଆପଣ ମୋ ପାଇଁ... ଯଦୁ ପାଇଁ...!

ମୁଁ ତାଙ୍କ ଆଡ଼କୁ ଯିବା ଲାଗି ଠିକ୍ ପହଣ୍ଡ ବଢ଼ାଇବାକୁ ଯାଉଛି, ହଠାତ୍ ମହାରାଜ ପ୍ରଶ୍ନ କଲେ– ''ଶର୍ମିଷ୍ଠା କାହିଁ? କାହିଁ ମୋର ଶର୍ମିଷ୍ଠା ? ରାକ୍ଷସି, ତୁ ତାକୁ ଜୀବନରୁ ମାରିଦେଇଛୁ। ତୋ' ପରି ଦୁଷ୍ଟା ସ୍ତ୍ରୀ ଏ ସଚରାଚର ବ୍ରହ୍ମାଣ୍ଡରେ କେହି ନାହିଁ। ତୁ... ତୁ...!''

ସେ ଆଗକୁ ଆଗକୁ ମାଡ଼ିଆସିଲେ। ମୋ ମନରେ ଭୟଜାତହେଲା, କାଳେ ସେ ମୋ ତୋଟି ଚିପିଦେବେ। ମୁଁ ଖୁବ୍ ଜୋର୍‌ରେ ଚିତ୍କାର କରିବାକୁ ଚାହୁଁଥିଲେ ହେଁ ଆଦୌ ପାଟି କରି ପାରିଲି ନାହିଁ। ମହାରାଜ ଏକାବେଳକେ ମୋ ପାଖକୁ ଲାଗିଆସିଲେ ଏବଂ ପୈଶାଚିକ ଅଟ୍ଟହାସ କରି ହାତ ନଚାଇ ମୋତେ ଭୟଦେଖାଇଲେ। ମୁଁ ଭାବିଲି– ସେ ନିଶ୍ଚୟ ମୋ ବେକ ମୋଡ଼ିଦେବେ। ଶେଷକୁ ମୁଁ ଖୁବ୍ ଜୋର୍‌ରେ ପାଟିକରି କହିଲି– ''ମୋ ମହଲରୁ ବାହାରିଯାଆନ୍ତୁ। ଭୁଲିଯାଆନ୍ତୁନି ମୁଁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ବୋଲି। ତାଙ୍କର ଅଭିଶାପ ଫଳରେ ପଥର ହୋଇଯିବେ କିମ୍ବା ପଶୁରେ ପରିଣତ ହୋଇଯିବେ। ଦୂର୍ ହୋଇଯାଆନ୍ତୁ।'' ବରଡ଼ାପତ୍ର ପରି ଥରିଥରି ମହାରାଜ ଦି'ପହଣ୍ଡ ପଛକୁ ହଟିଗଲେ। ବର୍‌ବର୍ ହୋଇ କହିଲେ– ''ନା... ମୁଁ ଆଉ ଆଗକୁ ଯିବିନାହିଁ।''

ମହାରାଜ ବକ୍‌ଝକ୍ କଲାବେଳେ ଶର୍ମିଷ୍ଠାର ନାମ ଉଲ୍ଲେଖ କଲାରୁ ମୁଁ ପୁଣି ଏକାବେଳକେ ରାଗି ଅଗ୍ନିଶର୍ମା ହୋଇଗଲି। ମୁଁ କ୍ରୋଧରେ ଓଠ ଥରାଇ କହିଲି– ''ଆପଣ ଶପଥ କରନ୍ତୁ, ମୋତେ ଆଉ ସ୍ପର୍ଶ କରିବେ ନାହିଁ। ଶପଥ କରନ୍ତୁ।'' ସେ ମଧ ବ୍ୟଥିତ କଣ୍ଠରେ କହିଲେ– ''ହେଉ, ଶପଥ କରୁଛି... କରୁଛି।'' ତାଙ୍କ ଆଡ଼କୁ ଚାହିଁଚାହିଁ ମୁଁ ଭାବିଲି– ଏଇ ହାତରେ ଶର୍ମିଷ୍ଠାକୁ ଭୁଜବନ୍ଧନରେ ବନ୍ଦୀକରିଥିବେ, ଏଇ ଓଷ୍ଠରେ ଶର୍ମିଷ୍ଠାର ଅଧର ଦଂଶନ କରି ମୋ ସହିତ ବିଶ୍ୱାସଘାତକତା କରିଛନ୍ତି। ନା... ଏ ଭ୍ରଷ୍ଟ ଶରୀର ସହିତ ମୋ' ସମ୍ପର୍କ କ'ଣ? ମୁଁ ଏ ଶରୀରକୁ ଆଉ ସ୍ପର୍ଶ କରିବି ନାହିଁ। ତେଣୁ ମୁଁ ଜୋର୍ ଦେଇ କହିଲି– ''ହଁ, ଶପଥ କରନ୍ତୁ, ଆପଣ ଆଉ ମୋତେ ସ୍ପର୍ଶ କରିବେ ନାହିଁ। ମୋ ପିତାଙ୍କ ନାମରେ ଆପଣ ଶପଥ କରନ୍ତୁ।''

ମହାରାଜ ମୋ କହିବା ଅନୁସାରେ ଶପଥ କରି ମହଲରୁ ବାହାରିଗଲେ। ସେହିଦିନଠାରୁ ଆମର ପତି-ପତ୍ନୀ ସମ୍ପର୍କ ତୁଟିଗଲା। ଆମର ପବିତ୍ର ସମ୍ପର୍କ, ଆମ ଜୀବନର ରେଶମୀ ସମ୍ପର୍କ ସେହି ଦିନଠାରୁ ଛିନ୍ନହୋଇଗଲା। ଆମେ ପରସ୍ପରଠାରୁ ମୁହଁ ଫେରାଇ ନେଇ ପୃଥିବୀ-ପରିକ୍ରମା ଆରମ୍ଭ କରିଦେଲୁ।

× × × ×

ସେ ରାତିରେ ଯେଉଁ ଅଘଟଣ ଘଟିଗଲା, ସେଥିରେ ମୋର ଦୋଷ କ'ଣ? ଶୁକ୍ରାଚାର୍ଯ୍ୟଙ୍କ କନ୍ୟା, ଯଦୁର ମାଆ ଏବଂ ହସ୍ତିନାପୁରର ରାଜରାଣୀ ତିନୋଟିଯାକ ଶକ୍ତି ମୋ'ଠାରେ ଠୁଳହୋଇ ମୋ ଅନ୍ତରାତ୍ମାରୁ ଗର୍ଜିଉଠିଲେ– ''ମୁଁ ଯାହା କରିଛି ଠିକ୍ କରିଛି। ଏଥିମଧ୍ୟରୁ କୌଣସି ଗୋଟିଏ ଶକ୍ତି ସୁଦ୍ଧା ମୋ ଆଚରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ନାହିଁ।

ତଥାପି ମୋର ପତ୍ନୀତ୍ୱ ବେଳେବେଳେ ମୁଣ୍ଡ ଟେକିଉଠି ବିକଳ ସ୍ୱରରେ କହୁଥିଲା– 'ନା... ତୁ ଭୁଲ କରିଛୁ ଦେବଯାନୀ। ତୁ ପତ୍ନୀର କର୍ତ୍ତବ୍ୟ ଓ ଧର୍ମ ପାଳନ କରିନାହୁଁ। ତୁ କର୍ତ୍ତବ୍ୟପଥରୁ ବିଚ୍ୟୁତ ହୋଇଯାଇଛୁ।' ଅନ୍ତରାତ୍ମାର ଏ ଆହ୍ୱାନରେ ମୁଁ ଥରେ ଦି'ଥର ଚମକିଉଠିଛି, ସାରା-ରାତି ସେହି ଚିନ୍ତାରେ ଅନିଦ୍ରା ରହି ଛଟପଟହୋଇ

କଟାଇଦେଇଛି ।

ଦୀର୍ଘ ଅଠରବର୍ଷ ଧରି ମୋ ଅନ୍ତରରୁ ଏ କାହାର ଶବ୍ଦ ଭାସିଆସିଛି, ମୁଁ ଆଦୌ ଠିକ୍ କରିପାରିଲି ନାହିଁ। ନିଶାନ୍ଧକାରରେ ଦୁଷ୍ଟ ମୂଷାଟା ଆସି ରେଶମୀ ମୁଲାୟମ ଲୁଗାଟିକୁ କାଟି ଟିକିଟିକି କରିଦେବା ପରି, ମୋ ମନଗହନରେ ବିବେକର ଚିତ୍କାର ମୋତେ ବ୍ୟତିବ୍ୟସ୍ତ କରିଦେଇଛି। ଏ ଚିତ୍କାର କରୁଛି କିଏ ? କ'ଣ ତା'ର ଅଧିକାର ? ମୁଁ ବେଳେବେଳେ ସେହି ଚିତ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି କହିଛି– ''ଏଭଳି ଗୋଟିଏ ଧୋକାବାଜ୍ ସ୍ୱାମୀ; ଯେ କି ଆମର ପବିତ୍ର ବୈବାହିକବନ୍ଧନକୁ ପାଦରେ ଦଳି ନଷ୍ଟଭ୍ରଷ୍ଟ କରିଦେଇଛି, ତାକୁ କାହିଁକି ପତ୍ନୀ ପ୍ରେମକରିବ ? ତା'ହେଲେ କ'ଣ ସେ ପତ୍ନୀର କିଛି ନିଜତ୍ୱ ନାହିଁ? ନା... ସେ ରାତିରେ ମୁଁ ଯେଉଁ ବ୍ୟବହାର କରିଛି, ଠିକ୍ କରିଛି। ମୋ ଦ୍ୱାରା କିଛିହେଲେ ଭୁଲ ହୋଇନାହିଁ। ମୁଁ ଜାଣିଥିଲି, ଆମ ସୁଖର ସଂସାର ଭୁଷୁଡ଼ିପଡୁଛି; ତଥାପି ମୁଁ ସେ ପ୍ରକାର ଦୃଢ଼ତା ଗ୍ରହଣ କରିଥିଲି। ଏବେ ପ୍ରାଣ ଚାଲିଗଲେ ସୁଦ୍ଧା ମୁଁ ମୋ ପ୍ରତିଜ୍ଞାରୁ ବିରତ ହେବିନାହିଁ।

କିନ୍ତୁ ମୋର ଏତେ ଦୃଢ଼ତା ସତ୍ତ୍ୱେ ଅନ୍ତରାତ୍ମାର ସେହି ଗର୍ଜନ ବନ୍ଦହୋଇନାହିଁ। ବେଳେବେଳେ ଦୁର୍ବଳ ମୁହୂର୍ତ୍ତ ଦେଖି ସେ ପୁଣି ଚିତ୍କାର କରିଉଠିଛି। ଆଜି ମଧ୍ୟ ସେହି ଗୁଞ୍ଜନ ମୋ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଛି– ତୁ ନିଜ ଧର୍ମରୁ ବିଗତ ହୋଇଛୁ; ନିଜ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଛୁ। ପ୍ରେମ କ'ଣ କେବେହେଲେ ବାହାରର ଲୋକଦେଖାଣିଆ ସୁଆଙ୍ଗକୁ ଅପେକ୍ଷା କରେ? ପ୍ରଣୟ ଗୋଟିଏ ହୃଦୟରୁ ବାହାରି ଅନ୍ୟର ହୃଦୟରେ ପ୍ରବେଶ କରେ। ନଦୀ ଗୋଟିଏ ସ୍ଥାନରୁ ବାହାରି ମହାନଦୀ ସହିତ ମିଳିତ ହୁଏ। ରାସ୍ତାମଝିରେ କେତେ ଖାଲ, ଢ଼ିପ, ବଣ ପର୍ବତ ଆସେ; ସେ ସବୁକୁ ଅତିକ୍ରମ କରି ନଦୀ ଆଗେଇଯାଏ ସଙ୍ଗମ ଆଡ଼କୁ। ସେହିପରି ପ୍ରୀତିର ସ୍ରୋତସ୍ୱିନୀ ବାହାରେ ବାଧାବିଘ୍ନ ଅତିକ୍ରମ କରି ପ୍ରେମର ବନ୍ୟାରେ ନିଜକୁ ମିଶାଇଦିଏ। ଯେଉଁଦିନ କେହି କାହାରିକୁ ଭଲପାଇବସେ, ସେହିଦିନରୁ ତା'ର ଦୋଷ, ଗୁଣ, ଭଲମନ୍ଦର ହିସାବ ତା' ମନରୁ ଉଭେଇଯାଏ; ଅବଶେଷ ରହେ କେବଳ ନିରପେକ୍ଷ ପ୍ରଣୟ। ସେହି ପ୍ରେମ ରହିରହି, ଧୀରେଧୀରେ ଆଗେଇଯାଏ ପ୍ରଣୟର ଶୀର୍ଷଦେଶକୁ। ବାଟରେ ପଥହରା ହୁଏ, ଆଘାତ ପାଏ, ପ୍ରତିବନ୍ଧକର ସମ୍ମୁଖୀନ ହୁଏ, ତଥାପି ତା'ର ଯାତ୍ରାର ବିରାମ ନଥାଏ। ଶେଷକୁ ସେ ପାଏ ଶାଶ୍ୱତ ପ୍ରଣୟର ସ୍ୱର୍ଣ୍ଣ-ସିଂହାସନ। ଈଶ୍ୱରଙ୍କ ଆରାଧନା ସମୟରେ, କେହି କ'ଣ ହିସାବ ରଖେ ଯେ, କେତେ ଲାଭ କେତେ କ୍ଷତି ହେଲା ? ପ୍ରଣୟର ଚିରନ୍ତନ ଅର୍ଥ– ଆତ୍ମସମର୍ପଣ; ପ୍ରଣୟମାଧ୍ୟମରେ ମାନବଦ୍ୱାରା ମାନବର ଆରାଧନା। ତୁ ସେହି ପ୍ରୀତି-ଧର୍ମକୁ ପଦାଘାତ କରିଛୁ, ସ୍ତ୍ରୀଧର୍ମକୁ କଳଙ୍କିତ କରିଛୁ; ତେଣୁ ତୁ କେବେହେଲେ ଆତ୍ମପ୍ରସାଦ ଲାଭ କରି ପାରିବୁ ନାହିଁ।''

ଆଜି ତାହା ହିଁ ହେଲା। ଯଦୁ ବନ୍ଦୀହୋଇଥିବାର ଅଶୁଭ ଖବର ନେଇ ଅମାତ୍ୟ ଆସିଲେ; ମୁଁ ତାହା ଶୁଣି ସ୍ତବ୍ଧ ହୋଇ ବସିପଡ଼ିଲି। ସେହି ଦୁର୍ବଳ ମୁହୂର୍ତ୍ତରେ ଅନ୍ତରର ପୂର୍ବପରିଚିତ ଗୁଞ୍ଜନ ଝଂକୃତ ହୋଇଉଠିଲା ମୋର କର୍ଣ୍ଣକୁହରରେ– 'ତୁ ନାରୀର ଧର୍ମ, ନାରୀର କର୍ତ୍ତବ୍ୟ ଠିକ୍ ଭାବରେ ପାଳନ କରିନାହୁଁ। ପତ୍ନୀଧର୍ମକୁ ନିରାଦର କରିଛୁ। ସେହି ପାପର ଫଳ ଆଜି ତୋତେ ଭୋଗ କରିବାକୁ ହିଁ ହେବ।'

ନା ... ନା ... ମହାରାଜଙ୍କ ପାପର କୁଫଳ ଆଜି ମୋ ଯଦୁ ଉପରେ ପଡ଼ିଛି; ତେଣୁ ସେ ପରାଭୂତ ହୋଇଛି। ଦୀର୍ଘ ଅଠରବର୍ଷଧରି ସଞ୍ଚିତ ପାପର ପାହାଡ଼ ଆଜି ମୋ ଯଦୁ ମୁଣ୍ଡରେ ଅଜାଡ଼ିହୋଇପଡ଼ିଛି। ମହାରାଜଙ୍କ ପାପର ଫଳ କିଏ ବା ନ ଭୋଗିଛି? ସେ ବିଚରା ମାଧବ, ତାଙ୍କର ପରମ ମିତ୍ର; ପାପିନୀ ଶର୍ମିଷ୍ଠାକୁ ନଗର ବାହାରେ ଛାଡ଼ିଆସିବା ଲାଗି ଗଲା, ବର୍ଷାରେ ଜୁଡୁବୁଡୁ ହୋଇ ସନ୍ନିପାତରେ ମଲା। ତା'ର ବାଗ୍‌ଦତ୍ତା ପତ୍ନୀ ମାଧବୀ ସାକ୍ଷାତ୍ ରତିପ୍ରତିମାଟିଏ; ଶୁଣିଲି, ଯମୁନାଜଳରେ ତା'ର ଶବ ଭାସୁଥିଲା।

ମାଧବର ବୃଦ୍ଧାମାତା, ତା' ଝିଆରୀ ତାରକା କେତେ ଦୁଃଖ ନପାଇଲେ? ବିଚାରୀ ବୁଢ଼ୀ ନାତୁଣୀକୁ ବିବାହ ଦେଇନପାରି ମହଲକୁ ଆସିଲା; ତାକୁ ଦେଖିବାମାତ୍ରେ ମୋର ମନେହେଉଥିଲା କହିଦେବି, 'ମହାରାଜଙ୍କର ଉପକାର କରିବାକୁ ଯାଇ ତୁମ ପୁଅ ମଲା। ଏବେ ଯାଉନ ସେଇ ମହାରାଜଙ୍କ ପାଖକୁ ...।' ମନରେ ଭାବିଲି ସିନା, କିନ୍ତୁ କହିବା ଲାଗି ଜିଭ ଲେଉଟିଲା ନାହିଁ। ବିଚାରୀ ବୁଢ଼ୀର ଅବସ୍ଥା ଦେଖି ମୋତେ ଦୟାଲାଗିଲା; କହିଲି– ''ଠିକ୍ ଅଛି, ତାରକା ଲାଗି ଭଲ ଘର ବର ବୁଝିଦେବା।' ବୁଢ଼ୀ ଖୁସିହୋଇ ବିଦାୟ ହୋଇଗଲା। କିଛି ଦିନ ପରେ ଶୁଣିଲି, ତାରକା ପାଗଳୀ ହୋଇଯାଇଛି। ବିଶ୍ୱାସ କରି ପାରିଲି ନାହିଁ; ଗଲି ତାଙ୍କ ଘରକୁ। ସେ ଦୁଆରେ ବସି ଫୁଲହାର ଗୁନ୍ଥୁଥିଲା। ବାସ୍ତବିକ କି ସୁନ୍ଦର ରୂପ-ଯୌବନ ତା'ର ବିକଶିତ ହୋଇଯାଇଛି; ଦେଖି ଦୟାଲାଗିଲା। ସେ ଅନେକ ସମୟ ପର୍ଯ୍ୟନ୍ତ ମୋତେ କଟ୍‌ମଟ୍ କରି ଚାହିଁଲା; କିନ୍ତୁ ଆଦୌ ଚିହ୍ନିପାରିଲା ନାହିଁ। ଶେଷକୁ ମୁଁ କହିଲି– ''ତାରକା, ମୋତେ ସେ ମାଳାଟି ଦେବୁ?'' ସେ ଉଠି ଛିଡ଼ାହୋଇପଡ଼ି, ଦରଗୁନ୍ଥା ହାରଟାକୁ ମୋ ଆଡ଼କୁ ବଢ଼ାଇ ଦେଇ କହିଲା– ''ନିଅନ୍ତୁ, ନିଅନ୍ତୁ ମ ...।' ତା'ପରେ ହଠାତ୍ ମାଳାଟିକୁ ଲୁଚାଇବାର ଭଙ୍ଗୀକରି କହିଲା– ''ନା ... ନା ... ପ୍ରଥମେ ଶପଥ କରନ୍ତୁ ଫୁଲଗୁଡ଼ିକ ଯେପରି ଦଳି-ଚକଟି ନଷ୍ଟ ନକରିବେ; ତା'ହେଲେ ଯାଇ ମୁଁ ମାଳାଟି ଦେବି।''

ସେତିକିବେଳେ ତା' ବୁଢ଼ୀମା ଆସି ପହଞ୍ଚିଲା। ସେ ମୋତେ ଦେଖିପକାଇ କହିଲା– ''ଆରେ ମାଆ ତୁ ଚିହ୍ନିପାରୁନାହୁଁ? ସେ ପରା ଆମ ମହାରାଣୀ! ତାଙ୍କୁ ନମସ୍କାର କର ମାଆ।'' ସେ କିଛି ବୁଝିନପାରିବା ଭଳି ମୁଖଭଙ୍ଗୀ କରି କହିଲା– ''କେଉଁଠିକାର ମହାରାଣୀ?'' ବୁଢ଼ୀ ବିଚାରୀ ଜିଭକାମୁଡ଼ିପକାଇ କହିଲା– ''ଆରେ ପାଗଳି! ଆମ ଯଯାତି ମହାରାଜ ନୁହନ୍ତି, ତୁ ଜାଣିନୁ; ଏ ତାଙ୍କର ମହାରାଣୀ ପରା।' ତା'ପରେ ତାରକା ମନେମନେ କେତେ କ'ଣ ବର୍‌ବର ହୋଇ, ମାଳାଟି ଆଡ଼କୁ ଭୟଭୀତ ଚକ୍ଷୁରେ ଅନାଇ ''ସାପ, ସାପ! ମା'ଲୋ ମା', କେଡ଼େ ବଡ଼ ସାପଟେ'' –କହି ମାଳାଟିକୁ ଦୂରକୁ ଫିଙ୍ଗିଦେଲା। ସେହି ଆଡ଼କୁ ବଡ଼ବଡ଼ ଆଖିରେ ଚାହିଁ କହିଲା– ''ବୁଢ଼ୀମା ଦେଖ, ଦେଖ, କେଡ଼େ ବଡ଼ ସାପଟେ। ଗୋଟେ ବଡ଼ବାଡ଼ି ଘେନିଆ। ଚୁପ୍‌ଚାପ୍ ... ଧୀରେ ଧୀରେ ଯାଅ। ନଇଲେ ସେ ତୁମକୁ କାମୁଡ଼ିଦେବ। ଏଇ କିଛି ସମୟ ପୂର୍ବରୁ ସେ ମୋତେ କାମୁଡ଼ି ଦେଇଥିଲା। ହେଇ ... ହେଇ ... ହେଇ ...।''

ସେପରି ଦେଖିବାକୁ ଗଲେ, ମହାରାଜଙ୍କ ସହିତ ତାରକାର କି ସମ୍ପର୍କ? ତଥାପି ସେ ମାଧବର ଝିଆରୀ ହୋଇଥିବାରୁ, ପାପର ଫଳ ତାକୁ ମଧ ଭୋଗିବାକୁ ପଡ଼ିଲା। ପାପ ଗୋଡ଼ାଇ ଗୋଡ଼ାଇ ବିଚ଼ାରୀ ଅବୋଧ ବାଳିକାଟିକୁ ଦଂଶନ କଲା।

× × × ×

ମୋ ଆଦରର ଯଦୁ, ଅଭିଶପ୍ତ ପିତାର ପୁତ୍ର। ଓଃ... ଆକାଶରେ ଘୂରିବୁଲୁଥିବା ସଞ୍ଚାଣଟା ତଳକୁ ଉହୁଁକି ଆସି ମୋ ରତ୍ନହାରଟିକୁ ଛିଡ଼ାଇନେଇଗଲା। ପ୍ରକୃତରେ ପିତାମାତାଙ୍କର ସୁକୃତରୁ ପୁତ୍ର ସୁଖୀହୁଏ। ଯଦୁ ସଦ୍‌ଗୁଣସମ୍ପନ୍ନ ହେଉ, ପରାକ୍ରମୀ ହେଉ, ସେଥିଲାଗି ମୁଁ ତାକୁ ମହାରାଜଙ୍କ ସ୍ୱେଚ୍ଛାଚାରୀ ଜୀବନର ଛାଇ ସୁଦ୍ଧା ମଡ଼ାଇଦେଲିନାହିଁ। ତଥାପି ଯାହା ହେବାର କଥା, ତାହା ହିଁ ଘଟିଲା। ବିଧିର ବିଧାନ ବିଚିତ୍ର; ଭାଗ୍ୟଲିପିକୁ କିଏ ଲିଭାଇ ଦେଇ ପାରିବନାହିଁ।

ଅଠର ବର୍ଷ ତଳେ– ସେହି କାଳରାତ୍ରିରେ, ମୁଁ ମହାରାଜଙ୍କୁ ଶପଥ କରାଇଥିଲି; ସେହିଦିନଠାରୁ ମୁଁ ସନ୍ନ୍ୟାସିନୀ ପରି କାଳାତିପାତ କରୁଛି। ରାତିରାତି ଛଟପଟ ହୋଇଛି। ପ୍ରିୟ-ମିଳନ ଲାଗି ବିକ୍ଷୁବ୍ଧ ମନକୁ ଜାଳିପୋଡ଼ି ଦହଗଞ୍ଜ କରିଛି। ଦିନେ ଦିନେ ମୋ ମନ ମଧରେ ପୁଞ୍ଜୀଭୂତ ଅଭିମାନର ବନ୍ଧ ଭାଙ୍ଗିଯାଏ। ମୁଁ ରଥରେ ବସି ଅଶୋକବନକୁ ଚାଲିଯାଏ; କିନ୍ତୁ ଭିତରକୁ ଯାଇପାରେନାହିଁ। ମୋର ଅଭିମାନ, ମୋର ଆତ୍ମବଡ଼ିମା, ମୋତେ ଅଶୋକବନର ଦୁଆରୁ ଲେଉଟାଇଆଣେ।

କିନ୍ତୁ ମହାରାଜ ଜୀବନର ପ୍ରତିକୂଳ ମାର୍ଗରେ ଗତିକରି ମଧ ତାଙ୍କ ଶପଥ ପାଳନ କରିଛନ୍ତି। ଛଅଛଅ ମାସ ଧରି ସେ ନଗରର ବାହାରେ ରହି କାଳ କାଟିଛନ୍ତି। ମଉଜ-ମଜ୍‌ଲିସ୍, ବିଳାସବ୍ୟସନରେ ମାତି ସମୟ ବିତାଇଛନ୍ତି। ପ୍ରଥମେ ପ୍ରଥମେ ଏ କଥାଶୁଣି ମୋ ଦେହ ବିଛା କାମୁଡ଼ିଲା ପରି ଜଳିଉଠିଲା। ସ୍ତ୍ରୀ-ପୁରୁଷଙ୍କ ପ୍ରେମ-ସମ୍ପର୍କ ପ୍ରତି ମନରେ ଘୃଣା ଜାତହେଲା। ଭାବିଲି, ଈଶ୍ୱର ଏ ଆକର୍ଷଣ ସୃଷ୍ଟି କରି କେଡ଼େ ଅନ୍ୟାୟ କରିଛନ୍ତି।

କେବେକେବେ ହୃଦୟତନ୍ତ୍ରୀରେ କୋମଳ ଝଙ୍କାର ବାଜିଉଠେ। ସେହି ଝଂକୃତ ସ୍ୱର ମୋ କାନପାଖରେ ଚୁପ୍‌ଚୁପ୍ କହେ– "ପାଗଳୀ, ଏ ଅଭିମାନ ଛାଡ଼ିଦେ। ଏବେବି ସମୟ ଅଛି, ଦୌଡ଼ିଯାଅ...। ମହାରାଜ ଯେଉଁଠି ଥାଆନ୍ତୁ ପଛକେ, ସେଇଠିକି ଧାଇଁଯାଅ...। ନିଜ ଆଖିର ଅଶ୍ରୁଧାରରେ ତାଙ୍କ ଚରଣ ପଖାଳିଦେଇ ବିନତି କର– ଆପଣ ଏ କ'ଣ କରୁଛନ୍ତି? କୁଆଡ଼େ ଚାଲିଛନ୍ତି? ମୋର ପ୍ରାଣେଶ୍ୱର, ରାଜରାଜେଶ୍ୱର! ଏହାହିଁ କ'ଣ ଆପଣଙ୍କର ମାର୍ଗ? ଦୂର ଗଗନର ଉଜ୍ଜ୍ୱଳ ଉଲ୍‌କା ତଳକୁ ଖସିଆସି ପଥର ହୋଇଯାଏ। ପ୍ରିୟତମ, ଆପଣ ମୋର ସଂପୂର୍ଣ୍ଣ ଆପଣାର। ଆପଣଙ୍କ କଳଙ୍କ ମୋର କଳଙ୍କ। ଆପଣଙ୍କ ଅଧଃପତନ ମୋର ଅଧଃପତନ। ମୁଁ ଆପଣଙ୍କର ପତ୍ନୀ। ପତି ବିନା ପତ୍ନୀର ଗୌରବରକ୍ଷା କରିବ କିଏ? ମୁଁ ମଦ୍ୟଗନ୍ଧ ସହ୍ୟକରିପାରେନାହିଁ; ତଥାପି ଚାଲନ୍ତୁ, ମୁଁ ହସିହସି ସେ ଗନ୍ଧ ସହ୍ୟକରିନେବି। ଆପଣଙ୍କ ସୁଖରେ ମୋର ଆନନ୍ଦ; ଆପଣ ଚାହିଁଲେ ମୋ ଉପରେ ମଦ୍ୟଭାଣ୍ଡ ଅଜାଡ଼ିଦିଅନ୍ତୁ; ମୁଁ ଉଁ କି ଚୁଁ କିଛି କହିବିନାହିଁ। ତା'ହେଲେ ଆପଣ ଖୁସି ହେବେ

ତ? ଆପଣ ନିଜର ସୁଖ ଓ ଆନନ୍ଦଲାଗି ମୋତେ ଯଥେଚ୍ଛା ଉପଭୋଗ କରନ୍ତୁ, ମୋତେ ସୁଗନ୍ଧିତ ଫୁଲପରି ଦଳିଚକଟି ଯଥେଚ୍ଛାଚାର କରନ୍ତୁ; କିନ୍ତୁ ଦୟାକରି ଧର୍ମର ଅମର୍ଯ୍ୟାଦା କରନ୍ତୁ ନାହିଁ। ପୁତ୍ରଧର୍ମ, ରାଜଧର୍ମ ଓ ପତିଧର୍ମ ଭୁଲିଯାଆନ୍ତୁ ନାହିଁ।''

ମହାରାଜଙ୍କ ପାଦ ଧରି ଏପରି ଅନୁନୟ ବିନୟ କରିବାକୁ ମନେମନେ ଭାବୁଥିଲି; ମାତ୍ର ଏପରି ଭାବନା ମୋ ମନରେ ଘଡ଼ିଏ ଦି'ଘଡ଼ି ମାତ୍ର ସ୍ଥାୟୀ ହେଉଥିଲା। ପରମୁହୂର୍ତ୍ତରେ ମୁଁ ଭାବୁଥିଲି କଚ ବିଷୟରେ; ବାସ୍ତବିକ, ସେ ମୋତେ କେତେ ଭଲପାଉନଥିଲା ? କର୍ତ୍ତବ୍ୟଦୃଷ୍ଟିରୁ ସେ ମୋର ପ୍ରଣୟ ପ୍ରତ୍ୟାଖ୍ୟାନକଲା। ସଞ୍ଜୀବନୀବିଦ୍ୟା ପ୍ରାପ୍ତହୋଇ ସେ ଦେବଲୋକରେ ପ୍ରବେଶ କରିବାମାତ୍ରେ କେତେ ଅପ୍‌ସରା ତା' ପାଦତଳେ ଲୋଟିପଡ଼ିଥିବେ। କିନ୍ତୁ ସେ ଆଦୌ ବିଚଳିତ ହେଲାନାହିଁ, ଭ୍ରମଜାଲରେ ପଡ଼ିଲା ନାହିଁ।

କଚର ବୈରାଗ୍ୟ ତଥା ତ୍ୟାଗ ଆଗରେ ମହାରାଜଙ୍କ ବିଳାସପ୍ରିୟତା ଦେଖି ମୋ ମନରେ ଘୃଣା ଜାତହେଲା, ଅତୀତକୁ ଭୁଲିଯାଇ ତାଙ୍କ ଗୋଡ଼ ଧରି ନେହୁରା ହେବାଲାଗି ଲଜ୍ଜାବୋଧହେଲା। ମନ ମୋର ଅଭିମାନରେ ପୂର୍ଣ୍ଣହୋଇଗଲା। ଅନ୍ତର ମଧ୍ୟରୁ ହୁଙ୍କାର ବାହାରିଆସୁଥିଲା– ''ପଥରଟା ଉପରେ ଫୁଲବର୍ଷା କଲେ ଲାଭ କ'ଣ ହେବ? ଫୁଲର ସୁଗନ୍ଧରେ କ'ଣ ପଥରଟା ମହକିଉଠିବ? ପୁରୁଷମାନଙ୍କର ପ୍ରେମ ଠିକ୍ କଚର ତ୍ୟାଗପୁତ ପ୍ରେମପରି ହେବା ଉଚିତ ଏବଂ ନାରୀମାନେ ସେଇଭଳି ପୁରୁଷର ପାଦପୂଜା କରିବେ। ଓଃ... କଚ ସହିତ ମୋର ବିବାହ ହୋଇଥିଲେ ପ୍ରକୃତରେ ମୁଁ ସୁଖୀ ହୋଇଥାଆନ୍ତି। ତା'ରି ଆଶ୍ରମରେ ମୋତେ ଆନନ୍ଦ ମିଳିଥାଆନ୍ତା; କିନ୍ତୁ ଏ ରାଜପ୍ରାସାଦରେ ଦିନେ ହେଲେ ସୁଦ୍ଧା ମୋତେ ସୁଖ ମିଳିଲା ନାହିଁ।

କିନ୍ତୁ ସତରେ କ'ଣ ମୁଁ ସୁଖୀ ହୋଇଥାନ୍ତି? ପ୍ରକୃତ ଅର୍ଥରେ ମୁଁ କ'ଣ ତାକୁ ପ୍ରେମ କରୁଥିଲି? ମୋ ମନରେ କଚ ପ୍ରତି ଯେଉଁ ପ୍ରେମ ଜାତହୋଇଥିଲା, ତା' କ'ଣ ପ୍ରକୃତରେ ନିରପେକ୍ଷ ପ୍ରେମ ଥିଲା କି? ତା' ଥିଲା କେବଳ ଗୋଟାଏ ଦୈହିକ ଆକର୍ଷଣ; ତାହାକୁ ନିପଟ ଆତ୍ମଶ୍ଳାଘା ବୋଲି କୁହାଯାଇପାରେ। ମୁଁ ଯଦି ପ୍ରକୃତରେ ଆନ୍ତରିକତାର ସହିତ ତାକୁ ପ୍ରେମ କରୁଥାନ୍ତି; ତେବେ ତା'ଉପରେ ଅଭିଶାପ ବୃଷ୍ଟି କରିବା ସମୟରେ ମୋ ପାଟି ଖସି ମାରିଯାଇନଥା'ନ୍ତା କି? ସେପରି କଠୋର ଅଭିଶାପ ଦେବାଲାଗି ମୋ ଜିଭ ଲେଉଟିଲା କିପରି? ସେଭଳି ଅପଶବ୍ଦ ଉଚ୍ଚାରଣ କରିବାମାତ୍ରେ ମୋ ଜିଭ ଜଡ଼ ପାଲଟିନଗଲା କାହିଁକି?

ତା'ହେଲେ ପ୍ରକୃତରେ ପ୍ରେମ କ'ଣ? କି ରହସ୍ୟ ଯା' ମଧ୍ୟରେ ଲୁଚିରହିଛି? ବିଗତ ଅଠର ବର୍ଷ ଧରି ମହାରାଜ ଯେଉଁ ଲୀଳା ଲଗାଇଛନ୍ତି, ତାହାହିଁ କ'ଣ ପ୍ରେମ? ନିଜ ବିବାହିତା ପତ୍ନୀ ସହିତ ବିଶ୍ୱାସଘାତକତା କରି ସେ ଶର୍ମିଷ୍ଠା ସହିତ ଯେଉଁ ବ୍ୟଭିଚାର କଲେ, ତାହାହିଁ କ'ଣ ପ୍ରେମ?

ଶର୍ମିଷ୍ଠା; ତା'କଥା ମନେପଡ଼ିଲାବେଳକୁ ମୋ ଦେହ ରାଗରେ ନିଆଁ ହୋଇଯାଉଛି। ଓଃ, କି କାଳମୁହୂର୍ତ୍ତରେ ତାକୁ ଦାସୀ କରି ଆଣିବାର ଭୂତ ମୋ ମୁଣ୍ଡରେ ସବାର ହୋଇଥିଲା। ତା'ରି ଲାଗି ମହାରାଜ ମୋ'ଠାରୁ ଦୂରେଇଗଲେ। ମୁଁ ତାଙ୍କର ପ୍ରେମସ୍ପର୍ଶରୁ ବଞ୍ଚିତାହେଲି ଏବଂ ସେ ଅଧଃପତନର ଗଭୀରତମ ଅନ୍ଧକୂପରେ ପଡ଼ି ଆତ୍ମଘାତିନୀ

ହେଲି ! ଆଜି ଯୁବରାଜ ଶତ୍ରୁ ଶିବିରରେ ବନ୍ଦୀ; କିନ୍ତୁ ମହାରାଜ ବିଳାସର ଅତଳ ଗହ୍ୱରରେ ଆତ୍ମହରା ହୋଇପଡ଼ିଛନ୍ତି । ରାଜ୍ୟ ଛାରଖାର, ବଂଶରେ କଳଙ୍କ, ଗୌରବ-ଗରିମା ଧୂଳିସାତ୍ ହେବାକୁ ବସିଲାଣି, ସେଥିଲାଗି ମହାରାଜଙ୍କ ମନରେ ତିଳେହେଲେ ଦୁଃଖ ନାହିଁ ।

ମହାରାଜଙ୍କର ଉଚିତ ଥିଲା – ଏ ସମ୍ବାଦ ଶୁଣିବାମାତ୍ରେ ଏଠାକୁ ଧାଇଁ ଆସିଥାଆନ୍ତେ ଏବଂ ଯଦୁକୁ ମୁକୁଳାଇବା ଲାଗି ଯୁଦ୍ଧଯାତ୍ରା କରିଥା'ନ୍ତେ । ତାଙ୍କ ଯାତ୍ରା ସମୟରେ ମୁଁ ତାଙ୍କୁ ବନ୍ଦାଇବାବେଳେ ମୋ ଆଖିରୁ ଲୁହଧାର ଝରିପଡ଼ିଥାନ୍ତା । ସେ ନିଜ ଆଙ୍ଗୁଳିରେ ଧୀରେ ମୋ ଆଖିରୁ ଲୁହଧାର ପୋଛିଦେଇ କହିଥାନ୍ତେ – ''ପାଗଳୀଟା; ଦେଖିବ, ମୁଁ ପନ୍ଦରଦିନ ମଧ୍ୟରେ ଯଦୁକୁ ଆଣି ତୁମ ଆଗରେ ଛିଡ଼ା କରାଇ ଦେଉଛି ।''

''ପାଗଳୀଟା'' . . . କେଡ଼େ ମଧୁର ଶବ୍ଦ । ଏହି ମଧୁର ସ୍ନେହବୋଳା ଶବ୍ଦ ଶୁଣିଲେ ନାରୀଜନ୍ମ ଧନ୍ୟହୋଇଯାଏ; ଏହିପରି କାନ୍ତକୋମଳ ଶବ୍ଦ ଶୁଣି ଶୁଣି ଦୁନିଆରୁ ବିଦାୟ ହୋଇଗଲେ ନାରୀଜନ୍ମ ସାର୍ଥକ ହୁଏ । ମନେମନେ ଭାବେ, କେହି ମୋତେ ତା'ର ଭୁଜବନ୍ଧନରେ ବନ୍ଦୀ କରିନେଇ ମୋର ଆଲରା କେଶଗୁଚ୍ଛକୁ ଆଉଁଷି ଦିଅନ୍ତା କି ? ତା'ହେଲେ ସେହି ସ୍ନେହବୋଳା ପରଶରେ ମୋ ଅନ୍ତରର ଦାବାନଳ ମୁହୂର୍ତ୍ତକେ ଶାନ୍ତ ହୋଇଯାଆନ୍ତା । ନା . . . ମୋ ଭାଗ୍ୟରେ ସେ ସୁଖ ନାହିଁ । ତା'ହେଲେ କ'ଣ ସାରା ଜୀବନ ଏଇ ଶୂନ୍ୟତା ମୋ ସଙ୍ଗୀ ହୋଇଥିବ? ଶେଷଜୀବନ ପର୍ଯ୍ୟନ୍ତ ମୁଁ କ'ଣ ପ୍ରେମ-କାଙ୍ଗାଳିନୀ ହୋଇ ରହିବି ? ଜୀବନରେ କ'ଣ ମୋର ପରିତୃପ୍ତି ଆସିବ ନାହିଁ ?

ଚିନ୍ତାଗ୍ରସ୍ତ ମନରେ ମୁଁ ଅନ୍ଧକାର ଆଡ଼କୁ ଚାହିଁରହିଲି । ବିଗତ ଅଠର ବର୍ଷଧରି ଅନେକ ସ୍ମୃତିର ଧୂମିଳରେଖା ମନଗହନରେ ତାଣ୍ଡବ ଚଳାଉଥିଲା । ମୋର ଧୈର୍ଯ୍ୟ ଶେଷ ସୀମାରେ ଉପନୀତ ହେଲା; ନାଃ. . . ଆଉ ସହ୍ୟ କରିହେବନାହିଁ । ଯାଉଛି, ଧାଇଁଧାଇଁ ଅଶୋକବନକୁ ଯିବି; ମହାରାଜଙ୍କୁ ଭୁଜବନ୍ଧନରେ ବନ୍ଦି କରି କହିବି . . .

ହଠାତ୍ ଦାସୀ ଆସି ଅମାତ୍ୟଙ୍କ ଆଗମନର ସୂଚନା ଦେଲା । ସେ ଭିତରକୁ ଆସି ନୀରବରେ ମୁଣ୍ଡ ତଳକୁ କରି ଛିଡ଼ା ହୋଇରହିଲେ । ମୁଁ କଠୋର ସ୍ୱରରେ ପଚାରିଲି – ''ଏତେ ବିଳମ୍ବ କଲେ କାହିଁକି ଅମାତ୍ୟ ?''

''ମହାରାଜଙ୍କ ସାକ୍ଷାତ୍ ହୋଇପାରୁନଥିଲା ।''

''ଯଦୁକୁ ଶତ୍ରୁମାନେ ବନ୍ଦୀକରି ନେଇଥିବାର ଖବର ଶୁଣି ମଧ୍ୟ ?''

''ଆଜ୍ଞା ।''

''କାହିଁକି ?''

''ଅଧୀନ ସେବକକୁ ସେ ପ୍ରଶ୍ନ କରନ୍ତୁ ନାହିଁ; ମହାରାଣୀ ସେ ଉତ୍ତର ଶୁଣିପାରିବେନାହିଁ ।''

''ବୁଝିଲି . . . ମହାରାଜ ନିଶ୍ଚୟ ବିଳାସ-ବ୍ୟସନରେ ମାତିଥିଲେ ?''

ଅମାତ୍ୟ କିଛି ଉତ୍ତର ନଦେଇ ନୀରବ ରହିଲେ ।

''ଶେଷକୁ ମହାରାଜଙ୍କ ସହିତ ଭେଟ ହେଲା ନା ନାହିଁ ?''

''. . .ହଁ . . . ହେଲା . . .।''

''କଅଣ କହିଲେ ?''

''ମୋ କଥା ଶୁଣି ସେ କେବଳ ହସିଲେ।''

''ହସିଲେ ?'' ଏହା ଶୁଣିବାମାତ୍ରେ ମୁଁ ରାଗରେ ନିଆଁହୋଇଗଲି; କିନ୍ତୁ ମନର କ୍ରୋଧକୁ ଆୟତ୍ତ କରି ମୁଁ କୌଣସିମତେ ଏ ପ୍ରଶ୍ନକଲି। ଅମାତ୍ୟ ମୁଣ୍ଡ ନୁଆଇଁ କହିଲେ– ''ମୁଁ ମହାରାଣୀଙ୍କର ସନ୍ଦେଶ ନିବେଦନ କଲି; ତଥାପି ମହାରାଜ କେବଳ ହସିବାକୁଲାଗିଲେ। ତା'ପରେ କହିଲେ– 'ମହାରାଣୀ ମହୋଦୟାଙ୍କୁ କହିବ, ଏତେ ବର୍ଷ ପରେ ମୋତେ ମନେପକାଇଥିବାରୁ ମୁଁ ତାଙ୍କଠାରେ ଋଣୀ।''

ମୁଁ ରକ୍ତ ବାହାରିବା ପର୍ଯ୍ୟନ୍ତ ଓଠ କାମୁଡ଼ି ରହିଲି, ତଥାପି ମୋର କ୍ରୋଧ ଆୟତ୍ତ ହେଲାନାହିଁ। ଅମାତ୍ୟ ମୋ ଆଗରେ ପାଷାଣ ପ୍ରତିମା ପରି ଛିଡ଼ାହୋଇଥିଲେ। ମୁଁ ସେହିପରି କ୍ରୋଧୋନ୍ମତ୍ତ ସ୍ୱରରେ ପଚାରିଲି– ''ତା'ପରେ...?''

ସେ ଅସମଞ୍ଜସରେ ପଡ଼ି କହିଲେ– ''ତାପରେ, ମହାରାଜ କହିଲେ...''

କ୍ରୋଧରେ ମୋର ତାଳୁରୁ ତଳିପାଯାଏ ଜଳିଗଲା। ମୁଁ କହିଲି– ''ମହାରାଜ ଯାହା ଯାହା କହିଛନ୍ତି ମୁଁ ଗୋଟି ଗୋଟି କରି ସବୁ ଶୁଣିବାକୁ ଚାହେଁ।''

ଅନେକ ସମୟ ପର୍ଯ୍ୟନ୍ତ ଏଣେତେଣେ ଚାହିଁ, ଖନେଇ ଖନେଇ କହିଲେ ଅମାତ୍ୟ– ''ଶତ୍ରୁ ମହାରାଣୀଙ୍କୁ ଉଠାଇନେଇଗଲେ ସୁଦ୍ଧା ମୋର କିଛି ଯାଏ-ଆସେ ନାହିଁ। ଏବେ ଆଉ ମହାରାଣୀଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ।''

ତୀବ୍ର ବିଷଜ୍ୱାଳା ପରି ସେ ଶବ୍ଦ ମୋର କଳିଜାକୁ ଭେଦିଗଲା। ମୁଁ ତାଙ୍କର କେହି ନୁହେଁ? ଶତ୍ରୁ ମୋତେ ଉଠାଇନେଇଗଲେ ସୁଦ୍ଧା ତାଙ୍କର କିଛି ଯାଏଆସେ ନାହିଁ? ଆପତ୍ତି ରହିବ କାହିଁକି? ବିନା ଚେଷ୍ଟାରେ ତାଙ୍କ ଆଖିରୁ କଣ୍ଟା ଦୂରହୋଇଯିବ। ଆଚ୍ଛା... ମୁଁ ବି ଦେଖିନେବି।

ବିବାହ ଦିନରୁ ଆମ ମନରେ ଯେଉଁ ଶୀତଳଯୁଦ୍ଧ ଆରମ୍ଭ ହୋଇଥିଲା, ଏଥର ତାହା ଉଗ୍ରରୂପ ଧାରଣ କରିବ; ତା'ର ଶେଷପର୍ବ ଆରମ୍ଭ ହୋଇଯିବ। ବାପାଙ୍କର ତପସ୍ୟା ଶେଷହୋଇଯାଉ। ତା'ପରେ ମୁହୂର୍ତ୍ତକ ମଧ୍ୟରେ ତାଙ୍କୁ ଜଣାପଡ଼ିଯିବ ମୁଁ ତାଙ୍କର କେହି କି ନୁହେଁ!! ବିବାହ ସମୟରେ ଖୁବ୍ ସାବଧାନରେ ଶର୍ମିଷ୍ଠା ସହିତ ଚଳିଯିବାଲାଗି ବାପା ତାଙ୍କୁ ଚେତାବନୀ ଶୁଣାଇଥିଲେ; କିନ୍ତୁ... ଏ ତ ଗୋଟେ ପଶୁ। ପଶୁକୁଳରେ ଯା'ଙ୍କର ଜନ୍ମ। ମୁହଁରେ ତୁଣ୍ଡି ବନ୍ଧାହୋଇଥିଲେ ସୁଦ୍ଧା, ବାଟରେ ଯାଉ ଯାଉ ପାଖ କିଆରିରେ ମୁହଁ ମାରିଦେବା ଯା'ଙ୍କର ଅଭ୍ୟାସ।

ମୁଁ ଅମାତ୍ୟଙ୍କ ସହିତ ବିଚାରକରି ଯଦୁକୁ ମୁକୁଳାଇବା ଲାଗି ଯୋଜନାକଲି। ସେତିକିବେଳେ ଗୋଟିଏ ଦାସୀ ଧାଇଁ ଧାଇଁ ଭିତରକୁ ପଶିଆସିଲା। ତାର ମୁହଁରୁ ଆନନ୍ଦ ଉକୁଟିଉଠୁଥିଲା। ସେ ଧଇଁସଇଁ ହୋଇ କହିଲା– ''ବାହାରେ ଗୋଟିଏ ଦୂତ ଛିଡ଼ାହୋଇଛି। ସେ ଘୋଡ଼ାରେ ବସି ଛୁଟିଆସିଛି। ମହାରାଣି, ସେ ଲୋକଟି ଘୋଡ଼ାରୁ କୁଦିପଡ଼ିବାମାତ୍ରେ ଘୋଡ଼ା ରକ୍ତ ବାନ୍ତି କରି ସେଇଠି ପଡ଼ି ମରିଗଲା।''

ମୁଁ ସେ ଦାସୀର ବ୍ୟବହାରରେ ଖୁବ୍ ବିରକ୍ତ ହୋଇଉଠିଲି। ଦୂତକୁ ସେ ଶୀଘ୍ର ଭିତରକୁ ଘେନିଆସିଲାନାହିଁ କାହିଁକି? ତା' ନକରି... ମୁଁ ଶୀଘ୍ର ମହଲର ବାହାରକୁ ଧାଇଁଗଲି। ସେ ପର୍ଯ୍ୟନ୍ତ ଦୂତଟି ଛିଡ଼ାହୋଇଥିଲା; ମୋତେ ଅଭିବାଦନ ଜଣାଇ ସେ କହିଲା– ''ଦେବି, ମୁଁ ଗୋଟିଏ ଖୁସିର ଖବର ଆଣିଛି। ଯୁବରାଜ

ଶତ୍ରୁ କବଳରୁ ମୁକ୍ତ ହୋଇଛନ୍ତି।''

ମୋର ଆନନ୍ଦର ସୀମା ରହିଲାନାହିଁ। ଯଦୁର ସାହସ ଓ ପରାକ୍ରମ ସମ୍ବନ୍ଧରେ ଚିନ୍ତାକରି ମୁଁ ଆତ୍ମହରା ହୋଇଉଠିଲି। ମୁଁ ଅଧୀରତାର ସହିତ ପ୍ରଶ୍ନକଲି– ''ଯୁବରାଜ କିପରି ଶତ୍ରୁ କବଳରୁ ମୁକ୍ତ ହୋଇପାରିଲେ? କ'ଣ ପ୍ରହରୀକୁ ପ୍ରାଣରେ ମାରିଦେଇ?''

''ପ୍ରାଣକୁ ଜଳାଞ୍ଜଳି ଦେଇ ତାଙ୍କୁ ଉଦ୍ଧାର କରାଯାଇଛି।''

''କିଏ ସେ? ସେନାପତି?''

''ନା ଦେବୀ! ସେନାପତି ନୁହନ୍ତି... ଯୁବରାଜଙ୍କ ବୟସର ଜଣେ ବୀର ଯୁବକ... ସେଇ...!''

''ତା' ନାମ କଅଣ?''

''ସେ ବୀର ଯୁବକଙ୍କ ନାମ ମୋତେ ଜଣାନାହିଁ; ସେ ମଧ୍ୟ ଆମ ସୈନ୍ୟଦଳର ନୁହେଁ। ଏହି ଶୁଭ ଖବର ଜଣାଇଦେବା ଲାଗି ସେନାପତି ମୋତେ ତୁରନ୍ତ ପଠାଇଦେଲେ। ସେହି ବୀର ଯୁବକଙ୍କୁ ସାଙ୍ଗରେ ଧରି ଯୁବରାଜ ଶୀଘ୍ର ରାଜଧାନୀକୁ ଫେରୁଛନ୍ତି। ପନ୍ଦରଦିନ ମଧ୍ୟରେ ସେମାନେ ଆସି ରାଜଧାନୀରେ ପହଞ୍ଚିବେ।''

ଶୁଭ ଖବର ଆଣିଥିବା ଦୂତକୁ ମୁଁ କି ପୁରସ୍କାର ଦେବି ଏଇଆ ଭାବୁଥିବା ସମୟରେ ଆଉଜଣେ ଦୂତ ଆସିବାର ଖବର ଦାସୀ ଆସି ଜଣାଇଲା। ଏହି ଖବର ଶୁଣି ମୋ ଛାତିରେ ଛନକା ପଶିଗଲା। ମୁଁ ଭାବିଲି– ଯଦୁ ମୁକ୍ତ ହୋଇଯିବା ପରେ ପୁଣି ଶତ୍ରୁମାନେ ବେଳକାଳ ଉଣ୍ଡି ତାକୁ ବନ୍ଦୀ କରିନେଲେ କି? ସେଇ ପାଞ୍ଚ-ଦଶ ମୁହୂର୍ତ୍ତ ମୋ ପାଖରେ ଶତ ଯୁଗପରି ଲାଗିଲା।

ଏହି ସମୟରେ ସେ ଦୂତ ଭିତରକୁ ପଶିଆସିଲା। ତାକୁ ଦେଖିବାମାତ୍ରେ ସେ ମହାରାଜ ବୃଷପର୍ବାଙ୍କର ଦୂତ ବୋଲି ମୁଁ ଚିହ୍ନିପାରିଲି। ସେ ଗୋଟିଏ ଆନନ୍ଦଦାୟକ ଖବର ଆଣିଥିଲା– ପିତାଙ୍କର ତପସ୍ୟା ଶେଷ ହୋଇଯାଇଥିଲା ଏବଂ ଭଗବାନ୍ ଶଙ୍କରଙ୍କ ଦୟାରୁ ସଂଜୀବନୀଠାରୁ ଆହୁରି ଶକ୍ତିଶାଳୀ ବର ସେ ପ୍ରାପ୍ତ ହୋଇଥିଲେ। ସେଥିଲାଗି ରାକ୍ଷସ ରାଜ୍ୟରେ ମହୋତ୍ସବ ଅନୁଷ୍ଠିତ ହେଉଥିଲା। ସେହି ମହୋତ୍ସବରେ ଯୋଗଦେବା ଲାଗି ବାପା ମୋତେ ନେବାକୁ ନିଜେ ଏଠାକୁ ଆସୁଛନ୍ତି। ବାପା ପନ୍ଦରଦିନ ମଧ୍ୟରେ ଏଠାରେ ଆସି ପହଞ୍ଚିବେ ବୋଲି ମହାରାଜ ବୃଷପର୍ବା ଖବର ପଠାଇଥିଲେ।

ଆନନ୍ଦର ଉତ୍ତାଳ ତରଙ୍ଗରେ ସନ୍ତରଣ କରୁଥିବା ଦେବଯାନୀକୁ ତା' ଅନ୍ତରର ଦୁଃଖିନୀ ଦେବଯାନୀ ସାନ୍ତ୍ୱନା ଦେଇ କହିଲା– 'ଆଜି ତୋର ଦୀର୍ଘ ଦିନର ତପସ୍ୟା ପୂର୍ଣ୍ଣହୋଇଛି। ଦୀର୍ଘ ଅଠରବର୍ଷ କାଳ ଯେଉଁ ତପସ୍ୟା କରୁଥିଲୁ, ତାହା ଆଜି ସାକାର ହୋଇଉଠିଛି। ଆଜି ତୁମ ଜୀବନର ନିଦାଘ ଶେଷ ହୋଇଗଲା ବୋଲି ମନେକର। ଶର୍ମିଷ୍ଠା ସମ୍ବନ୍ଧରେ ତୁମେ ମୁହଁ ଖୋଲି ଶୁକ୍ରାଚାର୍ଯ୍ୟଙ୍କୁ ଥରେ କହିଦେଲେ ଦେଖିବ କି ଲୀଳା ଲାଗିବ। ତୁମ ବାପା ତୁରନ୍ତ ଯଦୁକୁ ସିଂହାସନରେ ବସାଇଦେବେ ଓ ମହାରାଜଙ୍କୁ ଏପରି ଦଣ୍ଡ ଦେବେ ଯେ...!'

ଆଖି ଆଗରେ ମୋର ସ୍ୱପ୍ନର ସାମ୍ରାଜ୍ୟ ନାଚିଉଠିଲା। ହସ୍ତିନାପୁରର ସମ୍ରାଟରୂପେ ଯଦୁର ରାଜ୍ୟାଭିଷେକ ହେଉଛି। ସମଗ୍ର ଆର୍ଯ୍ୟାବର୍ତ୍ତର ପବିତ୍ର ନଦୀଗୁଡ଼ିକର ଜଳ

ତା' ଶିରରେ ଢାଳି ତାକୁ ଅଭିଷେକ କରାଯାଉଛି। କଚଙ୍କ ସମେତ ସମସ୍ତ ଋଷିମୁନି ଗୁରୁଗମ୍ଭୀର ସ୍ୱରରେ ମନ୍ତ୍ରୋଚ୍ଚାରଣ କରୁଥିଲେ ମଧ୍ୟ ଗୋଟିଏ ବିଷୟ ଊଣା ହୋଇଛି ବୋଲି ସମସ୍ତେ ଅନୁଭବ କରୁଛନ୍ତି। ଶେଷରେ ଯଦୁ ଆସି ମୋତେ ପ୍ରଣାମକରୁଛି। ମୋ ଆଖିରୁ ଆନନ୍ଦାଶ୍ରୁ ଝରିପଡୁଛି। ବାପା ହସିହସି କହୁଛନ୍ତି– 'ଯା... ତୋ' ପୁଅର ଅଭିଷେକ ଶେଷହୋଇଗଲା।'

ସେତିକିବେଳେ ମହାରାଜ ମୋ' ଆଗରେ ଆଣ୍ଠୁମାଡ଼ି ଅତି ଦୟନୀୟ ଭାବରେ କହୁଛନ୍ତି– ''ତୁମ ପିତାଙ୍କର ଅଭିଶାପ ଫଳରେ ମୋର ସର୍ବାଙ୍ଗ ଜଳି ପୋଡ଼ି ଯାଉଛି। ତୁମରି ଅଶ୍ରୁଧାରରେ ମୋର ଦଗ୍ଧ ଶରୀରକୁ ଶାନ୍ତ କରିଦେବି। ମୁଁ ତୁମ ପାଖରେ ଶତ ଅପରାଧ କରିଛି– ମୋତେ କ୍ଷମା କରିଦିଅ।''

# ଯଯାତି

ମୁଁ... ମୁଁ କିଏ ସେ? ମୁଁ କେଉଁଠି? ସ୍ୱର୍ଗରେ ନା ନରକରେ?

ମୁଁ ମହାରାଜ ଯଯାତି ତ? ନହୁଷ ମହାରାଜଙ୍କ ପୁତ୍ର? ହସ୍ତିନା ରାଜସିଂହାସନର ଅଧୀଶ୍ୱର? ଦେବଯାନୀର...।

ଦେବଯାନୀ? କେଉଁଠିକାର ଦେବଯାନୀ? ନା... ନା... ଦେବଯାନୀ ମୋର କେହି ନୁହେ ...କେହି ନୁହେ!

କେହି ନୁହେଁ କଅଣ? ସେ ନିଶ୍ଚୟ ମୋର...! ହଁ... ପୂର୍ବଜନ୍ମର ଶତ୍ରୁ! ସେ... ହଁ... ସେଇ ମୋତେ ଏ ନରକ ଭିତରକୁ ଠେଲିଦେଇଛି।

କିନ୍ତୁ... କିନ୍ତୁ... କିନ୍ତୁ ମୁଁ କ'ଣ ପ୍ରକୃତରେ ନରକରେ ଅଛି? ନା... ମୁଁ କି ପାଗଳାମି କରୁଛି? ପାଗଳଙ୍କ ପରି କଥାବାର୍ତ୍ତା କରୁଛି? ଏହା ନର୍କ ନୁହେ... ସ୍ୱର୍ଗ। କେତେବର୍ଷ ହେଲା ମୁଁ ଏଠାରେ ସ୍ୱର୍ଗସୁଖ ଅନୁଭବ କରୁଛି।

କେତେବର୍ଷ ହେଲା କି? ମାତ୍ର ଅଠରବର୍ଷ!! ନା... ନା... ଅଠରଶହ ବର୍ଷ ବିତିଗଲାଣି, ମୁଁ ଏହି ସ୍ୱର୍ଗରେ ଅଛି; ଅପ୍‌ସରାମାନଙ୍କର ଅଧରାମୃତ ପାନକରୁଛି। କଳ୍ପବୃକ୍ଷ ଛାଇରେ ମୋର ସୁପାତି ସଜାଯାଇଛି। ଶୃଙ୍ଗାରହାର ଫୁଲରେ ମୋର ଶେଯ ସଜାଯାଇଛି। ମୁଁ ରାତିଦିନ ସେଇ ଶେଯରେ ଶୋଉଛି। ନକ୍ଷତ୍ରମାନଙ୍କୁ ଲଜ୍ଜିତ କଲାପରି ଦେଦୀପ୍ୟମାନ କଟାକ୍ଷରେ ମୁଁ ପ୍ରତି ମୁହୂର୍ତ୍ତ ବିଦ୍ଧହେଉଛି। ଏବେ... ଏବେ ମୁଁ ଇନ୍ଦ୍ରାଣୀଙ୍କୁ ମଧ ବାହୁପାଶରେ ବନ୍ଦୀକରି...। ଇନ୍ଦ୍ରାଣୀ... ଇନ୍ଦ୍ରାଣୀଙ୍କ ପ୍ରତି ଲୋଲୁପଦୃଷ୍ଟି ପକାଇଥିବାରୁ ନହୁଷ ମହାରାଜଙ୍କୁ ଭୟଙ୍କର ଅଭିଶାପ ମିଳିଥିଲା। କିଏ ସେ? କିଏସେ? ମୋ କାନ ପାଖରେ କିଏ କହୁଛି— 'ନହୁଷର ପୁତ୍ର। ମୁଁ ତ ସୁଖୀ ହୋଇପାରିଛି। ମୋ ଭାଇ ଯତି; ସେ ଭୟରେ ଜଙ୍ଗଲକୁ ପଳାଇଯାଇ ଶେଷକୁ ପାଗଳହୋଇଗଲା। କିନ୍ତୁ ମୁଁ ତ ସୁଖର ତରଙ୍ଗରେ ସନ୍ତରଣ କରୁଛି। ମୁଁ ମୋର ସମସ୍ତ ଦୁଃଖକୁ ସମୁଦ୍ରର ଅତଳ ଗର୍ଭରେ ବୁଡ଼ାଇଦେଇପାରିଛି।

ହଁ... ହଁ... ଏକମାତ୍ର ଶର୍ମିଷ୍ଠାର ସ୍ମୃତି ମୋତେ ଦୁଃଖରେ ବିବ୍ରତ କରୁଛି। ଶର୍ମିଷ୍ଠା... ରାଜଦୁଲାଳୀ ଶର୍ମିଷ୍ଠା!! ସେ ଏବେ କେଉଁଠି? ନା... ଶତଚେଷ୍ଟା କଲେ ମଧ ମୁଁ ଏହି ଦୁଃଖକୁ, ଅନ୍ତରର ଏହି ହଳାହଳକୁ କେବେହେଲେ ମୋର ସୁଖ-ସମୁଦ୍ରରେ ବୁଡ଼ାଇ ଦେଇପାରିବିନାହିଁ। ମୃଗୟାର ଚିତ୍ତବିନୋଦକାରୀ ରକ୍ତରେ ତାକୁ ପୋଛିଦେଇହେବନାହିଁ। ଶରୀରର ଆନନ୍ଦଦାୟିନୀ କୌଣସି ମଦିରାକ୍ଷୀ ନିଜର କଟାକ୍ଷ ବାଣରେ ତାକୁ ବିଦ୍ଧ କରିପାରିବନାହିଁ। ଶରୀରର ଆମୋଦକାରୀ କୌଣସି ସୁରଭିତ ଫୁଲଶେଯ ତାକୁ ଦଳି ଚକଟି ନଷ୍ଟଭ୍ରଷ୍ଟ କରିପାରିବ ନାହିଁ। ନା... ଯଯାତି ସୁଖୀ ନୁହେଁ। କେବେହେଲେ କୌଣସି ଅବସ୍ଥାରେ ବି ସୁଖୀ ହୋଇନପାରେ। ସେ ଦୁଃଖୀ... ଚିରଦୁଃଖୀ...

ମୁଁ ଦୁଃଖୀ ? ନା, ମୁଁ ଆଦୌ ସ୍ଥିରକରିପାରୁନି ମୁଁ ସୁଖୀ ନା ଦୁଃଖୀ ? ସୁଖ କ'ଣ ? ଦୁଃଖର ସ୍ୱରୂପ କଅଣ ? ବୋଧହୁଏ ଦୁନିଆରେ ଯା'ଠାରୁ ବଳି ଜଟିଳ ପ୍ରଶ୍ନ ଆଉ କିଛି ହେଲେ ନାହିଁ। ମୁଁ ସେହି ଯଯାତି ନା ଆଉ କେହି ? ମୁଁ କୁଆଡ଼େ ଅଗ୍ରସର ହେଉଛି ? କାହାପାଇଁ ମୋର ଏ ଦଶା ?

ମୁଁ କେଉଁଠି ? ସୂର୍ଯ୍ୟ, ଚନ୍ଦ୍ର ଓ ତାରକାମାନଙ୍କର ସମସ୍ତ ପ୍ରକାଶ ପରି ପ୍ରୀତି, ବାତ୍ସଲ୍ୟ ତଥା ମାନବତାର ପରିପ୍ରକାଶ ସବୁ କିଛି କୁଆଡ଼େ ଅନ୍ତର୍ହିତ ହୋଇଗଲେ ? ସବୁଗୁଡ଼ିକ ଏକସଙ୍ଗରେ କୁଆଡ଼େ ଉଭେଇଗଲେ ? ଏଇ ଭୀଷଣ ଘନାନ୍ଧକାରରେ ମୁଁ କୁଆଡ଼େ ଚାଲିଛି ?

ଅନ୍ଧକାର ? କାହିଁ ? କେଉଁଠି ? ଆରେ... ମୁଁ ପାଗଳ ହୋଇଯାଇନାହିଁ ତ ? ମୋ'ର ଆଖି ଆଗରେ ଏଇ ହଳାହଳର ପିଆଲା ଥୁଆହୋଇଛି; ମାଧବର ମୃତ୍ୟୁ ପରେ, ଏଇ ମୋର ଅନ୍ତରଙ୍ଗ ମିତ୍ର। କେବଳ ଏ... ଇ। ଏ ମୋର ଅଭିନ୍ନ ମିତ୍ର ପରି ଦିନରାତି କେବେହେଲେ ମୋତେ ଛାଡ଼ିପାରୁନାହିଁ। ଏ ମୋର ପ୍ରାଣଠାରୁ ମଧ୍ୟ ଅଧିକ ପ୍ରିୟ। ସେ ମୋର କଳିଜାରେ ପ୍ରବେଶକରି ଶରୀରର ସମସ୍ତ ଗ୍ରନ୍ଥି ଶିଥିଳ କରିଦେଉଛି।

ମୋ'ରି ଆଗରେ ଏଇ ହଳାହଳର ପାନପାତ୍ର ଥୁଆହୋଇଛି। ଏ ମୋତେ ବ୍ରହ୍ମାନନ୍ଦ ସୁଖ ଦାନକରୁଛି; କୃତାର୍ଥ କରୁଛି। କିନ୍ତୁ ଏ ପାତ୍ର... ଏ ଶୂନ୍ୟପାତ୍ର... ଏ ପାତ୍ର ସହିତ ଏ କଅଣ ? ମୁଁ ପ୍ରକୃତରେ ପାଗଳ ନୁହେଁ ତ ? ଏ ଶୂନ୍ୟପାତ୍ରରୁ ଏ କି ଝଙ୍କାର ଝଙ୍କୃତ ହୋଇଉଠୁଛି ? ଏ ପିଆଲା ଭିତରୁ କିଏ ସେ ବାହାରକୁ ବାହାରିଆସୁଛନ୍ତି ? ଏ ତ ଗୋଟିଏ ମାତ୍ର ଆକୃତି ନୁହେଁ। ଏକ...ଦୁଇ...ତି...ନ୍...!

ସତର...ଅ...ଠ...ର...ବିଚିତ୍ର ନଗ୍ନ। ନାଗରୀ; ନା... ନା... ନଗ୍ନା ପିଶାଚିନୀ; ଗୋଟିକ ପରେ ଗୋଟିଏ ବାହାରିଆସୁଛନ୍ତି।

ଉ... ଉଃ... କେଡ଼େ ଭୀଷଣ ଏମାନଙ୍କ ନୃତ୍ୟ। ଏ ଡାହାଣୀଗୁଡ଼ାକ କାହା ଉପରେ ନାଚୁଛନ୍ତି ? ଆରେ... ଏମାନେ ତ କେଡ଼େ କୋମଳ, କେଡ଼େ ସୁନ୍ଦରୀ ଯୁବତୀମାନଙ୍କ ଶବ ଉପରେ ନାଚୁଛନ୍ତି। ପ୍ରଣୟର ପ୍ରଥମ ଆଘାତ ପାଇ ଅନୂଢ଼ା ବାଳିକାର ମୁଣ୍ଡ ଘୂରାଇଦେଉଛି। ସେ... ଅନ୍ୟଟି... ପ୍ରୀତିର ପ୍ରଥମ ଚରଣଚିହ୍ନରେ ପାଦ ଦେବାକ୍ଷଣି କ'ଣ ଲାଜକୁଳୀ ଲତା ପରି ଝାଉଁଳିପଡୁଛି ? ତେଣେ... ସେ ପ୍ରୀତିର ପବିତ୍ର ସ୍ପର୍ଶରେ ପୁଲକିତା ପରକୀୟା ରମଣୀ; ସେ ପାଖରେ ଘରସଂସାରରୂପକ ସ୍ୱପ୍ନିଳ ମନ୍ଦିର ଉଦ୍ଦେଶ୍ୟରେ ହାତରେ ଅର୍ଘ୍ୟଥାଳୀ ଧରି ଯାଉଥିବା ମୁଗ୍ଧା ବଧୂ। ଏଇ ସକଳ ସୁନ୍ଦରୀଙ୍କ ନିର୍ଜୀବ ଶରୀର ଉପରେ ଏ ଡାହାଣୀଗୁଡ଼ାକ କେଡ଼େ ମୋଦମଗ୍ନ ଚିତ୍ତରେ ନାଚିଚାଲିଛନ୍ତି !

ଆରେ... ପୁଣି ଏ କ'ଣ ? ନାଚୁ ନାଚୁ ଗାଇଲାଗିଲେଣି ? ସେମାନଙ୍କ ସ୍ୱର ଆହତ ନାଗୁଣୀର ଫଁ-ଫଁ ଗର୍ଜନଠାରୁ ଆହୁରି ଭୀଷଣ ହୋଇଉଠୁଛି।

ହେ ଭଗବାନ୍... ପୁଣି... ଆହୁରି... ଏ କଅଣ ? ଏମାନଙ୍କର ପ୍ରତ୍ୟେକ ସ୍ୱର-ଲହରୀରେ ଆକାଶର ଅକ୍ଷୟ ଦୀପମାଳିକା ଗୋଟିକପରେ ଗୋଟିଏ ଲିଭିଯାଉଛନ୍ତି। ଉଃ... ଚାହୁଁ ଚାହୁଁ ସାରା ଆକାଶଟା କାଳିମାରେ ପୂର୍ଣ୍ଣ ହୋଇଗଲା। ଅନନ୍ତ

ଗଗନର ସମସ୍ତ ଚନ୍ଦ୍ରଉଦିଆ ଏ ପିଶାଚିନୀଙ୍କର ଗୀତରେ ଲିଭିଗଲେ। ଏ ଡାହାଣୀଗୁଡ଼ାକ କେଉଁ ଯୁଗର ପ୍ରଳୟ-ସଙ୍ଗୀତ ଗାନକରୁଛନ୍ତି କେଜାଣି ?

ଏ ଗୀତ ନୁହେଁ। ନା . . ., ଅନ୍ଧକାରର ସାନ୍ଦ୍ର ସ୍ରୋତ ନିଶ୍ଚୟ। ତା'ରି ମାଧ୍ୟମରେ ଡାହାଣୀମାନେ ଘନଘୋର ଅନ୍ଧକାରକୁ ଆବାହନ କରୁଛନ୍ତି; ଯେଉଁ ମୂର୍ଚ୍ଛନାରେ ମଣିଷ ନିଜକୁ ସୁଦ୍ଧା ଚିହ୍ନିବାରେ ଭୁଲ କରୁଛି। ଯେଉଁ କାଳିମାମୟ ଜନପଥରେ ପାଦଦେବାକ୍ଷଣି ଆଲୋକ ମଧ୍ୟ ଘନ ତମିସ୍ରାରେ ପରିଣତ ହୋଇଉଠୁଛି। ସମସ୍ତ ଆଲୋକମୟ ସୀମାନ୍ତରେଖା ଲିଭି ଲିଭି ଯାଉଛି।

ଉତ୍ତାଳ ତରଙ୍ଗାୟିତ ସଙ୍ଗୀତର ଝଙ୍କାରରେ ଆଗେଇ ଆସି ବିକଟ ଅଟ୍ଟହାସ୍ୟ କରି ଏ ଡାହାଣୀଗୁଡ଼ାକ ମୋତେ ପଚାରୁଛନ୍ତି– "ଚିହ୍ନିପାରୁଛ ଆମକୁ? ନିର୍ବୋଧ !. . . ନିପଟ ନିର୍ଲଜ୍ଜ! ଏପର୍ଯ୍ୟନ୍ତ ଚିହ୍ନିପାରିଲୁନି ଆମକୁ? ଆମେମାନେ ହିଁ ଜୀବନକୁ ପାଣିଛଡ଼ାଇ ତୋ' ମନରେ ଆନନ୍ଦ ସଞ୍ଚାର ଲାଗି ପ୍ରୟାସ କରିଛୁ। ଆମରି ଅଙ୍ଗସଙ୍ଗ ଲାଭକରି ପ୍ରାଣଭରି ସୁଖ ଲୁଟିବା ପରେ ମଧ୍ୟ ତୁ ଆମକୁ ଚିହ୍ନିପାରୁନାହୁଁ?

ଏ ଡେଙ୍ଗୀ ଡାହାଣୀଟା କ'ଣ ମୋର ଖୁବ୍ ନିକଟକୁ ମାଡ଼ିଆସିଲାଣି? ଓଃ . . . ଏଇଟା କେଡ଼େ ଭୟଙ୍କର ଅଟ୍ଟହାସ କରୁଛି? ଏହାର ବିକୃତ ଚେହେରା ଠିକ୍ ନରମାଂସଭକ୍ଷୀ ଖର୍ପରଧାରୀ କାପାଳିକ ପରି ଦେଖାଯାଉଛି। ଆରେ . . . ସେ କ'ଣ ନିଆଁହୁଳା ସହିତ ଖେଳୁଛି! ମୁଁ ଆଉ ତାକୁ ଚାହିଁପାରିଲି ନାହିଁ; ଆଖି ବୁଜିଦେଲି। ସେ ମୋ ବେକରେ ନିଜର କମ୍ପିତ ହାତଟା ଦେଇ କହୁଛି– "ଚାଲ, ମୋ ସହିତ ଖେଳିବାକୁ ଚାଲ। ଆମେ ଜୁଆଖେଳିବା। ଏ ଖେଳରେ ଯଦି ମୁଁ ହାରିଯିବି ତା'ହେଲେ ମୋତେ ପ୍ରତ୍ୟେକ ରାତ୍ରିରେ ସଦ୍ୟ ପ୍ରସ୍ଫୁଟିତ କଳିକା ପରି ଗୋଟିଏ ଗୋଟିଏ ସୁନ୍ଦରୀ ଯୁବତୀ ଆଣି ଯୋଗାଇଦେବୁ; କିନ୍ତୁ ତୁ ହାରିଗଲେ . . . ହଁ, ଦେଖ; ମୋ ସହିତ ଏଇ ଅନ୍ଧକାର ସାଗର ମଧ୍ୟକୁ ତୋତେ ଯିବାକୁ ହେବ। ସେଇଠି ଆମେ ବିରାଟ ତିମିମାଛର ପେଟରେ ଲୁଚି ବସିପଡ଼ିବା; ସ୍ୱୟଂ ପରମେଶ୍ୱର ମଧ୍ୟ ଆମ ପତ୍ତା ପାଇବେନାହିଁ। ସେଇ ସୁନ୍ଦର ଏକାନ୍ତ ସ୍ଥଳରେ ଆମେ ଅହରହ ମନ ଖୁସିରେ ପ୍ରଣୟଲୀଳା କରିବା। ମୁଁ ତୋର ପାଟରାଣୀ ବନିଯିବି। ତୁମେ . . ." କହୁ କହୁ ସେ ହଠାତ୍ ନୀରବ ହୋଇଗଲା। ମୁଁ ତରିତରି ଆଖି ଖୋଲିଦେଲି। ବେକରେ ଥିବା ହାତଟିକୁ ଉଠାଇନେଇ ସେ ମୁଠା କରି ମୋ ଆଡ଼କୁ ଦେଖାଇଲା। ସେ ମୁଠା ମଧ୍ୟରେ କେତେଗୁଡ଼ିଏ କଉଡ଼ି ଥିବାର ଦେଖାଗଲା।

କଉଡ଼ି ? ନା . . . ନା . . . କଉଡ଼ି କାହିଁକି ହେବ, ସେଗୁଡ଼ିକ ଆଖି . . .। ଏଁ . . .ଏଁ . . . ମାଧବୀର ଆଖି . . . ତାରକାର ଆଖି! ଏଗୁଡ଼ିକ କଉଡ଼ି ନୁହେଁ; ଏ ଯୁବତୀମାନଙ୍କର ଆଖି। ଏଇ ଆଖିକୋଣରେ ମୁଁ ଶହଶହ ଚୁମ୍ବନ ଦେଇଛି। କୋମଳ ପଲକରୂପକ ଆହୁଲା ଧରି ପ୍ରୀତିର ସନ୍ଧାନରେ ଚାଲିଥିବା ଏଗୁଡ଼ିକ ଛୋଟ ଛୋଟ ନୌକା। ଏଇ ନୌକାରେ ବସି ମୁଁ କେତେଥର ସ୍ୱର୍ଗର ପାଖଦେଇ ଘୂରିଆସିଛି।

ସେ ଡାହାଣୀଟା ହସି ହସି ପଚାରୁଛି; ଚାଲ ଚାଲ, ଏଇ କଉଡ଼ିରେ ଜୁଆ ଖେଳିବା ଚାଲ।' ତା' କଥା ଶୁଣି ତାଳୁରୁ ତଳିପାଯାଏ ମୁଁ ଥରିଉଠିଲି। ମୋର ସମସ୍ତ ଶକ୍ତି ଲଗାଇ ସେ ଡାହାଣୀକୁ ଦୂରକୁ ଠେଲିଦେଇ ରକ୍ଷାପାଇଲି।

ଆରେ... କାହିଁ କିଏସେ? କେହି ତ କୁଆଡ଼େ ନାହାନ୍ତି? ଏସବୁ କ'ଣ ସ୍ୱପ୍ନିଳ ବାସ୍ତବ? ନା... ନା...ମୋ ମନର କାଳ୍ପନିକ ଆଭାସ। ଏଭଳି ଆଭାସ କାହିଁ ମୋ ଜୀବନରେ ଆଉ କେବେ ତ ହୋଇନଥିଲା? ପ୍ରକୃତରେ ଏହା କ'ଣ ଏକ ଧୂମିଳ ଆଭାସ ନା ସତ୍ୟ?

ମୋ ଆଖି ଆଗରେ ଶୂନ୍ୟ ପାନପାତ୍ର ପଡ଼ିରହିଛି। ହଁ... ହଁ... ରିକ୍ତ ପିଆଲା, ଶୂନ୍ୟ ମନ, ଶୂନ୍ୟ ହୃଦୟ! ଏହି ଶୂନ୍ୟତା ମୋତେ ବରାବର ଜାଳିପୋଡ଼ି ମାରୁଛି। ମୋ ମନ ଏଇ ରିକ୍ତତାର ଗୋଲକଧନ୍ଦା ଓ ଦାବାନଳରେ ପଡ଼ି ବିଚରା ପକ୍ଷୀ ଛଟପଟ ହେଲାପରି ଅସ୍ତବ୍ୟସ୍ତ ହେଉଛି। କାହିଁ କେଉଁଠାରେ ଟିକିଏ ହେଲେ ଆଶ୍ରୟ ମିଳୁନାହିଁ। ଶେଷକୁ ମୁଁ ହାରିଯାଇ ସୁରାର ସାଗରରେ ନିମଗ୍ନ ହୋଇଛି। ସେ ସାଗରର ପ୍ରତ୍ୟେକ ତରଙ୍ଗକୁ ମୁଁ କହୁଛି– 'ମୋତେ ଆହୁରି ଗଭୀରକୁ ନେଇଚାଲ। ଏକାବେଳକେ ବିସ୍ମୃତିର ଗଭୀରତମ ପ୍ରଦେଶକୁ ମୋତେ ନେଇ ପହଞ୍ଚାଇଦିଅ। ମୁଁ ସେଇଠି ଅନନ୍ତକାଳଯାଏ ଚିର୍ ସୁଷୁପ୍ତିରେ ରହିବାକୁ ଚାହେଁ।'

ସେଦିନ ମୁଁ ଗାଢ଼ନିଦ୍ରାରେ ଶୋଇଥିଲି। କିନ୍ତୁ ହଠାତ୍ ମୋ ନିଦ ଭାଜିଗଲା। ଦୂର... ଖୁବ୍ ଦୂରରେ କେଉଁଠି ପ୍ରଭାତୀର କଳକୂଜନ ମୋତେ କ୍ଷୀଣସ୍ୱରରେ ଶୁଣାଗଲା। ମୁଁ ସ୍ପଷ୍ଟଭାବରେ ଶୁଣିବାକୁ ଚେଷ୍ଟା କଲି, କିନ୍ତୁ ତା'ପରେ ଆଉ କିଛି ଶୁଣାଗଲାନାହିଁ। କିଛି ବୁଝିପାରିଲିନାହିଁ କିମ୍ବା କିଛି ଦେଖିପାରିଲିନାହିଁ। ଅନେକ ସମୟ ପରେ ମୋତେ ଶୁଣାଗଲା– "ବେଳ ହୋଇଗଲା ମହାରାଜ!"

"କ'ଣ ହୋଇଗଲା?"

"ସନ୍ଧ୍ୟା ହୋଇଗଲା?"

କିଏ କହୁଛି? କ'ଣ ଦେବଦୂତ କି? କ'ଣ ସେ କହୁଛି? ସନ୍ଧ୍ୟା ସମୟ ହୋଇଗଲା! ମୋ ଜୀବନର ସନ୍ଧ୍ୟା ଏତେ ଶୀଘ୍ର ଆସିଗଲା? ଏହା କିପରି ସମ୍ଭବ? ଏ ଦେବଦୂତ ବାଟବଣା ହୋଇଯାଇଛି ନିଶ୍ଚୟ। –"ଆରେ ପାଗଳ! ଏ ହସ୍ତିନାପୁରର ଅଶୋକବନ। ମୁଁ ସମ୍ରାଟ୍ ଯଯାତି। କେଉଁ ବୃଦ୍ଧ, ରୁଗ୍ଣ ରାଜାଙ୍କ ଉଦ୍ଦେଶ୍ୟରେ ତୁମେ ସନ୍ଦେଶ ଘେନି ଆସିଛ? ଯାଅ, ଫେରିଯାଅ। ମୋ ଜୀବନର ସନ୍ଧ୍ୟା ଏତେ ଶୀଘ୍ର କିପରି ଆସିପାରିବ? ମୋର ଯୌବନ ଏବେ ସୁଦ୍ଧା ଅତୃପ୍ତ। ମୋର ଆଖି, କାନ, ଓଠ, ହାତ... ଶରୀରର ପ୍ରତ୍ୟେକ କଣିକା ଆଜି ସୁଖ ଆନନ୍ଦ ଲାଗି ବ୍ୟାକୁଳ। ସେମାନେ ଅଧୀର ହୋଇ ପ୍ରତ୍ୟେକ ରାତ୍ରିର ଆଗମନ ଲାଗି ଚାହିଁବସିଛନ୍ତି। ଯାଅ ଦେବଦୂତ, ତୁମେ ଫେରିଯାଅ। ଠିକ୍‌ଭାବରେ ମନେପକାଅ; ତୁମେ ଶେଷ ସମ୍ବାଦ ଜଣାଇବାକୁ ଆସିଛ– ବୃଦ୍ଧ, ଶିଥିଳ ଅଙ୍ଗ, ରୁଗ୍ଣ, ଜରାଗ୍ରସ୍ତ କୌଣସି ରାଜାଙ୍କ ପାଖକୁ। ତୁମର ସମ୍ବାଦ ତାଙ୍କୁ ଯାଇ ଶୁଣାଇଦିଅ। ଯା... ଅ...।"

"ସନ୍ଧ୍ୟା ହୋଇଗଲା, ପ୍ରସାଧନ ଲାଗି ସମୟ ହୋଇଗଲା ମହାରାଜ!"

ମୁଁ ନିଜର ମୂର୍ଖତା ଲାଗି ନିଜ ଉପରେ ହସିଦେଲି। ଆରେ... ଏ ତ ମୁକୁଳିକା; ଏହାକୁ ଦେବଦୂତ ବୋଲି ଭାବି ମୁଁ ଡରିଯାଇଥିଲି।

"ଆଜି କେଡ଼େ ଲୋଭନୀୟ ସନ୍ଧ୍ୟା। ପ୍ରସାଧନର ଆୟୋଜନ କରିବି ତ ମହାରାଜ?"

ମୁଁ ହସି ହସି ପଚାରିଲି– ''କ'ଣ ଫୁଲ ମିଳିଲା ?''

''ଆଜ୍ଞା ମହାରାଜ !''

''ତଟକା . . .?''

''ଆଜ୍ଞା, ଏକାବେଳକେ ସଜଫୁଟା। ଦେବତାଙ୍କ ଉପରେ କ'ଣ ବାସିଫୁଲ ଅର୍ପଣ କରାଯାଏ ? ଏ ତ ସଦ୍ୟ ପ୍ରସ୍ଫୁଟିତ କଳିକା ମହାରାଜ !''

ସେ କଳିକାର ସୁଗନ୍ଧିତ ପ୍ରବାହରେ ମୋର ମନ ଚେତନା-ଜଗତରୁ ଅଚେତନ-ଜଗତ୍ ପର୍ଯ୍ୟନ୍ତ ମୁହୂର୍ତ୍ତକ ମଧ୍ୟରେ ଧାଇଁଯାଇ ଫେରିଆସିଲା। ମୁଁ ମୁକୁଳିକାକୁ କହିଲି– ''ପିଆଲାରେ ସୁରା ପୂର୍ଣ୍ଣକରି ରଖ ଏବଂ ପ୍ରସାଧନ ଲାଗି ଆୟୋଜନକର।'' ମୁଁ ଝରକା ପାଖକୁ ଉଠିଗଲି। ବାସ୍ତବିକ, ସେଦିନର ସନ୍ଧ୍ୟା ଥିଲା ଅତ୍ୟନ୍ତ ମନୋମୁଗ୍ଧକର।

ଭାବିଲି, ସମଗ୍ର କବିସମାଜ ସଙ୍କେତର ଦାସ। ଏଭଳି ଏକ ମାଦକଭରା ସନ୍ଧ୍ୟାରେ ସେମାନଙ୍କ କଳ୍ପନାରେ ଡେଣାଲାଗିଯାଇଥିବ। ପ୍ରତୀଚୀ ଗଗନର ଗଭୀର ଗୋଲାପୀ ଛାୟା ସନ୍ଧ୍ୟାର ଆସ୍ତରଣ ହୋଇଉଠିଛି। ନା . . . ସୂର୍ଯ୍ୟ ସୁରାର ପିଆଲା ନିଜ ଓଠରେ ଲଗାଇସାରି ପୁଣି ସେଇଟିକୁ ସନ୍ଧ୍ୟାର ଓଠ ଆଡ଼କୁ ବଢ଼ାଇଦେଉଛନ୍ତି; ସେ ଲାଜରେ ଝାଉଁଳିପଡ଼ି 'ହଁ . . . ନା . . .' କହି ହାତ ବଢ଼ାଇଦେଲା; କିନ୍ତୁ ସେ ଧରିବା ପୂର୍ବରୁ ସୂର୍ଯ୍ୟ ହାତ ଛାଡ଼ିଦେଲେ। ତେଣୁ ପିଆଲାଟି ତଳେ ପଡ଼ିଯାଇ ସୁରାତକ ଚାରିଆଡ଼େ ବିଛାଡ଼ିହୋଇଗଲା। ନିଶ୍ଚୟ ଏ ତାହାରି ପ୍ରତିକ୍ରିୟା।

ଗାଢ଼ ଲାଲରଙ୍ଗରେ ରଞ୍ଜିତ ସନ୍ଧ୍ୟା; ମୃଗୟାବିନୋଦର ସାକ୍ଷାତ୍ ବ୍ୟକ୍ତ ରୂପ। କାଳୀ ଶବରୁଣୀର ହାତରୁ ଖସିଯାଇଥିବା ଦିବସରୂପକ ଶିକାର ପୁଣି ତ' ହାତପାହାନ୍ତାକୁ ଆସିଯାଇଛି; ଶବରୁଣୀର ତୀକ୍ଷ୍ଣ ଶରାଘାତ ଦିବସର ମର୍ମସ୍ଥଳ ଭେଦକରିଛି; ତା'ରି ଛାତିରୁ ରକ୍ତଧାର ବହି ସମଗ୍ର ପଶ୍ଚିମ ଗଗନକୁ ଅରୁଣାୟିତ କରିଦେଇଛି।

ଧୀରେ ଧୀରେ ରଞ୍ଜିତ ସନ୍ଧ୍ୟାର ରଙ୍ଗ ପରିବର୍ତ୍ତିତ ହେବାକୁ ଲାଗିଲା; ଲାଲ, ଗୋଲାପୀ, କେଶର, ନାରଙ୍ଗୀ ରଙ୍ଗ ଘଡ଼ିକ ମଧ୍ୟରେ ଗୋଟିକ ପରେ ଗୋଟିଏ ବଦଳିବାକୁ ଲାଗିଲା। ପ୍ରତ୍ୟେକ ଗୋଟିଏ ଗୋଟିଏ ଶାଢ଼ୀର ରଙ୍ଗ। ବୋଧହୁଏ, ସ୍ୱର୍ଗଦ୍ୱାରରେ ପ୍ରିୟତମଙ୍କ ପ୍ରତୀକ୍ଷାରେ ବେଶଭୂଷଣରେ ସଜ୍ଜିତା ସ୍ୱର୍ଗ-ସୁନ୍ଦରୀ କେଉଁ ଶାଢ଼ୀଟି ପିନ୍ଧିବ ବୋଲି ମନେମନେ ସ୍ଥିର କରିପାରୁନାହିଁ। ସେ ଭାବୁଛି, ବୋଧହୁଏ ଏ ଶାଢ଼ୀଟିକୁ ମୋ ପ୍ରିୟତମ ପସନ୍ଦ କରିବେ ନାହିଁ, ତେଣୁ ସେ ଆଉ ଗୋଟିଏ ଶାଢ଼ୀ ବଦଳାଇ ପିନ୍ଧୁଛି। କିନ୍ତୁ ସେ ଶାଢ଼ୀ ପିନ୍ଧିସାରିବା ପରେ ପୁଣି ଭାବୁଛି; ନା . . . ଏଇଟା ପସନ୍ଦ ହେବନାହିଁ, ଏମିତି ଗୋଟିକ ପରେ ଗୋଟିଏ ରଙ୍ଗବିରଙ୍ଗୀ ଶାଢ଼ୀ ପାଲଟିଦେଇ ତଳେ ଗଦାକରିଦେଇଛି। କୌଣସି ଗୋଟିଏ ହେଲେ ଶାଢ଼ୀ ତା' ମନକୁ ଆସୁନାହିଁ; ତେଣୁ ପଶ୍ଚିମଗଗନରେ ଅସଂଖ୍ୟ ରଙ୍ଗବିରଙ୍ଗୀ ଶାଢ଼ୀ ବିଛାଡ଼ିହୋଇପଡ଼ିଛି।

ତା'ପରେ ଭାବିଲି, ଆକାଶର ଏ ଇନ୍ଦ୍ରଧନୁର ରଙ୍ଗ ମୋ ମନକୁ ଯେପରି ଭାବରେ ଲୋଭାଇଲାଣି, ହୁଏତ ସେଥିରେ ମୋର କୁଦୃଷ୍ଟି ପଡ଼ିଯିବ; ତେଣୁ ମୁଁ ଜାଣିଶୁଣି ଆଖି ବୁଜି ଅନ୍ତର୍ମନରେ ତା'ର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଲାଗିଲି।

× × × ×

ଦୁନିଆରେ କେବଳ ତିନୋଟି ଜିନିଷ ମଣିଷର ମନକୁ ପ୍ରଫୁଲ୍ଲ କରିପାରେ; ତା' ହେଉଛି – ମୃଗୟା, ମଦିରା ଓ ମଦିରାକ୍ଷୀ। ଏହି ତିନୋଟି ସତ୍ୟର ସାନ୍ନିଧରେ ମଣିଷ ଅନିର୍ବଚନୀୟ ଜଗତରେ ବିଚରଣକରି ସମସ୍ତ ଦୁଃଖ ପାସୋରିଦିଏ।

ଦୁନିଆରେ ଅନ୍ୟଦ୍ୱାରା ଶରବ୍ୟ ନହେବାଲାଗି ମଣିଷ ଶିକାରକୁ ଭଲପାଏ। ଜୀବନର ଏହି କଠୋର ସତ୍ୟକୁ ପ୍ରତ୍ୟକ୍ଷ କରିବାରେ ମୃଗୟା ହେଉଛି ମଣିଷର ଶ୍ରେଷ୍ଠ ଗୁରୁ। ଏହା ନିର୍ମମ ସତ୍ୟ; କିନ୍ତୁ ଆପାତତଃ କ୍ରୂର ବୋଲି ଜଣାପଡ଼େ। ଜୀବନର ମହାକାବ୍ୟରେ ଏହା ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଶ୍ଳୋକ। 'ପବିତ୍ର', 'ସୁନ୍ଦର' ଆଦି ଶ୍ରୁତିସୁଖକର ଶବ୍ଦ ନିରୀହ, ଦୁର୍ବଳ ତଥା ନିର୍ବୋଧ ସରଳ ଲୋକମାନେ ପ୍ରସ୍ତୁତ କରିଛନ୍ତି। 'ପବିତ୍ର' ଯଜ୍ଞବେଦୀରେ ନିରୀହ ପଶୁବଳିର ଆବଶ୍ୟକତା ପଡ଼େ; ସରଳ ବନ୍ୟପଶୁ ହରିଣୀ ବିନା ପବିତ୍ର ଶ୍ରାଦ୍ଧରେ ଅତିଥିଚର୍ଚ୍ଚା କରାଯାଇପାରେନା। ମଦ୍ୟପାନ ଫଳରେ ମଣିଷର ଡେଣା ବାହାରିପଡ଼େ। ସେହି ଡେଣାର ଫଡ଼ଫଡ଼୍ ଶବ୍ଦରେ ପାଦର ଶୃଙ୍ଖଳ ହଠାତ୍ ଫିଟିଯାଏ। ମଦିରାର ମନମୋହିନୀ ଶକ୍ତି ତଥା ଉତ୍ତେଜନାପୂର୍ଣ୍ଣ ମାଦକତାରେ ମଣିଷର ନୀତି, ନିୟମ, ପାପ, ପୁଣ୍ୟ ଆଦି ସବୁକିଛି କଳ୍ପନାରେ ମିଳାଇଯାଏ। ସୁନ୍ଦରୀ ସ୍ତ୍ରୀ କ୍ଷଣିକ ତୃପ୍ତିଲାଗି ଗୋଟିଏ ଲୋଭାଣିଆ କଣ୍ଢେଇ ବ୍ୟତୀତ ଅନ୍ୟ କିଛି ନୁହେଁ। କମନୀୟ ରମଣୀର ସାହଚର୍ଯ୍ୟ ସହିତ ମଦିରା ଓ ମୃଗୟା ବିଚିତ୍ର ସଙ୍ଗମ ସୃଷ୍ଟି କରେ।

ମୁଁ ପୁଣି ଆଖି ଖୋଲି ଆକାଶକୁ ଚାହିଁ ଦେଖିଲି; ସନ୍ଧ୍ୟାର ସେ ଅପରୂପ ବିଭବ କୁଆଡ଼େ ଉଭେଇଗଲାଣି। ଚାରିଆଡ଼େ ଅନ୍ଧକାରର ସମ୍ରାଜ୍ୟ ବ୍ୟାପିଗଲାଣି। ସେହି ସୂଚୀଭେଦ୍ୟ ଅନ୍ଧକାର ଆଡ଼କୁ ମୁଁ ନିରୀକ୍ଷଣ କରି ଚାହିଁଲି; ମୋତେ ଜଣାଗଲା, ସେହି କୁହେଳିକାମୟ ଗର୍ଭମଧ୍ୟରୁ ବାହାରି ଗୋଟିଏ ବିଶାଳକାୟ କଚ୍ଛପ ହରିଣ ପରି କ୍ଷିପ୍ରଗତିରେ ମୋତେ ଆକ୍ରମଣ କରିବାକୁ ଧାଇଁଆସୁଛି। ନା... ନା; ସେ କଚ୍ଛପ ନୁହେଁ, ସେ ଥିଲା କାଳପୁରୁଷ! ସର୍ବଗ୍ରାସୀ ମହାକାଳ!!! ସେ ସନ୍ଧ୍ୟାର ଅପରୂପ ଶୋଭାସମ୍ପଦକୁ ଗ୍ରାସ କରିଦେଇଛି।

ମୁଁ ଖିଡ଼ିକି ପାଖରେ ଛିଡ଼ା ହୋଇ ପାରିଲି ନାହିଁ କିମ୍ବା ବାହାରକୁ ଚାହିଁପାରିଲି ନାହିଁ। ମୁଁ ମହଲକୁ ଫେରିଆସି ପଲଙ୍କ ଉପରେ ଶୋଇପଡ଼ିଲି। ମୋର ପ୍ରସାଧନ ଲାଗି ମୁକୁଳିକା ସମସ୍ତ ସାମଗ୍ରୀ ସଜାଇ ରଖି, ମୋର ଚାରିପଟେ ପ୍ରଜାପତି ପରି ଘୂରିବୁଲୁଥିଲା; ମୁଁ ନୀରବରେ ଶୋଇରହି ତା'ର ଗତିବିଧି ନିରୀକ୍ଷଣ କରୁଥିଲି। ସେ ଭାବୁଥିଲା, ମୁଁ ତା' ସହିତ ଥଟ୍ଟା କରିବି; ତେଣୁ ସେ ନିଜକୁ ସଜେଇ ମୋ ଆଗରେ ଫୁଲେଇ ହୋଇ ଚାଲବୁଲ କରୁଥିଲା। କିନ୍ତୁ ମୁଁ ନିର୍ବିକାର ଭାବରେ ପଲଙ୍କରେ ପଡ଼ି ଭାବୁଥିଲି, ଦିନେ ଏଇ ମୁକୁଳିକା ମୋତେ ଶିଖାଇଥିଲା ସ୍ତ୍ରୀ-ପୁରୁଷଙ୍କ ମିଳନ ରହସ୍ୟ। ଯା' ମଧ୍ୟରେ କୋଡ଼ିଏ ବର୍ଷ ଅତିବାହିତ ହୋଇ, ମୁକୁଳିକାର ସେଦିନର ସୌନ୍ଦର୍ଯ୍ୟ ମଉଳିଗଲାଣି। ତା'ର ପୂର୍ଣ୍ଣ ଯୌବନ ହତଶ୍ରୀ ହୋଇଯାଇଛି।

ପୁଣି ଗଭୀର ଭାବରେ ଚିନ୍ତାକଲି; ଯାହାର ସ୍ପର୍ଶମାତ୍ରେ ମୋ ମନ ଆନନ୍ଦରେ

ପୁଲକି ଉଠୁଥିଲା, ଏ ସେଇ ମୁକୁଳିକା; ଯା'ର ସୌନ୍ଦର୍ଯ୍ୟ ଗଲା କୁଆଡ଼େ? ଆଜି ଏ ପ୍ରୌଢ଼ା, କାଲି ବୃଦ୍ଧାହୋଇଯିବ। ମୁଁ ମଧ୍ୟ ଯା'ରି ପରି ବୃଦ୍ଧ, ଶିଥିଳ ଓ ଶ୍ରୀହୀନ ହୋଇଯିବି।

ନା... ନା... ଗତ କାଲି ଓ ଆସନ୍ତା କାଲି ସହିତ ମଣିଷର ସମ୍ପର୍କ କ'ଣ? ସେ କେବଳ ଆଜିକୁ ନେଇ ବଞ୍ଚିରହେ। ବିଗତ ଅଠରବର୍ଷଧରି ମୁଁ କେବଳ ବର୍ତ୍ତମାନକୁ ନେଇ ବଞ୍ଚିଆସୁଛି। ବିଜୁଳିଠାରୁ ଆହୁରି ତୀବ୍ରବେଗରେ ଘୂରିବୁଲୁଥିବା ସମୟର ଚକ୍ରକୁ ମୁଁ ମଦିରାର ପିଆଲାରେ ବୁଡ଼ାଇ ସ୍ଥିରକରିପାରିଛି। ମଦିରାକ୍ଷୀର ଲୋଳ ଅପାଙ୍ଗ, ତା'ର ସୁକୋମଳ ଭୁଜବଲ୍ଲରୀରେ ବାନ୍ଧି ଛନ୍ଦି ମୁଁ ସମୟର ଗତିକୁ ଅଚଳ କରିଦେଇଛି।

ନା, ମୁଁ ଆଉ ଆଗପଛ କିଛି ବିଚାର କରିବି ନାହିଁ। ଏ ଦରବୁଢ଼ୀ ମୁକୁଳିକା ଆଡ଼କୁ ଚାହିଁଲେ, ମନକୁ କାଳପୁରୁଷର ସର୍ବଗ୍ରାସୀ ସ୍ୱରୂପ ବ୍ୟତିବ୍ୟସ୍ତ କରିପକାଉଛି। କାଳପୁରୁଷ ଧୀରେଧୀରେ ଚୁପ୍‌ଚୁପ୍ ଆସି ମଣିଷ ଉପରକୁ ତା'ର ଜାଲ ଫିଙ୍ଗି ତାକୁ ନିଜ ଆଡ଼କୁ ଓଟାରିନେଉଛି। ଏ ମୁକୁଳିକାଟାକୁ ଏଠାରୁ ଦୂରେଇ ଦେଇ, ମୋ ପ୍ରସାଧନ ଲାଗି କୌଣସି ସୁନ୍ଦରୀ ତରୁଣୀକୁ...।

କ'ଣ? ମୁକୁଳିକାକୁ ବାହାରକରିଦେବି? ତାକୁ କ'ଣ ଏଡ଼େ ସହଜରେ ବାହାର କରାଯାଇ ପାରିବ? ନା... ନା, ମୋର ସୁଖ ଓ ସୁବିଧା ଲାଗି ତା'ର ଅସ୍ତିତ୍ୱକୁ ବିଧାତା ଆଣି ଖଞ୍ଜିଦେଇଛନ୍ତି।

ଅଠରବର୍ଷ ତଳର ସେଇ ଭୀଷଣ ରାତ୍ରି! ଦେବଯାନୀ ମୋତେ ଅଭିଶାପର ଭୟ ଦେଖାଇ ଶପଥ କରାଇନେଲା – 'ଆଜିଠାରୁ ଆଉ ତୁମ ଦେହ ସ୍ପର୍ଶ କରିବି ନାହିଁ।' ମୋ ମନର ଅତୃପ୍ତ ବାସନା, ହୃଦୟରେ ଅପମାନର ତୀବ୍ର ଆଘାତ ସହ୍ୟକରି ମୁଁ ତା ମହଲରୁ ଫେରିଆସିଲି। ପ୍ରଚଣ୍ଡ ପ୍ରତିକ୍ରିୟାରେ ମୋର ଶରୀର ଜଳିପୋଡ଼ିଯାଉଥିଲା। ମୋ ମନରେ କେତେ ପ୍ରକାର ଅଶୁଭ କାମନା ଉଙ୍କିମାରୁଥିଲା – ଆତ୍ମହତ୍ୟା ! ସନ୍ନ୍ୟାସ !! ପ୍ରତିଶୋଧ !!!

ଶେଷକୁ ମୁଁ ମୁକୁଳିକାର ଗୁରୁମହାରାଜଙ୍କ ମଠକୁ ଚାଲିଆସିଲି। ତାଙ୍କୁ ଦେଖିବା ମାତ୍ରେ ମୋର ସ୍ପଷ୍ଟ ମନେପଡ଼ିଲା, ମୁଁ ଏହାଙ୍କୁ କେଉଁଠି ଦେଖିଛି! କିନ୍ତୁ ସେତେବେଳେ ମୋର କିଛି ମନେପଡ଼ିଲାନାହିଁ। କିଛିଦିନ ପରେ ଆପେ ଆପେ ଗୁରୁଦେବଙ୍କର ରହସ୍ୟ ଖୋଲିଗଲା। ସେ ଥିଲା ଅମାତ୍ୟଙ୍କ ବିଶ୍ୱସ୍ତ ସେବକ ମନ୍ଦାର। ତାହାରିଲାଗି ବିଚାରୀ ଅଳକା ସଂସାରରୁ ଲୋପପାଇଗଲା। ସେ ଏଣୁତେଣୁ ଗୁଡ଼ାଏ ମାଆଙ୍କୁ କହି ଅଳକାର ହତ୍ୟା କରାଇଲା। ତାକୁ ଚିହ୍ନିବାମାତ୍ରେ ଅଳକାର ପ୍ରତିଶୋଧ ନେବା ମୋ ପକ୍ଷରେ ଉଚିତହୋଇଥା'ନ୍ତା; କିନ୍ତୁ ତାହା କରିପାରିଲି କି? ବରଂ ତାହାରି ଇଶାରାରେ କାଠପୁତୁଳି ସାଜି ନାଚିବାରେ ଲାଗିଲି।

ଯା'ମଧ୍ୟରେ ମନ୍ଦାର ଗୋଟେ ସାଧୁବେଶରେ ସଜ୍ଜିତହୋଇ, ଲୋକଙ୍କ ଆଖିରେ ବେଶ୍ ଧୂଳିଦେଇଚାଲିଥିଲା। ସେ ଲୋକମାନଙ୍କୁ ଫାନ୍ଦରେ ପକାଇବାଲାଗି ଖୁବ୍ କାରସାଦି କରିପାରୁଥିଲା। ତା'ର କଥାବାର୍ତ୍ତାରେ ଥିଲା ଅପୂର୍ବ ମୋହିନୀ ଶକ୍ତି। ଭିନ୍ନ ଭିନ୍ନ ଧରଣର ଲୋକଙ୍କୁ ସେଠାରେ ଏକତ୍ରିତ କରାଇ, ମଠଟାକୁ ଗୋଟାଏ ବ୍ୟଭିଚାରର କେନ୍ଦ୍ର, ନା... ନର୍କକୁଣ୍ଡ, ଓଃ... ନା... ଅଶାନ୍ତ ମନର ଚିକିତ୍ସାକେନ୍ଦ୍ରରେ ପରିଣତ

କରାଇଥିଲା । ତେଣୁ ଭିନ୍ନଭିନ୍ନ ଧରଣର ମାନସିକ ରୋଗୀ ସେଠାରେ ଆଡ୍ଡା ଜମାଇ ରହିଥିଲେ । ତା' ମଠରେ କେବଳ ଯେ ବୃଦ୍ଧ, ପ୍ରୌଢ଼ ଓ ଯୁବକ ଥିଲେ ତା'ନୁହେଁ, ସେଠାରେ ଥିଲେ ଅନେକ ସୁନ୍ଦରୀ ତରୁଣୀ । ସେହି ସୁନ୍ଦରୀମାନଙ୍କ ମାଧ୍ୟମରେ ସେ ନିଜର ସୁଆଙ୍ଗ ବେଶ୍ ଜମେଇପାରିଥିଲା । ଅଠରବର୍ଷ ପୂର୍ବେ ଏହି ଉପାୟରେ ସେ ମୋତେ ମଧ୍ୟ କରଗତ କରିଥିଲା ।

ଶର୍ମିଷ୍ଠାକୁ ମନରୁ ଭୁଲିଯିବାଲାଗି ସେହି ରାତିରେ ମୁଁ ଗୋଟିଏ କିଛି ନିଶା ଖୋଜୁଥିଲି । କୌଣସି ଗୋଟିଏ ପ୍ରକାର ଉନ୍ମାଦନାରେ ମାତିଯାଇ ମୁଁ ଦେବଯାନୀଠାରୁ ପାଇଥିବା ଲାଞ୍ଛନାର ଉପଶମ ଲାଗି ଚିନ୍ତାକରୁଥିଲି । ପାପପୁଣ୍ୟ, ନୀତିଅନୀତି ଆଦି ବିଚାର କରିବା ଅବସ୍ଥାରେ ମୁଁ ନଥିଲି । ସେହି ରାତିରେ ମନ୍ଦାର ଦୁଃଖ ଭୁଲିବାର ସରଳ ଉପାୟ ମୋତେ ବତାଇଦେଲା । ସେହିଦିନଠାରୁ ମୁଁ ତାକୁ ଗୁରୁକରିନେଲି; ସେ ଓ ମୁକୁଳିକା ମୋର ସୁଖ-ସୁବିଧା ଲାଗି ସମସ୍ତ ପ୍ରକାର ଆୟୋଜନରେ ମାତିଉଠିଲେ । ସେଦିନ ମନ୍ଦାର ସହିତ ମୋର ସାକ୍ଷାତ ହୋଇ ନଥିଲେ, ହୁଏତ . . .

ସେଦିନ ମୋ ଜର୍ଜର ଜୀବନରୂପକ ନୌକାଟିକୁ ମନ୍ଦାର ସମ୍ଭାଳିନେଇନଥିଲେ କ'ଣ ହୋଇନଥା'ନ୍ତା ? ହୁଏତ କେଉଁ ଗିରିଗହ୍ୱରରେ ପଡ଼ିଥିବା ମୋର ଶବକୁ ପରଦିନ ଶ୍ୱାନ, ଶୃଗାଳ, ଗୃଧ୍ର ଟାଣି-ଓଟାରି ଖାଇଥାଆନ୍ତେ । ନୋହିଲେ ହୁଏତ ଶର୍ମିଷ୍ଠାର ଅଧରାମୃତ ପାନକରି ଅତୃପ୍ତଥିବା ମୋର ଅଧରକୁ କେଉଁ ନଦୀ ବା ପୁଷ୍କରିଣୀର ମାଛମାନେ ଟଣାଟଣି କରି ଖାଇଥାଆନ୍ତେ ।

ସେ ରାତିରେ ମନ୍ଦାରକୁ ଦେଖିବାପରେ ମୋ ମନରେ ନାଚିଉଠିଲା ଯତିର ସ୍ୱରୂପ । ଦିନେ ଜଙ୍ଗଲର ଭୟଙ୍କର ଗୁମ୍ଫା ମଧ୍ୟରେ ହଠାତ୍ ତା' ସହିତ ମୋର ସାକ୍ଷାତ୍ ହୋଇଥିଲା । ଶରୀରକୁ କଷ୍ଟ ଦେଇ ଈଶ୍ୱରପ୍ରାପ୍ତି ଲାଗି ସେ ଚେଷ୍ଟା ଚଳାଇଥିଲା; ଶେଷକୁ ସେଇ ଅବସ୍ଥାରେ ଯତି ପାଗଳହୋଇଗଲା । ମନ୍ଦାର ଏ ମଠରେ କମ୍ ସୁଆଙ୍ଗ ରଚନା କରୁନଥିଲା । ସେ ଗୋଟିଏ ଅତି ଜ୍ଞାନୀ ତଥା ପ୍ରସିଦ୍ଧ ଯୋଗୀରୂପେ ନିଜକୁ ପରିଚିତ କରାଉଥିଲା; କିନ୍ତୁ ରଙ୍ଗମଞ୍ଚର ପରଦା ଆଢୁଆଳରେ ସେ ଜଣେ ବିଳାସୀ ରାଜା ପରି ଉପଭୋଗରେ ମାତିଥିଲା ।

ଯତି ଓ ମନ୍ଦାର ! କେଡ଼େ ପରସ୍ପର-ବିରୋଧାତ୍ମକ ଶକ୍ତି ଦୁଇଟି ! ଯତିର ତତ୍ତ୍ୱଜ୍ଞାନ ଅପେକ୍ଷା ମନ୍ଦାରର ଜ୍ଞାନଚର୍ଚ୍ଚା ମନକୁ ବେଶ୍ ସ୍ପର୍ଶ କରୁଥିଲା । କେବଳ ସେଇଥିପାଇଁ ମୁଁ ତା' ପାଲରେ ଅନାୟାସରେ ପଡ଼ିଗଲି । ମନ୍ଦାରର ପ୍ରଧାନ ଉପଦେଶ ଥିଲା– 'ଆଜି ଜୀବନ ଗୋଟିଏ ସୁରମ୍ୟ ଉପବନର ସୁରଭିତ କୁସୁମ ହୋଇ ରହିଛି; କାଲି ଏ ମଉଳିଯିବ । ତେଣୁ ସାଧ୍ୟମତେ ସେ ଫୁଲଟିର ସୁଗନ୍ଧି ଆଘ୍ରାଣ ନକରି, ତାକୁ ମଉଳିବାକୁ ଛାଡ଼ିଦେବା ମୂର୍ଖତା । ଉପଭୋଗ ହିଁ ଜୀବନର ଧ୍ୟେୟ; ତା'ଫଳରେ ପାପ, ପୁଣ୍ୟ, ନୀତି, ଅନୀତି କିଛି ହୁଏ ନାହିଁ ।

ମନ୍ଦାରର ଉପଦେଶ ଅନୁସାରେ ଜୀବନ-ନୌକାଟିକୁ ବିଳାସ-ବ୍ୟସନର ପ୍ରଖର ସ୍ରୋତରେ ଭସାଇଦେବା ସମୟରେ, ମୋର ବାଲ୍ୟକାଳର ସଂସ୍କାର, ଅଙ୍ଗୀରସ ମହର୍ଷିଙ୍କ ଉପଦେଶ ଆଦି କେତେ ଅତୀତର ସ୍ମୃତି ମନରେ ଜାଗିଉଠି ମୋତେ ପଚାରିଲେ– "ଆରେ ମୂର୍ଖ, ତୁ ଉଦ୍‌ଭ୍ରାନ୍ତ ହୋଇ କୁଆଡ଼େ ଧାଇଁଛୁ ?"

ସେତିକିବେଳେ ମୋର ମନଃସ୍ଥିତି ଲକ୍ଷ୍ୟକରି, ମନ୍ଦାର କେତେ ଋଷି-ମହର୍ଷିଙ୍କ ପ୍ରେମକାହାଣୀ, ପୁରାଣ-ଶାସ୍ତ୍ରର ଆଦିରସାତ୍ମକ ବର୍ଣ୍ଣନା, ଲୋକସମାଜର କେତେ କେତେ ମନଗଢ଼ା ଅଶ୍ଳୀଳ ଆଚରଣ ସମ୍ବନ୍ଧରେ ଉଦାହରଣ ଉପସ୍ଥାପିତ କରୁଥିଲା ଏବଂ ଜୀବନର କ୍ଷଣଭଙ୍ଗୁରତା ସମ୍ବନ୍ଧରେ ବିଶେଷ ଗୁରୁତ୍ୱ ଦେଇ ବୁଝାଉଥିଲା ।

ଥରେ ତା' ସହିତ ରଥରେ ବସି ମୁଁ ରାଜମାର୍ଗରେ ବୁଲୁଥିବା ସମୟରେ ଗୋଟିଏ କୁମ୍ଭାରର ଚକଚକିଆ ହାଣ୍ଡି କଳସୀ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା ମନ୍ଦାର– "ଏ ହାଣ୍ଡି କଳସୀଗୁଡ଼ିକ ଖୁବ୍ ସୁନ୍ଦର ଦେଖାଯାଉନାହିଁ କି ?"

"ନିଶ୍ଚୟ ! ପ୍ରତ୍ୟେକ ବ୍ୟବସାୟରେ ଗୋଟିଏ ଗୋଟିଏ ଆକର୍ଷକ କଳାତ୍ମକ ଅଭିବ୍ୟକ୍ତି ରହିଛି ।"

ତହୁଁ ମନ୍ଦାର ହସି ହସି କହିଲା– "ବିଧାତା ମଧ୍ୟ ଜଣେ ସୁଦକ୍ଷ ବିନ୍ଧାଣି । ସେ ଆମପରି କଣ୍ଢେଇଗୁଡ଼ିଏ ପ୍ରସ୍ତୁତ କରିଛନ୍ତି । ଏ କୁମ୍ଭାରର ଚକଚକିଆ ହାଣ୍ଡିଟି ଭାଙ୍ଗିଗଲେ ଟିକି ଟିକି ହୋଇ ମାଟିରେ ମିଶିଯାଉଛି; ମୃତ୍ୟୁପରେ ଆମର ଦେହଟି ମଧ୍ୟ ଠିକ୍ ସେହିପରି ଧୂଳି-ମାଟିରେ ମିଶି ନିଜର ଅସ୍ତିତ୍ୱ ହଜାଇଦେଉଛି । ହାଣ୍ଡିଟି ଭାଙ୍ଗିଯିବା ପୂର୍ବରୁ ମଣିଷ ଯେପରି ତାକୁ ନିଜ କାମରେ ଲଗାଇ କ୍ରୟମୂଲ୍ୟ ଅସୁଲକରେ, ଠିକ୍ ସେହିପରି ମୃତ୍ୟୁ ପୂର୍ବରୁ ଜୀବନର ଉପାଦେୟତା ସମ୍ବନ୍ଧରେ ଅବଗତ ହେବାଲାଗି ମୁଁ ଉପଦେଶ ଦିଏ । ଏ ହାଣ୍ଡି, କଳସୀଗୁଡ଼ିକର ଯଦି ଜୀବନ ଥାଆନ୍ତା, ମୁଁ ତାଙ୍କୁ ଉପଦେଶ ଦେଇ କହନ୍ତି– "ତୁମେ ମଦ୍ୟପାନ କରିବା ପରେ, ଅଧରାମୃତପାନକର, ଯେତେ ଯାହା ସୁସ୍ୱାଦୁ ପେୟ ରହିଛି ସବୁ ଆକଣ୍ଠ ପାନକର । କାଲି ତୁମ ଶରୀର ଭାଙ୍ଗିରୁଜି ଟିକି ଟିକି ଖପରାରେ ପରିଣତ ହୋଇଗଲେ ଟୋପାଏ ହେଲେ କିଛି ପିଇପାରିବ ନାହିଁ ।"

ଆଉ ଥରେ ମନ୍ଦାର ମୋତେ ଗୋଟିଏ ଶ୍ମଶାନକୁ ନେଇଗଲା । ସେଠାରେ ଚିତା ଉପରେ ଗୋଟିଏ ଯୁବକର ଶବ ଜଳୁଥିଲା । ତାର ଜୀବନ କାହାଣୀ ମୋତେ ଶୁଣାଇଦେଇ କହିଲା ମନ୍ଦାର– "ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣକରି ଏ ଯୁବକ ନିଜର ବାଲ୍ୟସଙ୍ଗିନୀ ମନରେ ଅଶେଷ କଷ୍ଟ ଦେଇଥିଲା । ଶେଷକୁ ଜୀବନର ସ୍ୱାଦ ଆଦୌ କିଛି ନପାଇ; ଏ ଚିତାର ପଲଙ୍କ ଉପରେ ଜ୍ୱାଳାର ଚାଦର ଘୋଡ଼ିହୋଇ ଶୂନ୍ୟରେ ମିଳାଇଯାଉଛି । ସେ ଆଉ କ'ଣ ସଂସାରରେ ଜନ୍ମହେବ ଯେ, ଆଉ ଥରେ ଜୀବନର ସ୍ୱାଦ ଅନୁଭବ କରିବ ?"

ସେ ଚିତା ଆଡ଼କୁ କେତେ ସମୟ ଚାହିଁବା ପରେ ମୋର ମନେହେଲା, ମୁଁ ସେହି ଚିତାରେ ଶୟନ କରିଛି । ଗୋଟି ଗୋଟି ହୋଇ ମୋର ଅଙ୍ଗ-ପ୍ରତ୍ୟଙ୍ଗ ଜଳି ପାଉଁଶ ହୋଇଯାଉଛି । ମୁଁ ଆଉ ହାତରେ ମଦିରାର ଚଷକ ଉଠାଇ ପାରିବି ନାହିଁ, ଓଠରେ ରଙ୍ଗିନ୍ ପିଆଲା କିମ୍ବା ରମଣୀର ଗୋଲାପୀ ଅଧରରୁ ମନଭରି ଅମୃତ ପାନ କରିପାରିବି ନାହିଁ ।

ଏହି ସମୟରେ ମନ୍ଦାର ମୋ କାନ୍ଧରେ ହାତ ରଖି କହିଲା– "ଜୀବନର ଏଇ ଜମାଖର୍ଚ୍ଚ ମଧ୍ୟରେ ଧାର-ଉଧାରର ସ୍ଥାନ ନାହିଁ । ଆଜି ଯିଏ ସୁଗନ୍ଧ ଫୁଲଟିଏ ଶୁଙ୍ଘିବାକୁ ଚାହୁଁନାହିଁ, କାଲି ପୁଣି ତାକୁ ଆଉ ଗୋଟିଏ ଫୁଲ ମିଳିବ, ଯା'ର

କୌଣସି ଭରସା ନାହିଁ। ଆଜି ପରି କାଲି ସ୍ୱର୍ଣ୍ଣିମ ପ୍ରଭାତ ଆସିବ, ସୁରମ୍ୟ ଉଦ୍ୟାନରେ ମନୋରମ ଫୁଲ ଫୁଟିବ; କିନ୍ତୁ ଏସବୁକୁ ପ୍ରତ୍ୟକ୍ଷ କରିବା ପାଇଁ ମଣିଷ ଆସନ୍ତା କାଲିକୁ ଥିଲେ ତ ?''

ଆଉ ଥରେ ମନ୍ଦାର ନଗରର ଗୋଟିଏ ପ୍ରସିଦ୍ଧ ପଣ୍ଡିତଙ୍କ ଘରକୁ ମୋତେ ନେଇଗଲା। ମୁଁ ସେ ପଣ୍ଡିତଙ୍କୁ ଦେଖି ଅବାକ୍ ହୋଇଗଲି। ପିତୃଦେବ ମୃତ୍ୟୁଶଯ୍ୟାରେ ପଡ଼ିଥିଲାବେଳେ ମାଧବ ମୋତେ ଏହି ପଣ୍ଡିତଙ୍କ ପାଖକୁ ଘେନିଆସିଥିଲା। ଏବେ ସେ ମହାଶୟ ଜୀର୍ଣ୍ଣ-ଶୀର୍ଣ୍ଣକାୟ ବୃଦ୍ଧତ୍ୱରେ ପଦାର୍ପଣ କରିଛନ୍ତି। ତାଙ୍କର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇଯାଇଥିଲା; କିନ୍ତୁ ଯୌବନରେ ସେ ଯେଉଁଯେଉଁ ଉପଭୋଗକୁ ପ୍ରତ୍ୟାଖ୍ୟାନ କରିଥିଲେ, ଆଜି ସେହି ସେହି ବାସନାଗୁଡ଼ିକ ତାଙ୍କଠାରେ ପ୍ରତିଶୋଧ ନେଉଥିଲେ। ପେଡ଼ି ମଧ୍ୟରେ ବନ୍ଦୀ ହୋଇ ରହିଥିବା ନାଗସାପ ଢାଙ୍କୁଣୀ ବିନା ଫଁ-ଫଁ ଗର୍ଜିଉଠିଛି। ବୃଦ୍ଧମହାଶୟ ଘରେ ଶାନ୍ତିରେ ବସିପାରୁନାହାନ୍ତି। ଆଖି, କାନ, ଚଳତ୍‌ଶକ୍ତି ସବୁକିଛି ଶିଥିଳ ହୋଇଯାଇ ମଧ୍ୟ ବୃଦ୍ଧ ପଣ୍ଡିତ ମହାଶୟ ଯୁବତୀ ଝିଅ-ବୋହୂଙ୍କ ଆଡ଼କୁ ଲୋଭାଣିଆ ଦୃଷ୍ଟିରେ ଚାହିଁ ଉପହସିତ ହେଉଛନ୍ତି। ତାଙ୍କୁ ଘର ମଧ୍ୟରେ ବନ୍ଦ କରି ରଖିଲେ ମଧ୍ୟ ସେ କାନ୍ଥରେ ନାନାପ୍ରକାର ଅଶ୍ଳୀଳ କଥା ଲେଖି ସେହି ଶବ୍ଦଗୁଡ଼ିକୁ ଚିତ୍କାର କରି କହୁଛନ୍ତି। କାନ୍ଥରେ ନଗ୍ନ ନାରୀମୂର୍ତ୍ତି ଅଙ୍କନକରି ପୁଅନାତିଙ୍କ ଆଗରେ ସେ ଚିତ୍ରକୁ ଚୁମ୍ବନଦେଉଛନ୍ତି।

ଏହି ପଣ୍ଡିତ ମହାଶୟଙ୍କ ବ୍ୟତୀତ ମନ୍ଦାରର ମଠକୁ ଆସୁଥିବା ବହୁ ବୃଦ୍ଧ, ପ୍ରୌଢ଼ ଓ ତରୁଣମାନଙ୍କର ଜୀବନଧାରା ମୁଁ ଅତି ନିକଟରୁ ପ୍ରତ୍ୟକ୍ଷ କରିଥିଲି। ପ୍ରତ୍ୟେକଙ୍କ ଜୀବନଧାରାର ଢଙ୍ଗ ଥିଲା ଗୋଟିଏ ପ୍ରକାରର। ସମସ୍ତେ ମୁହଁରେ କେବଳ ଧର୍ମ, ନୀତି, ଆଚାର, ପୁଣ୍ୟ, ପରମାତ୍ମାଙ୍କ ସମ୍ବନ୍ଧରେ କେତେ କ'ଣ କହୁଥିଲେ; କିନ୍ତୁ ଆଚରଣରେ ଠିକ୍ ବିପରୀତ କାର୍ଯ୍ୟ କରୁଥିଲେ। ଲୋକଦେଖାଣିଆ କାର୍ଯ୍ୟ ଓ ସେମାନଙ୍କ ଭିତିରି ଆଚରଣ ମଧ୍ୟରେ ଆକାଶ-ପାତାଳ ଅନ୍ତର ରହୁଥିଲା।

ଜୀବନ କ୍ଷଣଭଙ୍ଗୁର; କେତେବେଳେ କାହାର ମୃତ୍ୟୁ ଆସି ଉପସ୍ଥିତ ହୋଇଯିବ କିଏ ଜାଣେ ? ତେଣୁ ପ୍ରତ୍ୟେକ ମୁହୂର୍ତ୍ତକୁ ସ୍ୱର୍ଣ୍ଣିମ ଅବସର ବୋଲି ମନେକରି ମଣିଷ ଜୀବନକୁ ଯଥାସମ୍ଭବ ରସମୟ, ଆମୋଦ-ପ୍ରମୋଦମୟ ତଥା ରଙ୍ଗରହସ୍ୟମୟ କରିବା ଏକାନ୍ତ ଆବଶ୍ୟକ। ମନ୍ଦାର ଉପଦେଶ ଛଳରେ ମୋତେ ଏହି ତତ୍ତ୍ୱଜ୍ଞାନ ଶିଖାଇଥିଲା। ମନର କ୍ଷୁଧା ଓ ପିପାସାର ଉପଶମ ଲାଗି କୌଣସି କାର୍ଯ୍ୟ ପାପ ନୁହେଁ ବୋଲି ସେ ସବୁବେଳେ ଗୁରୁଗମ୍ଭୀର ସ୍ୱରରେ ମୋତେ ଶୁଣାଉଥିଲା।

ନୂତନ ଜୀବନ-ଦର୍ଶନର ସନ୍ଧାନ ପାଇ ମୁଁ ପବନ ବେଗରେ ସେହିଆଡ଼କୁ ଧାଇଁଚାଲିଲି। ଦେବଯାନୀର ପ୍ରେମଶୂନ୍ୟ କର୍କଶ ବ୍ୟବହାର ସେଥିଲାଗି ମୋତେ ବିଶେଷ ସାହାଯ୍ୟକଲା। ତେଣୁ ଆଠପ୍ରହର ମୁଁ କେବଳ ବିଳାସ-ବ୍ୟସନ ମଧ୍ୟରେ ନିଜକୁ ବୁଡ଼ାଇରଖିଲି।

ଋତୁଚକ୍ରର ଆବର୍ତ୍ତନ ଯା' ମଧ୍ୟରେ ଅଠରଥର ହୋଇଗଲାଣି। ଅଠରଟି ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ ଯା' ମଧ୍ୟରେ ବିତିଗଲାଣି; କିନ୍ତୁ ମୋ ଜୀବନର କାର୍ଯ୍ୟକ୍ରମର କୌଣସି ପରିବର୍ତ୍ତନ ଘଟିଲା ନାହିଁ। ବିଳାସ-ବ୍ୟସନ, ଆମୋଦ-ପ୍ରମୋଦ

ବ୍ୟତୀତ ମୁଁ ଆଉ କିଛି ଜାଣିପାରିଲିନାହିଁ କିମ୍ବା ଜାଣିବା ଲାଗି ମୋର ଧୈର୍ଯ୍ୟ ରହିଲା ନାହିଁ। ଦେବବିଗ୍ରହ ଉପରେ ଅର୍ପଣ କରାଯାଇଥିବା ଫୁଲ କାଲିକୁ ବାସି ହୋଇଗଲା ପରି ଆଜିର ଉପଭୋଗ୍ୟା ରମଣୀ କାଲିକୁ ମୋର ପସନ୍ଦ ହେଉନଥିଲା। ନିତ୍ୟ ନୂତନ ଚେହେରାରେ ଆଖି ଅଭ୍ୟସ୍ତ ହୋଇଗଲା। କେଉଁଠାରୁ ଆସୁଥିଲେ କିଏ କିମ୍ବା ମୋର ଉପଭୋଗ ପରେ କିଏ କୁଆଡ଼େ ଯାଉଥିଲେ, ସେଥିପ୍ରତି ମୋର ନଜର ନଥିଲା। ମୁଁ ଚାହୁଁଥିଲି ମୋ ସୁଖର ପିଆଲା ସବୁବେଳେ ଉଚ୍ଛୁଳିଉଠୁ, ମୁଁ ବିନା ପ୍ରୟାସରେ ତାକୁ ଆତ୍ମସାତ୍ କରିଦିଏ। ସେଥିଲାଗି ମନ୍ଦାର ଓ ମୁକୁଳିକା ଗତ ଅଠରବର୍ଷ ଧରି ସଂପୂର୍ଣ୍ଣ ସଜାଗଥିଲେ। ସେ ଦୁହେଁ ସବୁବେଳେ ମୋର ରୁଚି ଅନୁଯାୟୀ ନିତ୍ୟ ନୂତନ ଭୋଗ୍ୟପଦାର୍ଥ ତଥା ସୁନ୍ଦରୀ ତରୁଣୀ ଯୋଗାଡ଼ କରି ରଖୁଥିଲେ।

କିନ୍ତୁ... କିନ୍ତୁ... ସେହି ନଗ୍ନ ବିଳାସିତାର ଦୁଇଟି ରାତି ଆଜି ସୁଦ୍ଧା ମୋର ବେଶ୍ ମନେଅଛି; ଆଜି ମଧ୍ୟ ମୋ ମନକୁ ଆଘାତ ଦେଉଛି। ଥରେ ମୁକୁଳିକା ମୋ ପାଇଁ ସୁନ୍ଦରୀ ତରୁଣୀଟିଏ ଆଣି ପହଞ୍ଚାଇଲା। ମୁଁ ସେତେବେଳେ ମଦ ନିଶାରେ ବେହୋଶ ପ୍ରାୟ ହୋଇ ରହିଥିଲି। ମୁଁ କେବଳ ସେ ତରୁଣୀର ସୁନ୍ଦର ଆଖି ଦୁଇଟିକୁ ଦେଖି ମୁଗ୍ଧ ହୋଇଥିଲି, ତା ବ୍ୟତୀତ ମୋର ଆଉ କିଛି ଧାରଣା ନଥିଲା। ରାତ୍ରିର ଉପଭୋଗ ପରେ, ମୁଁ ଲକ୍ଷ୍ୟକଲି, ମୋ ଭୁଜବନ୍ଧନରେ ବନ୍ଦିନୀ ହୋଇ ସେ ଯୁବତୀଟି 'ମାଧବ' 'ମାଧବ' ବୋଲି ପ୍ରଳାପକରୁଛି। ଭାବିଲି, ହୁଏତ ନିଦ ବାଉଳାରେ ସେ ନିଜ ସାନଭାଇକୁ ଡାକୁଛି। ମୁଁ ମୋର ଭୁଜବନ୍ଧନ ଧୀରେ ଶିଥିଳ କରିଦେଲାରୁ, ଆହୁରି ବ୍ୟଗ୍ର ଭାବରେ ମୋ ଭିଡ଼ିଧରି କହିଲା– ''ମାଧବ, ମୁଁ ତୁମର, ମୁଁ ତୁମର! ନା... ନା... ମୋତେ ଛାଡ଼ି କୁଆଡ଼େ ଯାଅନାହିଁ।''

ମୁଁ ଚମକିପଡ଼ି ତା' ମୁହଁକୁ ନିରୀକ୍ଷଣ କରି ଦେଖିଲି। ଉଃ... କି ଜଘନ୍ୟ କୃତ୍ୟ ମୋର... ସେ ଯୁବତୀ ଥିଲା ମାଧବୀ! ବୋଧହୁଏ ମନ୍ଦାର ମନ୍ତ୍ରତନ୍ତ୍ରବଳରେ କିମ୍ବା ମାଦକଦ୍ରବ୍ୟ ସେବନ କରାଇଦେଇ ତାକୁ ମୋ ପାଖରେ ପହଞ୍ଚାଇଦେଇଥିଲା। ସେ ଦୁହେଁ ମୋ'ରି ଆନନ୍ଦ ପାଇଁ ଏଇଭଳି କେତେ କ'ଣ ଜଘନ୍ୟ କାର୍ଯ୍ୟ କରିଥିବେ କିଏ ଜାଣେ ?

ଧୀରେ ଧୀରେ ମାଧବୀର ଚେତନା ଫେରିଆସିଲା। ସେ ମୋ' ଆଡ଼କୁ ଚାହିଁଦେଇ ନିଜର ସ୍ଥିତି ବେଶ୍ ଅନୁମାନ କରିନେଲା। ତା'ପରେ ତା'ର ମୁଖମୁଦ୍ରା ଭୟଙ୍କର ହୋଇଉଠିଲା। ତା'ପରେ 'ମହାରାଜ' ବୋଲି ଜୋର୍‌ରେ ଚିତ୍କାର କରି ହଠାତ୍ ମହଲର ଦ୍ୱାର ଠେଲିଦେଇ ତୀରବେଗରେ କେଉଁଆଡ଼େ ଦୌଡ଼ି ପଳାଇଗଲା। ପରଦିନ ତାର ଶବ ଯମୁନାରେ ଭାସୁଥିବାର ଖବର ମିଳିଲା।

ଆଉ ଦିନେ ରାତିରେ ମୁକୁଳିକା ଗୋଟିଏ ମୁଗ୍ଧା ରମଣୀକୁ ଆଣି ମୋ ପଲଙ୍କ ଉପରେ ବସାଇଦେଲା। ତରୁଣୀଟି ଆଦୌ ମୁହଁ ଉଠାଇ ଉପରକୁ ଚାହିଁଲାନାହିଁ; କିନ୍ତୁ ତାର ଚେହେରାରୁ ସେ ସଦ୍ୟପ୍ରସ୍ଫୁଟିତ କଳିକା ପରି ଖୁବ୍ ଲୋଭାଣିଆ ଦେଖାଯାଉଥିଲା। ମୁଁ ମଦିରାର ମାଦକତାରେ ଜ୍ଞାନ ହରାଇଥିବାରୁ ତାକୁ ଆଦୌ ଚିହ୍ନି ପାରିନଥିଲି। ପରଦିନ ବଡ଼ିଭୋର୍‌ରୁ ମୋ ନିଶା ଛାଡ଼ିଗଲା; ମୁଁ ତାକୁ ନିରୀକ୍ଷଣ କରି ଚମକିଉଠିଲି। ମୋ ହୃଦୟ ଅନୁତାପାନଳରେ ଦଗ୍ଧ ହୋଇଗଲା। ସେ ଥିଲା– ମାଧବର ଝିଆରୀ

ତାରକା। ମୋ ଉପରେ ନଜର ପଡ଼ିଯିବା ମାତ୍ରେ, ତା' ଚେହେରା କଳାକାଠ ପଡ଼ିଗଲା ଏବଂ 'ସାପ', 'ସାପ' କହି ବାହାରକୁ ଦୌଡ଼ିପଳାଇଗଲା। କେତେଦିନ ପରେ ଶୁଣିଲି ତାରକା ପାଗଳୀ ହୋଇଯାଇଛି ଏବଂ ପୁଣି କେତେ ମାସ ପରେ ଶୁଣିଲି— ତାରକା ଜଳନ୍ତା ନିଆଁକୁ ଫୁଲବୋଲି ମନେକରି ତାକୁ ତୋଳି ଆଣିବା ଲାଗି ନିଆଁ ଭିତରକୁ ପଶିଯାଇ ଜୀବନ୍ତ ଦଗ୍ଧ ହୋଇଯାଇଛି।

ମୋ ପ୍ରିୟ ମିତ୍ରର ବାଗ୍‌ଦତ୍ତା ପତ୍ନୀ, ପରମବନ୍ଧୁର ଅଲିଅଳୀ ଝିଅ, ଦୁହିଁଙ୍କର କୋମଳ ଜୀବନ ମୋରି ଲାଗି ଅକାଳରେ ଝରିପଡ଼ିଲା। ଯେଉଁ ମାଧବୀ ମୋତେ ଦେବ୍ତାଶୁର ମନେକରୁଥିଲା, ସେହିଁ ଦିନେ ମୋ ବାସନାରାକ୍ଷସୀର ହାବୁଡ଼ରେ ପଡ଼ି ପ୍ରାଣହରାଇଲା। ଆଉ ସେ କୋମଳ କଳିକା ତାରକା... ତା'ର ସେ କଣ୍ଢେଇଖେଳ ମୁଁ ଦେଖିଛି। ମୋ ସହିତ ଦୋତୁଣ୍ଡା ଭାଷାରେ ସେ କେତେ ଖେଳ ଖେଳିଛି; ନିଜ କଣ୍ଢେଇଝିଅ ଲାଗି ମୋତେ ବର ରୂପେ ବାଛିଛି... ଓଃ— ପରମାତ୍ମା! ମୋ'ରି ହାତରେ ସେଇ କୋମଳ କଳିକାଟି ଚାହୁଁ ଚାହୁଁ ଦଗ୍ଧ ହୋଇଗଲା।

ଏହି ଦୁଇଟି ଘଟଣା ପରେ ମୋ ମନ ବିବ୍ରତ ହୋଇଉଠିଲା। ମୁଁ ବେଶ୍ ଅନୁଭବ କଲି— ମଦାରଦ୍ୱାର ନିର୍ଦ୍ଧାରିତ ସୁଖର ମାର୍ଗ ନିଶ୍ଚିତ ଭାବରେ ମୋତେ ଅଧଃପତନ ଆଡ଼କୁ ଟାଣି ନେଇ ଚାଲିଛି ଏବଂ ମୁଁ ଯା' ମଧରେ ରାକ୍ଷସରେ ପରିଣତ ହୋଇଯାଇଛି। କିନ୍ତୁ ସବୁ ବିଷୟ ହୃଦୟଙ୍ଗମ କଲେ ସୁଦ୍ଧା ମୁଁ ଏବେ ଯିବି କୁଆଡ଼େ? କାରଣ ମୁଁ ସଦାସର୍ବଦା ଆମୋଦ-ପ୍ରମୋଦରେ ବୁଡ଼ିରହି ଅତୀତର ନିର୍ଯ୍ୟାତନା, ଦୁଃଖ ଓ ମନସ୍ତାପକୁ ଭୁଲିବାକୁ ଚାହୁଁଥିଲି। ତେଣୁ ମୋର ଦୃଢ଼ଧାରଣା ହୋଇଯାଇଥିଲା— ମୃଗୟାର ଉନ୍ମାଦନା, ମଦିରାର ମାଦକତା ଓ ମଦିରାକ୍ଷୀର ଆଲିଙ୍ଗନ ମୋତେ ବ୍ରହ୍ମାନନ୍ଦ ପରି ସୁଖ ଦେଇପାରିବ। ତା'ରି ବିଳାସରେ ମୁଁ ବେଶ୍ ସୁରକ୍ଷିତ ହୋଇପାରିବି। ସେହି ବାସନାମୟ ଦୁର୍ଗର ବାହାରକୁ ଆସିଗଲେ ମୁଁ କରିବି କ'ଣ? ପୁଣି ମୋତେ ଅନୁତାପାନଳ ଅନାୟାସରେ ଦଗ୍ଧ କରିଦେବ ନାହିଁ କି? ମୋ ଜୀବନର ଶୂନ୍ୟତା, ମୋ ମନର ରିକ୍ତତା ମୋତେ କାଳପୁରୁଷର କରାଳ ଗ୍ରାସ ଆଡ଼କୁ ଠେଲିଦେବ ନାହିଁ କି? ମୋର ଚତୁଃପାର୍ଶ୍ୱରେ ମୃତ୍ୟୁ ଘୂରିବୁଲୁଛି। ଏ ଧାରଣା ମୋ ମନରେ ଜାତ ହେବାକ୍ଷଣି ମୁଁ ବିବ୍ରତ ହୋଇଉଠେ; କିନ୍ତୁ ଧୀରେଧୀରେ ସେଇ ଦୁଇଟି ରାତିର ଘଟଣା ମୋ ମାନସପଟଳରେ ଧୂମିଳ ହୋଇଆସିଲା; ତେଣୁ କାଳଚକ୍ରର ଆବର୍ତ୍ତନ ସହିତ ତାଳଦେଇ ମୋ ଜୀବନର ବିଳାସଚକ୍ର ପୂର୍ବପରି ଅବାରିତ ଗତିରେ ଘୂରିବାକୁ ଲାଗିଲା।

"ଏବେ ରାତି ଦଶଘଡ଼ି ହୋଇଗଲାଣି ମହାରାଜ ବିଶ୍ରାମ ନିଅନ୍ତୁ।" ଏ ଶବ୍ଦ ଶୁଣିବା ପରେ ମୁଁ ବାହାରୁ ଚାଲିଆସି ଘର ଭିତରେ ପଲଙ୍କରେ ଶୋଇପଡ଼ିଲି। ମଣିଷର ଅନ୍ତର୍ମନ ତା'ର ସବୁଠାରୁ ବଡ଼ ଶତ୍ରୁ। ଯାହା ସେ ଜାଗ୍ରତ ଅବସ୍ଥାରେ ଦେଖିଥାଏ ବା ଶୁଣିଥାଏ, ତାକୁ ଆଦର କରି ମନ ମଧ୍ୟରେ ସାଇତି ରଖିଥାଏ ଏବଂ ନିଦ୍ରାବସ୍ଥାରେ ତା'ର ନଗ୍ନରୂପ ଦେଖାଇବାକୁ ବୋଧହୁଏ ଅନ୍ତର୍ମନକୁ ଭାରି ସୁଖଲାଗେ। ମୁଁ ଶୋଇପଡ଼ିଲାମାତ୍ରେ ଗତ ଅଠରବର୍ଷର ସ୍ମୃତି, ଯେଉଁ ଘଟଣାଗୁଡ଼ିକ ମୋ ମନରେ ତୀବ୍ର ଆଘାତ ଦେଇଛି, ସେଗୁଡ଼ିକ ସ୍ୱପ୍ନରେ ସାକାରହୋଇଉଠିଲା।

ମୁଁ ମୁକୁଳିକା ଆଡ଼କୁ ଚାହିଁ ହସିଦେଲି। ସେ ଆଗେଇ ଆସି ମୋର ଅଙ୍ଗସଜ୍ଜା ଓ ପ୍ରସାଧନ ଶେଷକରିଦେଲା। ମୁଁ ଦର୍ପଣରେ ମୋର ବେଶଭୂଷା ଦେଖି ମୁଗ୍ଧ ହୋଇଗଲି। ବେଶ୍ 'କିଶୋରୀମୋହନ' ବେଶରେ ମୋତେ ମୁକୁଳିକା ସଜ୍ଜିତ କରିଦେଇଥିଲା। ବୟସ ବୃଦ୍ଧିର ଯେଉଁ ଯେଉଁ ଚିହ୍ନ ମୋ ମୁହଁରେ ସ୍ପଷ୍ଟ ହୋଇଉଠୁଥିଲା, ପ୍ରସାଧନଦ୍ୱାରା ତାହା କୁଆଡ଼େ ଉଭେଇଗଲା। ବରଂ ମୁଁ ମୋର ବୟସ ତୁଳନାରେ ଅଧିକ ତରୁଣ ଦିଶୁଥିଲି। ମୋର ମନେହେଲା, ସେଦିନ ରୋଗଶଯ୍ୟାରେ ପଡ଼ିଥିବା ସମୟରେ ଅଳକାର ଫୁଲଗଜରାମଣ୍ଡିତ କେଶଗୁଚ୍ଛକୁ ଓଟାଣି ନେଇ ତା' ଅଧରରେ ଅଧର ମିଶାଇଦେଇଥିଲି; ଆଜି ସେହି ବୟସ ମୁଁ ଫେରିପାଇଛି।

ମୁଁ ଏକଲୟରେ ମୋର ପ୍ରତିବିମ୍ବକୁ ଚାହିଁରହିଲି; କିଛିକ୍ଷଣ ବିତିଯିବା ପରେ ସେ ପ୍ରତିବିମ୍ବ ଧୂସରିତ ହୋଇଉଠିଲା। ସେ ପ୍ରତିବିମ୍ବ ମଧ୍ୟରୁ ଗୋଟିଏ ପରେ ଗୋଟିଏ ଅସଂଖ୍ୟ ତରୁଣୀଙ୍କ ଆକୃତି ସ୍ପଷ୍ଟ ହୋଇଉଠିଲା। ସେମାନେ ଦାନ୍ତ ଦେଖାଇ, ଓଠ କାମୁଡ଼ି ମୋରି ଆଡ଼କୁ ଚାହିଁ ଏଣୁତେଣୁ କ'ଣ ଗୁଡ଼ାଏ ବର୍‌ବର୍ ହେଉଥିଲେ। ମୁଁ ଚମକିପଡ଼ି ଦି'ପହଣ୍ଡ ପଛକୁ ଘୁଞ୍ଚିଗଲି। ସଙ୍ଗେ ସଙ୍ଗେ ଦର୍ପଣରେ ପ୍ରତିବିମ୍ବିତ ଧୂସରତା କୁଆଡ଼େ ଉଭେଇଗଲା ଏବଂ ମୋ ପ୍ରତିବିମ୍ବ ଆହୁରି ସୁସ୍ପଷ୍ଟ ହୋଇଉଠିଲା। ହାଏ . . . ଏ କ'ଣ? ବୃଦ୍ଧତ୍ୱର ପ୍ରମାଣ ମୋ କେଶରାଶିରେ ସୁସ୍ପଷ୍ଟ ହୋଇଉଠିଲାଣି। ଏ ମୋର ପକ୍ୱକେଶ ନା କେଉଁ କ୍ରୋଧୀ ଋଷିର ବିଭୂତିବୋଳା ହାତ ଅଭିଶାପ ଦେବାବେଳେ ମୋ ମୁଣ୍ଡରେ ବାଜିଯାଇଛି!

ଯଯାତିର ମସ୍ତକରେ ବାର୍ଦ୍ଧକ୍ୟର ଖମ୍ବ ପୋତାହୋଇଗଲାଣି। ଜୀବନ-ନାଟିକାର ଶେଷଅଙ୍କ, ଅର୍ଥାତ୍ ସବୁଠାରୁ ନୀରସ ଅଙ୍କ ଦେଖିବାକୁ ଆଉ କେହି ଦର୍ଶକ ରହିବେ ନାହିଁ। ଉପଭୋଗରେ ମୋ ମନ ଆଦୌ ତୃପ୍ତ ହୋଇନାହିଁ; ଏତେ ଶୀଘ୍ର ଉପଭୋଗର ଶକ୍ତି ମୋର ଲୋପପାଇଯିବ? ନା-ନା, ଏତେ ସଅଳ ମୁଁ ବୁଢ଼ା ହେବାକୁ ଚାହେଁନାହିଁ।

କିନ୍ତୁ ଏ ଶୁକ୍ଳକେଶ? ହୋଇପାରେ ମୋ ମନର ଗୋଟାଏ ଆଭାସ। ମୁଁ ଆଉ ଥରେ ମୋର ପ୍ରତିବିମ୍ବ ଆଡ଼କୁ ନିରୀକ୍ଷଣ କରି ଚାହିଁଲି। ସେ ଶୁକ୍ଳକେଶଗୁଡ଼ାକ ସତେଯେପରି, ଆଖିତରାଟି ମୋରି ଆଡ଼କୁ ଚାହିଁରହିଥିଲେ। ଓଃ . . . ଏଗୁଡ଼ାକ ଶୁକ୍ଳକେଶ ନୁହେଁ; ନିୟତିର ନିର୍ଦ୍ଦୟତାର ଅଟ୍ଟହାସ୍ୟ।

ମୁଁ ଆଉ ସେ ଦୃଶ୍ୟ ଦେଖିପାରିଲିନାହିଁ, ଆଖି ବନ୍ଦକରି ଭାବିଲି, 'ନା . . . ଏ ପ୍ରତିବିମ୍ବ ମିଥ୍ୟା। ସେଦିନ ନିସ୍ତବ୍ଧ ରଜନୀରେ ଅଳକାକୁ ଚୁମ୍ବନ ଦେଇଥିବା ଯଯାତିର ତାରୁଣ୍ୟ ହିଁ ମୋର କାମ୍ୟ। ଏ ଶୁକ୍ଳକେଶ, ବାର୍ଦ୍ଧକ୍ୟର ଅଗ୍ରଦୂତ, ନା . . . ନା . . . ମୁଁ ତାର ସନ୍ଦେଶ ଶୁଣିବାକୁ ପ୍ରସ୍ତୁତ ନୁହେଁ। ମୁଁ ମନେମନେ ଅତୀତ ଆଡ଼କୁ ପଳାଇଗଲି। ଅତୀତ . . . ସୁଦୂର ଅତୀତ . . . ଧାଇଁ ଧାଇଁ ମୁଁ ଅଳକା ନିକଟରେ ଯାଇ ପହଞ୍ଚିଲି। ସେଦିନ ସୁନେଲି ସନ୍ଧ୍ୟାରେ ମୁଁ ପ୍ରଥମେ ଦେଖିଥିଲି ଅଳକାର ସ୍ୱର୍ଣ୍ଣିମ କେଶରାଶି। ଏ ପର୍ଯ୍ୟନ୍ତ ଶହଶହ ଯୁବତୀଙ୍କର ସୌନ୍ଦର୍ଯ୍ୟ ମୁଁ ଲୁଟିସାରିଲିଣି; କିନ୍ତୁ ସେ ସ୍ୱର୍ଣ୍ଣକେଶୀ ଯୁବତୀ . . .

ଦର୍ପଣରୁ ମୁହଁ ଫେରାଇନେଇ ମୁକୁଳିକା ଆଡ଼କୁ ଚାହିଁ ପଚାରିଲି– "ତୁମର ସେ କଳିକାଟି କେଉଁଠି?"

"ରଙ୍ଗମହଲରେ ମହାରାଜ !"

"ତାର କେଶ ସୁନେଲୀ ରଙ୍ଗ . . . ?"

ମୁକୁଳିକା ଭାବିଲା– ମୁଁ ବୋଧହୁଏ ମଦନିଶାରେ ଏଣୁତେଣୁ କ'ଣ ଗୁଡ଼ାଏ ଗପିଚାଲିଛି। ସେ କେବଳ ହସିଲା ଏବଂ ଶୀଘ୍ର ଯାଇ ରଙ୍ଗମହଲର ଦ୍ୱାର ଖୋଲିଦେଲାରୁ ପଲଙ୍କ ଉପରେ ବସିଥିବା ତରୁଣୀଟି ଛିଡ଼ାହୋଇ ମୋ ଆଡ଼କୁ କଟାକ୍ଷ ହାଣି ଚାହିଁବାରେ ଲାଗିଲା।

ମୁକୁଳିକା ଧୀରେ ବାହାରୁ ଦ୍ୱାର ବନ୍ଦକରିଦେଲା। ମୁଁ ସେହି ତରୁଣୀ ଆଡ଼କୁ ଆଗେଇଚାଲିଲି। ତାର ସୌନ୍ଦର୍ଯ୍ୟ ଦେଖି ମୋର ମନେହେଲା; ସତେଯେପରି, କୌଣସି ଗୋଟିଏ ଅପ୍ସରାର ମୂର୍ତ୍ତିକୁ ବିହିବିଧାତା ସୁନ୍ଦରୀ-ନିର୍ମାଣକାରୀ କୁନ୍ଦରେ ବସାଇ କୁନ୍ଦିଦେଇଛି। ତରୁଣୀଟି ନିର୍ଜୀବ ମୂର୍ତ୍ତିପରି ଛିଡ଼ାହୋଇଥିଲା। ମୁଁ ମନେମନେ ତାର ସୌନ୍ଦର୍ଯ୍ୟ ଉପଭୋଗ କରି ଭାବିଲି, ନିଶ୍ଚୟ ଏ ମୋରି ପରଶରେ ଚଞ୍ଚଳ ହୋଇଉଠିବ। ମୁଁ ଯାଇ ତା' କାନ୍ଧରେ ହାତ ରଖିଲି। ସେ ଟିକିଏ ସଙ୍କୋଚ୍ କରି ମୋ ଆଡ଼କୁ ମୁଗ୍ଧ ନୟନରେ ଚାହିଁରହିଲା। ତା'ର କଟାକ୍ଷ, ଅଙ୍ଗଶୋଭା, କାମଚେଷ୍ଟା ମୋ ଶରୀରକୁ ବିଚ୍‌ଳିତ କରିଦେଲା; ମୁଁ ବ୍ୟାକୁଳ ହୋଇ ତାକୁ ଭୁଜବନ୍ଧନରେ ବାନ୍ଧିନେବାଲାଗି ଦୁଇହାତ ପ୍ରସାରିତ କରିଦେଲି।

ଏହି ସମୟରେ ମୁକୁଳିକା 'ମହାରାଜ' 'ମହାରାଜ' ବୋଲି ଚିତ୍କାରକରି ଧାଇଁଆସିଲା। ଏ କି ବିପଦ ଆସି ଉପସ୍ଥିତ ହେଲା ? କ'ଣ ଅଶୋକବନରେ ନିଆଁଲାଗିଗଲା କି ? ମୁଁ ବିରକ୍ତ ହୋଇ ପଚାରିଲି, "କ'ଣ ହେଲା ?"

ସେ ଦ୍ୱାର ଆଢୁଆଳରେ ଛିଡ଼ାହୋଇ ଧୀରେ କହିଲା– "ବାହାରେ ଅମାତ୍ୟ ଛିଡ଼ାହୋଇଛନ୍ତି।"

"ତାଙ୍କ ସହିତ ସାକ୍ଷାତ୍ କରିବା ଲାଗି ମୋର ସମୟ ନାହିଁ।"

"ସେ ଅନେକ ସମୟ ହେଲା ଆସିଲେଣି; କୌଣସିମତେ ରାଜିହେଉନାହାନ୍ତି। କହୁଛନ୍ତି– ଯୁବରାଜଙ୍କୁ ଶତ୍ରୁମାନେ ବନ୍ଦୀ କରି ନେଇଛନ୍ତି।"

ଯୁବରାଜ . . . ଶତ୍ରୁ . . . ବନ୍ଦୀ . . . ଅଳକା . . . ସ୍ୱର୍ଣ୍ଣକେଶୀ . . . ଶୁକ୍ଳକେଶ . . . ବୃଦ୍ଧତ୍ୱ . . . ମୃତ୍ୟୁ . . .! ମଦମତ୍ତ ହସ୍ତୀର ଆକ୍ରମଣ ପରି ମୋ ହୃଦୟରେ ଏହି ଶବ୍ଦଗୁଡ଼ିକ ଖୁବ୍ ଜୋର୍‌ରେ ଆଘାତ କରିବାକୁ ଲାଗିଲେ। ଯୁଦ୍ଧଘୋଟକର ଟାପୁ ପରି ସେ ଶବ୍ଦଗୁଡ଼ିକ ମୋ କର୍ଣ୍ଣରେ ପ୍ରତିଧ୍ୱନିତ ହେଲେ। ମୋତେ ଆଉ କିଛିହେଲେ ଶୁଣାଯାଉନଥିଲା।

ଅମାତ୍ୟ କେତେ କ'ଣ କହି ଅନେକ ସମୟ ପର୍ଯ୍ୟନ୍ତ ବକ୍‌ବକ୍ ହେଲେ। କିନ୍ତୁ ବ୍ୟର୍ଥ ରାଜନୈତିକ କୌଶଳପୂର୍ଣ୍ଣ ଅମାତ୍ୟଙ୍କ କଥା ଶୁଣିବା ଲାଗି ମୁଁ ଆଦୌ ପ୍ରସ୍ତୁତ ନଥିଲି। ମୋ ମନ ଘୂରିବୁଲୁଥିଲା ରଙ୍ଗମହଲର ପଲଙ୍କ ଉପରେ ବସିଥିବା ସୁନ୍ଦରୀର ଚାରିପଟେ।

ଯଦୁ ବନ୍ଦୀହୋଇଥିବାରୁ ଦେବଯାନୀ କାନ୍ଦୁଥିଲା। କିନ୍ତୁ ମହାରାଜ ଯଯାତିଙ୍କୁ ନିଜ ମହଲରୁ ନିର୍ମମଭାବରେ ଅପମାନିତ କରି ବାହାରକରିଦେବାବେଳେ ଏଇ ଦେବଯାନୀ ମନରେ ତିଳେହେଲେ ଦୟା ମମତା ଜାତ ହୋଇଥିଲା କି ? ଗୋଟିଏ ପାଗଳ

କୁକୁରକୁ ଘରୁ ତଡ଼ିଦେଲାପରି, ସେ ନିଜର ସ୍ୱାମୀକୁ ଶୟନକକ୍ଷରୁ ତଡ଼ିଦେଇଥିଲା। ସେତେବେଳେ କ'ଣ ତା' ଆଖିରେ ଲୁହ ନଥିଲା ?

ମୋତେ ରାଜଧର୍ମ, ପିତୃଧର୍ମ ସମ୍ବନ୍ଧରେ ଚେତାଇଦେବାକୁ ଦେବଯାନୀ ଅମାତ୍ୟଙ୍କୁ ପଠାଇଥିଲା; କିନ୍ତୁ ସେ ପ୍ରଥମେ ପତ୍ନୀଧର୍ମ ପାଳନ କରୁଛି କି ନାହିଁ ଥରେ ହେଲେ ଆତ୍ମସମୀକ୍ଷା କରିଛି କି? ମନେହେଲା– ଯାଉଛି, ଧାଇଁଯାଇ ରାଜମହଲରେ ପହଞ୍ଚି ଦେବଯାନୀର କାନ୍ଧ ଧରି ଝାଙ୍କି ଦେଇ ପଚାରିବି– 'ଲଜ୍ଜାହୀନା ନାରୀ, ବିଗତ ଅଠରବର୍ଷ ମଧ୍ୟରେ ତୁ ଦିନେହେଲେ ତୋ' ସ୍ୱାମୀକୁ ମନେପକାଇଛୁ? ତାକୁ କ୍ଷମାକରି କୋଳକୁ ଟାଣିନେବା ଲାଗି କେବେହେଲେ ଚେଷ୍ଟା କରିଛୁ? ସେ ନର୍କର ପ୍ରଖର ସ୍ରୋତରେ ଭାସିଭାସି ଚାଲିଛି, ଦିନେହେଲେ ତାକୁ ଉଦ୍ଧାର କରି ଆଣିବାଲାଗି କେବେହେଲେ ଇଚ୍ଛା କରିଛୁ କି? ତୁ ଭୟଙ୍କର ସେ ପ୍ରଖର ସ୍ରୋତ ଦେଖି ଭୟ କରିଯାଇଥିଲୁ; ନୁହେଁ କି? ନା... ନା, ତା' ନୁହେଁ। ପ୍ରୀତି କାହାରିକୁ ଭୟ କରେ ନାହିଁ। ଏପରି ଭୟଙ୍କର ସ୍ଥିତିରେ ଶର୍ମିଷ୍ଠା କେବେହେଲେ ଚୁପ୍‌ଚାପ୍ ବସିରହିନଥାନ୍ତା। ପ୍ରକୃତ ସତ୍ୟ ହେଉଛି, ତୁ କେବେହେଲେ ଯଯାତିକୁ ପ୍ରେମକରିନାହୁଁ। ତୁ ଯଯାତିକୁ ଚାହିଁଛୁ ସତ୍ୟ, କିନ୍ତୁ ପ୍ରଣୟୀଭାବରେ ନୁହେଁ; କେବଳ ରାଜରାଣୀ ରୂପେ ତୋର ଅଧିକାର ଜାହିର୍ କରିବାଲାଗି। ଏବେ କାନ୍ଦୁଛୁ କାହିଁକି? ନିଜ କଲା କର୍ମର ଫଳ ଭୋଗକର! ଏଇଲେ ଚାହୁଁଚୁ ରାଜଧର୍ମ ଓ ପିତୃଧର୍ମ ଭଲଭାବରେ ପାଳିତ ହେବା ଉଚିତ। କିନ୍ତୁ ଅଠରବର୍ଷ ପରେ ଆଜି କାହିଁକି ସେ କଥା ମନେପଡ଼ିଲା? ଯେ ନିଜେ ନିଜର ଧର୍ମ ସୁଚାରୁରୂପେ ପାଳନ କରିପାରେ, ସେଇ କେବଳ ଧର୍ମପାଳନ ଲାଗି ଅନ୍ୟକୁ ଉପଦେଶ ଦେବାର ଅଧିକାରୀ। କହ, ଉତ୍ତର ଦେ ନିର୍ଲଜ୍ଜୀ! ବିଗତ ଅଠରବର୍ଷ ହେଲା ତୋ' ପତ୍ନୀଧର୍ମ କୁଆଡ଼େ ଚୁଲିକି ଯାଇଥିଲା ?

ଅମାତ୍ୟ ସେମିତି ବକ୍‌ବକ୍ ହୋଇ କେତେ କ'ଣ ବୁଝାଇ ମୋତେ ରାଜପ୍ରାସାଦକୁ ନେଇଯିବା ଲାଗି ଚେଷ୍ଟା କରୁଥିଲେ। କିନ୍ତୁ ରଙ୍ଗମହଲର ପଲଙ୍କ ଉପରେ ବସିଥିବା ତରୁଣୀର କଟାକ୍ଷ, ପଦ୍ମର ଚାରିଆଡ଼େ ଭ୍ରମରର ଗୁଞ୍ଜନ ପରି ମୋ କାନପାଖରେ ଗୁଣୁଗୁଣୁ ଶବ୍ଦ କରୁଥିଲା। ତେଣୁ ଅମାତ୍ୟଙ୍କ ଉପଦେଶ ମୋ ପକ୍ଷରେ ବିରକ୍ତିକର ହୋଇଉଠିଲା।

ଯଦୁକୁ ଉଦ୍ଧାର କରି ଆଣିବି? ପୁଣି ଯୁଦ୍ଧଭୂମିକୁ ଯିବି? ସେଠାରେ ଯଦି ମୋର ମୃତ୍ୟୁ ହୋଇଯାଏ? ନା... ନା... ଏପର୍ଯ୍ୟନ୍ତ ମୋ ଜୀବନର ପରିପୂର୍ଣ୍ଣତା ଆସିନାହିଁ; ଅଦ୍ୟାପି ମୋର ମନ ପରିତୃପ୍ତ ନୁହେଁ। ମୋର ପ୍ରଲୁବ୍ଧ ମନ, ବିକ୍ଷୁବ୍ଧ ମନ ଯୌବନ ଏପର୍ଯ୍ୟନ୍ତ ସନ୍ତୁଷ୍ଟ ହୋଇନାହାନ୍ତି। ସ୍ୱର୍ଣ୍ଣକେଶୀ ତରୁଣୀ... ଶୁକ୍ଳକେଶ... ବୃଦ୍ଧାବସ୍ଥା... ମୃତ୍ୟୁ... ନା... ନା ମୁଁ ଏଠାରୁ ବାହାରି ଯାଇ ପାରିବି ନାହିଁ; ଏ କୋମଳାଙ୍ଗୀର ଢଳଢ଼ଳ ଯୌବନକୁ ଉପଭୋଗ ନକରି ମୁଁ ମୁହୂର୍ତ୍ତକ ଲାଗି କୁଆଡ଼େ ଯାଇପାରିବିନାହିଁ। ମୁଁ ଯଦୁର ଉଦ୍ଧାର ଲାଗି ଯାଇପାରିବି ନାହିଁ।

ଅମାତ୍ୟ ବୁଝାଇ ବୁଝାଇ ଥକିପଡ଼ିଲେ; ମୁଁ ମୋ ପ୍ରଲୁବ୍ଧ ଯୌନଲାଳସାକୁ କୌଣସିମତେ ଆୟତ୍ତ କରି ପାରିଲି ନାହିଁ। ତଥାପି ଅମାତ୍ୟଙ୍କୁ କିଛି ନା କିଛି ଗୋଟିଏ ଉତ୍ତର ଦେବାକୁ ପଡ଼ିବ। ତହୁଁ ମୁଁ ଉତ୍ତରଦେଲି– "ମହାରାଣୀଙ୍କୁ କହିଦେବ

ଅମାତ୍ୟ, ଏତେଦିନ ପରେ ସେ ମୋତେ ମନେକାଇଥିବାରୁ ମୁଁ ତାଙ୍କଠାରେ ଋଣୀ . . .।''

କୂଟନୀତିର ଜାଲ କମ୍ ସୁଦୃଢ଼ ନୁହେଁ; କୂଟନୀତିଜ୍ଞମାନେ ସହଜରେ ପରାଜୟ ସ୍ୱୀକାର କରନ୍ତି ନାହିଁ। ତେଣୁ ଆହୁରି କେତେ ପ୍ରକାର ଉଦାହରଣ ଦେଇ ଅମାତ୍ୟ ମୋତେ ବୁଝାଇବାଲାଗି ବକ୍‌ବକ୍ ହେଲେ। ଶେଷକୁ ମୋର କ୍ରୋଧ ସୀମା ଲଂଘନ କଲା। ମୁଁ କଠୋର ଭାବରେ ଉତ୍ତର ଦେଇ କହିଲି– ''ଯଦୁକୁ କେବଳ କାହିଁକି, ମହାରାଣୀଙ୍କୁ ଶତ୍ରୁମାନେ ଉଠାଇନେଇଗଲେ ସୁଦ୍ଧା ମୁଁ ଏଠାରୁ ହଲ୍‌ଚଲ୍ ହେବି ନାହିଁ।'' ଏତିକି କହିଦେଇ ମୁଁ ରଙ୍ଗମହଲକୁ ଫେରିଗଲି। ମୋତେ ଦେଖିବା ମାତ୍ରେ ମୋର ଶଯ୍ୟାସଙ୍ଗିନୀ ମୁହଁ ତଳକୁ କରି ଛିଡ଼ାହୋଇଗଲା। ବିଚାରୀ ମୋତେ ଅପେକ୍ଷାକରି ମନେ ମନେ ଅସ୍ଥିର ହୋଇଉଠିଥିଲା।

କିନ୍ତୁ ମୋ ମନରେ ଶୁକ୍ଳକେଶ . . . ବୃଦ୍ଧାବସ୍ଥା . . . ମୃତ୍ୟୁ . . . ରୀତିମତ ଆନ୍ଦୋଳନ ସୃଷ୍ଟି କରିଥିଲେ। ବିଶେଷତଃ ମୋର ଶୁକ୍ଳକେଶ ମୋତେ ଅତ୍ୟନ୍ତ ବିଚ୍‌ଳିତ କରିଦେଲା। ଏ ତରୁଣୀର ଦୃଷ୍ଟି ମୋ ଶୁକ୍ଳକେଶ ଉପରେ ପଡ଼ିଗଲେ . . . ନା . . . ନା, ସେଥିରେ କାହାରି ଦୃଷ୍ଟି ପଡ଼ିବା ଉଚିତ୍ ନୁହେଁ। ଯଯାତିର ବୃଦ୍ଧାବସ୍ଥା କାହାରି ନଜରରେ ପଡ଼ିବା ଉଚିତ ହେବ ନାହିଁ। ଯଯାତି ଚିରତରୁଣ। ଚିରକାଳ ଲାଗି ସେ ତାରୁଣ୍ୟର ସ୍ୱାଦ ଉପଭୋଗ କରିବାକୁ ଚାହେଁ।

ମୁଁ ପୁଣି ଯାଇ ଦର୍ପଣ ଆଗରେ ଛିଡ଼ାହୋଇଗଲି। ମୋର ଧାରଣା ହୋଇଥିଲା, ସେ ଶୁକ୍ଳକେଶଗୁଡ଼ାକ ନିଜ ମୁହଁରେ କଳାବୋଳିସାରିଥିବେ, କିନ୍ତୁ ସେମାନେ ବେଶ୍ ଆରାମରେ ଆସ୍ଥାନ ଜମେଇ ମୋ ଆଡ଼କୁ ଚାହିଁ ମୁଚୁକିହସା ଦେଉଥିଲେ। ଶୁକ୍ଳକେଶଗୁଡ଼ିକର ଚିନ୍ତାରେ ବିବ୍ରତ ହୋଇ ମୁଁ ଅଳକାର ସ୍ୱର୍ଣ୍ଣକେଶଗୁଚ୍ଛକୁ ମନେପକାଇଲି। ସେଦିନର ସ୍ୱର୍ଣ୍ଣିମ ସଂଧ୍ୟା, ଅଳକାର ସୁନେଲି କେଶପାଶ; ସବୁ ମୋ ସ୍ମୃତିପଟଳରେ ନାଚିଉଠିଲା। ମୁଁ ମାନସଚକ୍ଷୁରେ ପ୍ରାଣଭରି ଅଳକାର ସୁନେଲି କେଶଗୁଚ୍ଛକୁ ଚାହିଁରହିଲି।

ହଠାତ୍ କାହାର ସ୍ପର୍ଶ ମୋତେ ଚମକାଇଦେଲା। ମୁଁ ଦେଖିଲି– ସୁନ୍ଦରୀ ତରୁଣୀଟି ପଲଙ୍କ ଉପରୁ ଉଠିଆସି, ମୋ କାନ୍ଧରେ ହାତ ରଖି ମୋ ଛାତି ଉପରକୁ ଆଉଜିପଡୁଛି। ତା'ର କଟାକ୍ଷପାତ ଫଳରେ ମୁଁ ବିଚ୍‌ଳିତ ହେଉନଥିବାର ଲକ୍ଷ୍ୟ କରି ସେ ନୂତନ ଉପାୟ ଆରମ୍ଭ କରିଦେଇଛି।

ମୁଁ ହଠାତ୍ ପ୍ରକୃତିସ୍ଥ ହୋଇ ତାର କେଶପାଶକୁ ଚାହିଁଦେଲି। ସେଠାରେ ଗୋଟିଏ ହେଲେ ସୁନେଲି କେଶ ନଦେଖି ମୁଁ ବିଚ୍‌ଳିତ ହୋଇପଡ଼ିଲି। ଶେଷକୁ ତାକୁ ଜୋର୍‌ରେ ଦୂରକୁ ଠେଲିଦେଇ କହିଲି– ''ଯାଃ . . . ବାହାରି ଯା' ଏଠାରୁ।'' ସେ ମୋ ବ୍ୟବହାର ଦେଖି ହଠାତ୍ କିଛି ବୁଝିପାରିଲା ନାହିଁ। ତେଣୁ ବିଚାରୀ କାକୁତିମିନତିପୂର୍ଣ୍ଣ ଚାହାଣିରେ ଥରେ ମୋ ମୁହଁକୁ ଚାହିଁ, ପୁଣି ତଳକୁ ମୁହଁପୋତି ଆଖିରୁ ଲୁହଧାର ଝରାଇବାକୁ ଲାଗିଲା। ମୁଁ ଚିତ୍କାର କରିଉଠିଲି– ''ମୁକୁଳିକା . . .''

ମୁକୁଳିକା ଧାଇଁ ଆସି ପଚାରିଲା – ''କ'ଣ ହେଲା ମହାରାଜ ?''

''ତୋର ଏ ଫୁଲଟାକୁ ନେଇ ବାହାରକୁ ଫିଙ୍ଗିଦେ।''

''କାହିଁକି ? କ'ଣ ହେଲା ମହାରାଜ ?''

''ମୋ ପସନ୍ଦ କ'ଣ ତୁ ଜାଣିନୁ ?''

"ଜାଣିଛି ମହାରାଜ, ସେହି ଅନୁସାରେ ଏକାବେଳକେ ତାଜା ଫୁଲ ତୋଳି ଆଣିଛି।"

ମୁଁ ସେ ତରୁଣୀ ପାଖକୁ ଯାଇ ତା' କେଶପାଶରେ ହାତ ବୁଲାଇ କହିଲି "କାହିଁ, ଏଥିରେ ଗୋଟେ ହେଲେ ସୁନେଲି କେଶ ନାହିଁ। ମୋତେ ସ୍ୱର୍ଣ୍ଣକେଶୀ ତରୁଣୀ ଦରକାର।"

"ମୁଁ ଗୁରୁ ମହାରାଜଙ୍କୁ ଜଣାଇଦେଉଛି ମହାରାଜ।"

"ତୁ ଜଣାଇଦେ ବା ନ'ଦେ, ମୋର କିଛି ଯାଏ ଆସେ ନାହିଁ। ମୋତେ ସ୍ୱର୍ଣ୍ଣକେଶୀ ରମଣୀ କେବେ ମିଳିବ କହ ? କାଲି ମିଳିବ ?"

"କାଲି କେଉଁଠୁ ଆସିବ ? ମହାରାଜଙ୍କର ଏ ଇଚ୍ଛା ପୂରଣ କରିବା ଲାଗି ସମୟ ଦରକାର। ଆପଣ ଟିକିଏ ଧୈର୍ଯ୍ୟ . . .।"

"ମୁଁ ଧୈର୍ଯ୍ୟଫୈର୍ଯ୍ୟ କିଛି ଜାଣେନାହିଁ। ଏତେ ବର୍ଷ ହୋଇଗଲା, ମୁଁ ବରାବର କହିଆସୁଛି; ତୁ ଗୋଟିଏ ହେଲେ ସ୍ୱର୍ଣ୍ଣକେଶୀ ରମଣୀ ଆଣି ଯୋଗାଇ ପାରିଲୁ ନାହିଁ।"

ମୁକୁଳିକା ହାତଯୋଡ଼ି କହିଲା – "ମହାରାଜ, ଆଉ ମାତ୍ର ପନ୍ଦରଦିନ ସମୟ ଦିଅନ୍ତୁ, ଯା'ରି ମଧ୍ୟରେ କୌଣସିମତେ ଆପଣଙ୍କ ମନଲାଖି ଫୁଲଟିଏ ତୋଳିଆଣିବୁ।"

"ହେଉ, ଠିକ୍ ଅଛି। ଆଜି ଅମାବାସ୍ୟା, ଆଗାମୀ ପୂର୍ଣ୍ଣିମା ପର୍ଯ୍ୟନ୍ତ ସମୟ ଦେଲି। ଯଦି ସେଦିନ ମୋର ଇଚ୍ଛା ପୂରଣ ନ ହୁଏ, ତେବେ ତୋତେ ଓ ତୋ'ଗୁରୁମହାରାଜଙ୍କୁ ଗଧ ଉପରେ ବସାଇ ନଗର ପରିକ୍ରମା କରାଇଦେବି।"

ମୁକୁଳିକା ହାତଯୋଡ଼ି ଆଗରେ ଛିଡ଼ାହୋଇଥିଲା; ମୁଁ ତା' ଉପରେ ବିରକ୍ତ ହୋଇ କହିଲି – "ଯାଃ, ଏଠାରୁ ଯାଉନାହୁଁ କାହିଁକି ? ସେ ଅମାତ୍ୟଟା ଆସି ଦି'ଚାରି ଘଡ଼ି ମୋ ମୁଣ୍ଡ ବିଗାଡ଼ିଦେଇଗଲା; ଆଉ . . . ତୁ ଏଠାରେ ଛିଡ଼ାହୋଇ ମୋ . . . ! ଯାଃ . . . ଚାଲିଯା . . ."

ପରଦିନ ମୋ ଉଠିବାବେଳକୁ ସୂର୍ଯ୍ୟ ଖୁବ୍ ଉପରକୁ ଉଠିଆସିଲେଣି। ଉଠିବା ମାତ୍ରେ ମୁଁ ଯାଇ ଦର୍ପଣ ଆଗରେ ଛିଡ଼ାହାଇ ମୋ କେଶଆଡ଼କୁ ଚାହିଁ ଅବାକ୍ ହୋଇଗଲି। ରାତିରେ ଦେଖିଥିବା କେତୋଟି ଧଳାକେଶ ସାଥିରେ ଆଉ କେତୋଟି ଧଳା କେଶ ମୋ ମୁଣ୍ଡ ଉପରେ ଉଦ୍ଦଣ୍ଡ ନୃତ୍ୟ କରିଚାଲିଥିଲେ।

ଅନ୍ୟମନସ୍କ ଭାବରେ ମୁଁ ଯାଇ ପଲଙ୍କ ଉପରେ ଶୋଇପଡ଼ି ଏକଡ଼ ସେକଡ଼ ହେବାକୁ ଲାଗିଲି। ମୋ ମୁଣ୍ଡରେ କେତେ ପ୍ରକାର ବିଚାର ଖେଳିଯାଇ ମୋତେ ବିବ୍ରତ କରିପକାଇଲା। ଯା' ମଧ୍ୟରେ ଶର୍ମିଷ୍ଠାର ଚିନ୍ତା ଜାଗ୍ରତ ହୋଇଗଲା। ବାର୍ଦ୍ଧକ୍ୟର ଚିନ୍ତା, ମୃତ୍ୟୁର ଭୟ, ଜୀବନର ଅତୃପ୍ତତା ପ୍ରଭୃତି କେତେ କେତେ ଦୁଃଖ ତା'ର ଉପସ୍ଥିତିରେ ଉପଶମ ହୋଇଯାଆନ୍ତା। ମୁଁ ବିନା ସଙ୍କୋଚରେ ସବୁ କିଛି ତା' ଆଗରେ ମନ ଖୋଲି କହିଦେଇପାରନ୍ତି। ମୋ ଅନ୍ତରର ବହ୍ନି ଶର୍ମିଷ୍ଠାର ଅଶ୍ରୁଧାରାରେ ଆଖି ପିଛଡ଼ାକେ ଲିଭିଯାଆନ୍ତା। କିନ୍ତୁ ଏବେ ମୋର ଚତୁର୍ଦ୍ଦିଗ ଶୂନ୍ୟ; ସଂସାରରେ ମୁଁ ଏକାକୀ; ହଁ . . . ପ୍ରକୃତରେ ମୋର ସାହା ଭରସା କେହି ନାହିଁ।

ମୁଁ ପୁଣି ଭାବିଲି – ଦୀର୍ଘ ଅଠରବର୍ଷକାଳ ବିଳାସବ୍ୟସନର ଦରିଆ ସନ୍ତରଣ

କରି ମଧ୍ୟ ଆଜି ସୁଦ୍ଧା ମୋର ମନ ପରିତୃପ୍ତ ହୋଇପାରୁନାହିଁ କାହିଁକି? ପ୍ରତିଦିନ କ୍ଷଣେକ୍ଷଣେ ନୂତନ ଶଯ୍ୟାସଙ୍ଗିନୀ ପାଇ ମଧ୍ୟ ମୋର ଉଗ୍ର କାମବାସନା ମେଣ୍ଟୁନାହିଁ କାହିଁକି? ହସ୍ତିନାପୁରର ପ୍ରତାପଶାଳୀ ସମ୍ରାଟ୍ ହୋଇଥିଲେ ସୁଦ୍ଧା ମୁଁ ନିଜକୁ ଏତେ ଅସହାୟ ମନେକରୁଛି କାହିଁକି? ତା'ହେଲେ ଜୀବନ କ'ଣ? ମଣିଷ କାହିଁକି ଜନ୍ମଗ୍ରହଣ କରେ? ତା'ର ମୃତ୍ୟୁ ହୁଏ କାହିଁକି? ଜୀବନର ଚରମ ଲକ୍ଷ୍ୟ କ'ଣ? ତା'ହେଲେ କ'ଣ ଜନ୍ମ, ମୃତ୍ୟୁ, ଯୌବନ ଓ ବୃଦ୍ଧାବସ୍ଥା ଗୋଟିଏ ମୁଦ୍ରାର ଦୁଇଟି ପାଖ ନୁହେଁ କି? ଦିନ ପରେ ରାତି, ରାତି ପରେ ଦିନ ପରି ଜନ୍ମ, ଯୌବନ, ବୃଦ୍ଧାବସ୍ଥା ନିୟତିର ଅଲଂଘନୀୟ ନିର୍ଦ୍ଦେଶ ନୁହେଁ କି? ଏହା କ'ଣ ପ୍ରକୃତରେ ସ୍ୱାଭାବିକ? ତା'ହେଲେ ମଣିଷ ବୃଦ୍ଧତ୍ୱର ପରିପ୍ରକାଶ ଦେଖି ଓ ମୃତ୍ୟୁର ନାମ ଶୁଣି କମ୍ପିଉଠେ କାହିଁକି?

ମଣିଷ କ'ଣ ପ୍ରେମକୁ ଆଶ୍ରୟ କରି ବଞ୍ଚିରହେ? ସେ ପ୍ରେମର ପରିଭାଷା କ'ଣ?

ବାପା ମୃତ୍ୟୁଶଯ୍ୟାରେ ପଡ଼ିଥିବା ସମୟର ଗୋଟିଏ ଘଟଣା। ଗୋଟିଏ ପାଖରେ ଧନୁଶର, ଅନ୍ୟପଟେ 'ଜୟତୁ ଜୟତୁ ନହୁଷ' ଖୋଦିତ ହୋଇଥିବା ସ୍ୱର୍ଣ୍ଣମୁଦ୍ରା। ନା . . . ନା . . . ୟା' ନୁହେଁ। ଜୀବନର ମୁଦ୍ରା ଉପରେ ଲେଖାଯାଇଥିବା ଧନୁର୍ବାଣ ଯମରାଜର ପ୍ରତୀକ; ଅନ୍ୟପଟେ ଆହତ ମାନବର ଯଶୋଗାଥା। ଆଚ୍ଛା, ବାପା କ'ଣ ମୋତେ ଓ ଯତିକୁ ପ୍ରାଣଠାରୁ ଅଧିକ ଭଲପାଉଥିଲେ? ଯଦି ଏହା ସତ୍ୟ ହୋଇଥାଏ, ତେବେ ସେ ଇନ୍ଦ୍ରାଣୀଙ୍କୁ ପାଇବା ଲାଗି ବ୍ୟାକୁଳ ହୋଇଥିଲେ କାହିଁକି? ନିଜ ପିଲାମାନଙ୍କ ଜୀବନ ଅଭିଶପ୍ତ ହୋଇଯିବାର ଭୟ ତାଙ୍କ ମନରେ ଜାଗ୍ରତ ହେଲାନାହିଁ କାହିଁକି? ନା . . . ନାଃ. . . ପ୍ରୀତି, ମମତା, ବାତ୍ସଲ୍ୟ କୌଣସିଟି ସତ୍ୟ ନୁହେଁ। ଏଗୁଡ଼ିକ ସବୁ ଦୁନିଆରେ ଗୋଟିଏ ଗୋଟିଏ ନକଲି ପ୍ରଲୋଭନ। ମଣିଷ କେବଳ ନିଜର ସୁଖପାଇଁ ବଞ୍ଚିଛି; ନିଜ ଅହଂକାରର ପରିତୃପ୍ତି ଲାଗି ଜୀବନ ଧାରଣ କରିଛି। ୟା' ଯଦି ସତ୍ୟ ହୋଇନଥା'ନ୍ତା ଏବଂ ମାଆ ମୋତେ ପ୍ରକୃତରେ ଭଲପାଉଥାଆନ୍ତେ, ତେବେ ସେ କେବେହେଲେ ଅଳକାକୁ ଗୁପ୍ତଗୃହରେ ବନ୍ଦିନୀ କରି ହତ୍ୟା କରିନଥାନ୍ତେ। ସେ ନିଶ୍ଚୟ ଚିନ୍ତା କରିଥାନ୍ତେ ଯେ ଏ ହତ୍ୟା ଫଳରେ ଯଯାତିର ମନରେ ତୀବ୍ର ଆଘାତ ଲାଗିବ।

ବାପା-ମାଆଙ୍କର ସ୍ନେହ ହେଉ କିମ୍ବା ପତିପତ୍ନୀର ପ୍ରେମ ହେଉ, ସବୁ କିଛି ନିପଟ ଛଳନା; କେବଳ ଗୋଟିଏ ଅଭିନୟ। ମଣିଷ ଆନ୍ତରିକତାର ସହିତ ନିଜକୁ ପ୍ରେମକରେ, ନିଜ ଅହଂକାରର ପରିତୃପ୍ତିକୁ ଭଲପାଏ; ନିଜ ଶରୀରକୁ ସୁଖୀ ରଖିବାଲାଗି ସବୁକିଛି ଉପାୟ ଚିନ୍ତାକରେ। ପ୍ରେମର ଏ ନିପଟ ସ୍ୱାର୍ଥରୂପ, ସ୍ତ୍ରୀ-ପୁରୁଷଙ୍କ ତଥାକଥିତ ସ୍ନେହବନ୍ଧନରେ ଦୂରହୁଏନାହିଁ କିମ୍ବା କୋମଳ ଆକର୍ଷଣ ଫଳରେ ପରିବର୍ତ୍ତିତ ହୁଏନାହିଁ। ଦେବଯାନୀଠାରୁ ଜୀବନରେ ମୁଁ ପାଇଲି କ'ଣ? ଘଡ଼ିଏ ଦି'ଘଡ଼ି ଶାରୀରିକ ସୁଖକୁ କ'ଣ ପ୍ରେମ ନାମରେ ଅଭିହିତ କରାଯାଇ ପାରିବ? ନିରଙ୍କୁଶ ଭାବରେ ବାସନାର ପରିତୃପ୍ତିକୁ ମଧ୍ୟ ପ୍ରେମ ବୋଲି କୁହାଯାଇପାରିବ ନାହିଁ। ନା . . . ନାଃ. . . ପ୍ରେମ ଗୋଟିଏ ସୁନ୍ଦର ଅପାର୍ଥିବ ବସ୍ତୁ ଏବଂ ବାସନା ଅନ୍ୟ ଏକ ପ୍ରକାର। ସ୍ତ୍ରୀ-ପୁରୁଷଙ୍କ ବାସନାର ସତ୍ତା ରହିଛି ସତ୍ୟ; କିନ୍ତୁ ତାହା ଯଜ୍ଞବେଦୀର ଅଗ୍ନିପରି ବିଶୁଦ୍ଧ ଏବଂ ପବିତ୍ର। ତାହା ଧର୍ମର ସମସ୍ତ ମର୍ଯ୍ୟାଦାକୁ ପାଳନ କରିଥାଏ। ମୁଁ ସେହି ପ୍ରେମାଗ୍ନିର

ପବିତ୍ରତା ରକ୍ଷା କରି ପାରିଲି ନାହିଁ। ଗତ ଅଠରବର୍ଷ ଧରି ମୁଁ ଜଙ୍ଗଲରେ ବନାଗ୍ନି ହୋଇଉଠିଛି। ଏହି ଦାବାନଳରେ କେତେ ନିରୀହ କୋମଳପ୍ରାଣ ଦଗ୍ଧ ହୋଇଯାଇଛନ୍ତି। କେତେ ଯେ କୋମଳ ବଲ୍ଲରୀ ତଥା ସୁଗନ୍ଧିତ ପୁଷ୍ପୋଦ୍ୟାନ ଜଳପୋଡ଼ି ଛାରଖାର ହୋଇଯାଇଛି ତାର ଇୟତ୍ତା ନାହିଁ।

ତା'ହେଲେ ଏହା କ'ଣ ମୋର ପଶ୍ଚାତ୍ତାପ ? ନା... ତା' ନୁହେଁ। କାଲି କେତୋଟି ଶୁକ୍ଳକେଶ ଦେଖିବାପରେ ମୋ ମନରେ ଯେଉଁ ବୈରାଗ୍ୟ ଜାତହୋଇଛି ଏ ତା'ରି ଅଭିବ୍ୟକ୍ତି। କିନ୍ତୁ ଗତ ଅଠରବର୍ଷ ଧରି ଯାହା କିଛି ମୁଁ କରିଯାଇଛି, ସେଥିରେ କ'ଣ ଏକୁଟିଆ ମୋ'ରି ଦୋଷ ? ଦେବଯାନୀ କେବଳ ନିଜକୁ ଭଲପାଇଲା; ତେଣୁ ମୁଁ ମଧ୍ୟ ନିଜର ସୁଖ ପାଇଁ ଏଣେତେଣେ ଧାଁ-ଦୌଡ଼ କଲି। ସେହି ଧାଁ-ଦୌଡ଼ ମଧ୍ୟରେ ମୋ ପାଦତଳେ ଯଦି କେତୋଟି କୋମଳ ଲତା ଦଳି ଚକଟି ହୋଇଗଲେ, ସେଥିରେ ମୋର ଉପାୟ କ'ଣ ଥିଲା ?

ଅଠରବର୍ଷ କାଳ ମୁଁ ସୁଖର ପଛେ ପଛେ ଅନୁଧାବନ କଲି; ସୁଖ ପାଇବା ଲାଗି ଅନବରତ ମୁଁ ଉପଭୋଗରେ ମଜ୍ଜିରହିଲି; ତଥାପି ମୁଁ ଅତୃପ୍ତ କାହିଁକି ? ଅଗଣିତ କ୍ଷଣଭଙ୍ଗୁର ସୁଖର ମହାସିନ୍ଧୁ ମଧ୍ୟରେ ବିନ୍ଦୁଏ ହେଲେ ପରିତୃପ୍ତିର ଶାଶ୍ୱତ ଜଳ ନାହିଁ କାହିଁକି ? ପ୍ରକୃତରେ ସୁଖ କଅଣ ? ସୁଖ ଗୋଟିଏ ପ୍ରଜାପତି ! ଏ ଫୁଲରୁ ସେ ଫୁଲକୁ ଉଡ଼ି ମଧୁ ଆହରଣ କରିବା ତା'ର ପ୍ରକୃତି। ସେ କେବେହେଲେ ଗରୁଡ଼ ହୋଇପାରିବନାହିଁ। ପ୍ରଜାପତି ସ୍ୱର୍ଗରୁ ଅମୃତ ଆଣିପାରିବନାହିଁ; ସେହିପରି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କେବଳ ଗରୁଡ଼ କରିପାରିବ। ପ୍ରଜାପତି ଓ ଗରୁଡ଼, କ୍ଷଣିକ ସୁଖ ଓ ଅବିନାଶୀ ଆନନ୍ଦ; ଦୁଇଟିଯାକ ସମ୍ପୂର୍ଣ୍ଣ ପୃଥକ୍। ମୁଁ ସାରାଜୀବନ ସୁଖ ପଛରେ ଧାଇଁଧାଇଁ ବିତାଇଦେଲି; କିନ୍ତୁ ଆନନ୍ଦ ପାଇପାରିଲି ନାହିଁ।

ଆନନ୍ଦ କ'ଣ ? କେଉଁ ଉପାୟରେ ଆନନ୍ଦ ଲାଭକରାଯାଇପାରେ ? ଆନନ୍ଦପ୍ରାପ୍ତି ସହିତ ଶାରୀରିକ ସୁଖର ସମ୍ବନ୍ଧ ଅଛି କି ? ପରମାତ୍ମାଙ୍କ ଅନୁସନ୍ଧାନରେ ବାହାରି, ଶେଷକୁ ପାଗଳ ହୋଇଯାଇଥିବା ଯତି କି ଆନନ୍ଦ ପାଇଲା ? ମନ୍ଦାର ଯେଉଁ ଯୁବକର ଶବ ଶ୍ମଶାନରେ ଦେଖାଇଥିଲା ସେ କି ଆନନ୍ଦ ପାଇଲା ?

ନା... ଗତ ଅଠର ବର୍ଷ ଧରି ମୁଁ ଯେପରି ଭାବରେ ସ୍ୱେଚ୍ଛାଚାରିତାର ସହ ଜୀବନ ଯାପନ କଲି; ସେଥିରେ ମୋର ଦୋଷ କିଛି ନାହିଁ ! ହଁ... ମୁଁ କେବଳ ନିଜକୁ ସ୍ନେହ କରିଛି, ନିଜର ସୁଖପାଇଁ ସବୁକିଛି କରିଛି; ଏଥିରେ ମୋର ଦୋଷ କେଉଁଠି ? ତା'ହେଲେ... ମଣିଷ କ'ଣ କେବଳ ନିଜକୁ ହିଁ ଭଲପାଏ ? ଅଳକା, ମାଧବ, କଚ ପ୍ରଭୃତି ଯେଉଁମାନେ ମୋତେ ଭଲପାଉଥିଲେ, ତାହା କ'ଣ ସ୍ୱାର୍ଥଜଡ଼ିତ ସ୍ନେହ ?

ଆଉ ଶର୍ମିଷ୍ଠା... ତା'ରି ପ୍ରେମ...? ଓଃ... ସେ ଗତ ଅଠରଟିବର୍ଷ କିପରି କଟାଇଥିବ ? କେଉଁ ବଣ-ଜଙ୍ଗଲରେ ଜୀବନ ବିତାଇଥିବ ? କାହାର ଦାସୀ ହୋଇ ପୁରୁକୁ ପାଳନକରିଥିବ ? ସେ କ'ଣ ପ୍ରକୃତରେ ଜୀବନରେ ଥିବ ? କିମ୍ବା...।

ମାଧବ ହାତରେ ଦେଇଥିବା ତା'ର ଅନ୍ତିମ ସନ୍ଦେଶ– 'ଶର୍ମିଷ୍ଠା ବରାବର ମନରେ ମହାରାଜଙ୍କ ଶ୍ରୀଚରଣର ପୂଜାକରୁଥିବ...'। ଜଙ୍ଗଲରେ ଫଳମୂଳ ଖାଇ

ମୋ ଚରଣରେ ଧ୍ୟାନ ରଖିଥିବ ବିଚାରୀ ! ଆଉ ମୁଁ ଏଠାରେ ତା'ରି ପବିତ୍ର ସ୍ମୃତିକୁ ଖଣ୍ଡିଧନ କରି ଗୋଟିକ ପରେ ଗୋଟିଏ ମଦ୍ୟପୂର୍ଣ୍ଣ ପାତ୍ର ନିଃଶେଷ କରିଦେଉଛି। ତା'ର ଅଧରାମୃତରେ ପବିତ୍ର ମୋର ଅଧରକୁ ଅନ୍ୟର ଅପବିତ୍ର ଅଧରରେ ମିଶାଇଦେଉଛି।

ମୁଁ ଶର୍ମିଷ୍ଠା ପରି ଏକନିଷ୍ଠ ପ୍ରେମର ପୂଜକ ହୋଇପାରିଲି ନାହିଁ କାହିଁକି ? କଚ ପରି ସଂଯମୀ ହେବା ମୋ ପକ୍ଷରେ ଅସାଧ୍ୟ ହେଲା କାହିଁକି ?

ତା'ହେଲେ ବାସନା କ'ଣ ମନୁଷ୍ୟର ଏକମାତ୍ର ଦୋଷ ? ନା, ବାସନା ମଣିଷ ଜୀବନର ଆଧାର। ତା'ହେଲେ, ମୋର ଦୋଷ ରହିଲା କେଉଁଠି ? ଅବଶ୍ୟ ମୋର ବାସନାରେ ନିରଙ୍କୁଶ ସ୍ୱାର୍ଥର ଆରାଧନା କରାଯାଇଛି ଏବଂ ମୁଁ ସୁଖର ସନ୍ଧାନରେ ସାମାଜିକ ମର୍ଯ୍ୟାଦା ଲଂଘନ କରିଛି।

ମୋ'ରି ପରି କଚ ମଧ୍ୟ ବିନା ପ୍ରୟାସରେ ସୁଖଭୋଗ କରିପାରିଥା'ନ୍ତା ! ସଂଜୀବନୀ ବିଦ୍ୟା ହାସଲ ପରେ ସ୍ୱର୍ଗର କୌଣସି ପ୍ରକାର ସୁଖ ତା' ପକ୍ଷରେ ଆଦୌ ଦୁର୍ଲ୍ଲଭ ନଥିଲା; ସେ ଜୀବନରେ ଅବିଚଳିତ ରହି ନିଜର ପୂର୍ବ ଅବସ୍ଥାକୁ ଆଦରିନେଲା। ଏ'ଭଳି ସାମର୍ଥ୍ୟ ସେ ଲାଭକଲା କିପରି ? କଚ ଜନ୍ମରୁ ସନ୍ୟାସୀ ନଥିଲା; ସେ ଜୀବନରେ ଦେବଯାନୀକୁ ପ୍ରେମକରୁଥିଲା; କିନ୍ତୁ ନିଜ ଜାତିର ମଙ୍ଗଳ କାମନା କରି ସେ ଆତ୍ମସୁଖକୁ ଜଳାଞ୍ଜଳି ଦେଇଥିଲା। ତା'ର କର୍ତ୍ତବ୍ୟନିଷ୍ଠା, ଆତ୍ମତ୍ୟାଗ ଫଳରେ ତା' ଜୀବନ ତ ବିଫଳ ହେଲାନାହିଁ ?

ଦେବଯାନୀର ସମ୍ପର୍କ ଫଳରେ ମୁଁ ଗୃହସ୍ଥର ସୁଖ ଅନୁଭବ କଲି; ଶର୍ମିଷ୍ଠାର ସୌନ୍ଦର୍ଯ୍ୟରେ ମୁଁ ଉଦାତ୍ତ ପ୍ରେମ ତଥା ରମ୍ୟ ଜୀବନଧାରାର ଅନୁଭୂତି ଅର୍ଜନକଲି; ତଥାପି ମୁଁ ଅଦ୍ୟାପି ଅତୃପ୍ତ ରହିଛି। ଆଜି ସୁଦ୍ଧା କଚ କୋମଳାଙ୍ଗୀ ଯୁବତୀର ଅଧରାମୃତ ପାନ ନକରି ଜୀବନରେ ସଫଳ, ତୃପ୍ତ ! ଏହା କିପରି ସମ୍ଭବ ହେଉଛି ? ମୁଁ କେଉଁଠି ଭୁଲ କରିବସିଲି ?

ଏହି ଅଶୋକବନରୁ କଚ ମୋତେ ଖଣ୍ଡିଏ ପତ୍ର ଲେଖିଥିଲେ। ଆଉ ଥରେ ସେ ପତ୍ର ପାଠକରିବା ଲାଗି ଇଚ୍ଛା ହେଉଛି। କିନ୍ତୁ ରାଜପ୍ରାସାଦରେ ଅଳକାର ସୁନେଲି କେଶ ସହିତ କଚର ସ୍ୱର୍ଣ୍ଣାଭ ପତ୍ର କେଉଁ ପେଟିକାରେ ସାଇତା ହୋଇ ରହିଛି। ସେ ପତ୍ରରେ କ'ଣ ଏପରି ବିଶେଷତ୍ୱ ଥିଲା ? ଅତ୍ୟଧିକ ଭାବିବା ଫଳରେ ମୁଁ ପାଗଳ ହୋଇଯିବିନାହିଁ ତ ? ନା ... ସବୁକଥା ମୋର ସ୍ପଷ୍ଟ ମନେଅଛି ...। ଛାଡ଼ ... ମନ୍ଦାର ଆଗାମୀ ପୂର୍ଣ୍ଣିମା ସୁଦ୍ଧା ସ୍ୱର୍ଣ୍ଣକେଶୀ ଯୁବତୀ ଆଣି ଯୋଗାଇଦେବ; ନୋହିଲେ ...।

ସୁନେଲି କେଶ, ସ୍ୱର୍ଣ୍ଣାଭ ପତ୍ର ! ଆଚ୍ଛା, ସେ ପତ୍ରପାଠଦ୍ୱାରା ମୋ ମନକୁ କ'ଣ ଶାନ୍ତି ମିଳିବ ? ତା'ହେଲେ ଯାଉଛି ପତ୍ରଟିକୁ ନେଇଆସିବି; ନୋହିଲେ ଦେବଯାନୀ କେବେହେଲେ କାହାରି ହାତରେ ସେ ପତ୍ର ପଠାଇବ ନାହିଁ। ରାଜମହଲକୁ ଆଉ ଯିବି ? ନା ... ନାଃ ... ସେଦିନ ଦେବଯାନୀଠାରୁ ଅପମାନିତ ହୋଇ ରାଜପ୍ରାସାଦରୁ ବାହାରିଆସିଛି। ପ୍ରାଣ ବାହାରିଗଲେ ସୁଦ୍ଧା ଆଉ କେବେହେଲେ ସେ ପ୍ରାସାଦରେ ପାଦ ପକାଇବି ନାହିଁ।

ଅଶୋକବନରେ ବିଳାସ-ବ୍ୟସନରେ ମାତି ମୁଁ କ'ଣ ସୁଖୀ ହୋଇପାରିଛି ? ସୁନ୍ଦର ସୁଦୃଢ଼ ଖମ୍ବ ଭିତରେ ଭ୍ରମର ପଶିଯାଇ ତାକୁ ଅନ୍ତଃସାରଶୂନ୍ୟ କରିଦେବାପରି,

ଏ ଅତୃପ୍ତତା ମୋତେ ପ୍ରତି ମୁହୂର୍ତ୍ତରେ ବ୍ୟତିବ୍ୟସ୍ତ କରୁଛି। ଶୁକ୍ଳକେଶ ମୋ ମନର ମୃତ୍ୟୁ ଭୟକୁ ସ୍ୱର୍ଣ୍ଣକେଶୀ ରମଣୀର ଉପଭୋଗରୂପକ ଉନ୍ମାଦନାରେ ଉଦ୍ଦୀପ୍ତ କରିଛି ଏବଂ ଭୁଲିଯିବାଲାଗି ମୁଁ ଚେଷ୍ଟା କରୁଛି।

ସାରା ଜୀବନ ବାସନାରୂପକ ଭୂତ ମୋତେ ଗୋଡ଼ାଇଛି। କିଶୋର ଅବସ୍ଥାରେ ଅଳକା ପ୍ରତି ମୋର ପ୍ରେମ ଅତୃପ୍ତ ରହିଗଲା, ଏତେଦିନ ଧରି ମନଗହନରେ ସେ ଇଚ୍ଛା ବନ୍ଦୀ ରହିବା ପରେ, ଏବେ ଦ୍ୱିଗୁଣ ଉତ୍ସାହରେ ମାତିଉଠିଛି। ଏ'ଭଳି ବାସନା ଉପରେ ମୁଁ ବିଜୟ ହାସଲ କରିପାରିଲି ନାହିଁ କାହିଁକି? ହୁଏତ ମୁଁ ଜଣେ ସାଧାରଣ ବ୍ୟକ୍ତି ହୋଇଥିଲେ ମନକୁ ଆୟତ୍ତ କରିବା ମୋ ପକ୍ଷରେ ସହଜ ହୋଇଥା'ନ୍ତା। ମଣିଷ ଯେପର୍ଯ୍ୟନ୍ତ ସୁଖର ଅନୁସନ୍ଧାନରୁ ବିରତ ନ ହୁଏ, ସେ ପର୍ଯ୍ୟନ୍ତ ସେ ପ୍ରକୃତ ସତ୍ୟର ସନ୍ଧାନ ପାଇପାରେନାହିଁ; ଏହାହିଁ ହେଉଛି ପ୍ରକୃତିର ଶାଶ୍ୱତ ନିୟମ। ଦେବଯାନୀ ସାବଧାନତାର ସହିତ ଯଦୁକୁ ମୋ'ଠାରୁ ଦୂରେଇରଖି, ମୋ ମନର ବାତ୍ସଲ୍ୟପ୍ରେମକୁ ଅତୃପ୍ତ ରଖିଲା। ଯଦୁ ମୋ ପାଖକୁ ଯିବା ଆସିବା କରୁଥିଲେ, ମୋ ମନର ଶୂନ୍ୟତା ଅନେକ ପରିମାଣରେ ପୂରଣ ହୋଇନଥା'ନ୍ତା କି? ଯଦୁ ଆସିଲା ନାହିଁ; ପୁରୁ... ଉଃ... ପୁରୁ, ଶର୍ମିଷ୍ଠାର ଜୀବନାଧାର ପୁରୁ; ସେ ବର୍ତ୍ତମାନ କେଉଁଠି, କି ଅବସ୍ଥାରେ କାଳ କାଟୁଥିବ? ସେ ମୋ ପରି କିମ୍ବା ଶର୍ମିଷ୍ଠା ପରି ଦେଖାଯାଉଥିବ? ମୁଁ ବାସ୍ତବରେ କେଡ଼େ ନିର୍ଦ୍ଦୟ? ଗତ ଅଠରବର୍ଷ ମଧ୍ୟରେ ଥରେ ହେଲେ ତାର ଖୋଜଖବର ନେଲିନାହିଁ। ଅତ୍ୟଧିକ ବିଳାସିତା ଲାଗି ମୋ ମନ ନିତାନ୍ତ ଅକର୍ମଣ୍ୟ ହୋଇଉଠିଛି। ଏହି ଅକର୍ମଣ୍ୟତା ଫଳରେ ମୋର ମାନବତା ନଷ୍ଟଭ୍ରଷ୍ଟ ହୋଇଯାଇଛି।

ଯମୁନାଜଳରେ ଝାସଦେଇ, ଜଳନ୍ତା ନିଆଁକୁ ପଶିଯାଇ ଆତ୍ମହତ୍ୟା କରିଥିବା ମାଧବୀ ଓ ତାରକା ଏଠାକୁ ଆସିଲେ କିପରି? ମୁଁ ତ ସେ ଦୁହିଁଙ୍କ ସହିତ ନିର୍ମମ ବ୍ୟବହାର କରିନାହିଁ? ତା'ହେଲେ ସେ ଦୁହେଁ ପ୍ରାଣବିକଳରେ ଏଠାରୁ ପଳାଇଗଲେ କାହିଁକି? ମୁଁ ସୁଖର ଅନୁସନ୍ଧାନରେ ଅନ୍ଧ ହୋଇଯାଇଥିଲି; ତେଣୁ ସେ ମାର୍ଗର ଉତ୍ତରସାଧିକା ରୂପେ ଯେ ଆସି ମୋ ହାତପାହାନ୍ତାରେ ପହଞ୍ଚିଛି, ମୁଁ ଅନ୍ଧଭାବରେ ତାକୁ ଉପଭୋଗ କରିଛି।

କଚ ଜୀବନରେ ସଂଯମୀ ହୋଇପାରିଲା; ଅଥଚ ମୁଁ କାହିଁକି ହୋଇପାରିଲିନାହିଁ? କାମୁକତା ପୈତୃକ ପରମ୍ପରାରୁ ମୋତେ ଗ୍ରାସକରିଛି। ଏହାରି ଫଳରେ ମୁଁ ଅନେକ ସୁନ୍ଦରୀଙ୍କ ଉପଭୋଗ ଲାଗି ବ୍ୟାକୁଳ ହୋଇ ମୋ ଜୀବନକୁ ନଷ୍ଟକରିଦେଇଛି।

ମୁଁ ମୋର ଜୀବନପ୍ରବାହକୁ ଏପରି ବନ୍ଧନହୀନ ଭାବରେ ଛାଡ଼ିବାର ସୁଯୋଗ ଦେଲି କାହିଁକି? ଏ ପ୍ରବାହର ବିପରୀତ ସ୍ରୋତରେ ସନ୍ତରଣ କରିବାଲାଗି ମୁଁ ଚେଷ୍ଟାକଲି ନାହିଁ କାହିଁକି? ବାସନାର ସ୍ୱରୂପ ହେଉଛି, ବର୍ଷାଋତୁର କୂଳଲଙ୍ଘନକାରୀ ନଦୀପରି ପ୍ରବଳ ଏବଂ ଭାବନା ଶରତ୍‌ଋତୁର ସ୍ୱଚ୍ଛ ନଦୀର ଧାର ପରି ସୀମିତ। ମୋ ମନରେ ଅଠରବର୍ଷ ପୂର୍ବରୁ ଏ ଧାରଣା ଜାତହୋଇଥିଲେ କେଡ଼େ ମଙ୍ଗଳଜନକ ହୋଇନଥା'ନ୍ତା?

ମୁଁ ପଲଙ୍କ ଉପରେ ଆଖି ବୁଜି ଶୋଇଛି। ଅନ୍ୟ କେହି ଭାବୁଥିବ ଯେ, ମୁଁ ଗାଢ଼ ନିଦରେ ଶୋଇପଡ଼ିଛି। କିନ୍ତୁ ମୋ ମନ ମଧ୍ୟରେ ତୀବ୍ର ଆଘାତ ଦେଉଛି

ଅତୀତର ଅନେକ ସ୍ମୃତି; ମୋ ମାନସପଟଳରେ ଉଙ୍କିମାରି ମୋତେ ବ୍ୟତିବ୍ୟସ୍ତ କରିଦେଉଛନ୍ତି। ଅତୀତ ଆଡ଼କୁ ମୁହଁ ଫେରାଇ ଚାହିଁବାଲାଗି ମୋ ମନରେ ସାହସ ହେଉନାହିଁ। ଏ ପରିସ୍ଥିତିରେ ଏକମାତ୍ର ଉପାୟ ହେଉଛି– ଆତ୍ମହତ୍ୟା ! ମୁଁ ଥରିଉଠିଲି; ମୋ ମନ ମୋତେ ଚାହିଁ ହସିଉଠିଲା। ଆତ୍ମହତ୍ୟା କରିବା ଭଳି ସାହସ ଓ ଧୈର୍ଯ୍ୟ ମୋର ଅଛି କି? ସେତିକି ସାହସ ଥିଲେ ମୁଁ ଅଠରବର୍ଷ ପୂର୍ବରୁ ଆତ୍ମହତ୍ୟା କରିସାରିଥାନ୍ତି।

ମନର ଉଦାସୀନତାଠାରୁ ଦୂରରେ ରହିବା ଲାଗି ମୁଁ ବିଳାସର ଆଶ୍ରୟ ନେଲି। ମୋ ସୁଖର ପିଆଲାକୁ ସବୁବେଳେ ଢଳଢ଼ଳ କରି ରଖିବାପାଇଁ ଅନେକ ସୁନ୍ଦରୀ ଓ କୋମଳାଙ୍ଗୀ ଯୁବତୀ ଆସି ମୋ ଜୀବନରେ ଦେଖାଦେଲେ। ମୋ ଆଖି ଆଗରେ ସେମାନେ ଗୋଟିଗୋଟି ହୋଇ ଏବେ ନାଚିଉଠୁଛନ୍ତି, ସେଇ ଚମ୍ପକବରଣୀ ତନୁପାତଳୀ ଯୁବତୀଟି ମୋ ଆଡ଼କୁ ଚାହିଁ କଟାକ୍ଷ ହାଣିଦେଉଛି। ତା'ର କେଶସଜ୍ଜା କେଡ଼େ ଆକର୍ଷକ ! ତାକୁ ଆଉଁଷିଦେଲେ ମନେହୁଏ ସତେ ଅବା ପଦ୍ମିନୀର ପ୍ରିୟ ପ୍ରେମିକ ଭୃଙ୍ଗର ଗୋଟିଏ ଦଳ ! ମୋର ସ୍ପର୍ଶ ହେତୁରୁ ଏମାନେ ସମାଧିରୁ ଜାଗିଉଠି ଗୁଞ୍ଜନ ଆରମ୍ଭ କରିଦେବେ।

ଅନ୍ୟ ଶ୍ୟାମାଙ୍ଗୀ ତରୁଣୀଟି, ଆଃ... କେତେ ଉନ୍ମାଦନା ସୃଷ୍ଟିକରି ନଥିଲା ମୋ ମନରେ ! ବୋଧହୁଏ ଗତଜନ୍ମରେ ସେ ଗୋଟିଏ ଅଙ୍ଗୁରଲତା ହୋଇ ଜନ୍ମହୋଇଥିଲା। କେବଳ ତାର ଅଧରସ୍ପର୍ଶରେ ସାରା ଶରୀର ଶିହରି ଉଠୁଥିଲା; ମଧୁର ରୋମାଞ୍ଚରେ ଶରୀର ପୁଲକିତ ହୋଇଉଠୁଥିଲା। ଧୀରେଧୀରେ ସରମବୋଳା ତାର ମୁହଁଟିକୁ ଉଠାଇ, ତାର ଦର୍ପଣପରି ସୁକୋମଳ ଗଣ୍ଡରେ ଗୋଟିଏ ଚୁମ୍ବନ ଆଙ୍କିଦେଲେ ସେ ଲାଜକୁଳୀଲତାପରି ଝାଉଁଳିପଡ଼େ। ମନେହୁଏ, କଳାବଉଦଘେରା ଆକାଶ ମଧ୍ୟରୁ ଅର୍ଦ୍ଧଚନ୍ଦ୍ର ସଂପୂର୍ଣ୍ଣ ଉଜ୍ଜ୍ୱଳତାର ସହିତ ବାହାରିଆସୁଛି। ...ଆଉ... ଏ ଚତୁରୀ କଳାନିପୁଣା ପ୍ରମଦା– ଏ ତ ପ୍ରଣୟକ୍ରୀଡ଼ାରେ ମଦନଙ୍କୁ ମଧ୍ୟ ଉଚିତ ଶିକ୍ଷା ଦେଇଦେବ। ଯା' ସହିତ ନିଧୁବନରେ ମାତିଗଲେ ଜୀବନରେ କି ଆନନ୍ଦ...!

ଏହିପରି କେତେ ଅନିନ୍ଦ୍ୟସୁନ୍ଦରୀ ମୋ ଜୀବନରେ ଦେଖାଦେଇ ପୁଣି ଉଭେଇଯାଇଛନ୍ତି। ମନଭୁଲାଣିଆ କଟାକ୍ଷ, ସୁକୋମଳ ଭୁଜବଲ୍ଲରୀର ବନ୍ଧନ, ମୁଲାୟମ କେଶପାଶର ସ୍ପର୍ଶ ମୁଁ ପ୍ରାଣଭରି ଉପଭୋଗ କରିଛି। କିନ୍ତୁ ଏପର୍ଯ୍ୟନ୍ତ ସ୍ୱର୍ଣ୍ଣକେଶୀ ଯୁବତୀ ...!

ମୁକୁଳିକା ମୋ ମୁଣ୍ଡ ପାଖରେ ଛିଡ଼ାହୋଇ ଧୀରେ ପ୍ରଶ୍ନକଲା– ''ଆଜି 'କ'ଣ ମହାରାଜଙ୍କ ଦେହ ଭଲ ଲାଗୁନାହିଁ କି ?''

ମୁଁ ଆଖି ଖୋଲି ତା' ଆଡ଼କୁ ଚାହିଁଲି; ମୋ ମନର ଅତୃପ୍ତତା ବିରକ୍ତିରେ ଆତ୍ମପ୍ରକାଶକଲା। ମୁଁ ଖୁବ୍ ଚିଡ଼ିଯାଇ କହିଲି– ''ମୋତେ ଉଠାଇବା ଦାୟିତ୍ୱ କାହାର ? ମୋର ନିତ୍ୟକର୍ମ ଶେଷ କରାଇ ପ୍ରସାଧନ କରାଇବା କାହାର କର୍ତ୍ତବ୍ୟ ?''

ମୁକୁଳିକା ଡରିଡରି ଉତ୍ତରଦେଲା– ''ମୁଁ ଖୁବ୍ ସକାଳୁ ରାଜପ୍ରାସାଦକୁ ଚାଲିଯାଇଥିଲି।''

''କାହିଁକି ?''

"କାଲି ରାତିରେ ଅମାତ୍ୟ ଅସନ୍ତୁଷ୍ଟ ହୋଇ ଫେରିଯାଇଥିବାରୁ, ମହାରାଣୀଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିବ। ମୁଁ ଗରିବ ଦୁଃଖିନୀ; ମହାରାଜଙ୍କ ସେବାରେ ରହି ଜୀବିକା ନିର୍ବାହ କରୁଛି। ମହାରାଣୀଙ୍କ କୋପଦୃଷ୍ଟି ପଡ଼ିଲେ ଏ ବିଚାରୀ ଅନାଥିନୀ ହୋଇଯିବ। ତେଣୁ ମହାରାଣୀଙ୍କ ପ୍ରତିକ୍ରିୟା ଜାଣିବା ଲାଗି ସକାଳୁ ସକାଳୁ ଚାଲିଯାଇଥିଲି।"

"ସେଠାରେ କ'ଣ ଦେଖିଲ ?"

"ରାଜପ୍ରାସାଦରେ ଖୁବ୍ ଧୁମ୍‌ଧାମ୍‌ରେ ଆନନ୍ଦୋତ୍ସବ ହେଉଛି।"

"ଆନନ୍ଦୋତ୍ସବ ? କାହିଁକି ? କାରଣ କ'ଣ ? ମୁଁ ତ ଏବେ ସୁଦ୍ଧା ବଞ୍ଚିଛି ! ଆଛା . . . ହୋଇପାରେ – ଯଦୁ ବନ୍ଦୀହୋଇଯାଇଥିବାରୁ ମହାରାଣୀ ନିଜର ଏକାଧିପତ୍ୟ ପ୍ରଭାବ ଲାଗି ଆନନ୍ଦିତା ହୋଇଥିବେ।"

ମୁକୁଳିକା ଚମକିପଡ଼ି ମୋ ଆଡ଼କୁ ଚାହିଁ କହିଲା – "ଯୁବରାଜ ବନ୍ଦୀରୁ ମୁକୁଳିଗଲେଣି . . .।"

"କି ଆଶ୍ଚର୍ଯ୍ୟ କଥା ! କାଲି ରାତିରେ ଖବର ପାଇଲି ଯଦୁ ବନ୍ଦୀ; ଆଜି ପୁଣି ସକାଳୁ ସେ ମୁକ୍ତ ହୋଇଗଲାଣି ? ତେଣୁ ମୁଁ ପଚାରିଲି – "ଯୁବରାଜ ବନ୍ଦୀମୁକ୍ତ ହେଲେ କିପରି ?"

"ଶୁଣିଲି, କୌଣସି ଜଣେ ବୀରଯୁବକ ନିଜ ଜୀବନକୁ ସଙ୍କଟାପନ୍ନ କରି ଯୁବରାଜଙ୍କୁ ମୁକ୍ତକରିଆଣିଲେ। ଯୁବରାଜ ନିଜ ପ୍ରାଣରକ୍ଷାକାରୀ ଯୁବକ ସହିତ ରାଜଧାନୀକୁ ଫେରିଆସୁଥିବାର ଖବର ଗୋଟିଏ ଦୂତ ଆଣିଦେଇଛି।"

ଶତ୍ରୁ କବଳରୁ ଯଦୁର ଉଦ୍ଧାର ଖବର ଶୁଣି ମୋ ମନରେ ଆନନ୍ଦ ଜାତହେବା ଉଚିତ, କିନ୍ତୁ କେବଳ ମୋ ମୁହଁରୁ ମାତ୍ର ଚାରିଟି ଶବ୍ଦ ବାହାରିଲା – "ମୁକ୍ତହୋଇଗଲା ! ଭଲହୋଇଛି।" ମୁଁ ଏହି ଚାରିଟି ଶବ୍ଦ କହିଦେଇ ଆକାଶ ପାତାଳ କେତେ କ'ଣ ଭାବିଗଲି। ଏହି ସମୟରେ ମୁକୁଳିକା ପୁଣି କହିଲା – "ଶୁଣିଲି, ମହାରାଣୀଙ୍କ ପିତା ଖୁବ୍ ଶୀଘ୍ର ହସ୍ତିନାପୁର ଆସୁଛନ୍ତି।"

"କିଏ ? ଶୁକ୍ରାଚାର୍ଯ୍ୟ ? ସେ କାହିଁକି ଏଆଡ଼େ ଆସିବେ ? ସେ'ତ କଠୋର ତପସାଧନରେ ବସିଛନ୍ତି।"

"ଶୁଣିଲି . . . ତାଙ୍କ ତପସ୍ୟା ଶେଷହୋଇଯାଇଛି।"

ଶୁକ୍ରାଚାର୍ଯ୍ୟ ଏଠାକୁ ଆସିବେ ? ତା'ହେଲେ ମୁଁ କ'ଣ କୁଆଡ଼େ ବାହାରକୁ ପଳାଇଯିବି ? ମୁକୁଳିକା ପୁଣି କହିଲା – "ମହାରାଣୀ କଚ଼ଦେବଙ୍କୁ ମଧ୍ୟ ଡକାଇଛନ୍ତି।" ମୁକୁଳିକା ଏତିକି କହିସାରି ମୋ ପାଖକୁ ଘୁଞ୍ଚିଆସି କାନ ପାଖରେ ଫୁସ୍‌ଫୁସ୍ କରି କହିଲା – "ମହାରାଣୀ ଯୁବରାଜଙ୍କୁ ସିଂହାସନରେ ବସାଇବାର ଆୟୋଜନ କରୁଛନ୍ତି। ଶୁକ୍ରାଚାର୍ଯ୍ୟ ଓ କଚ଼ଦେବ ନୂତନ ସମ୍ରାଟ୍‌ଙ୍କୁ ଆଶୀର୍ବାଦ ଦେବା ଲାଗି . . .।"

ଦେବଯାନୀ ପୁଣି ଥରେ ମୋ ଉପରେ ପ୍ରତିଶୋଧ ନେବାକୁ ଚକ୍ରାନ୍ତ କରୁଛି। ଠିକ୍‌ଅଛି . . . ମୁଁ ରାଜଧାନୀ ତ୍ୟାଗକରି କେଉଁଆଡ଼େ ଯିବିନାହିଁ କିମ୍ବା ସ୍ୱେଚ୍ଛାରେ ସିଂହାସନ ତ୍ୟାଗକରିବିନାହିଁ। ତା'ପରେ ଭାବିଲି, ମହାରାଣୀ ଯେତେ ଆଗ୍ରହର ସହିତ ଡକାଇଲେ ମଧ୍ୟ କଚ଼ କିପରି ଆସିବେ ଯେ ? ତା'ପରେ ମୁଁ କହିଲି – "ଶୁକ୍ରାଚାର୍ଯ୍ୟଙ୍କ

ପରି କଚ୍ ମଧ୍ୟ କଠୋର ତପସାଧନରେ ବସିଥିଲେ ପରା ?''

''ତାଙ୍କର ତପସ୍ୟା ମଧ୍ୟ ଶେଷହୋଇଯାଇଛି।''

''ବାଃ, ସମସ୍ତଙ୍କର ତପସ୍ୟା ଏତିକିବେଳେ ଶେଷହୋଇଯିବାର ଥିଲା ? ଆଚ୍ଛା . . . ଏବେ ମୋ ତପସ୍ୟା ମଧ୍ୟ ଶେଷହୋଇଗଲା ବୋଲି ଜାଣ।''

ଆଶ୍ଚର୍ଯ୍ୟ ହୋଇ ପଚାରିଲା ମୁକୁଳିକା – ''ମାନେ . . .?''

''ସେ ସବୁ ବିଷୟ ପଛେ ବୁଝିବ – ପ୍ରଥମେ ମଦିରା ଦିଅ।''

''ଏତେ ସକାଳଟାରୁ . . .?''

''ଦାସୀର ଅଧିକାର ଯେତିକି ତା'ରି ସୀମା ମଧ୍ୟରେ ତୁମେ ରୁହ। ମୁଁ ଯଦି ବିଷ ମାଗିବି ତେବେ ସୁଦ୍ଧା ହୁକୁମ ପାଳନକରିବା ଦାସୀର କାମ . . .।''

ମୁକୁଳିକା ସୁରାପୂର୍ଣ୍ଣ ଭାଣ୍ଡ ପାଖକୁ ଚାଲିଗଲା। ମୁଁ ହଠାତ୍ ଦର୍ପଣଆଡ଼କୁ ଚାହିଁଦେଲି। ସେହି ଦର୍ପଣ ମଧ୍ୟରେ ଦୁଇଟି ପ୍ରତିବିମ୍ବ ମୋତେ ଦେଖାଗଲା। ପ୍ରଥମେ ଶୁକ୍ଳ ଜଟାଜୂଟଧାରୀ ଶୁକ୍ରାଚାର୍ଯ୍ୟ ମୋ ଆଖି ଆଗରେ ନାଚିଉଠିଲେ। ତାଙ୍କ ଚକ୍ଷୁରୁ ଅଗ୍ନି ନିର୍ଗତ ହେଉଥିଲା; ମୁଁ ତାଙ୍କୁ ଆଦୌ ଚାହିଁପାରିଲିନାହିଁ। ମୁଁ ତାଙ୍କ ଆଖି ଆଗରୁ କୁଆଡ଼େ ଯିବି ? ଏଠାରୁ ପଳାଇଯାଇ କେଉଁ ଅନନ୍ତ ସମୁଦ୍ର ମଧ୍ୟରେ ଥିବା ଦ୍ୱୀପରେ ରହିବା ବ୍ୟତୀତ ମୋ ପକ୍ଷରେ ଆଉ ଅନ୍ୟ ମାର୍ଗ ନଥିଲା ଏବଂ ସେହି ମାର୍ଗରେ ମୋର ସହଚାରିଣୀ ହେବ ଏକମାତ୍ର ସୁରା !

ମଦିରା ପିଆଲା ମୁହଁରେ ଲଗାଇ ଗୋଟିଏ ଢୋକ ପିଇବାପରେ ମୁଁ କହିଲି, ''ଦେଖ ମୁକୁଳିକା, ସେହି ସ୍ୱର୍ଣ୍ଣକେଶୀ ତରୁଣୀକୁ ମହଲରେ ଆଣି ରଖିବା ପରେ ମୋତେ ଉଠାଇଦେବ। ସେ ପର୍ଯ୍ୟନ୍ତ ମୋ ନିଦ୍ରାରେ ଯେପରି ବାଧା ସୃଷ୍ଟି ନହୁଏ।''

ସେ ପନ୍ଦରଦିନ କାଳ କେତେବେଳେ ସକାଳ ବା ସନ୍ଧ୍ୟା ହୁଏ ମୁଁ ଆଦୌ ଜାଣିପାରେନାହିଁ; କିନ୍ତୁ ପ୍ରତିଦିନ ରାତିରେ ଆକାଶର ନିର୍ମଳ ଚନ୍ଦ୍ରମାଙ୍କ ଆଡ଼କୁ ଚାହିଁ ମନେମନେ ଗଣୁଥାଏ – ଆଜି ଚତୁର୍ଥୀ, ଆଜି ପଞ୍ଚମୀ . . . ସପ୍ତମୀ . . . ଦଶମୀ . . . ତ୍ରୟୋଦଶୀ . . . ପୂର୍ଣ୍ଣିମା ପୂର୍ବରୁ ସ୍ୱର୍ଣ୍ଣକେଶୀ ତରୁଣୀ ଆସିଯିବ . . .। କିନ୍ତୁ ପରମୁହୂର୍ତ୍ତରେ ମୋ'ର ଆତ୍ମା ମୋତେ ଚେତାବନୀ ଶୁଣାଇଦିଏ – ''ଏଃ. . . ପାଗଳ, ତୁ କୁଆଡ଼େ ଚାଲିଛୁ ? ଏ ମାର୍ଗ ତୋତେ ନରକ ଆଡ଼କୁ ଆଗେଇନେଉଛି।'' ମୁଁ ସୁରାର ପିଆଲାରୁ ଢୋକେଢୋକେ ପିଇନେଇ ଉତ୍ତର ଦିଏ – ''ସ୍ୱର୍ଗ ନର୍କ ଗୋଟିଏ ସ୍ଥାନରେ ପାଖାପାଖି ଅଛନ୍ତି – ନା ନାହିଁ ?''

ଆତ୍ମା ଫିସ୍‌ଫିସ୍ କରି କାନପାଖରେ କହେ – ''ହଁ ଠିକ୍ କହିଛ; ଦୁହେଁଯାକ ପାଖାପାଖି ହୋଇ ରହିଛନ୍ତି।''

ତା'ପରେ ମୁଁ ହସି ହସି କହେ – ''ତା'ହେଲେ ତୁମେ ମୋ ବିଷୟରେ ଏତେ ଚିନ୍ତିତ କାହିଁକି ? ଆଜି ହୁଏତ ମୁଁ ନରକ ଆଡ଼କୁ ଆଗେଇଯାଉଛି; କାଲି ପୁଣି ସ୍ୱର୍ଗପଥରେ ଅଗ୍ରସର ହୋଇଯିବି।''

ସେ କାନ୍ଦୁଣିଆ ସ୍ୱରରେ ଆଖିରୁ ଲୁହ ଝରାଇ କହେ – ''ଆରେ ପାଗଳ, ତୋର ଧାରଣା ଭୁଲ୍। ମଣିଷ ଲାଗି ସ୍ୱର୍ଗ ଓ ନରକର ସମସ୍ତ ଦ୍ୱାର ଖୋଲାହୋଇଥାଏ; ମଣିଷ ନିଜ କାର୍ଯ୍ୟବଳରେ ସେହି ଦ୍ୱାରଗୁଡ଼ିକରୁ ଗୋଟିଏ ଗୋଟିଏ ଦ୍ୱାର ବନ୍ଦକରିଦିଏ।

ଥରେ ଯେଉଁ ଦ୍ୱାର ବନ୍ଦହୋଇଯାଏ, ତାହା ଯେତେ ଚେଷ୍ଟାକଲେ ମଧ୍ୟ ଆଉ ଖୋଲିହୁଏନାହିଁ। ଏବେ ତୋ ପାଇଁ ଆଉ ଗୋଟିଏ ମାତ୍ର ଦ୍ୱାର ଖୋଲାରହିଛି। ତେଣୁ ମୋ କଥା ମାନି ଯା; ଏବେ ମଧ୍ୟ ବେଳ ଅଛି; ତୁ ସେହି ଦ୍ୱାରଟିକୁ ନିଜ ହାତରେ ବନ୍ଦକରିଦେବାକୁ ଚେଷ୍ଟା କରନା।''

ମୁଁ ଏ ପ୍ରକାର ଚେତାବନୀକୁ ସୁରାର ପିଆଲାରେ ବୁଡ଼ାଇଦେଇପାରିଥାନ୍ତି; କିନ୍ତୁ ପ୍ରତିଦିନ ରାତ୍ରିରେ ଯେଉଁ ଦୃଶ୍ୟ ମୋ ମାନସପଟରେ ସାକାର ହୋଇଉଠୁଥିଲା, ମୁଁ ତାକୁ କୌଣସିମତେ ଭୁଲିପାରୁନଥିଲି।

''ଗୋଟିଏ ରଥରେ ଛଅଟି ଘୋଡ଼ା ଯୋଚାଯାଇଛନ୍ତି; ସେଥିରୁ ଗୋଟିଏ ଘୋଡ଼ା ସୌନ୍ଦର୍ଯ୍ୟର ସାକ୍ଷାତ୍ ମୂର୍ତ୍ତିମାନ୍ ସ୍ୱରୂପ। ହଠାତ୍ ସେହି ଘୋଡ଼ାଗୁଡ଼ିକର ମୁଣ୍ଡ କୌଣସି ଅଦେଖା ହାତ କାଟିପକାଇ, ତା' ସ୍ଥାନରେ ମଣିଷ ମୁଣ୍ଡ ଯୋଡ଼ିଦେଉଥିଲା। ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖେ, ସେଗୁଡ଼ିକ ମୋରି ମୁଣ୍ଡ ଏବଂ ରଥର ସାରଥି ମଧ୍ୟ ମୁଁ ନିଜେ ମହାରାଜ ଯଯାତି। ସାରଥିର ହାତରେ ଥିବା ଚାବୁକ ମୋ'ରି ଧମନିରେ ନିର୍ମିତ ଏବଂ ଲଗାମଟି ମଧ୍ୟ ମୋରି ମଜ୍ଜା-ଅସ୍ଥିରେ ନିର୍ମିତ ହୋଇଥିଲା। ସାରଥି ଅର୍ଥାତ୍ ମୁଁ ଘୋଡ଼ାମାନଙ୍କୁ ଆୟତ୍ତ କରିବା ଲାଗି ପ୍ରାଣପଣ ଚେଷ୍ଟାକରେ; କିନ୍ତୁ କେବେହେଲେ ସେମାନେ ମୋ ଆୟତ୍ତକୁ ଆସିପାରନ୍ତିନାହିଁ। ଘୋଡ଼ାମାନେ ନିଜ ଇଚ୍ଛାରେ ଖାଲ, ଢିପ, ଖମା, ଅରମା ନମାନି ଦୌଡ଼ାଦୌଡ଼ିକରି ରଥର ଚକ୍ର, ଅର, ଖିଲ ସବୁ ହୁଗୁଳା କରିଦିଅନ୍ତି।'

ପ୍ରତ୍ୟେକ ରାତିରେ ମୁଁ ଏହି ସ୍ୱପ୍ନ ଦେଖେ; କେବେ ଘୋଡ଼ାମାନେ ରଥଟିକୁ ଖୁବ୍ ଉନ୍ନତ ପର୍ବତଶିଖରକୁ ଉଠାଇନିଅନ୍ତି; ଆଉ କେବେ ସୁଗଭୀର ଗର୍ତ୍ତ ଆଡ଼କୁ ଘୋଷାରିନିଅନ୍ତି। ହଠାତ୍ ଦିନେ ସୁନ୍ଦର ଘୋଡ଼ାଟା ବେକାର ହୋଇ ରଥଟାକୁ ଗୋଟିଏ ଗଭୀର ଖାଲ ଆଡ଼କୁ ଘୋଷାରିନେଲା; ସାରଥିର ହାତରୁ ଲଗାମ ଛିଡ଼ିଗଲା; ଚାବୁକ ଥରଥର ହୋଇ କମ୍ପିବାକୁ ଲାଗିଲା। ଚାହୁଁ ଚାହୁଁ ମୁଁ ରଥ ସହିତ ଯାଇ ସେହି ଅତଳ ଗହ୍ୱରରେ ପଡ଼ିଗଲି ଏବଂ ସଙ୍ଗେସଙ୍ଗେ ଗୋଟିଏ କାନଫଟା ଶବ୍ଦ ଗହ୍ୱରରୁ ଭାସିଆସିଲା ! ମୁଁ 'ଶମା', 'ଶମା' ବୋଲି ଚିତ୍କାର କରି ଉଠିପଡ଼ିଲି।

ସ୍ୱପ୍ନରେ ମୁଁ କାହିଁକି ଶର୍ମିଷ୍ଠାର ନାମ ଧରି ଡାକପକାଇଲି ? ସେ ତ ରଥରେ ନଥିଲା ? ସେ ସ୍ୱପ୍ନଟି ନିତାନ୍ତ ଅଶୁଭସୂଚକ ବୋଲି ମୋତେ ଜଣାପଡ଼ିଲା। ହୁଏତ ଏହି ମୁହୂର୍ତ୍ତରେ ପୁରୁକୁ କୋଳରେ ଧରି ଶର୍ମିଷ୍ଠା ଏ ସଂସାରରୁ ବିଦାୟନେଇଯାଇଥିବ।

ମୁଁ ଆଉ କିଛି ଚିନ୍ତାକରିପାରିଲିନାହିଁ। ସାରା ରାତି ମୁଁ ମଦନିଶାରେ ମୁର୍ଚ୍ଛାଗଙ୍କ ପରି ପଡ଼ିରହିଲି।

× × × ×

ସୂର୍ଯ୍ୟ ଅସ୍ତାଚଳକୁ ଗମନକଲେ। ଧୀରେ ଧୀରେ ପୃଥିବୀ ଚନ୍ଦ୍ରଙ୍କ ଆଲୋକରେ ଆଲୋକିତ ହୋଇଉଠିଲା। ମନେହେଲା, ଯେପରି ଚାନ୍ଦ-ପିଆଲାରେ ମଦିରା ପିଇପିଇ ଆକାଶ ମତୁଆଲା ହୋଇଉଠିଛି ! ପିଆଲାରୁ ମଦିରା ଉଛୁଳିପଡ଼ି ପୃଥିବୀରେ ଚାନ୍ଦିନୀରୂପେ ବିଛାଇହୋଇଯାଇଛି। ମୋତେ ମୁକୁଳିକା ଆସି ଖବର ଦେଲା ଯେ, ତା' ଗୁରୁମହାରାଜ

ବହୁ ପ୍ରୟାସ କରି ଗୋଟିଏ ସ୍ୱର୍ଣ୍ଣକେଶୀ ରମଣୀ ଯୋଗାଡ଼ କରିଛନ୍ତି ଏବଂ ଆଜି ରାତିରେ ତାକୁ ଆଣି ମୋ ସେବାରେ ଯୋଗାଇଦେବେ।

ମୁଁ ଆଉ ଧୈର୍ଯ୍ୟ ଧରି ପାରିଲି ନାହିଁ। ସେ ତରୁଣୀକୁ ଦେଖିବାଲାଗି ବ୍ୟାକୁଳ ହୋଇଉଠିଲି; କିନ୍ତୁ ତାକୁ ଦେଖି ତା' କେଶଗୁଚ୍ଛକୁ ଆଉଁଷିଦେବାବେଳେ ମୁଁ ଅଳକାର ଆନନ୍ଦ ପାଇପାରିବି ତ?

ମୁଁ ମୁକୁଳିକାକୁ ଡାକି ପଚାରିଲି— "ତୁମେ ଆଣିଥିବା ସୁନେଲି ଫୁଲଟି କାହିଁ?"

"ଗୁରୁମହାରାଜଙ୍କ ମଠରେ ଅଛି।"

"ମୁଁ ଗତ ପନ୍ଦର ଦିନ ହେବ ଆକଣ୍ଠ ମଦ୍ୟପାନ କରୁଛି ଏବଂ ସବୁବେଳେ ମୁଁ ମଦନିଶାରେ ଘାରିହୋଇ ରହିଛି; କିନ୍ତୁ ଗୋଟିଏ କଥା ମନେରଖ, ତୁମେ ଆଉ ସେ ମନ୍ଦାର ଯଦି ମୋତେ ଠକାଉଥାଅ, ତେବେ ମୁଁ ସେ ଠକାମିରେ ପଡ଼ିବାଭଳି ଲୋକ ନୁହେଁ। ତାହାର କେଶପାଶ ଯଦି ସୁନେଲି ହୋଇନଥାଏ, ତେବେ ତୁମ ଦୁହିଁଙ୍କ ଗଣ୍ଡିରୁ ମୁଣ୍ଡ ଅଲଗା କରିଦେବି। ନୋହିଲେ, ମୁଣ୍ଡ ଲଣ୍ଡାକରି ତୁମକୁ ଗଧ ଉପରେ ବସାଇ ନଗର ମଧ୍ୟରେ ବୁଲାଇବି; ଆଉ ସେ ମନ୍ଦାରର ଜଟାରେ ନିଆଁଲଗାଇଦେବି। ଜାଣିଛ ତ ମୁଁ କିଏ? ମୁଁ ହସ୍ତିନାପୁରର ସ୍ମ୍ରାଟ୍।" ତା'ପରେ ହଠାତ୍ ମୁଁ ନୀରବ ରହି ପୁଣି ଲମ୍ପଟସ୍ୱଭାବବଶତଃ ପଚାରିଲି— "ତୁମକୁ କେଉଁଠୁ ମିଳିଲା ସେ ସୁନେଲି ପରୀ?"

"ଏହିଠାରେ...।"

"ସେ ଏହିଠାରେ ଥିଲା; କିନ୍ତୁ ଆଜିପର୍ଯ୍ୟନ୍ତ ତୁମେ ଆଣି ଯୋଗାଉ ନଥିଲ କାହିଁକି? ଏ ମନ୍ଦାରଟା ବଦ୍‌ମାସ, ଧୂର୍ତ୍ତ, କଦର୍ଯ୍ୟ ଧରଣର ଚାଲାକ।"

"କ୍ଷମାକରନ୍ତୁ ମହାରାଜ! ସେ... ସେ... ହସ୍ତିନାପୁରର ଅଧିବାସିନୀ ନୁହେଁ। ପ୍ରଥମ ଥରପାଇଁ ଆଜି ସେ ରାଜଧାନୀକୁ ଆସିଛି।"

"କାହିଁକି?"

"ନିଜ ପ୍ରିୟତମଙ୍କ ଅନୁସନ୍ଧାନରେ।"

"ପ୍ରିୟତମଙ୍କ ଅନୁସନ୍ଧାନରେ...?" ମୁଁ ଖୁବ୍ ବହେ ହସିଲି। ଯେତେ ଚେଷ୍ଟାକଲେ ମଧ୍ୟ ମୋର ହସ ବନ୍ଦହେଲାନାହିଁ। ମୁଁ ଅତି କଷ୍ଟରେ ହସ ରୋକି କହିଲି— "ତାକୁ ଆଜି ପର୍ଯ୍ୟନ୍ତ କ'ଣ କେହି କହିନାହାନ୍ତି ଯେ, ଅଶୋକବନରେ ତା' ପ୍ରିୟତମ ତା'ର ଅପେକ୍ଷାରେ ରହିଛି।"

"କାଲି ସେ ଠିକ୍ ଜାଣିପାରିବ; କିନ୍ତୁ ଆଜି...।"

"ଆଜି ତା'ର ପ୍ରିୟତମ କିଏସେ? କ'ଣ ତୁ...?"

ମୁକୁଳିକା ହସି ହସି କହିଲା— "ତା'ର ପ୍ରିୟତମ ଯୁଦ୍ଧଭୂମିକୁ ଯାଇଥିବା କୌଣସି ଏକ ବୀର ଯୁବକ। ସେ ଖବର ପାଇଲା ଯେ, ଯୁବରାଜଙ୍କ ସହିତ ତା' ପ୍ରିୟତମ ଆଜି ନଗରକୁ ଫେରିଆସିବ; ତେଣୁ ତା' ସହିତ ସାକ୍ଷାତ୍ କରିବାଲାଗି ସେ ଝିଅଟି ପାଗିଳୀଙ୍କପରି ହେଉଛି। ତା' ସାଥିରେ ଥିବା ଜଣେ ପୌଢ଼ାଙ୍କୁ ଛାଡ଼ି ସେ ଏକୁଟିଆ ଆଗେଇଆସିଛି। ଏଠାକୁ ଆସିବା ପରେ ଜାଣିଲା ଯେ, ତା'ର ପ୍ରିୟତମ ଆଜି ରାତିରେ ଯୁଦ୍ଧଭୂମିରୁ ନଗରକୁ ଫେରିଆସିବ। ସେ ବ୍ୟସ୍ତ ହୋଇ ବୁଲୁଥିବା ସମୟରେ

ମଠର ଜଣେ ଶିଷ୍ୟ ତାକୁ ଦେଖିଲା ...''

''ବର୍ତ୍ତମାନ ସେ କରୁଛି କ'ଣ ?''

''ସେଇଟା ବଡ଼ ଦୁଷ୍ଟ ଝିଅଟେ। ଗୁରୁମହାରାଜଙ୍କର କୌଣସି ପ୍ରଭାବ ତା'ଉପରେ ପଡ଼ିଲାନାହିଁ। ମଠର ଗୁପ୍ତ କୋଠରୀରେ ତାକୁ ବନ୍ଦିନୀ କରି ରଖାଯାଇଥିଲେ ସୁଦ୍ଧା, ସେ ଖୁବ୍ ପାଟିତୁଣ୍ଡ କଲା– ତେଣୁ ତାକୁ ମାଦକ ଦ୍ରବ୍ୟ ଦିଆଯାଇ ବେହୋଶ କରାଯାଇଛି। ଆଜି ରାତି ଦଶଘଡ଼ି ବେଳକୁ ତା'ର ଚେତନା ଧୀରେଧୀରେ ଫେରିଆସିବ।''

''ରାତି ଦଶଘଡ଼ି...! ତା'ହେଲେ କ'ଣ ମୋତେ ସେହି ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ? କାହିଁକି? ତାକୁ ଏତେ ଔଷଧ ପିଆଇଲ କାହିଁକି?''

''ସେ ଖୁବ୍ ପାଟିତୁଣ୍ଡ ଆରମ୍ଭକରିଦେଲା। ମହାରାଜ! ଆଉ କିଛି ଉପାୟନଥିଲା। ଆଜି ମହର୍ଷି ଶୁକ୍ରାଚାର୍ଯ୍ୟ ରାଜଧାନୀକୁ ଆସୁଥିବାରୁ ବହୁଲୋକ ଆସି ମଠରେ ଏକତ୍ରିତ ହୋଇଛନ୍ତି। ଏବେ ଦୂତ ଆସି ଖବର ଦେଲା ଯେ, ମହର୍ଷି ରାତି ଛଅଘଡ଼ି ସମୟରେ ରାଜମହଲରେ ପ୍ରବେଶକରିବେ। ଏପରି ଅବସ୍ଥାରେ ମହାରାଜ ବୋଧହୁଏ ରାତି ଦଶଘଡ଼ି ପର୍ଯ୍ୟନ୍ତ ରାଜମହଲରେ ବ୍ୟସ୍ତ ରହିବେ। ତେଣୁ ତାକୁ...।''

''ତୁ ଗୋଟାଏ ମୂର୍ଖ ଏବଂ ତୋ ଗୁରୁ ମହାମୂର୍ଖ। ଏହି ସ୍ୱର୍ଣ୍ଣକେଶୀ ରମଣୀକୁ ଛାଡ଼ି ମୁଁ କାହିଁକି ସେ ଜଟାଜୁଟଧାରୀ ଶୁକ୍ରାଚାର୍ଯ୍ୟର ଦର୍ଶନ ଲାଗି ରାଜମହଲକୁ ଯିବି? ଯୁବରାଜର ନଗରପ୍ରବେଶ ସହିତ ମୋର ଯାଏ ଆସେ କଣ? ଯୁବରାଜକୁ ସିଂହାସନରେ ବସାଇବାର ଷଡ଼ଯନ୍ତ୍ର ଚାଲିଛି; ମୁଁ ସେଥିଲାଗି ଖାତିର କରେନାହିଁ। ଯା... ତୁ ତୋ' କାମରେ ଲାଗିପଡ଼। ଏହିକ୍ଷଣି ସେ ସ୍ୱର୍ଣ୍ଣକେଶୀ ଯୁବତୀକୁ ପାଲିଙ୍କିରେ ବସାଇ ଏଠାକୁ ଘେନିଆ। ତା'ହେଲେ ଆଉ କାହାରି ମନରେ କିଛିହେଲେ ସନ୍ଦେହ ରହିବ ନାହିଁ।''

ମନ୍ଦର ଓ ମୁକୁଳିକା ମୋତେ ଆଦୌ ଠକାଇନଥିଲେ। ପ୍ରକୃତରେ ସେ ତରୁଣୀଟି ସ୍ୱର୍ଣ୍ଣକେଶୀ। ତାକୁ ଦେଖିବାମାତ୍ରେ ମୋର ଅଳକା କଥା ମନେପଡ଼ିଗଲା। ତାକୁ ପଲଙ୍କ ଉପରେ ପଡ଼ିଥିବାର ଦେଖି ମୋର ଧାରଣା ହେଲା– ଅଳକା ମୋ ପଲଙ୍କରେ ଶୋଇଛି। ମୁଁ ଅନେକ ସମୟ ପର୍ଯ୍ୟନ୍ତ ତାକୁ ଏକଧ୍ୟାନରେ ଚାହିଁରହିଲି। ଯାହେଉ, ଦୀର୍ଘ କୋଡ଼ିଏ ବର୍ଷ ପରେ ମୋ ଅଳକାକୁ ମୁଁ ପୁଣି ଫେରିପାଇଛି।

ମୁଁ ମନେ ମନେ ମନ୍ଦାର ଓ ମୁକୁଳିକା ଉପରେ ଖୁବ୍ ରାଗିଗଲି। କାରଣ ସେ ଦୁହେଁ ଏହାକୁ କାହିଁକି ଏତେ ଉଗ୍ର ମାଦକଦ୍ରବ୍ୟ ଖୁଆଇଦେଲେ? କୌଣସି ନିର୍ଜୀବ ରମଣୀ ସହିତ ହାସ ବିଳାସ କରାଯାଇନପାରେ।

ମୁଁ ଜାଣେନା ବାହାରେ କେତେ ରାତି ହେଲାଣି। ଗତ ପନ୍ଦରଦିନ ଧରି ଅତ୍ୟଧିକ ମଦ୍ୟପାନ ଫଳରେ ମୋ ମୁଣ୍ଡ ଝାଏଁଝାଏଁ କରୁଥିଲା ଏବଂ ମସ୍ତିଷ୍କ ନିତାନ୍ତ ଭାରାକ୍ରାନ୍ତ ହୋଇଉଠିଥିଲା। ମୁଁ ହାତରେ ପାନପାତ୍ର ଧରିଥିଲେ ସୁଦ୍ଧା ମୁହଁରେ ଲଗାଇ ପାରିଲି ନାହିଁ। ମୁଁ ସବୁ କିଛି ଭୁଲିଯିବାକୁ ଚାହୁଁଥିଲି। ମୁଁ ମହାରାଜା ଯଯାତି, ଯା' ମଧ୍ୟ ଭୁଲିଯିବାକୁ ଚାହୁଁଥିଲି। କିଏ ଜାଣେ, ଆଗାମୀ କାଲି କ'ଣ ଘଟିବାକୁ ଯାଉଛି? ଶୁକ୍ରାଚାର୍ଯ୍ୟ ଓ ଦେବଯାନୀର ମିଳିତ ଚକ୍ରାନ୍ତ ଫଳରେ...!

ମୁଁ ଏକାବେଳକେ ବର୍ତ୍ତମାନସର୍ବସ୍ୱ ହୋଇଉଠିଲି। ସେହି ମୁହୂର୍ତ୍ତଟି ମୋ ପକ୍ଷରେ ଥିଲା ସ୍ୱର୍ଣ୍ଣିମ ଅବସର। ମୁଁ ଆଉ ନିଜକୁ ଆୟତ୍ତ କରିପାରିଲିନାହିଁ; ଶେଷକୁ ଯାଇ

ସେ ସ୍ୱର୍ଣ୍ଣକେଶୀ ଯୁବତୀର ମୁଣ୍ଡ ପାଖରେ ଛିଡ଼ାହୋଇ ରହିଲି। ତା'ର ସ୍ୱର୍ଣ୍ଣିମ କେଶପାଶରେ ଗୋଟିଏ ଚୁମ୍ବନ ଆଙ୍କିଦେବାଲାଗି ମୁଁ ଆକୁଳ ହୋଇ ତଳକୁ ଝୁଙ୍କିପଡ଼ିଲି। ଶୁକ୍ଳକେଶ ... ବୃଦ୍ଧାବସ୍ଥା ... ମୃତ୍ୟୁ– ଏ ସବୁର ଭୟ ସେତେବେଳେ ମୋ ମନରୁ କୁଆଡ଼େ ଉଭେଇଗଲା। ଦୀର୍ଘ କୋଡ଼ିଏ ବର୍ଷର ଅଭିଳାଷ ଆଜି ସଫଳ ହେବାକୁ ଯାଉଛି; ତେଣୁ ମୋ ମନର ଆନନ୍ଦ କହିଲେ ନସରେ। ମୁଁ ତା'ର ସ୍ୱର୍ଣ୍ଣକେଶଜାଲରେ ଓଠ ଲଗାଇବାର ଠିକ୍ ପୂର୍ବରୁ ମୁକୁଳିକା ଧାଇଁଆସି ଦ୍ୱାର ପାଖରେ ଛିଡ଼ାହୋଇ ଡାକିଲା– "ମହାରାଜ ! ମହାରାଜ ! ବାହାରକୁ ଆସନ୍ତୁ ...।"

ମୁଁ ରାଗିଯାଇ କହିଲି– "କାହିଁକି"

"ମହାରାଣୀ ଓ ଶୁକ୍ରାଚାର୍ଯ୍ୟ ଭିତରକୁ ଆସୁଛନ୍ତି। ଶୁକ୍ରାଚାର୍ଯ୍ୟ କ୍ରୋଧରେ ଅସ୍ଥିର ହୋଇ ପ୍ରତ୍ୟେକଙ୍କୁ ପଚାରୁଛନ୍ତି– ମହାରାଜ କାହାନ୍ତି, କେଉଁଠି ଅଛନ୍ତି ?"

ମୁକୁଳିକାର କଥା ଶୁଣି ମୋ ଗୋଡ଼ ଥରଥର ହୋଇ କମ୍ପିବାକୁ ଲାଗିଲା ଏବଂ ଓଠ ଶୁଖିଗଲା। ବହୁଦିନର ରୋଗୀପରି ମୁଁ ଅତି କଷ୍ଟରେ ପହଣ୍ଡ ପକାଇ କୌଣସିମତେ ବାହାରକୁ ଗଲି। ମୋତେ ଦେଖିବାମାତ୍ରେ ଦେବଯାନୀ ଘୃଣାରେ ମୁହଁ ବୁଲାଇନେଲା। ଶୁକ୍ରାଚାର୍ଯ୍ୟ କ୍ରୋଧରେ ମହଲର ଏପଟ ସେପଟ ବୁଲିବାକୁ ଲାଗିଲେ।

ମୁଁ ଶୁକ୍ରାଚାର୍ଯ୍ୟଙ୍କୁ ପ୍ରଣାମକରିବାଲାଗି ଆଗେଇଯିବାକୁ ଚେଷ୍ଟାକଲି; ମାତ୍ର ମୋ ପାଦ ଚଳିଲା ନାହିଁ। ମୋତେ ଜଣାଗଲା, ସତେଯେପରି ସମୁଦାୟ ମହଲଟା ଚକାଭଉଁରି ଖେଳି ଘୂରିବାରେ ଲାଗିଛି– ମୁଁ ତଳେ ପଡ଼ିଯିବି। ତେଣୁ କାନ୍ଥରେ ଲାଗିଥିବା ଦର୍ପଣଟିକୁ ଧରି ମୁଁ କୌଣସିମତେ ନିଜକୁ ସମ୍ଭାଳିନେଲି।

ହଠାତ୍ ଶୁକ୍ରାଚାର୍ଯ୍ୟ ଛିଡ଼ାହୋଇଯାଇ ମୋ ଆଡ଼କୁ କେତେ ସମୟ ଏକଲୟରେ ଚାହିଁରହିଲେ; ତା'ପରେ ଭ୍ରୁକୁଟୀ କୁଟୀଳ କରି ସେ କହିଲେ– "ଯଯାତି, ମୁଁ କେବଳ ଜଣେ ମହର୍ଷି ଭାବରେ ଏଠାକୁ ଆସିନାହିଁ। ତୋର ଶ୍ୱଶୁର ଭାବରେ ଏତେ ରାତିରେ ସୁଦ୍ଧା ତୋ' ମହଲକୁ ଆସିପାରିଛି। ମୋ ପରି ଜଣେ ମହର୍ଷି ତୋ'ପରି ଜଣେ ପାପ-ପଙ୍କରେ ମଗ୍ନ ବ୍ୟକ୍ତିର ମହଲକୁ ଆସି ନିଜକୁ ପାପ-ପଙ୍କରେ ନିମଗ୍ନ କରାଇଛି। ତୁ ମୋତେ ଚିହ୍ନିପାରିଲୁ ତ ?"

ମୁଁ ଭୟରେ ଥରି ଥରି 'ହଁ' କହିଲି। ଶୁକ୍ରାଚାର୍ଯ୍ୟ ଉପହାସାତ୍ମକ ଢଙ୍ଗରେ ଠୋ' ଠୋ' ହୋଇ ହସିଦେଇ କହିଲେ– "ମଦ୍ୟପାନ ଫଳରେ ତୁ ବର୍ତ୍ତମାନ ନିଜ ଆୟତ୍ତରେ ନାହୁଁ। ତେଣୁ ମୁଁ ଆଉ ଥରେ ତୋତେ ଶୁଣାଇଦେଉଛି– ମୁଁ କିଏ ? ମୁଁ ହେଉଛି; ମହାତପସ୍ୱୀ ଶୁକ୍ରାଚାର୍ଯ୍ୟ ଯେ କି ଦିନେ ସଂଜୀବନୀ ବିଦ୍ୟା ଲାଭକରି ସମଗ୍ର ଦେବଲୋକକୁ ପ୍ରକମ୍ପିତ କରିଥିଲା ଏବଂ ଯେ ରାକ୍ଷସକୁଳର ଅଜେୟ ଗୁରୁରୂପେ ଭୁବନବିଖ୍ୟାତ; ସେହି ଶୁକ୍ରାଚାର୍ଯ୍ୟ ଏବେ ତୋ'ରି ଆଗରେ ଛିଡ଼ାହୋଇଛି। ମୁଁ ହେଉଛି ଦେବଯାନୀର ପିତା; ଯା' ମଧରେ ସଂଜୀବନୀଠାରୁ ଆହୁରି ଶକ୍ତିଶାଳୀ ମନ୍ତ୍ରର ମୁଁ ଅଧିକାରୀ ହୋଇସାରିଛି। ଏତେ ବର୍ଷ ପରେ ମୁଁ କନ୍ୟାର ସମୃଦ୍ଧ ଘର-ସଂସାର ଦେଖିବାଲାଗି ଆସିଥିଲି; କିନ୍ତୁ ମୋର ଦୁର୍ଭାଗ୍ୟ ଯେ, ମୁଁ ଏଠାରେ ଆସି ଦେଖିଲି, ତା'ର ଘର-ସଂସାର ଭାଙ୍ଗି ଚୁରମାର୍ ହୋଇଯାଇଛି। ଆରେ କୁଳାଙ୍ଗାର ! ସମଗ୍ର ପୃଥିବୀର ମୂଲ୍ୟଠାରୁ ଅଧିକ ମୂଲ୍ୟବାନ୍ ରତ୍ନ ଦେବଯାନୀକୁ ମୁଁ ତୋ'

ହାତରେ ଅର୍ପଣ କରିଥିଲି; କିନ୍ତୁ ତୁ ଅକର୍ମା ତାକୁ କାଚ ବୋଲି ମନେକରି ବାହାରର ଅଳିଆଗଦାକୁ ଫିଙ୍ଗିଦେଇଛୁ।''

ଶୁକ୍ରାଚାର୍ଯ୍ୟଙ୍କ ରୁଦ୍ରାବତାର ଦେଖି ମୋ ପିଣ୍ଡରୁ ପ୍ରାଣ ଉଡ଼ିଗଲା ଭଳି ଲାଗିଲା। କ'ଣ ଉତ୍ତର ଦେବି କିଛି ସ୍ଥିରକରିପାରିଲିନାହିଁ। ଶେଷକୁ ଖୁବ୍ ସାହସ ସଞ୍ଚୟ କରି କହିଲି – ''ମହାରାଜ, ଏଥିରେ କେବଳ ମୋର ଦୋଷ ନାହିଁ; ଯାହା କିଛି ଘଟିଛି ସେଥିଲାଗି ଦେବଯାନୀ ମଧ କୌଣସି ଅଂଶରେ ନିର୍ଦ୍ଦୋଷ ନୁହେଁ।''

ମୋ ମୁହଁରୁ ଏ ଶବ୍ଦ ବାହାରିବାମାତ୍ରେ ଦେବଯାନୀ ଚିଡ଼ିଯାଇ କହିଲା – ''ବାପା, ମୋତେ କ'ଣ ଏଇଆ ଦେଖାଇବାକୁ ଆପଣ ଏଠାକୁ ଆଣିଥିଲେ ? ସେ ପ୍ରତ୍ୟେକ କଥାରେ ମୋତେ ଅପମାନ ଦେଇଚାଲିଛନ୍ତି; ମୁଁ ଏହା ସହ୍ୟ କରିବି କିପରି ? କାଲି ସକାଳେ ଏଠାକୁ ଆସିବାଲାଗି ମୁଁ ଆପଣଙ୍କୁ କହୁଥିଲି; ଆପଣ ଦୀର୍ଘପଥ ଅତିକ୍ରମ କରି ଆସିବା ଫଳରେ ନିଶ୍ଚୟ କ୍ଳାନ୍ତହୋଇପଡ଼ିଛନ୍ତି; ଚାଲନ୍ତୁ ପ୍ରାସାଦକୁ ଫେରିଯିବା। ବିଳାସବ୍ୟସନରେ ବୁଡ଼ିରହିଥିବା ବ୍ୟକ୍ତି ପିଶାଚଠାରୁ ଆହୁରି ଭୟଙ୍କର। ରାତିରେ ସେଭଳି ଲୋକଙ୍କର ମୁହଁ ଚାହିଁବା ଉଚିତ ନୁହେଁ।''

ମୁଁ ମୋର କ୍ରୋଧ ଆୟତ୍ତ କରି ପାରିଲି ନାହିଁ। ମୋ ମୁହଁରୁ ବାହାରିଗଲା – ''. . . ଆଉ ଯେଉଁମାନେ ଅହଙ୍କାରରେ ବୁଡ଼ିରହନ୍ତି . . . ?''

ଦେବଯାନୀ ଆହୁରି ରାଗିଯାଇ ଶୁକ୍ରାଚାର୍ଯ୍ୟଙ୍କ କାନ୍ଧରେ ହାତ ରଖି କହିଲା – ''ତେଣେ ଯଦୁ ଖୁବ୍ ଆଡ଼ମ୍ବରର ସହିତ ନଗର ମଧ୍ୟରେ ପ୍ରବେଶକରୁଥିବ; ଆଉ ଏଠାରେ ଗୋଟିଏ ମଦ୍ୟପ ଓ ଲମ୍ପଟ ଲୋକ ସହିତ . . .।''

ଶୁକ୍ରାଚାର୍ଯ୍ୟ କ୍ରୋଧରେ ଦେବଯାନୀର ହାତ ଛିଞ୍ଚାଡ଼ି ଦେଇ କହିଲେ – ''ଦେବଯାନୀ ! ତୁ ମୋର ସର୍ବସ୍ୱ ସତ୍ୟ; କିନ୍ତୁ ତୋ' ପରି ମୂର୍ଖ ଆଉ କେହି ନାହିଁ। ଆଉ ତୁ ପାଗଳ ମଧ। କେଉଁ ସମୟରେ କ'ଣ କହିବାକୁ ହୁଏ ସେ ହିତାହିତ ଜ୍ଞାନ ତୋର ନାହିଁ। ତୋର ଏହି ପାଗଳାମି ଫଳରେ ତୁ କଚ୍‌କୁ ଜୀବିତ କରିଦେବା ଲାଗି ଜିଦ୍‌ଧରିବସିଲୁ, ଯାହା ଫଳରେ ମୁଁ ସଂଜୀବିନୀ ବିଦ୍ୟା ହରାଇବସିଲି। ଏତେ ବର୍ଷ ପରେ ଏଠାରେ ଆସି ପହଞ୍ଚିବା ମାତ୍ରେ ତୁ ତୋ' ସ୍ୱାମୀ ବିରୁଦ୍ଧରେ ନାନା ପ୍ରକାର ଅଭିଯୋଗ ଆରମ୍ଭକରିଦେଲୁ। ମୁଁ ଏଥର ଆଉ ତୋ' କଥା କିଛି ଶୁଣିବିନାହିଁ। ଦୀର୍ଘ ଅଠରବର୍ଷଧରି ତୋ' ଦୁଃଖର ବିଚାର ଏଇ ମୁହୂର୍ତ୍ତରେ ହୋଇଯିବ। ମୋର ଜାମାତା ବୋଲି ମୁଁ ଯଯାତିକୁ କେବେହେଲେ କ୍ଷମା ଦେବିନାହିଁ। ସାରା ଜୀବନ ମନେରଖିବା ଭଳି ମୁଁ ତା' ପ୍ରତି ଦଣ୍ଡବିଧାନ କରିବି।''

ତା'ପରେ ଦେବଯାନୀ ପିତାଙ୍କ ପାଖକୁ ଘୁଞ୍ଚିଯାଇ ଟିକିଏ କୋମଳ ସ୍ୱରରେ କହିଲା – ''ବାପା, ଯଦୁକୁ ସିଂହାସନରେ ବସାଇଦେଲେ ଯା'ଙ୍କର ଆଖି ଆପଣାଛାଏଁ ଖୋଲିଯିବ। ମୁଁ ଆଉ ଗାର୍ହସ୍ଥ୍ୟ ସୁଖ ଚାହେଁନାହିଁ। ଯଦୁକୁ ସିଂହାସନ ଉପରେ ବସିଥିବା ଥରେ ମାତ୍ର ଆଖି ପୂରାଇ ଦେଖିସାରି, ମୁଁ ତପୋଭୂମିକୁ ଯାଇ ଆପଣଙ୍କ ପାଦସେବାରେ ଜୀବନ ବିତାଇଦେବି।''

ଦେବଯାନୀର ଲୋକଦେଖାଣିଆ ଛଳନା ଦେଖି ମୁଁ ରାଗି ନିଆଁବାଣ ହୋଇଗଲି। ଅବଶ୍ୟ ରାଜସିଂହାସନର ଲୋଭ ମୋ ମନରେ ତିଳେମାତ୍ର ନଥିଲା; କିନ୍ତୁ ଯଦୁକୁ

ସିଂହାସନରେ ବସାଇ ଦେବଯାନୀ ମୋତେ ଲୋକହସା କରାଇବାକୁ ଚାହୁଁଥିଲା; ଏହା ମୋ ପକ୍ଷରେ ଅସହ୍ୟ ହୋଇଉଠିଲା। ମୁଁ ଟିକିଏ କର୍କଶ ସ୍ୱରରେ କହିଲି– "ମୁଁ ରାଜା, ମୋ ଅନୁମତି ଓ ସ୍ୱୀକୃତି ବିନା ଯଦୁର ଅଭିଷେକ ହୋଇନପାରେ।"

ଶୁକ୍ରାଚାର୍ଯ୍ୟ ଟିକିଏ ନରମସ୍ୱରରେ କହିଲେ– "ରାଜା, ତୁମର ଅଧିକାରକୁ ମୁଁ ମଧ୍ୟ ସ୍ୱୀକାର କରୁଛି। କିନ୍ତୁ ମୁଁ ତୁମକୁ ପଚାରୁଛି; ଦେବଯାନୀର କିଛି ଅଧିକାର ଅଛି କି ନାହିଁ? ତା'ର ପାଣିଗ୍ରହଣ ସମୟରେ ତୁମେ 'ନ ଅତିଚ଼ରାମି' ବୋଲି ଅଗ୍ନିଙ୍କ ସମ୍ମୁଖରେ ଶପଥ କରିଥିଲ କି ନାହିଁ?"

"ହଁ... କରିଥିଲି... ମହାରାଜ!"

"ତୁମେ ତାହା ପାଳନ କରିଛ?"

"ମହର୍ଷି, ମୋତେ କ୍ଷମାକରନ୍ତୁ। ମୋ ଦ୍ୱାରା ତାହା ପାଳନ କରାଯାଇନାହିଁ।"

"କାହିଁକି?"

"ତାହା ମୋ ଯୌବନର ଦୋଷ। ମୁଁ ମୋହଗ୍ରସ୍ତ ହୋଇଯାଇଥିଲି।"

"ଯୌବନର ଦୋଷ? ତୁମେ ହିଁ ଯୁବକ ଥିଲ, ଆଉ ଦେବଯାନୀ କ'ଣ ବୁଢ଼ୀ ହୋଇଯାଇଥିଲା? ଈଶ୍ୱର କ'ଣ କେବଳ ତୁମରିପାଇଁ ମୋହ ସୃଷ୍ଟି କରିଛନ୍ତି? ମୂର୍ଖ, ତୁମେ ଜାଣିଛ କି, ମୋ ଚାରିପଟେ ମଧ୍ୟ ଅତ୍ୟନ୍ତ ସୂକ୍ଷ୍ମ ତଥା ଦୃଢ଼ତାର ସହିତ ମୋହଜାଲ ଘେରାଯାଇଥାଏ। ମୁନିଋଷିମାନଙ୍କ ତପସ୍ୟା ଭଙ୍ଗକରିବା ଲାଗି ଇନ୍ଦ୍ର ଅପ୍‌ସରାମାନଙ୍କୁ ପଠାଇଥା'ନ୍ତି। କିନ୍ତୁ ଶୁକ୍ରାଚାର୍ଯ୍ୟଙ୍କ ପରି ଦୃଢ଼ମନା ତପସ୍ୱୀ ସେ ଆଡ଼କୁ ଥରେ ହେଲେ ମୁହଁଟେକି ଚାହାନ୍ତିନାହିଁ। କ୍ଷୁଦ୍ର ମୋହରେ ବଶ ହେଉଥିବାର ବ୍ୟକ୍ତି ନିଶ୍ଚୟ ନୀଚ।"

"ମୋତେ କ୍ଷମାକରନ୍ତୁ ମହାରାଜ! ମୁଁ ଦୋଷୀ, ଶହେବାର ମୋ ଦୋଷ ସ୍ୱୀକାର କରୁଛି।"

"ପ୍ରଥମ ଅପରାଧ ଲାଗି ବ୍ୟକ୍ତିକୁ କ୍ଷମାଦିଆଯାଇପାରେ। କିନ୍ତୁ ଅପରାଧ କରିବା ଯାହାର ସ୍ୱଭାବ ହୋଇଯାଏ; ସେ ସାଧାରଣ ଦଣ୍ଡରେ ଅଭ୍ୟାସ ଛାଡ଼ିପାରେନାହିଁ।" ସେ କହୁକହୁ ନୀରବ ହୋଇ ଚିନ୍ତା କରିବାକୁ ଲାଗିଲେ। ଆଗ୍ନେୟଗିରି ଗହ୍ୱରରେ ହାତ ଗୋଡ଼ ବାନ୍ଧି ପକାଇଦେବା ପରି ମୋର ଅବସ୍ଥା ଦୟନୀୟ ହୋଇଉଠିଲା। ମୋ ଆଡ଼କୁ ଘୃଣା ଓ ତିରସ୍କାରପୂର୍ଣ୍ଣ ଚାହାଣିରେ ଚାହିଁ କହିଲେ ଶୁକ୍ରାଚାର୍ଯ୍ୟ– "ରାଜନ୍! ଦେବଯାନୀକୁ ପ୍ରତ୍ୟାଖ୍ୟାନ କରି ତୁମେ ଶର୍ମିଷ୍ଠାକୁ ଗ୍ରହଣ କରିଛ; ଏହା ସତ୍ୟ ନୁହେଁ କି?"

ମୁଁ ଭାବୁଥିଲି କହିଦେବି– ଦେବଯାନୀକୁ ମୁଁ ପ୍ରେମକରୁନଥିଲି, କିନ୍ତୁ ଶର୍ମିଷ୍ଠା ପ୍ରତି ମୋର ପ୍ରକୃତ ପ୍ରେମ ଥିଲା; ହେଲେ ଏହା କହିବାଲାଗି ମୋ ଜିଭ ଲେଉଟିଲା ନାହିଁ।

ମୋତେ ନୀରବ ଦେଖି ଶୁକ୍ରାଚାର୍ଯ୍ୟଙ୍କ ସ୍ୱର ଆହୁରି କର୍କଶ ହୋଇଗଲା। କ୍ରୋଧରେ ଲାଲହୋଇଯାଇ ମୋ ପାଖକୁ ଲାଗିଆସି କହିଲେ– "ଶର୍ମିଷ୍ଠା ପ୍ରତି ସାବଧାନ ହୋଇ ରହିବାକୁ ମୁଁ ତୁମକୁ ପ୍ରଥମରୁ କହିନଥିଲି?"

ମୁଁ ମୁଣ୍ଡ ହଲାଇ ସ୍ୱୀକୃତିପୂର୍ଣ୍ଣ ସ୍ୱରରେ କହିଲି– "ହଁ...।"

''ରାଜା ! ତୁମେ... ଦେବଯାନୀର ପିତା ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ଆଜ୍ଞା ଉଲ୍ଲଙ୍ଘନ କରିଛ; ସେଥିଲାଗି ତୁମକୁ ଉଚିତ ପ୍ରାୟଶ୍ଚିତ୍ତ କରିବାକୁ ହେବ।''

''କିନ୍ତୁ... କିନ୍ତୁ... ମହାରାଜ, ଯୌବନର ଉନ୍ମାଦନାରେ ହିତାହିତ ଜ୍ଞାନ ରହେନାହିଁ...''

''ମୁଁ କେବଳ ସେଇଥିପାଇଁ ତୁମର ଉନ୍ମାଦନା ଦୂର କରିବାକୁ ଚାହେଁ। ତୁମ ଆଖିରେ ମୁଁ ଦିବ୍ୟ ଅଞ୍ଜନ ଲଗାଇଦେଉଛି; ଯାହାଫଳରେ ତୁମେ ଦାସୀ ଶର୍ମିଷ୍ଠା ପ୍ରତି ଆଉ କାମୁକଦୃଷ୍ଟିରେ ଚାହିଁପାରିବନାହିଁ। ତୁମେ ଯୌବନ-ଉନ୍ମାଦନାରେ ଉନ୍ମତ୍ତ ହୋଇଯାଇଛ; ବେଶ୍, ମୁଁ ତୁମକୁ ଅଭିଶାପ ଦେଉଛି– ''ତୁମର ସେହି ଯୌବନ ଏହି ମୁହୂର୍ତ୍ତରୁ ନଷ୍ଟହୋଇଯାଉ। ଭଗବାନ୍ ଶଙ୍କରଙ୍କ କୃପାରୁ ମୁଁ ଯେଉଁ ବିଦ୍ୟା ଆୟତ୍ତ କରିଛି, ତା'ରି ପ୍ରଭାବରେ ମୋ' ଆଖି ଆଗରେ ଠିଆହୋଇଥିବା ପାପୀ ଯଯାତି ଏହି ମୁହୂର୍ତ୍ତରୁ ଜୀର୍ଣ୍ଣ, ଜର୍ଜର ବୃଦ୍ଧ ହୋଇଯାଉ !''

ବଜ୍ର ପଡ଼ିଲା ପରି ସେହି ଅଭିଶାପ-ବାଣୀ ମୋର କର୍ଣ୍ଣକୁହର ଭେଦକଲା। ମୋ ଆଖି ଆଗରେ ସାରା ସଂସାର ଅନ୍ଧକାର ଦିଶିଲା ଏବଂ ମୋର କାନ ବଧିର ହୋଇଗଲା। ଶେଷକୁ ମୁଁ ସାହସ କରି ପାଖରେ ଥିବା ଗୋଟିଏ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ପ୍ରାଣାନ୍ତକ ଯନ୍ତ୍ରଣା ଅନୁଭବକଲି। ଦର୍ପଣ ମଧ୍ୟରେ ଗଳିତ ନଖଦନ୍ତ, ଜୀର୍ଣ୍ଣଜର୍ଜରକାୟ ଶ୍ଲଥଚର୍ମା ତଥା ରୁକ୍ଷ ଶୁକ୍ଳକେଶ ବୃଦ୍ଧ ମୃତ୍ୟୁର ପ୍ରତୀକ୍ଷାରେ ଛିଡ଼ାହୋଇଥିବାପରି ମୋତେ ଦେଖାଗଲା; କିନ୍ତୁ ଜର୍ଜରକାୟା ମଧ୍ୟରେ ଯଯାତିର ତରୁଣ ମନ ପୂର୍ଣ୍ଣ ସଜାଗଥିଲା। ମନେପଡ଼ିଗଲା, ମୋର ସେହି ସ୍ୱର୍ଣ୍ଣକେଶୀ ରମଣୀ; ରାତିଦଶଘଡ଼ି ବିତିଗଲାଣି, ସେ ତରୁଣୀର ଚେତନା ଫେରିଆସିବଣି। ତା'ର ସୁନେଲି କେଶପାଶକୁ ମୁଁ ମନ ପୂରାଇ ଦେଖିନାହିଁ; ପ୍ରେମାର୍ଦ୍ରଚିତ୍ତରେ ସେ କେଶଗୁଚ୍ଛରେ ଗୋଟିଏ ହେଲେ ଚୁମ୍ବନ ଦେଇପାରିନାହିଁ। ଓଃ... ଜୀବନରେ ଆଉ ବୋଧହୁଏ ସେ ଅବସର ମୋତେ ମିଳିବନାହିଁ। ମୋର ସମୁଦାୟ ଇଚ୍ଛା ଚିରଦିନ ଲାଗି ଅତୃପ୍ତ ରହିଯିବ ଏବଂ ମୋ ଅତୃପ୍ତ ବାସନା ମନରେ ଉଦିତ ହୋଇ ମନରେ ମରିଯିବ। ଠିକ୍ ଅଳକାପରି ଦେଖାଯାଉଥିବା ସେ ସ୍ୱର୍ଣ୍ଣକେଶୀ ସୁନ୍ଦରୀ ରମଣୀ... ତା'ର ମନଭୁଲା ଚେହେରା...!

ଶୁକ୍ରାଚାର୍ଯ୍ୟ ମୁଣ୍ଡ ନୁଆଁଇ ମଞ୍ଚ ଉପରେ ବସିଥିଲେ ଏବଂ ଦେବଯାନୀ ତାଙ୍କ ପାଦ ଧରି ଆଖିରୁ ଲୁହଧାର ଝରାଇ କହୁଥିଲା– ''କ'ଣ କଲେ ବାପା ? ଏ କ'ଣ କରିଦେଲେ...?''

ମୋ ମନରେ ଆଶା ଅଙ୍କୁରିତ ହୋଇଉଠିଲା; ମୁଁ ଆଗେଇଯାଇ ଶୁକ୍ରାଚାର୍ଯ୍ୟଙ୍କ ଦୁଇ ପାଦ ଧରି ସାଷ୍ଟାଙ୍ଗ ପ୍ରଣିପାତ କରି କହିଲି– ''ମହାରାଜ, ମୋ ପ୍ରତି ଅନୁକମ୍ପା କରନ୍ତୁ! ମୋ ମନରେ ଅନେକ ଅତୃପ୍ତ ବାସନା ରହିଗଲା। ଦେବଯାନୀ ସହିତ ଘରସଂସାର କରିବାର ଆଶା ମୋର ପୂର୍ଣ୍ଣହୋଇନାହିଁ। ଏ ଜୀର୍ଣ୍ଣଜର୍ଜର ବୃଦ୍ଧ ପତିକୁ ନେଇ ସେ ଗୃହସ୍ଥାଶ୍ରମରେ କି ସୁଖ ପାଇପାରିବ? ଆପଣ ମୋର ଯୌବନ ଫେରାଇଦିଅନ୍ତୁ ମହାରାଜ...!''

ମୋ କଥା ମଝିରେ କହିଉଠିଲା ଦେବଯାନୀ– ''ବାପା, ମୁଁ ତାଙ୍କ ଆଡ଼କୁ

ଚାହିଁପାରୁନାହିଁ। ତାଙ୍କର ପୂର୍ବରୂପ ଫେରାଇଦିଅନ୍ତୁ, ବାପା, ଫେରାଇ ଦିଅନ୍ତୁ ...''

ଶୁକ୍ରାଚାର୍ଯ୍ୟଙ୍କ ପ୍ରଚଣ୍ଡ କ୍ରୋଧ ଶାନ୍ତହୋଇଯାଇଥିଲା। ସେ ମୁହଁ ଉଠାଇ କହିଲେ– ''ଧନୁର୍ଗୁଣରୁ ଖସିଯାଇଥିବା ତୀର, ଋଷିର ବାକ୍ୟ କେବେହେଲେ ଫେରିପାରେନାହିଁ ରାଜା! ମୋ ଅଭିଶାପ ତୁମକୁ ଭୋଗିବାକୁ ପଡ଼ିବ। କିନ୍ତୁ... କିନ୍ତୁ... ତୁମେ ମୋ ଅଲିଅଳ ଦେବଯାନୀର ପତି। ତା' ସହିତ କେତୋଟି ଦିନ ହେଲେ ମଧ ତୁମେ ଘରସଂସାର କରିଛ, ପୁଣି ତା' ସହିତ ମିଶି ଗୃହସ୍ଥାଶ୍ରମ କରିବାକୁ ଏବେ ତୁମ ମନରେ ଇଚ୍ଛା ଜାଗ୍ରତ ହୋଇଛି; ତେଣୁ ଅଭିଶାପ ନିରାକରଣର ଉପାୟ ମଧ କହିଦେଉଛି। ଯଦି ତୁମ ପରିବାରର, ତୁମରି ରକ୍ତର କେହି ତରୁଣ ଆନନ୍ଦରେ ତୁମ ବୃଦ୍ଧତ୍ୱ ପାଲଟାଇଁ ନେଇ ତାର ତାରୁଣ୍ୟ ତୁମକୁ ଦେବାଲାଗି ପ୍ରସ୍ତୁତହୋଇଯାଏ, ତା'ହେଲେ ଏହା ସମ୍ଭବ ହୋଇପାରେ। ତୁମର ମୃତ୍ୟୁ ପରେ ସେ ଯୁବକ ଫେରିପାଇବ ତାର ତାରୁଣ୍ୟ, କିମ୍ବା ପୁଣି ତୁମେ ଯଦି ସ୍ୱେଚ୍ଛାରେ ଯୁବକର ତାରୁଣ୍ୟ ଫେରାଇଦେବାକୁ 'ମୁଁ ତାହାର ଯୌବନ ଫେରାଇଦେଉଛି' ବୋଲି ତିନିଥର କହିବ, ତା'ହେଲେ ତୁମେ ମୃତ୍ୟୁପଥର ଯାତ୍ରୀ ହେବ ଏବଂ ସେ ଯୁବକ ବୃଦ୍ଧତ୍ୱ ତ୍ୟାଗକରି ପୁଣି ପୂର୍ବପରି ତରୁଣ ହୋଇଉଠିବ।''

ଦେବଯାନୀ ଶୁକ୍ରାଚାର୍ଯ୍ୟଙ୍କ କଥା ମଝିରେ ବାଧାଦେଇ କହିଉଠିଲା– ''ବାପା, ଏହା କ'ଣ ଗୋଟେ ଶାପ ନିରାକରଣର ଉପାୟ? ଏହା ଆପଣଙ୍କ ଅଭିଶାପଠାରୁ ଆହୁରି ଭୟଙ୍କର।''

ଶୁକ୍ରାଚାର୍ଯ୍ୟ କ୍ରୋଧରେ ଅଗ୍ନିଶର୍ମା ହୋଇ ହଠାତ୍ ଉଠିପଡ଼ି, ଦେବଯାନୀ ଆଡ଼କୁ ଆରକ୍ତ ଚକ୍ଷୁରେ ଚାହିଁ କହିଲେ– ''ଏଠାକୁ ଆସିବାମାତ୍ରେ ତୋ'ର ଉଜୁଡ଼ା ଘରସଂସାରକୁ ସଜାଡ଼ିଦେବାଲଗି ମୁଁ ଅଶୋକବନକୁ ଧାଇଁଆସିଲି। ପ୍ରଥମରୁ ତୁ ମୋତେ ଉତ୍ତେଜିତ କରିଥିଲୁ ଏବଂ ଏଠାକୁ ଆସିବାମାତ୍ରେ ମୋର କ୍ରୋଧାଗ୍ନିରେ ଘୃତଧାରା ଅର୍ପଣ କରି ମୋତେ ବିଚଳିତ କରିଦେଲୁ। ପିଲାଟିଦିନରୁ ମୁଁ ତୋତେ ମୁଣ୍ଡ ଉପରେ ବସାଇଥିଲି; ତାହାହିଁ ମୋ ଜୀବନର ଚରମ ବିଫଳତା! ତାହାହିଁ ମୋ ଜୀବନର ମସ୍ତବଡ଼ ଭୁଲ!! ମାତୃହୀନା ସନ୍ତାନର ସେବାକରି ଯେଉଁ ଆତ୍ମତ୍ୟାଗ କରିଥିଲି, ତା'ର ପ୍ରତିବଦଳରେ ମୋତେ ମିଳିଲା କଅଣ– ଅପମାନ! କେବଳ ଅପମାନ!! ତୋ'ରିପାଇଁ ଜୀବନର ଶ୍ରେଷ୍ଠତ୍ୱରେ ପଦାର୍ପଣ କରି ମଧ ମୁଁ ଅସହାୟ ଭାବରେ ପରାଜୟ ସ୍ୱୀକାର କରିଛି। ଏହା କାହିଁକି ଘଟିଛି ମୁଁ ଆଦୌ ବୁଝିପାରୁନାହିଁ। ବୋଧହୁଏ ମୋ ତପସ୍ୟାରେ କେଉଁଠି ଦୋଷରହିଯାଇଛି। ସେହି ଦୋଷର ଅନ୍ୱେଷଣ ଲାଗି ମୁଁ ଏଇ ମୁହୂର୍ତ୍ତରେ ହିମାଳୟକୁ ଫେରିଯାଉଛି। ଆଜିସୁଦ୍ଧା ମୋ ଦ୍ୱାରା ଯାହା କିଛି ସମ୍ଭବ ମୁଁ ତୋ ପାଇଁ ସବୁକିଛି କରିଛି। ଏଥର ତୁ ଜାଣୁ ତୋ ସ୍ୱାମୀ ଜାଣେ... ମୋର ସେଥିରେ କିଛି ଯାଏଆସେ ନାହିଁ।'' ଏତକ ଏକାନିଶ୍ୱାସକେ କହିଦେଇ ଶୁକ୍ରାଚାର୍ଯ୍ୟ ସେଠାରୁ ବାହାରିଗଲେ।

ପ୍ରଶସ୍ତ କକ୍ଷ ମଧରେ ରହିଲୁ ଆମେ ଦୁଇଜଣ, ଜଣେ ଜୀର୍ଣ୍ଣ-ଜର୍ଜର ବୃଦ୍ଧ, ଅନ୍ୟଜଣେ ମ୍ଳାନମୁଖୀ ଅନୁତପ୍ତା ଯୁବତୀ। ଦେବଯାନୀ ମୋ ଆଡ଼କୁ ଚାହିଁବାଲାଗି ସାହସ କରୁନଥିଲା ଏବଂ ମୁଁ ତାକୁ ଚାହିଁବା ଲାଗି ଲଜ୍ଜା ବୋଧକରୁଥିଲି। ଗତ

ଅଠରବର୍ଷ ଧରି ଆମର ସମ୍ପର୍କ ଛିନ୍ନ ହୋଇଥିଲା; କେହି କାହାରି ଦୁଃଖରେ 'ଆହା' କରିବାଲାଗି ଆଗଭର ହୋଇନଥିଲୁ। ବର୍ତ୍ତମାନ ଆମେ ଦୁହେଁ ଗୋଟିଏ ମହଲରେ ଛିଡ଼ାହୋଇ ମଧ୍ୟ ସମ୍ପୂର୍ଣ୍ଣ ଭିନ୍ନ . . . ।

ରଙ୍ଗମହଲରୁ ଅସ୍ଫୁଟ ଗୁଞ୍ଜନ ଭାସିଆସିଲା; ବୋଧହୁଏ ସେ ସ୍ୱର୍ଣ୍ଣକେଶୀ ତରୁଣୀର ଚେତନା ଫେରିଆସିଲାଣି, କିନ୍ତୁ . . . ମୋର ଏ ଜରାଜୀର୍ଣ୍ଣ ଶରୀର ଦେଖିଲେ ସେ କ'ଣ ମତେ ଗ୍ରହଣକରିବ ?

ଏହି ସମୟରେ ଦାସୀ ଆସି ଦ୍ୱାରପାଖରେ ଛିଡ଼ାହୋଇ କହିଲା – "ମହାରାଣି ! ଯୁବରାଜ ଛାମୁଙ୍କ ଦର୍ଶନ ଲାଗି ବାହାରେ ଅପେକ୍ଷାକରିଛନ୍ତି ।"

ଏହି ସମୟରେ ଦୁଇଜଣ ତରୁଣ ଭିତରକୁ ପଶିଆସିଲେ। ମୁଁ ମୁହଁ ବୁଲାଇନେଇ ଛିଡ଼ାହୋଇ ରହିଲି। ହଠାତ୍ ମୋ ମନରେ ଆଶା ଜାଗ୍ରତହେଲା – ଯଦୁ . . . ମୋରି ରକ୍ତର ସନ୍ତାନ . . . ସେ ତା'ର ଯୌବନ ମୋତେ ଦେଇ ମୋ ବୃଦ୍ଧତ୍ୱ . . .।

ଏହି ସମୟରେ ରଙ୍ଗମହଲରୁ ଅସ୍ଫୁଟ ସ୍ୱର ପୁଣି ଭାସିଆସିଲା। ବୋଧହୁଏ ବିରହିଣୀ ସ୍ୱର୍ଣ୍ଣକେଶୀ ମୋ ବିରହରେ ଅଧୀରା ହୋଇଉଠିଲାଣି। ତା'ରି ଗୁଣୁଗୁଣୁ ବିରହ ସଙ୍ଗୀତ ଭାସିଆସୁଛି . . . କିନ୍ତୁ ଏ ଜରାଜୀର୍ଣ୍ଣ ଶରୀର ନେଇ ମୁଁ କିପରି ତା' ଆଗରେ ଛିଡ଼ାହୋଇପାରିବି ?

ଯଦୁ ତା' ମାଆ ସହିତ କଥାବାର୍ତ୍ତା କରୁଥିଲା। ନଗର ପ୍ରବେଶ ସମୟରେ ରାଜମହଲରେ ମାଆକୁ ନପାଇ ସେ ଅଶୋକବନକୁ ଧାଇଁଆସିଛି।

ମୋ ଶରୀରର ପ୍ରତ୍ୟେକ ଲୋମକୂପରେ ଭେଦିରହିଥିଲା ସେହି ସ୍ୱର୍ଣ୍ଣକେଶୀ ରମଣୀର କମନୀୟତା। ତା'ର ବିକଶିତ ଯୌବନ ତଥା ନମନୀୟ ଅଙ୍ଗଲତାର ମୁଁ ବୁଭୁକ୍ଷୁ ହୋଇଉଠିଥିଲି। ତେଣୁ ମୋ ମନରେ ତା'ର ଅସ୍ଫୁଟ ସ୍ୱର ତୀବ୍ର ପ୍ରତିକ୍ରିୟା ସୃଷ୍ଟିକଲା ଏବଂ ମୁଁ ପୁଣି ଯୌବନ ଫେରିପାଇବାଲାଗି ମନେମନେ ବ୍ୟାକୁଳ ହୋଇ ଆଶାୟୀ ଚକ୍ଷୁରେ ଯଦୁ ଆଡ଼କୁ ଚାହିଁରହିଲି।

ମୋ ଚେହେରା ଦେଖିପକାଇ ଯୁବକ ଦୁହେଁ ଚମକିଉଠିଲେ। ମୁଁ ପ୍ରଶାନ୍ତ ମୁଖମଣ୍ଡଳରେ ଯଦୁକୁ ମୋ ପାଖକୁ ଆସିବାଲାଗି ଇଙ୍ଗିତଦେଲି। ସେ ଆସିବାମାତ୍ରେ କହିଲି – ଯଦୁ, ମୋତେ ଚିହ୍ନିପାରୁଛୁ ? ଏ . . . ମୁଁ ତୋର ପିତା, ଯଯାତି ! ମୋ ପ୍ରତି ତୋର ଶ୍ରଦ୍ଧା ଭକ୍ତି ଅଛି ତ ?"

"ହଁ . . . ମହାରାଜ . . .!"

"ମୋ ପାଇଁ ତୁ କ'ଣ ଯେକୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ?"

"ପ୍ରସ୍ତୁତ ଅପ୍ରସ୍ତୁତର ପ୍ରଶ୍ନ କାହିଁକି ? ତାହା ଧର୍ମାଜ୍ଞା – 'ମାତୃଦେବୋ ଭବ ! ପିତୃଦେବୋ ଭବ' !!"

ଦେବଯାନୀ ଅଠରବର୍ଷଧରି ମୋ ଉପରେ ଦାଉ ସାଧୁଥିଲା; ଏଥର ପ୍ରତିଶୋଧ ନେବାର ପାଳି ମୋର। ମୋ ହୃଦୟରେ ପ୍ରତିଶୋଧର ଜଘନ୍ୟ ଆକାଂକ୍ଷା, କାମୁକତାର ତୀବ୍ର କାମନା ଏକସଙ୍ଗରେ ଉଗ୍ରହୋଇଉଠିଲା। ଏଥର ଆଉ ଶୁକ୍ରାଚାର୍ଯ୍ୟଙ୍କ ଭୟ ନାହିଁ। ବାସନାର ଅଦମ୍ୟ ପିପାସା ମୋର ବୁଦ୍ଧି ଭ୍ରଷ୍ଟ କରିଦେଇଥିଲା। ମୁଁ ଚାହୁଁଥିଲି; ଯଦୁଠାରୁ ଯୌବନ ମିଳିଗଲେ ମୁଁ ସଙ୍ଗେସଙ୍ଗେ ଫେରିଯାଇ ରଙ୍ଗମହଲରୁ ସ୍ୱର୍ଣ୍ଣକେଶୀ

ରମଣୀକୁ ଆଲିଙ୍ଗନ କରି ଏଇ ଦେବଯାନୀ ଆଗକୁ ଘେନିଆସିବି ଏବଂ ତାର ଗୋଲାପୀ ଅଧରରେ ଶତ ଚୁମ୍ବନ ଆଙ୍କିଦେଇ ପ୍ରତିଶୋଧ ଓ ବିଳାସିତା ଉଭୟ ଅଭିଳାଷ ଚରିତାର୍ଥକରିବି। ତେଣୁ ମୁଁ କହିଲି– ''ଯଦୁ, ମୁଁ ଆଉ ରାଜା ହୋଇ ରହିବାକୁ ଚାହେଁନାହିଁ। ତୋତେ ସିଂହାସନରେ ବସାଇ...।''

''ପିତାଙ୍କ ଆଜ୍ଞା ଶିରୋଧାର୍ଯ୍ୟ...''

''କିନ୍ତୁ... କେବଳ ପୁତ୍ରରୂପେ ତୋତେ ମୁଁ ସିଂହାସନ ଅର୍ପଣ କରିବି ନାହିଁ; ସେଥିଲାଗି ତୋତେ...!''

''ମହାରାଜ! ମହାରାଜ...! ଆପଣ ରାକ୍ଷସ ପାଲଟି ଯାଉଛନ୍ତି...।'' ମୋ କଥାରେ ବାଧାଦେଇ ଚିତ୍କାର କରିଉଠିଲା ଦେବଯାନୀ।

ତା' କଥାରେ ଗୁରୁତ୍ୱ ନ ଦେଇ ମୁଁ ପୁଣି କହିଲି ଯଦୁକୁ– ''ମୋର ଏ ବୃଦ୍ଧତ୍ୱ ଦେଖୁଛୁ ତ?''

''ଆଜ୍ଞା...''

''ଏହା ମୋତେ ଗୋଟିଏ ଅଭିଶାପ ଫଳରେ ମିଳିଛି। କିନ୍ତୁ ଶାପ ନିରାକରଣ ଲାଗି କେହି ଜଣେ ମୋରି ରକ୍ତରେ ଜନ୍ମିଥିବା ତରୁଣ ଏହାକୁ ନିଜ ତାରୁଣ୍ୟ ବଦଳରେ ଗ୍ରହଣକରିପାରେ। ମୋ ମୃତ୍ୟୁପରେ ସେ ତା'ର ତାରୁଣ୍ୟ ଫେରିପାଇବ। ଏଥିରେ ଅବିଶ୍ୱାସ ହେଲେ ନିଜ ମାଆକୁ ପଚାର।''

ମୋ କଥା ଶୁଣି ଯଦୁ ଚମକିପଡ଼ି ଭୟରେ ମୋ ଆଡ଼କୁ ଚାହିଁଚାହିଁ ତା'ର ମାଆ ପାଖକୁ ପଳାଇଲା। ଦେବଯାନୀ ତାକୁ କୁଣ୍ଢାଇପକାଇ, ତା' ମୁଣ୍ଡକୁ ଆଉଁସିଦେବା ସଙ୍ଗେସଙ୍ଗେ କହିଲା– ''ଯଦୁ, ତୋ' ବାପା ପାଗଳ ହୋଇଗଲେଣି। ଯୁବକ ହେବା ଲାଗି ତାଙ୍କ ମୁଣ୍ଡ ଖରାପ ହୋଇଯାଇଛି। ପାଗଳଙ୍କ ସହିତ ଅଧିକ କଥାବାର୍ତ୍ତା କଲେ ତାଙ୍କ ପାଗଳାମି ଆହୁରି ବଢ଼ିଯାଏ; ଚାଲ ଆମେ ରାଜପ୍ରାସାଦକୁ ପଳାଇବା। ସେ ଏଇଠି ଦର୍ପଣ ଆଗରେ ବସି ନିଜ ଶୁକ୍ଳକେଶକୁ ଅଣ୍ଡାଳୁଥାଆନ୍ତୁ।''

ମୁଁ ଦେବଯାନୀ ଉପରେ ଖୁବ୍ ରାଗିଗଲି; କିନ୍ତୁ ସେତେବେଳେ ମୁଁ ନିତାନ୍ତ ଅସହାୟ। ଯଦୁ ମୋ ଆଡ଼କୁ ଦୟନୀୟ ଦୃଷ୍ଟିରେ ଚାହିଁଚାହିଁ ମୋଠାରୁ ଦୂରେଇଗଲା ଏବଂ ତା' ଚାହାଣିରେ ଅସମ୍ମତିର ସୂଚନା ସ୍ପଷ୍ଟ ଝଲସି ଉଠୁଥିଲା। ଯଦୁର ହାବଭାବ ଦେଖି ମୋ ମନର ଆଶା ମଉଳିଗଲା।

ଯଦୁ ସହିତ ଆସିଥିବା ତରୁଣକୁ ଚାହିଁ କହିଲା ଦେବଯାନୀ– ''ଯଦୁ, ତୁ ତ ଏପର୍ଯ୍ୟନ୍ତ ତୋ ମିତ୍ରର ପରିଚୟ ଦେଲୁନାହିଁ? ଆଜି ଗୋଟିଏ ଅଶୁଭ ଦିନ; ମୋ ବାପା ଅସନ୍ତୁଷ୍ଟ ହୋଇ ଏଠାରୁ ଚାଲିଗଲେ ଏବଂ ଆମ ଘରର ଗୁମର ଜଣେ ପରଲୋକ ଆଗରେ ଖୋଲିଗଲା।''

ଯୁବକଟି ଅତି ନମ୍ରଭାବରେ ଉତ୍ତରଦେଲା– ''ମା'! ମୁଁ ଏଠାରେ ଆଦୌ ପର ନୁହେଁ; ମୁଁ ଅତି ଆପଣାର।''

''ତୁମେ ଯଦୁର ପ୍ରାଣ ରକ୍ଷା କରିଛ ବାପା, ମୁଁ ତୁମକୁ କିପରି ପର ବୋଲି ଭାବିବି? କିନ୍ତୁ ଏବେ ତୁମେ ଯାହା ସବୁ ଶୁଣିଲ, ସେ ବିଷୟ ଘରର କାନ୍ଥ ମଧ୍ୟ ଶୁଣିବା ଉଚିତ ନୁହେଁ।''

''ମା' ! ଯୁବରାଜ ଯାହା ଗ୍ରହଣ କରିବାକୁ ଡରୁଛନ୍ତି, ମୁଁ ଆନନ୍ଦରେ ତାହା କରିବାକୁ ପ୍ରସ୍ତୁତ ଅଛି ।''

ମୋର ସୁପ୍ତ ଆଶା ପୁଣି ଜାଗିଉଠିଲା । ମୁଁ ସେ ତରୁଣ ନିକଟକୁ ଧାଇଁଯାଇ କହିଲି – ''ତୁମେ କ'ଣ ମୋ ବୃଦ୍ଧତ୍ୱ ନେବାପାଇଁ ପ୍ରସ୍ତୁତ ?''

''ଅତି ଆଗ୍ରହରେ . . .''

''କିନ୍ତୁ . . . କିନ୍ତୁ . . . ନା . . .'' ନିରାଶାରେ ଫାଟିପଡ଼ି କହିଲି ମୁଁ– ''ତୁମେ ମୋ ରକ୍ତର ସନ୍ତାନ ନୁହଁ ଯୁବକ ! ଏହା କେବଳ ମୋ'ରି ସନ୍ତାନ ଗ୍ରହଣ କରିପାରେ ।''

''ମୋ ଶରୀରର ପ୍ରତ୍ୟେକ ରକ୍ତକଣିକାରେ ଆପଣଙ୍କର ଅଧିକାର ଅଛି ମହାରାଜ ! ମୁଁ ଆପଣଙ୍କର ପୁତ୍ର . . . !''

ଏହା ଶୁଣିବାମାତ୍ରେ ଦେବଯାନୀ ଥରଥର ହୋଇ କମ୍ପିଉଠି କହିଲା – ''ମହାରାଜଙ୍କର ଏକମାତ୍ର ସନ୍ତାନ ଯଦୁ, ସେହି କେବଳ ସାମ୍ରାଜ୍ୟର ଉତ୍ତରାଧିକାରୀ . . . !''

''ମାଆ, ମୁଁ ସାମ୍ରାଜ୍ୟ ବା ସିଂହାସନ ଚାହେଁନା; ମୁଁ କେବଳ ପୁତ୍ରଧର୍ମ ପାଳନ କରିବାକୁ ଚାହୁଁଛି । ପିତାଙ୍କର ଅଭିଳାଷ ପୂର୍ଣ୍ଣ କରିବା ମୋର ଏକାନ୍ତ ଇଚ୍ଛା । ମୁଁ ମହାରାଜଙ୍କର ପୁତ୍ର; ତେଣୁ ତାଙ୍କଠାରୁ ବୃଦ୍ଧତ୍ୱ ଗ୍ରହଣ କରିବାର ଅଧିକାର ମୋର ଅଛି । ଏ ଅଧିକାରରୁ ମୋତେ କେହି ବଞ୍ଚିତ କରିପାରିବେନାହିଁ ।''

ଦେବଯାନୀ ଏଥର ଆରକ୍ତ ଚକ୍ଷୁରେ ତା' ଆଡ଼କୁ ଚାହିଁ ପଚାରିଲା – ''ତୁ . . . ତୁ . . . ତୁ ଶର୍ମିଷ୍ଠାର ପୁଅ ?''

''ହଁ, ମାଆ ! ମୋ ନାମ ପୁରୁ ।''

ଦେବଯାନୀ ଉପରେ ପ୍ରତିଶୋଧ ନେବାର ଯେଉଁ ସୁଯୋଗ ଆସିଛି ତାକୁ ପୂର୍ଣ୍ଣପ୍ରାଣରେ ଉପଯୋଗ କରିବାଲାଗି ମନେମନେ ସ୍ଥିରକରିନେଲି । ରଙ୍ଗମହଲର ପଲଙ୍କ ଉପରୁ କଳନାଦିନୀ ସ୍ୱର୍ଣ୍ଣକେଶୀ ରମଣୀର ଅସ୍ଫୁଟ ସ୍ୱର ଭାସିଆସି ମୋ କାମବାସନାକୁ ଉଦ୍ଦୀପ୍ତ କରାଉଥିଲା । ମୋ ତାତିଲା ଦେହର ପ୍ରତ୍ୟେକ ରକ୍ତ କଣିକା ମୋତେ ପ୍ରେରଣା ଦେଇ କହିଲା – 'ଏଭଳି ସୁଯୋଗ ଆଉ କେବେହେଲେ ମିଳିବନାହିଁ । ଦେବଯାନୀର ସଙ୍କଳ୍ପ ଧୂଳିସାତ୍ ହେବାକୁ ଯାଉଛି; ଏପରି ଅବସର ଛାଡ଼ିବାର ନୁହେଁ ।'

ମୁଁ ପୁରୁ ଆଡ଼କୁ ଚାହିଁଲି; ତା' ମୁଖମଣ୍ଡଳରେ ଦୃଢ଼ତାର ଚିହ୍ନ ସ୍ପଷ୍ଟ ହେଉଥିଲା । ଏଇ ପୁରୁ; ସେଦିନ ଟିକି ପିଲାଟିକୁ ବିଦାୟଦେଇଥିଲି; ଆଜି ସେ ଯୌବନରେ ପଦାର୍ପଣ କରି ସୁଢ଼ଳ ତରୁଣ ହୋଇଯାଇଛି । ଆଗାମୀ କାଲିର କେତେ ରଙ୍ଗିନ୍ କଳ୍ପନା ଭାସିଉଠୁଥିବ ତା' ସ୍ୱପ୍ନରେ; ହୁଏତ କେହି ତା'ର ବାଗ୍‌ଦତ୍ତା ପ୍ରଣୟିନୀ ଚାହିଁରହିଥିବ ତା'ର ଯୁଦ୍ଧଫେରନ୍ତା ବାଟକୁ । ସେହି ପୁରୁଠାରୁ ମୁଁ ଯୌବନ ମାଗିନେଉଛି ମୋର ବିଳାସ ଚରିତାର୍ଥ କରିବାଲାଗି । ନା . . . ନାଃ . . . ଶୈଶବରେ ଯାହାର ଚୂର୍ଣ୍ଣକୁନ୍ତଳ ଆଉଁସିଦେଇ ମୁଁ ପରମ ପ୍ରୀତ ହେଉଥିଲି, ସେହି ପୁରୁ ଶିରରେ ଶୁକ୍ଳକେଶ ଧାରଣ କରି ମୋ ଆଗରେ ଛିଡ଼ାହେଲେ ମୁଁ ତା' ଆଡ଼କୁ ଚାହିଁପାରିବି ତ ? ମୋ ମନ ମଧ୍ୟରେ ଏକ ତୁମୁଳ ଝଡ଼ ସୃଷ୍ଟିହେଲା ।

କେଇ ମୁହୂର୍ତ୍ତ ମଧ୍ୟରେ ଯାହା ଯାହା ଘଟିଥିଲା ତା' ଫଳରେ ଦେବଯାନୀ ବିବ୍ରତ ହୋଇପଡ଼ିଲା । ସେ କ୍ଷୋଭରେ ନିଜତ୍ୱ ହରାଇ ସେ ପୁରୁ ପାଖକୁ ଯାଇ

ଉପହାସମିଶା ସ୍ୱରରେ କହିଲା – ''ତୁ ଶର୍ମିଷ୍ଠାର ପୁଅ ତ ? ଶୁଣିଛି, ତୋ' ମାଆଙ୍କ ସହିତ ମହାରାଜଙ୍କର ଗୁପ୍ତ ପ୍ରଣୟ ଥିଲା । ସେଇ ମାଆର ପୁଅ ତୁ; ତୋ' ମନରେ ନିଶ୍ଚୟ ପିତୃପ୍ରେମ ଉଚ୍ଛୁଳି ପଡୁଥିବ ! ତା'ହେଲେ ଆଉ ଡେରି କାହିଁକି – ନିଜର ଯୌବନ ଦାନକରି ପିତାଙ୍କର ଜୀର୍ଣ୍ଣବାର୍ଦ୍ଧକ୍ୟ ନେଇଯାଅ ।''

ଯା'ଗିମଧ୍ୟରେ ମୋର ବାସନାଦୀପ୍ତ ମନ ଆଶାୟୀ ହୋଇଉଠିଥିଲା ଏବଂ ମନର ଅଭିଳାଷ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା – 'ସେ ସୁନ୍ଦରୀ ତରୁଣୀ ରଙ୍ଗମହଲରେ ତୋ'ରି ପ୍ରତୀକ୍ଷାରେ ଚାହିଁବସିଛିରେ ମୂର୍ଖ ! ତୋ' ହାତପାହାନ୍ତାରେ ସୁବର୍ଣ୍ଣ ସୁଯୋଗ । ଗତ ପନ୍ଦରଦିନ ହେଲା ଯେଉଁ ଅମୃତ ପାନଲାଗି ତୁ ବ୍ୟାକୁଳ ହେଉଥିଲୁ, ସେହି ଅମୃତର ପିଆଲା ତୋ' ଓଠ ପାଖରେ ରହିଛି । ତାହା ପାନ ନକରି ତୁ କ'ଣ ଠେଲିଦେବୁ ? ଯଦି ଏହାହିଁ ତୋ'ର ଇଚ୍ଛା ଥିଲା, ତେବେ ଗତ ଅଠରବର୍ଷଧରି ପୋଡ଼ିଜଳି ମରୁଥିଲୁ କାହିଁକି ? ସନ୍ନ୍ୟାସୀ ହୋଇ ଏ ଜଞ୍ଜାଳରୁ ମୁକ୍ତି ପାଇଲୁ ନାହିଁ କାହିଁକି ? ଚାରି ଛଅ ବର୍ଷ ପୁରୁ ବୃଦ୍ଧ ହୋଇ ରହିଗଲେ କ୍ଷତି କ'ଣ ? ଏହାର ବଦଳରେ ହସ୍ତିନାର ରାଜସିଂହାସନ ତାକୁ ମିଳିଯିବ । ଏଇ କେତେ ବର୍ଷ ମଧ୍ୟରେ ତୁ ତୋର ଅତୃପ୍ତ ବାସନା ଚରିତାର୍ଥ କରିନେ, ତା'ପରେ ପୁରୁକୁ ତା'ର ଯୌବନ ଫେରାଇଦେବୁ ।''

ଦେବଯାନୀଦ୍ୱାରା ଉପହସିତ ହୋଇ କିମ୍ବା ଆତ୍ମିକ ପ୍ରେରଣାରେ ପ୍ରେରିତହୋଇ ମୋ ପାଦତଳେ ଲମ୍ବ ହୋଇ ଶୋଇପଡ଼ି କହିଲା ପୁରୁ – ''ବାପା, ନିଜ କୁଳରେ ରାଜକନ୍ୟାରୂପେ ପରିଗଣିତା ମୋର ମାଆ ଏଠାରେ ଦାସୀ ହୋଇ କାଳକାଟୁଥିଲେ; ସେହି ଦାସୀର ସନ୍ତାନ ହେଲେ ସୁଦ୍ଧା ମୁଁ ଆପଣଙ୍କ ବୃଦ୍ଧତ୍ୱ ଗ୍ରହଣକରିନେବାଲାଗି ପ୍ରସ୍ତୁତ ଅଛି ।''

ମୋ ମୁହଁରୁ କେବଳ ଦୁଇଟି ଶବ୍ଦ ନିର୍ଗତ ହେଲା – ''ଠିକ୍ ଅଛି !'' ତା'ପରେ ଶୁକ୍ରାଚାର୍ଯ୍ୟଙ୍କ ନିର୍ଦ୍ଦେଶମତେ ମୁଁ ଆଖି ବୁଜି କେତେ ସମୟ ଧ୍ୟାନ କଲି ଏବଂ ତା'ପରେ ମୁଁ ଆଖି ଖୋଲି ଦେଖିଲି, ପୁରୁ ମୋ ଆଗରେ ଏକ ଜୀର୍ଣ୍ଣ-ଶୀର୍ଣ୍ଣ ବୃଦ୍ଧ ହୋଇ ଛିଡ଼ାହୋଇଛି । ତାକୁ ଆଶୀର୍ବାଦ ଦେବାଲାଗି ମୋର ବରଦହସ୍ତ ତା' ଶିର ଆଡ଼କୁ ମୁଁ ବଢ଼ାଇ ପାରିଲି ନାହିଁ ।

ଦେବଯାନୀ ଏ ଅଦ୍ଭୁତ ଦୃଶ୍ୟ ଦେଖି ଅବାକ୍ ହୋଇ ଯଦୁକୁ ନେଇ ରାଜମହଲକୁ ଫେରିଗଲା ।

ପୁରୁ ଦର୍ପଣ ଆଗରେ ଠିଆହୋଇ ନିଜ ପ୍ରତିବିମ୍ବ ଦେଖିବାମାତ୍ରେ ହଠାତ୍ ଦୁଇହାତରେ ତା'ର ମୁହଁକୁ ଢାଙ୍କିଦେଲା । ତା'ପରେ ସେ ପ୍ରକୃତିସ୍ଥ ହୋଇ ଗୋଟିଏ ମଞ୍ଚ ଉପରେ ବସିବାରେ ମୁଁ ଟିକିଏ ଆଶ୍ୱସ୍ତ ହେଲି; ଅନ୍ୟଥା ମୁଁ ଭାବୁଥିଲି ସେ ନିଜର ତ୍ୟାଗ ଲାଗି ବୋଧହୁଏ ଅନୁତପ୍ତ ।

ମୁଁ ତ କିଛି ସମୟ ପୂର୍ବରୁ ମୋର ଜରାଜୀର୍ଣ୍ଣ ଶରୀରର ପ୍ରତିବିମ୍ବ ଆଡ଼କୁ ଚାହିପାରୁନଥିଲି; ଏବେ ପୁରୁ ନିଜ ଚେହେରା ଦେଖି ହଠାତ୍ ଧୈର୍ଯ୍ୟ ଧାରଣ କରନ୍ତା କିପରି ?

ନଗର ଛାଡ଼ି ଚାଲିଯିବା ସମୟରେ ଶର୍ମିଷ୍ଠା ମୋ ପାଖକୁ ସନ୍ଦେଶ ପଠାଇଥିଲା –

'ମହାରାଜଙ୍କର ବରଦହସ୍ତ ଯେପରି ମୋ ପୁରୁ ଉପରେ ରହେ'; କିନ୍ତୁ ଆଜି ତା'ରି ମୁଣ୍ଡରେ ମୁଁ ବଜ୍ରପାତ କଲିନାହିଁ କି? ଭାବିଲି, ଯାଉଛି ତାକୁ କୁଣ୍ଢାଇପକାଇ ସାନ୍ତ୍ୱନା ଦେବି; କିନ୍ତୁ ମନରେ ସାହସ ହେଲାନାହିଁ। ପ୍ରକୃତରେ ପାପୀର ମନ କେଡ଼େ ଭୟାତୁର!

ଦି'ଚାରି ଘଡ଼ି ମଧ୍ୟରେ ଆକାଶ ପାତାଳ କେତେ କ'ଣ ପରିବର୍ତ୍ତନ ହୋଇଗଲା। ଏଇ ଅଳ୍ପ ସମୟ ମଧ୍ୟରେ କେତେ ବିଚିତ୍ର ଘଟଣା ଘଟିଗଲା। ମୁଁ ଜାଗ୍ରତ ନା ନିଦ୍ରିତାବସ୍ଥାରେ ସ୍ୱପ୍ନ ଦେଖୁଛି? ମଦିରାର ମାଦକତାରେ ଅନେକ ପ୍ରକାର ଆଭାସ ହୋଇଥାଏ, ଏହା ସେହି ଆଭାସ ମଧ୍ୟରୁ ଗୋଟିଏ ନୁହେଁ ତ? ବିଚାରଧାରାର ପ୍ରଚଣ୍ଡ ଭଉଁରି ମଧ୍ୟରେ ମୁଁ ପଡ଼ି ଅଣନିଃଶ୍ୱାସୀ ହୋଇଗଲି।

ପୁରୁର ବୃଦ୍ଧତ୍ୱ ଏକ କଠୋର ସତ୍ୟରୂପେ ମୋ ଆଡ଼କୁ ଚାହିଁ ଉପହାସ କରୁଥିଲା। ମୁଁ ଦର୍ପଣ ଆଗରେ ଛିଡ଼ାହୋଇ ପୂର୍ବଠାରୁ ଆହୁରି ଅଧିକ ତରୁଣ ଦେଖାଗଲି। ମୁଁ ଏହି ବୟସର ହୋଇଥିବା ସମୟରେ ଅଳକା ପ୍ରତି ମୋ ମନରେ ପ୍ରବଳ ଆସକ୍ତି ଜନ୍ମିଥିଲା; କିନ୍ତୁ ତାହା ପୂରଣ ହେଲାନାହିଁ। ଅଳକା... ତା'ରି ସ୍ୱର୍ଣ୍ଣକେଶ... ତରୁଣ ମନର ଅତୃପ୍ତ ବାସନା... ଏସବୁ ଏକତ୍ରିତ ହୋଇ ଭୟଙ୍କର ପ୍ରଳୟାଗ୍ନି ପରି ମୋତେ ଗ୍ରାସ କରିବାକୁ ବସିଲା; ମୁଁ କ୍ଷଣକ ମଧ୍ୟରେ ସମଗ୍ର ବିଶ୍ୱର ଅସ୍ତିତ୍ୱକୁ ଭୁଲିଯାଇ ରଙ୍ଗମହଲ ଆଡ଼କୁ ଅଗ୍ରସରହେଲି।

ମୁଁ ଭିତରକୁ ଆସିବାମାତ୍ରେ ସେ ଯୁବତୀ ପଲଙ୍କରେ ବସି ଚକିତା ହରିଣୀ ପରି ଏଣେତେଣେ ଚାହିଁବାକୁ ଲାଗିଲା। ବୋଧହୁଏ ସେ କେଉଁଠି ଅଛି, କିପରି ସେଠାକୁ ଆସିଲା, ସେହି ବିଷୟରେ ଭାବୁଥିଲା। ତା'ପରେ ସେ ମୋ ଆଡ଼କୁ ଚାହିଁଦେଇ ହସିଦେଲା। ମୁଁ ଭାବିଲି, ମୋର ନବତାରୁଣ୍ୟ ପ୍ରକୃତରେ ଚରିତାର୍ଥ ହୋଇଗଲା। ମୋ ମନରେ ଅଦମ୍ୟ ପିପାସା ଜାଗିଉଠିଲା ଏବଂ ମୁଁ ତା' ଆଡ଼କୁ ହସହସ ମୁହଁରେ ଆଗେଇଗଲି। ହଠାତ୍ ଯୁବତୀର ମୁଖମଣ୍ଡଳରେ ଭୟ ଓ ଆତଙ୍କର ଛାୟା ଖେଳିଗଲା ଏବଂ ସେ ପଲଙ୍କରୁ ଉଠିଯାଇ କକ୍ଷର ଗୋଟିଏ କୋଣରେ ଛିଡ଼ା ହୋଇ ରହିଲା। ପ୍ରଥମେ ତା' ମୁହଁରେ ହସ, ପରେପରେ ଆତଙ୍କର ଛାୟା ଲକ୍ଷ୍ୟ କରି ମୁଁ କିଛି ବୁଝିପାରିଲିନାହିଁ। ନା... ନାଃ... ମୁଁ କିଛି ବୁଝିବା ଅବସ୍ଥାରେ ନଥିଲି। ମୋ ମନ ମଧ୍ୟରେ ପ୍ରବଳ ଝଡ଼ ସୃଷ୍ଟି ହୋଇଥିଲା ଏବଂ ପ୍ରଚଣ୍ଡ ବାତ୍ୟାରେ ମଝି ଦରିଆରେ ନୌକା ପରି ମୋ ମନର ଅବସ୍ଥା ଅସମ୍ଭାଳ ହୋଇଉଠିଥିଲା। ସେତେବେଳେ ମୋ ଆଖି ଆଗରେ ସେ ସ୍ୱର୍ଣ୍ଣକେଶୀ ତରୁଣୀର ରୂପଛଟା ବ୍ୟତୀତ ଆଉ କିଛି ଦେଖାଯାଉନଥିଲା। ତେଣୁ ମୁଁ ବ୍ୟଗ୍ର ଭାବରେ ଆଗେଇଯାଇ ସେ ତରୁଣୀର ହାତଟିକୁ ଧରିପକାଇବାର ଠିକ୍ ପୂର୍ବ ମୁହୂର୍ତ୍ତରେ ରଙ୍ଗମହଲର ବାହାରୁ ଭାସିଆସିଲା କ୍ରନ୍ଦନର ଏକ କରୁଣ ମୂର୍ଚ୍ଛନା। ମୋ ହାତ ସତେ ଅବା ପଙ୍ଗୁହୋଇଗଲା; ମୁଁ ସେ ତରୁଣୀର ହାତ ଧରିପାରିଲିନାହିଁ।

କ୍ରନ୍ଦନର ରୋଳ ଶୁଣି ମୁଁ ପ୍ରଥମେ ଭାବିଲି; ହୁଏତ ପୁରୁ ଅନୁତାପ କରି କ୍ରନ୍ଦନକରୁଛି। କିନ୍ତୁ ପର ମୁହୂର୍ତ୍ତରେ ବେଶ୍ ଜାଣିପାରିଲି, ତାହା ନାରୀର କ୍ରନ୍ଦନ। ପୁରୁ ଓ ସେ କ୍ରନ୍ଦନ ଧ୍ୱନି ସମ୍ପର୍କରେ କେତେ କ'ଣ ଭାବିଗଲି; କିନ୍ତୁ ମୋର

ପ୍ରତ୍ୟେକ ଭାବନା ମୋ ପକ୍ଷରେ ଅତ୍ୟନ୍ତ ବିରକ୍ତିକର ହୋଇଉଠିଲା। ମୋ ରଙ୍ଗିନ୍ ମୁହୂର୍ତ୍ତରେ ବାଧା ସୃଷ୍ଟି ହେବାକୁ ମୁଁ ଆଦୌ ପସନ୍ଦକଲିନାହିଁ। ହଠାତ୍ ଭାବିଲି– ହୁଏତ ଅଶୋକବନରେ କେହି ଦାସୀ ପୁରୁର ଅବସ୍ଥା ଦେଖି ସମବେଦନା ଜଣାଇ କାନ୍ଦୁଥିବ; କିନ୍ତୁ ଏତେ ଶୀଘ୍ର ଏ ସମ୍ବାଦ ଦାସୀମହଲରେ ପ୍ରଚାରିତ ହେଲା କିପରି? ମୁଁ ବାହାରକୁ ଯାଇ ଦେଖିଲି, ପୁରୁ ମଞ୍ଚ ଉପରେ ବସିଛି ଏବଂ ଗୋଟିଏ ସ୍ତ୍ରୀଲୋକ ତାର ଦେହ ମୁଣ୍ଡ ଆଉଁଷି ପକାଇ କରୁଣସ୍ୱରରେ ରୋଦନକରୁଛି। ଘୃଣା ଓ ବିରକ୍ତିରେ ମୋ ମନ ଅସହ୍ୟ ହୋଇଉଠିଲା। ମୁଁ ମନେମନେ ରାଗିଯାଇ କହିଲି– "ପୁରୁ, ବର୍ତ୍ତମାନ ତୁମେ ହସ୍ତିନାପୁରର ସମ୍ରାଟ୍। ସମ୍ରାଟ୍‌ର ମାନ, ସମ୍ମାନ, ଗୌରବ ଓ ପ୍ରତିଷ୍ଠା ସ୍ୱତନ୍ତ୍ର। ସମ୍ରାଟ୍‌ଙ୍କୁ ଆଲିଙ୍ଗନକରି ଗୋଟିଏ ଛାର ଦାସୀ. . ." ମୁଁ ମୋର ବିରକ୍ତିସୂଚକ ବାକ୍ୟ ଶେଷ କରିବା ପୂର୍ବରୁ କ୍ରନ୍ଦନରତା ସେ ଦାସୀ ମୋ ଆଡ଼କୁ ମୁହଁ ବୁଲାଇଦେଲା। ତାକୁ ଦେଖିବାମାତ୍ରେ ମୋର ମନେହେଲା; ବସୁଧା ଫାଟିଯାଇ ଯଯାତିକୁ ତା' ଗର୍ଭରେ ଲୀନ କରିଦେଲେ ଭଲହୁଅନ୍ତା।

ଶର୍ମିଷ୍ଠା. . .! ପୁରୁକୁ କୁଣ୍ଢାଇ କାନ୍ଦୁଥିଲା ତା'ର ମାଆ, ଯଯାତିର ପ୍ରଣୟିନୀ ଶର୍ମିଷ୍ଠା। ମୋ ପାଟି ଖନିମାରିଗଲା, ମୁଁ ଆଉ କିଛି କହିପାରିଲିନାହିଁ କିମ୍ବା ଆଗେଇ ଯାଇ ଶର୍ମିଷ୍ଠାକୁ ସାନ୍ତ୍ୱନା ଦେବାଲାଗି ମୋର ସାହସ ହେଲାନାହିଁ।

ଅଠର ବର୍ଷ ତଳେ ଅଶୋକବନର ସୁଡ଼ଙ୍ଗଦ୍ୱାରର ଶେଷ ପାହାଚ୍‌ରେ ଛିଡ଼ାହୋଇ ଶର୍ମିଷ୍ଠାକୁ ବିଦାୟ ଦେବାବେଳେ କହିଥିଲି– 'ଆଉ ପୁଣି କେବେ କି ଅବସ୍ଥାରେ ଆମର ସାକ୍ଷାତ୍ ହେବ ଭଗବାନ୍ ଜାଣନ୍ତି।' ସେ ଭେଟ ଆଜି ଏଇ ଅବସ୍ଥାରେ ହେବାର ଥିଲା! ମୋ କାନ ବଧିର ହୋଇଗଲା, ଆଖି ଦୃଷ୍ଟିଶକ୍ତି ହରାଇବସିଲା, ପାଦ ଚଳତ୍‌ଶକ୍ତିହୀନ ହୋଇଗଲା।

ଶର୍ମିଷ୍ଠା . . . ମୋର ପ୍ରିୟତମା ଶର୍ମା . . . ତାକୁ ଆଲିଙ୍ଗନପାଶରେ ବନ୍ଦିନୀ କରିନେଇ ତା' ଆଖିରୁ ଲୁହଧାର ପୋଛିଦେବାକୁ ମନ ଅଧୀର ହୋଇଉଠିଲା। ତାକୁ ସାନ୍ତ୍ୱନା ବାଣୀ ଶୁଣାଇ, ତାର ବ୍ୟଥିତ ମନକୁ ପ୍ରଶାନ୍ତ କରାଇବା ଲାଗି ମନ ଆକୁଳ ହୋଇଉଠିଲା; କିନ୍ତୁ ସାହସ ହେଲାନାହିଁ। ତୀକ୍ଷ୍ଣ ଶରସନ୍ଧାନରେ ଛୁଆଟିକୁ ମାରିଦେଇ ଶିକାରୀ ଯଦି ହରିଣୀକୁ ସାନ୍ତ୍ୱନା ଦିଏ, ସେଥିରେ କ'ଣ ତା'ର ମନ ବୁଝିବ? ନା . . . ମୋ ସାନ୍ତ୍ୱନାବାଣୀରେ ଶର୍ମିଷ୍ଠାର ହୃଦୟ ବିଦୀର୍ଣ୍ଣ ହୋଇଯିବ। ଏକାନ୍ତ ମିଳନ ମୁହୂର୍ତ୍ତରେ ମୁଁ କେତେଥର ତାକୁ କହିଛି– "ଶର୍ମିଷ୍ଠା ଓ ଯଯାତି ପରସ୍ପରଠାରୁ ପୃଥକ୍ ନୁହନ୍ତି . . . ଏକ।" କିନ୍ତୁ ଆଜି ମୁଁ ତା'ର ଶତ୍ରୁ ହୋଇଉଠୁଛି। ସେ ସାରା ଜୀବନ ଆନ୍ତରିକତାର ସହିତ ଯାହାର ପାଦରେ ପ୍ରଣୟର ଅର୍ଘ୍ୟ ଢ଼ାଳିଆସିଛି, ସେହି ନିର୍ଦ୍ଦୟ, ହୃଦୟହୀନ ଯଯାତି ତାକୁ ଆଜି ଅଗ୍ନିକୁଣ୍ଡକୁ ଠେଲିଦେଇଛି।

ଶର୍ମିଷ୍ଠାର ଅଶ୍ରୁ ମୋ ଚରଣ ପ୍ରକ୍ଷାଳନକଲା; କିନ୍ତୁ ତାକୁ ତଳୁ ଉଠାଇବାକୁ ମୋର ସାହସ ହେଲା ନାହିଁ। ସେ ମୁହଁ ଉପରକୁ ଉଠାଇ, କରୁଣ ତଥା କମ୍ପିତ ସ୍ୱରରେ କହିଲା– "ମହାରାଜ, ଏ କ'ଣ ହେଲା?"

ଶର୍ମିଷ୍ଠାର ମାତୃହୃଦୟର ଏ ପ୍ରକାର ଆକୁଳ ଉଦ୍‌ଗାର ଶୁଣି ମୁଁ ଭାବିଲି, ସେ ମୋର ବିଳାସପୂର୍ଣ୍ଣ, ଉନ୍ମତ୍ତ ତଥା ପାପପୂର୍ଣ୍ଣ ଜୀବନଧାରା ପ୍ରତି ଲକ୍ଷ୍ୟକରି

ଏପରି ଆକ୍ଷେପୋକ୍ତି କରୁଛି। ପ୍ରକୃତରେ ଏ ଦୃଶ୍ୟ ଥିଲା ହୃଦୟବିଦାରକ।

ଏହା କ'ଣ ମୋ ଅଜ୍ଞାତସାରରେ ହୋଇଯାଇଥିଲା ? ନା . . . ନା; ମୁଁ ନିଜ ହାତରେ ଏହା କରିଥିଲି। ପୁରୁକୁ ମୋର ବୃଦ୍ଧାବସ୍ଥା ଦେଇ ତା'ଠାରୁ ତାରୁଣ୍ୟ ମୁଁ ଲୁଟିନେଇଥିଲି। ମୋର ଲମ୍ପଟ ସ୍ୱଭାବର ଚରିତାର୍ଥ ଲାଗି ମୋର ସମ୍ପୂର୍ଣ୍ଣ ଜ୍ଞାତସାରରେ ଏହା କରାଯାଇଥିଲା। ମୁଁ ପିତୃଧର୍ମ ପାଳନରେ ବିମୁଖହୋଇ, ବାତ୍ସଲ୍ୟ ମମତା ତଥା ମାନବତାକୁ ପଦାଘାତ କରିଥିଲି। କେବଳ ସେତିକି ନୁହେଁ, ମୋ ଦୁର୍ନିବାର ବାସନାର ଚରିତାର୍ଥ ଲାଗି ମୁଁ ସୁକୁମାର ପୁତ୍ରଟିକୁ ବଳିଦେଇଥିଲି। ଗତ ଅଠରବର୍ଷ ଧରି ମୁଁ ବାସନାରାକ୍ଷସୀ ଲାଗି ଯେଉଁ ମନ୍ଦିର ଗଢ଼ିଆସିଥିଲି, ଆଜି ତାର ଦଧିନଉତି ବସାଇଦେଲି।

ଶର୍ମିଷ୍ଠା ମୋର ପ୍ରଣୟିନୀ; ସେ ମୋତେ ଅକପଟ ଏବଂ ନିଃସ୍ୱାର୍ଥ ପ୍ରେମ ଦାନକରିଥିଲା; ତେଣୁ ତା'ର ଗୋଟିଏ ଅଶ୍ରୁ ବିନ୍ଦୁ ଲାଗି ପ୍ରାଣଦାନ କରିବା ମୋର କର୍ତ୍ତବ୍ୟ। କିନ୍ତୁ . . . କିନ୍ତୁ . . . ତାକୁ ତାରୁଣ୍ୟ ଫେରାଇଦେବା ଅର୍ଥ ମୋର ମୃତ୍ୟୁ। ତା ବ୍ୟତୀତ ଆଉ ଅନ୍ୟ ପନ୍ଥା ନାହିଁ।

ମୃତ୍ୟୁ . . .! ବାଲ୍ୟକାଳରୁ ପଦେ ପଦେ ମୋତେ ଡରାଇଆସିଛି; ସେ ମୋର ଅଦୃଶ୍ୟ ଶତ୍ରୁ। ବରାବର ମୁଁ ମୃତ୍ୟୁ ଭୟରୁ ତ୍ରାହି ପାଇବାଲାଗି ଶାରୀରିକ ସୁଖର ଆଶ୍ରୟ ନେଇଛି। ସେହି ଅଜ୍ଞାତ, ଅଶରୀରୀ ମୃତ୍ୟୁକୁ ତା'ହେଲେ କ'ଣ ଏଥର ହସିହସି ଆଲିଙ୍ଗନ କରିନେବି ? ଆଗପଛ କିଛି ବିଚାରନକରି ତାକୁ ଆଗ୍ରହର ସହିତ ଆଦରିନେବି ?

ମୁଁ ଶର୍ମିଷ୍ଠା ଆଡ଼କୁ ଚାହିଁଲି। ସେ ବିଚାରୀ ଆଗ୍ରହରେ ମୋ ମୁହଁକୁ ଚାହିଁରହିଛି, ମୋ'ଠାରୁ ଏକ ଶ୍ରୁତିସୁଖକର ଉତ୍ତର ପାଇବା ଆଶାରେ ଉତ୍କର୍ଣ୍ଣ ହୋଇରହିଛି। ଅଠରବର୍ଷ ପୂର୍ବେ, ମୋରି ଆଦେଶରେ ବନବାସ ଯିବାଲାଗି ସେ ତିଳେହେଲେ ଆପତ୍ତି କରିନାହିଁ, ଦେବଯାନୀର କ୍ରୋଧରୁ ମୋତେ ରକ୍ଷାକରିବା ଲାଗି ବହୁ ତ୍ୟାଗ କରିଛି; ତା'ର ସେଇ ନିଶ୍ଚଳ ପ୍ରେମକୁ ଜାଣିଜାଣି ପଦାଘାତ କରିବି ?

ଶର୍ମିଷ୍ଠାର ପ୍ରେମ, କଚ୍‌ର ପ୍ରେମ ତଥା ମାଧବର ପ୍ରେମ କେଡ଼େ ମହାନ୍। ମୁଁ ସେଇପରି ପ୍ରେମ କରିବା ଉଚିତ ନୁହେଁ କି ? ଆଜିସୁଦ୍ଧା ମୋ ହୃଦୟର ଗଭୀର କୋଣରେ ଲୁକ୍‌କାୟିତ ପ୍ରେମର ଶାଶ୍ୱତ ଧାରା ମୋତେ ସିକ୍ତ କରିଦେଲା। ସେହି କୋଣରେ ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଅସ୍ପଷ୍ଟ ପ୍ରଦୀପ ଧୀରେଧୀରେ ଜ୍ୟୋତିଷ୍ମାନ୍ ହୋଇଉଠିଲା ଏବଂ ସେହି ପ୍ରକାଶରେ ମୋ ମନର ଅନ୍ଧକାରମୟ ମାର୍ଗ ଆଲୋକିତ ହୋଇଗଲା। ସେଥିରୁ ମୋତେ ସ୍ପଷ୍ଟ ଜଣାଗଲା; ନିଜପାଇଁ, ନିଜର ସ୍ୱାର୍ଥପାଇଁ ବଞ୍ଚିବା ଅପେକ୍ଷା ଅନ୍ୟ ପାଇଁ ବଞ୍ଚିବା କିମ୍ବା ମରିବାରେ ବାସ୍ତବିକ ଆନନ୍ଦ ! କେଡ଼େ ନୈସର୍ଗିକ ସତ୍ୟ ନିହିତ ଥିଲା ସେପ୍ରକାର ଭାବନାରେ ? କିନ୍ତୁ ଏହି ଉଦାତ୍ତ ସତ୍ୟର ମହିମା ଜୀବନରେ ପ୍ରଥମଥର ଲାଗି ମୋ ଆଗରେ ସୁସ୍ପଷ୍ଟ ହୋଇଉଠିଲା।

ଶୁକ୍ରାଚାର୍ଯ୍ୟ ମୋର ବାହ୍ୟରୂପ ବଦଳାଇ ଦେଇଥିଲେ; କିନ୍ତୁ ଶର୍ମିଷ୍ଠାର ତ୍ୟାଗପୂତ ପ୍ରେମ ମୋ ଅନ୍ତରରେ ଏକ କ୍ରାନ୍ତି ଆଣିଦେଲା। ଆଜି ଯଯାତିର ମାନବିକତା ମୋ ଆଗରେ ମୂର୍ତ୍ତିମନ୍ତ ହୋଇ ଛିଡ଼ାହୋଇଗଲା। ମୋର ଅନ୍ତରର ସତ୍ୟ ମୋତେ କହୁଥିଲା "ଏ ସଂସାରରେ କେବଳ ଦୁଇଟି କଥା ସତ୍ୟ— ତା' ହେଉଛି ପ୍ରୀତି

ଓ ମୃତ୍ୟୁ ! ଚାଲ, ମୋ ସାଥିରେ ଆଗେଇଚାଲ; ଏ ଅନ୍ଧକାର ମଧ୍ୟରେ ମୁଁ ତୁମର ସାଥେସାଥେ ଚାଲିବି। ତୁମେ ଆଦୌ ଭୟକରନାହିଁ; ମୋ ହାତରେ ରହିଛି ଏଇ ଶାଶ୍ୱତ ଦୀପମାଳା, ଦେଖିପାରୁଛ ତ? ତୁମେ ଭାବୁଛ କି ଏ ଶୁକ୍ରତାରା? କିନ୍ତୁ ମୂର୍ଖ, ଟିକିଏ ଭଲକରି ଦେଖ, ଏ ହେଉଛି ଶର୍ମିଷ୍ଠାର ପ୍ରଣୟ ପ୍ରଦୀପ।

ତା'ପରେ ଶର୍ମିଷ୍ଠାକୁ ସ୍ପର୍ଶ କରିବା ଲାଗି ମୋ ମନରେ ଦମ୍ଭ ଆସିଲା। ମୁଁ ଧୀରେ-ଧୀରେ ତାର ଦୁଇ ହାତକୁ ଧରି ଉଠାଇଆଣି କହିଲି– "ଶମା ! ଯା' କିଛି ହେଉ ପଛକେ, ତୁମେ ଆଉ ଚିନ୍ତାକରନାହିଁ। ଈଶ୍ୱରଙ୍କ ଦୟାରୁ ସବୁକିଛି ସୁଧୁରିଯିବ।"

ସେ କରୁଣ ସ୍ୱରରେ କହିଲା– "ମୋର ପୁରୁ ପୂର୍ବପରି ହୋଇଯିବ ତ?"

ମୁଁ ହସି ହସି ତା' ମୁଣ୍ଡ ଆଉଁସି ଦେଇ କହିଲି– "ହୋଇଯିବ, ବର୍ତ୍ତମାନ ହେବ।"

ସେ ଛଳଛଳ ଆଖିରେ କହିଲା– "ମହାରାଜ, ଆପଣ ମୋ ମନ ବହଲାଇବା ଲାଗି ଏପରି କହୁଛନ୍ତି। ପୁରୁ ଆଉ ପୂର୍ବପରି ହୋଇପାରିବନାହିଁ। କେହି କ'ଣ ତାକୁ ଭୟଙ୍କର ଅଭିଶାପ ଦେଇଛି।?"

'ହଁ...!"

"କିଏ ସେ? କିଏ ମୋର ଅନ୍ଧର ଲଉଡ଼ିକୁ ଏପରି ଅଭିଶାପ ଦେଇଛି? ଶୁକ୍ରାଚାର୍ଯ୍ୟ ନିଶ୍ଚୟ! ମୋ ଗଣ୍ଠିଧନ ଯଦୁର ପ୍ରାଣରକ୍ଷାକଲା, ଅଥଚ ଦେବଯାନୀର ମନରେ ଟିକିଏ ହେଲେ ଦୟା ହେଲା ନାହିଁ? କୁହନ୍ତୁ ମହାରାଜ, ସ୍ପଷ୍ଟ କୁହନ୍ତୁ, କ'ଣ ତାର ହୋଇଛି?"

ତା' ଆଖିରୁ ଝରିପଡୁଥିବା ଲୁହଧାର ପୋଛିଦେଇ ମୁଁ କହିଲି– "ଧୈର୍ଯ୍ୟଧର ଶମା! ତୁମେ ଅଧୀର ହେଲେ ଚଳିବ ନାହିଁ। ଶୁକ୍ରାଚାର୍ଯ୍ୟ ତାକୁ ଅଭିଶାପ ଦେଇନାହାନ୍ତି...!"

"ତା'ହେଲେ...? କେଉଁ ଦୁଷ୍ଟ ତାକୁ ଅଭିଶାପ ଦେଇଛି?"

"ସେ ଦୁଷ୍ଟ ହେଉଛି ନିଜେ ତା'ର ପିତା... ଏ ଅଧମ ଯଯାତି...!"

ଶର୍ମିଷ୍ଠା ମୋ କଥା ଶୁଣି ନିଦରୁ ଉଠିଲା ପରି ଚମକିପଡ଼ି ମୋ ଆଡ଼କୁ ଚାହିଁରହିଲା ଏବଂ ମୁଁ କହିଚାଲିଲି– "ମୁଁ... ମୁଁ ପିତୃଧର୍ମ ପାସୋରିଦେଇଛି, ଭୁଲିଯାଇଛି ମାନବଧର୍ମ। ଅଭିଶାପ ଫଳରେ ମୁଁ ଯେଉଁ ବୃଦ୍ଧତ୍ୱ ଲାଭକରିଥିଲି, ତାକୁ ପୁରୁ ମୁଣ୍ଡରେ ଲଦାଡ଼ିଦେଇ ତା'ର ତାରୁଣ୍ୟ ମୁଁ ନିଜେ ଗ୍ରହଣକରିଛି। ଏ ଅଧମ, କାମୁକ ତଥା ଲମ୍ପଟ ଯଯାତି ତୁମ ନିକଟରେ ଅପରାଧୀ ଶମା!"

ଶର୍ମିଷ୍ଠା ପାଗିଳୀଙ୍କ ପରି ମୋ ଆଡ଼କୁ ଅବାକ୍ ହୋଇ ଚାହିଁରହିଲା, ସେ ଆଦୌ ମୋ କଥା ସତ ମଣିଲା ନାହିଁ। ମୋ ପ୍ରତି ତା'ର ଗଭୀର ଶ୍ରଦ୍ଧା ଦେଖି ମୁଁ ଆତ୍ମହରା ହୋଇଗଲି। ଆହା ସେ ପ୍ରଣୟିନୀ ହୃଦୟ! ବାସ୍ତବିକ, ସେ କେଡ଼େ ମହୀୟସୀ? ବିଶ୍ୱାସ, ଶ୍ରଦ୍ଧା, ନିଷ୍ଠା, ପ୍ରଣୟ, ଭକ୍ତି ଓ ସେବା ଉପରେ ଆସ୍ଥା ରଖି ସେ ଆଜିଯାଏଁ ବଞ୍ଚିଆସିଛି। ସେ ଏହାରି ବଳରେ ମାନବତାର ସୋପନାରେ ଆରୋହଣ କରି ସହଜରେ ହସିହସି ମୃତ୍ୟୁର ସମ୍ମୁଖୀନ ହୋଇପାରିଛି! କିନ୍ତୁ...

ଏ ନିଷ୍ଠା ସହିତ ସମ୍ପର୍କ ନାହିଁ ତା' ଭାବନାର, ଏପ୍ରକାର ତ୍ୟାଗର ସମ୍ପର୍କ ରହିଛି ଅବିନାଶୀ ଆତ୍ମା ସହିତ।

ଗତ ଅଠରବର୍ଷଧରି ମୁଁ ଆତ୍ମା ବିରୁଦ୍ଧରେ ଅଭିଯାନ ଚଳାଉଥିଲି; କିନ୍ତୁ ଶର୍ମିଷ୍ଠା ସେହି ଆତ୍ମବଳକୁ ମନ ମଧ୍ୟରେ ସାଇତିରଖିଛି; କେବଳ ସଞ୍ଚାଡ଼ି ରଖିନାହିଁ, ବରଂ ତାକୁ ବିକଶିତ କରିପାରିଛି। ମୁଁ ହଜାଇଦେଇଥିବା ସେହି ମାନବିକତାର ଉଦ୍ଧାର ଲାଗି ମୋ ଆଗରେ ଥିଲା ଆତ୍ମତ୍ୟାଗ! ଯେଉଁ ଶାରୀରିକ ସୁଖ ଲାଗି ମୁଁ ପିଶାଚ୍‌ରେ ପରିଣତ ହୋଇଥିଲି। ସେହି ଶରୀରକୁ ହସିହସି ତ୍ୟାଗକରିଦେବାହିଁ ମୋର ଏକାନ୍ତ କର୍ତ୍ତବ୍ୟ। ଶର୍ମିଷ୍ଠାର ଆନ୍ତରିକ ପ୍ରଣୟକୁ ସମ୍ମାନ ଦେବାଲାଗି ମୋତେ ମୃତ୍ୟୁକୁ ହସିହସି ଆଲିଙ୍ଗନ କରିବାକୁ ହେବ; ତା'ରି ଫଳରେ ପୁରୁ ଫେରିପାଇବ ତା'ର ହଜିଲା ଯୌବନ।

ପୁରୁ ଲାଗି ମୋତେ ମୃତ୍ୟୁବରଣ କରିବାକୁ ପଡ଼ିବ; ଏହା ଶୁଣି ଶର୍ମିଷ୍ଠା ବଡ଼ ଅସୁବିଧାରେ ପଡ଼ିଗଲା। ସେ କାନ୍ଦି କାନ୍ଦି କହିଲା– "ମୁଁ ମାଆ ଓ ପତ୍ନୀ! ସ୍ୱାମୀ ଓ ପୁତ୍ର ହେଉଛନ୍ତି ନାରୀର ଦୁଇ ଆଖି; ତେଣୁ ମୁଁ ଚାହେଁ ମୋର ଦୁଇଟିଯାକ ଆଖି ସୁରକ୍ଷିତ ରହୁ।"

ମୋ ପ୍ରତି ଶର୍ମିଷ୍ଠାର ପ୍ରେମ ଦେଖି ମୁଁ ଆନନ୍ଦରେ ଗଦ୍‌ଗଦ ହୋଇଗଲି। ବର୍ତ୍ତମାନ ପ୍ରେମର ଦାନ ଗ୍ରହଣର ସମୟ ନୁହେଁ, ବରଂ ପ୍ରେମର ପ୍ରତିଦାନ ଦେବାର ସମୟ। ତହୁଁ ମୁଁ କହିଲି– "ଶର୍ମିଷ୍ଠା, ଆଜି ରାତି ଅନେକ ହୋଇଗଲାଣି, କାଲି ସକାଳେ ଆମେ ଭଲଭାବରେ ସବୁକଥା ଚିନ୍ତାକରିବା। ମୁଁ ତୁମକୁ ପ୍ରତିଶ୍ରୁତି ଦେଉଛି, ଯେକୌଣସିମତେ ପୁରୁ ପୂର୍ବପରି ହୋଇଯିବ। ଯାଅ, ତୁମେ ଯାଇ ତା'ରି ପାଖରେ ବସ। ତୁମେ ପ୍ରକୃତରେ ତ୍ୟାଗବୀରର ଜନନୀ। ଯାଅ, ତା'ର ପିଠି ଆଉଁଷିଦେଇ ତାକୁ ଆଶ୍ୱାସନା ଦିଅ।"

ଶର୍ମିଷ୍ଠା ସେଠାରୁ ଚାଲିଯିବାମାତ୍ରେ, ମୁଁ ଶୁକ୍ରାଚାର୍ଯ୍ୟଙ୍କୁ ସ୍ମରଣକରି ମନେମନେ ଦୁଇଥର କହିଲି– "ମୁଁ ଏ ଯୌବନ ଫେରାଇଦେବାକୁ ଚାହେଁ; ପୁରୁ ତା'ର ପୂର୍ବରୂପ ଫେରିପାଉ। ଏଥିଲାଗି ମୁଁ ମୃତ୍ୟୁକୁ ଆଲିଙ୍ଗନ କରିବାକୁ ପ୍ରସ୍ତୁତ।" ତୃତୀୟ ଥର କହିବା ବେଳକୁ– ସମୁଦାୟ ହଲ୍‌ଟି ପିଲାମାନେ ଚକାଚ୍‌କା ଭଉଁରି ଖେଳିବା ପରି ଘୂରିବାକୁ ଲାଗିଲା ଏବଂ ଠିକ୍ ସେହି ସମୟରେ ମୋତେ ଶୁଣାଗଲା– "କଚ୍‌ଦେବ ପଦାର୍ପଣ କରୁଛନ୍ତି। ପରମୁହୂର୍ତ୍ତରେ ମୁଁ ବଜ୍ରାଘାତରେ ବୃକ୍ଷର ଶାଖା ଛିନ୍ନ ହେବାପରି ଭୂମିରେ ଲୋଟିପଡ଼ିଲି।

× × × ×

କେତେଦିନ ପରେ ମୋର ଚେତା ଫେରିଆସିଲା ମୁଁ ଜାଣେନାହିଁ। ବୋଧହୁଏ ସନ୍ଧ୍ୟା ସମୟ; ଅତ୍ୟନ୍ତ ମଧୁର କଣ୍ଠରେ କେହି ମନ୍ତ୍ରପାଠ କରିଚାଲିଛି। କିଛି ସମୟ ପରେ ମନ୍ତ୍ରୋଚ୍ଚାରଣ ହଠାତ୍ ବନ୍ଦହୋଇଗଲା ଏବଂ ଗୋଟିଏ ସୌମ୍ୟ ମୂର୍ତ୍ତି ଆସି ମୋ କପାଳରେ ମନ୍ତ୍ରପୂତ ବିଭୂତି ବୋଳିଦେଲେ। ମୁଁ ନିରୀକ୍ଷଣ କରି ଦେଖିଲି, ସେ ହେଉଛନ୍ତି କଚ୍‌ଦେବ।

ମୁଁ ତାଙ୍କ ସହିତ କଥା କହିବାକୁ ଚେଷ୍ଟାକଲି; କିନ୍ତୁ ମୋ ପାଟିରୁ ଗୋଟିଏ ହେଲେ ଶବ୍ଦ ବାହାରିଲା ନାହିଁ। କଚ଼ ଅତ୍ୟନ୍ତ ସ୍ନେହରେ ମୋ କପାଳରେ ହାତ ବୁଲାଇବାକୁ ଲାଗିଲେ। ସେ ମଧ୍ୟ ଇଙ୍ଗିତରେ କହିଲେ– ''ବିଶ୍ରାମକର।'' ବୋଧହୁଏ ମୋ ମୁହଁରେ ମୃଦୁ ହାସ୍ୟରେଖା ଲକ୍ଷ୍ୟକରି ତାଙ୍କ ମୁଖମଣ୍ଡଳରେ ହାସ୍ୟର ସ୍ୱର୍ଗୀୟ ଛଟା ଖେଳିଗଲା। ବାସ୍ତବିକ୍, ହସ ହିଁ ହେଉଛି ମଣିଷର ମଧୁର ଭାଷା।

ମୋର ପୁଣି ଥରେ ଚେତନା ଫେରିଆସିବାବେଳକୁ ସକାଳ ହୋଇଗଲାଣି; ଝରକାରେ ସକାଳର ଅରୁଣୋଦୟ ସ୍ପଷ୍ଟ ଦେଖାଯାଉଥିଲା। ମୋତେ ଜଣାପଡ଼ିଲା, ସତେଯେପରି ମୁଁ ବିଶ୍ୱକଲ୍ୟାଣ ଉଦ୍ଦେଶ୍ୟରେ ମୁନି-ଋଷିଙ୍କଦ୍ୱାରା ଅନୁଷ୍ଠିତ ପ୍ରଜ୍ୱଳିତ ଯଜ୍ଞକୁଣ୍ଡର ପ୍ରତ୍ୟକ୍ଷ ଅବଲୋକନ କରୁଛି।

ମୁଁ ଆଖି ବୁଜି ଆଉ କେତେ ସମୟ ପଡ଼ିରହିଲି। ଆଖି ଖୋଲି ଦେଖିଲି, କଚ଼ଦେବ ପୂର୍ବଦିଗକୁ ମୁହଁକରି ସୂର୍ଯ୍ୟନାରାୟଣଙ୍କୁ ପ୍ରଣାମକରୁଛନ୍ତି। ତାଙ୍କର ମନ୍ତ୍ରପାଠ ମୁଁ ସ୍ପଷ୍ଟଭାବରେ ଶୁଣିପାରୁଥିଲି– ''ହେ ସୂର୍ଯ୍ୟନାରାୟଣ, ତୁମକୁ ସ୍ୱାଗତ ଜଣାଉଛି। ତୁମେ ଆତ୍ମଶକ୍ତିର ପ୍ରତୀକ। ତୁମେ ଅନ୍ଧକାର ବିରୁଦ୍ଧରେ ବିଜୟ ହାସଲ କରିଛ। ତୁମେ ବିଶ୍ୱାତ୍ମା ଏବଂ ତୁମରି ପ୍ରେରଣାରେ ମାନବ ଭାବନାରାଜ୍ୟରେ ଆତ୍ମିକ ବଳ ଲାଭକରେ। ତୁମ ସାରଥି ଖଞ୍ଜ ସତ୍ୟ; କିନ୍ତୁ ତୁମେ କର୍ତ୍ତବ୍ୟକର୍ମରେ କେବେହେଲେ ଅବହେଳା କରିନାହଁ। ତୁମର ଆଲୋକ ମନଗହନର ଅନ୍ଧକାର ଦୂର କରୁ। ଆମ ମନର ହିଂସ୍ରବୃତ୍ତିର ଉଚ୍ଛେଦକରୁ। ସେ ସହସ୍ରରଶ୍ମି ! ତୁମକୁ ସ୍ୱାଗତ ଜଣାଉଛି।''

ସକାଳେ ଓ ସନ୍ଧ୍ୟାରେ କଚଦେବ ଏପରି ଅନେକ ସୂକ୍ତ ପାଠକରନ୍ତି। ବିଶେଷତଃ ମୋ କକ୍ଷକୁ ଆସିବାବେଳେ, ସେ ପ୍ରାୟ ସୂକ୍ତ ଆବୃତ୍ତି କରୁଥାଆନ୍ତି। ସେ ନିଜର ମନୋରଞ୍ଜନପାଇଁ ଏ ପ୍ରାର୍ଥନା କରନ୍ତି କିମ୍ବା ମୋର ଉପକାର ଲାଗି କରନ୍ତି, ମୁଁ ଜାଣେନାହିଁ। ଯା'ହେଉ, ତାଙ୍କର ସୂକ୍ତପାଠ ମୋତେ ଖୁବ୍ ଭଲଲାଗେ। ମୋତେ ଶେଯରୁ ଉଠିବାଲାଗି ବାରଣ କରାଯାଇଥାଏ ସତ; କିନ୍ତୁ କଚ଼ଦେବଙ୍କ ସୂକ୍ତପାଠ ମୋତେ ଏକ ଅଲୌକିକ ଦୁନିଆରେ ବିଚ଼ରଣ କରାଏ। କଚ଼ଙ୍କଦ୍ୱାର ପଠିତ ବହୁ ସୂକ୍ତର ଭାବାର୍ଥ ଏବେ ସୁଦ୍ଧା ମୋ ମନରେ ଅଙ୍କିତ ହୋଇ ରହିଛି। ସେଗୁଡ଼ିକର ଅର୍ଥ ମୋ ମନରେ ଏବେ ସୁଦ୍ଧା ଆତ୍ମଶକ୍ତି ଜାଗ୍ରତ କରାଏ। ସେତେବେଳେ ସେହି ସୂକ୍ତଗୁଡ଼ିକ ମୋ ରୋଗଶଯ୍ୟାରେ ଅଭିନ୍ନମିତ୍ର ରୂପେ କାର୍ଯ୍ୟ କରୁଥିଲେ।

ଧୀରେ ଧୀରେ ରାଜବୈଦ୍ୟ ମୋତେ ଅଳ୍ପ କଥା କହିବାଲାଗି ଅନୁମତି ଦେଲେ; ତା'ପରେ ମୁଁ ବିଛଣାରେ ଉଠି ବସିପାରିଲି। ଯା'ମଧ୍ୟରେ ଦେବଯାନୀର ପୁନର୍ଜନ୍ମ ହୋଇଗଲା; ସେ ଖୁବ୍ ସ୍ନେହ ଓ ସଂଯମଶୀଳା ତଥା ସେବାପରାୟଣା ହୋଇଉଠିଲା। ଦେବଯାନୀର ଏ ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟକରି ମୁଁ ଭାବିଲି, ଏହା ନିଶ୍ଚୟ କଚ଼ଦେବଙ୍କ ସାଧନାର ଫଳ ହୋଇପାରେ କିମ୍ବା ସେଦିନ ରାତିରେ ଯେଉଁ ମହାନ୍ କ୍ରାନ୍ତି ସଂଘଟିତ ହେଲା; ତାହାରି ଫଳ ହୋଇପାରେ !

ସେଦିନ ମୂର୍ଚ୍ଛାହୋଇ ତଳେ ପଡ଼ିଯିବା ପରେ କ'ଣ କ'ଣ ଘଟିଲା, ତାକୁ ବିଭିନ୍ନ ସୂତ୍ରରୁ ସଂଗ୍ରହକରି ମୁଁ ମନେମନେ ଗୋଟିଏ କଥାସୂତ୍ର ଯୋଡ଼ିଦେଲି। ସେ ରାତିରେ ପୁରୁର ଯୌବନ ଫେରାଇଦେବା ଲାଗି ମୁଁ ମନେମନେ ଶୁକ୍ରାଚାର୍ଯ୍ୟଙ୍କ

ବାକ୍ୟ ଦୁଇଥର ସ୍ମରଣକଲି। ତୃତୀୟ ଥର ସ୍ମରଣ କରିବା ପୂର୍ବରୁ ଶାରୀରିକ ଅପକ୍ରିୟା, ଅପଥ୍ୟ ତଥା ମାନସିକ ପ୍ରତିକ୍ରିୟା ଫଳରେ ମୁଁ ଶରୀରର ଭାର ବହନ କରିନପାରି ମୂର୍ଚ୍ଛିତ ହୋଇ ପଡ଼ିଗଲି।

କଚ୍‌ଦେବ ଶୁକ୍ରାଚାର୍ଯ୍ୟଙ୍କ ପରି କଠୋର ତପସ୍ୟାରେ ରତ ହୋଇ ଅଦ୍ଭୁତ ବିଦ୍ୟାର ଅଧିକାରୀ ହୋଇଥିଲେ। ଶୁକ୍ରାଚାର୍ଯ୍ୟଙ୍କ ପରି ମହାକ୍ରୋଧୀ ଋଷି ନିଜ ତପସ୍ୟାଲବ୍ଧ ଶକ୍ତିରେ କାହାରିକୁ ଜୀର୍ଣ୍ଣଜର୍ଜର ବୃଦ୍ଧରେ ପରିଣତ କରିଦେଲେ ସିନା; କଚ୍‌ଦେବ ତା'ର ନିରାକରଣ ଲାଗି ସିଦ୍ଧିଲାଭ କରିଥିଲେ। ସେହି ବିଦ୍ୟାବଳରେ ସେ ମୁହୂର୍ତ୍ତକ ମଧ୍ୟରେ ପୁରୁର ଅକାଳବାର୍ଦ୍ଧକ୍ୟ ଦୂରକରି ତାଙ୍କୁ ନବତାରୁଣ୍ୟ ଦାନକରିଥିଲେ।

କଚ୍‌ଦେବ ନିଜର ତପସ୍ୟା ତଥା ସିଦ୍ଧବିଦ୍ୟା ସମ୍ବନ୍ଧରେ ଆଲୋଚନା କରିବାବେଳେ ଆତ୍ମହରା ହୋଇଉଠୁଥିଲେ। ବେଳେବେଳେ ଆଲୋଚନା ମଝିରେ ଅତ୍ୟନ୍ତ ବିଚଳିତ ହୋଇଉଠୁଥିଲେ ଏବଂ ଆଉ କେତେବେଳେ ସ୍ତବ୍ଧ ହୋଇଯାଇ ବିଚାରମଗ୍ନ ହୋଇଉଠୁଥିଲେ। ତା'ପରେ ସେ ପ୍ରକୃତିସ୍ଥ ହୋଇ କହୁଥିଲେ – "ମହାରାଜ, ମନୁଷ୍ୟ କେବେହେଲେ ପଶୁ ନୁହେଁ। ପଶୁମାନଙ୍କର କୌଣସି ପାରମ୍ପରିକ ସଂସ୍କୃତି ନାହିଁ; କିନ୍ତୁ ସଂସ୍କୃତି ମାନବ-ସମାଜର ଜାନ୍ତବ ପ୍ରବୃତ୍ତିକୁ ବାହ୍ୟତଃ ବଦଳାଇଦେଇପାରିଛି। କିନ୍ତୁ ଆତ୍ମିକ ପ୍ରବୃତ୍ତିରେ ତା'ର ପଶୁତ୍ୱ ଲୁକ୍କାୟିତ ଭାବରେ ରହିଛି। ଗୁରୁନିନ୍ଦା ପାପ; କିନ୍ତୁ ସତ୍ୟର ଅପଳାପ ତା'ଠାରୁ ଅଧିକ ପାପ। ତେଣୁ ମୁଁ ଶୁକ୍ରାଚାର୍ଯ୍ୟଙ୍କ ସମ୍ବନ୍ଧରେ କିଛି କହୁଛି। ତାଙ୍କ ପରି ଜଣେ ବୃଦ୍ଧ ତଥା ମହାନ୍ ତପସ୍ୱୀ ପଦପଦକେ କ୍ରୋଧରେ ଅଗ୍ନିଶର୍ମା ହୋଇଉଠିବା ଅତ୍ୟନ୍ତ ପରିତାପର ବିଷୟ। ଏହା ପ୍ରତ୍ୟକ୍ଷ କରିବାପରେ ମନୁଷ୍ୟସମାଜର ଭବିତବ୍ୟ ସମ୍ବନ୍ଧରେ ମନରେ ଚିନ୍ତା ଜାତହୁଏ। ନିଜ ଉପରେ ବିଜୟ ହାସଲ ନକରି, ମନୁଷ୍ୟ ଯଦି କଠୋର ତପସ୍ୟା ଫଳରେ ଅଦ୍ଭୁତ ବିଦ୍ୟା ହାସଲକରେ, ତେବେ ସେହି ସିଦ୍ଧବିଦ୍ୟାକୁ ସମାଜର କଲ୍ୟାଣ ଲାଗି ବିନିଯୋଗ କରାଯାଇ ପାରିବ ବୋଲି ମନରେ ଧାରଣା ହୁଏନାହିଁ। ଶୁକ୍ରାଚାର୍ଯ୍ୟ ସଂଜୀବନୀବିଦ୍ୟାର ଅଧିକାରୀ ହେବା ଫଳରେ ରାକ୍ଷସମାନେ ଦେବତାମାନଙ୍କୁ କଷ୍ଟ ଦେବାକୁ ଲାଗିଲେ; ପୁଣି କଚ୍ ସଂଜୀବନୀବିଦ୍ୟାର ଅଧିକାରୀ ହୋଇଯିବା ମାତ୍ରେ ଦେବପକ୍ଷ ସମଶକ୍ତିସମ୍ପନ୍ନ ହୋଇଗଲେ। ତା'ରି ଫଳରେ ଦେବଦାନବଙ୍କ ଯୁଦ୍ଧ କିଛିକାଳ ହେଲା ସ୍ଥଗିତ ରହିଛି। ଏ'ଭଳି ଛକାପଞ୍ଝା ଜୀବନରେ ଲାଭ କ'ଣ? ଏ ସଂସାର ଏହିପରି ଭାବରେ କେତେକାଳ ଚାଲିବ? ମାନବ ନିଜ ଉପରେ ବିଜୟ ହାସଲ ନକଲେ, ମାନବସମାଜ କୌଣସିମତେ ସୁଖୀ ହୋଇପାରିବ ନାହିଁ।"

କଚ୍ ଏହିପରି କେତେ କ'ଣ କହିଚାଲିଛନ୍ତି ଏବଂ ମୁଁ ତାଙ୍କ ବାଣୀ ଶୁଣି ଶୁଣି ବ୍ୟାକୁଳ ହୋଇଉଠେ। ତାଙ୍କର ପ୍ରତ୍ୟେକ କଥାରେ ପୂରିରହିଥାଏ ଆନ୍ତରିକତା ଏବଂ ସତ୍ୟତା; କିନ୍ତୁ ତାଙ୍କ ଅଭିଯୋଗର ସମାଧାନ ହେବ କିପରି ମୁଁ ଆଦୌ ଭାବିପାରେନାହିଁ।

ମୋ ଅସୁସ୍ଥତା ଫଳରେ ଆମେ ଦୁହେଁ ପରସ୍ପରର ଖୁବ୍ ନିକଟକୁ ଆସିପାରିଥିଲୁ। ତାଙ୍କ ତପସ୍ୟା ସମ୍ପୂର୍ଣ୍ଣ ହେବାମାତ୍ରେ ସେ ମୋ ବିଷୟରେ ଖବର ନେଇଥିଲେ ଏବଂ ମୋ ଅଧଃପତନର କାହାଣୀ ଶୁଣି ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ମୋତେ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ଆସୁଥିଲେ। ଯାତ୍ରା ମଧ୍ୟରେ ତାଙ୍କୁ ଦେବଯାନୀର

ନିମନ୍ତ୍ରଣ ମିଳିଲା; ତେଣୁ ସେ ଅତ୍ୟନ୍ତ ଦୁଃଖିତ ତଥା ବିଚଳିତ ହୋଇପଡ଼ିଲେ। ନଗରରେ ପ୍ରବେଶକରି ସେ ଶୁଣିଲେ, ମୁଁ ଅଶୋକବନରେ ରହିଛି; ତେଣୁ ପ୍ରଥମେ ମୋ ସହିତ ସାକ୍ଷାତ୍ କରିବା ଲାଗି ଆସିଲେ।

ଓଃ... ସେ ଠିକ୍ ସମୟରେ ଆସି ପହଞ୍ଚିଗଲେ। ତାଙ୍କ ଆଗମନ ଫଳରେ ମୁଁ ମୃତ୍ୟୁମୁଖରୁ ଉଦ୍ଧାରପାଇଗଲି ଏବଂ ପୁରୁ ତା'ର ତାରୁଣ୍ୟ ଫେରିପାଇଲା। ଆଉ... ଆଉ... ମୋତେ ଏକ ମହାପାପରୁ ମୁକ୍ତି ମିଳିଗଲା।

ସେ ସ୍ୱର୍ଣ୍ଣକେଶୀ ଝିଅଟି... ଅଳକା କ'ଣ ଶେଷ ସମୟରେ ପ୍ରାର୍ଥନା କରିଥିଲା? ମୋ ସେବା କରିବା ପାଇଁ ତା'ର କାମନା କ'ଣ ଅପୂର୍ଣ୍ଣ ରହିଥିଲା? ନୋହିଲେ ସେ ନିଜ ମାଉସୀଘରେ ଜନ୍ମିଥିଲେ ସୁଦ୍ଧା ମୋରି ପୁତ୍ରବଧୂ ହୋଇ ହସ୍ତିନାକୁ ଆସନ୍ତା କିପରି?

କଚ୍‌ଦେବଙ୍କ ପରି ଶର୍ମିଷ୍ଠା ମଧ୍ୟ ଠିକ୍ ସମୟରେ ଆସି ପହଞ୍ଚିଗଲା। ସେ ଅଳକା ସହିତ ପୁରୁକୁ ଖୋଜିବାକୁ ଆସି ହସ୍ତିନାପୁର ନିକଟରେ ଗୋଟିଏ ଗ୍ରାମରେ ରହୁଥିଲା। ପୁରୁ ଯୁବରାଜଙ୍କ ସହିତ ଫେରିଆସୁଥିବା ଶୁଣି ଅଳକା ଶର୍ମିଷ୍ଠାକୁ କିଛି ନ କହି, ଏକାକିନୀ ହସ୍ତିନାକୁ ଚାଲିଆସିଲା। ଶର୍ମିଷ୍ଠା ତାକୁ ଚାରିଆଡ଼େ ଖୋଜିଖୋଜି କରି, ଠିକ୍ ଯଦୁ ଫେରିଆସୁଥିବା ରାତିରେ ଆସି ହସ୍ତିନାରେ ପହଞ୍ଚିଲା। ନଗରବାସୀଙ୍କ ପକ୍ଷରୁ ଯଦୁ ଅପେକ୍ଷା ପୁରୁର ଅଧିକ ଜୟଜୟକାର ତଥା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କରାଯାଉଥିବା ଲକ୍ଷ୍ୟକରି ଶର୍ମିଷ୍ଠା ଆତ୍ମହରା ହୋଇପଡ଼ିଲା। ଯଦୁ ଓ ପୁରୁ ଅଶୋକବନକୁ ଯାଉଥିବା ଖବର ପାଇ ସେ ମଧ୍ୟ ଅଶୋକବନ ଆଡ଼କୁ ମୁହାଁଇଲା। ସେ ମନେମନେ ଭାବିଲା– ପୁରୁ ଯଦୁକୁ ନିଜ ପରିଚୟ ଦେଇଥିବ, ତେବେ ଦେବଯାନୀ ସଉତୁଣୀର ବୀରପୁତ୍ରକୁ କେବେହେଲେ ଆଦର କରିବ ନାହିଁ; ବରଂ ଅଠରବର୍ଷ ତଳର ଶତ୍ରୁତା ଆଖିପିଛଡ଼ାକେ ସାଧିନେବ। ତେଣୁ ସେ ପାଗିଳୀଙ୍କ ପରି ହୋଇଯାଇ, ଧାଇଁ ଧାଇଁ ଆସି ଅଶୋକବନରେ ପହଞ୍ଚିଗଲା।

ଶର୍ମିଷ୍ଠା ଓ କଚ ଦୁହେଁଯାକ ଠିକ୍ ସମୟରେ ପହଞ୍ଚିଯାଇ ମୋତେ ଅଧଃପତନମାର୍ଗରୁ ଉଦ୍ଧାର କରିବା ସଙ୍ଗେସଙ୍ଗେ ପୁନର୍ଜୀବନ ଦାନ କରିଥିଲେ; କିନ୍ତୁ ସେ ସମୟରେ ଯତିର ଉପସ୍ଥିତି ମୋତେ ବିସ୍ମିତ କରାଇଦେଲା।

ମୁଁ ଅସୁସ୍ଥ ଥିବାର ଶୁଣି ଯତି ମୋ ସହିତ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ଆସି ହସ୍ତିନାରେ ପହଞ୍ଚିଲେ। ମୁଁ ତାଙ୍କୁ ଦେଖିବାମାତ୍ରେ ପ୍ରଣାମ କରିବା ଲାଗି ଉଠିପଡ଼ିଲି; କିନ୍ତୁ ସେ ସଙ୍ଗେସଙ୍ଗେ ଧାଇଁଆସି ମୋତେ କୁଣ୍ଢାଇପକାଇଲେ। ସେଦିନ ଘୋର ଜଙ୍ଗଲ ମଧ୍ୟରେ ଦେଖିଥିବା କଠୋର ହଠଯୋଗୀ ଯତି, ଆଉ ଆଜି ସୌମ୍ୟ, ସାଧକ ଓ ସ୍ନେହଶୀଳ ଯତି ମଧ୍ୟରେ ଆକାଶ-ପାତାଳର ପ୍ରଭେଦ ଥିଲା। ମନେମନେ ଭାବିଲି, ଆଜି ଆମ ଦୁଇ ଭାଇଙ୍କର ମିଳନ ଦେଖିବା ଲାଗି ମାଆ ଥାଆନ୍ତେ କି?

ଯତି ମୋଠାରୁ ବିଦାୟ ନେବା ସମୟରେ ମୁଁ କହିଲି– "ଆଉ ତୁମେ ଏଠାରୁ ଯାଇପାରିବନାହିଁ।"

"କାହିଁକି...?" ସେ ବିସ୍ମିତ ହୋଇ ପଚାରିଲେ।

''ତୁମେ ମୋର ବଡ଼ଭାଇ! ଏ ରାଜ୍ୟ ତୁମର; ଏଥର ତୁମେ ସିଂହାସନରେ ବସି ରାଜ୍ୟ ଶାସନ କର।''

ସେ ହସିହସି କହିଲେ– ''ସିଂହାସନରେ ବସିବା ଅପେକ୍ଷା ମୃଗଚର୍ମରେ ବସିବା ଅଧିକ ଆନନ୍ଦକର; ଥରେ ମାତ୍ର ତୁମେ ଅନୁଭବ କରି ଦେଖ ତ!''

ଯତି ଏ କଥା ଅତି ସାଧାରଣଭାବରେ କହିଥିଲେ; ମାତ୍ର ମୋ ମନରେ ସେ ବାକ୍ୟର ଗୋଟିଗୋଟି ଶବ୍ଦ ଗଭୀର ପ୍ରଭାବ ପକାଇଲା। ଜୀବନର ଚରମ ଆସକ୍ତିରେ ଉପନୀତ ହୋଇ ମୁଁ ଫେରିଆସିଥିଲି। ତେଣୁ ମୋ ହୃଦୟରେ ତ୍ୟାଗପୂତ ଭାବନା ଜାତହେବା ନିତାନ୍ତ ସ୍ୱାଭାବିକ। ମୁଁ ବାନପ୍ରସ୍ଥ ଗ୍ରହଣ କରିବା ଲାଗି ମନେମନେ ସ୍ଥିରକରିନେଲି। କଚ୍‌ଦେବ ମଧ୍ୟ ମୋ ସିଦ୍ଧାନ୍ତ ଶୁଣି ନିଜର ସମ୍ମତି ଜଣାଇଦେଲେ ଏବଂ ଶର୍ମିଷ୍ଠା ମୋ ସହିତ ବାନପ୍ରସ୍ଥରେ ଯିବାକୁ ପ୍ରସ୍ତୁତ ହୋଇଗଲା। କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ, ଦେବଯାନୀ ମଧ୍ୟ ଆମ ସହିତ ଯିବାଲାଗି ନିଜର ଦୃଢ଼ ସମ୍ମତି ଜଣାଇଦେଲା।

ମୁଁ ରୋଗଶଯ୍ୟାରେ ପଡ଼ିଥିବାବେଳେ ଦିନକର କଥା– ମୋର ପୂର୍ଣ୍ଣଚେତନା ଆସିଯାଇଥାଏ। ପ୍ରଥମେ ମୋତେ ଜଣାଗଲା, ଅଳକା ମୋ ପାଖରେ ବସି ମୋତେ ବିଞ୍ଚିଦେଉଛି। କିନ୍ତୁ ନିରୀକ୍ଷଣକରି ଦେଖିଲି, ଦେବଯାନୀ ହାତରେ ପଙ୍ଖା ଧରି ମୋତେ ବିଞ୍ଚୁଛି ଏବଂ ଶର୍ମିଷ୍ଠା ମୋର ଗୋଡ଼ ଘଷିଦେଉଛି। ଆଉ ଟିକିଏ ପରେ ଶୁଣିବାକୁ ପାଇଲି, ଶର୍ମିଷ୍ଠା ଓ ଦେବଯାନୀ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଛନ୍ତି। ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣିବାକୁ ମୋର ଆଗ୍ରହ ଜାତହେବା ସ୍ୱାଭାବିକ; ଦେବଯାନୀ କହୁଥିଲା– ''ତୁ ଟିକିଏ ବିଞ୍ଚିଦେ, ମୁଁ ଗୋଡ଼ ଘଷିଦେବି।''

''କାହିଁକି, କ'ଣ ହେଲା କି?''

''ଗୋଡ଼ ଘଷିଘଷି ତୋ' ହାତ ବଥା କରିବଣି।''

ଶର୍ମିଷ୍ଠା ହସିଦେଇ କହିଲା– ''ବିଞ୍ଚିଲେ ବୋଧହୁଏ ହାତ ବଥା ହୁଏନାହିଁ?''

ଦେବଯାନୀ ହସି ହସି ଉତ୍ତରଦେଲା– ''ମୋର ଗୋଟିଏ ହାତ ଥକିପଡ଼ିଥିବ; କିନ୍ତୁ ତୋ'ର ଦୁଇହାତ ବ୍ୟଥା କରୁଥିବ। କାଲି ପୁଣି ଲୋକେ କ'ଣ କହିବେ– ଦେଖ, ଦେବଯାନୀ ନିଜ ସପତଣୀ ସହିତ କିପରି କ୍ରୂର ବ୍ୟବହାର କରୁଛି! ମୁଁ ତୋ'ଠାରୁ ବଡ଼; ତେଣୁ ମୁଁ ଯାହା କହିବି ତୋତେ ମାନିବାକୁପଡ଼ିବ। ଉଠ, ପଙ୍ଖା ଧରି ବିଞ୍ଚିଦେ, ମୁଁ ଗୋଡ଼ଘଷିଦେଉଛି।'' ତା'ପରେ ଦୁହେଁଯାକ ଖିଲ୍‌ଖିଲ ହୋଇ ହସିଉଠିଲେ। ମୋତେ ଜଣାଗଲା– ଯେପରି କଳନାଦିନୀ ଦୁଇଟି ସ୍ୱଚ୍ଛନ୍ଦଗାମିନୀ ସ୍ରୋତସ୍ୱିନୀ ଏକସଙ୍ଗରେ ମିଶି ଆଗେଇଗଲେ।

ମୁଁ ଅନେକ ଦିନ ପର୍ଯ୍ୟନ୍ତ ଅସୁସ୍ଥ ରହିଲି; ତା'ରି ମଧ୍ୟରେ ଭାବୁଥିଲି– ଦେବଯାନୀର ହୃଦୟ ପରିବର୍ତ୍ତନ ହେଲା କିପରି? ହୁଏତ କଚ୍‌ଦେବଙ୍କ ଚମତ୍କାରିତା ଫଳରେ ଏହା ସମ୍ଭବ ହୋଇଥିବ? କିନ୍ତୁ ଆଗରୁ କଚ୍‌ଦେବ ତାକୁ ଅନେକ ଉପଦେଶ ଦେଇଥିଲେ– କାହିଁ ସେଥିରେ ତ ତା'ର କିଛି ପରିବର୍ତ୍ତନ ହୋଇନଥିଲା? ତା'ହେଲେ ତା'ର ଏ ଅଦ୍ଭୁତ ପରିବର୍ତ୍ତନ ହେଲା କିପରି? ହୁଏତ ତା'ର ଧାରଣା ହୋଇଥିବ ଯେ, ଶୁକ୍ରାଚାର୍ଯ୍ୟଙ୍କ ଅପେକ୍ଷା କଚ୍‌ଦେବ ମହାନ୍ ଜ୍ଞାନୀ; ତେଣୁ ଏଥର ତାଙ୍କ ପ୍ରଭାବ

ପଡ଼ିବା ଅସମ୍ଭବ ନୁହେଁ ।

ଦିନେ ଆଲୋଚ଼ନା ପ୍ରସଙ୍ଗରେ ମୁଁ କଚ଼ଦେବଙ୍କୁ ହସିହସି ପଚାରିଲି – ''ଦେବଯାନୀର ଏ ପୁନର୍ଜନ୍ମ ମୂଳରେ ଆପଣଙ୍କ ଯାଦୁକରୀ ଶକ୍ତିର ପ୍ରଭାବ ନିଶ୍ଚୟ ରହିଛି; ନୁହେଁ କି ?''

କଚ଼ଦେବଙ୍କ ମୁଖମଣ୍ଡଳରେ ସ୍ୱଚ୍ଛ ହାସ୍ୟରେଖା ଖେଳିଗଲା; ସେ ପ୍ରଶାନ୍ତ ମନରେ କହିଲେ – ''ମହାରାଜ, ଯେଉଁ ଦେବଯାନୀର ହୃଦୟ ପରିବର୍ତ୍ତନ ଲାଗି ମୁଁ ବହୁବର୍ଷ ହେଲା ପ୍ରୟାସ କରିଆସୁଥିଲି, ତାହା ସେଦିନ ରାତିରେ ହିଁ ସମ୍ଭବ ହୋଇଗଲା । ସେ ଗୌରବର ଅଧିକାରୀ ମୁଁ ନୁହେଁ, ପୁରୁ . . . !''

ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲି – ''ଏହା କିପରି ପୁରୁଦ୍ୱାରା ସମ୍ଭବ ହେଲା ?''

''ପୁରୁର ତାରୁଣ୍ୟ ଆପଣ ଗ୍ରହଣକରିବାମାତ୍ରେ ତା' ହାତରେ ରାଜ୍ୟଭାର ଅର୍ପଣ କରିଦେଲେ । କିନ୍ତୁ ପୁରୁ ତା'ର ଯୌବନ ଫେରିପାଇବାମାତ୍ରେ ସେ ଦେବଯାନୀ ପାଖକୁ ଯାଇ, ତା' ପାଦତଳେ ପଡ଼ି କହିଲା – ''ମାଆ, ଯଦୁ ମୋର ବଡ଼ଭାଇ ! ବାପା ମୋତେ ରାଜସିଂହାସନ ଅର୍ପଣ କରିଛନ୍ତି ସତ୍ୟ; କିନ୍ତୁ ମୁଁ ତାହା ଗ୍ରହଣ କରିବିନାହିଁ । ଯଦୁକୁ ଅପମାନିତ କରି ମୁଁ ସିଂହାସନରେ ବସିବି ନାହିଁ । ଯଦୁ ହିଁ ରାଜାହେବ । ମୁଁ ତା'ର ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଅଛି । ତୁମ ପାଦ ସ୍ପର୍ଶକରି ଶପଥ କରୁଛି, ଶର୍ମିଷ୍ଠା ମାଆଙ୍କର ଶ୍ରୀଚ଼ରଣର ଶପଥ ନେଇ କହୁଛି, ମୁଁ ତୁମକୁ ଚାହେଁ, ତୁମର ସ୍ନେହାଶିଷ ଚାହେଁ; ବଡ଼ଭାଇ ରୂପେ ଯଦୁର ସ୍ନେହ ଓ ଶ୍ରଦ୍ଧା ଚାହେଁ । ଫଳରେ ଦେବଯାନୀର ହୃଦୟ ଲହୁଣି ପରି କୋମଳ ହୋଇଗଲା । ତା' ଆଖିରୁ ଝରଝର ହୋଇ ଲୁହଧାର ଝରିପଡ଼ିଲା । ସେ ବାତ୍ସଲ୍ୟମମତାରେ ପୁରୁକୁ କୁଣ୍ଢାଇପକାଇ, ତା'ର ମୁଣ୍ଡ ଆଉଁଷି ଦେଇ କହିଲା – 'ଭବିଷ୍ୟତରେ ରାଜସିଂହାସନର ଅଧିକାରୀ କିଏ ହେବ ତାହା ମହାରାଜ ଓ ପ୍ରଜାବର୍ଗ ସିଦ୍ଧାନ୍ତକରିବେ । କିନ୍ତୁ ତୁ ମୋତେ ଯେଉଁ ରାଜ୍ୟ ଅର୍ପଣ କଲୁ ତା' ଆଗରେ ବିଶ୍ୱର ରାଜସିଂହାସନ ମଧ୍ୟ ତୁଚ୍ଛ ! ତୋ' ପରି ତ୍ୟାଗୀ ଓ ପରାକ୍ରମୀ ପୁଅ ମୋତେ ମାଆ ବୋଲି ଡାକିଲା, ଏହା ମୋର କମ୍ ସୌଭାଗ୍ୟ ବୋଲି ମନେକରନି ବାପା ! ସତ କହ ପୁରୁ, ତୋତେ ଏପରି ତ୍ୟାଗ ଓ ପ୍ରେମ ଶିଖାଇଲା କିଏ ? ପିଲାଟିଦିନରୁ ମୋତେ ଯଦି କେହି ଏହା ଶିଖାଇଥାଆନ୍ତା, ତା'ହେଲେ ସତରେ କେତେ ଭଲହୋଇନଥା'ନ୍ତା ? ତୋ'ଠାରୁ ମୋର ଅନେକ କିଛି ଶିଖିବାର ଅଛି । ତୁ ବାପାଙ୍କର ଜରାଜୀର୍ଣ୍ଣ ଅବସ୍ଥା ହସିହସି ମୁଣ୍ଡାଇନେଲୁ; ପୁଣି ଭାଇ ପାଇଁ ରାଜସିଂହାସନ ତ୍ୟାଗ କରିବାକୁ ଆକୁଳ ନିବେଦନ କରୁଛୁ । ପୁରୁ . . . ମୋର ଆଉ କିଛି ଲୋଡ଼ାନାହିଁ ବାପା ! କେବଳ ପ୍ରଶାନ୍ତ ହୃଦୟରେ ସମସ୍ତଙ୍କୁ ଆପଣାର କରିନେବା ଭଳି ତୋ'ର ଯେଉଁ ଶକ୍ତି ରହିଛି ମୋତେ ସେଇତକ ଶିଖାଇଦେ ।''

ପୁରୁ ରାଜସିଂହାସନ ଉପରୁ ନିଜର ଅଧିକାର ଛାଡ଼ିଦେଲା ସତ; କିନ୍ତୁ ପ୍ରଜାମାନେ ତାକୁ ରାଜାରୂପେ ଗ୍ରହଣ କରିବାକୁ ସ୍ୱର ଉତ୍ତୋଳନକଲେ ଏବଂ ଦେବଯାନୀ ମଧ୍ୟ ପ୍ରଜାମାନଙ୍କର ଏ ଦାବୀ ହସିହସି ଗ୍ରହଣକରିନେଲା ।

ପୁରୁ ରାଜ୍ୟାଭିଷେକ ଦିନ ଆମେ ବାନପ୍ରସ୍ଥରେ ବାହାରିପଡ଼ିଲୁ । ଅଭିଷେକ

ଉତ୍ସବ ଶେଷହେବା ପରେ କଚ଼ ଆମମାନଙ୍କୁ ପଚାରିଲେ – ''କହନ୍ତୁ, ଆପଣମାନଙ୍କ ମନରେ ଅପୂରଣୀୟ କୌଣସି ଇଚ୍ଛା ଅଛି କି ?''

ଦେବଯାନୀ ଓ ଶର୍ମିଷ୍ଠା ସ୍ପଷ୍ଟ ମନାକରିଦେବାପରେ ମୋ ଆଡ଼କୁ ଚାହିଁ କହିଲେ କଚ଼ଦେବ – ''ମହାରାଜ . . .''

ମୁଁ କହିଲି – ''ଆଜିଠାରୁ ମୋତେ କେହି ମହାରାଜ ବୋଲି ସମ୍ବୋଧନ କରି ପାରିବେ ନାହିଁ। ଆମେ ଦୁହେଁ ସମବୟସ୍କ ମିତ୍ର; ଅଙ୍ଗୀରସ ମହର୍ଷିଙ୍କ ଆଶ୍ରମରେ ଅନୁଷ୍ଠିତ ସେ ଯଜ୍ଞରେ ଆମେ ଦୁହେଁ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ; ଆଜି ପୁଣି ଆମେ ବାଲ୍ୟବନ୍ଧୁ ରୂପେ ପରିଚିତହେବା।''

କଚ଼ ହସି ହସି କହିଲେ – ''ଠିକ୍ ଅଛି ! କୁହନ୍ତୁ ଯଯାତି, ତୁମର ଇଚ୍ଛା କଅଣ ?''

''ହଁ, ମୋର ଦୁଇଟି ଇଚ୍ଛା ଅପୂର୍ଣ୍ଣ ରହିଛି।''

''ସେ ଦୁଇଟି ଅଭିଳାଷ କଅଣ ?''

''ମାଧବର ମାଆ ବୁଢ଼ୀହୋଇଗଲେଣି, ତାଙ୍କୁ ଆମ ସାଥିରେ ନେବାକୁ ମୁଁ ଇଚ୍ଛା କରୁଛି। ମୁଁ ଶେଷ ଜୀବନରେ ତାଙ୍କ ସେବାକରି କାଳ ଅତିବାହିତ କରିବି। ଆଉ ଗୋଟିଏ ଅଭିଳାଷ . . . ଆମେ ପତି ପତ୍ନୀ ତିନିହେଁ ବନରେ କୌଣସି ସଙ୍କୋଚ଼ ନରଖି ଦୁନିଆକୁ ଆମର ଆତ୍ମକଥା ଶୁଣାଇଦେବୁ।''

ରାଜ୍ୟାଭିଷେକ ପରେ ପୁରୁ ଆମଠାରୁ ଆଶୀର୍ବାଦ ନେବାଲାଗି ଆସି ପହଞ୍ଚିଲା। ମୁଁ ତାକୁ ଶୁଭାଶିଷ ଦେଇ କହିଲି – ''ତୋ'ରି ନାମରେ ଏ ରାଜବଂଶ ବିଶ୍ୱରେ ପ୍ରସିଦ୍ଧି ଲାଭକରୁ। ତୋ'ର ପରାକ୍ରମ ପରି ଆତ୍ମତ୍ୟାଗ ତୋତେ ଯଶସ୍ୱୀ କରୁ।''

''ଆଉ କ'ଣ ମହାରାଜ . . .!''

''ମୁଁ ଆଉ ମହାରାଜ ନୁହେଁ।''

''ତା'ହେଲେ . . . ଆଉ କ'ଣ କହନ୍ତୁ ବାପା ?''

''ମୁଁ ଆଉ ଗୃହସ୍ଥାଶ୍ରମରେ ନାହିଁ।''

''ତା'ହେଲେ . . . ତା'ହେଲେ . . .?''

''ସୁଖ ଓ ଦୁଃଖରେ ତୁ ଗୋଟିଏ କଥା ମନେରଖିବୁ। ଉଚ୍ଚାଭିଳାଷ ତଥା ଆଧ୍ୟାତ୍ମିକ ସଂସ୍କୃତିର ଜାଗରଣ ମାନବଜୀବନର ଶ୍ରେଷ୍ଠ ପୌରୁଷ; ଏ ଦୁଇଟି ପୁରୁଷାର୍ଥ ମଣିଷଜୀବନର ପ୍ରେରକ ତଥା ପ୍ରଧାନ ପରିପୋଷକ ମଧ୍ୟ; କିନ୍ତୁ କେତେବେଳେ ଯେ ମଣିଷର ପୌରୁଷ ଅନ୍ଧହୋଇଯିବ, ତାହା ବିଶ୍ୱାସ କରାଯାଇନପାରେ। ତେଣୁ ମନୁଷ୍ୟ ଜୀବନର ପୁରୁଷାର୍ଥ ସର୍ବଦା ଆଧ୍ୟାତ୍ମିକ ଭାବଧାରାରେ ପରିଚାଳିତ ହେବା ଉଚିତ।

''ନ ଜାତୁ କାମକାମାନାମୁପଭୋଗେନ ଶାମ୍ୟତି।
ହବିଷା କୃଷ୍ଣ ବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ।

ମଣିଷର ଅଭିଳାଷ କେବେହେଲେ ବିଷୟ-ବାସନାର ଉପଭୋଗରେ ପରିତୃପ୍ତ ହୁଏନାହିଁ; ବରଂ ପ୍ରଜ୍ୱଳିତ ଅଗ୍ନିରେ ଘୃତଧାର ପରି ଦିନୁ ଦିନ ତା'ର ଅତୃପ୍ତ କାମନା ବଢ଼ିବାରେ ଲାଗିଥାଏ।''

□ □ □

